# କବିକଣ୍ଠେ ଶ୍ରୀଜଗନ୍ନାଥ



ସଂକଳକ: ମୁରାରିମୋହନ ଜେନା

## କବିକଣ୍ଠରୁ

# ଶ୍ରୀଜଗନ୍ନାଥ

ଜଗନ୍ନାଥସ୍ୱାମୀ ନୟନପଥଗାମୀ ଭବତୁ ମେ ।



# କବିକଣ୍ଠେ ଶ୍ରୀଜଗନ୍ନାଥ

ଫ୍ରେଣ୍ଡସ୍ ପବ୍ଲିଶର୍ସ



ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ, କଟକ-୨

କବିକଣ୍ଠେ ଶ୍ରୀଜଗନ୍ନାଥ

ସଂକଳକ :
**ଶ୍ରୀ ମୁରାରିମୋହନ ଜେନା**

ପ୍ରକାଶକ
**ସହଦେବ ପ୍ରଧାନ**
ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସ
ବିନୋଦବିହାରୀ
କଟକ-୭୫୩୦୦୨

ପ୍ରଥମ ପ୍ରକାଶ :
ଶ୍ରୀଗୁଣ୍ଡିଚା
୧୯୭୯

ପ୍ରଚ୍ଛଦପଟ :
**ଅସିତ ମୁଖାର୍ଜୀ**

ମୁଦ୍ରାକର :
**ଶ୍ରୀ ନୀଳକଣ୍ଠ ପ୍ରେସ୍**
ବିଡ଼ାନାସୀ,
କଟକ-୭୫୩୦୦୮

ମୂଲ୍ୟ : ପଞ୍ଚଷଠି ଟଙ୍କା

KABIKANTHE
SRI JAGANNATH

*Compilor*
**Sri Murarimohan Jena**

*Publisher* :
**Sahadev Pradhan**
Friends' Publishers
Binodbehari
Cuttack-753002
Orissa (India)

First Publishe
Srigundicha
**1979**

*Cover design*
**Asit Mukherjee**

*Printer* :
**Sri Nilakantha Press**
Bidanasi,
Cuttack-753008

**Price Rs. 65.00**

କାଳିଆରେ,

ଆଉ ମୋର କିଏ ଅଛି ?
ତୁଇତ ମୋର ସାହା ଭରସା
ସବୁକିଛି···
ତୋତେଇ ଆଶ୍ରୟ କରି
ଏ ଜୀବନ ଏତେ ବାଟ ଆଇଲା
ଆଉ ବା ଯାହା କିଛି ରହିଲା
ତାହା ତୋତେଇ ଲାଗିଲା ।
ଚକାଡ଼ୋଳାରେ, ଖାଲି ଟିକେ ଅନେଇ ଦେ
ତୋ ଇଚ୍ଛା, ତୁ ଯୁଆଡ଼େ ନବୁ ସିଆଡ଼େ ନେ
ମୋର କିଛି ଆପତ୍ତି ନାହିଁ ନା
ଅଭିଯୋଗ ନାହିଁ
ହେବ ବା କାହିଁ ପାଇଁ ??
ତୋହରି ପାଇଁ ତ ଯାହା କିଛି କଲି
ସବୁ ତୋହରି ଆଦେଶ
ସବୁ ତୋହରି ଆଜ୍ଞା
ତେଣୁ ତୋତେଇ ଡାକୁ ଦେଲି ।
ହେ ମୋର ଜୀବ ଥିବା ଯାଏର
ଓ ଜୀବ ଯିବା ଯାଏର ମହିମା
ଏତିକିରେ ତୋ'ଠୁ ବିଦାୟ ନେଲି
କାଳିଆରେ !
ଆଜି ଏତିକି ଯେମା କରିବୁ
ମୋର ଗୁହାରି
ଯାହା କହିଲି, ତୋରି ନାଆଁରେ
ଆଜିର ତୋରି ବନ୍ଧୁ ବାହାରକୁ ଆସିଲି ବେଳକୁ
ଏଇ ଜେନା ମୁରାରି ।

# ମୋ ଦୃଷ୍ଟିରେ ଶ୍ରୀଜଗନ୍ନାଥ

କବିଗୁରୁ ରାଧାମୋହନ ଗଡ଼ନାୟକ ତାଙ୍କର ଆଳାପ ଆଲୋଚନା ଓ ବିଗ୍ରହ ବିବେଚନାରେ ମୋତେ ବାରମ୍ବାର ଚେତାଇ ଆସୁଥିଲେ, "ହେ ମୁରାରି ! କାହିଁକି ହେଲ ସୁରାରି ।"

ସେ ଦିନର ଏକ ଅଳସ ଅପରାହ୍ନ । ଆମ ଘରେ ଚା' ଖାଉ ଖାଉ ସିଗାରେଟ୍‌ର ଧୂମ୍ର କୁଣ୍ଡଳୀରେ କବିଗୁରୁ ଗଡ଼ନାୟକ ମଜଗୁଲ୍ । ମୁଁ ତାଙ୍କ ପାଖରେ ବସି ଚା' ଖାଉଥାଏ । ସେତିକିବେଳେ ତାଙ୍କୁ ପଚାରିଲି, 'ହେ ମୁରାରି କାହିଁକି ହେଲ ସୁରାରି'ର ମୋ ପ୍ରତି ଆକ୍ଷେପର ତତ୍ତ୍ୱପୂର୍ଣ୍ଣ ଓ ତାତ୍ପର୍ଯ୍ୟପୂର୍ଣ୍ଣ କଥା, ଯାହାକି ସେ ବାରମ୍ବାର ମୋତେ କହି ଆସିଛନ୍ତି ।

କବିଗୁରୁ ଟିକିଏ ହସି ଦେଇ ଆରମ୍ଭ କଲେ, ହଁ ଯେଉଁ କଥା ପଚାରୁଛ, ସେ କଥା କହୁଛି ଶୁଣ ।

"ଆଜକୁ ପ୍ରାୟ ୨୫।୩୦ ବର୍ଷ ହେବ, ମୁଁ ମୋର କୌଣସି ଜଣେ ଆତ୍ମୀୟା ବୃଦ୍ଧା ବିଧବାଙ୍କ ସହ ଯାହାଙ୍କର ବୟସ ହେବ ସେତେବେଳକୁ ପଚସ୍ତରି ପାଖାପାଖି, ପୁଣି ଯାହାଙ୍କ ଜୀବନ ସନ୍ଧ୍ୟା ବେଳକୁ ବେଳ ଘନେଇ ଆସୁଥିଲା; ତାଙ୍କର ବାରମ୍ବାର ତାଡ଼ନା ଓ ଅନୁରୋଧରେ ତାଙ୍କ ସହିତ ଶ୍ରୀଜଗନ୍ନାଥଙ୍କ ସ୍ନାନ ପୂର୍ଣ୍ଣିମା ଉପଲକ୍ଷେ ପୁରୁଷୋତ୍ତମ ଯାଇଥିଲି । ସେଠି ଦେଖିଲି, କେବଳ ମୋର ଏଇ ଆତ୍ମୀୟା ବୃଦ୍ଧା ବିଧବା ନୁହନ୍ତି, ପ୍ରାୟ ଶହ ଶହ ସଂଖ୍ୟାରେ କେତେ ଯେ ବିଭିନ୍ନ ବୟସର ବିଧବା, ଯେଉଁଠିକି ଯୁବତୀ ବିଧବାଙ୍କ ସଂଖ୍ୟା ବେଶୀ, ଜଗନ୍ନାଥଙ୍କ ସ୍ନାନ ମଣ୍ଡପ ପାଖରେ ରୁଣ୍ଡ ହୋଇ ଆଉ ତୁଣ୍ଡ ଖୋଲି ପାରୁ ନାହାନ୍ତି । କେବଳ ସ୍ନାନ ମଣ୍ଡପରେ ବସିଥିବା ମୂକ ଭଗବାନଙ୍କୁ ତାଙ୍କର ଅଳଅଝଟ ଲିଭି ବାଢ଼ୁଛନ୍ତି ନିର୍ବାକ ନିଷ୍ପନ୍ଦରେ—ଆଖିରୁ ଖାଲି ଧାର ଧାର ଲୁହ ବୋହି ଯାଉଛି । ସେ ଦିନର ସେମାନଙ୍କର ସେ ସକରୁଣ ଦୃଶ୍ୟ ଦେଖି, ମୁଁ ମଧ୍ୟ ସମ୍ଭାଳି ପାରିଲି ନାହିଁ । ମୋ ଆଖିରୁ ମଧ୍ୟ ଶ୍ରାବଣର ଧାରା ପରି ଲୁହ ଗଡ଼ି ଚାଲିଲା । ମୁଁ ସେଦିନ ଜଗତର ନାଥ ଜଗନ୍ନାଥଙ୍କୁ ଆଖି ଲୁହରେ ଗାଧୁଆ ହୋଇ ମୋର ଗୁହାରି ବାଢ଼ି

କହିଥିଲି, "ହେ ବଳିଆର ଭୁଜ ! ତୁ ପରା ସେଦିନ ସାମାନ୍ୟ ଶିଶୁ ପ୍ରହ୍ଲାଦର ଆହ୍ଲାଦପାଇଁ ତା'ର କଥାରେ ଖୁଣ୍ଟରୁ ବାହାରି ନୃସିଂହାବତାରରେ ତା'ର ପିତା ହିରଣ୍ୟକଶିପର ବକ୍ଷ ବିଦାରଣ କରିଥିଲୁ । ଆଜି କାହିଁକି, ତୋର ଏଇ ଗୁରୁ ଅବିଚାର, ଗୁରୁ ଅପରାଧ, ଅନ୍ୟାୟ, ଅନୀତି ? ଏହି ବିଧବାମାନଙ୍କ କଥା କାହିଁକି ବୁଝୁନାହୁଁ । ସେମାନଙ୍କ ଲୁହର ତତଲ ନିଶ୍ୱାସ ତୋ ଦେହରେ କ'ଣ ବାଜୁ ନାହିଁ ? ତୁ ପରା ସାମ୍ୟ ସମତାର ଠାକୁର—ତୁ ପରା ସମସ୍ତଙ୍କର ମନୋବାଞ୍ଛା ପୂର୍ଣ୍ଣ କରୁ । ଏହି ବିଧବାମାନେ ସଂସାର ସୁଖ ସମ୍ଭୋଗରୁ ବଞ୍ଚିତ ହୋଇ ତୋ'ର ପାଖରେ ମଥାପିଟି ଯେଉଁ ଗୁହାରି ବାଢ଼ୁଛନ୍ତି, ସେମାନଙ୍କ ପାଇଁ କିଛି ତ କରୁନାହୁଁ ? ତେବେ ତୁ ପଥଆରି ଦେଖାଇ କାଠଟା ହୋଇ ବସିଛୁ କାହିଁକି ? ପୁଣି କ୍ରୋଧ ଜର୍ଜରିତ ଢଙ୍ଗରେ ଆହୁରି ପାଦେ ଆଗେଇ ଯାଇ ଜଗନ୍ନାଥଙ୍କୁ କହିଥିଲି, ଏଇ ବିଧବାଙ୍କ ତତଲ ଲୁହ ଓ ତତଲ ନିଶ୍ୱାସରେ, ତୋର ପଥଆରି ରୂପର ପ୍ରତିମା ଏଇ କାଠଟା ଯେ, ପୋଡ଼ି ଦିନେ ଭସ୍ମ ହୋଇଯିବ-ଏକଥା ଭୁଲି ଯାଉଛୁ କାହିଁକି ? ତୋତେ କେହି ରକ୍ଷା କରିପାରିବେ ନାହିଁ । ବିଧବାମାନଙ୍କର ଏହି ତତଲ ନିଶ୍ୱାସ ନିଆଁକୁ ସମ୍ଭାଳିବାକୁ ବା ଶକ୍ତି କାହାର ଅଛି ?

ସେ ଦିନର ସେହି ଘନଘଟା ଘଟଣାକୁ ଘଣ୍ଟା ଘଣ୍ଟି କରି ଶ୍ରୀ ଜଗନ୍ନାଥଙ୍କ ବିରୁଦ୍ଧରେ ମୋର ଅଭିଯୋଗର ଏକ ଦୀର୍ଘ କବିତା ଲେଖିଥିଲି । କିନ୍ତୁ ସେ ଦିନର ମୋର ଲେଖନୀର ସେହି ଅଭିଯୋଗର କବିତା, କୌଣସିଠାରେ ଛାପିବାକୁ ମୋର ସାହାସ ହେଲା ନାହିଁ । ମୋତେ ଗୋଟିଏ କଥା ବାରବାର ବିବ୍ରତ କଲା । ମୁଁ ପରା ହିନ୍ଦୁ, ମୋ ଇଷ୍ଟ ଠାକୁର ବିରୁଦ୍ଧରେ ଏଭଳି କବିତା ପ୍ରକାଶ କରିବି କିପରି ? ପରବର୍ତ୍ତୀ ପର୍ଯ୍ୟାୟରେ ଏହି ଭାବ ଭାବନାରେ ମୋର ଭାବାନ୍ତର ଆସିଲା ଓ ମୁଁ ଲେଖିଥିବା କବିତାଟିକୁ ଫାଡ଼ି ଟୁକୁଡ଼ା ଟୁକୁଡ଼ା କରି ପକାଇ ଦେଲି । ତେଣୁ ମୁଁ ଜଣେ ହିନ୍ଦୁ ହୋଇ ଯେତେବେଳେ ଏଭଳି କବିତାକୁ ପ୍ରକାଶ କରିବାକୁ ମୋର ସାହସ ପାଇଲି ନାହିଁ, ସେତେବେଳେ ତମେ ମଧ୍ୟ ଜଣେ ହିନ୍ଦୁ ହୋଇ "ଭଗବାନ ମୁଁ ତୁମକୁ ଠିଆ ଫାଡ଼ିଦେବି" କବିତା ଲେଖି କବିତା ବହିର ସେହି ଶିରୋନାମା କିପରି ଦେଲ ? ଏହା କହିବା ସାଙ୍ଗେ ସାଙ୍ଗେ ମୋତେ ପୁଣି କହିଲେ, ମୁଁ ଲେଖିଥିବା ଏଇ "ଭଗବାନ ମୁଁ ତୁମକୁ ଠିଆ ଫାଡ଼ି ଦେବି କବିତାକୁ ଆଉ ଥରେ ପଢ଼ି ଶୁଣାଇବାକୁ । ସେହି କବିତା ପଢ଼ି ଶୁଣାଇଲି । ସେ କବିତାର ପଂକ୍ତି ଗୁଡ଼ିକ ହେଲା—

|| ୧ ||

ଭଗବାନ ଯଦି କେହି ଅଛ
ମୁଁ ଡାକୁଛି ବାରବାର

ବସି ମୋର
ଭଙ୍ଗା ଗ୍ହଲ ଘରେ
ତମ କଥା ଭାବି ଗଲବେଳେ
ମୋ ନୟନୁ ଖାଲି ଅଶ୍ରୁ ଝରେ
ଆସ ଆସ ଭଗବାନ ସାମନାକୁ ଆସ
ମୁଁ ତୁମକୁ ଠିଆ ଫାଡ଼ି ଦେବ···
ଯୁଗ ଯୁଗ ଅଙ୍ଗିଭୂତ···ଛନ୍ଦଭୂତ···ପୁଞ୍ଜିଭୂତ
ମୋ ମନର ଯେତେକ ବେଦନା···ଯେତେକ ବ୍ୟର୍ଥତା
ତମ ବିରୁଦ୍ଧରେ, ତାର ଆଜ ପେଟପୂରା ପ୍ରତିଶୋଧ ନେବି···
ଭଗବାନ ମୁଁ ତୁମକୁ ଠିଆ ଫାଡ଼ି ଦେବି······

॥ ୨ ॥

ମୁଁ ଶୁଣିଛି ପୁରାଣପୃଷ୍ଠାରେ
ମୁହିଁ ବି ପଢ଼ିଛି ପୁଣି ପୁରାଣର ପୃଷ୍ଠା ଲେଉଟାଇ
ମୋର ସବୁ ମନ ମୁନ ଚଇତନ
ବିବେକ ଖଟାଇ
ତମେ ପୁଣି ନାହିଁ କେତେ ବଧିଥିଲ,
ଶିବଭକ୍ତ ହିରଣ୍ୟକଶ୍ୟପ
ତା'ର ପୁତ୍ର ବିଷ୍ଣୁ ଭକ୍ତ ପ୍ରହ୍ଲାଦର
ସାମାନ୍ୟ ଉକ୍ତିରେ ପୁଣି ସାମାନ୍ୟ ଯୁକ୍ତିରେ
ସ୍ତମ୍ଭରୁ ବିସ୍ତାରି ପୁଣି
ଆପେ ଆପେ
ଆପଣାର କାୟା,···ନୃସିଂହାବତାରେ
ହିରଣ୍ୟଙ୍କୁ ବିଦାରିଣି,
ଉଡ଼ାଇଲ ମୁକ୍ତିଙ୍କ ଯଶ ବାନା
ନିପୀଡ଼ିତ ପ୍ରହ୍ଲାଦର
ଆହ୍ଲାଦର, ମୁକ୍ତିରେ ମୁକ୍ତିରେ

॥ ୩ ॥

ମୁହିଁ ଆଜି ମୋର ଭଗବାନ
ତମେ ଯଦି ନାମଧାରୀ ଭଗବାନ କେଉଁଠି ଅଛ

ତମେ ସବୁ,
ହିରଣ୍ୟ କଶ୍ୟପ ଦଳ......
ଏ ଆତ୍ମାର ଶାନ୍ତି ପାଇଁ......
ମୋ ଆତ୍ମାର ନିର୍ପୀଡ଼ିତ ସ୍ତମ୍ଭରୁ ସ୍ତମ୍ଭରୁ......
ମୁଁ ଆଜି ସାଜିଅଛି ନୃସିଂହାବତାର
ଭଗବାନ, ତମର କଲିଜା ଟାଣି......
ମୁଁ ଆଜି ବିଦାରିବି ତମର ଛାତିକି ।

॥ ୪ ॥

ମୁଁ ଆଜି ଭୀମ ପରାକ୍ରମୀ
ଦ୍ୱିତୀୟ ପାଣ୍ଡବ
ତମକୁ ମୁଁ ସଜାଇବି ଜରାସନ୍ଧ ବୀର
ତମର ମୁଁ ଦୁଇ ଗୋଡ଼ ଦି' ହାତରେ ଧରି
ଚିରି ଫାଡ଼ି ଦେବି......
ଯୁଗ ଯୁଗ ମୋ ମନର କୁତ୍ସିତ ବିକାର
ତମ ବିରୁଦ୍ଧରେ
ତା'ର ଆଜି ପ୍ରତିଶୋଧ ନେବି......
ତମର ଏ ସୃଷ୍ଟି ଛଡ଼ା ଅନନ୍ତ ଶୟନ
ଆମ ଆଗେ ତାର ପ୍ରହସନ
ସେ ସବୁଟା ଭାଙ୍ଗି ଚୂରି ସାବାଡ଼୍ କରିବି
ଭଗବାନ ମୁଁ ତୁମକୁ ଚିରି ଫାଡ଼ିଦେବି ।

ମୋ କବିତା ଶୁଣି ସାରିଲା ପରେ ଗଡ଼ନାୟକ କହିଲେ, କବିତାରେ ଅଶ୍ଲୀଳ ଅଭିଯୋଗ ଚମତ୍କାର ଭାବେ ଫୁଟି ଉଠିଥିଲେ ମଧ୍ୟ ଏଭଳି କବିତା ଲେଖିଲ କିଆଁ ? ତମେ 'ମୁରାରି' ହୋଇ 'ସୁରାରି, ହେଲ କାହିଁକି ?

ସେ ଦିନ ତାଙ୍କୁ କେବଳ ମୋ କୈଫିୟତ୍ ଜରିଆରେ କହିଥିଲି—

ଠାକୁରଙ୍କୁତ ପୁଣି କବିସମ୍ରାଟ ସେଦିନ 'କାଳସର୍ପ' ଆପଣ କବିଲା କଲି ପ୍ରଣାମ କମ୍ପା ଉଦ୍ଧିଲ ଘଣ୍ଟା ଯଦୁମଣି 'ଦେଲ ଯାହା ନେଲ ତାହା, ଏଥିପାଇଁ ଚଉବାହା ଦାତା ପଣେ କିଆଁ କହ ପତାକା ବାନ୍ଧିଲ' ବୋଲି କହିଛନ୍ତି । ପୁଣି 'ନାଚେକ ମାଇଲା

ଶ୍ରୀବତ୍ସ ବ୍ରାହ୍ମଣ ହୃଦେ ବନ୍ଧିଅଛ ତାହାକୁ'ର ଘଂଣାତ ରହିଛୁ । କବି ନଜରୁଲ ପୁଣି ସେଦିନ ମଧ୍ୟ ବଜ୍ର ନିର୍ଘୋଷ କଣ୍ଠରେ ଉଦ୍‌ଘୋଷଣ କରି କହିଛନ୍ତି—

"ଭୃଗୁ ସମ ଆମି ଭଗବାନ ବୁକେ
ଏଙ୍କି ଦେବୋ ପଦଚିହ୍ନ"

ଏପରି ସ୍ଥଳେ ମୁଁ ,ତ ମାତ୍ର ; ମୋର ଅଭିଯୋଗ ବାଢ଼ି ଦେଇ ଠିଆ ଫାଡ଼ିଦେବାର କଥା କହିଛି । ଗଡ଼ନାୟକଙ୍କ ଆଉ ବେଶୀ କିଛି ଆଲୋଚନା କରିବାକୁ ବୋଧହୁଏ ପସନ୍ଦ କଲେ ନାହିଁ, ଯାହାକି ତାଙ୍କର ଭାବ ଭଙ୍ଗୀରୁ ମୁଁ ବେଶ୍ ଲକ୍ଷ୍ୟ କରି ପାରୁଥାଏ । ତଥାପି ଶେଷକୁ ଏତିକି କହିଲେ, ଦିନ ଆସିବ ମୋ କଥାର ତାତ୍ପର୍ଯ୍ୟ ତୁମେ ନିଶ୍ଚୟ ଅଙ୍ଗେ ଅଙ୍ଗେ ଅନୁଭବ କରିବ ।

ସେଦିନ ତାଙ୍କର ଏ ତତ୍ତ୍ୱପୂର୍ଣ୍ଣ ତାତ୍ପର୍ଯ୍ୟର କଥା ମୋର ଜପାମାଳି ହୋଇଥାଏ । ବେଳେବେଳେ ଖାଲି ଚିନ୍ତା ଆସି ଧକ୍କା ମାରୁଥାଏ, କବିତାର ଶିରୋନାମା 'ଭଗବାନ ମୁଁ ତୁମକୁ ଠିଆ ଫାଡ଼ିଦେବି' କ'ଣ ଭୁଲ ହେଲା ? ନ ଦେଇଥିଲେତ ଚଳିଥା'ନ୍ତା । ପୁଣି ଅନ୍ୟ ମୁହୂର୍ତ୍ତରେ ମନକୁ ବିଗୁରି ଆସେ; ଯେ ଯାହାକୁ ବେଶୀ ଭଲ ପାଏ, ତାକୁଇତ ଗାଳି ମନ୍ଦ ଦିଏ—ବାଡ଼ିଆ ବାଡ଼ି କରେ । ତେଣୁ ଏଇ ନ୍ୟାୟରେ ଭଗବାନଙ୍କୁ ବେଶୀ ଆପଣାର ବା ନିଜର କରିବାର ଇଏ କ'ଣ ସମ୍ବୋଧନ ନୁହେଁ ? ତେବେ ଭୁଲ୍ ରହିଲା କେଉଁଠି ?

ମନ କଥା ମନରେ ଥାଏ । ୧୯୭୪ ମସିହା । ସେ ବର୍ଷ ଶ୍ରୀ ଜଗନ୍ନାଥଙ୍କ ରଥ ଯାତ୍ରାରେ ଧାରା ବିବରଣୀ (Running commentary) ଦେବା ପାଇଁ ମୁଁ କଟକ ଆକାଶବାଣୀ ତରଫରୁ ବଚ୍ଛା ଯାଇଥାଏ । ଆକାଶବାଣୀ କର୍ତ୍ତୃପକ୍ଷଙ୍କ ଠିଠିରେ କଡ଼ା ତାଗିଦା ଥାଏ-ଧାରା ବିବରଣୀ ଦେବାର ଘଣ୍ଟାକ ପୂର୍ବରୁ ପୁରୀ ରାଧାବଲ୍ଲଭ ମଠର କୋଠା ଉପର ରେଡ଼ିଓ ମଞ୍ଚରେ ଯେ କୌଣସି ମତେ ପହଞ୍ଚିବାକୁ ପଡ଼ିବ ।

ରଥଯାତ୍ରାର ପୂର୍ବଦିନ ରାତିରେ ନିଜକୁ ଯେତେ ଚେଷ୍ଟାକଲେ ମଧ୍ୟ ଧରକାଗ୍ରା କର୍ମ ଜଞ୍ଜାଳରୁ ମୁକ୍ତ ହୋଇ ପାରିଲି ନାହିଁ । ସେଦିନ ରାତିରେ ପୁରୀ ଯିବାକଥା ନୋହିଲା । ତେଣୁ ତହିଁ ଆରଦିନ ବଡ଼ି ସକାଳୁ ଶ୍ୱଶୁରଙ୍କର ଜିପ୍ ଧରି ଜିପ୍‌ରେ ଶ୍ୱଶୁର ଶ୍ରୀ ଭାବଗ୍ରାହୀ ସିଂହ, ଦୁଇଜଣ ଗୋସେଇଁଶାଶୁ , ମୋର ଶାଳକ ବିଜୟକୁମାର, ମୁଁ ଓ ମୋର ପରିବାର ପୁରୀ ଅଭିମୁଖେ ଯାତ୍ରା କଲୁ । ବାଟରେ କିଛି ବାଧାବିଘ୍ନ ନାହିଁ । ଜିପ୍ ଗାଡ଼ି ଅବାଧ ଗତିରେ ଗ୍ଲୁଲିଥାଏ । ପୁରୀରେ ପହଞ୍ଚିବାକୁ ମାତ୍ର ୧୨ ମାଇଲ ବାକି

ଅଛୁ, ଜିପ୍ ଗାଡ଼ିର ହଠାତ୍ ଗୋଳମାଳ ହେଲା । ସେତେବେଳକୁ ସକାଳ ସାଢ଼େ ୯ଟା ବେଳ । ଆକାଶ ମେଘାଛନ୍ନ, ବର୍ଷା କୁଣ୍ଡା ଝାଡ଼ୁଥାଏ । ଗାଡ଼ି ଆଉ ଆଗକୁ ପାଦେ ଚାଲିଲା ନାହିଁ । ଆମେ ସବୁ ସେତେବେଳକୁ ଗାଡ଼ିରୁ ଓହ୍ଲାଇ ବାହାରେ ଠିଆ ହୋଇ ଗଲୁଣି । କୁଣ୍ଡା ଝଡ଼ା ବର୍ଷା ଅମି ଅମି ଆସୁଥାଏ । ସେତେବେଳକୁ ଡ୍ରାଇଭର ଗାଡ଼ି ସଜଡ଼ା କାମରେ ଲାଗିଗଲାଣି । ଶ୍ୱଶୁର ଆମକୁ ଶୁଣେଇ କହୁଥାନ୍ତି, ଗାଡ଼ିର ସାମାନ୍ୟ ଗୋଳମାଳ ହୋଇଛି, ସାଙ୍ଗେ ସାଙ୍ଗେ ଠିକ୍ ହୋଇଯିବ । ଅଧ ଘଣ୍ଟା ଗଲା— ଘଣ୍ଟାଏ ଗଲା—ତଥାପି ଗାଡ଼ି ଠିକ୍ ହୋଇପାରିଲା ନାହିଁ । ସେତେବେଳକୁ ଦିନ ୧୦ଟା ହେଲାଣି । ଶ୍ୱଶୁର ବେଳକୁବେଳ ବିବ୍ରତ ହେଲେଣି ଗାଡ଼ିର ଏ ଅବସ୍ଥା ଦେଖି । ଅସଜଡ଼ା ଗାଡ଼ି ସଜଡ଼ା ହୋଇ ନ ପାରିବାରୁ ଶ୍ୱଶୁର ମୋତେ କହିଲେ, ଏତେତ ସରକାରୀ ଓ ବେସରକାରୀ ଗାଡ଼ି ଏବାଟେ ଯାଉଛି, କେଉଁଥିରେ ଚାଲିଯାଇ ତମେ ତମ ନିର୍ଦ୍ଦିଷ୍ଟ ସ୍ଥାନ ରାଧାବଲ୍ଲଭ ମଠରେ ଆଗରୁ ପହଞ୍ଚି ଯାଅ । ଆମେ ପଛରେ ଯାଇ ପହଞ୍ଚିବା । ମୁଁ ହିଁ କହି ମୁଣ୍ଡ ହଲାଇଲି ସତ; କିନ୍ତୁ ସରକାରୀ ଓ ବେସରକାରୀ ଗାଡ଼ିମାନଙ୍କରେ ଏତେ ଭିଡ଼ ଯେ ବହୁ ଚେଷ୍ଟା ସତ୍ତ୍ୱେ ବି ସେଥିରେ ଯାଇ ହେଲାନାହିଁ । ଏହିପରି ଭାବରେ ଏଣେ ଏଗାରଟା ବାଜିଲା । ବେଳକୁ ବେଳ ମୋର ମନ ଉଛନ୍ନ ହେଉଥାଏ । ଠିକ୍ ସମୟରେ ଆକାଶବାଣୀର ତାଗିଦା ଅନୁସାରେ ଆଉ ରାଧାବଲ୍ଲଭ ମଠରେ ପହଞ୍ଚି ପାରିବି କି ନାହିଁ ? ମନର ଏହି ଆନ୍ଦୋଳିତ ଅବସ୍ଥାରେ ଡ୍ରାଇଭର ଘୋଷଣା କଲେ, ଗାଡ଼ି ଠିକ୍ ହୋଇଗଲା । ଆମର ଆନନ୍ଦ କହିଲେ ନ ସରେ । ଆମେ ସମସ୍ତେ ତର ତର ହୋଇ ଗାଡ଼ିରେ ବସିଲୁ । ଆଉ ବେଳ କାହିଁ ? କୌଣସି-ମତେ ପୁରୀ ବଡ଼ ଦାଣ୍ଡରେ ପହଞ୍ଚିଲା ବେଳକୁ ଆଉ ଆଖି ପାଉ ନାହିଁ । କେଉଁଠି ଶୋଭଯ ପକାଇବାକୁ ଜାଗାଟିଏ ନାହିଁ । ଯେଉଁଆଡ଼େ ଚାହିଁ ଜନସମୁଦ୍ର । ମୋର ହଂସା ଉଡ଼ିଗଲା । ରାଧାବଲ୍ଲଭ ମଠକୁ ଯିବି କିପରି ? କିଛି ବୁଝି ପାରୁ ନ ଥିଲି ନାହିଁ । ରାଧାବଲ୍ଲଭ ମଠଠାରୁ ମାଇଲିଏ ଦୂରରେ ଜିପ୍ ଗାଡ଼ି ରହିଲା । ଯେଉଁଠି ସମସ୍ତେ ଓହ୍ଲାଇ ସେମିତ ଠିଆ ହୋଇ ରହିଲେ । ମୁଁ ଓ ମୋ'ର ଶାଳକ ବିଜୟ ସାହାସ କରି ଜନସମୁଦ୍ର ଭିତରେ ପଶି ଆମ ଲକ୍ଷ୍ୟସ୍ଥଳୀ ରାଧାବଲ୍ଲଭ ମଠଆଡ଼କୁ ମୁହାଁଇଲୁ । ନଗଲେ ନଚଳେ । ମୁଁ ଆଗକୁ ଆଗକୁ ଜନଗହଳି ଠେଲି ଚାଲିଥାଏ ଓ ବିଜୟ ମୋ ପଛେ ପଛେ । ପ୍ରାୟ ଆମେ ଚାଲିଶ/ପଚାଶ ହାତ ଆଗେଇଛୁ କି ନାହିଁ ଏପରି ଏକ ଭିଡ଼ ଭିତରେ ପଶିଗଲି ଯେ, ମୁଁ ପ୍ରାୟତଃ ଶ୍ୱାସରୁଦ୍ଧ ହୋଇଗଲି । ପାଟିରୁ କଥା ବାହାରିଲା-ନାହିଁ । ଆଗକୁ ଆଗେଇ ପାରୁନାହିଁ କି ପଛକୁ ଫେରି ପାରୁନାହିଁ-ନ ଯଯୌ ନ ତସ୍ଥୌ ଅବସ୍ଥା । ମରଣ ମୁହୂର୍ତ୍ତ ଆସି ପହଞ୍ଚିଗଲା ବୋଲି ବିଚାରି କେବଳ ଖନେଇ ଖନେଇ ବିଜୟ ଉଦ୍ଦେଶ୍ୟରେ କହିଲି, ବିଜୟରେ ! ଅପା ପ୍ରଭୃତିଙ୍କୁ କହିଦେବୁ ଆଉ ମୋର ଜୀବନରେ ଦେଖା ହେବ ନାହିଁ । ମୁଁ ଏଇଠି ମରିଗଲି ।

ତା'ପରେ ମୁଁ ପୁରାପୁରି ଅଚେତ । ଆଉ କଣ କଣ ଘଟଣା ଘଟିଲା ମୁଁ କହିପାରିବି ନାହିଁ । ତାହାର କିଛି ସମୟ ପରେ ମୁଁ ଦେଖେତ ସିଂହଦ୍ୱାର ପାଖରେ-ଯେଉଁଠି ଉତ୍କଳମଣିଙ୍କ ପ୍ରତିକୃତି ଅଛି, ସେହି ଅଳ୍ପ ଦୂରରେ ମୁଁ ପଡ଼ିଛି । ମୋର ସର୍ବାଙ୍ଗରୁ ଝାଳ ଗମ୍ ଗମ୍ ହୋଇ ବୋହି ପଡ଼ୁଛି । ମୋତେ ଦୁଇ ଗୃହରକ୍ଷୀ ବିଞ୍ଚଣାରେ ବିଞ୍ଚୁଛନ୍ତି ଓ ଜଣେ କେହି ମୋ ମୁହଁରେ ପାଣି ଛିଞ୍ଚୁଛନ୍ତି । ମୋର ଆସ୍ତେ ଆସ୍ତେ ଚେତା ଫେରିଆସୁଛି-ତା'ର ପ୍ରାୟ ଦଶ ପନ୍ଦର ମିନଟ୍ ପରେ ସମ୍ପୂର୍ଣ୍ଣ ସୁସ୍ଥ ଅନୁଭବ କଲି ଓ ମୁଁ ମୋ କଥା ଧିରେ ଧିରେ ଅନ୍ୟମାନଙ୍କୁ କହିଲି । ମୁଁ କିଏ ଓ ମୁଁ କ'ଣ ପାଇଁ ଆସିଛି । ଆଜି ଏଇ ପବିତ୍ର ରଥଯାତ୍ରାରେ କଟକ ବେତାରକେନ୍ଦ୍ର ତରଫରୁ ମୁଁ ଅନ୍ୟତମ ଧାରାବିବରଣୀ ପ୍ରଦାନକାରୀ । ଏ କଥା ଶୁଣି ମୋ ଆଡ଼କୁ ସମସ୍ତେ ଆଉଥରେ ବିସ୍ମୟ ସହକାରେ ଅନାଇଲେ । ଏ ସନ୍ଦର୍ଭରେ ମୋତେ ପୂର୍ବରୁ ମିଳିଥିବା କଟକ ବେତାରକେନ୍ଦ୍ରର ପ୍ରମାଣପତ୍ର ପକେଟ୍‌ରୁ କାଢ଼ି ଦେଖାଇଲି । ସେତେବେଳକୁ ସମୟ ପ୍ରାୟ ଦିନ ଗୋଟାଏ ହେବ । ରଥଙ୍କ ଗୃହପଟେ ଭୟଙ୍କର ପୋଲିସ କର୍ଡନ ହୋଇ ସାରିଥାଏ । ପୂର୍ବରୁ ପଡ଼ିଥିବା ଦୋକାନରୁ ବାହାରି ଧୀରେ ଧୀରେ ପୋଲିସ କର୍ଡନ ଆଡ଼କୁ ମୋତେ ସାଷ୍ଟାଙ୍ଗ କରୁଥିବା ଲୋକେ ମୁହାଁଇ ଆଣିଲେ । ପୋଲିସକୁ ମୋର ରଥଯାତ୍ରାର ଧାରାବିବରଣୀର ପ୍ରମାଣପତ୍ର ଦେଖାଇ ସେହି ପୋଲିସଙ୍କ ଘେର ଭିତରେ ରଥରଥ ବାଟଦେଇ ଆରପଟେ ରାଧାବଲ୍ଲଭ ମଠ ଦ୍ୱାର ମୁହଁକୁ ଯିବାକୁ ଉଦ୍ୟତ ହେଲି । ରାଧାବଲ୍ଲଭ ମଠର ସାମନା ଦରଜାବାଟ ନିକଟେଇ ଆସୁଥାଏ । ଏହି ସମୟରେ ରାଧାବଲ୍ଲଭ ମଠ ଉପରେ ରେଡ଼ିଓ ମଞ୍ଚରୁ ସେ ଦିନର ଅନ୍ୟତମ ଧାରା ବିବରଣୀ ପ୍ରଦାନକାରୀ ସହଯୋଗୀ ଶ୍ରୀଯୁକ୍ତ ହୃଦାନନ୍ଦ ରାୟ ଚିତ୍କାର କରି ଉଠିଲେ, ଆମର କେତେ ଖୋଜା ପଡ଼ିଛି-ଏଇତ ମୁରାରି ବାବୁ; ଧଇଁସଇଁ ହୋଇ ଆମ ଆଡ଼କୁ ଆସୁଛନ୍ତି । ତାଙ୍କର ଚିତ୍କାର ମୋର କାନରେ ବାଜିବାରୁ ମୁଁ ସେଇ ତଳୁ ହାତଉଠାଇ ସମସ୍ତଙ୍କୁ ମୋର ଆସିବାର ଅଭିବାଦନ ଜଣାଇଲି । ତା'ପରେ ରାଧା ବଲ୍ଲଭ ମଠର ସଦର ଦରଜା ଦେଇ ବହୁକଷ୍ଟରେ ମଠର ଛାତ ଉପରକୁ ଗଲି । ମଠ ଛାତରେ ପହଞ୍ଚିଲା ପରେ ଆକାଶ ପାତାଳ କେତେକଣ ଭାବିଗଲି । ଭକ୍ତ ଦାଶରଥିଙ୍କ ତ "ଜଗବନ୍ଧୁ ପରି ଜଣେ ସାମନ୍ତ ନାହିଁ ନାହିଁତ" କିମ୍ବା କବିସୂର୍ଯ୍ୟଙ୍କ "କେହି ସରିକି ପ୍ରଭୁ ପଣେ ନୀଳାଦ୍ରି କେଶରୀକି, ଯା'ଠାରେ ପୂରିଛି ଦୀନ ଦୁଃଖୀ ଦୟା, ନଖଠାରୁ ଶିଖା ସରିକି", ପୁଣି ମନେ ପଡ଼ିଲା ଜଗନ୍ନାଥଙ୍କ ଏଇ ଗରୁଡ଼ସ୍ତମ୍ଭ ପାଖରେ ସେ ଦିନର ଦୀନକୃଷ୍ଣ ଦାସ "କୃପାସିନ୍ଧୁ ବଦନ କରି ଅବଲୋକନ" ଗାଇ ଗାଇ କୁଷ୍ଠ ରୋଗରୁ ମୁକ୍ତ ହେଲେ । ପୁଣି ଆହୁରି ବିଚାର କଲି—ମୁଁ ତ ଠାକୁରଙ୍କୁ ଠିଆ ଫାଡ଼ିବା କଥା ଲେଖିଥିଲି, କାହିଁକି ତ ସେହି ରାଗରୋଷ ଅଭିମାନରେ ଠାକୁରତ ଆଜି ମୋତେ ଏଇ ମଉକାରେ ଶେଷ କରି ଦେଇଥାନ୍ତେ । ଅଣନିଶ୍ୱାସୀତ କରିଦେଲେ, ନିଃଶେଷ

କଲେ ନାହିଁ କିଆଁ ? ଏପରି ପରମ କାରୁଣିକ କିଏ ଅଛି, ସେଇ ଠାକୁରେ ଛଡ଼ା ? ମରଣ ମୁହଁକୁ ଠେଲି ଦେଇ ଦେଇ ପୁଣି ମୁକ୍ତ କରିଲେଇ ଆଣି ମୋତେ ଯେପରି ଉଚ୍ଚରେଇ କହିରେଇ ଚେତେଇଲେ—"ସର୍ବ ଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ" । ସେଡିକିବେଳେ ପୁଣି ମୋର କୁରୁସଭାରେ ଦ୍ରୌପଦୀଙ୍କର ଦୁଇହାତଟେକା ultimate surrender କଥା ମନରେ ନାଚି ଉଠିଲା । ପୁଣି ଏଇ ଘଟଣାର ପରେ ପରେ ମୁଁ ଲେଖି ଥିବା ଆଉ ଗୋଟିଏ କବିତାକୁ ଗୁଣୁଗୁଣୁ ହୋଇ ଗୁଣି ହେଲି । ସେ କବିତା ହେଲା—

"ମୁଁ ଜାଣିଚି
ଏଇଟା ମଧ୍ୟ ମୋର ଦୃଢ଼ ବିଶ୍ୱାସ
ହେ ଠାକୁରେ
ମୁଁ ଯଦି ତମକୁ ତୃପ୍ତ କରବାଲରେ
ହତ୍ୟା କରେ
ତୁମେ ମୋତେ ନିଶ୍ଚୟ କ୍ଷମା ଦେବ
କିନ୍ତୁ ଠାକୁରେ
ତୁମେ ମୋତେ କହ
ମୁଁ ଯଦି ତମକୁ କ୍ଷମା ଦିଏ
ତମେ କଣ ମୋତେ ତୃପ୍ତ କରବାଲରେ
ହତ୍ୟା କରି ପାରିବ ?
ନାଁ, ତମେ କେବେ ହତ୍ୟା
କରି ପାରିବ ନାହିଁ
ସେଇଥିପାଇଁ ତ ତମେ ଠାକୁର
ଆଉ ମୁଁ ହେଉଛି
ଅପରାଧୀ ମଣିଷ
ତମ କୃପା କରୁଣାର ପ୍ରାର୍ଥୀ

ତେବେ ୧୯୭୮ର ରଥଯାତ୍ରା ଓ ମୋର ରଥଯାତ୍ରାରେ ଧାରା ବିବରଣୀ ପ୍ରଦାନ ଏ ଜୀବନରେ ଅପାଶୋରି । କାରଣ ସେଦିନ ଜୀବନରେ ବଞ୍ଚିବାର ବାସନାରେ ବଞ୍ଚିତ ନହୋଇ ଉତ୍ତର ଜୀବନାୟନରେ ବାଞ୍ଛିତ ଫଳ ଲାଭ କରିଥିଲି ।

ପୁଣି କହି ରଖେ ସେଦିନ ଧାରା ବିବରଣୀ ଦେବାରେ ମୋର କୌଣସି ଅସୁବିଧା ହୋଇନାହିଁ । ଭଲରେ ଭଲରେ ମୋର ସେ ଦିନର କର୍ତ୍ତବ୍ୟ ଶେଷ ହୋଇଥିଲା ।

ସେ ଦିନର ସେଇ ସଜଳ ଓ ସକରୁଣ ମୁହୂର୍ତ୍ତକୁ ସମ୍ବଳ କରି ଠାକୁରଙ୍କ ସେବା ଓ ସ୍ମରଣ କରିବାରେ ମନପ୍ରାଣ ଢାଳି ଦେବାର ଚେଷ୍ଟା କରି ଆସିଛୁ । କେତେଦୂର ସଫଳ ହୋଇଛୁ, କହି ପାରିବିନି । ତାହାହିଁ ଠାକୁରଙ୍କର ବିଗ୍ରହକୁ ଛାଡ଼ି ଦେଇଛୁ । ପୁନଶ୍ଚ ଠିଆ ଫାଡ଼ି ଦେବାର କଥାଟାକୁ ପୁରାପୁରି ଛଳରେ ପକାଇ ଠାକୁରଙ୍କୁ କୋଳେଇ କାଖେଇ ଆପଣାର କରିବାକୁ ଆଗଭର ହୋଇ ଆସିଲି ବେଳେ ତାଂର ଚିନ୍ତା ଓ ଚେତନାର ସ୍ମାରକୀ ହେଲା—ଏଇ "କବିକଣ୍ଠେ ଶ୍ରୀ ଜଗନ୍ନାଥ"ର ସଂକଳନ । ସେ ଦିନର ଗଡ଼ନାୟକଜୀଙ୍କର କଥାର ତତ୍ତ୍ୱପୂର୍ଣ୍ଣ ତାତ୍ପର୍ଯ୍ୟ ଠାକୁରେ ମୋର ଅନୁଭବରେ ଆନ୍ତରିକ ଭାବେ ଶୁଣାଇଲେ, ଯାହା କି ଏଇ ଚଳନ୍ତି ଜୀବନରେ ଅଶ୍ରୁତପୂର୍ବ, ଅଭୂତପୂର୍ବ ଐତିହାସିକ ଘଟଣା ।

ପୁଣି ମୋର ସମ୍ପାଦକତ୍ୱରେ ଗତ ୧୯୭୧ ଅପ୍ରେଲ ୭/୮ ତାରିଖରେ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଅନୁଷ୍ଠିତ ଦୁଇଦିନିଆ 'ଜଗନ୍ନାଥ ଆଲୋଚନା ଚକ୍ର" ଉତ୍ସବରେ ମୁଁ ମଧ୍ୟ ଏଇ କଥା ଅତି ସ୍ପଷ୍ଟ ଭାବେ ସର୍ବସମକ୍ଷରେ ସ୍ୱୀକାର କରି, ଜଗନ୍ନାଥଙ୍କ ପ୍ରତି ମୋର ଅନ୍ତରର ଚରମ ଓ ପରମ ଅର୍ଘ୍ୟ ଅର୍ପଣ କରିଥିଲି ।

'କବିକଣ୍ଠେ ଶ୍ରୀଜଗନ୍ନାଥ' ସଂକଳନ ତଥା ନୀଳାଦ୍ରିଶ ଜଗନ୍ନାଥଙ୍କ ସମ୍ପର୍କରେ ଆଲୋଚନା କରିବାକୁ ଗଲାବେଳେ ଆହୁରି କେତେ ଯେ ଘଟଣା ଆସି ଆଖି ଆଗରେ ନାଚୁଛି, ସେ କଥା ପୁଣି ବର୍ଣ୍ଣନା କରି ବସିଲେ ପୋଥି ବା ପୁରାଣ ହେବ । ଯେଉଁ ଶ୍ରୀଜଗନ୍ନାଥ ବର୍ଣ୍ଣନାତୀତ, ତାଙ୍କୁ ବର୍ଣ୍ଣନା କରିବା କାହାର ଗୃହ ଅଛି ?

ଜଗନ୍ନାଥଙ୍କ ଧର୍ମ ଧାରଣା ଓ ଚିନ୍ତା ଚେତନା ଏ ଜାତିର ଅସ୍ଥିମଜ୍ଜାଗତ । ଜଗନ୍ନାଥଙ୍କୁ ଛାଡ଼ିଦେଲେ ଏ ଜାତିକୁ ଚିହ୍ନିବ କିଏ ? ସେଇଥିପାଇଁକି ସୁଦୂର ଅତୀତରେ ଏ ଜାତି ନିଜକୁ ଚିହ୍ନାଟ ଦେଉଥିଲା, ଜଗନ୍ନାଥ ଦେଶର ଲୋକ ବୋଲି । କେଉଁ ଆଦି କାଳରୁ ଜଗନ୍ନାଥ ଏ ଜାତି ସହିତ ସବୁ କ୍ଷେତ୍ରରେ ମିଶି ଆସିଛନ୍ତି ଯେ, ତାଙ୍କୁ ଉଖାରି ନିଖାରି ଦାହାର କରିବା କାଠିଗର ପାଠ ।

ଏ ସମସ୍ତ ଆଲୋଚନା ଉର୍ଦ୍ଧ୍ୱରେ ଶ୍ରୀଜଗନ୍ନାଥ ଯେ, ଏ ଜାତିର ନେତା, ନିୟନ୍ତା ଓ ନିୟାମକ ଏହା ସର୍ବବାଦୀ ସମ୍ମତ ।

ଜଗନ୍ନାଥ ଧର୍ମ, ସଂସ୍କୃତି ଓ ବୈଶିଷ୍ଟ୍ୟ ବିଗ୍ରହକୁ ନେଇବେଲେ ଆମକୁ ଏହା ସ୍ପଷ୍ଟ ଭାବରେ ମନେ ରଖିବାକୁ ପଡିବ ଯେ, ଜଗନ୍ନାଥ ଗୋଟିକର ଦେବତା ନୁହନ୍ତି, ସେ ସମଗ୍ର ଦେଶର କୋଟି କୋଟି ମଣିଷର ଦେବତା । ଏ ଜାତିର କେତେ ହସ କାନ୍ଦ, କେତେ ଲହୁ ଲୁହାଣ, କେତେ ହର୍ଷ ବିଷାଦ, କେତେ ଭାବ ଭାବାନ୍ତର, କେତେ

ଅଭାବ ଅନାଟନ, କେତେ ଦୁଷ୍କୃତି ଦୁର୍ଗତି, କେତେ ଉତ୍ଥାନ ପତନ ସତ୍ତ୍ୱରେ ଶ୍ରୀଜଗନ୍ନାଥ ଏ ଜାତିକୁ ତା'ର ବାହୁ ଯୁଗ୍ମ ତଳେ ତୋଳି ଧରିଛି । ଲଢ଼େଇ ଭିଡ଼େଇରେ ଦୁଇ ଶହ ଜଗା ବଳିଆ ଗତ ଅତୀତରେ କାଞ୍ଚି ଯୁଦ୍ଧଯାତ୍ରା କରି ଓଡ଼ିଶାର ଗଜପତିଙ୍କର ସମ୍ମାନକୁ ଯେ ଅକ୍ଷୁର୍ଣ୍ଣ ରଖିଥିଲେ, ସେ କଥା ହୁଏତ ଆଜି ଇତିହାସରେ ବନ୍ଦୀ ହେଲେ ମଧ୍ୟ ତାହା ଯେ କାଲି ସକାଳର କଥା; ତାହା ଶ୍ରୀଜଗନ୍ନାଥଙ୍କର ଚକାଡୋଳାକୁ ଥରେ ଅନେଇ ଦେଲେ, ତାହା ଜଳ ଜଳ ହୋଇ ଦିଶୁଯାଉଛି । ଧନ୍ୟ ଜଗନ୍ନାଥ ! ଧନ୍ୟ ତୁମର ମହିମା !

ଆଜି ଆମର ସାମାଜିକ ଜୀବନ ଏପରି ବ୍ୟକ୍ତିନିଷ୍ଠ ଓ ବ୍ୟକ୍ତି କୈନ୍ଦ୍ରିକ ଯେ, ପଡ଼ୋଶୀ ଘରେ କେହି ରୋଗ ଭୋଗରେ ଓ ଦୁଃଖ ଯନ୍ତ୍ରଣାରେ ହନ୍ତସନ୍ତ ହେଉଥିଲେ ମଧ୍ୟ, ସେଆଡ଼କୁ ଆମର ଦୃଷ୍ଟି ନାହିଁ । ଆମେ ନିଜେ ଗୃହୁଁ ଭଲରେ ରହିବା ଓ ଭଲରେ ଖାଇବା । ନିଜ ସ୍ୱାର୍ଥର କସ୍ରତ୍ ମାତ୍ର କରିବା—ଦିନକୁ ଦିନ ନିଜର ବ୍ୟାଙ୍କ ବ୍ୟାଲାନ୍ସ ବଢ଼ାଇବା । ପରାର୍ଥ ପାଇଁ ଚିନ୍ତା ନାହିଁ, ସେଠି ପରମାର୍ଥ ପୁଣି ଆସିବ କିପରି ? ଏପରି ସ୍ଥଳେ ଏ ସନ୍ଦର୍ଭରେ ରୁରାଲ୍ ଇଞ୍ଜିନିୟରିଙ୍ଗ କଲେଜ, ରାଉର୍‌କେଲା ଫିଜିକ୍ସ ଡିପାର୍ଟମେଣ୍ଟର ଡକ୍ଟର ବି ଏନ୍. ତିୱାରି ୧୯୭୯ ମସିହା 'ଭବନ୍ସ ଜର୍‌ନାଲ'ର ୨୫ ଭଲ୍ୟୁମ୍ ଓ ୨୧ ନମ୍ବର ସଂଖ୍ୟାର ୭୧ ପୃଷ୍ଠାରେ ଯାହା ପ୍ରକାଶ କରିଛନ୍ତି ତାହା ଏଠାରେ ବିଶେଷ ପ୍ରଣିଧାନ ଯୋଗ୍ୟ । ଶ୍ରୀ ତିୱାରି କହିଛନ୍ତି—

"Now-a-days hardly a day passes without our mass media reporting some inhuman atrocities perpetrated on fellow human being due to racial discrimination. Whenever I come across such news, the following incident comes to my mind at once. Although it occured nearly a decade ago, its sweet memories are as fresh in my mind as ever.

Back in 1969 I was a Research Assistant in Physics at the University of California, San Diego (U. S. A). On the same campus, an Indian friend of mine Shri Gopalakrishnan from Kerala, was studying for the M. S. degree in Oceanography.

In one of the courses my friend had to submit a term paper on which would depend the final grades, as there would be no other examinations in that course. My friend had selected an ambitious project for his term paper and on the eve of the dead line for submission which was 8 o' clock the next morning, his term paper was yet to be written and typed. He was desperate, since he did not know typing.

In desperation my friend talked to an American friend who was his class-fellow suggested, "Why don't you take my wife to your office after dinner to night. She is a good typist."

My friend could hardly believe his ears. But as there was no other way, he did exactly that. After the dinner, they went to the University. There my friend started writting the manuscript and after completing each page, he gave it to the girl for typing. Both of them worked there throughout the night and completed 40 typed pages of the term paper around 7. 30 in the morning. My friend was able to submit it just in time and the girl refused any payment for her extraordinary assistance.

ଏ କଥାର ତାତ୍ପର୍ଯ୍ୟ ହେଲା ମଣିଷ ପାଇଁ ମଣିଷର ସମବେଦନା, ସ୍ନେହ, ମମତା ଓ ମୈତ୍ରୀର ବନ୍ଧନ । ଯଦି ମଣିଷ ମଣିଷର ଦରକାରରେ ଆସି ନ ପାରିଲା, ତେବେ ସେ ମଣିଷର ବଞ୍ଚିବାର କି ଲାଭ ? ସେଥିପାଇଁ ଆଜି ମାନବିକତା ଓ ମଣିଷତାର ରୂପ, ରସ, ଗନ୍ଧରେ ମାନବବାଦ ପ୍ରତିଷ୍ଠା କରିବାକୁ ହେବ । ସ୍ନେହ, ମୈତ୍ରୀ, କରୁଣାର ସମନ୍ୱୟରେ ଏ ମାନବବାଦ ପ୍ରତିଷ୍ଠା ନ ହୋଇଲେ, ଏ ସମାଜ ସାତ ତାଳ ପଙ୍କରେ ବୁଡ଼ିଯିବ । ସେଥିପାଇଁ ଆଜିର ଅବକ୍ଷୟ ଓ କୋକୁଆ ଭୟ ଯନ୍ତ୍ରଣା; ଯାହାକି ବିକୃତ ନାମରେ ପରିଚିତ, ତାକୁ ଦୂରକୁ ହଟାଇବାକୁ ପଡ଼ିବ । ସେଥିପାଇଁ ଭାରତର

ଜଣେ ଶ୍ରେଷ୍ଠ ସାଂସ୍କୃତିକ ପୁରୁଷ ରାଜଗୋପାଳାଚାରୀ କହିଛନ୍ତି—

"Happiness may come in many ways but it always comes when one has done something for another and it has done good and when 'the other is glad. It does not come when one does something for one self.

—B. Journal Vol. 25 No. 23
Page 81 – June 17 to 30—1979

ତେଣୁ ଆଜିର ସଭ୍ୟତା ଓ ସଂସ୍କୃତି ଆମକୁ ଧର୍ମ ଓ ଭଗବାନଙ୍କ ଠାରୁ ଦୂରେଇ ଆଣିଛି ସତ ; ମାତ୍ର ବନମସ୍ତରେ ଆମକୁ ଧ୍ୱଂସାଭିମୁଖୀ କରିଛି । ଯେତେବେଳେ ଆଜିର ସଭ୍ୟତା Brought us further from God nearer to the dust. ସେତେବେଳେ ଆମକୁ ଆତ୍ମସମୀକ୍ଷା କରିବାକୁ ହେବ ଓ ଆତ୍ମ ସଚେତନ ହେବାକୁ ପଡ଼ିବ, କାହିଁକି ନା ମଣିଷ ଆଜି ନିଜ ନିଜ ଶକ୍ତିର ଆସ୍ଫାଳନ ଓ ଡିଣ୍ଡିମ ପିଟୁଥିଲେ ମଧ୍ୟ ତାହାର ସମସ୍ତ କ୍ରିୟାକଳାପ ଆଜି ମୂଲ୍ୟହୀନ; ଯେହେତୁ ମାନବବାଦ ଓ ଭଗବତ୍ ବିଶ୍ୱାସ ବ୍ୟତିରେକେ ଏ ମଣିଷ ସମାଜର ସ୍ଥିତି ଆଜି ଅସମ୍ଭବ । ସେଥିପାଇଁ ପାଶ୍ଚାତ୍ୟ ଜଗତର ବିଖ୍ୟାତ କବି T. S. Eliot କହିଛନ୍ତି—

"Blindly and vainly for man is a vain thing and man without God is a seed upon the wind, driven this way and that way and finding no space of ludgement and germination."

ତେଣୁ ଆଧୁନିକ ସଭ୍ୟତା ଓ ସଂସ୍କୃତି ପ୍ରତି T. S. Eliotଙ୍କ ଏ ପ୍ରକାର କଟାକ୍ଷ ଓ ଚେତାବନୀ ଆଜିର ପରିପ୍ରେକ୍ଷୀରେ ମଧ୍ୟ ପ୍ରଣିଧାନ ଯୋଗ୍ୟ । ତାହା ନ ହୋଇଥିଲେ ଦ୍ୱିତୀୟ ମହାଯୁଦ୍ଧ ପରେ ଧର୍ମକୁ ଅଫିମ ବୋଲି ଅବହେଳିତ କରି ଭାବ ପୂର୍ବ ସ୍ପୁଟଗାର ଯେଉଁ ସବୁ ଦେଶ ବୁଦ୍ଧ, ମହମ୍ମଦ ଓ ଯୀଶୁଖ୍ରୀଷ୍ଟଙ୍କ ଧର୍ମଧାରଣାକୁ ପ୍ରବଦ୍ଧଣ ପରିତ୍ୟାଗ କରିଥିଲେ, ସେମାନେ ଆଜି ସେହି ଧର୍ମ ଧାରଣାରେ ବିଶ୍ୱାସ ସ୍ଥାପନ କଲେଣି । ଏପରିକି ସେଠାରେ ରାଷ୍ଟ୍ର ସରକାରମାନେ ମଧ୍ୟ ତାଙ୍କର ଧର୍ମ-ଧାରଣାର ଆତ୍ମାନ୍ୱେଷଣ ପ୍ରତି କୌଣସି ବାଧା ବା ବିରୋଧ ସୃଷ୍ଟି ନ କରୁଥିବା ହିଁ ଅତୀବ ଗୁରୁତ୍ୱପୂର୍ଣ୍ଣ । ଅନ୍ୟର ମଧ୍ୟ ଆଶ୍ଚର୍ଯ୍ୟର କଥା ଏ ମଧ୍ୟରେ ସୋଭିଏତ୍ ରୁଷିଆର ଶାସନକର୍ତ୍ତା କୋସିକିନ୍ ମଙ୍ଗୋଲିଆରେ ଅନୁଷ୍ଠିତ ହେଉଥିବା ବୌଦ୍ଧ ଧର୍ମ

ସମ୍ମିଳନୀରେ ଯୋଗଦେବା ପାଇଁ ବେଦଗର ଧର୍ମଗୁରୁ ଦଲଇଲାମାଙ୍କୁ ଋଷିଆ ସରକାରେ ମଙ୍ଗୋଲିଆ ଯିବାପାଇଁ ଆମନ୍ତ୍ରଣ କରିଛନ୍ତି । ପୁନଶ୍ଚ ଖ୍ରୀଷ୍ଟୀୟ ଧର୍ମ ଜଗତର ମହାମାନ୍ୟ ଗୁରୁ ପୋପ୍ ପଲଙ୍କର ଧର୍ମ ପ୍ରତି ଆସ୍ଥା ନଥିବା ସାମ୍ୟବାଦୀ ଦେଶ ପୋଲଣ୍ଡରେ ତାଙ୍କ ପ୍ରବଚନ ଓ ଧର୍ମ ଚର୍ଚ୍ଚା ଶୁଣିବାପାଇଁ ଯେଉଁ ଦଶ ଲକ୍ଷ ଲୋକଙ୍କ ସମାବେଶ ହୋଇଥିଲା ତାହା ହିଁ ଆଜିର ଜଗତରେ ଏକ ଉଲ୍ଲେଖଯୋଗ୍ୟ ଘଟଣା । ତେଣୁ ଧର୍ମଧାରଣା ଓ ଅଧ୍ୟାତ୍ମିକ ଚିନ୍ତା, ଅଫିମ ନା ଅମୃତଭାବେ କାର୍ଯ୍ୟ କରୁଛି, ତାହା ମଧ୍ୟ ଆଜି ବିଶେଷଭାବେ ବିଚାରିବା କଥା ।

ତେଣୁ ଏଇ ପରିପ୍ରେକ୍ଷୀରେ ଜଗନ୍ନାଥ ଧର୍ମର ପ୍ରଧାନ ପରିକଳ୍ପନା ହେଲା, ବର୍ଣ୍ଣ ବିଦ୍ୱେଷର କୁପରିଣତି ଆଜି ସମଗ୍ର ମାନବ ସମାଜକୁ ପୃଥିବୀରେ ଧୂଳିସାତ୍ ନ କରୁ । ସେଥିପାଇଁ ଜଣେ ଆଲୋଚକ ତାଙ୍କ ଆଲୋଚନା ପ୍ରସଙ୍ଗରେ କହିଛନ୍ତି—ଯାହା ମଣିଷର ସମସ୍ୟା ତା'ର ସମାଧାନର ପଥ ଯେଉଁଠାରେ ଏକତ୍ର ଭାବରେ ଫୁଟାଯାଇଛି, ତାହା ହେଉଛି ଜଗତର ନାଥ ଜଗନ୍ନାଥଙ୍କର ସର୍ବଶ୍ରେଷ୍ଠ ଆଶୀର୍ବାଦ । ଜଗନ୍ନାଥ ଧର୍ମ ପଦ୍ଧତି ( Cult ) ହେଉଛି, ସମଗ୍ର ମାନବ ସମସ୍ୟା ଓ ସମାଧାନର ଏକ ଏକତ୍ର ପ୍ରତିଫଳନ । ଓଡ଼ିଆ ଜାତି ସେଦିନ ଜାଣି ପାରିଥିଲା, ଦିନେ ନା ଦିନେ ଏହି ବର୍ଣ୍ଣ ବିଦ୍ୱେଷର ଶିକାର ହେବ ମଣିଷ ଏବଂ ତାର ତୀବ୍ର ଜ୍ୱାଳାରେ ପୋଡ଼ି ଛାରଖାର ହୋଇଯିବ । ସେଥିପାଇଁ ସେ ସମଗ୍ର ମାନବ ସମାଜ ଆଗରେ ତାହାର ସମସ୍ୟା ସମାଧାନର ଚିତ୍ରକୁ ଜଗତର ନାଥ କରି ପ୍ରତିଫଳନ କରିଛି । ସାରା ପୃଥିବୀର ଲୋକଙ୍କୁ ସ୍ଥୂଳତଃ ତିନି ବର୍ଣ୍ଣରେ ବିଭକ୍ତ କରାଯାଇପାରେ । କଳା (ଶ୍ରୀ ଜଗନ୍ନାଥ), ଧଳା (ଶ୍ରୀ ବଳଭଦ୍ର) ହଳଦିଆ (ଶ୍ରୀ ସୁଭଦ୍ରା) । ଅନ୍ୟପକ୍ଷରେ ନିଗ୍ରୋ, ୟୁରୋପୀୟ ଓ ମଙ୍ଗୋଲିଆ ଯୋଗୁଁ ଆଜିର ପୃଥିବୀରେ ବର୍ଣ୍ଣ ବିଦ୍ୱେଷର କୁପ୍ରଭାବ ଅତ୍ୟନ୍ତ ସଭ୍ୟ ଦେଶମାନଙ୍କରେ ତୀବ୍ର ହୋଇ ଉଠିଲାଣି । କିନ୍ତୁ, ବହୁ ଆଗରୁ ଓଡ଼ିଆ ଏହି ସମସ୍ୟାର ସମାଧାନ କପରି ସହାବସ୍ଥାନ ନୀତି ଦ୍ୱାରା ଏହା ହେଉଛି, ଓଡ଼ିଆର ଆଗାମୀ ବିଶ୍ୱବାସୀଙ୍କ ପାଇଁ ସମସ୍ୟା ଓ ସମାଧାନର ଏକତ୍ରୀକରଣର ଚିତ୍ର ଯେପରି କୌଣସି ଚିତ୍ରକର ଏକାଠି ଅମାବାସ୍ୟା ଦିନରେ ପୂର୍ଣ୍ଣିମାର ପରିକଳ୍ପନା କରିପାରନ୍ତି । ଆଜି ସେଥିପାଇଁ ନୂତନ ପରିପ୍ରେକ୍ଷୀରେ ପ୍ରତ୍ୟେକ ମାନବର କର୍ତ୍ତବ୍ୟ ଆସିଯାଇଛି । ସମଗ୍ର ମାନବ ସମାଜରେ . ବର୍ଣ୍ଣ ବିଦ୍ୱେଷ ଧର୍ମଗତ ଭୂମିକା ଉପରେ ସଂଗ୍ରାମରତ ମାନବ ସମାଜର ରକ୍ତ ହୋରି ଖେଳ ବନ୍ଦ କରିବାକୁ ହେବ ଏବଂ ଆଜି ବଞ୍ଚିବାପାଇଁ ଜୀବନ ଆକାଶରେ କୁମାର ପୂର୍ଣ୍ଣିମାର ସୁନ୍ଦର ଝଲକ ଦରକାର ।

ବର୍ଣ୍ଣ ବିଦ୍ୱେଷର କାଳିମାମୟ ପ୍ରାଚୀରକୁ ଲଙ୍ଘି ଦେବାପାଇଁ ଯେଉଁଠାରେ ମଣିଷର ସଂଗ୍ରାମ ଚିରନ୍ତନ ଓ ସଜାଗ, ସେଇଠି କେବଳ ମାନବିକତା ବନ୍ଧନ ପଦ୍ଧତିମାନଙ୍କୁ

ଉଦ୍ଧାର କରିବାପାଇଁ ସେ ଦେଖା ଦେଇଛନ୍ତି, ଉଦ୍‌ବେଳିତ ଜନସମାଜର ଉଚ୍ଛଳ ତରଙ୍ଗ ମଧ୍ୟରେ ପତିତପାବନ ହୋଇ ।

ଏଇ ପରିସ୍ଥିତିରେ ସେତିକବେଳେ ବିଶ୍ୱର ମାନବ ଯେଉଁ ପଥ ପାଇଛନ୍ତି, ତାହା ହୋଇଛି ପତିତପାବନ ରଥଯାତ୍ରା, ସାମ୍ୟବାଦର ରଥଯାତ୍ରା, ପ୍ରତିକ୍ରିୟାଶୀଳ ଗୋଷ୍ଠୀ ଜାତି, ବର୍ଣ୍ଣ ବିଦ୍ୱେଷୀମାନଙ୍କୁ ନାଶ କରିବା ଯାତ୍ରା । ଜାତିଆଣ ବର୍ଣ୍ଣବିଦ୍ୱେଷ ନେଇ ବହୁ ଲୋକଙ୍କୁ ସାମାଜିକ ସାମିଆନାରୁ ବାହାର୍ କରିଦେବାର ଚେଷ୍ଟାକୁ ବ୍ୟର୍ଥକରିବାର ଯାତ୍ରା, ପତିତପାବନ ଯାତ୍ରା ।

ସ୍କନ୍ଦ ପୁରାଣର ଅନ୍ତର୍ଗତ ଉତ୍କଳ ଖଣ୍ଡର ଷଷ୍ଠ ଅଧ୍ୟାୟରେ ଅଛି— ମୁନିମାନେ ପଚାରିଲେ, "ହେ ଦ୍ୱିଜ ଶ୍ରେଷ୍ଠ ଜୈମିନୀ ! କେଉଁ ଦେଶରେ ନାରାୟଣ ଦାରୁରୂପୀ ହୋଇ ପ୍ରକାଶ ପାଉଛନ୍ତି—କେଉଁ ଦେଶରେ ସେହି ପୁରୁଷୋତ୍ତମ କ୍ଷେତ୍ର ଅଛି, ତାହା ଆମ୍ଭମାନଙ୍କୁ କହନ୍ତୁ ।" (ଉ. ଖ.—୬—୧)

ଜୈମିନୀ କହିଲେ—"ଏହି ଦକ୍ଷିଣ ସମୁଦ୍ର ଗାମିନୀ ଋଷିକୁଲ୍ୟା ନଦୀଠାରୁ ଉତ୍ତର ବର୍ତ୍ତିନୀ ସୁବର୍ଣ୍ଣରେଖା ଓ ମହାନଦୀ ମଧ୍ୟରେ ଯେଉଁ ଯେଉଁ ଦେଶ ଅଛି ସେହି ସମ୍ପ୍ରଦାୟ ଦେଶ ହିଁ ପୁରୁଷୋତ୍ତମ କ୍ଷେତ୍ର । ବର୍ତ୍ତମାନ ତାହା ହିଁ ପୃଥିବୀର ଭୂସ୍ୱର୍ଗ ବୋଲି ଖ୍ୟାତ ।"
(ଉ. ଖ.—୬-୨୭-୨୮)

ଜୈମିନୀ କହିଲେ—

"ଉତ୍କଳୋ ନାମ ଦେଶୋଽସ୍ତି ଖ୍ୟାତଃ ପରମପାବନଃ
ଯତ୍ର ତୀର୍ଥାନ୍ୟନେକାନି ପୁଣ୍ୟାସ୍ୟତ ନାନି ଚ ।
ଦକ୍ଷିଣସ୍ୟୋ ଦଧେସ୍ତିରେ ସଃ ତୁ ଦେଶ ପ୍ରତିଷ୍ଠିତଃ
ଯତ୍ରସ୍ଥିତା ବୈସୁରୁଷାଃ ସଦାଗୃର ନିଦର୍ଶନାଃ ।
ବ୍ରହ୍ମଧ୍ୟନ ସମ୍ପନ୍ନା ଯଜ୍ୱାନୋ ଯତ୍ର ଭୂସୁରାଃ
ସୃଷ୍ଟାଦୌ ନିତବୋ ବେଦାଃ ବେଦଶାସ୍ତ୍ର ପ୍ରବର୍ତ୍ତିକାଃ ।
ଅଷ୍ଟାଦଶାନାଂ ବିଦ୍ୟାନାଂ ବିଧାନଂ ସମ୍ପକୀର୍ତ୍ତିତଂ
ଗୃହେ ଗୃହେ ନିବସତି ଲକ୍ଷ୍ମୀନାରାୟଣାଙ୍କସ୍ୟା ।
ଲଜ୍ଜାଶୀଳ ବିନୀତାଶ୍ଚ ଆଧିବ୍ୟାଧି ବିବର୍ଜ୍ଜିତାଃ
ପିତୃ ମାତୃରତାଃ ସତ୍ୟବାଦନୋ ବୈଷ୍ଣବା ଜନାଃ ।
ନ ଗୃହ ବୈଷ୍ଣବଃ କଶ୍ଚିତ୍ ନାସ୍ତିକୋ ବାପି ବର୍ତ୍ତତେ
ଯତ୍ରେ ପରହିତା ସ୍ତ୍ରଜ ନ ଲୁବ୍‌ଧା ନ ଶଠାଃ ଖଳାଃ

ଦୀର୍ଘାୟୁଷସ୍ତତ୍ର ଜନାଃ ସ୍ତ୍ରୀପୁଂସ୍ତ ପତିଦେବକାଃ
ସୁଶୀଳା ଧର୍ମଶୀଳାସ୍ତ ହ୍ରୀପାଗୁଣସନ୍ ଭୂଷିତାଃ ।
ରୂପ ଯୌବନ ଗର୍ବାଢ୍ୟାଃ ସର୍ବାଲଙ୍କାର ଭୂଷିତାଃ ।
କୁଳଶୀଳ ବୟୋ ବୃତ୍ତାନୁ ରୂପାଚ୍ଚାର ଚଞ୍ଚବଃ ।

(ଉ. ଖ.—୭-୬-୯)

ଜୈମିନୀ କହିଲେ— ଉତ୍କଳ ନାମରେ ଗୋଟିଏ ପରମ ବିଖ୍ୟାତ ଦେଶ ଅଛି । ସେଥିରେ ଅନେକ ପୁଣ୍ୟ ସ୍ଥାନ ଓ ତୀର୍ଥ ସ୍ଥାନ ବର୍ତ୍ତମାନ । ସେହି ଦେଶଟି ଦକ୍ଷିଣ ସମୁଦ୍ରତୀରରେ ଅବସ୍ଥିତ । ସେଠାକାର ଲୋକମାନେ ସଦାଚାରରେ ବିଖ୍ୟାତ । ବ୍ରାହ୍ମଣମାନେ ବେଦଜ୍ଞ, ବେଦାଧ୍ୟୟନ ତତ୍ପର ଓ ଯଥାବିଧି ଯାଗକର୍ତ୍ତା । ସୃଷ୍ଟି କାଳର ଆରମ୍ଭରୁ ସେଠାରେ ବେଦ ବିହିତ ଯାଗ ଯଜ୍ଞାଦି ସମାନ ଭାବରେ ହୋଇ ଆସୁଅଛି । ସେହି ଦେଶ ଅଷ୍ଟାଦଶ ପ୍ରକାର ବିଦ୍ୟାର ଖଣି ବୋଲି କୀର୍ତ୍ତିତ ହୋଇଥାଏ । ଲକ୍ଷ୍ମୀଦେବୀ ନାରାୟଣଙ୍କର ଆଜ୍ଞାନୁସାରେ ସେଠାରେ ଗୃହେ ଗୃହେ ବିରାଜମାନ । ସେଠାକାର ସମସ୍ତେ ବୈଷ୍ଣବ ଧର୍ମ ପରାୟଣ, ସତ୍ୟବାଦୀ, ମାତୃ ପିତୃ ଭକ୍ତ, ଲଜ୍ଜାଶୀଳ ଓ ବିନୟୀ । ଆଧି ବ୍ୟାଧିର କ୍ଲେଶ କାହାରି ନାହିଁ । ସେଠାରେ ବୈଷ୍ଣବମାନଙ୍କ ମଧ୍ୟରେ କପଟ ଧର୍ମୀ ବା ନାସ୍ତିକ କେହି ନାହାନ୍ତି । ସମସ୍ତେ ପରହିତୈଷୀ । ଲୋଭୀ, ଶଠ ବା ଖଳ ପ୍ରକୃତିର ଲୋକ ସେଠାରେ ମୂଳରୁ ନାହାନ୍ତି । ସେଠାରେ ସମସ୍ତେ ଦୀର୍ଘଜୀବୀ । ରମଣୀମାନେ ପତିପରାୟଣା, ସୁଶୀଳା, ଧର୍ମଚାରିଣୀ ଓ ଲଜ୍ଜା ଓ ସଚ୍ଚରିତ ଗୁଣ ଭୂଷିତା । ସେହି ଦେଶର ସକଳ ରମଣୀ ହିଁ ରୂପଯୌବନ ଗର୍ବିତା, ବିବିଧ ଭୂଷଣ ଭୂଷିତା, କୁଳ-ଶୀଳ ଓ ବୟସ ଅନୁରୂପ ସଦାଚାର ସମ୍ପନ୍ନା ।"

ବଙ୍ଗ ଦେଶର ବାସୁଦେବ ସାର୍ବଭୌମ ଓ ତାଙ୍କର ଭାଇ ବିଦ୍ୟା ବାଚସ୍ପତି ତାଙ୍କର ଗୁରୁଙ୍କୁ ପଚାରିଲେ— ବୈଦିକ ଧର୍ମ ସାଧନା ଆଉ କପରି ହେବ ? ଗୁରୁ-ଗୋସାଇଁ କହିଲେ—

"ଦାରୁଜଳ ରୂପ କୃଷ୍ଣ ପ୍ରକଟ ସମ୍ପ୍ରତି,
ଦରଶନ ସ୍ନାନ କରେ ଜୀବେର୍ ମୁକତି
ଦାରୁବ୍ରହ୍ମ ରୂପେ ସାକ୍ଷାତ୍ ଶ୍ରୀ ପୁରୁଷୋତ୍ତମ
ଭାଗୀରଥୀ ସାକ୍ଷାତ୍ ହୟ ଜଳବ୍ରହ୍ମ ସମ
ସାର୍ବଭୌମକର ଦାରୁ ବ୍ରହ୍ମ ଆରାଧନା
ବାଚସ୍ପତି କର ଜଳବ୍ରହ୍ମରେ ସେବନ ।

(ଶ୍ରୀ ଚୈତନ୍ୟ ଚରିତାମୃତ ମଧ୍ୟ ୧୫ଶ ଅଧ୍ୟାୟ)

ଅର୍ଥାତ୍ ଆର୍ଯ୍ୟାବର୍ତ୍ତରେ ବର୍ତ୍ତମାନ ବୈଦିକ ଧର୍ମ ସାଧନାର ତୃତୀୟ ପନ୍ଥା ନାହିଁ । ପ୍ରଥମ ପନ୍ଥା ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀଜଗନ୍ନାଥ ଦର୍ଶନ । ଦ୍ୱିତୀୟ ପନ୍ଥା— ଗଙ୍ଗାମାତାଙ୍କ ଆରାଧନା ।

ଉତ୍କଳ ଖଣ୍ଡର ୨୮ଶ ଅଧ୍ୟାୟରେ ଶ୍ରୀ ବ୍ରହ୍ମା ଇନ୍ଦ୍ରଦ୍ୟୁମ୍ନଙ୍କୁ କହୁଅଛନ୍ତି—

"ଦାରବୀ ମୂର୍ତ୍ତିରେଷାନ୍ତ ପ୍ରତିମା ବୁଦ୍ଧିରନବୈ
ମା ଭୂତେ ନୃପଶାର୍ଦ୍ଦୂଳ ! ପରବ୍ରହ୍ମା କୃତସ୍ତ୍ୱୟାଂ । ୩୮ ।
ଖଣ୍ଡନାତ୍ ସର୍ବ ଦୁଃଖାନାଂ ମଖଣ୍ଡାନନ୍ଦ ଦାନତଃ
ସ୍ୱତ୍ରୀବାଦ ଦାରୁରୂପେ ହି ପରବ୍ରହ୍ମାଭି ଧୀୟତେ । ୩୯ ।
ଇତ୍ଥଂ ଦାରୁଦାୟୋ ଦେବଶ୍ଚତୁର୍ବେଦାନୁସାରତଃ
ସ୍ରଷ୍ଟା ସଜଗତାଂ ତସ୍ମାଦାତ୍ମାନଶ୍ଚାପି ସୃଷ୍ଟବାନ୍ ।
ବେଦବ୍ରହ୍ମ ପରଂବ୍ରହ୍ମ ନାନୟୋର୍ଭେଦ ଇଷ୍ୟତେ । ୪୦ ।

ଅର୍ଥାତ୍ ହେ ନୃପଶାର୍ଦ୍ଦୂଳ ! ଜଗନ୍ନାଥଙ୍କ ଏହି ଦାରୁମୟୀ ମୂର୍ତ୍ତିରେ ଆପଣଙ୍କର ପ୍ରତିମା ବୁଦ୍ଧି ହେବା ଉଚିତ ନୁହେଁ । ସର୍ବ ଦୁଃଖ ଖଣ୍ଡନ ଓ ଅଖଣ୍ଡ ଆନନ୍ଦ ଦାନ ହେତୁ ଏହି ମୂର୍ତ୍ତି ସାକ୍ଷାତ୍ ପରବ୍ରହ୍ମାକୃତ ବୋଲି ଜାଣି ରଖନ୍ତୁ । ମନୀଷୀମାନେ ପରବ୍ରହ୍ମଙ୍କୁ "ଦାରୁବତ୍" ବୋଲି କହନ୍ତି । ଚତୁର୍ବେଦ ଅନୁସାରେ ବ୍ରହ୍ମରୂପୀ ଦେବ ନାରାୟଣ ଯେ ଏହି ଦାରୁମୟ, ତାହା ସମସ୍ତେ ଜାଣନ୍ତି ।

ଶ୍ରୀଜଗନ୍ନାଥ ଏହି ଦାରୁମୟୀ ମୂର୍ତ୍ତି ବା ଦାରୁଦେବତା ହେଲେ ମଧ୍ୟ ବିଭିନ୍ନ ଧର୍ମାବଲମ୍ବୀ, ବିଭିନ୍ନ ଧର୍ମମତର ଉଚ୍ଚ ବ୍ୟବସ୍ଥାପକମାନେ ନିଜ ଧର୍ମର ଆଢ଼ୁଆଳରେ ଜଗନ୍ନାଥଙ୍କୁ ଘୋଡ଼ାଇବାକୁ ବାରମ୍ବାର ଚେଷ୍ଟାକରି ଆସିଛନ୍ତି । ବୌଦ୍ଧମାନେ କହୁଛନ୍ତି ବୁଦ୍ଧ, ଜୈନମାନେ କହୁଛନ୍ତି ଜିନ, ଗାଣପତ୍ୟମାନେ କହୁଛନ୍ତି ଗଣପତି, ଶୈବମାନେ କହୁଛନ୍ତି ଶିବ, ଶାକ୍ତମାନେ କହୁଛନ୍ତି ଭୈରବୀ, ବୈଷ୍ଣବମାନେ କହୁଛନ୍ତି ବିଷ୍ଣୁ, କିନ୍ତୁ ସେ କାହାରି ନୁହନ୍ତି, ପୁଣି ସମସ୍ତଙ୍କର । ଏହାହିଁ ହେଉଛି ଜଗନ୍ନାଥଙ୍କର ଗୂଢ଼ ରହସ୍ୟ । ସେ ଗୂଢ଼ ରହସ୍ୟ ଭେଦ କରିବା ପାଇଁ ଆଜି ସମସ୍ତେ ଗବେଷଣାରତ । ଯେ ନିଜେ ରହସ୍ୟାବୃତ, ତାହା ଉପରେ କ'ଣ ଗବେଷଣା ସମ୍ଭବ ?

ଏଇଥିପାଇଁ ଜଗନ୍ନାଥଙ୍କ ରହସ୍ୟ ସମ୍ପର୍କରେ କୁହାଯାଇଛି—

If we devide the egg breadthwise into three, we will get two semiovals on two extremeties and an oval

in the middle. The Trinity are the first manifestation of existence and each of the Trio represents an active principle. The Mundane egg is a shape. We can envisage but not an actual existence Pradhan (otherwise known as Prakrity). Purush and Kala are the Trio and are the first to exist··· One is therefore, led to think that the Trio, Jagannath, Balaram and Subhadra are the mystic representations of these three fundamental aspects of Vishnu

—Mysticism in the Temple of Jagannath at Puri—by Servorum Ch. III pp. 45 and Ch. II pp. 21.

ମହାମଣ୍ଡଳରେ ଏପରି ଠାକୁର କାହିଁ ? ଯୁଗେ ଯୁଗ ବ୍ୟାପୀ କିଏ କେତେ ରୂପରେ ଓ କେତେ ପ୍ରକାର ଡ଼ାକଛି ତାହାର କଳନା ନାହିଁ । ତଥାପି ସେହି ଶ୍ରୀ ଜଗନ୍ନାଥ ତାଙ୍କୁ ଯେମିତି ଯେଉଁ ରୂପରେ ଯିଏ ଦେଖିବାକୁ ଚାହିଁଛି, ( "ମୋତେ ସେହି ରୂପ ଦେଖାଅ ହରି" ) ନ୍ୟାୟରେ ସେହି ରୂପରେ ସେ ସେମାନଙ୍କୁ ଦେଖା ଦେଇଛନ୍ତି ।

ତାଙ୍କ ପାଖକୁ ନାନକ, କବୀର, ମାଧ୍ୱାଚାର୍ଯ୍ୟ, ବଲ୍ଲଭାଚାର୍ଯ୍ୟ; ଶଙ୍କର, ନିମ୍ବାର୍କ, ବିଷ୍ଣୁସ୍ୱାମୀ ଓ ଚୈତନ୍ୟ ସମସ୍ତେ ଆସିଛନ୍ତି । ସେ ସମସ୍ତଙ୍କୁ ଆପଣାର କରି କୋଳେଇ ନାଖେଇ ନେଇଛନ୍ତି । ତେଣୁ ଶ୍ରୀଜଗନ୍ନାଥ ହିଁ ଏକମାତ୍ର ଠାକୁର ଏ ବିଶ୍ୱ ବ୍ରହ୍ମାଣ୍ଡରେ ଯାହାଠାରୁ ହିଁ, କେବଳ ସମାଜବାଦର ଚିନ୍ତା-ଚେତନାର ଚୈତିକ ତାଲେ ତାଲେ ଝୁପଟି ଚାଲିଛି, ଏ ବିଶ୍ୱ ମଣିଷକୁ (ବସୁଧୈବ କୁଟୁମ୍ବକଂ) ନୀତି, ସ୍ନେହ ଓ ଗୀତରେ ଟାଣ କରି ବାନ୍ଧି ରଖିବାକୁ, କେବଳ କ୍ଷଣକ ପାଇଁ ନୁହେଁ, ଯୁଗ ଯୁଗ ଯୁଗାନ୍ତର ଲାଗି । ଏହି ହେଉଛି ଜଗନ୍ନାଥ ଧର୍ମର ଧାରା; ବିଶ୍ୱ ସଂସ୍କୃତିକୁ ଜଗନ୍ନାଥ ସଂସ୍କୃତିର ଅମଳିନ ଓ ଅବିସ୍ମରଣୀୟ ଦାନ ।

ଏଇଠି ଗୋଟିଏ କଥା ଉଲ୍ଲେଖ କରେ । ସେ କଥା ହେଲା, କୌଣସି ଏକ ମୁହୂର୍ତ୍ତରେ ଜଣେ ବିଷ୍ଣୁଭକ୍ତ ତାଙ୍କ ମତରେ ଘୋଷଣା କଲେ—ଏଇଠି ହାତୀ ପଛକେ ମୋତେ ମାଡ଼ି ଚକଟି ଦେଉ, ମୁଁ ମୋ ଜୀବନ ରକ୍ଷା ପାଇଁ ଶିବ ମନ୍ଦିରରେ ଆଶ୍ରୟ ନେଇ ପାରିବି ନାହିଁ । (ଯଦିଓ ଶିବ ମନ୍ଦିରରେ ପଶିଗଲେ ହାତୀ ଦାଉରୁ

ରକ୍ଷା ପାଇବ ) । ଏଭଳି ଦୃଷ୍ଟାନ୍ତକୁ ଟିକେ ସ୍ମରଣ କଲେ ବେଶ୍ ଜଣାପଡ଼େ, ପରସ୍ପର ଧର୍ମ ଓ ଠାକୁରଙ୍କୁ ଆଣି କରି, କି ଘୃଣା ଓ ବିଦ୍ୱେଷ ଭାବ······ଈର୍ଷାର ନିଆଁ ଝୁଲି ଯେପରି ଝରି ପଡୁଛି । ବିଷ୍ଣୁ ଭକ୍ତ କେବଳ ବିଷ୍ଣୁଙ୍କୁ ଓ ଶିବଭକ୍ତ କେବଳ ଶିବଙ୍କୁ ପୂଜା କରିବ, କିନ୍ତୁ ତା'ଛଡ଼ା ଆଉ କାହାକୁ ନୁହେଁ । ଆଉ କାହାକୁ ପୂଜା କଲେ ସେ ଧର୍ମଦ୍ରୋହୀ ହେଲା, ଜାତିପାଙ୍କ୍ତିରୁ କଟିଗଲା । ତାକୁ ନିଆଁ ପାଣି ବାରଣ । "କିନ୍ତୁ ସେ ଦିନର ଧର୍ମର ଗଣ୍ଡି ଭିତରେ ଏ ପ୍ରକାର ଆଭିଜାତ୍ୟର ଆସ୍ଫାଳନ, ଜଗନ୍ନାଥଙ୍କ ପାଖରେ କାହିଁ କିଛି ନାହିଁ ।" ଜଗନ୍ନାଥର ଜାଦୁମନ୍ତ୍ରବି ଏ ସବୁ ସଙ୍କୀର୍ଣ୍ଣ ଧର୍ମର ବିଷକୁ ଓପାଡ଼ି ଫୋପାଡ଼ି ଦେଲା । ଧର୍ମର ବିଷଦାନ୍ତ ସବୁ ଝଡ଼ି ପଡ଼ିଲା, ସମସ୍ତେ ଜଗନ୍ନାଥଙ୍କୁ କୁଣ୍ଢାଇଲେ ଆପଣାର କରି । ଜଗାକାଳିଆର କି ଯାଦୁକରି ସ୍ପର୍ଶ ! ଯିଏ ଥରେ ତାକୁ ଦେଖିଦେଲା, ତା' ପଛେ ପଛେ ଗୋଡ଼ାଇଲା, ତାକୁ ସମ୍ପୂର୍ଣ୍ଣ ଭାବେ ତା'ର ପାଖରେ ମିଶାଇ ଦେବାକୁ, ନିଃଶେଷ କରିବାକୁ, ମୂଳରୁ ଚୂଲ ପର୍ଯ୍ୟନ୍ତ । ଏଇଭଳି ଆଜିର ଆମ ଠାକୁର ହେଲେ ଜଗନ୍ନାଥ । ଓଡ଼ିଶା କହିଲେ ଜଗନ୍ନାଥ—ଜଗନ୍ନାଥ କହିଲେ ଓଡ଼ିଶା । ସେଥିପାଇଁ ବ୍ରିଟିଶ ପାର୍ଲିଆମେଣ୍ଟରେ ୧୯୩୬ ମସିହାରେ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ଭାବେ ଗଠନ କରିବାପାଇଁ ତତ୍କାଳୀନ ଭାରତ ସଚିବ "ସାର ସାମୁଏଲ ହୋ" ଯେଉଁ ଆଦେଶ ନାମାରେ ଚିଠା ପ୍ରସ୍ତୁତ କରିଥିଲେ ସେଠାରେ ସେ ଘୋଷଣା କରିଥିଲେ—

"Orissa, the land of Jagannath with one language and one Race"—ପୁଣି ସେଇ ଓଡ଼ିଶା'ର ନୂତନ ପ୍ରଦେଶର ଜନ୍ମ ଦିନରେ ତତ୍କାଳୀନ ଇଂଲଣ୍ଡର ରାଜା ଏଡ୍‌ୱାର୍ଡ ଅଷ୍ଟମ (Edward VIII) ନିମ୍ନମର୍ମରେ ତାଙ୍କର ଶୁଭେଚ୍ଛା ବାର୍ତ୍ତା ପଠାଇ କହିଥିଲେ—

The long cherished and natural desire of the Oriya people to be re-united after centuries of dependence upon other administrations is thus fulfilled. It is my hope and expectation that the new Province will draw inspiration from the past and will prove worthy of the historic tradition of the land of Orissa.

ଏ ସନ୍ଦର୍ଭରେ ଜଗନ୍ନାଥଙ୍କର ସାର୍ବଜନୀନତା ଓ ସାର୍ବଭୌମତ୍ୱ କିପରି ପ୍ରତିଷ୍ଠିତ ହୋଇଥିଲା, ତାହାହିଁ ବିଶେଷ ଭାବେ ବିସ୍ମୟର୍ଯ୍ୟ । ଯେଉଁ ସିଦ୍ଧ ସାଧକଗଣ ଜଗନ୍ନାଥଙ୍କ ପାଖକୁ ନିଜର ଧର୍ମଧ୍ୱଜା ଧରି ଆସିଛନ୍ତି ଓ ସେମାନେ କିପରି ଏଇଠି ଜଗନ୍ନାଥଙ୍କ

ପାଖରେ ମିଳିତ ବା ମିଳାଇ ଯାଇଛନ୍ତି, ତାହାର ତ ବର୍ଣ୍ଣନା କରାଯାଇଛି । କିନ୍ତୁ ଯେଉଁ ସିଦ୍ଧ ସାଧକମାନେ କୌଣସି କାରଣରୁ ଜଗନ୍ନାଥଙ୍କ ପାଖକୁ ଆସି ପାରି ନାହାନ୍ତି, ସେମାନଙ୍କର ମନୋବୃତ୍ତି ବା ମନୋଭାବ କେଉଁ ପର୍ଯ୍ୟାୟରେ ପର୍ଯ୍ୟବେସିତ, ସେ କଥାଟି ଏଠି ଉଲ୍ଲେଖ କଲେ ଜଗନ୍ନାଥଙ୍କର ମହିମା ଓ ମହତ୍ତ୍ୱ ଯେ ଆହୁରି ମହତ୍ତର ହୋଇ ଉଠିବ, ଏଥିରେ ଦ୍ୱିମତ ନାହିଁ । ଏ ସମ୍ପର୍କରେ ରାମକୃଷ୍ଣ ପରମହଂସଙ୍କ ଜଣେ ପ୍ରଧାନ ଶିଷ୍ୟ ସ୍ୱାମୀ ଭକ୍ତି ରୂପାନନ୍ଦ କହିଛନ୍ତି—

"ଶତାବ୍ଦୀ ଶତାବ୍ଦୀ ଧରି ଭାରତ ବର୍ଷର ସାଧୁ, ସନ୍ନ୍ୟାସୀ ଓ ସନ୍ଥ ମହାତ୍ମାଗଣ ଅନ୍ୟାନ୍ୟ ପ୍ରଦେଶରୁ ପୁରୀ ଧାମକୁ ଛୁଟି ଆସୁଥିଲେ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଓ ଏହି କ୍ଷେତ୍ରରେ ରହି ସ୍ୱ ସ୍ୱ ଧର୍ମମତ ପ୍ରଚାର ଓ ପ୍ରତିଷ୍ଠା କରିବା ପାଇଁ । ସେମାନଙ୍କ ମଧ୍ୟରେ ଶଙ୍କର, ରାମାନୁଜ, ନାନକ ଓ ମହାପ୍ରଭୁ ଶ୍ରୀ ଚୈତନ୍ୟ ଅନ୍ୟତମ । କିନ୍ତୁ ବିଗତ ଶତାବ୍ଦୀରେ ସର୍ବଶ୍ରେଷ୍ଠ ମହାପୁରୁଷ ଯାହାଙ୍କୁ ମହାଯୋଗୀ ଶ୍ରୀ ଅରବିନ୍ଦ, ସ୍ୱାମୀ ବିବେକାନନ୍ଦ ଓ ମହାତ୍ମାଗାନ୍ଧୀ ପ୍ରମୁଖ ସିଦ୍ଧ ସାଧକଗଣ ଅବତାର ପୁରୁଷ ବୋଲି ମୁକ୍ତ କଣ୍ଠରେ ଘୋଷଣା କରିଛନ୍ତି, ସେଇ ପରମପୁରୁଷ ଶ୍ରୀ ରାମକୃଷ୍ଣ ପରମହଂସ ଦେବ ଭାରତର ବହୁ ତୀର୍ଥ ପର୍ଯ୍ୟଟନ କରିଥିଲେ ହେଁ ପୁରୀ ଧାମକୁ ଆସି ନଥିଲେ । କିନ୍ତୁ ଶ୍ରୀ ଜଗନ୍ନାଥଙ୍କ ପ୍ରତି ତାଙ୍କର ଅଚଳା ଭକ୍ତି, ଆସ୍ଥା ଓ ବିଶ୍ୱାସ ଥିଲା । ସେ ଶ୍ରୀ ଜଗନ୍ନାଥଙ୍କୁ ବୁଦ୍ଧ ଓ କୃଷ୍ଣଙ୍କର ଦାରୁ ବିଗ୍ରହ ରୂପେ ଗ୍ରହଣ କରୁଥିଲେ ଏବଂ ତାହାଙ୍କୁ ଦାରୁବ୍ରହ୍ମ ରୂପେ ମାନ୍ୟ କରୁଥିଲେ । ଶ୍ରୀ ଜଗନ୍ନାଥଙ୍କର ମହାପ୍ରସାଦକୁ ମଧ୍ୟ ତାଙ୍କର ପ୍ରଗାଢ଼ ଭକ୍ତିମୂଳକ ଅନୁରକ୍ତି ରହିଥିଲା । ସେ ପ୍ରତିଦିନ ଗୋଟିଏ ଶୁଷ୍କ ନିର୍ମାଲ୍ୟ ଭକ୍ତି ସହକାରେ ସେବନ କରୁଥିଲେ ଓ ଅନ୍ତରଙ୍ଗ ଶିଷ୍ୟମାନଙ୍କୁ ତାହା ସେବନ କରିବାକୁ ଦେଉଥିଲେ । ସେ କହୁଥିଲେ ଯେ, ଏହି ପ୍ରସାଦ ସେବନ କଲେ ହୃଦୟରେ ଭଗବଦ୍ ଭକ୍ତି ଓ ବିଶ୍ୱାସ ବର୍ଦ୍ଧିତ ହୁଏ । ତାଙ୍କ ମତରେ କଳି ଯୁଗରେ ବୃନ୍ଦାବନର ଧୂଳି, ଗଙ୍ଗାଜଳ ଏବଂ ଜଗନ୍ନାଥଙ୍କ ମହାପ୍ରସାଦ ସାକ୍ଷାତ୍ ବ୍ରହ୍ମସ୍ୱରୂପ । ପୁରୀକୁ ନ ଆସିବା କାରଣ ସମ୍ପର୍କରେ ସେ କେତେଥର ତାଙ୍କର ଶିଷ୍ୟମାନଙ୍କ ଆଗରେ ପ୍ରକାଶ କରିଛନ୍ତି, "ମୁଁ ପୁରୀକୁ ଯାଇପାରିବି ନାହିଁ, କାରଣ ସେଠାକୁ ଗଲେ ମୋର ଦେହ ତ୍ୟାଗ ହେବ । କାହିଁକି ନା ଶ୍ରୀ ଚୈତନ୍ୟ ଦେବଙ୍କ ଲୀଳା କଥା ସ୍ମରଣ ହୋଇ ମହାଭାବରେ ମୋର ଶରୀର ରହିବ ନାହିଁ ।"

ଶ୍ରୀ ରାମକୃଷ୍ଣ ନିଜେ ପୁରୀକୁ ଦର୍ଶନ ପାଇଁ ନ ଆସିଥିଲେ ସୁଦ୍ଧା ନିଜର ଅନ୍ତରଙ୍ଗ ଶିଷ୍ୟ ତଥା ଶ୍ରୀ ରାମକୃଷ୍ଣ କଥାମୃତର ଲେଖକ ଶ୍ରୀ ମହେନ୍ଦ୍ରନାଥ ଗୁପ୍ତଙ୍କୁ ଜଗନ୍ନାଥ ଦର୍ଶନ ପାଇଁ ପାଞ୍ଚ ଛଅ ଥର ପୁରୀକୁ ପ୍ରେରଣ କରିଥିଲେ । ଥରେ ସେ ତାଙ୍କୁ କହିଲେ

ଯେ, ଏଥର ଯେପରି ପୁରୀ ଯାଇ, ଜଗନ୍ନାଥଙ୍କୁ ଆଲିଙ୍ଗନ କରି ଆସିବ । ଅସମ୍ଭବ ହେଲେ ସୁଦ୍ଧା ଗୁରୁଙ୍କ କଥା ଶିରୋଧାର୍ଯ୍ୟ କରି ମହେନ୍ଦ୍ରନାଥ ଜଗନ୍ନାଥଙ୍କୁ ଆଲିଙ୍ଗନ କରି ବଙ୍ଗ ଦେଶକୁ ଫେରିଥିଲେ । ଶିଷ୍ୟଙ୍କର ଏହି ଅସୀମ ସାହାସର ପରିଚୟ ପାଇ ଶ୍ରୀ ରାମକୃଷ୍ଣ ଅତି ପ୍ରସନ୍ନ ହୋଇଥିଲେ ଓ ଶିଷ୍ୟଙ୍କୁ ଗାଢ଼ ଆଲିଙ୍ଗନରେ ଆବଦ୍ଧ କରି କହିଥିଲେ, ଏହାଦ୍ୱାରା ମୋର ମଧ୍ୟ ଶ୍ରୀ ଜଗନ୍ନାଥଙ୍କୁ ଆଲିଙ୍ଗନ କରିବା ହେଲା ।

ଶ୍ରୀ ରାମକୃଷ୍ଣ ପରମହଂସଙ୍କ ସହଧର୍ମିଣୀ କିନ୍ତୁ ବହୁବାର ପୁରୀ ଆସି ଶିଷ୍ୟମାନଙ୍କ ଗହଣରେ ଶ୍ରୀ ଜଗନ୍ନାଥ ଦର୍ଶନ କରିଥିଲେ । ପ୍ରଥମ ଥର ୧୮୮୮ ଖ୍ରୀଷ୍ଟାବ୍ଦରେ ମା' ସାରଦାଦେବୀ, ସ୍ୱାମୀ ବ୍ରହ୍ମାନନ୍ଦ, ଯୋଗାନନ୍ଦ, ସାରଦାନନ୍ଦ ଓ ଅନ୍ୟ ଭକ୍ତମାନଙ୍କ ସହ ଶ୍ରୀ କ୍ଷେତ୍ରରେ ପଦାର୍ପଣ କରିଥିଲେ । ସେତେବେଳେ ରେଲ ଲାଇନ୍ ନ ଥିବାରୁ କଲିକତାଠାରୁ ବଡ଼ ଜାହାଜରେ ବସି ନଭେମ୍ବର ୩ ତାରିଖ ଦିନ ଚାନ୍ଦବାଲିରେ ପହଞ୍ଚିଲେ । ଜଗନ୍ନାଥ ଦର୍ଶନ କରିବା ପରେ ସାରଦା ଦେବୀଙ୍କର ଅନେକ ଦିବ୍ୟଦର୍ଶନ (vision) ହୋଇଥିଲା । ଶିଷ୍ୟମାନଙ୍କ ଆଗରେ ଥରେ ସାରଦା ଦେବୀ କହିଥିଲେ— "ମୁଁ ଜଗନ୍ନାଥଙ୍କୁ ପୁରୁଷସିଂହ ରୂପେ ରତ୍ନବେଦୀରେ ଉପବିଷ୍ଟ ଥିବାର ଦେଖିଲି ଏବଂ ଅନୁଭବ କଲି ଯେ ମୁଁ ଯେପରି ସେଠି ଦାସୀ ହୋଇ ତାଙ୍କର ସେବା କରୁଛି । ଆଉଥରେ ୧୯୦୪ ଖ୍ରୀଷ୍ଟାବ୍ଦରେ ଜଗଦ୍ଧାତ୍ରୀ ପୂଜା ସମାପନ କରି ରେଲ ଯୋଗେ ଅନେକ ଭକ୍ତ ସମାବେଶରେ ସେ ପୁରୀ ଆସି ଜଗନ୍ନାଥ ଦର୍ଶନ କରିଥିଲେ । ସେତେବେଳେ ସେ ଆନନ୍ଦ ବଜାରରେ ସମସ୍ତଙ୍କ ମୁଖରେ ଖେଚେଡ଼ି ମହାପ୍ରସାଦ ଅର୍ପଣ କରିଥିଲେ ଏବଂ ସେ ନିଜେ ସେମାନଙ୍କ ହାତରୁ ଗ୍ରହଣ କରିଥିଲେ । ସେଥର ତାଙ୍କର ଏହି ଅନୁଭବ ହୋଇଥିଲା ଯେ ଶ୍ରୀ ଜଗନ୍ନାଥ ସ୍ୱୟଂ ମୃତ୍ୟୁଞ୍ଜୟ ଶିବ । ତାଙ୍କ ନିଜ ମୁହଁର ଭାଷାରେ—ଜଗନ୍ନାଥ କେବଳ ଶିବ ମୂର୍ତ୍ତି—ଶିବ ଲିଙ୍ଗ । ଲକ୍ଷେ ଶାଳଗ୍ରାମର ବେଦୀ—ତା ଉପରେ ଜଗନ୍ନାଥ ଶିବ ରୂପରେ ରହିଛନ୍ତି । ବିନା କାରଣରେ କ'ଣ ଏତେ ଲୋକ ଦର୍ଶନ ପାଇଁ ଆସିବେ ? ମା' ବିମଳା ଅଛନ୍ତି—ମହାଷ୍ଟମୀ ରାତିରେ ତାଙ୍କ ଉଦ୍ଦେଶ୍ୟରେ ବଳି ହୁଏ । ବିମଳାତ ମା' ଦୁର୍ଗା ତେବେ ନିକଟରେ ଶିବ ରହିବେ ନି କାହିଁକି ?

ଏହା ବ୍ୟତୀତ ଶ୍ରୀ ରାମକୃଷ୍ଣଙ୍କର ବହୁ ବିଶିଷ୍ଟ ଶିଷ୍ୟ ବିଶେଷତଃ ଭୁବନେଶ୍ୱର ରାମକୃଷ୍ଣ ମଠର ପ୍ରତିଷ୍ଠାତା ସ୍ୱାମୀ ବ୍ରହ୍ମାନନ୍ଦ ବହୁ ସମୟ ପୁରୀ ଧାମରେ ଅତିବାହିତ କରୁଥିଲେ । ୧୯୧୬ ମସିହାରେ ସେ ପୁରୀରେ ଦୀର୍ଘକାଳ ଅବସ୍ଥାନ କରିଥିଲେ । ତାଙ୍କ ମତରେ ଶ୍ରୀ ଜଗନ୍ନାଥ ବିଗ୍ରହ ପୂର୍ଣ୍ଣ ଚୈତନ୍ୟମୟ । ସେ ଶ୍ରୀ ଜଗନ୍ନାଥଙ୍କଠାରେ ଗୋବିନ୍ଦ ଗୋପାଳ ଓ କୃଷ୍ଣଚନ୍ଦ୍ରଙ୍କୁ ପ୍ରତ୍ୟକ୍ଷ କରିଥିଲେ ।

ଓଡ଼ିଶାର ଜଣେ ବିଶିଷ୍ଟ ଗବେଷକ ଓ ଆଡ୍‌ଭୋକେଟ୍ ଶ୍ରୀ ବିମଳକୃଷ୍ଣ ପାଳ ତାଙ୍କର ଏକ ପ୍ରବନ୍ଧରେ ଉଲ୍ଲେଖ କରିଛନ୍ତି ଯେ—"ଜଗନ୍ନାଥ ଧର୍ମ ଧାଂପ୍ରଦାୟିକ ଧର୍ମ ନୁହେଁ—ଜଗନ୍ନାଥ ଧର୍ମ କି ଗୋଟିଏ ସାଂପ୍ରଦାୟିକ ଧର୍ମ ? ଏ ପ୍ରଶ୍ନର ଉତ୍ତର ଆଜି ଐତିହାସିକ ଜବାବରେ ଆବଦ୍ଧ ନୁହେଁ । ଏହି ବିଷୟର ସିଦ୍ଧାନ୍ତ ଉଚ୍ଚ ବିଚାରାଳୟ ଦ୍ୱାରା ଘୋଷିତ ହୋଇଅଛି । ସନ ୧୯୫୪ରେ ଶ୍ରୀ ଜଗନ୍ନାଥ ମନ୍ଦିର ଆଇନର ଗୋଟିଏ ଧାରା ଅଛି, ଯଦ୍ଦ୍ୱାରା ଯେ କୌଣସି ହିନ୍ଦୁ ମନ୍ଦିର କମିଟିର ମେମ୍ବର ହୋଇ ପାରିବେ । (୫ଧାରା ୨ ଉପଧାରା ) । ହାଇକୋର୍ଟରେ ପ୍ରଶ୍ନ ଉଠିଲା କି ଉକ୍ତ ଧାରା ଅନୁସାରେ କେବଳ ଜଗନ୍ନାଥ ଧର୍ମାବଲମ୍ବୀ ଲୋକେ ମନ୍ଦିର କମିଟିର ସଦସ୍ୟ ହୋଇ ପାରନ୍ତି । କେବଳ ହିନ୍ଦୁ ହେଲେ ସେ ଜଗନ୍ନାଥ ମନ୍ଦିର କମିଟିର ସଦସ୍ୟ ହୋଇ ପାରିବେ, ତାହା ହୋଇ ନପାରେ । ଏ ପ୍ରଶ୍ନର ଉତ୍ତର ଦେଇ ଓଡ଼ିଶା ହାଇକୋର୍ଟର ପ୍ରଧାନ ବିଚାର-ପତି ଶ୍ରୀ ଆର. ଏଲ. ନରସିଂହମ ତାଙ୍କର ଗମ୍ଭୀର ଗବେଷଣା ପୂର୍ଣ୍ଣ ଓ ପାଣ୍ଡିତ୍ୟ ପୂର୍ଣ୍ଣ ରାୟରେ ସିଦ୍ଧାନ୍ତ କଲେ କି ଶ୍ରୀ ଜଗନ୍ନାଥ ମନ୍ଦିର ସମସ୍ତ ହିନ୍ଦୁ ଧର୍ମର ପ୍ରତୀକ ଅଟେ ଓ ଯେ କୌଣସି ହିନ୍ଦୁ ଉକ୍ତ ମନ୍ଦିର କମିଟିର ସଦସ୍ୟ ହୋଇ ପାରନ୍ତି । ଜଗନ୍ନାଥ ଧର୍ମ କହିଲେ ସମଗ୍ର ହିନ୍ଦୁ ଜନ ସାଧାରଣ ଧର୍ମ ସମଷ୍ଟିକୁ ବୁଝାଏ । ଏହି ସିଦ୍ଧାନ୍ତ ନିମନ୍ତେ ମାନ୍ୟବର ବିଚାରପତି ମହୋଦୟ ନିମ୍ନଲିଖିତ ଐତିହାସିକ ସଂନ୍ଦର୍ଭ ଉପରେ ନିର୍ଭର କରିଅଛନ୍ତି—

1. Besides this perpetual appeal to the popular instinct the worship of Jagannath aims at acatholicism which embraces every form of Indian belief and every conception of the Deity. Nothing is too high and nothing is too low to find admission to his temple (Hunter & Sterling. History of Orissa Edited by Sri N. K. Sahoo Vol I—Page 7)

2. Without going into any profound speculation as to the origin, nature and meaning of the worship of Jagannath, there is one, cause sufficiently obvious to all sects should unite in harmony here in the performance of their religious Ceremonies.

(Vol 2 Page 277 Ibid)

3. Jagannath is the Great God of the people of Orissa. All who call themselves Hindus are entitled to worship him in a word it supplies the spiritual requirements of different phases of Hindus in different stages of their intellectual development. (Calcutta Review 1891—M K. Bose, Collector of Puri)

ମାନ୍ୟବର ପ୍ରଧାନ ବିଚାରପତି ମହୋଦୟ ଜଗନ୍ନାଥ ମନ୍ଦିରର ଇତିହାସ ଆଲୋଚନା କରି ଦେଖାଇଛନ୍ତି ଯେ —"ଭଗବାନ ଶଙ୍କରାଚାର୍ଯ୍ୟ, ଭଗବାନ ରାମାନୁଜ, ମହାତ୍ମା ରାମାନନ୍ଦ, ମହାତ୍ମା କବୀର, ମହାତ୍ମା ନାନକ, ମହାପ୍ରଭୁ ଶ୍ରୀ ଚୈତନ୍ୟ ଓ ବୌଦ୍ଧ ଜୈନ ସମାଜର ସାଧକ ବୃନ୍ଦ ଓ ଭାରତର ଅନ୍ୟାନ୍ୟ ଧର୍ମ ସଂପ୍ରଦାୟର ଲୋକେ ଶ୍ରୀ କ୍ଷେତ୍ରକୁ ନିଜର ପୀଠ ସ୍ଥାନ ବୋଲି ସ୍ୱୀକାର କରନ୍ତି । ଜଗନ୍ନାଥ ମନ୍ଦିର ଆଇନ ଅନୁସାରେ ନିଯୁକ୍ତ ହୋଇଥିବା ଅଫିସର ଶ୍ରୀ ଲକ୍ଷ୍ମଣ ମିଶ୍ର ମହୋଦୟ ତାଙ୍କ ରିପୋର୍ଟର ୬୨ରୁ ୪୬ ପୃଷ୍ଠାରେ ଶ୍ରୀ ମନ୍ଦିର ବେଢ଼ା ଭିତରେ ଯେଉଁ ଯେଉଁ ଦେବା ଦେବୀ ଅଛନ୍ତି, ତହିଁର ଏକ ବିସ୍ତୃତ ତାଲିକା ଦେଇ ଅଛନ୍ତି । ସେଥିରୁ ଦେଖାଯିବ ଯେ ହିନ୍ଦୁ ଧର୍ମରେ ପୂଜା ପାଉଥିବା ୧୬ଟି ଦେବ ଦେବୀଙ୍କ ସ୍ଥାନ ଏହି ମନ୍ଦିର ମଧ୍ୟରେ ସ୍ୱୀକୃତ ହୋଇଛି । ଏହା ଭିନ୍ନ ମନ୍ଦିର ମହାପ୍ରସାଦ ଜାତିବର୍ଣ୍ଣ ନିର୍ବିଶେଷରେ ସମଗ୍ର ହିନ୍ଦୁ ସମାଜର ସେବା, ଏ ମନ୍ଦିର ଶଙ୍କରାଚାର୍ଯ୍ୟ ପନ୍ଥୀମାନଙ୍କ ମଧ୍ୟରେ ଯେପରି ପୁଣ୍ୟସ୍ଥାନ, ରାମାନୁଜ ପନ୍ଥୀମାନଙ୍କ ମଧ୍ୟରେ ବି ସେହିପରି । ଏହା ଶ୍ରୀ ଚୈତନ୍ୟ, ମାଧ୍ୱାଚାର୍ଯ୍ୟ ଓ ବୀର ଶୈବମାନଙ୍କ ପାଇଁ ମଧ୍ୟ ପରମ ପୁଣ୍ୟ ସ୍ଥାନ । ଜଗନ୍ନାଥ ଧର୍ମର ଯେଉଁ ସବୁ ବୈଶିଷ୍ଟ୍ୟ ରହିଛି, ତାହା ସମଗ୍ର ହିନ୍ଦୁ ଧର୍ମର ମଧ୍ୟ ବିଶିଷ୍ଟତା । ଋକ୍‌ବେଦର ଦଶମ ମଣ୍ଡଳରେ ହିନ୍ଦୁ ଧର୍ମର ସମଗ୍ର ମାର୍ଗର ଯେଉଁ ସମନ୍ୱୟ ପ୍ରତିଷ୍ଠା କରାଯାଇଛି ଓ ଉପନିଷଦର ଆତ୍ମା ଓ ପରମାତ୍ମା ମଧ୍ୟରେ ଯେଉଁ ସମ୍ପର୍କ ସ୍ଥାପିତ ହୋଇଛି ଶ୍ରୀ ଜଗନ୍ନାଥ ଏହି ମହା ସମନ୍ୱୟର ପ୍ରତୀକ । (I.LR Cuttack 1958 P.369 P.92-395 Raja Sri Rama Chandra Deva Vrs. State of Orissa O. J. C. 321 & 1955)

ଏପରି ସ୍ଥଳେ ଜର୍ମାନୀର ହେଡେଲବର୍ଗ ବିଶ୍ୱବିଦ୍ୟାଳୟ ଅଧ୍ୟାପକ ହର୍ମେନ କୁଲେକଙ୍କ ଦ୍ୱାରା ଲିଖିତ ଏକ ତାତ୍ତ୍ୱିକ ଐତିହାସିକ ନିବନ୍ଧ "ଧାର୍ମିକ ବିଧାନ ରାଜାଗଣ ଖୋରଧାର ରାଜବଂଶ ଓ ଜଗନ୍ନାଥ" ଇଂରାଜୀ ପ୍ରବନ୍ଧକୁ ଓଡ଼ିଶାର ଅନ୍ୟତମ ବିଶିଷ୍ଟ ଗବେଷକ ଶ୍ରୀ ସଚ୍ଚିଦାନନ୍ଦ ମିଶ୍ର ଓଡ଼ିଆରେ ଭାଷାନ୍ତରିତ କରିଛନ୍ତି, ଯାହା କି ଝଙ୍କାର

ବିଂଶବର୍ଷ ଏକାଦଶ ସଂଖ୍ୟା ଫେବ୍ରୁୟାରୀ ୧୯୭୯ରେ ପ୍ରକାଶ ପାଇଛି । ସେହି ଅନୁବାଦିତ ପ୍ରବନ୍ଧର କେତେକ ଅଂଶ ଏଠାରେ ଉଦ୍ଧାର କଲେ ଜଗନ୍ନାଥ କିପରି ହିନ୍ଦୁର ଦେବତା ସେ କଥାଟି ପରିଷ୍କାର ଭାବେ ପରିସ୍ଫୁଟ ହୋଇ ଉଠିବ । ଗବେଷକ ସଚ୍ଚିଦାନନ୍ଦ ମିଶ୍ରଙ୍କ ଅନୁବାଦର କିୟଦଂଶ ହେଲା—"ହିନ୍ଦୁ ଦେବତା ଜଗନ୍ନାଥଙ୍କ ସହିତ ଓଡ଼ିଶାର ଶାସନ ପରମ୍ପରା ନିବିଡ଼ ଭାବରେ ସଂଶ୍ଳିଷ୍ଟ ଗଙ୍ଗବଂଶୀ (ଖ୍ରୀ: ପ୍ରାୟ ୧୧୧୨-୧୪୩୫ ଓ ସୂର୍ଯ୍ୟବଂଶୀ (୧୪୩୫-୧୫୪୦) ସମ୍ରାଟମାନଙ୍କ ସମୟରେ ଜଗନ୍ନାଥ ଓଡ଼ିଶାର ରାଷ୍ଟ୍ରଦେବତା ରୂପେ ପରିଣତ ହୋଇଥିଲେ । ଓଡ଼ିଶା ଏହି ଦୁଇ ରାଜବଂଶର ଗଜପତି ରାଜାମାନଙ୍କର ଅଧିନାୟକତ୍ୱରେ ଉତ୍ତର ଓ ମଧ୍ୟ ଭାରତର ମୁସଲମାନ ଶକ୍ତି ବିରୋଧରେ ଏକ ପରାକ୍ରାନ୍ତ ପ୍ରତିବନ୍ଧକ ରୂପେ ତିନି ଶହରୁ ଊର୍ଦ୍ଧ୍ୱ ବର୍ଷ ଧରି ରହିଥିଲା । ପୂର୍ବରୁ ଶତାବ୍ଦୀ ଶତାବ୍ଦୀ ଧରି ଜଗନ୍ନାଥଙ୍କ ସ୍ଥିତି ରହି ଆସିଥିଲେ ହେଁ ପ୍ରାଚ୍ୟ ଗଙ୍ଗ ରାଜା ଅନନ୍ତ ବର୍ମା ଚୋଡ଼ଗଙ୍ଗଙ୍କ ଅମଳରେ ହିଁ ଜଗନ୍ନାଥ ଧର୍ମ ପ୍ରାଧାନ୍ୟ ଲାଭ କରିଥିଲା । ଖ୍ରୀ: ୧୧୧୨ରେ ଓଡ଼ିଶା ଜୟ କରିବାର କେତେକ ଦଶନ୍ଧି ପରେ ଚୋଡ଼ଗଙ୍ଗ ଦେବ ପୁରୀଠାରେ ବିଦ୍ୟମାନ ବିଶାଳ ଜଗନ୍ନାଥ ମନ୍ଦିରକୁ ନିର୍ମାଣ କରିବା ଆରମ୍ଭ କଲେ । ଶାକ୍ତ, ଶୈବ, ତାନ୍ତ୍ରିକ, ଏପରିକି ଆଦିବାସୀ ପ୍ରଭାବ ସମନ୍ୱିତ ବୈଷ୍ଣବ ଜଗନ୍ନାଥ ଧର୍ମ ଓ ତାହାର ଉତ୍ତରାଧିକାରୀମାନଙ୍କର ଧର୍ମ ସମନ୍ୱୟବାଦୀ ନୀତିର ବିଶେଷ ଅନୁକୂଳ ଥିବା ମନେହୁଏ । ପୁରୁଷୋତ୍ତମ (ଜଗନ୍ନାଥଙ୍କର ପ୍ରାଚୀନତମ ନାମ) ଠାକୁରଙ୍କ ପାଇଁ ଏକ ପ୍ରକାଣ୍ଡ ମନ୍ଦିର ନିର୍ମାଣ 'ପରଦେଶୀ' ଚୋଡ଼ଗଙ୍ଗଙ୍କ ଦ୍ୱାରା ଓଡ଼ିଶାର ଏକ ପ୍ରମୁଖ ଆଞ୍ଚଳିକ ଦେବତାଙ୍କ ପ୍ରତି ଭକ୍ତିର ପ୍ରଦର୍ଶନ ହେବା ସଙ୍ଗେ ସଙ୍ଗେ ଯୁଗପତ୍ ଗଙ୍ଗମାନଙ୍କର ନୂତନ ରାଷ୍ଟ୍ର ଦେବତା ବିଶ୍ୱାସ ମଧ୍ୟରେ ଓଡ଼ିଶାର ବିଭିନ୍ନ ଧର୍ମ ଧାରଣାକୁ ଏକୀକୃତ କରିବାର ଏକ ଉଦ୍ୟମ ଥିଲା ।

ଅବଶ୍ୟ ଦ୍ୱାଦଶ ଶତାବ୍ଦୀର ଗଙ୍ଗମାନଙ୍କ ଅମଳରେ ଜଗନ୍ନାଥ ଓଡ଼ିଶାର ଏକ ଗୌଣ ରାଷ୍ଟ୍ର ଦେବତା ହୋଇ ହିଁ ରହିଥିଲେ । ଗଙ୍ଗ ସାମ୍ରାଜ୍ୟର ଉତ୍ତର ଭାଗଟି ମାତ୍ର ଥିଲା ଓଡ଼ିଶା । ରାଜା ଅନଙ୍ଗଭୀମ ୩ୟ (ଖ୍ରୀ ୧୨୧୧-୧୨୩୮) ଅମଳରେ ହିଁ ଜଗନ୍ନାଥ ସମଗ୍ର ଗଙ୍ଗ ସାମ୍ରାଜ୍ୟର ରାଷ୍ଟ୍ରଦେବତା ହୋଇଥିଲେ । ଦ୍ୱାଦଶ ଶତାବ୍ଦୀର ଅନ୍ତିମ ଭାଗରେ ଉତ୍ତର ଭାରତ ମୁସଲମାନ ସୈନ୍ୟମାନଙ୍କ ଦ୍ୱାରା ଅଧିକୃତ ହେବା ପରେ ଅନଙ୍ଗଭୀମ ତାଙ୍କ ସାମ୍ରାଜ୍ୟକୁ ମୁସଲମାନ ବାହିନୀ କବଳରୁ ରକ୍ଷା କରିବା ଲାଗି ତାହାକୁ ବିଧିବଦ୍ଧ ଭାବରେ ପୁନର୍ଗଠନ କରିଥିଲେ । ଅନ୍ୟାନ୍ୟ କାର୍ଯ୍ୟ ମଧ୍ୟରେ ସେ ମହାନଦୀର ଏକ ଦ୍ୱୀପରେ ଏକ ନୂତନ ରାଜଧାନୀ କଟକ ନିର୍ମାଣ କଲେ ଓ ତାହାକୁ ଉଚ୍ଚାକାଂକ୍ଷା ସୂଚକ "ଅଭିନବ ବାରାଣସୀ" ନାମ ଦେଇଥିଲେ । ଏହାର ଅଳ୍ପ କେତେ ଦଶନ୍ଧି ପୂର୍ବରୁ ହିନ୍ଦୁମାନଙ୍କର ପୁଣ୍ୟତମ କ୍ଷେତ୍ର ବାରାଣସୀକୁ ମୁସଲମାନମାନେ କଳୁଷିତ

କରି ସାରିଥାନ୍ତି । ଏହି ନୂତନ ରାଜଧାନୀରେ ଜଗନ୍ନାଥଙ୍କ ନିମନ୍ତେ ସେ ଏକ ବିରାଟ ମନ୍ଦିର ତୋଳାଇଲେ ଓ ଏହି ନୂତନ ରାଷ୍ଟ୍ର ଦେବତାଙ୍କୁ ତାଙ୍କ ସାମ୍ରାଜ୍ୟଟିକୁ ଉତ୍ସର୍ଗ କରିଦେଲେ । ପୁରୀ ମନ୍ଦିରର ବିଖ୍ୟାତ ମାଦଳାପାଞ୍ଜି ଏଇ ପ୍ରବାଦକୁ ଲିପିବଦ୍ଧ କରିଛି—"ଅନଙ୍ଗଭୀମ ଦେବ, ଏହାଙ୍କ ଇଚ୍ଛାରେ କହିଲେ "ଆମ୍ଭ ନାଆଁ ପୁରୁଷୋତ୍ତମ ଦେବେ । ଏ ନଗର କଟକେ ଥାଇ ଶ୍ରୀ ପୁରୁଷୋତ୍ତମ (ଅନଙ୍ଗଭୀମଦେବ) ଶ୍ରୀ ଜଗନ୍ନାଥ ଦେବଙ୍କୁ ସମସ୍ତ ସମର୍ପି ରାଉତ ପଣେ (ରାଜ୍ୟପାଳ ଭାବରେ) ଥାଆନ୍ତି । ଅନଙ୍ଗଭୀମ ତାହାଙ୍କ ରାଜତ୍ୱର ଶେଷ ଭାଗରେ ଅନେକ ଅଭିଲେଖରେ ନିଜକୁ "ପୁରୁଷୋତ୍ତମଙ୍କ ପୁତ୍ର" ଓ ସେହି ଠାକୁରଙ୍କ ଆଜ୍ଞାରେ ତାହାଙ୍କ ସାମ୍ରାଜ୍ୟରେ କର୍ମ କରୁଥିବା "ରାଉତ" (ରାଜ୍ୟପାଳ) ବୋଲି ଅଭିହିତ କରିଛନ୍ତି ।

ଏହା ନିଃସନ୍ଦେହ ଯେ ରାଷ୍ଟ୍ରଦେବତା ଜଗନ୍ନାଥଙ୍କଠାରେ ଓଡ଼ିଶା ସାମ୍ରାଜ୍ୟର ଏତାଦୃଶ ଉତ୍ସର୍ଗୀକରଣ ଓଡ଼ିଆମାନଙ୍କ ଉପରେ ତଥା ହିନ୍ଦୁ ସମାଜ ଉପରେ ଶକ୍ତିଶାଳୀ ପ୍ରଭାବ ପକାଇ ଥିଲା । ରାଜା ଅନଙ୍ଗଭୀମଙ୍କୁ କରିଯିବା ପ୍ରତ୍ୟେକ ସେବା ଓଡ଼ିଶାର ସମ୍ରାଟ ଜଗନ୍ନାଥଙ୍କ ସେବାରେ ପରିଣତ ହୋଇଥିଲା । ଏହା ଆଶ୍ଚର୍ଯ୍ୟକର ନୁହେଁ ଯେ ଏହି କାରଣରୁ ତାଙ୍କର କେତେକ ଉତ୍ତରାଧିକାରୀ ମଧ୍ୟ ତାଙ୍କର ଆଦର୍ଶର ଅନୁସରଣ କରି ଆପଣାକୁ ଜଗନ୍ନାଥଙ୍କ ସାମ୍ରାଜ୍ୟ ଅଧୀନସ୍ଥ ରାଉତ ଭାବରେ ଅଭିହିତ କରିଛନ୍ତି । ଗଜପତି ସିଂହାସନର ବଳାତ୍ ଅପହରଣକାରୀ ତଥା ଓଡ଼ିଶାରେ ସୂର୍ଯ୍ୟବଂଶୀ ରାଜତ୍ୱର ପ୍ରତିଷ୍ଠାତା କପିଳେନ୍ଦ୍ର (ଖ୍ରୀ ୧୪୩୫-୧୪୬୭) ଆହୁରି ପାଦେ ବଢ଼ି ଯାଇ ନିଜର କାର୍ଯ୍ୟ ପାଇଁ ପ୍ରଭୁ ଜଗନ୍ନାଥଙ୍କୁ ସାକ୍ଷୀ ରଖି ନିଜେ ଜଗନ୍ନାଥଙ୍କ ଦ୍ୱାରା ନିର୍ବାଚିତ ହୋଇଛନ୍ତି ବୋଲି ଦାବୀ କଲେ—

"ହେ ଜଗନ୍ନାଥ, ତୋହ ସେବକ ଏମନ୍ତ ଜଣାଉଅଛି । ରାଇଜ ଯାକେ ଏ ସାଆନ୍ତମାନଙ୍କୁ ମୁହିଁ ପାଇକ ରାଉତକୁ କରି + + + ବାଲ କାଳୁ ପୋଷି ଆଣିଲି । ଏମାନେ ମୋତେ ସବୁହେଁ ଗୁହାରିଲେ । ଏମାନଙ୍କୁ ମୁଇ ଯେ ଯାହା ଅନୁରୂପେ ବିହରି ନିଯୋଗିବି । ହେ ଜଗନ୍ନାଥ, ଏକଥା ମୋହର ଦୋଷ ଅଦୋଷ ବିଚାର ।"

ଅଧିକନ୍ତୁ ତାଙ୍କର ଅନେକ ଅଭିଲେଖ ଶେଷକୁ ସୁସ୍ପଷ୍ଟ ତାଗିଦ୍ ଲେଖା ରହିଛି ଯେ ଯେଉଁ ଲୋକ ତାଙ୍କ ଆଦେଶର ଲଙ୍ଘନ କରିବ ସେ ରାଷ୍ଟ୍ରଦେବତା ଜଗନ୍ନାଥଙ୍କ ପ୍ରତି ଦ୍ରୋହ ଆଚରଣ କରିବ ।

ଶେଷ ଗଙ୍ଗ ରାଜାଗଣ ଓ ସୂର୍ଯ୍ୟବଂଶୀ ରାଜାମାନଙ୍କ ଅମଳରେ ପରିପୁଷ୍ଟ ଏତାଦୃଶ ଜଗନ୍ନାଥତତ୍ତ୍ୱର ମୁଖ୍ୟତମ ପରିଣାମ ହେଲା ଏହି ଯେ ଓଡ଼ିଶାର ରାଷ୍ଟ୍ର ଦେବତା ଭାବରେ

ଜଗନ୍ନାଥଙ୍କ ସ୍ଥିତି ଅବିସମ୍ବାଦିତ ହୋଇଗଲା ଓ ଓଡ଼ିଶାର ସାଂସ୍କୃତିକ ଅଭିବୃଦ୍ଧି ଉପରେ ଏହା ପ୍ରବଳ ପ୍ରଭାବ ପକାଇଥିଲା । ଗଜପତିଙ୍କ ସ୍ତରରେ ଏହାର ତାତ୍ପର୍ଯ୍ୟ ହେଲା—ଯେଉଁ ରାଜାମାନେ ପୁରୀ ଓ ତାହାର ଜଗନ୍ନାଥ ମନ୍ଦିରକୁ ଦଖଲ କରିବେ କେବଳ ସେହିମାନେ ହିଁ ବିଧିସମ୍ମତ ଗଜପତି ଓ ଓଡ଼ିଶାର ଶାସକ ଭାବରେ ସ୍ୱୀକୃତ ହେବେ ।"

ଏହି ଅନୁବାଦିତ ଉଦ୍ଧୃତାଂଶରୁ ସ୍ପଷ୍ଟ ପ୍ରତୀୟମାନ ଯେ ଓଡ଼ିଶାର ତତ୍କାଳୀନ ଗଜପତିମାନେ ଜଗନ୍ନାଥଙ୍କୁ କେତେ ଆପଣାର ଓ ନିଜର କରିଥିଲେ । ଜଗନ୍ନାଥଙ୍କ ସେବା ପୂଜାହିଁ ସେତେବେଳେ ଜାତିର ସର୍ବସ୍ୱଥିଲା । ଏ ସମସ୍ତ ସତ୍ତ୍ୱେ ବି ଜଗନ୍ନାଥ କେବଳ ଗଜପତିଙ୍କର ନୁହେଁ, ସମଗ୍ର ରାଷ୍ଟ୍ର ଦେବତା ରୂପେ ପ୍ରତିଷ୍ଠିତ ଓ ସମ୍ମାନିତ ହୋଇଥିଲେ । ତା' ନ ହୋଇଥିଲେ ସମସ୍ତଙ୍କ ଦୃଷ୍ଟି ଜଗନ୍ନାଥଙ୍କ ଉପରେ ନଥାନ୍ତା କହିଲେ ଚଳେ । ଜଗନ୍ନାଥ ହିଁ ତାଙ୍କ ଦୃଷ୍ଟିରେ ଥିଲେ ହର୍ତ୍ତା, କର୍ତ୍ତା, ଦଇବ ବିଧାତା । ଜଗନ୍ନାଥ ହିଁ ଶୟନେ ସ୍ୱପନେ ଜାଗରଣର ଠାକୁର ଥିଲେ । ପୁନଶ୍ଚ ଜଗନ୍ନାଥଙ୍କୁ ଯିଏ ଯେଉଁ ରୂପରେ ଦେଖିନା କାହିଁକି, ଯିଏ ଯେପରି ଭାବେ ତାଙ୍କୁ ନିଜ ଇଷ୍ଟ ଦେବତାଙ୍କ ନାଁରେ ଦମ୍ଭୋକ୍ତିରେ ଆଖ୍ୟାୟିତ କରୁନା କାହିଁକି, ସେଇ ଜଗନ୍ନାଥ ହିଁ ଜଗନ୍ନାଥରେ ରହିଗଲେ ଆଜି ଅବଧି । ଅନ୍ୟ କୌଣସି ଠାକୁର ନାଁରେ ରୂପାନ୍ତରିତ ହେଲେ ନାହିଁ । ଜଗନ୍ନାଥଙ୍କୁ ଲୁଚାଇ କେତେ ଲୁଚକାଲି ହୋଇଛି—କେସୋ ଦାସଙ୍କ ଠାରୁ ଆରମ୍ଭ କରି କଳାପାହାଡ଼ଙ୍କ ଅତ୍ୟାଚାର ଭିତରେ । ତଥାପି ଜଗନ୍ନାଥ କୁଜଙ୍ଗରୁ ବିସର ମହାନ୍ତିଙ୍କ ଜରିଆରେ ଆମ ଆଗରେ ଉଭା ହୋଇଛନ୍ତି ଜଗନ୍ନାଥରେ । ଏତେ ଅତ୍ୟାଚାର ବିପଦ ଆପଦରେ ସେ ତ ନିଶ୍ଚିହ୍ନ ହୋଇ ନାହାନ୍ତି । ପୁଣି ସେବା ଅର୍ଘ୍ୟ ପାଇଛନ୍ତି ଷୋଡ଼ଶ ଉପଚାରରେ-ପ୍ରତି ପ୍ରାଣକୁ ଭକ୍ତି ରସରେ ସାମ୍ୟ ମୈତ୍ରୀ କରୁଣାର ତାଳେ ତାଳେ ଅଭିମନ୍ଥିତ କରି । ଏଇତ ଜଗନ୍ନାଥ-ତାହାହିଁ ତାଙ୍କର ଅଖଣ୍ଡ ରାଜତ୍ୱ । ଲୁହା ଚୁମ୍ବକ ଆକର୍ଷଣରେ ସମସ୍ତେ ତାର ମୈତ୍ରୀ ମାଧୁରୀରେ ମୋହିତ ହୋଇଛନ୍ତି ସ୍ୱଚ୍ଛନ୍ଦରେ ବେପରୁଆ ଭାବରେ, ନିଜର ଆତ୍ମୀୟ କୁଟୁମ୍ବ ଭଳି । ଜଗନ୍ନାଥଙ୍କ ପ୍ରତି ନିଃସଙ୍କୋଚରେ କି ମାଦକତା ଓ ମମତ୍ୱାବୋଧ । ସେଇଥିପାଇଁ ତ ଶ୍ରୀ ଜି. ସି. ତ୍ରିପାଠୀ The cult of Jagannath and the Regional Tradition of Orissa "ସଙ୍କଳିତ ପୁସ୍ତକର ୪୮୯-୪୯୦ ପୃଷ୍ଠାରେ ତାଙ୍କ ରଚିତ ଓ ତହିଁରେ ସନ୍ନିବେଶିତ Jagannath The Age less Deity of Hindus" ପ୍ରବନ୍ଧରେ କହିଛନ୍ତି There has been no end to such Associations in identification in all the ages.

I remember that in 1971 when I was in Bhubaneswar, the Pragatibádi Dala, a Political Party fought

the state election with an emblem showing a plough and a wheel, symbolising obviously, the agricultural & industrial advancement which the party promised to its voters, but these were interpreted by the founder of the party at a meeting in Puri as the symbols of Balaram and Jagannath (the Hala being the weapon of Balaram & the Chakar that of Visnu) who were thus invoked to be the presiding deities of this party—" And Jagannath admits all such explanations. He allows all & accepts all yet remaining aloof from it.He is all of it but at the sametime none of it. *He is like a chear mirror in which every body finds himself reflected and confirmed but which remains untouched, unspoiled unaffected by all.* Generation after generatious have tried to solve his mistery but he looks as if sarcastically smiling at the vain efforts of the mortals who try to unvial his "mystery", perhaps because he has no mystery to hide. *He is only that what the people have made him to be from time to time.*

Manifasting that it is not the out wardly form of the deity that matters but his intrinsic philosophical character etc. majestically stands there on His throne graciously smiling down to his devotee stands as a unique symbol of the great flexibility & dynamics of Hinduism, of its capacity to absovb integrate and remode of its tolorance and magnanimity

ଓଡ଼ିଆ ସାହିତ୍ୟର ମୂଳରୁ ଚୂଲିଯାଏ ଜଗନ୍ନାଥଙ୍କ କଥା କାହାଣୀ, ଗୀତ ଗାଥା ଯେପରି ମୂର୍ତ୍ତିମନ୍ତ ହୋଇ ଉଠିଛି, ସେ ସବୁରୁ ତ ପରିଷ୍କାର ହୋଇଯାଇଛି ଯେ ଜଗନ୍ନାଥଙ୍କୁ ଏ ଯାବତ୍ କେନ୍ଦ୍ର କରି ଓଡ଼ିଶାର କବିମାନେ ଯେଉଁ ସାହିତ୍ୟ ରଚନା କରି ଯାଇଛନ୍ତି, ତାହା ଓଡ଼ିଆ ସାହିତ୍ୟର ଅମୂଲ୍ୟ ଓ ଅକ୍ଷୟ ସମ୍ପଦ । ସନ୍ତ୍ର ଦେବତା

ଜଗନ୍ନାଥଙ୍କର ଏପରି ବନ୍ଦନା, ଜଣାଣ, ସ୍ତୁତି, ଆଶୀର୍ବାଦ ଭିକ୍ଷା ଏପରି ଉଚ୍ଛ୍ୱସିତ ଭାବରେ ରାଜାଙ୍କଠାରୁ ପ୍ରଜାଙ୍କ ପର୍ଯ୍ୟନ୍ତ ସମସ୍ତେ କରିଛନ୍ତି ଯେ, ଆଜି ତାହାକୁ ଆଳାପ ଆଲୋଚନାରେ ଆଣିଲେ, ବାସ୍ତବିକ ବିସ୍ମିତ ହେବା ସଙ୍ଗେ ସଙ୍ଗେ ଆନନ୍ଦରେ ଅଧିର ହେବାକୁ ପଡ଼ିଥାଏ। ସମ୍ପଦ ବିପଦରେ ସବୁଠି ଜଗନ୍ନାଥ। ଓଡ଼ିଆ କବି ତାହାର କାବ୍ୟ କବିତାରେ ଆଉ କି ultimate surrender କରିଥାଆନ୍ତି ? ଜଗନ୍ନାଥଙ୍କ ପାଖରେ। ସେଇଥିପାଇଁତ ଏ ଜାତିର ଐତିହ୍ୟ କୃଷ୍ଟି,ସଂସ୍କୃତି କୃଷ୍ଟି, କୃଷି କୃଷ୍ଟି, ସଭ୍ୟତା କୃଷ୍ଟି ସବୁ ଜଗନ୍ନାଥଙ୍କ ପାଖରେ ଯେପରି ଉତ୍ସୃଷ୍ଟ ଓ ସମର୍ପିତ । ଯେତେବେଳେ ଯିଏ ଯେପରି ଭାବେ ଯେଉଁ ପରିସ୍ଥିତିରେ ପଡ଼ିଲେ ମଧ୍ୟ ଜଗନ୍ନାଥଙ୍କୁ ଥରେ ଡାକଦେଲେ, ଜଗନ୍ନାଥଙ୍କ ଆଶୀଷ ଓ ଆଶୀର୍ବାଦର ଧାରା ତା' ପଛେ ପଛେ ଝରି ପଡ଼ୁଛି ଅବିଶ୍ରାନ୍ତ ଓ ଅନାବିଳ ଭାବରେ। ତା' ନ ହୋଇଥିଲେ ଜଗନ୍ନାଥ ସମ୍ପର୍କୀୟ ଏତେ ଲେଖା, ଏତେ କବି ଓଡ଼ିଆ ସାହିତ୍ୟର ଗୌରବ ମଣ୍ଡନ କରିନଥାନ୍ତେ । ସେଥିପାଇଁ ତ ଜଗନ୍ନାଥ ଏ ଜାତିରେ, ଏ କବିକୁଳରେ ଠାକୁର ରୂପେ ଯେତିକି ଗଣ୍ୟ, ଜ୍ଞାତିକୁଟୁମ୍ବ ଭାବେ ସେତିକି ଆପଣାର ସେତିକି ନିଜର। ନିଜର ଜ୍ଞାତିକୁଟୁମ୍ବ ଏ ଜାତିରେ ଯେତିକି ପ୍ରିୟ, ଜଗନ୍ନାଥ ସେହି ନ୍ୟାୟରେ ଏ ଜାତିର ସେତିକି ନମସ୍ୟ, ପ୍ରିୟ, ପ୍ରିୟତର ଓ ପ୍ରିୟତମ।

ସେଦିନ ଅନଙ୍ଗଭୀମ ଦେବ ନିଜକୁ "ପୁରୁଷୋତ୍ତମଙ୍କ ପୁତ୍ର" କହି ଯେପରି ଭାବେ ଜଗନ୍ନାଥଙ୍କ ପାଖରେ ସଂପୂର୍ଣ୍ଣ ସମର୍ପଣ କରିଛନ୍ତି, ସେହିପରି ଜଗମୋହନ ରାମାୟଣର ରଚୟିତା କବି ବଳରାମ ଦାସ ନିଜକୁ "ଜଗନ୍ନାଥଙ୍କ ବେଟା" ଭାବେ ନିଜକୁ ପରିଚିତ କରାଇବା ସଙ୍ଗେ ସଙ୍ଗେ ସମସ୍ତ ଜୀବନ ସେଇ ଜଗନ୍ନାଥଙ୍କ ଚରଣରେ ସମର୍ପିତ କରିଛନ୍ତି। ସେଇଥିପାଇଁତ ସେ ଥରେ ରଥଯାତ୍ରା ଉତ୍ସବରେ ଏଇ ଭକ୍ତ ଶ୍ରେଷ୍ଠ ଅଥଚ ବେଶ୍ୟାସକ୍ତ ବଳରାମ ସିଧା ସିଧା ବେଶ୍ୟାବାଡ଼ିରୁ ଆସି ଜଗନ୍ନାଥଙ୍କ ରଥ ଉପରକୁ ଯିବାରେ ଯେଉଁ ମାଡ଼ ଗାଳିରେ ତାଙ୍କୁ ଅସମ୍ମାନିତ କରାଯାଇଥିଲା,—ସେ କଥା ଜଗନ୍ନାଥ ଆଉ କେତେ ବା ସହିଥାନ୍ତେ ? ସେହି ଅପମାନରେ ବଳରାମ ବାଲିରଥ କରିବାରେ ତିନିମୂର୍ତ୍ତି ସେଇଠି ବିଜେ କଲେ—ଏଣେ କିନ୍ତୁ ରଥ ଗୁଳୁଳି ନାହିଁ । ଘଟଣା ଜଣାପଡ଼ିବାରେ ବଳରାମଙ୍କୁ ଗଜପତି ସସମ୍ମାନେ ଏ ପଟ ରଥ ଉପରକୁ ପାଛୋଟି ଆଣିବାରେ ପୁଣି ଏ ପଟର ରଥଗୁଳୁଳି। ଜଗନ୍ନାଥଙ୍କ କି ଅହେତୁକ ଆତ୍ମୀୟତା ? ଭକ୍ତର ଅପମାନ ଗାଳି ନିନ୍ଦା ମାଡ଼କୁ ସେ ଯେପରି ନିଜେ ଆଦରି ନେଲେ । ଏହାଠାରୁ କୁଟୁମ୍ବିତା କି ଆଉ କେଉଁଠି ସମ୍ଭବ ??

ବଳରାମଙ୍କ ସେହି ଉତ୍ସର୍ଗୀକୃତ ଜୀବନର ଜଗନ୍ନାଥପ୍ରାଣତା ଯେପରି ଉଚ୍ଛଳ, ସେହିପରି ଉନ୍ନତ ମଧ୍ୟ। ରାମାୟଣ ଲେଖାର ନିର୍ବିଘ୍ନ ସମାପନ, ରାମଙ୍କ ସହ ଜଗନ୍ନାଥଙ୍କ ସମ୍ପର୍କ ପ୍ରତିଷ୍ଠା ଓ ଜଗନ୍ନାଥଙ୍କ ପ୍ରତି ନିଜ ଆତ୍ମୀୟତାର ଅର୍ଘ୍ୟ, ଏହି ଲକ୍ଷ୍ୟ ଓ

ଉଦ୍ଦେଶ୍ୟରେ ସେ ତାଙ୍କର ସମସ୍ତ କଥା ଯେପରି କହି ଯାଇଛନ୍ତି । ଏହା ତାଙ୍କର ଆତ୍ମ ପ୍ରଶସ୍ତି ନୁହେଁ—ଆତ୍ମାର ଆକୁଳ ଆର୍ତ୍ତନାଦ ମାତ୍ର । ସେଥିପାଇଁ କବି କହିଛନ୍ତି—

"ବନ୍ଦଇ କମଳା ଯେ ବିଷ୍ଣୁର ପାଟରାଣୀ
ଦୈତ୍ୟଦଳ ଧ୍ୱଂସିନୀ ଜଗତ ଠାକୁରାଣୀ
ତାହା କହିବାକୁ ଯେ କରଇ ବଡ଼ ଭୟେ
ତୁ ମୋତେ ସୁଦୟା କର ଆଗୋ ମହାମାୟେ
ନ କହିଲେ ଏହି ଗ୍ରନ୍ଥ ନୁହଁଇ ସମ୍ପୂର୍ଣ୍ଣ
ତେଣୁ ବ୍ୟାକୁଳରେ ମୁଁ ଭାଳଇ ମନମନ
ଶୁଣି ପୁଣି ଅନୁଗ୍ରହ କଲେ ଜଗନ୍ନାଥ
ମୋହ ପାଇଁ ଧଇଲେ ମହାଲକ୍ଷ୍ମୀଙ୍କ ହାତ
ସିନ୍ଧୁର ଦୁଲଣୀ ଯେ ସୁପ୍ରସନ୍ନ ହୋଇଲେ
ରାମାୟଣ ଗ୍ରନ୍ଥ ତୁହି କହସି ବୋଇଲେ
ଲକ୍ଷ୍ମୀନାରାୟଣ ଅନୁଗ୍ରହ ଆଜ୍ଞା ପାଇ
ରାମାୟଣ ମହାଗ୍ରନ୍ଥ ବଖାଣଇଁ ମୁହିଁ"

ପଦେ ପଦେ ଗ୍ରନ୍ଥରଚନା ପାଇଁ ଜଗନ୍ନାଥଙ୍କର କରୁଣାର କଣାକୁ ଭକ୍ତ କବି ଚିର ଆଶାୟୀ ହୋଇଛନ୍ତି ।

ସମ୍ପୂର୍ଣ୍ଣ ଆତ୍ମସମର୍ପଣରେ ସେ ଆହୁରି ପାଦେ ଆଗେଇ ଯାଇ ତାଙ୍କ ରଚିତ "ଉଦ୍ଧବ ଗୀତା"ରେ ପୁଣି କହିଛନ୍ତି—

"ନୀଳଗିରି ଜଗନ୍ନାଥ ବେଟା ବଳରାମ ଦାସ
ଉଦ୍ଧବ ଗୀତା ଯେ ମୁହିଁ କଲିଁ ପ୍ରକାଶ"

ସେହି ଅନୁରୂପ ଅନ୍ୟ ଏକ କବିତାରେ ଅନ୍ୟସ ମଧ୍ୟ ପ୍ରକାଶ କରିଛନ୍ତି—

"ବେଲେକ ହେ ସହିବା ପ୍ରଭୁଙ୍କୁ ନ କହିବା
ଉହିତ ସ୍ୱର୍ଗେ ଇନ୍ଦ୍ରଗୋଟା
ଭଣେ ବଳରାମ ଦାସ ତୁଲାଇବା ନୂଆ ଉଆସ
ମୁଁ ଶ୍ରୀ ଜଗନ୍ନାଙ୍କ ବେଟା"

ଅନ୍ୟ କବିମାନଙ୍କ ପରି ଗୁଳେଇ ବଙ୍କେଇ ସେ ନିଜକୁ ଦାସ ବା ଭୃତ୍ୟ ନକହି ସିଧା ସଳଖ ଭାବେ ଘୋଷଣା କରି କରିଛନ୍ତି—"ଜଗନ୍ନାଥ ମୋ ବାପ, ମୁଁ ତାର ବେଟା" କି ସଖା ସୋଦରର ଆତ୍ମୀୟତା । ଠାକୁର ସେମିତ ନ ହେଲେ ଏକଥା କହିବ କିଏ ? କାହିଁକି ବା କହିବ ? ପୁଣି ଜଗନ୍ନାଥଙ୍କ ନାଁରେ କବି ଏପରି ପାଗଳ ହୋଇଛନ୍ତି ଯେ ତାଙ୍କ ରଚିତ 'ଜଗମୋହନ ରାମାୟଣ'ର କବି ଭାବରେ ହିଁ ସେ ଜଗନ୍ନାଥଙ୍କ ନାଁରେ ଭଣିତା କରି କହୁଛନ୍ତି—

"ନୀଳଗିରି ଜଗନ୍ନାଥ ଦୟା ମୋତେ କଲେ
ତେଣୁ ସେ ଗ୍ରନ୍ଥ ମୋର ଶରୀରୁ ପ୍ରସରିଲେ
ଜଗତର ହିତେ ମୁଁ ଯେ ଗ୍ୟାନ କହିଲି
ପାପୀ ଜନଙ୍କର ପୁଣ୍ୟ କରାଇଲି
ଜଗମୋହନ ରାମାୟଣ ଯେଣୁ କବି ଜଗନ୍ନାଥ
ତାହାର ଆଜ୍ଞାରେ ଲିହିଲି ମୋହର ହାତ"

ଏ ସବୁକୁ ଜଗନ୍ନାଥଙ୍କ ନାଁରେ ଭଣିତା କରିବା ମୂଳରେ ତାଙ୍କର କାବ୍ୟ ସମାପ୍ତି ପାଇଁ ସେ ଜଗନ୍ନାଥଙ୍କ କୃପା କରୁଣା ଭିକ୍ଷା କରିଛନ୍ତି । ନିଜକୁ ପୁଣି 'ଜଗନ୍ନାଥଙ୍କ ପୁଅ' ନ କହି "ଜଗନ୍ନାଥଙ୍କ ବେଟା" କହିବା ମୂଳରେ ବର୍ଣ୍ଣବିଦ୍ୱେଷ ଲୋପ ପାଇଁ ତାଙ୍କର ଆତ୍ମା ଅହରହ ଅତିଷ୍ଠ ହୋଇଛି ।

ଜଗନ୍ନାଥଙ୍କ ବିନା ତାଙ୍କ ଜୀବନ ନିରର୍ଥକ । ଜଗନ୍ନାଥଙ୍କୁ ସ୍ମରଣ ନ କଲେ/ ନ ଦେଖିଲେ ତାଙ୍କୁ ଅନ୍ନ ଜଳ ରୁଚେ ନାହିଁ । ଏପରି ଭକ୍ତିତାଦ୍‌ଗତ୍ୟ ପ୍ରାଣ କାହିଁ ? ତେଣୁ ଜଗମୋହନ ରାମାୟଣ ଲଙ୍କାକାଣ୍ଡରେ ପୁଣି ଥରେ ନିଜକୁ ଜଗନ୍ନାଥଙ୍କଠାରେ ନିଜର ସବୁକିଛି ବିଶ୍ୱସ୍ତଭାବେ ସମର୍ପି ଦେଇ କହିଛନ୍ତି—

" ଜଗନ୍ନାଥ ଦେଖିବି ଗ୍ରହିବି ଜଗନ୍ନାଥ
ଜଗନ୍ନାଥ ଗ୍ରୀମୁଁରେ ଯୋଡ଼ିଛି ଦୁଇହାତ
ଜଗନ୍ନାଥ ବୋଲି ମୁଁ ବଞ୍ଚାଇ ଦାହେଦିନ
ଜଗନ୍ନାଥ ବିନୁ ଆନେ ନ ବଳଇ ମନ
ଜଗନ୍ନାଥ ଶରଣ ମୁଁ ଜଗନ୍ନାଥ ଶାଖା
ଜଗନ୍ନାଥ ବିନୁ ମୋର ଆନେ ନାହିଁ ଲେଖା
ଜଖନ୍ନାଥ ମୋହର ପ୍ରାଣର ଆଦିପତି
ଜଗନ୍ନାଥ ବିନୁ ମୁଁ ଆନେ ପାଇବି ସୁଗତି

ଜଗନ୍ନାଥ ବିହର୍କେ ନାହିଁ ଆନ ସୁଖ
ଜଗନ୍ନାଥ ମେହାର ଅନ୍ତ-ପଞ୍ଚଭୂତ ।
ଜଗନ୍ନାଥ ସୁନ୍ଦର ମୁଖ ଚାହିଁ ଚାହିଁ
ହୋଇଲି ବଶ ମୁଁ ଆନ କାର୍ଯ୍ୟ ନାହିଁ"—

ଏଇ ସମସ୍ତରୁହିଁ ପରିଷ୍କାର ହୋଇଯାଇଛି ଜଗନ୍ନାଥହିଁ ବଳରାମଙ୍କର ସବୁକିଛି । ପ୍ରାଣର କି ଆବେଗ, ଆବେଗ—ଭକ୍ତିମତ୍ତାର କି ଉଚ୍ଛଳ ଉତ୍ସ । ତେଣୁ କବି ଭକ୍ତିମତ୍ତାରେହିଁ ବଳରାମ, ଶେଷରେ ମତ୍ତ ବଳରାମ ହୋଇଛନ୍ତି । ସେ ଜାତ୍ୟାଭିମାନର ସବୁକିଛି ଜଳାଞ୍ଜଳି ଦେଇଛନ୍ତି ଜଗନ୍ନାଥଙ୍କର ଚରଣାରବିନ୍ଦରେ—ତାଙ୍କର ଆଜ୍ଞା ଆଦେଶରେ ସମଗ୍ର ଜୀବନକୁ ଅତିବାହିତ କରିଛନ୍ତି । ଭକ୍ତ-ଭଗବାନ/କ୍ଷୀରନୀରର ସମ୍ପର୍କ-ଏ ଦୃଢ଼ ବନ୍ଧନର ଡୋରକୁ ତୁଟେଇବ/ଛିଡ଼େଇବ କିଏ ? ଏତ ଗଲା ବଳରାମ ଦାସଙ୍କ କଥା—ଠିକ୍ ସେହି ଅନୁରୂପ ରସକଲ୍ଲୋଳକାର ଦୀନକୃଷ୍ଣ ଦାସଙ୍କ ଜୀବନ ଚରିତ ।

ଜଗନ୍ନାଥ କିପରି ଭକ୍ତର ଭଗବାନ ଓ ଭକ୍ତର ଅଧୀନ ତଥା ଭକ୍ତକୁ ସଦାବେଳେ ରକ୍ଷା ଦୌଡ଼ାଇ ଆସିଛନ୍ତି, ତାହାହିଁ ଭକ୍ତ କବି ଦୀନକୃଷ୍ଣ ଦାସଙ୍କ ଜୀବନରୁ ସ୍ପଷ୍ଟ ଅନୁମେୟ । ପୂର୍ବରୁତ ତାଙ୍କର କୁଷ୍ଠବ୍ୟାଧି ଆରୋଗ୍ୟ କଥା ଜଗନ୍ନାଥଙ୍କ କୃପା କରୁଣାରୁ ଯେ ସମ୍ଭବ ହୋଇଥିଲା, ସେକଥା କୁହାଯାଇଛି । ଏଠାରେ ଆଉ ଗୋଟିଏ ଘଟଣାର ଉଲ୍ଲେଖ କରାଯାଉଛି ଯେ ଭକ୍ତ କବି କିପରି ବନ୍ଦୀଶାଳାରୁ ମୁକ୍ତ ହୋଇଥିଲେ । ଏଇକଥା ଡକ୍ଟର ହରେକୃଷ୍ଣ ମହତାବ ଭକ୍ତ କବିଙ୍କ ସମ୍ପର୍କରେ ଯାହା ଉଲ୍ଲେଖ କରିଛନ୍ତି, ତାହାହିଁ ନିମ୍ନରେ ଉଦ୍ଧାର କରୁଛି । ଡକ୍ଟର ମହତାବଙ୍କ ଭାଷାରେ—

"ଦୀନକୃଷ୍ଣ ଦାସଙ୍କ ସଙ୍ଗୀତ ଶୁଣି ଭକ୍ତରେ ତାଙ୍କୁ ଯିଏ ଯାହା ଅର୍ପଣ କରୁଥିଲେ, ସେଇଥିରେ ସେ ନିଜର ଓ ନିଜ ପରିବାରର ଭରଣପୋଷଣ କରୁଥିଲେ । ସଙ୍ଗୀତରୁ ଜଣାଯାଏ ତାଙ୍କ ଜୀବନ ଦୁଃଖମୟ ଥିଲା । ନିଜର ଶାରୀରିକ ମାନସିକ ଦୁଃଖକୁ ସେ ଜଗନ୍ନାଥଙ୍କୁ ଭକ୍ତ୍ୟର୍ଘ ରୂପେ ଅର୍ପଣ କରି ସାନ୍ତ୍ୱନା ଲାଭ କରୁଥିଲେ । ଜଗତରେ ଆର୍ତ୍ତ ଓ ଦୁଃଖିତ ସମସ୍ତେ । ତେଣୁ କୃଷ୍ଣ ଦାସଙ୍କ ସଙ୍ଗୀତ ସମସ୍ତଙ୍କୁ ସ୍ପର୍ଶ କରୁଥିଲା । ଭକ୍ତ କବି ହିସାବରେ କୃଷ୍ଣଦାସଙ୍କ ସଙ୍ଗୀତ ଚାରିଆଡ଼େ ବ୍ୟାପିଗଲା । ଖ୍ୟାତି ମଧ୍ୟ ତା'ର ଆନୁଷାଙ୍ଗିକ ବିପଦ ଇର୍ଷାକୁ ଆମନ୍ତ୍ରଣ କରେ । ଦୀନକୃଷ୍ଣ ଦାସଙ୍କ ପକ୍ଷରେ ତାହାହିଁ ଘଟିଲା ।

ସେ ସମୟର ଖୋର୍ଦ୍ଧାର ରାଜା ଦିବ୍ୟସିଂହ ଦେବ (୧ମ) ଖ୍ରୀ ୧୬୮୯—୧୭୧୫ । ସେ ବିଦ୍ୟୋତ୍ସାହୀ । ବହୁ କବି ପଣ୍ଡିତଙ୍କୁ ସେ ଅନୁଗ୍ରହ ପ୍ରଦାନ କରୁଥିଲେ । ସେ

ସମସ୍ତରେ ବର୍ତ୍ତମାନଙ୍କ ପକ୍ଷରେ ଦିବ୍ୟସିଂହ ଦେବଙ୍କ ପ୍ରତି ଅକୁଣ୍ଠିତ ଶ୍ରଦ୍ଧା ଓ ଭକ୍ତିଥିଲା । ବ୍ୟକ୍ତି ପ୍ରତି ଶ୍ରଦ୍ଧା ଓ ଭକ୍ତି କ୍ରମେ ଅତି ସ୍ତୁତି ବା ଚାଟୁକୁ ଆକର୍ଷଣ କରିଥାଏ । ପରିଣାମରେ ଏକ ଚାଟୁକାର ଦଳ ସୃଷ୍ଟି ହୁଅନ୍ତି । ଏହି ଦଳଟି ପ୍ରତିଷ୍ଠିତ ବ୍ୟକ୍ତିଙ୍କୁ ବିଚାର ଶୂନ୍ୟ କରି ସେମାନଙ୍କୁ ନିନ୍ଦନୀୟ କର୍ମ ପ୍ରେରଣା ଦିଅନ୍ତି ।

ରାଜା ଦିବ୍ୟସିଂହଙ୍କ କାନକୁ ଆସିଲା କୃଷ୍ଣଦାସଙ୍କ ସଙ୍ଗୀତ ଏବଂ ସାଧାରଣ ଜନତାଙ୍କ ଉପରେ ତାହାର ପ୍ରଭାବ । ରାଜା ଡାକି ପଠାଇଲେ କବିଙ୍କୁ ତାଙ୍କ ଦର-ବାରରେ ସଙ୍ଗୀତ ଶୁଣାଇବାକୁ । ଦୀନକୃଷ୍ଣ କେବଳ ସଙ୍ଗୀତ ରଚନାରେ ପ୍ରବୀଣ ନଥିଲେ, ତାଙ୍କର ସୁମଧୁର ସ୍ୱର ମଧ୍ୟ ଚିତ୍ତାକର୍ଷକ ଥିଲା । ସେ ବିଭୋର ହୋଇ ସଙ୍ଗୀତ ଗାନ କଲେ । ରାଜା ମୁଗ୍ଧ ହୋଇ ବାରମ୍ବାର ସେ ସଙ୍ଗୀତ ଗାନ ପାଇଁ ଅନୁରୋଧ କଲେ । ଏହି ହେଲା ଅନ୍ୟ କେତେକ ସଭା-କବି ଓ ପଣ୍ଡିତଙ୍କ ଈର୍ଷାର କାରଣ । ସେମାନଙ୍କ ଭିତରୁ ଜଣେ ମୃଦୁ ହାସ୍ୟ ସହ କବିଙ୍କୁ କହିଲେ, "ଏହିପରି ସଙ୍ଗୀତ ଗୋଟିଏ ପ୍ରଭୁଙ୍କ ନାମରେ ଲେଖି ଗାନ କରି ବୋଲ । ଲୋକେ ଶୁଣନ୍ତୁ ରାଜାଙ୍କର କୀର୍ତ୍ତିଗାନ ।" କୌଣସି ଉତ୍ତର ନ ଦେଇ କୃଷ୍ଣଦାସ ନୀରବ ରହିଲେ । ଅନ୍ୟ ଚାଟୁକାରଙ୍କ ମଧ୍ୟରେ ପରସ୍ପର ପ୍ରତିଦ୍ୱନ୍ଦ୍ୱିତା ଚାଲିଲା କିଏ ବେଶି କବିଙ୍କୁ ରାଜାଙ୍କ ସ୍ତୁତିଗାନ କରିବା ପାଇଁ ପ୍ରବର୍ତ୍ତାଇ ପାରିବ । କବି ରାଜାଙ୍କ ଆଡ଼କୁ ଚାହିଁ ନମ୍ର ଭାବରେ କହିଲେ, "ପ୍ରଭୁ ମୁଁ ଜଣେ ପ୍ରଭୁଙ୍କ ଅକିଞ୍ଚନ ପ୍ରଜା, ମୋର ଏ ଦେହଟି ଆପଣଙ୍କର । କିନ୍ତୁ ମୋର ମନ ଓ ହୃଦୟ ମୁଁ ଜଗନ୍ନାଥଙ୍କ ଠାରେ ସମର୍ପଣ କରି ଦେଇଛି । ସଙ୍ଗୀତ ଏ ଶରୀରର ବସ୍ତୁ ନୁହେଁ, ଏ ହୃଦ୍‌ଗତ ହୁଏ ହୃଦୟରୁ । ହୃଦୟଟିକୁ ଜଗନ୍ନାଥଙ୍କୁ ଅର୍ପଣ କରିଦେଇ ଥିବାରୁ ଆଉ ସେଠୁ ଫେରାଇ ଆଣି ପ୍ରଭୁଙ୍କ ଠାରେ ଅର୍ପଣ କରିପାରିବି ନାହିଁ ।" ଏଥିରେ ଚାଟୁକାର-ମାନେ ମନେ କଲେ ଏକ ସୁବିଧା ମିଳିଛି ଦୀନକୃଷ୍ଣଙ୍କୁ ଉଚିତ ଶିକ୍ଷା ଦେବାପାଇଁ । ସେମାନେ ଉତ୍ତେଜିତ ସ୍ୱରରେ ଯୁକ୍ତି କଲେ, "ରାଜଭକ୍ତଙ୍କୁ ରାଜାଙ୍କଠାରେ ଶରୀର ଏବଂ ମନ ମଧ୍ୟ ଅର୍ପଣ କରିବାକୁ ହୁଏ । ତାହା ନ ହେଲେ ରାଜଭକ୍ତି ଏକ ଭଣ୍ଡାମି, କେବଳ ମୁହଁର କଥା, ରାଜାଙ୍କୁ ପ୍ରତାରଣା କରିବା ପାଇଁ ।" କବି ନୀରବ ଓ ଗମ୍ଭୀର, ପୁଣି ରାଜାଙ୍କୁ ବିନମ୍ର ନିବେଦନ କରି କହିଲେ, "ରାଜା ମୁଁ ମୋର ହୃଦୟକୁ ଜଗନ୍ନାଥଙ୍କ ଠାରୁ ଫେରାଇ ଆଣି ପାରିବି ନାହିଁ ।" ଚାଟୁକାରଙ୍କର ସ୍ୱର ଉଠିଲା, "ତେବେ ତୁମେ ରାଜଦ୍ରୋହୀ, ରାଜଦରବାରରେ ଅପରାଧୀ ।" ସେମାନେ କେବଳ ଏତିକି କଥାରେ କହିଲେ ନାହିଁ, ପୁରାଣମାନଙ୍କରୁ ନାନା ଉଦାହରଣ ଦେଇ ଦର୍ଶାଇଲେ ଯେ ରାଜାଙ୍କ ଠାରେ ଶରୀର ମନ ହୃଦୟ ସମର୍ପଣ କରିବାକୁ ହେବ, ଅନ୍ୟଥା ଜଣେ ରାଜଦ୍ରୋହୀ ବୋଲି ବିବେଚିତ ହେବ । ରାଜଦ୍ରୋହ ପାଇଁ ଦଣ୍ଡର ମଧ୍ୟ ବିହିତ ବ୍ୟବସ୍ଥା ଅଛି । ଏକ ପକ୍ଷରେ କବି ନୀରବ, ଅନ୍ୟ ପକ୍ଷରେ ଉଚ୍ଚସ୍ୱରରେ ରାଜଭକ୍ତି ଓ ରାଜଦ୍ରୋହ

ଦିମ୍ଵିତରେ ଖେପଣମାନ ଗୃହଛନ୍ତି । ଧୀରେ ଧୀରେ ରାଜାଙ୍କ 'ଅହଂ' ମଧ୍ୟ ଆଘାତପ୍ରାପ୍ତ ସାପର ଫଣା ପରି ମୁଣ୍ଡଟେକ ଉଠୁଛି । ଶେଷରେ ସେ କେବଳ ଦୃଢ଼ ଭାବରେ କବିଙ୍କୁ କହିଲେ, "ତୁମକୁ ରାଜଭକ୍ତିର ପ୍ରମାଣ ଦେବାକୁ ହେବ । ସେ ପ୍ରମାଣ ହେଉଛି ରାଜାଙ୍କ ପ୍ରଶସ୍ତି ଗାନ ।" ଦୀନକୃଷ୍ଣ ନମ୍ର ଅଥଚ ଦୃଢ଼ ସ୍ୱରରେ କହିଲେ, "କ୍ଷମା କରନ୍ତୁ ପ୍ରଭୁ, ମୁଁ ତାହା କରି ପାରିବି ନାହିଁ ।" ଏଥରରେ ଉତ୍‌ଥିତ ଫଣା କବିଙ୍କୁ ଜୋରରେ ଦଂଶନ କଲା । ରାଜା ଆଦେଶ ଦେଲେ, "ଏହାଙ୍କୁ ବନ୍ଦୀ କର ।" ବନ୍ଦୀ କହିଲେ ସେ ସମୟରେ ବୁଝାଉଥିଲା ବେଡ଼ି ଶାଙ୍କୁଳି ଗୋଡ଼ରେ ଦେଇ ଅନ୍ଧକାରଚ୍ଛନ୍ନ ଘରେ ପୂରେଇ ବାହାରୁ ବନ୍ଦ କରିଦେବା । ଏ ଆଦେଶ କ୍ରୂର ବୋଲି ଗ୍ରନ୍ଥକାରମାନେ ମଧ୍ୟ ମନେକଲେ ଓ କବିଙ୍କୁ କିଛି ଦିନ ସମୟ ଦେବାପାଇଁ ରାଜାଙ୍କୁ ଅନୁରୋଧ କଲେ । କବିଙ୍କ ମଧ୍ୟ ଅଳ୍ପ ନରମି ଯିବାପାଇଁ ପରାମର୍ଶ ଦେଲେ । କିନ୍ତୁ, କୃଷ୍ଣଦାସ ଅଟଳ ଦୃଢ଼ । ସେ ପୁଣି ଦୃଢ଼ ସ୍ୱରରେ କହିଲେ, "ଯେଉଁ ହୃଦୟକୁ ମୁଁ ଜଗନ୍ନାଥଙ୍କୁ ଅର୍ପଣ କରିଛି ତାକୁ ପୁଣି ଫେରାଇ ଆଣି ରାଜାଙ୍କୁ ଅର୍ପଣ କରି ପାରିବି ନାହିଁ ।" ନେଇଗଲେ ରାଜକର୍ମଚାରୀମାନେ କୃଷ୍ଣଦାସଙ୍କୁ ବନ୍ଦୀ ଶାଳାକୁ, ବେଡ଼ି ଶାଙ୍କୁଳି ପିନ୍ଧେଇ ଏପରି ଏକ ଗହ୍ୱରରେ ପୂରାଇ ଦେଲେ ଆଲୋକର ଲେଶ ସୁଦ୍ଧା ପ୍ରବେଶ କରେ ନାହିଁ; ଖାଦ୍ୟ ପେୟରେ କୌଣସି ବ୍ୟବସ୍ଥା କରାହେଲା ନାହିଁ । ସେହି ଗହ୍ୱର ମଧ୍ୟରେ ସେ ଧ୍ୟାନ କଲେ ବଳଭଦ୍ରଙ୍କୁ । ପ୍ରଭୁ ହଳ ଲଙ୍ଗଳ ଧରି ଏତେ ଶତ୍ରୁ ନାଶ କରିଛ, ଏତେ ଭକ୍ତଙ୍କୁ ରକ୍ଷା କରିଛ । ଏ ଦୀନ କବିଟିକୁ କ'ଣ ରକ୍ଷା କରିପାରିବ ନାହିଁ ? ନ ହେଲେ ନିନ୍ଦା ହେବ ତୁମକୁ ଯିନା !

"ଲୋକେ ବୋଲିବେ କୃଷ୍ଣ ଦାସ
କୃଷ୍ଣ ଚରଣେ କଲା ଆଶ ।
ତା'ର ବିନାଶେ କାଳେ ହରି
ପାରିଲେ ନାହିଁ ରକ୍ଷା କରି ।
ଆହି କମାଇ ଏ ସଂସାରେ
ଭଜିବେ ଶ୍ରୀ ହରି ପଦ୍ମରେ ।
ଜଗତେ ଏହା ପ୍ରକାଶିବ
ମହିମା ନାଉନ ଦଶିବ ।

(ଦାର୍ଢ୍ୟତା ଭକ୍ତି)

ଭକ୍ତର ଏ ଅଭିମାନ ବଳଦେବଙ୍କୁ ଅସହ୍ୟ ହେଲା । ସେ ଅର୍ଦ୍ଧରାତ୍ରରେ ସ୍ୱପ୍ନରେ ରାଜାଙ୍କୁ ଭୟ ପ୍ରଦର୍ଶନ କଲେ, "ନିଜ ସ୍ତୁତି ଗାନ ପାଇଁ ଜଗନ୍ନାଥଙ୍କ ସ୍ତୁତି ଗାନ କରୁଥିବା କବିଙ୍କୁ ବନ୍ଦୀ କରିଛ, ଏହାର ପରିଣାମ ଭୟାବହ ହେବ ।" ରାଜାହଳ ଲଙ୍ଗଳଧାରୀ ବଳଦେବଙ୍କ ରୁଦ୍ର ମୂର୍ତ୍ତି ଦେଖି ଭୟଭୀତ ହୋଇ ଉଠି ପଡ଼ିଲେ ।

କୃଷ୍ଣ ଦାସଙ୍କୁ ବନ୍ଦୀ କରିବାର ଆଦେଶ ତାଙ୍କର ମନେ ପଡ଼ିଗଲା । ରାତିସାରା ଅସ୍ଥିର ହୋଇ ସେ ଆଉ ନିଦ୍ରା ଯାଇ ପାରିଲେ ନାହିଁ । ଇତି ମଧ୍ୟରେ ବନ୍ଦୀଶାଳାରେ ସେହି ଅର୍ଦ୍ଧରାତ୍ରରେ ହଠାତ୍ ନିଦ ଭାଙ୍ଗିଯିବାରୁ କୃଷ୍ଣଦାସ ଉଠି ପଡ଼ିଲେ । ହାତ ଗୋଡ଼ରୁ ବେଡ଼ି ଶିକୁଳି ଖୋଲି ଯାଇଛି । ଠିକ୍ ହାତ ପାଖରେ କିଛି ଖାଦ୍ୟ ମଧ୍ୟ ଅଛି । ସେ ଜାଣିପାରିଲେ ଏ ହେଉଛି ବଳଦେବଙ୍କ ଅନୁଗ୍ରହ । ରାତିସାରା ଶ୍ରୀକୃଷ୍ଣ ଓ ବଳଦେବଙ୍କୁ ସ୍ତୁତି କରି ସେ ଗୀତ ରଚନା କରିବାରେ ଲାଗିଲେ । ପ୍ରତ୍ୟୁଷରେ ରାଜା ନିଜେ ଯାଇ ବନ୍ଦୀଶାଳାରେ ପହଞ୍ଚିଲେ । ଦେଖିଲେ ବେଡ଼ି ଶିକୁଳି ସବୁ ଖୋଲିଯାଇଛି । ବନ୍ଦୀର ଗଳାରେ ଜଗନ୍ନାଥଙ୍କ ଅଙ୍ଗ ହାରଟି ଶୋଭା ପାଉଛି । ସେ ହରିନାମ ଗାନ କରୁଛନ୍ତି । ତେଣେ ମନ୍ଦିର ସେବକମାନେ ମନ୍ଦିର ଦ୍ୱାର ଫିଟାଇ ଦେଖନ୍ତି ପ୍ରଭୁଙ୍କ କରପଲ୍ଲବ ନାହିଁ । ଶ୍ରୀଅଙ୍ଗ ତୁଚ୍ଛ ଲଙ୍ଗଳା ହୋଇ ରହିଛି । ବ୍ୟସ୍ତବ୍ୟସ୍ତ ହୋଇଯାଇ ସେମାନେ ରାଜାଙ୍କୁ ଜଣାଇଲେ । ଏହାପରେ ସମସ୍ତ ବିଷୟ ବୁଝିବାକୁ ଆଉ ବାକି ରହିଲା ନାହିଁ । ରାଜା କୃଷ୍ଣ ଦାସଙ୍କୁ କ୍ଷମା ପ୍ରାର୍ଥନା କଲେ । ତାଙ୍କୁ ଅନ୍ନ ବସ୍ତ୍ର ମଧ୍ୟ ଦାନ କଲେ । ଲୋକେ କବିଙ୍କର ଜୟଗାନ କଲେ ।

ଆଜି ସରକାର ବା ଅନ୍ୟ ପୃଷ୍ଠପୋଷକମାନଙ୍କ ସାହାଯ୍ୟ ସହାନୁଭୂତି ପାଇ ଯେପରି ଲେଖକମାନେ ନିଜର ସ୍ୱଗୃର ବୁଦ୍ଧି ବିକ୍ରୟ କରି ଦେଉଛନ୍ତି; ସେମାନଙ୍କ ପକ୍ଷରେ କବି ଦୀନକୃଷ୍ଣଙ୍କ ଦାର୍ଢ୍ୟ ଏକ ଶିକ୍ଷାର ବିଷୟ ହେବା ଉଚିତ୍ ନୁହେଁ କି ? ଦଶମ ଏକାଦଶ ଶତାବ୍ଦୀଠାରୁ ସଂସ୍କୃତ ସାହିତ୍ୟରେ ରାଜାଙ୍କ ପ୍ରଶସ୍ତିର ପ୍ରମାଣ ମିଳେ । ଓଡ଼ିଆ ସାହିତ୍ୟରେ ରାଧାନାଥ ଯୁଗରେ ମଧ୍ୟ ପୃଷ୍ଠପୋଷକଙ୍କ ପ୍ରଶସ୍ତି ଏକ ପ୍ରଥା ପ୍ରାୟ ଥିଲା । ନିଜ ରଚନାକୁ ରାଜାଙ୍କ ନାମରେ ପ୍ରକାଶ ବା ଭଣିତା କରିବାର ପରମ୍ପରା ସେତେବେଳେ ସୃଷ୍ଟି ହୋଇଯାଇଥିଲା । ସ୍ୱରଚନା ବିକ୍ରୟ ସ୍ୱକନ୍ୟା ବିକ୍ରୟ ପରି ଏକ ନିନ୍ଦନୀୟ ବୃତ୍ତି ବୋଲି ପରିଗଣିତ ହେଲ ନାହିଁ । କ୍ରମେ ଯୁଗ ବଦଳିଛି । ତଥାପି ଗଣତନ୍ତ୍ର ପଦ୍ଧତିରେ ମଧ୍ୟ ଶାସନ ଓ ଶାସକଙ୍କ ପ୍ରଶସ୍ତି ଗାନ ନିନ୍ଦନୀୟ ବୋଲି ଅନେକ ପ୍ରତିଷ୍ଠିତ ସାହିତ୍ୟିକ ମନେ କରୁ ନାହାନ୍ତି ।"

ଡକ୍ଟର ମହତାବଙ୍କ ଉପର ଲିଖିତ ଉକ୍ତି ଅତ୍ୟନ୍ତ ତାତ୍ପର୍ଯ୍ୟ ପୂର୍ଣ୍ଣ । ଜଗନ୍ନାଥଙ୍କୁ ଯେ ଆଶ୍ରା କରିଛି, ଯେତେ ବଡ଼ ରାଜ ଶକ୍ତି ହେଉନା କାହିଁକି, ତା'ର ପାଖରେ ସେ ନିଶ୍ଚୟ ମୁଣ୍ଡ ନୁଆଁଇବ । ସେଇଥି ପାଇଁତ—"ମୋ ନାମେ ଭଣିଲେ ଅବଶ୍ୟ, ଅନେକ ଦେବି ଗ୍ରାମଦେଶ"ର ଉକ୍ତିକୁ ଦୀନକୃଷ୍ଣ ପ୍ରତ୍ୟାଖ୍ୟାନ କରିଛନ୍ତି । ଜଗନ୍ନାଥୈକ ପ୍ରାଣତାରେ ଏଭଳି ଚମକପ୍ରଦ ଇତିହାସ କାହିଁ ? ଧନ୍ୟ ଦୀନକୃଷ୍ଣ ! ଧନ୍ୟ ତୁମର ଭକ୍ତିମନ୍ତ୍ର । ସେହିପରି ଜଗନ୍ନାଥଙ୍କ ସହିତ ପଞ୍ଚସଖାର ଅନ୍ୟତମ ସଖା ଜଗନ୍ନାଥ ଦାସଙ୍କ ମଧ୍ୟ ନିବିଡ଼ ସମ୍ପର୍କ ଥିଲା । ତାଙ୍କ ଭାଗବତରେ ଶ୍ରୀକୃଷ୍ଣ ସାର୍ବଭୌମ ହେଲେ ମଧ୍ୟ ସେ

ଶ୍ରୀକୃଷ୍ଣଙ୍କ ସ୍ଥାନରେ ବାରମ୍ବାର ଜଗନ୍ନାଥଙ୍କ ନାମୋଲ୍ଲେଖ କରିଛନ୍ତି । ନିମ୍ନ ଉକ୍ତିହିଁ ତାହାର ଶ୍ରେଷ୍ଠ ପରିଚୟସୂଚକ ।

ଆପଣେ ପ୍ରଭୁ ଜଗନ୍ନାଥ । ଦେବକୀ ଗର୍ଭେ ହେବେ ଜାତ ।
ହୋଇବୁ ଏ ଆମ୍ଭର ସତ୍ୟ । କି କି କହିଲେ ଜଗନ୍ନାଥ ।
ତୋର ଉଦରେ ଜଗନ୍ନାଥ । ଫଣାରେ ଛାଇଁଲି ଅନନ୍ତ ।
ଜାଣିଲେ ତାହା ଜଗନ୍ନାଥ । ଆକାଶେ ଉଠୁଛି ଦଇତ୍ୟ ।
ତତକ୍ଷଣେ ଉଠି ଜଗନ୍ନାଥ । ଝୁଆ ଧଇଲେ ବେନି ହସ୍ତ ।

ସିଏ କୃଷ୍ଣ ସେ ଜଗନ୍ନାଥ । ତାହାହିଁ ଭକ୍ତକବି ଜଗନ୍ନାଥଙ୍କ ସ୍ଥିର ସିଦ୍ଧାନ୍ତ ମତ ।

ଜଗନ୍ନାଥ ଚରିତାମୃତରେ ଲୁହାଯାଇଛି—

ବିଜୁଳି ଯେସନେ ଚଞ୍ଚଳେ । ଚମକି ଦିଶେ ମେଘମାଳେ ।
ସେହି ରୂପରେ ସ୍ୱାମୀ ଗଲେ । ଜଗନ୍ନାଥ ଅଙ୍ଗେ ମିଶିଲେ ।

ଜଗନ୍ନାଥ ଦାସ ନିଜ ଦେହାନ୍ତ ସମୟକୁ ଜାଣି ପାରିଥିଲେ । ଯେଉଁଦିନ ସେ ମର୍ତ୍ତ୍ୟ-ଧାମରୁ ଦେହତ୍ୟାଗ କଲେ, ସେଦିନ ସେ ସୂକ୍ଷ୍ମ ଶରୀରରେ ରତ୍ନ ସିଂହାସନ ନିକଟରେ ଜଗନ୍ନାଥଙ୍କ ଅଙ୍ଗରେ ଲୀନ ହୋଇଥିଲେ । ଏଥିରୁ ସୁସ୍ପଷ୍ଟ ଯେ ଜଗନ୍ନାଥଙ୍କ ପ୍ରତି ତାଙ୍କର କି ଅଚଳା ଭକ୍ତି ଥିଲା ଓ ସେ ଜଗନ୍ନାଥଙ୍କର କିପରି ଅତି ପ୍ରିୟପାତ୍ର ଥିଲେ ।

ପୁଣି ତାଙ୍କ ରଚିତ "ଦାରୁବ୍ରହ୍ମ ଗୀତା ଓ ଶ୍ରୀଗୁଣ୍ଡିଚା ବିଜୟ"ରେ ଜଗନ୍ନାଥଙ୍କ ସମ୍ପର୍କରେ ସେ ଯାହା ସେ ସମସ୍ତ ରଚନାର ପ୍ରତି ଛନ୍ଦରେ ବର୍ଣ୍ଣନା କରିଛନ୍ତି ତାହାହିଁ ତାଙ୍କର ଜଗନ୍ନାଥ ପ୍ରାଣତାର ଶ୍ରେଷ୍ଠ ପରିଚୟ । ତେଣୁ ଜଗନ୍ନାଥ ଦାସ ଏକାଧାରରେ ଜଣେ କବି, ସିଦ୍ଧ ସାଧକ ଓ ପ୍ରଭୁ ଜଗନ୍ନାଥଙ୍କ ଅତି ନିକଟ ସମ୍ପର୍କୀୟ ହୋଇଥିବାରୁ, ଓଡ଼ିଶାର ତତ୍କାଳୀନ ଗଜପତି ରାଜା ପ୍ରତାପରୁଦ୍ରଙ୍କ ରାଣୀ ଗୌରୀ ପାଟ ମହାଦେଈ ତାଙ୍କଠାରୁହିଁ ଦୀକ୍ଷା ଗ୍ରହଣ କରିଥିଲେ ।

ଭକ୍ତକବି ଜଗନ୍ନାଥ ଦାସ ଓ ତାଙ୍କ ସୃଷ୍ଟ ଅତିବଡ଼ୀ ସମ୍ପ୍ରଦାୟର ବୈଷ୍ଣବ ମାନଙ୍କ ମତରେ ରତି, ପ୍ରୀତି ଓ ଶ୍ରୁତି ତତ୍ତ୍ୱ ଉପରେ ଏହି ତ୍ରିମୂର୍ତ୍ତି, ଜଗନ୍ନାଥ ବଳଭଦ୍ର ସୁଭଦ୍ରା ପ୍ରତିଷ୍ଠିତ ଓ ଯୁଗ ଯୁଗ ଲାଗି ପ୍ରକୃତିତ ମଧ୍ୟ । ଯେଉଁ କଥା କି "ପୂର୍ଣ୍ଣରସ ଚନ୍ଦ୍ରିକା"ରେ ବର୍ଣ୍ଣିତ ହୋଇଛି ।

ରତି ବଳଭଦ୍ର ଦେବଂ ପ୍ରୀତିଭଦ୍ରା ରସାତ୍ମିକଂ
ଶ୍ରୁତି ଜଗନ୍ନାଥ ମୂର୍ତ୍ତିଂ ପ୍ରଥମା ତତ୍ତ୍ୱ ତନ୍ତ୍ରପି ।

ଭକ୍ତକବି ଜଗନ୍ନାଥ ଦାସଙ୍କ ସମ୍ପର୍କରେ ଆହୁରି ମଧ୍ୟ ଏକ କିମ୍ବଦନ୍ତୀ ରହିଛି । ସେ କିମ୍ବଦନ୍ତୀ ହେଲା—ଅତୀତରେ ଓଡ଼ିଶାର ମଣିଗ୍ରାମ ନାମକ ଏକ ସାଧବ ଜାଭା, ସୁମାତ୍ରା ଦ୍ୱୀପକୁ ବାଣିଜ୍ୟ ବ୍ୟବସାୟ ପାଇଁ ଯାଇଥିଲେ ଏବଂ ବାଣିଜ୍ୟ ବ୍ୟବସାୟରୁ ପ୍ରଚୁର ଲାଭ କରି ବହୁ ଧନ ସମ୍ପତ୍ତି ସହ ଓଡ଼ିଶାକୁ ଫେରିଆସି ପୁରୀର ତତ୍କାଳୀନ ଗଜପତି ପ୍ରତାପ-ରୁଦ୍ରଙ୍କୁ ଭେଟି ତାଙ୍କୁ ଭକ୍ତି ସହକାରେ ବହୁମଣିମାଣିକ ପ୍ରଦାନ କରିବା ସଙ୍ଗେ ସଙ୍ଗେ ସେ ରାଜାଙ୍କୁ ଆଉ ଗୋଟିଏ ଦୁର୍ଲ୍ଲଭ ଜିନିଷ ଶ୍ରୀଖଣ୍ଡ ଚନ୍ଦନ, ପ୍ରଦାନ କରି କହିଲେ ଯେ, ଏହା ହେଉଛି ମାଳାଦ୍ୱୀ୍ର ଶ ଜଗନ୍ନାଥଙ୍କର । ତେଣୁ ଏହି ଚନ୍ଦନକୁ ଜଗନ୍ନାଥଙ୍କ ସମସ୍ତ ଅଙ୍ଗରେ ବୋଳିଦେଲେ, ତାହା ସଦା ସର୍ବଦା ବାସନାରେ ମହକୁଥିବ । ସେତିକିବେଳେ ରାଜାଙ୍କ ପାଖରେ ଭକ୍ତକବି ଜଗନ୍ନାଥ ଦାସ ବସିଥାନ୍ତି । ତହୁଁ ରାଜା ପ୍ରତାପରୁଦ୍ର ଜଗନ୍ନାଥଙ୍କ ଦେହରେ ଏହି ଶ୍ରୀଖଣ୍ଡ ଚନ୍ଦନ ବୋଳିବାକୁ ଭକ୍ତ କବି ଜଗନ୍ନାଥଙ୍କୁ ଦାୟିତ୍ୱ ଦେଲେ । କିନ୍ତୁ କବି ଜଗନ୍ନାଥ ରାଜାଙ୍କଠାରୁ ଜଗନ୍ନାଥଙ୍କୁ ଏହି ଶ୍ରୀଖଣ୍ଡ ଚନ୍ଦନ ଲାଗି କରିବାକୁ ଦାୟିତ୍ୱ ନେଲେ ସତ; କିନ୍ତୁ ଜଗନ୍ନାଥଙ୍କ ଦେହରେ ନ ବୋଳି ନିଜ ଘରର କାନ୍ଥରେ ସବୁ ବୋଳିଦେଲେ । ତହିଁ ଆରଦିନ ସକାଳେ ରାଜାଙ୍କ ପାଖକୁ ଏ ଖବର ଆସିଲା । ରାଜା ରାଗରେ ଜର ଜର । କବିଙ୍କ ପାଖକୁ ଖବର ଦିଆଗଲା, ତୁରନ୍ତ ରାଜାଙ୍କୁ ସାକ୍ଷାତ କରିବାକୁ । କିଛି ସମୟ ପରେ ଭକ୍ତ କବି ଜଗନ୍ନାଥ ହସି ହସି ରାଜାଙ୍କ ପାଖରେ ପହଞ୍ଚିଲେ । ରାଜା କବିଙ୍କୁ ରାଗରେ ପଚାରିଲେ, ଆପଣଙ୍କ ପରି ଜଣେ ସନ୍ଥ ସାଧୁ ଏପରି ଅନ୍ୟାୟ କିପରି କଲେ ? ମୁଁ ଯେଉଁ ଶ୍ରୀଖଣ୍ଡ ଚନ୍ଦନ ଜଗନ୍ନାଥଙ୍କ ଦେହରେ ବୋଳିବାକୁ ଆପଣଙ୍କୁ ଦେଇଥିଲି, ତାହା ଆପଣ ଜଗନ୍ନାଥଙ୍କ ଦେହରେ ନ ବୋଳି ନିଜ ଘର କାନ୍ଥରେ ବୋଳିଲେ କିପରି ? କବି କହିଲେ, ମୋ କାନ୍ଥରେ ବୋଳିଲେ କ'ଣ ଶ୍ରୀଜଗନ୍ନାଥଙ୍କ ପାଖରେ ତାହା ଲାଗି ହେଲା ନାହିଁ ? ଏ କ'ଣ କହୁଛନ୍ତି ବୋଲି ରାଜା ଅବାକ୍ ହେଲେ । ତା'ପରେ କବି କହିଲେ ଉତ୍କଳର ଗଜପତିଙ୍କର ଏ କଥା କ'ଣ ବିଶ୍ୱାସ ହେଉ ନାହିଁ ? ଏଇ ମୁହୂର୍ତ୍ତରେ ଶ୍ରୀ ମନ୍ଦିରକୁ ଚାଲନ୍ତୁ, ଦେଖିବେ, ସେହି ଶ୍ରୀଖଣ୍ଡ ଚନ୍ଦନ ଜଗନ୍ନାଥଙ୍କ ଦେହରେ ବୋଳା ହୋଇଛି କି ନାହିଁ ! ରାଜା ଓ କବି ଉଭୟେ ଜଗନ୍ନାଥଙ୍କ ପାଖକୁ ଗଲେ । ରାଜା ନୟନ ନିରେଖି ଦେଖିଲେ, ସତକୁ ସତ ଶ୍ରୀଖଣ୍ଡ ଚନ୍ଦନ ସବୁ ଜଗନ୍ନାଥଙ୍କ ଦେହରେ ବୋଳା ହୋଇଛି ଓ ମହ ମହ ବାସୁଛି । ରାଜାଙ୍କ ପୂର୍ବର ରାଗ ରୋଷ କୁଆଡ଼େ ଉଭେଇ ଗଲା । ସେ ଆନନ୍ଦରେ ଅଧୀର ହୋଇ କବି ଜଗନ୍ନାଥଙ୍କୁ କୁଣ୍ଢାଇ ପକାଇ କହିଲେ, ଜଗନ୍ନାଥ ହିଁ ଆପଣଙ୍କ ପାଖରେ ବନ୍ଧା । ଆମେ କିନ୍ତୁ ଜଗନ୍ନାଥଙ୍କଠାରୁ ବହୁ ଦୂରରେ । ଧନ୍ୟ କବି, ଧନ୍ୟ ତୁମର ଭକ୍ତିମନ୍ତ୍ର, ଧନ୍ୟ ଶ୍ରୀ ଜଗନ୍ନାଥ ! ! !

ଚୈତନ୍ୟଦେବ ମଧ୍ୟ ବାରମ୍ବାର କହୁଥିଲେ —

"ଚଲ୍‌ରେ ନିତାଇ ଆମି ଶ୍ରୀକ୍ଷେତ୍ର ଯାଇ
ଆର ଏ ପାଷାଣ୍ଡ ଦେଶେ ରଇବ ନେଇଁ"

ଶେଷରେ ତାଙ୍କ ଅଭିଳାଷ ପୂର୍ଣ୍ଣ ହେଲା—ସେ ଶ୍ରୀକ୍ଷେତ୍ର ଆସିଲେ । ବଡ଼ଦାଣ୍ଡର ଧୂଳିକୁ ଚନ୍ଦନ କଲେ ? ତାଙ୍କ ଶିଷ୍ୟ ପ୍ରଶିଷ୍ୟ ସିଏ ଯେତେ ତାଙ୍କୁ ଘୋଷଡ଼ାଓଟରା କଲେ ମଧ୍ୟ ସେ ଜଗନ୍ନାଥଙ୍କ ଚକାଡୋଳା ଛାଡ଼ି ଆଉ କୁଆଡ଼େ ଗଲେ ନାହିଁ । ଜଗନ୍ନାଥଙ୍କ ପ୍ରତି କି ଆକର୍ଷଣ ତାଙ୍କର ଓ ଜଗନ୍ନାଥଙ୍କ କି କରୁଣା ତାଙ୍କ ପ୍ରତି । ଦୁହେଁ ଯେପରି ଦୁହିଙ୍କ ପାଖରେ ବନ୍ଧା । ଏ ବନ୍ଧନ ପ୍ରୀତିର ଓ ମୈତ୍ରୀର ବନ୍ଧନ । କେହି କାହାକୁ ଜୋର ଜବରଦସ୍ତି ବାନ୍ଧିଦେଇ ନାହାନ୍ତି । ୧୮ବର୍ଷ କାଳ ଶ୍ରୀକ୍ଷେତ୍ରରେ ରହି ଶେଷରେ ଚୈତନ୍ୟ ଜଗନ୍ନାଥଙ୍କ ଶ୍ରୀଅଙ୍ଗରେ ଲୀନ ହେଲେ । ଜଗନ୍ନାଥଙ୍କୁ କେତିକି ଆପଣାର ନ କଲେ, ବା ଜଗନ୍ନାଥଙ୍କର ସେତିକି ନିଜର ନ ହେଲେ ତାଙ୍କ ଦେହରେ ଲୀନ ହେବ କିଏ ?

୧୫୧୯ ମସିହାର କଥା । ଶ୍ୟାମାନନ୍ଦ ସମ୍ପ୍ରଦାୟର ପରମ ବୈଷ୍ଣବ ରସିକାନନ୍ଦ ମହୋଲ୍ଲାସରେ ରଥରେ ବିଜେ ଦର୍ଶନ ପାଇଁ ଶ୍ରୀକ୍ଷେତ୍ରକୁ ଆସିବା ବାଟରେ ରଥଯାତ୍ରା ଦିନ କୌଣସିମତେ ଶ୍ରୀକ୍ଷେତ୍ରରେ ପହଞ୍ଚି ପାରିଲେ ନାହିଁ । ତେଣୁ ଆକୁଳ ଅନ୍ତରରେ ଅନୁନୟ ବିନୟ କରି ଠାକୁରଙ୍କୁ ଡକା ପକାଇଲେ । ମୁଁ ନ ପହଞ୍ଚିବା ଯାଏ ରଥ ନ ଚାଲୁ । ଆଶ୍ଚର୍ଯ୍ୟର କଥା ସେଇଆ ହେଲା । ଜଗନ୍ନାଥେ ତାଙ୍କ ଗୁହାରି ଶୁଣିଲେ ।

ତିନି ରଥରୁ କୌଣସି ଗୋଟିଏ ରଥ ଚାଲିଲା ନାହିଁ । କଥିତ ଅଛି— ସେଇ ସମୟରେ ଶୂନ୍ୟରୁ ଶୂନ୍ୟବାଣୀ ହେଲା—

"ମୋର ପ୍ରିୟ ନିଜ ଭକ୍ତ ରସିକ ଅଇଲା
ତୁଳସୀ ଚୌରାରେ ଆସି ପରବେଶ କଲା
ରସିକ ଆସିଣ ରଥ କରିବେ ଦର୍ଶନ
ତେବେ ସେ ଚଳିବ ରଥ ନ କର ଯତନ

—(ରସିକ ମଙ୍ଗଳ)

ପୁରୀର ଗଜପତି ରସିକଙ୍କୁ ସ୍ୱୟଂ ଅଭ୍ୟର୍ଥନା କରି ତିନି ଠାକୁରଙ୍କ ରଥ ନିକଟକୁ ଆଣିବା ପରେ ସତକୁ ସତ ରଥ ଚଳିଲା । ଏହି ଘଟଣା ପରେ ପରେ ଉତ୍କଳର ତତ୍କାଳୀନ ଗଜପତି ଭକ୍ତ ଶ୍ରେଷ୍ଠ ଓ ସାଧକ ରସିକଙ୍କୁ ଦାନ କରିଥିବା ଶ୍ରୀମନ୍ଦିରର ଦକ୍ଷିଣ ଦିଗରେ ଫୁଲତୋଟା ନାମକ ସ୍ଥାନ ଆଜି ଅବଧି ସେ ପବିତ୍ର ସ୍ମୃତିର ରୋମନ୍ଥନ କରେ । ଭକ୍ତ ଭଗବାନଙ୍କର କେତିକି ନିଜର ଓ ତା ଡାକରାକୁ ଅହରହ କିପରି ଭଗବାନ ଶ୍ରବଣ କରି ଥାଆନ୍ତି, ଇଏ ତାହାର ଜ୍ୱଳନ୍ତ ନିଦର୍ଶନ ନୁହେଁ କି ??

ବେଗବେଗରେ ଅହରହ ବ୍ୟସ୍ତ ଓ ବ୍ୟାକୁଳ ଯବନ କବି ସାଲବେଗ ନିଜର ସମସ୍ତ ଜୀବନ ଜଗନ୍ନାଥଙ୍କ ଶ୍ରୀଚରଣରେ ଅର୍ପଣ କରି ଭକ୍ତର ଯେଉଁ ପରାକାଷ୍ଠା ପ୍ରଦର୍ଶନ

କରିଛନ୍ତି, ତାହା ମଧ୍ୟ ଅଲୌକିକ ଓ ଅସାଧାରଣ । ସମସ୍ତ ଜୀବନକାଳ ତାଙ୍କର ଜଗନ୍ନାଥଙ୍କର ଧ୍ୟାନ ଧାରଣାରେ କଟିଗଲା ।

ତାଙ୍କର ଭକ୍ତିରେ ସେ ଜଗନ୍ନାଥଙ୍କୁ ଏପରି ନିକଟର କରିପାରି ଥିଲେ ଯେ ଜଗନ୍ନାଥଙ୍କୁ ଡାକିବା ମାତ୍ରେ, ଜଗନ୍ନାଥ ତାଙ୍କ କଥା ଶୁଣୁଥିଲେ । କି ତାଦ୍‌ଗତ୍ୟ ପ୍ରାଣ । ସେ ଦିନ ସାଲବେଗ ଲେଖିଗଲେ—

ଜଗବନ୍ଧୁ ହେ ଗୋସାଇଁ
ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟ ଗତି ନାହିଁ
ସାତଶ ପଚାଶ କୋଶ ଚଳି ନ ପାରଇ
ମୋହ ଯିବା ଯାଏ ନନ୍ଦିଘୋଷେ ଥିବ ରହି ।

ସାଲବେଗଙ୍କ ଏଇ ଆନ୍ତରିକ ଅନୁରୋଧର ଜଣାଣରେ ନନ୍ଦିଘୋଷ ଅଟକି ରହିଥିଲା । ସାଲବେଗଙ୍କ ଦର୍ଶନ ପରେ ରଥ ଚାଲିଲା । ସେହି ସିଦ୍ଧ ସାଧକଙ୍କର ସ୍ମୃତି ସ୍ମାରକୀରେ ଏବେବି ପୁରୀ ବଲିଗଣ୍ଡି ଠାରେ ସାଲବେଗଙ୍କ ସମାଧି ରହିଛି ଏବଂ ପ୍ରତିବର୍ଷ ରଥଯାତ୍ରା ସମୟରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ରଥ ସାଲବେଗଙ୍କୁ କୃପା କରୁଣା ପ୍ରଦାନ କରିବାପାଇଁ, ସେଠାରେ କିଛି ସମୟ ଅଟକି ଯାଆନ୍ତି । ପୁଣି କାହାରି କାହାରି ମତରେ ସାଲବେଗଙ୍କ ଭକ୍ତିପ୍ଲୁତ କାତର ଆହ୍ୱାନରେ ଆକୃଷ୍ଟ ହୋଇ ଶ୍ରୀ ଜଗନ୍ନାଥ ମହାପ୍ରଭୁ ତାଙ୍କୁ ସାକ୍ଷାତ ଦର୍ଶନ ଦେବା ସଙ୍ଗେ ସଙ୍ଗେ 'ପତିତପାବନ' ମୂର୍ତ୍ତି ଧାରଣ କରି ପ୍ରକଟ ହୋଇଥିଲେ ।

ଦାସିଆବାଉରି ବା ବାଲିଗାଁ ଦାସଙ୍କ ପ୍ରତି ଜଗନ୍ନାଥଙ୍କର ସେଇ ଅଖଣ୍ଡ କରୁଣା ଧାରା ଧାର ଧାର ହୋଇ ଝରିପଡ଼ିଛି । ତା' ନହୋଇଥିଲେ ଲୁଗା ବୁଣା ମଜୁରିରେ ନଡ଼ିଆଟିଏ କିଣି ବ୍ରାହ୍ମଣ ହାତରେ ଦେଇ ଦାସିଆ କହି ନଥାନ୍ତେ—

| | |
|---|---|
| "ଏ ମୋ ଶ୍ରୀଫଳ ଗୋଟି ଧରି । | ଗରୁଡ଼ ପଛେ ରହି କରି |
| ବୋଲିବ ବାଲି ଗ୍ରାମ ଦାସ । | ଦେଇଛି ନାଥ ପୀତବାସ |
| ସେ ଯେବେ ଶ୍ରୀହସ୍ତ ବଢ଼ାଇ । | ତୁମ୍ଭର ହସ୍ତରୁ ଛଡ଼ାଇ |
| ଘେନିବେ ତେବେ ତାଙ୍କୁ ଦେବ । | ନୋହିଲେ ଆଣି ମୋତେ ଦେବ । |

ଦାସିଆଙ୍କର କି ଦମ୍ଭୋକ୍ତି । ଜଗନ୍ନାଥଙ୍କ ପ୍ରତି କି ଆଦେଶ ? ଭକ୍ତ ଯଦି ଭଗବାନଙ୍କୁ ନ କହିବ, କହିବ କାହାକୁ ? ଏଠି ଭଗବାନଙ୍କ ଦ୍ୱାରା ଭକ୍ତ ଆଦିଷ୍ଟ ନୁହେଁ । ଭକ୍ତ ଦ୍ୱାରା ଭଗବାନ ଆଦିଷ୍ଟ । କିନ୍ତୁ ସେଇତ ଆଶ୍ଚର୍ଯ୍ୟ । ଦାସିଆଙ୍କର କହିବାମତେ

ଗରୁଡ଼ ପଛରେ ରହି ଆଖି ବନ୍ଦ କରି ଜଗନ୍ନାଥଙ୍କୁ ନଡ଼ିଆ ବଢ଼ାଇଲେ ଓ ବ୍ରାହ୍ମଣଙ୍କ ହସ୍ତରୁ ନଡ଼ିଆ ଅନ୍ତର୍ଦ୍ଧାନ ହେଲା ।

ପୁଣି ଆଉ ଗୋଟିଏ ଦିନର କାହାଣୀ । ଗ୍ରାମରୁ ବାହାରି ଦାସିଆ ସୁନ୍ଦର ସୁନ୍ଦରିଆ କିଛି ଆମ୍ବ ଧରି ପୁରୁଷୋତ୍ତମ ଗଲେ, ନିଜର ଇଷ୍ଟ ଦେବତାଙ୍କୁ ଅର୍ପଣ କରିବା ପାଇଁ । ପୁରୀରେ ପହଞ୍ଚି ପଣ୍ଡାଙ୍କ ହାତୁଡ଼େ ପଡ଼ିଲେ । ଦାସିଆଙ୍କର ଏହି ଆମ୍ବଗୁଡ଼ିକ ଦେଖି ପଣ୍ଡାଙ୍କ ପାଟିରୁ ଲାଳ ଗଡ଼ିଲା—କିମିତି ଆମ୍ବତକ ଦାସିଆଙ୍କଠାରୁ ଭଣ୍ଡି ନେବେ, ସେମାନଙ୍କର ନିଜ ନିଜ ମଧ୍ୟରେ ବଚସା ଆରମ୍ଭ ହୋଇଗଲା । ଭକ୍ତପ୍ରବର ଦାସିଆ ଏସବୁ ଦେଖି ଦୁଇ ହାତରେ ଆମ୍ବତକ କଷ୍ଟେ ମଷ୍ଟେ ଉପରକୁ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଟେକି ଦେଲେ । ପଣ୍ଡାମାନେ ଦେଖୁଥାଆନ୍ତି କିନ୍ତୁ କିଛି କହି ପାରୁ ନଥାନ୍ତି । ଶୂନ୍ୟରେ ଦାସିଆଙ୍କ ହାତରୁ ଆମ୍ବତକ ଉଭେଇ ଗଲା । ପଣ୍ଡାମାନେ ଆବା କାବା ହେଲେ ଓ ଏହା ଦାସିଆଙ୍କ ଯାଦୁ ବିଦ୍ୟା/ ବାଜିକରି ତାମସା ବୋଲି ଭାବିଲେ । ସତରେ ଦାସିଆର ଆମ୍ବ ଜଗନ୍ନାଥ ନେଇ-ଛନ୍ତି କି ନାହିଁ ପଣ୍ଡାମାନେ ରତ୍ନ ସିଂହାସନ ପାଖକୁ ଦଉଡ଼ିଲେ । ଆମ୍ବ ଟାକୁଆ ଓ ଚୋପା ପଡ଼ିଥିବାର ଦେଖିଲେ ଓ ଦାସିଆଙ୍କର ଜଗନ୍ନାଥଙ୍କଠାରେ ଅଟଳ ଭକ୍ତି ଦେଖି ଭୂରି ଭୂରି ପ୍ରଶଂସା କଲେ ।

ରାମ ଦାସଙ୍କ "ଦାର୍ଢ୍ୟତା ଭକ୍ତି"ରେ ପୁଣି ଲୁହାଯାଇଛି—

"ସୁରଙ୍ଗ ଦିଶେ ହାଣ୍ଡି ଧାର । ମଧ୍ୟେ ଧବଳ ପେଜ ସର
ତା' ମଧ୍ୟେ ପୁଣି ଦିଶେ କଳା । ବୋଲେ ଏ ଶ୍ୱେତ ପଦ୍ମ ଡୋଳା
ମୁଁ ଏହା ଖାଇବି କେମନ୍ତେ । ବୋଲି ଭାବନା କରି ଚିତ୍ତେ
ଦେହ ହୋଇଲା କମ୍ପମାନ । ବଦନୁ ନ ସ୍ଫୁରେ ବଚନ
ନେତ୍ର ଯୁଗଳୁ ଲୁହ ଢାଳି । ଟାଙ୍କୋରି ଗଲା ରୋମାବଳୀ ।
ଉଠିଲା ବାଇ ପ୍ରାପ୍ତ ହୋଇ । କାହାକୁ ଅବା କିସ କହି
କରେ ବଜାଇ କରତାଳି । ରଙ୍ଗେ ନାଚଇ ଢଳି ଢଳି ।

ଭାତ ଉପରେ ଶାଗ ପୁଳାଏ ଦେଖି ଦାସିଆଙ୍କର ଜଗନ୍ନାଥଙ୍କର ଚକା ଆଖିର ଧ୍ୟାନ ଧାରଣା ହେଲା । ଏମିତ ମୋ ଜଗନ୍ନାଥ କହି ଆନନ୍ଦରେ ସେ ଖାଲି ନାଚିବାକୁ ଲାଗିଲେ । "ବିଜୟ କଲେ ମୋର ପୁରୀ/ହେ ପ୍ରଭୁ ବ୍ରହ୍ମାଣ୍ଡ ଠାକୁର" କହି କହି । କେତେକ କହିଲେ ଏ ପାଗଳର ପ୍ରଳାପ ମିଛ ବାହାନା । ଜଗନ୍ନାଥଙ୍କ ପାଖରେ ଯେ ତା'ର ଦେହମନ ସବୁ ସମର୍ପିଦେଇଛି,ସେ କି କେବେ ବାହାନା କରିପାରେ ? ଏଇଥିଲେ ସେ ଦିନର ବାଳଗାଁ ଦାସ ଓରଫ ଦାସିଆ ବାଉରି—କି ଭକ୍ତ-ଏହାର ପଟାନ୍ତର କାହିଁ ?

ପୁଣି ତାଙ୍କ ସମ୍ପର୍କରେ କୁହାଯାଇଛି ଯେ ଜଗନ୍ନାଥଙ୍କୁ ଚନ୍ତ୍ର ଚନ୍ତ୍ର ତାଙ୍କ ନାଁରେ ଭଜନ ଜଣାଣ ଗାଇ ଗାଇ ନିଜେ ମଧ୍ୟ କବି ପାଲଟି ଗଲେ । ତାଙ୍କ ରଚିତ ବାଲିଗାଁ ଦାସ ଭାଗବତ, ଭକ୍ତ ମାଳିକା ଓ ଆଗତ ଭବିଷ୍ୟ ବା ଭବିଷ୍ୟ ମାଳିକା ଏ କଥାକୁ ଦୃଢ଼ ଭାବରେ ପ୍ରମାଣ କରିଥାଏ । ପୁନଶ୍ଚ ଜଗନ୍ନାଥ 'ଲେଖନୀ ସଞ୍ଚା' ଧରି ଆଗତ ଭବିଷ୍ୟ ଲେଖିଥିଲେ ବୋଲି ବାଲିଗାଁ ଦାସ ନମ୍ରତାର ସହିତ ପ୍ରକାଶ କରି କହିଛନ୍ତି—

"ଲେଖନୀ ସଞ୍ଚା କରେ ଧରି । ଆଗତ ଲେଖନ୍ତି ଶ୍ରୀ ହରି
ଲେଖିଲେ ପ୍ରଭୁ ପୀତବାସ । ଶରଣ ବାଲିଗାଁ ଯେ ଦାସ"

ତା ପରେ ପରେ ସେ ତାଙ୍କର 'ଆଗତ ଭବିଷ୍ୟ'ରେ ଜଗନ୍ନାଥଙ୍କୁ ପ୍ରାର୍ଥନା କରି ଲେଖିଛନ୍ତି—

"ଜୟ ତୁ ଶ୍ରୀସ୍ୱା ଦେବୀବର । ବନ୍ଦଇ ନମସ୍ତେ ଶ୍ରୀ ଧର
ବନ୍ଦଇ ଦେବ ନରହରି । କମଳା ଯା'ର ମନୋହାରୀ ।
ବନ୍ଦଇ ଜୟ ଜଗନ୍ନାଥ । ସାରଙ୍ଗ ଗଦା ଶଙ୍ଖ ହସ୍ତ
ନମଇ ଗଦା ପଦ୍ମଧାରୀ । ମଚ୍ଛ କୁରୁମ ରୂପ ଧରି ।
ବନ୍ଦଇ ନମସ୍ତେ ବଇଦ । ଶ୍ରୀ ଜଗନ୍ନାଥ ବଳଭଦ୍ର
ମଧ୍ୟେ ସୋହଦ୍ରା ଦେବୀ ଶୋହେ । ଶ୍ୱେତ କୁଙ୍କୁମ ତାର କାୟେ ।
ଅନାଦି ରୂପେ ଅବତରି । ଲୀଳା ବିକାଶେ ମଞ୍ଚପୁରୀ

+ +

ଶ୍ରୀ ଜଗନ୍ନାଥଙ୍କ ଚରଣ । ବାଲିଗାଁ ଦାସିଆ ଶରଣ ।

ଜାତିରେ ଦାସିଆ ଥିଲେ ଖଦାଳ/ଖନ୍ଦାଳ ବା ବାଉରି । ଲୁଗା ବୁଣି ପେଟ ପୋଷିବା ତାଙ୍କର ଏକମାତ୍ର ସମ୍ବଳ ଥିଲା । ତାଙ୍କର ସେହି "ଆଗତ ଭବିଷ୍ୟ" ବା ବାଲିଗାଁ ଦାସିଆ ଭାଗବତରୁ ପରିଷ୍କାର ରୂପେ ଜଣା ପଡୁଛି ଯେ ସେ ନିଜେ ପେଟ ପୋଷିବା ପାଇଁ ନିଜ ଘରେ ନିଜ ତନ୍ତରେ ଲୁଗା ବୁଣୁଥିବା ସମୟରେ ନିଜେ ଜଗନ୍ନାଥ ତାଙ୍କ ପାଖରେ ଛଦ୍ମ ବ୍ରାହ୍ମଣ ବେଶରେ ପହଞ୍ଚି କିଛି ଖାଇବାକୁ ମାଗିଥିଲେ । ଭକ୍ତ ପ୍ରବର ଦାସିଆ ଠାକୁରଙ୍କ ଛଦ୍ମବେଶ ଜାଣି ପାରିଥିଲେ ଓ ଠାକୁରଙ୍କୁ ବାସି ପଇଡ଼ ପାଣି ପିଇବାକୁ ଦେଇଥିଲେ । ତେଣୁ 'ଆଗତ ଭବିଷ୍ୟ'ରେ ନିମ୍ନୋକ୍ତ ଭାବରେ କୁହାଯାଇଛି—

"ଲେଖନ ସଙ୍ଗେ ପୋଥି ହସ୍ତେ । ଧୀରେ ଗ୍ଭଲନ୍ତି ଜଗନ୍ନାଥେ
ବାଲଗା ଦାସ ଘର ଠାରେ । ମିଳଲେ ଆସି ଧାଡକାରେ
ଡାକଲେ ବାଲଗାଁ ଦାସକୁ । ଆମ୍ଭେ ଅଇଛୁ ତୋ' ଘରକୁ

+ +

ବାସ ପଇଡ଼ ଗ୍ଭରଗୋଟି । କଟାରୀ ଘେନ ବେଗେ କାଟି
ସୁସଜ୍ଜ କର ଗ୍ଲେମା ଛେଇ । ପ୍ରଭୁଙ୍କୁ ସମର୍ପିଲେ ନେଇ

+ +

ଆନନ୍ଦେ କଲେ ତାହା ଗ୍ରାସ । ଭକ୍ତି ହୋଇଲେ ମନତୋଷ

ଧନ୍ୟ ଠାକୁର ଧନ୍ୟ ତୁମର ଭକ୍ତ ପ୍ରତି ବ୍ୟସ୍ତ ଓ ବ୍ୟାକୁଳତା । ଏପର ଠାକୁର କାହିଁ କେଉଁଠି ଅଛୁ, ସେ ଭକ୍ତ ଦୁଆରକୁ ମଧ୍ୟ ନଜେ ପଥାଶ୍ରମ କର ଦାଉଡ଼ବ ? ଭକ୍ତ ପାଇଁ ଲେଖି ଲେଖାଇବ ? ଏ ସମସ୍ତ ଉପର୍ଯ୍ୟୁକ୍ତ ଆଲୋଚନାରୁ ଏଇ କଥା ସ୍ପଷ୍ଟ ଧାରଣା ହେଉଛୁ ଯେ, ଜଗନ୍ନାଥଙ୍କ ପାଖରେ ଯିଏ ସବୁ ସମର୍ପି ଦେଇଛନ୍ତି କାୟ-ମନୋ-ବାକ୍ୟରେ – ଭଗବାନ ତା' ନକଟକୁ ଦଉଡ଼ି ଯାଇ ତାକୁ ସମସ୍ତ କଲ୍ୟାଣ ଢାଳ ଦେଇଛନ୍ତି ।

ଏଠାରେ ଜଗନ୍ନାଥଙ୍କର ଆଉ ଗୋଟିଏ ମହାତ୍ମ୍ୟ ଉଲ୍ଲେଖ ନ କଲେ ନ ଚଳେ । ସେ କଥା ହେଲା—କବ ଜୟଦେବଙ୍କ ଗୀତଗୋବନ୍ଦ ସଙ୍ଗୀତଜ୍ଞ ମାନଙ୍କ ଦ୍ୱାରା ସୁଲଳତ କଣ୍ଠରେ ପ୍ରତଦନ ସନ୍ଧ୍ୟାରେ ଜଗନ୍ନାଥଙ୍କର ପାଖରେ ଗୀତ ହୁଏ । ସେତେବେଳକୁ ପୁରୀର ଗଜପତ ପୁରୁଷୋତ୍ତମ ଦେବ । ପୁରୁଷୋତ୍ତମ ଦେବ ମଧ୍ୟ "ଅଭିନବ ଗୀତଗୋବନ୍ଦ" ନାମରେ କାବ୍ୟଟିଏ ଲେଖିଥାଆନ୍ତି । ସେ ଜଗନ୍ନାଥଙ୍କ ସେବକ ହେଲେ ମଧ୍ୟ ସେ ଗ୍ଭହିଁଲେ ଜୟଦେବଙ୍କ 'ଗୀତଗୋବନ୍ଦ'ପର ତାଙ୍କର "ଅଭିନବ ଗୀତଗୋବନ୍ଦ" ଏପର ଜଗନ୍ନାଥ ମହିମାଙ୍କ ନକଟରେ ଗାନ କରାହୁଅନ୍ତା । ରାଜା ପୁଣି ମନେ ମନେ ଭାବିଲେ ମୁଁ ତ ଜଗନ୍ନାଥଙ୍କ ସେବକ-ଜଗନ୍ନାଥଙ୍କ ବଜେ ପ୍ରତମା । ମୋ କାବ୍ୟର ସଙ୍ଗୀତ ବୋଲ ହେବାପାଇଁ ନଶ୍ଚୟ ଜଗନ୍ନାଥଙ୍କ ଆଜ୍ଞା ମିଳବ । ଏଇଆ ପାଞ୍ଚି ରାଜା ତାଙ୍କର ଅଭିନବ ଗୀତଗୋବନ୍ଦ ଓ ଜୟଦେବଙ୍କ ଗୀତଗୋବନ୍ଦ କାବ୍ୟ ଜଗନ୍ନାଥଙ୍କର ରତ୍ନସିଂହାସନ ନକଟରେ ଥୋଇଲେ ଓ ଜଗନ୍ନାଥଙ୍କୁ ନଜର ଗୁହାରି ଜଣା କଲେ ।

ପୁଣି ତାଙ୍କର ବିଶ୍ୱସ୍ତ ପାଖ ଲୋକକୁ କହିଲେ—ବର୍ତ୍ତମାନ ଜଗନ୍ନାଥଙ୍କ ପ୍ରତି କାହାର କେତେ ଭକ୍ତି ତାହା ପ୍ରମାଣ ମିଳିବ । ଯାହାର କାବ୍ୟ ରତ୍ନସିଂହାସନରେ ସିମିତ ଥୁଆ ହୋଇରହିବ ସେଥିରୁ ଜଣାପଡ଼ିବ ଯେ ଜଗନ୍ନାଥଙ୍କର ଶ୍ରଦ୍ଧା ଅଛି ସେହି କାବ୍ୟର ସଙ୍ଗୀତ ଶୁଣିବା ପାଇଁ ଓ ଯେଉଁ କାବ୍ୟଟି ସକାଳେ ତଳେ ପଡ଼ିଥିବ ଅର୍ଥାତ୍ ଜଗନ୍ନାଥ ଯେଉଁଟିକୁ ନ ଗ୍ରହିବେ, ତାକୁ ତଳକୁ ଫୋପାଡ଼ି ଦେବେ । ଏଇ ଚିନ୍ତାରେ ସେଦିନ ରାତିରେ ଦୁଇଟି କାବ୍ୟ ଜଗନ୍ନାଥଙ୍କ ନିକଟରେ ଥୁଆ ହୋଇ ଠାକୁରଙ୍କର ପହଡ଼ ପଡ଼ିଲା । ତା'ଆର ଦିନ ସକାଳୁ ରାଜା ଶ୍ରୀ ନଅରରୁ ଶ୍ରୀ ମନ୍ଦିର ବିଜେ କଲେ ଓ ଦେଖିଲେ ତାଙ୍କ କାବ୍ୟ 'ଅଭିନବ ଗୀତଗୋବିନ୍ଦ' ତଳେ ପଡ଼ିଛି । ରାଜା ନିଜକୁ ନିଜେ ଲଜ୍ଜିତ ହେଲେ ଓ ଜୟଦେବ ଯେ ଜଗନ୍ନାଥଙ୍କର ତାଙ୍କଠାରୁ ଆହୁରି ପ୍ରିୟ ଭକ୍ତ ଏ କଥାର ଯଥେଷ୍ଟ ପ୍ରମାଣ ମଧ୍ୟ ପାଇଲେ ଓ ତହିଁଆର ଦିନ ସେ ଯେଉଁ ଘଟଣାମାନ ତାଙ୍କର 'ଅଭିନବ ଗୀତଗୋବିନ୍ଦ' ଜଗନ୍ନାଥଙ୍କ ପାଖରେ ଗୀତ ହେବାପାଇଁ ବ୍ୟବସ୍ଥା କରିଥିଲେ; ସେ ସମସ୍ତ କଥା ଜୟଦେବଙ୍କୁ ଗୋଟି ଗୋଟି ବର୍ଣ୍ଣନା କରି ପ୍ରଣିପାତ ପୂର୍ବକ କହିଲେ—''ମୋର ରାଜାଭିମାନ ଆପଣଙ୍କ ନିକଟରେ ପରାସ୍ତ ହୋଇଛି । ମୁଁ ବିଚାରୁଥିଲି ମୁଁ ଯେତେବେଳେ ଜଗନ୍ନାଥଙ୍କର ପ୍ରଧାନ ସେବକ, ସେ ମୋର ନ ହୋଇ ଆଉ କଣ ଆପଣଙ୍କର ହେବେ ? ମୋର ସେ ଗର୍ବ ଦମ୍ଭ ଆଜି ଚୂନା ହୋଇ ଯାଇଛି । ଜଗନ୍ନାଥଙ୍କ ବିଚାର ସବୁଠୁଁ ବଡ଼ । ତାଙ୍କ ଆଗରେ ମୁଁ କିବା ଛାର । ଆପଣ ହିଁ ତାଙ୍କର ଭକ୍ତଶ୍ରେଷ୍ଠ ଓ ଆପଣଙ୍କ ରଚିତ ଗୀତଗୋବିନ୍ଦ ମୋ ଗ୍ରନ୍ଥଠାରୁ ହିଁ ଶ୍ରେଷ୍ଠ ।'' ଏହିଠାରେ ହିଁ ଜଗନ୍ନାଥଙ୍କ ନିରପେକ୍ଷତା ଓ ନୀତିନିଷ୍ଠା ତଥା ପ୍ରକୃତ ଗ୍ରାହକତା ଜଳ ଜଳ ହୋଇ ଫୁଟିଉଠିଛି । ଯେଉଁଠି ସେ ଅନାବିଳ, ନିଃସ୍ୱାର୍ଥ ଭକ୍ତି ଦେଖିଛନ୍ତି, ତାଙ୍କୁହିଁ କୋଳେଇ କାଖେଇ ଭକ୍ତଶ୍ରେଷ୍ଠର ଗୌରବରେ ମଣ୍ଡନ କରିଛନ୍ତି; ଯାହାକି ଏଇ ଅଦ୍ଭୁତ ଘଟଣାରୁ ପରିଷ୍କାର ହୋଇଯାଇଛି । ଏଠି ବଡ଼ ସାନ ରାଜା ପ୍ରଜାର କିଛି ବାଛ ବିଚାର ନାହିଁ । ଭକ୍ତର ଯେତିକି ଭକ୍ତି, ସେତିକି ଭାବରେ ଭଗବାନ ତା' ପକ୍ଷ ସମର୍ଥନ କରିଛନ୍ତି । ଗୀତଗୋବିନ୍ଦରେ ଯେଉଁ ଦଶାବତାର ସ୍ତୋତ୍ର ଅଛି, ତହିଁରେ "ଜୟ ଜଗଦୀଶ ହରେ" ସେହି ଜଗତର ଈଶ୍ୱରହିଁ ଜଗନ୍ନାଥ । ଏଠାରେ ଜଗଦୀଶ ସ୍ଥାନରେ ଜଗନ୍ନାଥ ଲେଖିଲେ ଛନ୍ଦ ପ୍ରମାଦ ଘଟିବ ବୋଲି ଛନ୍ଦ କଳାକାର ଜୟଦେବ ଜଗନ୍ନାଥଙ୍କୁ ଜଗଦୀଶ ବୋଲି ସମ୍ବୋଧନ କରିଛନ୍ତି । ଜଗନ୍ନାଥ କିଏ କଅଣ ଓ କେଉଁ ରୂପରେ ଆବିର୍ଭାବ ହୋଇଛନ୍ତି, ସେ ସମ୍ପର୍କରେ ବିଜ୍ଞ ମନୀଷୀ ତାଙ୍କର ସ୍ୱତନ୍ତ୍ର ମତାମତ ଯୁକ୍ତି ସହ ପ୍ରଦାନ କରିଛନ୍ତି ।

ଓଡ଼ିଶାର ପ୍ରଖ୍ୟାତନାମା କବି ଓ ସମାଲୋଚକ ଡକ୍ଟର ମାୟାଧର ମାନସିଂହ ତାଙ୍କ History of literatureରେ କହିଛନ୍ତି —It is now admitted

beyond any controversy that the three images (The Two Brothers Krushna, Balaram with their sister Subhadra between them) are nothing but the Brahminic metamorphosis of the three Gems of Budhism Budha, Dharmas Sangha.

ମାନସିଂହ ଏକଥା କହିଲା ବେଳକୁ ଅଧ୍ୟାପକ ପ୍ରଭାତ ମୁଖାର୍ଜୀ ତାଙ୍କ History of Medieval vaishnabaism in Orissa ପୁସ୍ତକରେ ଜଗନ୍ନାଥଙ୍କ ସମ୍ପର୍କରେ କହିଛନ୍ତି ଯେ—Through Jagannath was a Vaishnabiie deity, the form of his worship was practically affected as a reasult of Buddhist Saivite Tantrik influence. He was Conceived as Budha, Siva even as the Vairaba"

ପୁଣି କେତେକ, ବୈଦିକ ଦେବତା ଏହି ପୁରୁଷୋତ୍ତମ ନୁହନ୍ତି ବୋଲି ତାଙ୍କ ଆଲୋଚନା ପ୍ରସଙ୍ଗରେ ଉଲ୍ଲେଖ କରିଛନ୍ତି; ଯେହେତୁ ଏଇ ଜଗନ୍ନାଥହିଁ ହେଉଛନ୍ତି ଶବରମାନଙ୍କର ଚିରନମସ୍ୟ ଓ ଚିରପୂଜ୍ୟ । ସେଥିପାଇଁ ଦାରୁବ୍ରହ୍ମ ବା ଏହି ଦାରୁଦେବତାଙ୍କ ସମ୍ପର୍କରେ କୁହାଯାଇଛି—

ଅଦୋ ଯଦ୍‌ଦାରୁ ପ୍ଲବତେ ସିନ୍ଧୋଃପାରେ ଅପୂରୁଷମ୍
ତଦାର ଭସ୍ୱ ଦୁର୍ହଣୋ ତେନ ଗଚ୍ଛ ପରସ୍ତରମ୍ ।

ଇନ୍ଦ୍ର ନାମା ବୌଦ୍ଧ ଇନ୍ଦ୍ରଭୂତି ତାଙ୍କ "ଜ୍ଞାନସିଦ୍ଧି"ରେ ବୁଦ୍ଧଙ୍କୁ ସେ ଜଗନ୍ନାଥ ରୂପରେ ପ୍ରାର୍ଥନା କରି ତାଙ୍କର ଅର୍ଘ୍ୟ ଅର୍ଚ୍ଚନା ବାଢ଼ି କହିଛନ୍ତି—

"ପ୍ରଣିପତ୍ୟ ଜଗନ୍ନାଥଂ ସର୍ବାଜ୍ଞାନ ବରାର୍ଚ୍ଚିତଂ
ସର୍ବ ବୁଦ୍ଧମୟଂ ସିଦ୍ଧି ବ୍ୟାପିନଂ ଗଗନୋପମଂ
(ପ୍ରଥମ ସର୍ଗ)

ଇନ୍ଦ୍ରଭୂତି ଜଗନ୍ନାଥଙ୍କୁ ବୁଦ୍ଧ, ବଳଭଦ୍ର ସୁଭଦ୍ରାଙ୍କୁ ଧର୍ମ ଓ ସଂଘ ରୂପେ ପରିଚିତ ଓ ପ୍ରଚାର କରିଛନ୍ତି ।

ଡକ୍ଟର ନବୀନ କୁମାର ସାହୁ History of Orissa ପୁସ୍ତକରେ କହିଛନ୍ତି—The very origin of Jagannath proclaims him

not less than the God of Brahmins, then the low caste aboriginal races—ଏଥିରୁ ପ୍ରମାଣିତ ଜଗନ୍ନାଥ ବ୍ରାହ୍ମଣ ଧର୍ମର ଦେବତା ନୁହନ୍ତି ବରଂ ଆଦିମ ଶବର ଗୋଷ୍ଠୀର ଦେବତା ।

ପୁନଶ୍ଚ ଡକ୍ଟର ବେଣୀମାଧବ ପାଢ଼ୀ "ଦାରୁଦେବତା" ପୁସ୍ତକରେ ଲେଖିଛନ୍ତି— "ଏସବୁ ଗାଣ୍ଠିକ ପ୍ରମାଣ ଛଡ଼ା ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଗ୍ଭର କଲେ ମଧ୍ୟ ଜଗନ୍ନାଥ ଆଦିମ ଶବରଙ୍କ ଦେବତା ବିନା ଅନ୍ୟ କାହାରି ନୁହନ୍ତି ବୋଲି ଜଣାପଡ଼େ । ଏ ପ୍ରସଙ୍ଗରେ ଜଗନ୍ନାଥଙ୍କ ସେବାୟତ ସମ୍ପ୍ରଦାୟ ମଧ୍ୟରେ ଦୟିତାଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ । "ଦୟିତା" ଶବ୍ଦ "ଦୈତ୍ୟ" ଶବ୍ଦର ଅପଭ୍ରଂଶ । ଦୈତ୍ୟ, ଶବର; ଭିଲ ଏସବୁ ଏକ ପର୍ଯ୍ୟାୟବାଚୀ ଶବ୍ଦ । ପୌରାଣିକ ଇନ୍ଦ୍ରଦ୍ୟୁମ୍ନ ଆସି ଶ୍ରୀମୂର୍ତ୍ତି ପ୍ରତିଷ୍ଠା କରିବା ଆଗରୁ ଏମାନେ ଜଗନ୍ନାଥଙ୍କର ଉପାସକ ଥିଲେ । ବର୍ତ୍ତମାନ ସୁଦ୍ଧା ଦଇତା ସମ୍ପ୍ରଦାୟ ନିଜକୁ ଆଦିମ ଶବର ବଂଶଧର ବୋଲି ପରିଚିତ କରନ୍ତି । ଯାତ୍ରା ଆରମ୍ଭଠାରୁ ବାହୁଡ଼ା ପର୍ଯ୍ୟନ୍ତ ଜଗନ୍ନାଥଙ୍କ ପୂଜା ଏମାନଙ୍କର ହାତରେ ନ୍ୟସ୍ତ ହୋଇଥାଏ । ସେ କେତେଦିନ ଦାରୁବିଗ୍ରହର ସମସ୍ତ ପୂଜାବିଧିର ଅଧିକାର ଏମାନଙ୍କ ଛଡ଼ା ଆଉ କାହାରି ନାହିଁ । ଏହାର କାରଣ ଅତି ସୁସ୍ପଷ୍ଟ । ଶବରେ ଇତର ଧର୍ମର ହୋଇଥିଲେ ଏହି ସମ୍ପ୍ରଦାୟର ଲୋକଙ୍କୁ ଜଗନ୍ନାଥଙ୍କ ପରି ଦେବତାଙ୍କ ପୂଜାଧିକାର ଦିଆ ଯାଇଥାନ୍ତା ବୋଲି ମନେ ହେଉନାହିଁ । ଏଠାରେ ଶବର ବଂଶୀମାନେ ବଳପୂର୍ବକ ଅନ୍ୟଧର୍ମରେ ପ୍ରଭାବ ବିସ୍ତାର କରିଛନ୍ତି ବୋଲି କହିବା ଅସଙ୍ଗତ ହେବ । ଆବହମାନ କାଳରୁ ଶବର ଅତ୍ୟାଚାରିତ ହେବା ଛଡ଼ା ଅତ୍ୟାଚାରୀ ହେବା ଶୁଣାନାହିଁ । ବରଂ ଅନ୍ୟ ଧର୍ମୀ ଲୋକେ ତାର ଧର୍ମରେ ବଳାତ୍କାର ହସ୍ତକ୍ଷେପ କରି ତାର ଧର୍ମ, ଭାଷା, ସଂସ୍କୃତି ସବୁ ନିଜର କରି ନେଇଥିବା ଦୃଷ୍ଟାନ୍ତ ବହୁତ ଅଛି । ଏଣୁ କହିପାରୁ ଜଗନ୍ନାଥ ପ୍ରଥମେ ଏବର ଦୟିତାଙ୍କ ପୂର୍ବପୁରୁଷ ଶବର ଜାତିର ଉପାସ୍ୟ ଦେବତା ଥିଲେ । ପରେ ଅନ୍ୟ ଧର୍ମର ପ୍ରଭାବରେ ମନ୍ଦିର ମଧ୍ୟରେ ଶବରର ସେବାଧିକାର କ୍ରମେ କ୍ରମେ ଚ୍ୟୁତ ହୋଇ ପଡ଼ିଲା । ତଥାପି ତାର ସ୍ମୃତି ଚିହ୍ନ ସ୍ୱରୂପ ମନ୍ଦିର ବାହାରେ ଦେବତାଙ୍କୁ ଆରାଧନା କରିବା ଅଧିକାର ତାଙ୍କଠାରେ ନ୍ୟସ୍ତ କରାଗଲା" ।

ଗବେଷକ ଅନିରୁଦ୍ଧ ଦାସ ତାଙ୍କର ଶବର" ପୁସ୍ତକର ୬୨।୬୩ ପୃଷ୍ଠାରେ କହିଛନ୍ତି—

"ଶବର ପୂଜିତ ନୀଳମାଧବଙ୍କୁ ଦର୍ଶନ କରିବା ପରେ ଯେତେବେଳେ ବିଦ୍ୟାପତି ସ୍ୱଦେଶକୁ ବାହୁଡ଼ି ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଖବର ଦେଲେ ଏବଂ ରାଜା ସସୈନ୍ୟେ ଶ୍ରୀ ନୀଳମାଧବଙ୍କୁ ହସ୍ତଗତ କରିବାକୁ ଆସିଲେ, ଶ୍ରୀ ନୀଳମାଧବ ଅନ୍ତର୍ଦ୍ଧାନ ହୋଇଗଲେ ।

କମ୍ବଦନ୍ତୀରୁ ଜଣାପଡ଼େ ଯେ ରାଜା ଏଥିରେ ନ୍ରୁଦ୍ଧ ହୋଇ ଶବର ରାଜାକୁ ବନ୍ଦୀ କଲେ । ଏଣୁ ଦୈବ ବାଣୀ ହେଲା ଯେ ନୀଳମାଧବ ଦାରୁ ରୂପରେ ସମୁଦ୍ରରେ ଭାସମାନ ହେଉଛନ୍ତି । ଶବର ରାଜାକୁ ଶୂନ୍ୟବାଣୀ ହେଲା ଯେ ଶ୍ରୀ ଜଗନ୍ନାଥ ବଣର ଫଳ ମୂଳ ଖାଇବାକୁ ଆଉ ଇଚ୍ଛା କରୁ ନାହାନ୍ତି ଏବଂ ସେ ରାଜସିକ ଭୋଗ ଏବଂ ଆଡ଼ମ୍ବର ପାଇଁ ଇଚ୍ଛା କରୁଛନ୍ତି । ଫଳତଃ ଆଦିବାସୀମାନଙ୍କର ଜମିବାଡ଼ି ଯେପରି ଆର୍ଯ୍ୟମାନେ ହସ୍ତଗତ କଲେ, ଶବରପୂଜିତ ନୀଳମାଧବ ବା ଶ୍ରୀ ଜଗନ୍ନାଥଙ୍କୁ ମଧ୍ୟ ସେମାନେ ହସ୍ତଗତ କରି ଆର୍ଯ୍ୟ ଧର୍ମରେ ଦୀକ୍ଷିତ କଲେ ବା କରାଇଲେ । କେବଳ ଏତିକି ନୁହେଁ, ହିନ୍ଦୁମାନଙ୍କର ଯେଉଁ ସବୁ ଅତି ପ୍ରାଚୀନ ଦେଉଳ ଏ ପର୍ଯ୍ୟନ୍ତ ମୁଣ୍ଡ ଟେକି ରହିଛି ଏବଂ ଶିଳ୍ପ ଭାସ୍କର୍ଯ୍ୟ ନୈପୁଣ୍ୟରେ ଜଗତକୁ ଚମତ୍କୃତ କରୁଛି, ସେ ସବୁରେ ସୁଦ୍ଧା ଆଦିବାସୀ ମାନଙ୍କର ମହାନ୍ ଅବଦାନ ରହିଛି । ଏହି ଶବରମାନେ ଶ୍ରୀ ଜଗନ୍ନାଥ ମନ୍ଦିର ନିର୍ମାଣ ପାଇଁ କାୟିକ ପରିଶ୍ରମ କରି ବିରାଟ ବିରାଟ ପଥର ବହୁ ଦୂରରୁ ବୋହି ଆଣିଥିଲେ ବୋଲି କେତେକ ପୋଥିରେ ଦେଖିବାକୁ ମିଳେ । ଆଦିବାସୀ ମାନଙ୍କର ଦେବ ଦେବୀ ପୂଜାର ବିଶେଷ ଅନୁଷ୍ଠାନ କଲେ କେତେକ ସ୍ଥଳରେ ଜଣାପଡ଼ିବ ଯେ ଶ୍ରୀ ଜଗନ୍ନାଥ ନାନା ରୂପରେ କୌଣସି କୌଣସି ଆଦିବାସୀ ସମ୍ପ୍ରଦାୟରେ ପୂଜା ପାଉଛନ୍ତି । କେତେକଙ୍କ ମତରେ ଶବରମାନେ ପୂଜା କରୁଥିବା 'ଜଗଙ୍ଗଲେ' (ମହାପ୍ରଭୁ) ଶ୍ରୀ ଜଗନ୍ନାଥ ବିଗ୍ରହଙ୍କ ଆଦି ବିଗ୍ରହ । ଶବରମାନେ 'କିରୁଙ୍ଗ' ନାମକ ଠାକୁରଙ୍କୁ ପୂଜା କରନ୍ତି । କୋରାପୁଟ ଓ ଗଞ୍ଜାମ ଜିଲ୍ଲା ମାନଙ୍କର ମାଳ ଅଞ୍ଚଳରେ ଶବରପଲ୍ଲୀ ମାନଙ୍କରେ ଏହି ବିଗ୍ରହ ଦେଖାଯାନ୍ତି । ଏହି ମୂର୍ତ୍ତି କାଠରେ ତିଆରି ହୋଇ ନାଲି, ଧଳା ଓ ହଳଦିଆ ରଙ୍ଗରେ ଚର୍ଚ୍ଚିତ ହୁଅନ୍ତି । ମୂର୍ତ୍ତିଙ୍କ ଉପରେ ଏକ ଛପର ଛତା ଟଣା ଯାଇଥାଏ । 'କିରୁଙ୍ଗ' ଅର୍ଥ ଜଗତର ନାଥ । ଶ୍ରୀ ଜଗନ୍ନାଥ ପ୍ରକୃତରେ ଯଦି ଆର୍ଯ୍ୟମାନଙ୍କର ଆରାଧ୍ୟ ବିଗ୍ରହ ହୋଇଥାନ୍ତେ, ତାହାହେଲେ ତାଙ୍କର ଆକୃତି ଓ ଗଠନ ବୋଧହୁଏ ଏପରି ହୋଇ ନଥାନ୍ତା । ତାଙ୍କର ବିଗ୍ରହ ତିଆରି କରିବାରେ ବୋଧହୁଏ ଉତ୍କଳର ଶିଳ୍ପୀମାନେ ଶିଳ୍ପ ନୈପୁଣ୍ୟର ଚରମ ପରାକାଷ୍ଠା ପ୍ରଦର୍ଶନ କରିଥାନ୍ତେ । ସେ ଯୋଗ୍ୟତା ବଣ ପର୍ବତର ଅଶିକ୍ଷିତ ଶବର ବଢ଼େଇ ପାରିବ ବା କପରି ?"

ପୁନଶ୍ଚ ଦଇତାପତିମାନେ ଶ୍ରୀ ଜଗନ୍ନାଥଙ୍କୁ ନିଜ ଆତ୍ମୀୟ ବୋଲି ମନେ କରନ୍ତି । ଶ୍ରୀ ବିଗ୍ରହଙ୍କର ନବ କଳେବର ଉତ୍ସବ ପ୍ରାରମ୍ଭରୁ ସେମାନେ ଅଶୌଚ ବିଧି ପାଳନ କରନ୍ତି । ସେମାନଙ୍କ ପରିବାରରୁ କେହି ମରିଗଲେ ତାର ଶବକୁ ସିଂହଦ୍ୱାରକୁ ଅଣାଯାଏ ଏବଂ ଶ୍ରୀ ମନ୍ଦିରରୁ ଅଗ୍ନି ନେଇ ଶବଦାହ କରାଯାଏ । ଶାରଳାଦାସ ମହାଭାରତରେ ଲେଖା ହୋଇଛି ଯେ ବିଶ୍ୱାବସୁ ଶବର ମହେନ୍ଦ୍ର ମଣ୍ଡଳରେ ରାଜା- ଥିଲେ । ଗଞ୍ଜାମର ମହେନ୍ଦ୍ର ଗିରିକୁ କେନ୍ଦ୍ର କରି ଗଞ୍ଜାମ ମାଳ ଅଞ୍ଚଳକୁ ମହେନ୍ଦ୍ରମଣ୍ଡଳ

ବୋଲି ବୁଝାଯାଇପାରେ । ସେଠାରେ ଶବର ମାନଙ୍କର ବିଶ୍ୱାସ ରହିଛି ଯେ ଏହି ମହେନ୍ଦ୍ରଗିରିରେ ଭଗବାନ ଶ୍ରୀକୃଷ୍ଣ ଜାରାଶବରଦ୍ୱାରା ଶରବିଦ୍ଧ ହୋଇଥିଲେ ।

ଏହାଛଡ଼ା ସମ୍ବଲପୁରର ଶବରମାନଙ୍କ ମତରେ ବୁଝାଯାଇଛି ଯେ, କଳାପିଠିଆ ଶବରମାନେ ଏମାନଙ୍କର ଏକ ଶାଖା ଜାତି । ଏମାନେ ବହୁଳ ସଂଖ୍ୟାରେ ପୁରୀର ଆଖପାଖ ଅଞ୍ଚଳରେ ବସବାସ କରନ୍ତି । ତେଣୁ ନୀଳାଦ୍ରୀଶ ଶ୍ରୀ ଜଗନ୍ନାଥ ବହୁ ପ୍ରାଚୀନ କାଳରୁ ଶବରମାନଙ୍କ ଦ୍ୱାରା ଯେ ପୂଜିତ ହେଉଥିଲେ, ତାହା ନିଃସନ୍ଦେହ । "ନୀଳାଦ୍ରୀ ମହୋଦୟ" ଗ୍ରନ୍ଥ ଏ ଉକ୍ତିର ସତ୍ୟତା ମଧ୍ୟ ପ୍ରତିପାଦନ କରିଥାଏ । ଜଗନ୍ନାଥ ଯେ ଶବର ଦେବତା ଓ ଆଦିବାସୀ ପରମ୍ପରାର ପୂଜ୍ୟ ଦେବତା ଏ କଥା କହିବାର ଅନ୍ୟ କେତେକ କାରଣ ହେଉଛି ଯେ, ଶ୍ରୀକ୍ଷେତ୍ରରେ ଯେଉଁ ଜାତି ଧର୍ମ ନିର୍ବିଶେଷରେ ମହାପ୍ରସାଦ ସେବନ କରାଯାଏ, ସେହି ଜାତି ଧର୍ମ ନିର୍ବିଶେଷର କଥା ହେଉଛି ଆଦିବାସୀର ଚିନ୍ତାଧାରା, ଶବର ସଭ୍ୟତାର ଚିନ୍ତାଧାରା । ଯେହେତୁ ଆଦିବାସୀ ଓ ଶବର ଜାତିରେ ଜାତି ବିଭେଦ ନାହିଁ କହିଲେ ଚଳେ । କିନ୍ତୁ ଆର୍ଯ୍ୟ ସମାଜରେ ଜାତି ବିଭେଦ ବିଶେଷ ପ୍ରାବଲ୍ୟ ଥିବାରୁ ଶ୍ରୀଜଗନ୍ନାଥ ଆର୍ଯ୍ୟମାନଙ୍କର ଦେବତା ହୋଇ ନ ପାରନ୍ତି ।

ଜଗନ୍ନାଥ ଆଦ୍ୟରୁ ଶବରମାନଙ୍କର ପ୍ରିୟ, ପ୍ରିୟତର ଓ ପ୍ରିୟତମ ଦେବତା ହେଲେ ମଧ୍ୟ ବିଭିନ୍ନ ମତବାଦୀ ମାନଙ୍କ ଦ୍ୱାରା ସେ ବିଭିନ୍ନ ସମୟରେ ଶୈବ, ଶାକ୍ତ, ବୈଷ୍ଣବ, ବୁଦ୍ଧ, ଜୈନ ଭୈରବ ଏ ସମସ୍ତ ତାଙ୍କ ପାଖରେ ଆରୋପିତ ହୋଇଛି । ବିଶେଷ କରି ବହୁ ଗବେଷକ, ଓଡ଼ିଶାର ପ୍ରତିଷ୍ଠିତ ବହୁ ପ୍ରାଚୀନ କବି ଜଗନ୍ନାଥଙ୍କୁ ବୌଦ୍ଧ ରୂପେ ପ୍ରତିଷ୍ଠିତ କରିବାରେ ବହୁ ଆଲାପ ଆଲୋଚନା ଓ ଯୁକ୍ତି ବିତର୍କ କରିଛନ୍ତି । ସାର୍ ମୋନିର ଉଇଲିୟମ୍, ଫରଗୁସନ୍ ହ୍ୱପ୍‌କିନ୍‌ସ କନିଙ୍ଗହାମ୍ ରମାଇ ପ୍ରଭୃତି ବୌଦ୍ଧପନ୍ଥୀ ପ୍ରଚାରକଗଣ ଜଗନ୍ନାଥଙ୍କୁ ବୌଦ୍ଧ ରୂପରେ ବାରମ୍ବାର ବନ୍ଦନା କରି ଆସିଛନ୍ତି । ରମାଇଦାସ ତାଙ୍କ ଧର୍ମପୂଜା ବିଧାନରେ ପ୍ରଚାର କରି କହିଛନ୍ତି—

ନବମ ମୂର୍ତ୍ତିତେ ହରି ଜଗନ୍ନାଥ ନାମ ଧରି
ଜଲଧୀରେ ତୀରେ କୈଲା ବାସ

\+ + +

ଜଲଧିର ତୀରେ ସ୍ଥାନ ବୌଦ୍ଧ ରୂପେ ଭଗବାନ
ହୟା ରୁମି କୃପାବଲୋକନ"

୧୨ଶ ଶତାବ୍ଦୀରେ ମଧ୍ୟ ଜୟଦେବ ତାଙ୍କ ରଚିତ 'ଗୀତ ଗୋବିନ୍ଦ'ରେ ନବମ ଅବତାରକୁ 'ବୁଦ୍ଧଶରୀର, ରୂପେ ବର୍ଣ୍ଣନା କରିଛନ୍ତି । ପୁନଶ୍ଚ Imperial Gazeteer of india ରେ ମଧ୍ୟ ପ୍ରକାଶ ପାଇଛି ଯେ ବିଷ୍ଣୁଙ୍କ ନବମ ଅବତାର 'ବୁଦ୍ଧଙ୍କ ସ୍ଥାନରେ ଜଗନ୍ନାଥଙ୍କ ନାମ ମଧ୍ୟ ବର୍ଣ୍ଣିତ ହୋଇଥାଏ ।

ବୌଦ୍ଧତନ୍ତ୍ରରେ ମଧ୍ୟ ଜଗନ୍ନାଥ ବୁଦ୍ଧ ରୂପେ ସମ୍ମାନିତ ଓ ପୂଜିତ । ଇନ୍ଦ୍ରଭୂତି ତାଙ୍କ ଜ୍ଞାନସିଦ୍ଧି ଗ୍ରନ୍ଥରେ ଜଗନ୍ନାଥଙ୍କୁ ସର୍ବ ବୁଦ୍ଧମୟ ଭାବେ ପରିକଳ୍ପନା କରିବେଲେ, ତାଙ୍କର ଶିଷ୍ୟ ଅନଙ୍ଗବଜ୍ର ମଧ୍ୟ ଜଗନ୍ନାଥଙ୍କୁ ଇନ୍ଦ୍ରଯାନୀ ବୁଦ୍ଧ ନାମରେ ଆଖ୍ୟାୟିତ କରିଛନ୍ତି ।

ଆଉ କେତେକଙ୍କ ମତରେ ଜଗନ୍ନାଥଙ୍କର ସ୍ନାନ ଯାତ୍ରା ଓ ରଥଯାତ୍ରା ପୂର୍ବରୁ ବୌଦ୍ଧପ୍ରଥାରେ ପରିଗୃହୀତ । ପଞ୍ଚମ ଶତାବ୍ଦୀରେ ବିଶିଷ୍ଟ ଐତିହାସିକ ଫାହିଆନ ଖୋଟାନଠାରେ ଅନୁଷ୍ଠିତ ବୌଦ୍ଧ ରଥଯାତ୍ରା ସମ୍ପର୍କରେ ବିସ୍ତୃତ ବିବରଣୀ ପ୍ରଦାନ କରିଛନ୍ତି ଓ ସେ ଦିନ ରଥରେ ରାଜା ମଧ୍ୟ ଆମ ରାଜାଙ୍କ ଭଳି ଠାକୁରଙ୍କର ପ୍ରଧାନ ସେବକ ଭାବେ ହେରା ପହଁରା କରିଥାଆନ୍ତି ।

ରଥଯାତ୍ରା ବୁଦ୍ଧଙ୍କ ଜନ୍ମୋତ୍ସବର ବା ବୌଦ୍ଧ ଜନ୍ମ ଉତ୍ସବର ସ୍ମୃତିସ୍ମାରକୀ ।

'ଶୈବଗୀତା'ରେ ଜଗନ୍ନାଥଙ୍କୁ ବୁଦ୍ଧ ରୂପେ ପରିକଳ୍ପନା କରି କୁହାଯାଇଛି ।

"ବଉଦରୂପେ ନୀଳଗିରି ରହି
ବଟ ଯନ୍ତେ ନୀଳଗିରି ଧରି
କଳି ଯୁଗରେ ବୀଜେ ନୀଳଗିରି
ବଉଦ ରୂପେ ଶଙ୍ଖ ଚକ୍ରଧାରୀ"

ସେହିକଥା ବେଳେ ପଞ୍ଚଦଶ ଶତାବ୍ଦୀରେ ଓଡ଼ିଆ ସାହିତ୍ୟର ଜନକ ଆଦିକବି ସାରଳାଦାସ ସେଇ ଅନୁରୂପ ମତପ୍ରଦାନ କରିଛନ୍ତି—ଯାହାକି ତାଙ୍କର ଆଦିପର୍ବ, ସଭାପର୍ବ, ବନପର୍ବ, ମଧ୍ୟପର୍ବ, ବିରାଟ ପର୍ବ ମାନଙ୍କରେ ମୂର୍ତ୍ତିମନ୍ତ ହୋଇ ଉଠିଛି । ତେଣୁ ତାଙ୍କର ଭାଷାରେ—

"ବଉଦ ରୂପେଣ ସ୍ୱାମୀ ସକଳ ମନ ମୋହି

+ + +

ପୁରୁଷୋତ୍ତମ ନଗର ମହୋଦଧି ତୀରେ
ନୀଳଗିରି ପରବତ ଅଛୁ ତା ସ୍ଥାନରେ
ଦେଉଳ ଭିତରେ ସିଂହାସନେ ବିଜେ ହୋଇ
ବଉଦ୍ଧ ରୂପରେ ପ୍ରଭୁ ଶଙ୍ଖ ଚକ୍ର ବହି

+ +

ବଉଦ୍ଧ ରୂପେ ପୂଜା ପାଇବେ ନୀଳ ସୁନ୍ଦର ପର୍ବତେ

* *

କଳି ଯୁଗେ ବଉଦ୍ଧ କେଶବ ପ୍ରତିମା
ମୂର୍ତ୍ତି ହୋଇବ ନୀଳ ସୁନ୍ଦର ଗିରି ଯେ ଉତ୍ତମା

+ +

ବଳଭଦ୍ର ସୁଭଦ୍ରା କୃଷ୍ଣ ତିନି ରୂପ
ବୁଦ୍ଧ ନାରାୟଣ ସ୍ୱେହୋ କରିବେକ ସ୍ୱରୂପ
ବଉଦ୍ଧରୂପେ ବିଜେ ଶ୍ରୀ ନୀଳକନ୍ଦରେ
ହୃେକ ମୁଣ୍ଡ ଚତୁର୍ଭୁଜ ରୂପ ବଇଲୁ ଦାମୋଦରେ

ପଞ୍ଚସଖା ଯୁଗର ଅନ୍ୟତମ ସଖା ଜଗନ୍ନାଥଦାସଙ୍କ ମତରେ ଯାହାକି ସେ ତାଙ୍କ ଭାଗବତ ଓ ଦାରୁବ୍ରହ୍ମ ଗୀତାରେ ଜଗନ୍ନାଥଙ୍କଠାରେ ବୁଦ୍ଧତ୍ୱର ଶ୍ରେଷ୍ଠତ୍ୱ ଆରୋପ କରିଛନ୍ତି । ତାହା ହେଲା—

ପ୍ରଭୁଙ୍କ ବୁଦ୍ଧ ଅବତାରେ । ଜ୍ଞାନ ବିସ୍ତାରି ଏ ସଂସାରେ ।
ବେଦର ଧର୍ମ ଛଡ଼ାଇବେ । ନାସ୍ତିକ ଧର୍ମ ପ୍ରଚାରିବେ
ପୁଣି ଏମନ୍ତ ସମୟରେ । ସିଦ୍ଧାନ୍ତ ହେବ ଘରେ ଘରେ
ସକଳ ବର୍ଣ୍ଣ ଏକଠାରେ । ବସି ଭୁଞ୍ଜିବ ସୁପନ୍ତରେ
—(ଭାଗବତ)

କଷ୍ଟ ଦେବଧି ଅନ୍ତରେଣ । ପାଦ ଯେ ପାଣି ହେଲା କ୍ଷୀଣ
ବଉଦ୍ଧ ରୂପ ହେବା ପାଇଁ । ପାଦ ପାଣି ମିଳିଲେ ନାହିଁ ।
—(ଦାରୁବ୍ରହ୍ମ ଗୀତା)

"ଅଚ୍ୟୁତାନନ୍ଦଙ୍କ 'ଶୂନ୍ୟ ସଂହିତା'ରେ ମଧ୍ୟ ସେଇ ଯୁକ୍ତି । ଯେତେବେଳେ ସେ କହନ୍ତି—

"ନିଜ ବଂଶ ଯେବେ ବଉଦ୍ଧ ରୂପରେ ନୀଳାଚଳେ ଅଛି ରହି ।
ନିଶ୍ଚଳ ଆସନେ ବସି ଯୋଗ ଧ୍ୟାନେ ଅକଟରେ ଥିବେ ଗୃହି ।

ଏହାଛଡ଼ା ଦ୍ୱାରକା ଦାସଙ୍କ "ଭାଗବତ" ଚୈତନ୍ୟ ଦେବଙ୍କ ଭାଗବତ, ଦେବାନନ୍ଦ ଦାସଙ୍କ 'ବେଚନ୍ଦ୍ରଗୀତା" ଦୀନକୃଷ୍ଣଦାସଙ୍କ 'ନାମରତ୍ନଗୀତା', ପ୍ରତାପରାୟଙ୍କ ଶଶୀସେଣା, ପ୍ରଭୃତିରେ ଜଗନ୍ନାଥଙ୍କୁ ମଧ୍ୟ ବୁଦ୍ଧ ରୂପେ ବର୍ଣ୍ଣନା କରାଯାଇଛି ।

କେହି କେହି ଆଲୋଚକ ଶବର ସଂସ୍କୃତି ସହିତ ବୌଦ୍ଧ ସଂସ୍କୃତି ସହାବସ୍ଥାନ ନୀତିକୁ ମଧ୍ୟ ଘୋଷଣା କରି କହନ୍ତି ଯେ, ଆଦ୍ୟ ଶବର ଦେବତା ଜଗନ୍ନାଥ ପରବର୍ତ୍ତୀ କାଳରେ ବୌଦ୍ଧ ଦେବତା ରୂପେ ପରିଚିତ ଓ ପରିଗଣିତ ହୋଇଛନ୍ତି ।

ଏ ସମସ୍ତ ସତ୍ତ୍ୱେ ବି ବହୁ ଆଲୋଚକ ତାଙ୍କୁ ଅର୍ଥାତ୍ ଜଗନ୍ନାଥଙ୍କୁ ବୌଦ୍ଧର ଦେବତା ବୋଲି ଅସ୍ୱୀକାର କରି ତାଙ୍କର ଯୁକ୍ତି ଉତ୍ଥାପନ କରିଛନ୍ତି ଓ ତାଙ୍କୁ ଜୈନ ଧର୍ମର ପ୍ରତୀକ ରୂପେ ଗ୍ରହଣ କରିଛନ୍ତି । ଏଇ ମତର ପରିପୋଷକ ଓ ପ୍ରଚାରକ ହେଲେ ପଣ୍ଡିତ ନୀଳକଣ୍ଠ ଦାସ, ଐତିହାସିକ କେଦାର ନାଥ ମହାପାତ୍ର, ପଣ୍ଡିତ ବିନାୟକ ମିଶ୍ର, ପଣ୍ଡିତ ବାନାମ୍ବର ଆଚାର୍ଯ୍ୟ ପ୍ରଭୃତି । ଏ ସମ୍ପର୍କରେ ପୁଣି ବିଶିଷ୍ଟ ଐତିହାସିକ ଡକ୍ଟର ନବୀନ କୁମାର ସାହୁ କହିଛନ୍ତି—"ମହେଞ୍ଜୋଦାରୋର ସିଲ ଉପରେ ଋଷଭଙ୍କ ପ୍ରତିକୃତି ସହିତ "ଜିନେଶ୍ୱର" ଶବ୍ଦ ଅଙ୍କିତ ହୋଇଥିବା ଅତି ଗୁରୁତ୍ୱପୂର୍ଣ୍ଣ ଅଟେ କାରଣ ଜୈନ ଧର୍ମରେ "ଜଗନ୍ନାଥ" ଜିନେଶ୍ୱରଙ୍କ ନାମାନ୍ତର ମାତ୍ର । ପୁଣି ଆଷାଢ଼ ଶୁକ୍ଳ ଦ୍ୱିତୀୟା ଦିନ, ଯେଉଁ ଦିନ ଜଗନ୍ନାଥଙ୍କର ଗୁଣ୍ଡିଚା ଯାତ୍ରା ଅନୁଷ୍ଠିତ ହୁଏ, ତାହା ଋଷଭ ଦେବଙ୍କ ଜନ୍ମ ଦିବସ ରୂପେ ସମଗ୍ର ଜୈନ ଜଗତରେ ପାଳିତ ହୋଇଥାଏ । ଜଗନ୍ନାଥଙ୍କ ରଥଯାତ୍ରା ଜୈନ ତୀର୍ଥଙ୍କରଙ୍କ ରଥ ଉତ୍ସବର ପରିଣତି ବୋଲି ମନେ ହୁଏ । ଫାଦର ଏଚ ହେରସ Father H. Herash ମହେଞ୍ଜୋଦାରର ସିଲ ଉପରେ ଥିବା ଅକ୍ଷର ସବୁ ପଢ଼ିଛନ୍ତି । ସେ ଠିକ୍ କରିଛନ୍ତି ଯେ ଲେଖାଗୁଡ଼ିକର ଭାଷା ପ୍ରାଚୀନ ଦ୍ରାବିଡ଼ । ସେ କାଳର ଦ୍ରାବିଡ଼ଙ୍କ ପରମ ଦେବତାଙ୍କୁ ସେମାନେ କହୁଥିଲେ 'ମୀନାକ୍ଷୀ' ଅର୍ଥାତ୍ ମାଛ ପରି ପତା ନ ଥାଇ ଗୋଲ ଆଖି ପୂଜା ଦେବତା । ଜଗନ୍ନାଥଙ୍କ ମୂର୍ତ୍ତିରେ ଠିକ୍ ଏହି ଆଖି ଚିତ୍ର ହୋଇଥିବାର ଦେଖାଯାଏ । ପୁଣି ଜଗନ୍ନାଥ ଧାମର କଳ୍ପବଟ ଜୈନ ଧର୍ମର କଳ୍ପ ବୃକ୍ଷ ବୋଲି ମନେ ହୁଏ । କଳ୍ପବୃକ୍ଷର ପଜା ମହେଞ୍ଜୋଦାରୋ ସଭ୍ୟତାରେ ଯେ ଥିଲା, ଏହା ତତ୍କାଳୀନ ସିଲ ଏବଂ ମାଟିପାତ୍ର ଉପରେ ଥିବା ଚିତ୍ର-

ଗୁଡ଼ିକରୁ ଜଣାଯାଏ । ଜଗନ୍ନାଥ ମନ୍ଦିରର ବୈକୁଣ୍ଠ,କୋଇଲି ବୈକୁଣ୍ଠ ରୂପେ ପରିଚିତ । "କୋଇଲି" ଶବ୍ଦର ଅର୍ଥ ପ୍ରାଚୀନ ତାମିଲ୍ ଭାଷାରେ ହେଉଛି ଦେବଗୃହ । ଏହି କୋଇଲି ଶବ୍ଦ ମହେଞ୍ଜୋଦାରୋ ସମୟରେ ବ୍ୟବହୃତ ଶବ୍ଦ ବୋଲି ଅନୁମାନ ହୁଏ । ଜଗନ୍ନାଥଙ୍କ ପୂଜାରେ ଏବଂ ନୈବେଦ୍ୟ ସେବାରେ "କୈବଲ୍ୟ" ପ୍ରାପ୍ତି ବୋଲି ବିଶ୍ୱାସ । ଏପରି କି ତାଙ୍କର ମହାପ୍ରସାଦ "କୈବଲ୍ୟ" ନାମରେ ସମଗ୍ର ଭାରତରେ ସୁପରିଚିତ । ଏହି କୈବଲ୍ୟ ଶବ୍ଦ ସ୍ପଷ୍ଟତଃ ଜୈନ ଶବ୍ଦ । ଏହି ସବୁ କାରଣରୁ ଜଗନ୍ନାଥ ଓ ଜଗନ୍ନାଥ ଧର୍ମର ବିକାଶ ମୂଳରେ ଜୈନ ଧର୍ମର ପ୍ରତ୍ୟକ୍ଷ ପ୍ରଭାବ ଲକ୍ଷ୍ୟ କରାଯାଇପାରେ । ଅତଏବ ଜଗନ୍ନାଥଙ୍କ ତତ୍ତ୍ୱ ନିରୂପଣ କରିବା ନିମନ୍ତେ ଆମ୍ଭମାନଙ୍କୁ ବର୍ତ୍ତମାନ ଏହି ସୁଦୂର ଅତୀତକୁ ଗତି କରିବାକୁ ହେବ ।

ଏ ସମ୍ପର୍କରେ ପଣ୍ଡିତ ନୀଳକଣ୍ଠ ଦାସ କହିଛନ୍ତି—"ଏବେ କେତେକ 'ଅତିଭକ୍ତ'ଙ୍କ କଳ୍ପନାରୁ ବାହାରିଛି—ରଥଯାତ୍ରା ହେଉଛି—କୃଷ୍ଣ ଗୋପୀମାନଙ୍କୁ ଛାଡ଼ି କଂସ ଘରକୁ ଯାତ୍ରା କରିବାର ଅନୁକରଣ । ଏହା କୃଷ୍ଣଙ୍କ ଘୋଷଯାତ୍ରା ମନେରଖିବାର ଅଛି । ମୈତ୍ରୀ ଦେବ ଜଗନ୍ନାଥଙ୍କୁ ବୃନ୍ଦାବନର ଗୋପୀବଲ୍ଲଭ କୃଷ୍ଣ କରିବା ପାଇଁ ବହୁକାଳ ହେଲା ବହୁ ଯତ୍ନ କରାଯାଇଛି । ସେଥିପାଇଁ ତାଙ୍କ ନୈବେଦ୍ୟ ମନ୍ତ୍ରକୁ ବଦଳା ହୋଇ କରାଯାଇଛି— "ଓଁ କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀ ଜନ ବଲ୍ଲଭାୟ ସ୍ୱାହା" ସେହି ଅନୁକ୍ରମେ ବଡ଼ ଠାକୁରେ ବା ବଳଭଦ୍ର ହୋଇଛନ୍ତି ବଡ଼ ଭାଇ ବଳରାମ । ସୋମଦ୍ରା ବା ସମୁଦ୍ରା ହୋଇଛନ୍ତି ଭଉଣୀ ସୁଭଦ୍ରା । ରଥଯାତ୍ରା ହୋଇଛି "ଘୋଷ ଯାତ୍ରା" ବା କୃଷ୍ଣ ବଳରାମଙ୍କର କଂସକୁ ମାରିଯିବା ପାଇଁ ରଥରେ ଯାତ୍ରା । ମାତ୍ର ଯେତେ ଚେଷ୍ଟା କଲେ ମଧ ମୈତ୍ରୀ ଦେବ ଜଗନ୍ନାଥ ବୃନ୍ଦାବନର "ଗୋପୀଜନ ବଲ୍ଲଭ" କୃଷ୍ଣ ହୋଇ ନାହାନ୍ତି କିମ୍ବା ରଥଯାତ୍ରା ଘୋଷଯାତ୍ରାର ଅନୁକରଣ ନୁହେଁ ବା ହୋଇ ନ ପାରେ । ପୁଣି କୃଷ୍ଣ ବଳରାମ କଂସ ଘରକୁ ଯେଉଁ ଯାତ୍ରା କରିଥିଲେ ତାହା ରଥରେ କରିଥିଲେ ସତ୍ୟ— କିନ୍ତୁ ତାହା ଘୋଷଯାତ୍ରା ନୁହେଁ । + + ଜଗନ୍ନାଥ ହେଉଛନ୍ତି ଜୈନଦେବ । ଅନ୍ତତଃ ଜୟଦେବଙ୍କ ପରବର୍ତ୍ତୀ କାଳରୁ ଜଗନ୍ନାଥଙ୍କୁ ବୌଦ୍ଧଦେବ ବା ବୌଦ୍ଧାବତାର ବୋଲି କହିନ୍ତି । ମାତ୍ର ଭାରତ ସଂସ୍କୃତିରେ ଜିନ ବା ବୁଦ୍ଧ ଏକା କଥା । ଶାକ୍ୟମୁନି ଯେପରି ନିଜକୁ ବୁଦ୍ଧ ବୋଲି କହୁଥିଲେ, ତୀର୍ଥଙ୍କର ମହାବୀର ମଧ ସେହିପରି ନିଜକୁ ବୁଦ୍ଧ ବୋଲି କହୁଥିଲେ । ଶଙ୍କରାଚାର୍ଯ୍ୟ ମଧ ବୁଦ୍ଧଙ୍କୁ ବରାବର 'ଜିନ' ବୋଲି କହିଛନ୍ତି । ବଜ୍ରଯାନୀ ଇନ୍ଦ୍ରଭୂତି ମଧ ନିଜ "ଜ୍ଞାନ ସିଦ୍ଧି"ର ମଙ୍ଗଳାଚରଣ ଶ୍ଳୋକରେ ଜଗନ୍ନାଥଙ୍କୁ "ସର୍ବଜିନ ବରାର୍ଚ୍ଚିତ ଓ ସର୍ବ ବୁଦ୍ଧମୟ" ବୋଲି କହିଛନ୍ତି । ଏହାହିଁ ହେଉଛି ଜଗନ୍ନାଥଙ୍କ ପରମ୍ପରା । ସେ 'ଜିନ' ଅତଏବ ସେ ବୁଦ୍ଧ । ଜଗନ୍ନାଥର ନାଥ ଶବ୍ଦଟିର ଅର୍ଥ ମୂଳତଃ ଏପରି ସ୍ୱାମୀ ବା "ନିଗ୍ରହାନୁଗ୍ରହ ସମର୍ଥ ବିଭୂ" ନୁହେଁ । ଯେପରି ଜୈନ ମାନଙ୍କ ଭିତରେ ଋଷଭ ନାଥ, ଆଦିନାଥ, ନେମିନାଥ, ପାର୍ଶ୍ୱନାଥ ପ୍ରଭୃତି, ଏ ସେହିପରି ଜଗତ୍ ସ୍ୱରୂପ ଉପାସ୍ୟ

ପୁରୁଷର ନାମ ଜଗନ୍ନାଥ, + + ଜୈନ ମାନଙ୍କର ଏଇ ରଥଯାତ୍ରା ଥିଲା, ଏବେବି ପ୍ରଚଳିତ ଅଛି—ଋଷଭ ପ୍ରଭୃତି ତୀର୍ଥଙ୍କରମାନଙ୍କର ଉତ୍ସବରେ ।

ପୁଣି ଶୈବ କ୍ଷେତ୍ରରେ ଜଗନ୍ନାଥ ଧାମ କିପରି ପରିଚିତ ଓ ପରିଣତ ହୋଇଛି ସେ ସମ୍ପର୍କରେ ମାର୍କଣ୍ଡେୟ ମୁନି ସ୍ପଷ୍ଟ କରି କହିଛନ୍ତି—

"ହେ ନାଥ ତୁମ୍ଭର ପ୍ରସାଦରେ ଲୋକଙ୍କ ହିତ ଓ ନାନାଭାବ ପ୍ରକାଶନ ପାଇଁ ଏହି ପୁଣ୍ୟ ନିର୍ମଳ କ୍ଷେତ୍ରରେ ଶୈବ ଓ ଭଗବତ୍ ମାନଙ୍କର ବିବାଦ ପ୍ରତିଷେଧକ ଏକ ଦେବାଳୟ ନିର୍ମାଣ କରିବାକୁ ଇଚ୍ଛା କରିଅଛି । ଏହି ତୁମର କ୍ଷେତ୍ରରେ ଶିବମୂର୍ତ୍ତି ପ୍ରତିଷ୍ଠା କଲେ, ଲୋକମାନେ ଜାଣି ପାରିବେ ଯେ ହରି ଓ ହର ଭିନ୍ନ ନୁହନ୍ତି, ଉଭୟେ ଏକ ମୂର୍ତ୍ତି । ବିଷ୍ଣୁ ସ୍ୱୟଂ ଉତ୍ତର ଦେଲେ ଯେ ଶିବଙ୍କୁ ସଂସ୍ଥାପନ କରାଯିବା ଦ୍ୱାରା ମୋତେ ମଧ୍ୟ ସଂସ୍ଥାପନ କରାଗଲା । ଆମ (ହରିହର) ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଆମେ ଏକ ମୂର୍ତ୍ତି ଦୁଇଭାଗ ହୋଇଛୁ । ଯେ ରୁଦ୍ର, ସେ ବିଷ୍ଣୁ ଯେ ବିଷ୍ଣୁ, ସେ ରୁଦ୍ର । ପବନ ଓ ଆକାଶ ମଧ୍ୟରେ ଯେପରି ପ୍ରଭେଦ ନାହିଁ ସେପରି ଆମ ଦୁହିଁଙ୍କ ମଧ୍ୟରେ କିଛି ପ୍ରଭେଦ ନାହିଁ । ସୁତରାଂ ଶୈବ ମାନଙ୍କ ମଧ୍ୟରେ ବା ମତରେ ଶ୍ରୀ ଜଗନ୍ନାଥ ହିଁ ହେଉଛନ୍ତି ହରି ଏବଂ ହର । ଏହା ମଧ୍ୟ ସାରଳାଦାସଙ୍କ କଳ୍ପନାରେ ସୁସ୍ପଷ୍ଟ ।

"ରାମକୃଷ୍ଣ ସୁଭଦ୍ରା ଯେ ଏ ତିନି ପ୍ରତିମା
ଶ୍ରୀ ପୁରୁଷୋତ୍ତମ ବିଜେ ହରି ହର ବ୍ରହ୍ମା"

ପୁଣି ଶାକ୍ତ ମତରେ ଜଗନ୍ନାଥଙ୍କ ସମ୍ପର୍କରେ କୁହାଯାଇଛି—ଜଗନ୍ନାଥ ରାଧାକୃଷ୍ଣଙ୍କ ମିଳିତ ତନୁ । ଅନନ୍ତ ଦେବଙ୍କ ଉପରେ ଶୟନ କରିଛନ୍ତି । ସୁତରାଂ ଶାକ୍ତମାନେ ଜଗନ୍ନାଥଙ୍କୁ ଭକ୍ତି କରିବା ସ୍ୱାଭାବିକ ।

ଜଗନ୍ନାଥ ମନ୍ଦିରର ତ୍ରିମୂର୍ତ୍ତି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ମହେଶ୍ୱର, ବ୍ରହ୍ମା, ବିଷ୍ଣୁ ଆଦି ତ୍ରିମୂର୍ତ୍ତି ବୋଲି କେହି କେହି ମତପ୍ରଦାନ କରିଥାଆନ୍ତି । ସେମାନଙ୍କ ମତରେ ବଳଭଦ୍ର (ଶିବ) ସୁଭଦ୍ରା (ବ୍ରହ୍ମା) ଓ ଜଗନ୍ନାଥ (ବିଷ୍ଣୁ) ବୋଲି ସେମାନେ କହନ୍ତି ।

ସୁଭଦ୍ରାଙ୍କୁ ବ୍ରହ୍ମା ରୂପରେ ଗ୍ରହଣ କରିବାର କାରଣ ଦର୍ଶାଇ କବି ଶିଖର ଦାସ ଲେଖିଛନ୍ତି ଯେ—"କୃଷ୍ଣଙ୍କର ଗୋପଲୀଳା କାଳରେ ଥରେ ବ୍ରହ୍ମା ତାଙ୍କର ଗୋବତ୍ସ ହରଣ କରି ନେବାରୁ କୃଷ୍ଣ ବ୍ରହ୍ମାଙ୍କୁ ଶାପ ଦେଲେ—ତୁମେ ଅପୂଜା ହୋଇ ରହିବ ।

ପରେ ବ୍ରହ୍ମାଙ୍କ ସ୍ତୁତିରେ ପ୍ରୀତ ହୋଇ କୃଷ୍ଣ ବର ଦେଲେ—ନୀଳାଚଳରେ ତୁମେ ଆମର ଭଗିନୀ ସୁଭଦ୍ରା ରୂପରେ ପୂଜା ପାଇବ କିନ୍ତୁ ଏ କଥା ସମସ୍ତେ ଜାଣିବେ ନାହିଁ ।

ଜଗନ୍ନାଥଙ୍କୁ ଗାଣପତ୍ୟ ମତରେ ଭୂଷିତ କରିବା ପାଇଁ ପରବର୍ତ୍ତୀ ଯୁଗରେ ଅପେକ୍ଷାକୃତ ଅର୍ବାଚୀନ ଗାଣପତ୍ୟ ଉପାସନା ସହିତ ଶୈବ, ଶାକ୍ତ, ବୈଷ୍ଣବ ଓ ସୌର ଉପାସନାର ସମନ୍ୱୟ ଜ୍ଞାପନ ପାଇଁ ଜ୍ୟେଷ୍ଠ ପୂର୍ଣ୍ଣିମୀରେ ଶ୍ରୀ ଜଗନ୍ନାଥ ଯେଉଁ ଗଣେଶ ରୂପ ଧାରଣ କରିଥିଲେ, ତାହା ଅଦ୍ୟାବଧି ପ୍ରଚଳିତ ଅଛି ।

ଏ ସମସ୍ତ ପରିପ୍ରେକ୍ଷୀରେ ବିଶିଷ୍ଟ ଗବେଷକ ଡକ୍ଟର ବାସୁଦେବ ସାହୁ କହନ୍ତି— "ରଥ ସମ୍ପର୍କରେ ଆମର ପ୍ରାଚୀନ ପୁରାଣ ରାମାୟଣ, କୌଟିଲ୍ୟଙ୍କ ଅର୍ଥଶାସ୍ତ୍ର, ଲଟ୍ୟାୟନ ଶୌତସୂତ୍ର ଓ ହେମଚନ୍ଦ୍ର ସୁରୀଙ୍କ ପରିଶିଷ୍ଟ ନିର୍ବାଣରେ ଉଲ୍ଲେଖ ଥିବାରୁ ଜଗନ୍ନାଥଙ୍କ ରଥଯାତ୍ରା ବୌଦ୍ଧରଥଯାତ୍ରାର ପ୍ରଭାବର ଫଳ ଭାବିବା ଅମୂଳକ ବୋଲି ଅଧ୍ୟାପକ ପ୍ରଭାତ ମୁଖାର୍ଜି ମତ ଦେଇଛନ୍ତି । ତେବେ ବିଷ୍ଣୁ ବା ତାଙ୍କ ଅବତାର ମାନଙ୍କର ପୂଜା ଉତ୍ସବରେ ରଥଯାତ୍ରା ଏକ ଅଂଶ ହେବାର ପ୍ରମାଣ ନାହିଁ । କିନ୍ତୁ ବୁଦ୍ଧ ବା ବୋଧିସତ୍ତ୍ୱମାନଙ୍କର ପୂଜା-ଉତ୍ସବରେ ରଥଯାତ୍ରା ଏକ ବିଶିଷ୍ଟ ଅଙ୍ଗ । ଜଗନ୍ନାଥଙ୍କ ରଥଯାତ୍ରା ମଧ୍ୟ ଅତି ପ୍ରାଚୀନ ହୋଇଥିବାରୁ କୌଣସି ଐତିହାସିକ ପ୍ରମାଣ ନାହିଁ । ପରବର୍ତ୍ତୀ କାଳରେ ବୌଦ୍ଧ ରଥଯାତ୍ରାର ଅନୁକୃତିରେ ବୁଦ୍ଧ ରୂପୀ ଜଗନ୍ନାଥଙ୍କର ରଥଯାତ୍ରାର ପରଂପରା ପ୍ରଚଳନ ସମ୍ଭାବନାର ଅଧିକ ନିକଟବର୍ତ୍ତୀ । ସମ୍ଭବତଃ ଶଙ୍କରାର୍ଯ୍ୟଙ୍କ ପୁରୀ ଆଗମନ ପର୍ଯ୍ୟନ୍ତ ଜଗନ୍ନାଥ ଥିଲେ ବୌଦ୍ଧାର୍ଚ୍ଚିତ । ଶଙ୍କରାଚାର୍ଯ୍ୟଙ୍କ ସ୍ମାର୍ତ୍ତ ପଦ୍ଧତିରେ ସେ ହେଲେ ଯୁଗପତ୍ ଶୈବାର୍ଚ୍ଚିତ ଓ ବୈଷ୍ଣବାର୍ଚ୍ଚିତ । ଯୁଗେ ଯୁଗେ ବିଭିନ୍ନ ଧର୍ମ ପ୍ରଚାରକ ଗଣ ନିଜନିଜର ଧର୍ମର ସ୍ୱୀକୃତି ପ୍ରଚାର ଓ ପ୍ରସାର ପାଇଁ ସର୍ବଧର୍ମର ସମନ୍ୱୟ କ୍ଷେତ୍ର ପୁରୀ କ୍ଷେତ୍ରକୁ ଆସିଛନ୍ତି ଓ ବହୁ ମତର ଆଦର୍ଶରେ ଜଗନ୍ନାଥ ଚେତନାର ପୁଷ୍କଳ ବିକାଶ ଘଟାଇ ଯାଇଛନ୍ତି । ବିଭିନ୍ନ ଧର୍ମର ମତବାଦ ଜଗନ୍ନାଥଙ୍କର ସାର୍ବଜନୀନ ଉଦାର ମହିମା ଦ୍ୱାରା ଗୋଟିଏ ସୂତ୍ରରେ ଗ୍ରଥିତ ହୋଇ ଜଗନ୍ନାଥ ଧର୍ମରେ ପରିଣତ ହୋଇଛି । ଏହାର ଭିତରେ ପ୍ରତିଫଳିତ ହୋଇଛି ବୌଦ୍ଧ, ଶୈବ, ଶାକ୍ତ ବୈଷ୍ଣବାଦ ଧର୍ମର ସ୍ୱରୂପ । ଜଗନ୍ନାଥଙ୍କର ଏ ଅନନ୍ୟ ସମନ୍ୱୟ ପାଇଁ ବୌଦ୍ଧଧର୍ମର ଅବଦାନ ଆଦୌ ନଗଣ୍ୟ ନୁହେଁ ବରଂ ଅନନ୍ୟ ସାଧାରଣ ।"[1]

ଏ ସମସ୍ତ ବିଚାର ଆଲୋଚନାରୁ ଏହା ପରିଷ୍କାର ଯେ ଜଗନ୍ନାଥଙ୍କୁ ବୁଦ୍ଧ କହିବାରେ ଯେତିକି ଯୁକ୍ତି ସଂଗତ, ଅନ୍ୟ କିଛି କହିବାରେ ସେତିକି ଯୁକ୍ତିଯୁକ୍ତ ଧାରଣା ବା ଅବବୋଧ ଆସି ପାରୁନାହିଁ, ତଥାପି ଜଗନ୍ନାଥ କୌଣସି ସଂକୀର୍ଣ୍ଣ ଧର୍ମଧାରାରେ ଆବଦ୍ଧ ନ ହୋଇ ସେ ନିଜସ୍ୱ ବା ନିଜତ୍ୱ ଧର୍ମଧାରାରେ ଚିରକାଳ

ଉଲ୍ଲିଖିତ ହୋଇ ରହି ଆସିଛନ୍ତି । ତାହାହିଁ ତାଙ୍କର ସାର୍ବଜନୀନ ଓ ସାର୍ବଭୌମ "ଜଗନ୍ନାଥ ଧର୍ମ" । ଏଣୁ ଏ ନ ହୋଇଥିଲେ ବିଭିନ୍ନ ଧର୍ମଧ୍ୱଜୀଙ୍କ ଅଣନିଶ୍ୱାସୀ ଦଉଡ଼ ଆଉ କେଉଁଠିକି ନ ହୋଇ, ଏହି ଧାମକୁ ହୋଇଛି କାହିଁକି ? ତାହାହିଁ ଆଜ ଗମ୍ଭୀର ଅନୁଶୀଳନ ଓ ଅନୁଧ୍ୟାନର ବିଷୟ । ଆମେ ଆଜ ଯଦି ଏହାର ପୁଙ୍ଖାନୁପୁଙ୍ଖ ତର୍ଜମା କରିପାରୁ ତେବେ ମୈତ୍ରୀଦେବ ଜଗନ୍ନାଥଙ୍କ ଚିନ୍ତା ଓ ଚେତନା ଆହୁରି ସ୍ପଷ୍ଟତର ହୋଇ ଉଠିବ ।

ପୁଣି ଏଇଠି ମନରେ ଆସୁଚି ସେଇ ଅଞ୍ଚଳରେ ଏଇ ସମାଜବାଦର ଠାକୁର ଜଗନ୍ନାଥଙ୍କ ନିକଟକୁ ମଧ୍ୟ ଯୀଶୁ ଖ୍ରୀଷ୍ଟ ଆସିଥିଲେ; ଯାହାକି ସୁପ୍ରସିଦ୍ଧ ଫରାସୀ ଐତିହାସିକ ଏମ: ସିଲଭିନ୍‌ଲେଭିଙ୍କ ବିବରଣୀରୁ ଜଣାପଡ଼େ । ଏମ: ସିଲଭିନ୍‌ଲେଭି ତାଙ୍କ— "The Aquarian Gospel of Jesus christ ଗ୍ରନ୍ଥର The life and works of Jesus in India" ନାମକ ଅଧ୍ୟାୟରେ ଉଲ୍ଲେଖ କରିଛନ୍ତି— " Jesus was accepted as a pupil in the Temple of Jagannath and for four years altogether he abode in the Temple of Jagannaths soon began to preach the sudras formers in parable"—ଏଇ ତଥ୍ୟଟିକୁ ଆଲୋଚନା କଲେ ସ୍ପଷ୍ଟ ଜଣାପଡ଼େ ଯେ ଯୀଶୁ ଓଡ଼ିଶାର ଜଗନ୍ନାଥ ମନ୍ଦିରରେ ଚାରିବର୍ଷ କାଳ ଅବସ୍ଥାନ ପୂର୍ବକ ବିଭିନ୍ନ ଧର୍ମ ଶିକ୍ଷା ହୃଦୟଙ୍ଗମ କରିବାକୁ ସମର୍ଥ ହୋଇଥିଲେ ଓ ପରେ ତା'ର ପ୍ରଭାବରେ ସେ ନିଜର ଖ୍ରୀଷ୍ଟଧର୍ମ ପ୍ରଚାର କରିବାକୁ ଏଠାରୁ ବୈଦିକ ଜଗନ୍ନାଥ ଧର୍ମର ଆଲୋକ ଓ ପ୍ରେରଣା ଲାଭ କରିଥିଲେ । ଏଇଥିଯୋଗୁ I. S. K. C. ON—International Society for Krishna consiousness) ବା ହରେକୃଷ୍ଣ ଆନ୍ଦୋଳନର ପ୍ରତିଷ୍ଠାତା ଭକ୍ତି ବେଦାନ୍ତ ସ୍ୱାମୀ "ଦି ଆକ୍ୱାରିଆନ୍ ଗସ୍‌ପେଲ" ପୁସ୍ତକ ବିଷୟରେ ଉଲ୍ଲେଖ କରି ଆମେରିକାର ପୁଣି ବୌଦ୍ଧ ଓ ଖ୍ରୀଷ୍ଟିଆନ୍ ଜଗତରେ ରଥଯାତ୍ରାର ଯଥାର୍ଥତା ପ୍ରତିପାଦନ କରି ତାଙ୍କ ଭାଷଣ ପ୍ରସଙ୍ଗରେ କହିଥିଲେ—ଶ୍ରୀ ଜଗନ୍ନାଥ କଳିଯୁଗରେ ପ୍ରବୁଦ୍ଧ ବୁଦ୍ଧ ଅବତାର । ପୁନଶ୍ଚ ସେ ବକ୍ତୃତାରୁ ଜଣାପଡ଼େ ଯେ ଈଶ୍ୱର ପୁତ୍ର ଯୀଶୁ କିଛି ସମୟ ପାଇଁ ଜଗନ୍ନାଥଙ୍କ ମନ୍ଦିରରେ ମଧ୍ୟ ରହିଥିଲେ । ଈଶ୍ୱର ପୁତ୍ର ଯୀଶୁ ଜଗନ୍ନାଥଙ୍କ-ଠାରୁ ଆଧ୍ୟାତ୍ମିକ ପ୍ରେରଣା ଲାଭ କରିଥିଲେ । ଶ୍ରୀ ଜଗନ୍ନାଥ ସେଥିପାଇଁ ବିଶେଷ ପ୍ରୀତ ହୋଇ ଆପଣମାନଙ୍କ ଦେଶକୁ ଆସିଛନ୍ତି । ପ୍ରଭୁ ଯୀଶୁ ଖ୍ରୀଷ୍ଟ ଶ୍ରୀ ଜଗନ୍ନାଥଙ୍କୁ ପ୍ରେମ କରିଥିବା ହେତୁ ସେହି ଶ୍ରୀ ଜଗନ୍ନାଥ ବର୍ତ୍ତମାନ ଆପଣମାନଙ୍କ ଦେଶକୁ ଆସିଛନ୍ତି । ତାଙ୍କୁ ସାଦରେ ଗ୍ରହଣ କରନ୍ତୁ—ଆପଣମାନେ ସୁଖୀ ହେବେ"—

ତେଣୁ କ୍ଷମା ଓ ପ୍ରେମର ଅବତାର ଯୀଶୁ ଯଦି ଶ୍ରୀକ୍ଷେତ୍ରରେ ପଦାର୍ପଣ କରି-ପାରିଲେ ତେବେ ମୁସଲମାନ ଧର୍ମର କବୀର ଓ ସାଲବେଗ'' ନୀଳାଦ୍ରି ସିଂହଙ୍କ ସମ୍ପର୍କରେ ଭଜନ ଲେଖି ଭଜନ କୀର୍ତ୍ତନ କରିବାରେ ବାଧା ରହିଲା କେଉଁଠି ? ଏଇଠାରେହିଁ ଜଗନ୍ନାଥଙ୍କ ସର୍ବ ବ୍ୟାପକତା ଓ ସର୍ବମହନୀୟତା । ତେଣୁ ଏଭଳି ସର୍ବ ଧର୍ମର ପୂଜିତ ପ୍ରଭୁ ପୃଥିବୀ ଇତିହାସରେ ବିରଳ ନୁହେଁ କି ? ସେଇଥିପାଇଁ ତ ସେ ଜଗତର ନାଥ । ଅନ୍ୟମାନେ ଜଗତର ନାଥ ହେବେ କିପରି ? ? ତେଣୁ ମହାଯୋଗୀ ଅରବିନ୍ଦ ସେଇଥିପାଇଁ କହିଛନ୍ତି—"The purushottama is in the heart of every creature and is manifested in his countless Vibhutis. The Purushottam is the cosmic spirit in time and it is he that given the command to the devine action of the liberated human spirit and yet he is other because he is more and greater than either of these opposites. He is a supreme mysterious. All,are ineffable positive. Absolute of all things here. He is the lord in the kshara. Purushottam not only there but here in the heart of every creature iswara (Sri Aurobindo Essay on the Geeta) ଅର୍ଥାତ୍ ପୁରୁଷୋତ୍ତମ ପ୍ରତ୍ୟେକ ଜୀବର ହୃଦୟରେ ଅଧିଷ୍ଠିତ ଏବଂ ତାଙ୍କର ଅସଂଖ୍ୟ ବିଭୂତିମାନଙ୍କ ମଧ୍ୟରେ ଅଭିବ୍ୟକ୍ତ । ପୁରୁଷୋତ୍ତମ ହେଉଛନ୍ତି ମହାକାଳ ମଧ୍ୟରେ ବିଶ୍ୱେଶ୍ୱର ଏବଂ ସେ ହିଁ ମୁକ୍ତ ମାନବ ଆତ୍ମାକୁ ଭଗବତ କର୍ମ ନିମନ୍ତେ ଆଦେଶ ଦିଅନ୍ତି । ତଥାପି ସେ ତାହାର ଅତୀତ କାରଣ ଏହି ଉଭୟ ବିପରୀତଠାରୁ ସେ ମହତ୍ତର ଏବଂ ବିଶାଳ । ସେ ଏକ ପରମ ନିଗୂଢ଼ ସର୍ବ । ଏହିଠାରେ ଥିବା ସମଗ୍ର ବସ୍ତୁର ଏକ ପରମ ଧ୍ରୁବ । କ୍ଷର ମଧ୍ୟରେ ସେ ପ୍ରଭୁ । କେବଳ ସେଥିରେହିଁ ଯେ ସେ ପୁରୁଷୋତ୍ତମ ତାହା ନୁହେଁ; ଏଠାରେ ମଧ୍ୟ ପ୍ରତ୍ୟେକ ଜୀବର ହୃଦୟ ମଧ୍ୟରେ ସେ ଈଶ୍ୱର"

ଏଠାରେ ଆଉ ଗୋଟିଏ କଥା ନ କହିଲେ ନଚଳେ । ସେ କଥା ହେଲା— ବାଲ୍ମୀକି ତାଙ୍କ ରାମାୟଣରେ ନୀଳକନ୍ଦର ବାସୀ ଜଗନ୍ନାଥଙ୍କୁ 'ରାମ' ବୋଲି ସ୍ୱୀକାର କରିଛନ୍ତି । ଯେତେବେଳେ ରାଘବେନ୍ଦ୍ର ସରଜୁ ପ୍ରବେଶ ନିମନ୍ତେ ଗମନ କରନ୍ତି, ସେତେବେଳେ ରାକ୍ଷସେନ୍ଦ୍ର ବିଭୀଷଣ, କୃତାଞ୍ଜଳି ପୂର୍ବରେ ପ୍ରାର୍ଥନା କଲେ— "ହେ ଶରଣାଗତ ବତ୍ସଳ, ଆପଣଙ୍କର ଚରଣାରବିନ୍ଦରେ ନିତ୍ୟ ସେବା ନିମନ୍ତେ ଏ ଅଧମ ସମ୍ପୂର୍ଣ୍ଣ ସମର୍ପିତ । ଆପଣ ଯଦି ସରଜୁ ପ୍ରବେଶ କରନ୍ତି, ତେବେ ଏ ଅଧମ ବାସ୍ତବରେ ନିରାଶ ହେବ । ତେଣୁ ପ୍ରାର୍ଥନା ନିତ୍ୟ ଦର୍ଶନରୁ ବଞ୍ଚିତ କରନ୍ତୁ ନାହିଁ ।

ସେଥିରେ ରାମଚନ୍ଦ୍ର ସ୍ୱୟଂ କରୁଣସ୍ୱ ପ୍ରେମର ସହିତ କହିଲେ—ରାଜସେନ୍ଦ୍ର ଆପଣ ସୂର୍ଯ୍ୟବଂଶର ନୃପତିଙ୍କ ଦ୍ୱାରା ଇନ୍ଦ୍ରାଦି ଦେବତାମାନଙ୍କ ଦ୍ୱାରା ପରିସେବିତ ଶ୍ରୀ ଜଗନ୍ନାଥଙ୍କୁ ମୋ ପରି ମନେକରି ନିତ୍ୟ ଦର୍ଶନ କରିବେ । ଏଣୁ ସେହି ଆଶ୍ୱାସରେ ପ୍ରତିଧ୍ୱନିତ ହୋଇ ଭକ୍ତି ରସାପ୍ଲୁତ ଭାବେ ଶୁଣାଗଲା—

"ଆରାଧୀସ୍ୱ ଜଗନ୍ନାଥ ଇକ୍ଷ୍ୱାକୁକୁଳ ଦୈବତଂ
ଆରାଧନୀସ୍ୱ ସହି ସାକ୍ଷାତ୍ ଇନ୍ଦ୍ରାଦି ଦେବତା ସହି"

ନୀଳାଦ୍ରି ଚନ୍ଦ୍ରଙ୍କୁ ଭଗବାନ ରାଘବେନ୍ଦ୍ର ସ୍ୱୟଂ ଆପଣାର ପ୍ରତୀକ ରୂପେ ସ୍ୱୀକାର କରିଥିବା ରୁ ନୀଳାଚଳ ମନ୍ଦିରର ନୀତି ସଙ୍ଗେ ବ୍ରାହ୍ମଣ ସମ୍ପୃକ୍ତ ଓ ମନ୍ଦିରର ଦକ୍ଷିଣଭାଗ (ଦିଗ) ବ ଦ୍ୱାରେ ଶ୍ରୀ ବିଗ୍ରହଗଣ ବ୍ରାହ୍ମଣଙ୍କର ଦର୍ଶନ ନିମନ୍ତେ ପ୍ରକାଶିତ ହୋଇଅଛନ୍ତି ।

ପୁନଶ୍ଚ ମଧ୍ୟବର୍ତ୍ତୀକାଳୀନ ଆଖ୍ୟାୟିକାରେ କଥିତ ଅଛି—"ରାମଚନ୍ଦ୍ରଙ୍କର ପରମ ଭକ୍ତ ତୁଳସୀ ଦାସ ବିଷ୍ଣୁ ତୀର୍ଥ ଦର୍ଶନ ନିମନ୍ତେ ସମଗ୍ର ଭାରତର ବୈଷ୍ଣବ ତୀର୍ଥମାନ ଦର୍ଶନ ଲାଳସାରେ ଯାତ୍ରା କରି ସର୍ବତ୍ର ରାମଚନ୍ଦ୍ରଙ୍କର ସ୍ୱରୂପ ଦେଖି ଶେଷ ପର୍ଯ୍ୟାୟରେ ଶ୍ରୀକ୍ଷେତ୍ରରେ ପହଞ୍ଚିଲେ । ଏଠାରେ ଶ୍ରୀକ୍ଷେତ୍ରରେ ଅପ୍ରାକୃତ ରୂପ ଦେଖି ରାଘବେନ୍ଦ୍ରଙ୍କ ଭାବ ନ ଦେଖି ପ୍ରଣିପାତ ନକରି ଫେରି ଯାଇ ତୁଳସୀଚଉରା ନାମକ ସ୍ଥାନରେ ରାତ୍ରିଯାପନ କଲେ । ତାଙ୍କର ଅନନ୍ୟ ବୈରାଗ୍ୟ ଓ ଏକନିଷ୍ଠା ଭାବ ଦେଖି ଭଗବାନ ଶ୍ରୀରାମଚନ୍ଦ୍ର ଅବତୀର୍ଣ୍ଣ ହେଲେ । ତେଣୁ ସେଠାରୁ ସେ ପୁନର୍ବାର ଶ୍ରୀମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରି ଚତୁର୍ଦ୍ଧାମୂର୍ତ୍ତି ବା ଶ୍ରୀରାମଚନ୍ଦ୍ରଙ୍କର ଅଭିଷେକ ମୂର୍ତ୍ତି ଦର୍ଶନ କରିଥିଲେ । ସ୍ୱଚକ୍ଷୁରେ ଦୃଶ୍ୟମାନ ଯାହା ତାଙ୍କଦ୍ୱାରା ବ୍ୟକ୍ତ—

ଦକ୍ଷିଣେ ଲକ୍ଷ୍ମଣଂ ଯସ୍ୟ ବାମେଚ ଜନକାତ୍ମଜା
ପୁରତେ ମାରୁତର୍ଯସ୍ୟ ତଂ ବନ୍ଦେ ରଘୁନନ୍ଦନମ୍"

ଅବଧି ପ୍ରତିନିତ୍ୟ ଶୟନ ବନ୍ଦାପନା ବେଳେ ତୁଳସୀ ଦାସଙ୍କ ରଚିତ ପଦ୍ୟାବଳୀ ପଠିତ ହେଉଅଛି ଏବଂ ରାମ ଚରଣାଶ୍ରିତ ବୈଷ୍ଣବମାନେ ପରମ୍ପରାକ୍ରମେ ଶ୍ରୀଜଗନ୍ନାଥଙ୍କୁ ରାମଚନ୍ଦ୍ର ସ୍ୱରୂପରେ ଗ୍ରହଣ କରି ଆସୁଅଛନ୍ତି ।

ସ୍ଥୂଳତଃ ଜଗନ୍ନାଥ ଧର୍ମ ବା ସଂସ୍କୃତି କହିଲେ ବୌଦ୍ଧଧର୍ମର ତ୍ରିରତ୍ନ, ଖ୍ରୀଷ୍ଟଧର୍ମର ତ୍ରିନୀତି ଏବଂ ହିନ୍ଦୁଧର୍ମର ତ୍ରିମୂର୍ତ୍ତି (ବଳଭଦ୍ର, ସୁଭଦ୍ରା, ଜଗନ୍ନାଥ)ଙ୍କୁ ବୁଝାଇଥାଏ ।

ଏଇ ଜଗନ୍ନାଥ ଶ୍ଳୋକଗ୍ରାହ୍ୟ, ବ୍ୟାକରଣ ଗ୍ରାହ୍ୟ ନୁହନ୍ତି । ସେ ପ୍ରକୃତରେ ଭାବଗ୍ରାହ୍ୟ । ତେଣୁ ଏଇ ଧର୍ମର ବୈଶିଷ୍ଟ୍ୟ ସମ୍ପର୍କରେ ସମାଲୋଚକମାନେ ମତବ୍ୟକ୍ତ କରି କହିଛନ୍ତି—

(୧) ଧର୍ମକୁ ଜନ ଆଧାରିତ ଓ ଗଣ ଆଧାରିତ କରିବା ନିମନ୍ତେ ଜଗନ୍ନାଥଧର୍ମର ଆତ୍ମ ପ୍ରକାଶ ।

(୨) ବେଦ ଓ ସ୍ମୃତିର ବିଗଡ଼ ଶୃଙ୍ଖଳରୁ ମୁକ୍ତ ଦେବାହିଁ ଜଗନ୍ନାଥ ଧର୍ମର ଐତିହାସିକ ଅବଦାନ । ତେଣୁ ମଧ୍ୟ ଏଇ ଅର୍ଥରେ ଜଗନ୍ନାଥଧର୍ମ ଗୋଟିଏ ଅଭୂତପୂର୍ବ ଧର୍ମ ବିପ୍ଳବ ।

(୩) ଜଗନ୍ନାଥ ଧର୍ମକୁ ବାଦ୍ ଦେଇ କୌଣସି ଧର୍ମ ବା ସଂସ୍କୃତି ଉତ୍କଳୀୟ ବା ଭାରତୀୟ ବା ଜାଗତିକ ଧର୍ମ ସଂସ୍କୃତି ହୋଇ ପାରେନା ।

(୩) ଭାରତ ଭୂଇଁରେ ଏପରି କୌଣସି ଉପାସନା ମାର୍ଗ ନାହିଁ, ଯେଉଁମାନେ ଜଗନ୍ନାଥଙ୍କୁ ନିଜର ନାଥ ବୋଲି ମାନନ୍ତି ନାହିଁ । ଏପରି କୌଣସି ଧର୍ମଗୁରୁ ନାହାନ୍ତି, ଯେ କି ଜଗନ୍ନାଥ କ୍ଷେତ୍ରରେ କୌଣସି ଏକକୋଣରେ ଧର୍ମପୀଠ ସ୍ଥାପନ କରିନାହାନ୍ତି । ତେଣୁ ଏପରି ଧର୍ମ କେବଳ ପୁଣ୍ୟଭୂମି ଉତ୍କଳର ଧର୍ମ ନୁହେଁ, ସାରା ଜଗତର ଧର୍ମ, ସମଗ୍ର ମାନବ ସମାଜର ଧର୍ମ ।

(୪) ଦାରୁ ପୂଜା ଜଗନ୍ନାଥ ସଂସ୍କୃତିର ଏକ ବୈଶିଷ୍ଟ୍ୟ । ଜଗତରେ ଏପରି କୌଣସି ସଂସ୍କୃତି ନାହିଁ, ଯେଉଁ ସଂସ୍କୃତିରେ ଦେଖାଯାଏ ଜଗନ୍ନାଥ ପରି ରହସ୍ୟାବୃତ୍ତ ଅଲୌକିକ ଦୃଶ୍ୟାବଳୀ ।

(୫) ଏହି ଠାକୁରଙ୍କର ମୂର୍ତ୍ତି ଗଠନ କଳ୍ପନା ଅତି ବିଚିତ୍ର । ମନୁଷ୍ୟ ପରି ତାଙ୍କର ମସ୍ତିଷ୍କ, କପାଳ, ମୁଖ ଚକ୍ଷୁ, ନାସିକା, ବକ୍ଷ, ବାହୁ ଓ ଉଦର କିନ୍ତୁ ହସ୍ତ ନାହିଁ, ପାଦ ନାହିଁ, କର୍ଣ୍ଣ ନାହିଁ, ମାଦଳ ପରି । ତାଙ୍କର ପୁଣି ଭୋଜନ, ଶୟନ, ଗାତ୍ରମାର୍ଜନ, ମନୋରଞ୍ଜନ ଓ ଆମୋଦ ପ୍ରମୋଦର ବ୍ୟବସ୍ଥା ରହିଛି । ସେ ପୁଣି ପୁରୁଷୋତ୍ତମ ସେ ନୀଳାଚଳବାସୀ ନୀଳାଦ୍ରିବିହାରୀ ଜଗନ୍ନାଥ, ପୁଣି ପତିତପାବନ ।

(୬) ନିଖିଳ ଜନବନ୍ଦ୍ୟ ଏହି ତ୍ରିମୂର୍ତ୍ତି (ଜଗନ୍ନାଥ ବଳଭଦ୍ର ସୁଭଦ୍ରା) ପରସ୍ପର ଭାଇ ଭଉଣୀ ସ୍ନେହରେ ଆବଦ୍ଧ । ଅନ୍ୟାନ୍ୟ ଦେବଦେବୀ (ଅବତାର) ଗଣ ପତିପତ୍ନୀ (ରାଧାକୃଷ୍ଣ, ହରପାର୍ବତୀ, ରାମସୀତା) ରୂପେ ପ୍ରତିଷ୍ଠିତ ହୋଇଥିଲା ବେଳେ, ଶ୍ରୀଜଗନ୍ନାଥ

ଭ୍ରାତୃତ୍ୱର ପ୍ରତୀକ ରୂପେ ଯେଉଁ ମହାନ ଆଦର୍ଶର ପ୍ରଚାର କରୁଛନ୍ତି, ତାହା ବାସ୍ତବରେ ବିରଳ । ସମଗ୍ର ଜଗତରେ ଏଭଳି ଭ୍ରାତୃତ୍ୱ ଓ ସୌହାର୍ଦ୍ଦ୍ୟ ପ୍ରତିଷ୍ଠା ପାଇଁ ସତେ ଅବା ଏ ଜିମୂର୍ତ୍ତିର ଆକୁଳ ଆହ୍ୱାନ ।

(୭) ପୁଣି ଶ୍ରୀ ଜଗନ୍ନାଥ ଜଗତର ନାଥ ବା ସ୍ୱାମୀ ହେଲେ ମଧ୍ୟ ସେ ସାଧାରଣ ମନୁଷ୍ୟଙ୍କ ନିତିଦିନିଆ ହସ କାନ୍ଦ ଭରା ଜୀବନ ଠାରୁ ନିଜକୁ ଦୂରେଇ ଦେଇନାହାନ୍ତି । ସେ ନିଜକୁ ସ୍ୱର୍ଗୀୟ ବିଭୂତିରେ ବିଭୂଷିତ ନ କରି ପାର୍ଥିବ ଦେବତାର ଧୂଳି ଧୂସରିତ ଜୀବନ ଭିତରେ ନିଜକୁ ଏକାକାର କରି ଦେଇଛନ୍ତି । ତେଣୁ ମଣିଷ ଶରୀରର ଉପଚାର ଓ ଦେବତାର ଉପଚାର ମଧ୍ୟରେ କୌଣସି ପାର୍ଥକ୍ୟ ଥିବାର ଏଠାରେ ପରିଲକ୍ଷିତ ହୁଏ ନାହିଁ । ଦେବତାଙ୍କର ସ୍ନାନ, ପାନ, ଭୋଜନ, ଧୂପ, ଦୀପ, ଚନ୍ଦନ, ଫୁଲପୁଷ୍ପ ନୈବେଦ୍ୟ, ଶୟନ ସ୍ୱପନ ଜାଗରଣ ଏବଂ ଆହାର ବିହାର ପରିକ୍ରମା, ସବୁ ଯେପରି ମଣିଷର ଖାଦ୍ୟପେୟ, ପ୍ରସାଧନ ଆମୋଦ ପ୍ରମୋଦ ଓ ଚାଲିଚଳନରୁ ଭିନ୍ନ ନୁହେଁ । ତାଙ୍କର ଦନ୍ତମାର୍ଜନ, ସ୍ନାନ ପ୍ରଭୃତି ନିତ୍ୟକର୍ମ କରାଯାଏ । ତାଙ୍କୁ ଫୁଲ ଚନ୍ଦନ ଲାଗି କରାଯାଏ, ଅନ୍ନ ବ୍ୟଞ୍ଜନ ଓ ପିଠାପଣା ପ୍ରଭୃତି ଅର୍ପଣ କରାଯାଏ । ମୁଖ ଧୁଆଇ ଦିଆଯାଏ, ଲୁଗା ପିନ୍ଧାଇ ଦିଆଯାଏ, ଅଳଙ୍କାର ଲାଗି ହୁଏ । ଶୟନ ଶଯ୍ୟା ପ୍ରସ୍ତୁତ କରାଯାଏ । ପ୍ରାତଃ କାଳରେ ପ୍ରାତ ସ୍ମରଣ ସ୍ତବ ଦ୍ୱାରା ନିଦ୍ରାଭଙ୍ଗ କରାଯାଏ । ଜଗନ୍ନାଥ ମଧ୍ୟ ଜ୍ୱର ରୋଗରେ ଶୀକାର ହୁଅନ୍ତି । ଅତ୍ୟଧିକ ସ୍ନାନ ଫଳରେ ତାଙ୍କୁ ସର୍ଦ୍ଦି ଜ୍ୱର ହୁଏ । ଜ୍ୱର ପାଇଁ ସାଧାରଣ ଲୋକ ଔଷଧ ସେବନ କଲା ପରି ଜଗନ୍ନାଥଙ୍କ ପ୍ରତି ମଧ୍ୟ ଆୟୁର୍ବେଦୀୟ ପରଂପରାରେ ବରିଷ୍ଠ କବିରାଜଙ୍କଦ୍ୱାରା ଦଶମୂଳ ପାଚନ ବ୍ୟବସ୍ଥା କରାଯାଏ । ଏଥିରୁ ସ୍ପଷ୍ଟ ଅନୁମିତ ଯେ ଦେବତା ଓ ମନୁଷ୍ୟର ଚାଲିଚଲନ ଆଚାର ବ୍ୟବହାର ସତେ ଯେପରି ପରସ୍ପରଠାରୁ କୌଣସି ଗୁଣରେ ପୃଥକ ନୁହେଁ । ଆମ୍ଭେମାନେ ଯେପରି ସ୍ଥାଣୁ ଭାବରେ ଗୋଟିଏ ସ୍ଥାନରେ ପଡ଼ି ନରହି ଶାରୀରିକ ତଥା ମାନସିକ ବ୍ୟବସ୍ଥାର ପରିବର୍ତ୍ତନ ପାଇଁ ଭ୍ରମଣରେ ବାହାରୁ, ସେହିପରି ରଥ, ଚନ୍ଦନ ଝୁଲଣରେ ଦେବତାଙ୍କୁ ସିଂହାସନରୁ ଓହ୍ଲାଇ କରି ପହଣ୍ଡିରେ ଭ୍ରମଣ ପାଇଁ ନିଆଯାଏ । ଠାକୁରଙ୍କର ନବଦିନ ଯାତ୍ରା, ଚନ୍ଦନ ପୋଖରୀରେ ଚାପ ଏବଂ ଦୋଳରେ ଝୁଲଣ ପ୍ରଭୃତି ପଛରେ ମଣିଷର କଳ୍ପନା ନିହିତ । ଏଥିରୁ ସ୍ପଷ୍ଟ ଅନୁମେୟ ଯେ ଶ୍ରୀଜଗନ୍ନାଥ ନିଜକୁ "ଜନତା ଜନାର୍ଦ୍ଦନ"ର ଆଖ୍ୟା ଦେଇ ବାସ୍ତବରେ ତା'ର (ଜନତାର) ଜୀବନଯାତ୍ରା ମଧ୍ୟରେ ନିଜକୁ ମିଶାଇ ଦେଇ ମାନବଧର୍ମ ପ୍ରଚାର ପାଇଁ ଯେପରି ସତତ ବ୍ୟସ୍ତ ବ୍ୟାକୁଳ ହୋଇ ଉଠିଛନ୍ତି ।

(୮) ଜଗନ୍ନାଥ ମଧ୍ୟ ମଣିଷ ପରି କଳେବର ତ୍ୟାଗ କରି ନବକଳେବର ଧାରଣ କରନ୍ତି । ପୁନର୍ଜନ୍ମ ଲାଭ କରନ୍ତି । କୋଇଲି ବୈକୁଣ୍ଠରେ ଦେବ ବିଗ୍ରହଙ୍କୁ ସତ୍କାର

କରାଯାଏ । ପୁଣି ଦଇତାମାନେ (ସେବକ) ଅମିଷ ପାଳନ କରି ତାଙ୍କ ପାଇଁ ଶୁଦ୍ଧ ଶ୍ରାଦ୍ଧ କରନ୍ତି ।

(୯) ତାଙ୍କ ଧର୍ମ ହେଲା ସାଖ୍ୟ ଭକ୍ତିର ଜ୍ୱଳନ୍ତ ନିଦର୍ଶନ । ତେଣୁ ପହଣ୍ଡି ବିଜେ ବେଳେ ତାଙ୍କୁ ଯେପରି ଟଣାଓଟରା ଛେଚୁକୁଟା ଓ ଗାଲି ଗୁଲଜ କରି ତାଙ୍କୁ ଅଣାଯାଏ, ତାହା ଆଉ କେଉଁ ଠାକୁରଙ୍କ ନିକଟରେ ସମ୍ଭବ ନୁହେଁ ।

(୧୦) ହିନ୍ଦୁର ଶ୍ରେଷ୍ଠବଡ଼ ମୁଖ୍ୟ ସର୍ବପ୍ରଧାନ ଅବତାରଙ୍କ ସୃଷ୍ଟି ହୋଇଛି ସନ୍ଥ ପାଳନ ଓ ଦୁଷ୍ଟ ଦଳନ ପାଇଁ । ମାତ୍ର ଜଗନ୍ନାଥଙ୍କ ନିକଟରେ ସେ ବୈରଭାବ ନାହିଁ । ସେ କାହାକୁ ମାରିବାକୁ ଅବତାର ନେଇନାହାନ୍ତି । ତାଙ୍କ ଧର୍ମରେ ସେ ମୈତ୍ରୀର ପତିତପାବନ ଧ୍ୱଜା ଉଡ଼ାଇ ଆତ୍ମିଜାଣ ଡିଣ୍ଡିମ ବଜାଉଛନ୍ତି ।

(୧୧) ସର୍ବଂ ରହସ୍ୟଂ ପୁରୁଷୋତ୍ତମସ୍ୟ
ଦେବୋ ନଜାନାତି କୁତୋ ମନୁଷ୍ୟ"

(୧୨) ସେ ଲୀଳାବତାର ବୋଲି ପ୍ରସିଦ୍ଧ ଅଥଚ କୌଣସି ଲୀଳା କରିନାହାନ୍ତି । ସବୁ ଅବତାରକୁ ଆଜ୍ଞାମାଳ ଦେଇ ଲୀଳା କରାନ୍ତି ଏଣେ ନିଜେ ଅବତାରୀ ହୋଇ ବସିଥାନ୍ତି । ସେ ଅଥଚ କଂସକୁ ନମାରି କୃଷ୍ଣ, ରାବଣକୁ ନ ମାରି ରାମ, ହିରଣ୍ୟକଶ୍ୟପକୁ ନ ବିଦାରି ନୃସିଂହ, ଏଣେ ପୁଣି ହରେରାମକୃଷ୍ଣ ମହାମନ୍ତ୍ରର ପ୍ରତୀକ, ତେଣେ ନାମବିହୀନ ।

ବାବା ବୈକୁଣ୍ଠନାଥ ବ୍ରହ୍ମଚାରୀ ଜଗନ୍ନାଥ ଧର୍ମ ଓ ସଂସ୍କୃତି ସମ୍ପର୍କରେ କହିବାକୁ ଯାଇ କହିଛନ୍ତି—"ମନୁଷ୍ୟର ଏକମାତ୍ର ଅଧିକାର ହେଉଛି ଦେବା । ମାଗିବା ନୁହେଁ । ଦେବାକୁ ଯଦି ତୁମର କିଛି ନାହିଁ, ତେବେ ତୁମର ଶରୀରକୁ ମଧ୍ୟ ଦେଇଦିଅ । ବ୍ୟକ୍ତିଗତ ଅଧିକାର ବୋଧରେ ତୁମେ ଯାହା ସାଇତି ରଖିଛ, ତାହା ତୁମର ନୁହେଁ । କେହି ସେ ଧନ ସାଙ୍ଗରେ ନେଇଯିବ ନାହିଁ । ସମ୍ପତ୍ତି ସଂଗ୍ରହରେ କାହାରି ମହତ୍ତ୍ୱ ବୃଦ୍ଧି ପାଏ ନାହିଁ । ଦାନରେ ହିଁ ମହତ୍ତ୍ୱ ନିହିତ । ଅଧିକାର ମନୋବୃତ୍ତି ନ ରଖି ସବୁ ଦେଇ ଦେବାକୁ ପ୍ରସ୍ତୁତ ରହି ପ୍ରତ୍ୟେକ ବ୍ୟକ୍ତି କାମ କରନ୍ତୁ । ପାଇବା ପାଇଁ ଜଗତ ଆନନ୍ଦ ବୋଧରି ଯେଉଁ ଫଳ ଆରୋପ କରୁଛି, ତାହାହିଁ ମାୟା, ତାହା ସବୁଠାରୁ ବଡ଼ ଭ୍ରାନ୍ତି । ଦାନରେ ହିଁ ସମସ୍ତ ଆନନ୍ଦ ପୂରି ରହିଛି, ମାଗିବାରେ ନୁହେଁ । ଏହି ସତ୍ୟ ସମସ୍ତେ ଉପଲବ୍ଧି କରନ୍ତୁ, ଏହା ଜଗନ୍ନାଥ ସଂସ୍କୃତିର ମାନବ ଜାତି ପ୍ରତି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ନିର୍ଦ୍ଦେଶ ।"

ପରିଶେଷରେ ଏତିକି କୁହାଯାଇପାରେ ଯେ ସାମ୍ୟ ସମତା ଓ ସମାଜବାଦର ଠାକୁର ଜଗନ୍ନାଥ ଯୁଗେ ଯୁଗେ ସମଗ୍ର ବିଶ୍ୱର ମଣିଷକୁ ଚେତାବନୀ ମାଧ୍ୟମରେ—"ଦେଇଥିଲେ ପାଇ, ନ ଦେଇ ଥିଲେ ନାହିଁ—କହି ଷୋଳକଳାର ସମ୍ପୂର୍ଣ୍ଣକଥାରେ ତଥା ଏକକ ଭାବେ ନିଜକୁ ଆଜି ବିଶ୍ୱରେ ପ୍ରତିଷ୍ଠା କରିପାରିଛନ୍ତି ସେଇ ଜଗନ୍ନାଥ । ତେଣୁ ଆଜିର ପରିସ୍ଥିତିରେ ସକରୁଣ ଆକୁଳ ଆହ୍ୱାନ ଯେ ଜଗନ୍ନାଥଙ୍କ ସେହି ଚକା ଆଖି ଏ ତାପିତ ପ୍ରାଣରେ ଆନନ୍ଦର ବାରିବର୍ଷଣ କରି ଚାଲିଥାଉ—ଏ ମାନବ ସମାଜର ସ୍ଥିତି ପର୍ଯ୍ୟନ୍ତ । ଜଗନ୍ନାଥ ହିଁ ଏ ଜାତିର PASS PORT—ଏ କଥା କେହି ଯେପରି ଆଜି ଭୁଲି ନଯାଏ ।

ଯେଉଁ ପ୍ରାଚୀନ ଓ ଆଧୁନିକ କବି ମାନଙ୍କର କବିତା ସଂଗ୍ରହରେ ଏହି ସଂକଳନ ଆଜି ସମୃଦ୍ଧ ଓ ମର୍ଯ୍ୟାଦାବନ୍ତ ହୋଇପାରିଛି, ସେମାନଙ୍କ ପାଖରେ ମୁଁ ଚିରଋଣୀ । ପ୍ରକାଶକ ବନ୍ଧୁ ଶ୍ରୀ ସହଦେବ ପ୍ରଧାନଙ୍କର ସାହସିକ ପଦକ୍ଷେପ ଯୋଗୁଁ ଆଜିର ଏ ପବିତ୍ର ରଥଯାତ୍ରା ଉତ୍ସବରେ ଏ ପୁସ୍ତକ ଲୋକଲୋଚନକୁ ଆସି ପାରିଥିବାରୁ ତାଙ୍କୁ ଅଶେଷ ସାଧୁ ବାଦ ଜ୍ଞାପନ କରୁଛି । ଶେଷରେ ଶଙ୍କରାଚାର୍ଯ୍ୟଙ୍କ ଭାଷାରେ ଏତିକି କହି ଆଜିର କର୍ତ୍ତବ୍ୟ ଶେଷ କରୁଛି ।

"ଜଗନ୍ନାଥ ସ୍ୱାମୀ ନୟନ ପଥ ଗାମୀ ଭବତୁ ମେ"

ଶ୍ରୀଗୁଣ୍ଡିଚା, ୨୭ ଜୁନ ୧୯୭୯

# ସେମାନଙ୍କ ଲେଖନୀରୁ...

## ପଞ୍ଚଦଶ ଶତାବ୍ଦୀ


*** ସାରଳା ଦାସ**

ଜୟ ନୀଳାଚଳ ନାଥ ୧

*** ମାଧବୀ ଦାସୀ**

ଚକାନୟନ ହେ ୩


## ଷୋଡ଼ଶ ଶତାବ୍ଦୀ


*** ବଳରାମ ଦାସ**

ମହାପ୍ରଭୁ ! ୪
ବ୍ରଜ ଲୀଳାକୁ କର ଗମନ ୫

*** ଜଗନ୍ନାଥ ଦାସ**

ନମସ୍ତେ ପ୍ରଭୁ ଜଗନ୍ନାଥ ୭
ଏକାକ୍ଷର ପ୍ରଶ୍ନ ୯
ଏକାକ୍ଷର ଉତ୍ତର ୧୦
ଶ୍ରୀ ପୁରୁଷୋତ୍ତମ ଯିବା ମନ ୧୨

*** ଅଚ୍ୟୁତାନନ୍ଦ ଦାସ**

ଦୀନବନ୍ଧୁ ! ୧୪
ଜୟ ଜଗନ୍ନାଥ ୧୫

* **ଶ୍ରୀ ଚନ୍ଦନ**

ଚନ୍ଦନ ଲାଗି ୧୭

* **ବାଇଧର ଦ୍ୱିଜ**

ମନ ଅସ୍ଥ କର ଦେଖ ଏଥ ୧୯

## ସପ୍ତଦଶ ଶତାବ୍ଦୀ

* **ଦେବଦୁର୍ଲ୍ଲଭ ଦାସ**

ଶ୍ରୀ ଜଗନ୍ନାଥ ୨୦

* **ଧନଞ୍ଜୟ ଭଞ୍ଜ**

ଜୟ ନୀଳାଚଳ ପତି ୨୩

* **ଦୀନକୃଷ୍ଣ ଦାସ**

କହ କହ ଆହେ ସଙ୍ଗାତ ୨୪
ମଦନମୋହନ ! ୩୧
କରିଥିବି ଏକା ଲମ୍ବେ ୩୩
ଧାନ ବଞ୍ଚଇ ସେ ଧ୍ୟାନରେ ୩୪
ମହାପ୍ରଭୁ ହେ, ମୁଁ ସେବକ ୩୫
କୃପାସିନ୍ଧୁ ବଦନ ୩୭
ଆହେ ନୀଳାଚଳ ନାୟକ ୪୭
ଜୟ ଜୟ ଜଗନ୍ନାଥ ୪୯
ଜଗବନ୍ଧୁ ପର ଜଣେ ସାମନ୍ତ ୫୦
ପାହିଲାକ ଜଣି ୫୧
ଜୟ ଜଗବନ୍ଧୁ ୫୩
ଜୟ ଜନାର୍ଦ୍ଦନ ୫୪

## * ସାଲବେଗ


ଆହେ ନୀଳ ଶଇଳ ୫୬
ଆହେ ନୀଳଗିରି ୫୭
ବାଛି କେ ନାମ ଦେଲା ଦସ୍ୟାବନ୍ଧୁ ୫୯
ଜଗମୋହନ ରୂପ ଧରିଛ ୬୦
ଆହେ ନୀଳାଚଳ ବାସୀ ୬୧
କାଳିଆ ଧନ ୬୨
କେଣେ ଘେନ ଯାଉଛ ୬୩
ଚାଲ ସଖୀ ଆମ୍ଭେ ଦର୍ଶନ କରିବା ୬୪
ଏକା ତୋ ଭକତ ଜୀବନ ୬୫
ଜଗବନ୍ଧୁ ହେ ଗୋସାଇଁ ୬୬
ଦୀନବନ୍ଧୁ ହୋ ୬୭
ବଜେ କରିଅଛ ନୀଳଗିରି ୬୮
ଶ୍ରୀ ପୁରୁଷୋତ୍ତମ ଯିବା ମନ ୭୦
ହେ ଚକାଡୋଳା ! ୭୧
ମହାପ୍ରଭୁ ! ୭୨
ନୀଳଗିରି ପଥ ୭୩


## * ସାଉଆ ଭିକ


ଅକାମନ ଚାଲ ଯିବା ୭୪


## * ଭିକାରୀ


ଜଗବନ୍ଧୁ ହେ ୭୬
ନ ଗଲୁ ମନ ୭୭


## * ବୈଦ୍ୟନାଥ ଦ୍ୱିଜ


ଜୟ ଜୟ ଜଗନ୍ନାଥ ମହାବାହୁ ୮୧

* ଦୀନବନ୍ଧୁ ରାଜ ହରିଚନ୍ଦନ

ଶ୍ରୀଜଗନ୍ନାଥ କୃପା ନିଧାନ ହେ ! ୮୨

## ଅଷ୍ଟାଦଶ ଶତାବ୍ଦୀ

* ଉପେନ୍ଦ୍ର ଭଞ୍ଜ

ରମାରମଣ ହେ ! ୮୩
କଳା ଶ୍ରୀମୁଖ ହେ ! ୮୪
ଜୟ ଜୟ ଜଗନ୍ନାଥ ୮୫
ସିନ୍ଧୁ ତଟେ ଶ୍ରୀପୁରୁଷୋତ୍ତମ ୮୬
ପୁଣ୍ୟଧାମ ୮୭
ମାନ ଉଚ୍ଚାରଣ ୯୨

* ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା

ଜୟ ନୀଳାଦ୍ରି ବିହାରୀ ୯୪
ମହିମା ଶୁଣିମା ହେଉ ୯୫

* ଗୋବିନ୍ଦ ଭଞ୍ଜ

ମୋ ଦୁର୍ଦ୍ଦଶା କର ଚୂନା ୯୬

* ଭକ୍ତଚରଣ ଦାସ

କହଇ ମନ ଆରେ ମୋ ବୋଲ କର ୯୭

* ଅଭିମନ୍ୟୁ ସାମନ୍ତ ସିଂହାର

ଯେବେ ଯେବେ ମୋର ଜଣାଣ ୧୦୩
ଜୟ ଜୟ ଜଗନ୍ନାଥ ୧୦୪

ଦସ୍ତାମନ୍ତ୍ର କୃପାସିନ୍ଧୁ ପଦେ ୧୦୬
କୃପାସିନ୍ଧୁ ଦୀନବନ୍ଧୁ ୧୦୭

* ବନମାଳୀ ଦାସ

ଜଗନ୍ନାଥ ହେ... ୧୧୦
ମହାବାହୁ ! ୧୧୧
କଳା ଧଳା ସୋଦରେ ୧୧୨
ଏହୁ ଅଳ ଶ୍ରୀଚ୍ଛମୁରେ ୧୧୩
ଦୀନବନ୍ଧୁ ଦଇତାରି ୧୧୪
ଚକାଡୋଳା ଚକ୍‌ କଣ କାଳିଆ ହେ ୧୧୫
ଆହେ ପ୍ରଭୁ କଳା ଶ୍ରୀମୁଖ ୧୧୬
ଦୁଃଖ ନାଶନ ହେ ! ୧୧୭
ଆହେ ଜଗବନ୍ଧୁ ! ୧୧୮
ଜୟ ଜଗନ୍ନାଥ ହେ ୧୧୯

* ଜଗଦାନନ୍ଦ ଦାସ

ଅପରାଧ ଅବା ୧୨୦
ପତିତ ଜନଙ୍କୁ ୧୨୨
ତୁମ୍ଭ ପର ପ୍ରଭୁ ୧୨୪

* ଚଣ୍ଡୀ ଦାସ

ଜୟ ଜଗନ୍ନାଥ ଗୋସାଇଁ ୧୨୬
ଦେଖି କଳା ଧବଳ ରୂପ ୧୨୮
ଭଜମନ ଜଗନ୍ନାଥଙ୍କୁ ୧୩୦

* ବିଶ୍ୱନାଥ ଖୁଣ୍ଟିଆ

ଶ୍ରୀ ନୀଳଗିରି ଶିଖରେ ୧୩୨

* **ବିକ୍ରମ ନରେନ୍ଦ୍ର**

ଜୟ ଜୟ ଜଗନ୍ନାଥ ୧୩୪

* **ହୃଦାନନ୍ଦ ଦାସ**

ଶ୍ରୀଜଗନ୍ନାଥଙ୍କୁ ୧୩୫
ଲଗିଛି ଲୀଳା ନୀଳାଚଳରେ ୧୩୬
ଗୁହାଁରୀରେ ମନ ଚକାଡୋଳାଙ୍କୁ ୧୩୭
ଅନାଥ ନାଥଙ୍କୁ ୧୩୮

* **ବଲ୍ଲଭ ଦାସ**

ମନ ଭଜରେ ଚଣ୍ଡି ୧୪୦

* **ବୀରକିଶୋର ଦେବ**

ଦୁଃଖ ନାଶନ ହେ ! ୧୪୨
ମୁକ୍ତି ଦିଅ ଦୟାବନ୍ଧୁ ୧୪୩
ଫିଟାଅ ପତିତ ପାବନ ବାନାକୁ ୧୪୪
ଭୁଜ ତଳେ ମୋତେ ରଖ ୧୪୫
ପତିତପାବନ ବାନା ୧୪୬

* **ସାନନ୍ଦ ଦ୍ୱିଜ**

କରୁଣା କର ୧୪୮
କାହାକୁ ମୁଁ କରିବଇଁ ସାକ୍ଷୀ ୧୪୯

* **ଭରତ ଦାସ**

ଚକାଡୋଳା ଚକ୍‌କଣ କଳା ୧୫୧
କଳାକୃଷ୍ଣ କମଳ ଆଖି ୧୫୨

* କବି କଳ୍ପଲତା ଦେମା

ଜଗବଂଧୁ ନାଥଙ୍କୁ ୧୫୩

* ବଳଭଦ୍ର

ଦୀନବନ୍ଧୁ ! କୃପାସିନ୍ଧୁ ୧୫୪

* ରାମଚନ୍ଦ୍ର

ଯାନେ ଦୟା ନୋହିଲ ୧୫୫

* ରାମ

ନମସ୍ତେ କମଳା ଗଳା ମାଳା ୧୫୭

* ହରେକୃଷ୍ଣ ସିଂହ ଯୁବରାଜ

ଜଗବନ୍ଧୁ ରଥାଙ୍ଗପାଣି ୧୫୮

* ରାମକୃଷ୍ଣ ପଟ୍ଟନାୟକ କବିଚନ୍ଦ୍ର

ଦୟାକର ଦୀନବନ୍ଧୁ ୧୫୯

* ଆର୍ତ୍ତ ଦାସ

ଆହେ ନୀଳାଦ୍ରି ବିହାରୀ ୧୬୦
ଆହେ ଚକା ଆଖି ୧୬୧
ଆସ ସଙ୍ଗାତ ଗୁଣ୍ଡିଚା ଯାତ ୧୬୨
ସୁନ୍ଦର ଦେଉଳେ ହର ୧୬୪

* କାର୍ତ୍ତିକ

ତବ ନାମ ପତିତପାବନ ୧୬୭

* ଗୋପାଳ

ଭଜ କଳା ଧଳା ବେନି ଭାଇଙ୍କି ୧୬୭

* ଦାମୋଦର ଝୁଜ

ଦୀନବନ୍ଧୁ ଦୟାସିନ୍ଧୁ ୧୬୮

* ନୃସିଂହ ଗଜପତି

ଅଶେଷ ମଙ୍ଗଳ ୧୬୯

* ପଦ୍ମନାଭ ପଟ୍ଟନାୟକ

ଆହେ ମହାପ୍ରଭୁ ୧୭୦
ନ ଶୁଣ ଅଛ କାହିଁକି ୧୭୧

* ରାମକୃଷ୍ଣ

ଦୟାକର ଦୀନବନ୍ଧୁ ! ୧୭୨

* ରାଧାନାଥ

ଜୟ ଜୟ ହର ୧୭୩

* ରସାନନ୍ଦ

ନୀଳଚକ୍ରେ ଉଡ଼ୁଛି ବାନା ୧୭୪

* ସ୍ୱପ୍ନାନନ୍ଦ

ମଣିମା ଶୁଣିମା ହେଉ ୧୭୬

## ଊନବିଂଶ ଶତାବ୍ଦୀ

### * କବିସୂର୍ଯ୍ୟ ବଳଦେବ ରଥ


କେନ୍ଦ୍ର ସରକ ୧୭୭
ପ୍ରାଣ ବାନ୍ଧବ ହେ ୧୭୮
ବାଧିଲା ଜାଣି କ୍ଷମା ୧୯୦
କ୍ଷୀରମନ୍ଥ ସିନ୍ଧୁ ୧୯୪


### * ଯଦୁମଣି ମହାପାତ୍ର


ସଙ୍ଗାତ ଦେଖିଲେ ରହୁଛୁ ଲଖି ୧୯୭
ମାନସ ତକା ୧୯୮
ତକା ନୟନକୁ ତକାରେ ମାନସ ୧୯୯
ଓଜଣୀଳ ବ୍ରଜରାଜ ୨୦୧


### * ଗୋପାଳକୃଷ୍ଣ ପଟ୍ଟନାୟକ


ଜଗବନ୍ଧୁ ଦୟାଳୁ ୨୦୩
ଅନୁସରତ ୨୦୭


### * ଗୌରଚରଣ ଅଧିକାରୀ


ନୀଳ ଚକ୍ରେ ହେ, ଦେଖ ଉଡୁଛି ବାନା ୨୦୮
ଦୀନବନ୍ଧୁ ଦୁର୍ଗତ ନାଶନ ହେ ୨୦୯
କାଳିଆ କାହ୍ନୁ ୨୧୩
ପ୍ରାଣ ସଙ୍ଗାତରେ ୨୧୭
ନୀଳାଦ୍ରି ସିଂହ ୨୧୮
କଳାସିଂହ ! କାହିଁକ ଅଇଲୁରେ ୨୨୦
ବଡ଼ ଠାକୁରଙ୍କ ୨୨୪
ଆହେ ବିଶ୍ୱମ୍ଭର ୨୨୫

ଦୀନବନ୍ଧୁ ଦୁରିତ ନାଶନ ହେ ୧୧୭
ଲୀଳାମୟ ! ୧୧୮
ଦୁଃଖନାଶନ ୧୨୦

* ବାଙ୍କା ଦାସ

ଶ୍ରୀପଦ ମୋ ସମ୍ପତ୍ତିଓ ୧୩୧
ଦୀନବାନ୍ଧବ ହେ ୧୩୩

* ରଘୁନାଥ ଦ୍ୱିଜ

ଆହେ ପ୍ରଭୁ ଜଗନ୍ନାଥ ୧୩୪

* ଗୋପୀନାଥ

ଜୟ ଜଗବନ୍ଧୁ ୧୩୫

* ଚନ୍ଦନ ହଜୁରୀ (ଗୃଖିଝୁଣ୍ଟିଆ)

ଚକାନୟନକୁ ୧୩୭
ଆରେ ପାପ ଈକ୍ଷଣ ୧୩୯

* ଉଦୟସିଂହ ଦେବ ମହାରାଜା

ପ୍ରଭୁ ନୀଳାଦ୍ରି ବିହାରୀ ୧୪୪

* ଭାଗୀରଥୀ ଦେବ

ଜୟ ଜୟ ଜଗବନ୍ଧୁ ୧୪୭

* ଗୌର ଚନ୍ଦ୍ର ନରପତି

ପତନେ ଜଗବନ୍ଧୁ ୧୪୭

* ତ୍ରିଲୋଚନ ପଟ୍ଟଯୋଷୀ

ଦୀନବନ୍ଧୁ ୧୪୮

* ପଦନ ଦାସ

ହେ ଜଗନ୍ନାଥ ୧୪୯

* ମାନଗୋବିନ୍ଦ ହୋତା

ଜଗନ୍ନାଥ ହେ ୧୫୦

* ଚାଇମୂର୍ଖ

ପଙ୍କଜ ଡୋଳା ହେ ୧୫୧

* ପରମାନନ୍ଦ ଦ୍ୱିଜ

ହେ ନୀଳ ଅଚଳ ବିହାରୀ ୧୫୩

* ସୋମନାଥ ସିଂହ ମର୍ଦ୍ଦରାଜ

ଜୟ ଜୟ ଜଗବନ୍ଦନ ୧୫୫

* କାହ୍ନୁଚରଣ

ରମାପତି ହେ ୧୫୭

* କମଳଲୋଚନ

ଦୀନବନ୍ଧୁ ନାମ ୧୫୯

* ଝାଡକନ୍ଦ ଦାସ

ଦୀନବନ୍ଧୁ କୃପାସିନ୍ଧୁ ୧୬୧

*** ଦାମୋଦର ପଟ୍ଟନାୟକ**

ଧନ୍ୟ ପ୍ରଭୁ ୧୬୩
ଡାକଇ ପାପ ଭୁବନୁ ୧୬୪

*** ହାଡ଼ି ଦାସ**

ହେ ପ୍ରଭୁ କଳାଶ୍ରୀମୁଖ ୧୬୫
ରତ୍ନସିଂହାସନ ମଉଡ଼ ମଣିକ ୧୬୬
ଆହେ ପ୍ରଭୁ ମହାବାହୁ ୧୬୭

*** ଭଗବାନ**

ଚକାଆଖି ୧୬୯

*** ବାମନ ଦାସ**

କି ଶୋଭା କଳା ଶ୍ରୀମୁଖ ୧୭୦

*** ବହାରୀ**

ଆହେ ଚକାଡୋଳା ୧୭୧

*** ଶ୍ରୀମତୀ କୁଞ୍ଜଲତା**

ନଣି ଅବଶେଷେ ଦେବାଧି ରାଏ ୧୭୨

*** ସୋମନାଥ ସିଂହ ଜଗଦେବ**

ପ୍ରଭୁ ହେ ୧୮୦
ଦେଖ ଦେଖ ପଦ୍ମମୁଖ ୧୮୧
କଷ୍ଟେ ଦୟା ନୋହିଲ ୧୮୩

## ବଂଶ ଶତାବ୍ଦୀ

### * ବୈଷ୍ଣବ ପାଣି

ଗୁଡ଼ ମାଡ଼ୁଣିଆ ବୁଝି ହେ ୧୮୫
ଦଗାଦିଆ ରଙ୍ଗାଧର ୧୮୬
ମିଛେ ନୀଳାଚଳ ନାଥ ୧୮୭
ହାଣ୍ଡି ମୁହାଁ ଜଗବନ୍ଧୁ ୧୮୮
ବଡ଼ପ୍ରଭୁ ଦୋଳ ୧୮୯
ଘରବୁଡ଼ା ଜଗବନ୍ଧୁ ୧୯୧
ଚକ୍ରଧର ହେ ୧୯୨
ଚଢ଼ି ରେଲ ଗାଡ଼ିରେ ୧୯୩
ଖାଇ ବଢ଼ା ଜଗନ୍ନାଥ ୧୯୪
ହେଲା କରନା ହେ ୧୯୫
ଛୁଡ଼ା ହୋଇ ଜଗମୋହନ ୧୯୬
ଦେଖ ବହୁଲ ଗୋ ୧୯୭
କି ମଧୁର ଚିକ୍କଣ ମୂରତି ୧୯୯
ଚକ୍ରଧର ଚଉବାହା ୨୦୦
ଶରଧା ବାଲିକ ଗୃହାଁରେ ୨୦୨
ସେ କଳା ଲପନକୁ ଅନା ୨୦୪
ହେ ଉଦ୍ଧବ ଭୂପ ୨୦୫
ଡାକି ଡାକି କଣ୍ଠ ଗଲା ଶୁଖି ୨୦୬
ହେ କଳା କାଉଁଚ ମାଲିଆ ୨୦୭
କମଳାପତି କଷ୍ଟ ହର ୨୦୯

### * ବେଣୁଧର

ଜଗନ୍ନାଥ ୨୧୧
ଦୀନବାନ୍ଧବ ୨୧୨
ଆହେ ଚକା ଆଖି ୨୧୩

ରମା ରମଣ ହେ ୩୨୪
ଆହେ ପ୍ରଭୁ ପଙ୍କଜମୁଖ ୩୨୫
ମୂଢ଼ ମନରେ ୩୨୬
ଆହେ ମହାବାହୁ ୩୨୮
ମହାବାହୁ ! କେବେ ଦେବ ଦରଶନ ହେ ୩୨୯
ସୁହାଁ ସଖୀ ଗଜ ଉଦ୍ଧାରଣ ବେଶକୁ ୩୩୦
ଜୟ ଜଗଜ୍ଜନ ହିତକାରୀ ୩୩୧
ଅରକ୍ଷିତ ବନ୍ଧୁ ୩୩୩
କେତେ କହିବି ହେ ୩୩୫
ଥକ ଗଲିଣି ଡାକ ଡାକ ହେ ୩୩୬
ଆହେ ଦୀନବନ୍ଧୁ ୩୩୭

## * ଗୋପାଳଚନ୍ଦ୍ର ପ୍ରହରାଜ

ଅନାଥର ବନ୍ଧୁ ୩୩୮
ପାପ ନାଶନ ୩୩୯

## * ଭିକାରୀ ଚରଣ ପଟ୍ଟନାୟକ

ଜୟ ପତିତପାବନ ୩୪୦
ଜଗବନ୍ଧୁ ଜଗତ ମୋହନ ୩୪୧

## * ବଞ୍ଛଧଚରଣ ପଟ୍ଟନାୟକ

ଭଲା ଶ୍ରୀମୁଖଙ୍କୁ ମୁଁ ପୂଛଇଁ ୩୪୨
କୋଟି ଜନମର ୩୪୬
ଆହେ ନୀଳାଚଳ ବିହାରୀ ୩୪୯

## * ଲୋକନାଥ ପଟ୍ଟନାୟକ

ଜଗବନ୍ଧୁ ୩୫୧

ଜଗବନ୍ଧୁ ଅନ୍ଧାର କଣା ୩୫୨
ଜଗବନ୍ଧୁ ବଡ଼ ହଟିଆ ୩୫୩
ଜଗବନ୍ଧୁ ବଡ଼ ଜାଲିଆ ୩୫୪
ଭଜମନ-ସଜ୍ଜନ ରଞ୍ଜନକାରୀ ୩୫୬
ମଣିମା ଶୁଣିମା ବାରେ ୩୫୭

## * କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

ନାହିଁ କରି ଦେଲେ ୩୫୮
ଆଜରେ ନବ ସାଜରେ ୩୫୯
ଜଗାଢଅଁ ୩୬୦
ତୁମେ ବୋଲିଅ ପଶୁ ୩୬୧
ଲୋକେ କହୁଥାନ୍ତି ୩୬୨
ଜଗବନ୍ଧୁ ହେ ୩୬୩
ମନ୍ଦର ଶିଖର ୩୬୪
କଳାବଦନ ଛବି ଗୁହିଁ ୩୬୫
ଅନାଥେ ଅନାଥ ଥରେ ୩୬୬
ପତିତପାବନ ନାମ ୩୬୭
ନୀଳମାଧବ ୩୬୮
ଚକାନୟନକୁ ଗୁହିଁ ୩୬୯
ନବୀନ ନୀଳଘନ ୩୭୦
ଜଗବନ୍ଧୁ ଭଲ ନାଟୁଆ ୩୭୧
ଦୀନବନ୍ଧୁ ହେ ୩୭୨
କର କରୁଣ ପ୍ରଭୁ ୩୭୩
ଦୟାସାଗର ୩୭୪
ଚକାଡୋଳା ୩୭୫
ଜଗନ୍ନାଥ ୩୭୬
ବସୁରୁଛୁ ମୁହିଁ ମନେ ୩୭୭
ମୁଁ ଯେବେ ତୁମକୁ ବାପ ନ ବୋଲିବି ୩୭୮

## * ଉଦୟନାଥ ଷଡ଼ଙ୍ଗୀ

ବଡ଼ ଠାକୁର ୩୭୯
ଜଗତର ନାଥ ୩୮୦
ଯେତେବେଳେ ଯେଉଁ ଦଗେ ୩୮୨
ତୁମ ସମାନ ନାଥ ୩୮୩

## * ରାଧାମୋହନ ଗଡ଼ନାୟକ

ଦାରୁ ଦେବତା ୩୮୫
ଶ୍ରୀସ୍ବା ଚଣ୍ଡାଳୁଣୀ ୩୯୦

## * ଉତ୍କଳରତ୍ନ ଶ୍ୟାମସୁନ୍ଦର ଦାସ

ଅନାଥରେ ·· ୪୦୯
ହେ ନୀଳଶଇଳ ବିଳାସୀ ୪୧୦
ଏହି ସିନାରେ ୪୧୧
ଚଣ୍ଡାଳର ଠାକୁର ୪୧୨
ନୀଳଶଇଳ ହାତୀ ୪୧୩
କାଠଗଡ଼ କ ଖେଳ ୪୧୪
ମୋ ବନ୍ଧୁ ନୋହିଲେ ଯେବେ ଗୋ ୪୧୫

## * ବୈକୁଣ୍ଠ ନାଥ ବ୍ରହ୍ମଚାରୀ

କଳା ଘୋଡ଼ା ଚଢ଼ି ୪୧୬
ଜଗା କାଳିଆ ଜାଗ ୪୧୭
ଚକାଡୋଳା ବସିଛ କଆଁ ? ୪୧୮
ମୋର ଜଣାଣ ଘେନ ୪୧୯
ମହାବାହୁ ୪୨୦
ବସିଛ କାହାକୁ ଚାହିଁ ୪୨୧

କାହ୍ନିକ ବଡ଼ ଠାକୁର ୪୨୨
ମଣିମା ମଣିମା ଗୁହାରି ଶୁଣିମା ୪୨୩
କାହ୍ନ କହେ ଗରବ ୪୨୪
ମଣିମା ଦୁଃଖ ଶୁଣିବ କି ୪୨୫
ପଥର ହେଲ କାହ୍ନିକ ୪୨୬
ଜଗନ୍ନାଥ ନାଥ ମୋହର ୪୨୭
ପଥର ଦେଉଳ ଭିତର ଦେବତା ୪୨୮
କମଳାକାନ୍ତକୁ କହେ ଅଣ୍ଠ କାତରେ ୪୨୯
ପାଶୋର ଦେଲ କି ହରି ୪୩୧

* ଶ୍ରୀମତୀ ହରପ୍ରିୟା ଦେବୀ

ତୁମେ କେଡ଼େ ସୁନ୍ଦର ୪୩୨
ଅନାଥର ନାଥ ୪୩୩
ଶୁଣ ମୋର ଆରତି ୪୩୪

* ବାଞ୍ଛାନିଧି ଦାଶ

ଚକାନୟନକୁ ଭଜ ୪୩୫
ଭକ୍ତିଭରେ ତୋଳି ଦିଅ ଚକ୍ଷୁକୁ ୪୩୬
ବଡ଼ ଦେଉଳରୁ ପଦ୍ମଶ୍ରୀ ବିଜେ ୪୩୭
ଚକା ଆଖି ! ୪୪୦
ବଡ଼ ଦେଉଳ ସାମନ୍ତ ଚରଣେ ୪୪୧

* ଗୋବର୍ଦ୍ଧନ ମହାନ୍ତି

ଚକା ଆଖି ୪୪୪

* ଶ୍ରୀ ଗୋକୁଳାନନ୍ଦ ମହାନ୍ତି

ବିଜେ ଜଗବନ୍ଧୁ ୪୪୫
ଯୁହିଁରେ ପଡ଼ିଭଜନ ୪୪୬

* **ନରହରି ଉପାଧ୍ୟାୟ**

କଳାଶ୍ରୀମୁଖ ଜଣାଣ ୪୪୮

* **ସେଖ୍ ବାକ୍‌କର ମହମ୍ମଦ**

ତୁମେ ବଡ଼ କପଟି ୪୬୧
ନୀଳ ଶଇଳ ନିବାସୀ ୪୬୩
ବାରେ ଚକା ନୟନ ୪୬୫
ଅକାଢ଼ଆ ଜଗନ୍ନାଥ ୪୬୭
ପ୍ରଭୁ ଦୟାକୁ ହର ୪୮୧
ନନ୍ଦନନ୍ଦନ ହେ ଜଗାକାଲିଆ ୪୮୪
ବଡ଼ ଦାଅଁ କେ କହେ କାହିଁକ ୪୮୬
କିଏ ଦେଲା ଦୟାନିଧି ନାମଟି ୪୮୮
ପୂଜି ଦେଉଳ ମନ୍ଦର ଭିତର ୪୮୯

* **ଗୋଲୋକ ଚଂଦ୍ର ମହାନ୍ତି**

ଗଲି ନୀଳାଚଳ ଦରଶନେ ୪୯୩
ସବୁ ତୁମର ଲୀଳା ୪୯୪
ପତିତପାବନ ବାନାକୁ ବନ୍ଦ ୪୯୫

* **ବିଦ୍ୟାଧର ରାଉତରାୟ**

ଦେଖିଛ ସବୁ ହେ ୪୯୬
ଚକାଆଖି ବଡ଼ ଠାକୁର ୪୯୭
ତୁମ୍ଭେ ପ୍ରଭୁ ଜଗନ୍ନାଥ ୪୯୯

* **ଶ୍ରୀମତୀ ସୁନ୍ଦରମଣି ପଟ୍ଟନାୟକ**

କ୍ଷେତ୍ର ପୁରୁଷୋତ୍ତମ ୫୦୧

* ରଘୁନାଥ ଛୋଟରାୟ

ପତିତପାବନ ବାନା ଉଡ଼ାଇ ୫୦୪
କହିବ ପ୍ରଭୁ ହେ ୫୦୫
ପ୍ରଭୁ ପୂଜିବ ନିତି ହେ ୫୦୬
ନିରତେ ଯା' ନାମ ଜପିଲେ ୫୦୭
ଏହି ଅଳି ତୁମଠାରେ ୫୦୯

* ଶ୍ରୀମତୀ ବ୍ରହ୍ମୋତ୍ରୀ ମହାନ୍ତି

ମନ ବୋଧ ହେଉନାହିଁ ୫୧୧

* କ୍ଷୀରୋଦ ଚନ୍ଦ୍ର ପୋଥାଳ

ଜୟ ଜୟ ଜଗନ୍ନାଥ ୫୧୩
ଏଡ଼େ ଦଗାଦିଆ ୫୧୪
କୋଠ ଭୋଗଖିଆ ୫୧୫

* ନଗେନ୍ଦ୍ର ମହାପାତ୍ର

ବାଇ ମନରେ ୫୧୬
ଏତିକ ମୋ ନିବେଦନ ୫୧୭
ଚକାନୟନ ୫୧୮
ଅନାଥର ନାଥ ୫୧୯
ଜୀବର ଜୀବନ ୫୨୦

* ଅଧ୍ୟାପକ ଜୟକୃଷ୍ଣ ମିଶ୍ର

ଅଖିଳ ବ୍ରହ୍ମାଣ୍ଡ କର୍ତ୍ତା ୫୨୧
ଅନ୍ତର୍ଯ୍ୟାମୀ ଜଗନ୍ନାଥ ୫୨୨
ଜଗତ ଜୀବନ ହେ ୫୨୪

ଚକା ଚକା ଆଖି ୫୨୭
ଏ ଜୀବନ ବଡ଼ ଦାଣ୍ଡେ ୫୨୯

✳ ଡଃ ରମାନାଥ ମହାନ୍ତି

ନଉଚେ ମାଉବେ ବନ୍ଦେ ୫୩୦

✳ ଶ୍ରୀମତୀ ତୁଳସୀ ଦାସ

ଚକା ଆଖି ହେ ୫୩୧
ବଡଠାକୁର ହେ ୫୩୩
ଚକାନୟନ ୫୩୪
ଆଜ କାହାକୁ କହିବ ୫୩୫
ଭବ ବନୋଦଆ ୫୩୬

✳ ଗୌର ପଟ୍ଟନାୟକ

ଜହାର ତାହାକୁ ୫୩୭
ଷାଠିଏ ପଉଟି ଖାଇ ୫୩୮

✳ ଅଧ୍ୟାପିକା ମନୋରମା ରଥ ମହାପାତ୍ର

ଜଗନ୍ନାଥଙ୍କୁ ୫୩୯
ଦେଖେ ନେଇ ମେଲ ୫୪୧
ଦଅ ହେ ଜଗନ୍ନାଥ ୫୪୪
ହେ ଚକାଡୋଳା ୫୪୬

✳ ଶଙ୍କର୍ଷଣ ମଙ୍ଗରାଜ

ମୋ ଚକା ଆଖିଆ ୫୫୦
କେଉଁଠି ଦେଖିଛ ୫୫୧

* ବଂଶୀଧର ମିଶ୍ର

ଲୋଡ଼ା ନାହିଁ ୫୫୨
ତୁମେତ ଜଗତନାଥ ୫୫୩

* ଶ୍ରୀମତୀ କଳାବତୀ ଦେବୀ

ଜଗଜ୍ଜନ ବନ୍ଦନ ୫୫୫
ଜଗତ ଜୀବନ ସ୍ୱାମୀ ୫୫୬

* ପ୍ରେମାନନ୍ଦ କର

ଚକାନୟନ ଠକାଉଛ କାହିଁକ ? ୫୫୭
ବଡ଼ ଦିଅଁ ବୋଲି ପରା ପଡ଼ୁଛି ଦ୍ୱାର ୫୫୮
ନଲୋଡ଼େ କିଛୁ ୫୫୯

* ସୁଜାତା ମହାନ୍ତି

ଜଗତ ଶେଠ ୫୬୦
ଭୂମି ଓ ଝଡ଼ ୫୬୪

* ରାମକୃଷ୍ଣ ପାଢ଼ୀ

ହୃଦୟସ୍ଥ ତୀର୍ଥ ୫୬୯

* ନରସିଂହ ମହାପାତ୍ର

ଚକାଡୋଳା ତୁମେ ୫୭୪
ଏତେ ବଡ଼ ବଡ଼ ଆଖି ୫୭୫
ଏତେ ବାଟ ଗଲି ଗଲି ୫୭୭

* କଣ୍ଠଶେଖର ଚନ୍ତାମଣି ମହାନ୍ତି

ଶଙ୍ଖ କ୍ଷେତ୍ରବାସୀ ୫୭୭
ଜଗନ୍ନାଥ ଜଗବନ୍ଧୁ ହେ ୫୭୯
ଜପମନ ଜଗନ୍ନାଥ ୫୮୦
ଜଗନ୍ନାଥ ଜଗୁ ଜୀବନ ୫୮୧
ଜଗବନ୍ଧୁ ଜଗନ୍ନାଥ ୫୮୩

* ସଚ୍ଚିଦାନନ୍ଦ ରାଉତରାୟ

ରଥଯାତ୍ରା ୫୮୫
ପ୍ରଭାତ ଅବକାଶ ୫୮୭
ଶ୍ରୀ ଣ୍ଡିଗ୍ ୫୮୮

* ମହାପାତ୍ର ନୀଳମଣି ସାହୁ

ନଈମାଖି ପୁଅ ମାଦଳା ଦାଅଁ ୫୮୯

* ଦୁର୍ଗାଚରଣ କୁଅଁର

ଜଗନ୍ନାଥ ୫୯୫

* ଶ୍ରୀ କୃପାଜଳୀ

ସନ୍ଧ୍ୟା ବନ୍ଦନା ୫୯୭

* ଲକ୍ଷ୍ମୀଧର ମହାପାତ୍ର

ଗାଲି ନଦେଲେ ୫୯୯
ବଡ଼ ଦାଅଁ ହୋଇ ୬୦୦
ଜଗବନ୍ଧୁ ପର ବନ୍ଧୁ ୬୦୧
ଜଗାମୁହଁ ସିନା କାଳିଆ ୬୦୪
ସ୍ୱହାଁରେ ଚଗଲମନ ୬୦୫

* ପରମାନନ୍ଦ ଅଧିକାରୀ

ଆମ ବଡ଼ ଠାକୁର ୭୦୭

* ବ୍ରଜମୋହନ ମହାନ୍ତି

ନେଡ଼ା ଚୋ ଠିକଣା ୭୦୮
ଚଉଖଣ୍ଡେ ଜଗନ୍ନାଥଙ୍କୁ ୭୧୦

* କାଳିନ୍ଦୀ ଚରଣ ପାଣିଗ୍ରାହୀ

ପୁରୀ ମନ୍ଦିର ୭୧୨

* ସାରଦାପ୍ରସନ୍ନ ନାୟକ

ଚକା ନୟନ ଗୃହଁ । ମାଗେ ମାଗୁଣୀରେ ୭୧୭
ସଞ୍ଜ ସକାଳେ ୭୧୮
ନୀଳାଦ୍ରୀ ବିହାରୀ କରୁଛୁ ଗୁହାରୀ ୭୧୯

* କୁଳମଣି ମହାରଣା

କଳା କଳା କରନ୍ତିଲ ୭୨୦
ରଖ ହେ କଳା ଶ୍ରୀମୁଖ ୭୨୧
ଜଗବନ୍ଧୁ ହେ ! ଦୀନବନ୍ଧୁ ହେ !! ୭୨୩
ନୀଳାଚଳ କଳାଚନ୍ଦ୍ରମା ୭୨୪

* ମୁରଲୀଧର ପାଇଟାଳ

ନୀଳାଦ୍ରୀ ଗୋସାଇଁ ୭୨୭
ଆହେ ଜଗନ୍ନାଥ ୭୨୮
ନୀଳଗିରି ନାଥ ୭୨୯

* **ଶଚ୍ଛାମଣି ଜେନା**

ମୋ ଚକା ଆଖିଆରେ ୬୩୧

* **ଉପେନ୍ଦ୍ରନାଥ ବେହୁରା**

ଚକାଡୋଳା ବଡ଼ଦାଣ୍ଡେ ୬୩୫
ଜଗବନ୍ଧୁ କାହ୍ନିକି ୬୩୬

* **ସୁରେଶଚନ୍ଦ୍ର ମହାଚଣା**

କେତେ ଦଶା ଦେବୁ ଆଉ ୬୩୮
ପାଷାଣ ନ ହୁଅ ହରି ୬୩୯

* **ଅଧ୍ୟାପକ ଶ୍ୟାମସୁନ୍ଦର ମିଶ୍ର**

ପ୍ରଭୁ ତୁମେ ଏକ ବିରୋଧାଭାଷ ୬୪୦

* **ସାରଦାମଣି ମହାପାତ୍ର**

ଅନବସର ଜଣାଣ ୬୪୧
ମୁଁ ଜଣେ ବଡ଼ ଦୁଃଖୀ ୬୪୩

* **ଫତୁରାନନ୍ଦ**

ନାମଫଲକ ବଦଳା ୬୪୫

* **ଗୌରକୃଷ୍ଣ ଗୋସ୍ୱାମୀ**

ମାଗେ ଦୁଇହାତ ଯୋଡ଼ିକି ୬୪୬
ଦୀନଜନେ ନାଥ ଦୟାକର ୬୪୭
ଶୁଣିମା ହେଉ ମୋ ଜଣାଣ ୬୪୮

ଶୁଣ ଠାକୁର କଲା ଶ୍ରୀମୁଖ ୭୪୯
ଜଗନ୍ନାଥ ହେ ! ୭୫୦

* ଶ୍ରୀବତ୍ସ ନାୟକ

ଗରୁଡ଼ ପଛରୁ ଯୋଡ଼ିଛୁ ହାତ ୭୫୧
ଜଗନ୍ନାଥ ବୋଲଇ କର ୭୫୨

* ପ୍ରଫୁଲ୍ଲ କର

ତୁହି ସିନା ଏକା ଜାଣୁରେ କାଳିଆ ୭୫୪
ଇଏ ଗୋ ମିତ କଏ ? ୭୫୫
ଜଗନ୍ନାଥ ବୋଲ ୭୫୬

* ଶ୍ରୀମତୀ ପ୍ରଭସ ମିଶ୍ର

ଧନ୍ୟ ତୁମର ଲୀଳା ୭୫୮
କିଆଁ ଡାକିବ ୭୫୯
ଚକାଆଖି ଦେଖ ଲୋ ସଖୀ ୭୬୦
ବଡ଼ ଦେଉଳ କାହାଲୀ ୭୬୧
ଆସ ଦେଖିଯିବା ସଙ୍ଗାତ ୭୬୨

* ଅଧ୍ୟାପକ ରଘୁନାଥ ପଣ୍ଡା

ଜଗନ୍ନାଥ ଉବାଚ ୭୬୪

* ବଂଶୀଧର ଉପାଧ୍ୟାୟ

ମାଗେ ଶୁଭ ଦର୍ଶନ ୭୬୬
ପଥର କ ହୋଇଲ ୭୬୭

* ଧ୍ରୁବଚରଣ ପଣ୍ଡା

ଜଗବନ୍ଧୁ ହେ ୬୬୮

* ହରେକୃଷ୍ଣ ଜେନା

ଏଇ ମରତ ଭୂମେ ୬୭୦

* ଶ୍ରୀମତୀ ଶାନ୍ତି ମଞ୍ଜରୀ ପଟ୍ଟନାୟକ

ଟାଣିନିଅ ସଖୀ ରଥର ଦଉଡ଼ି ୬୭୧
ମହାବାହୁ ହେ ୬୭୨

* ଅଗଣି ଚରଣ ମହାପାତ୍ର

ଅନାଦ୍ୟ ଅବ୍ୟକ୍ତ ୬୭୪

* ହୃଷିକେଶ ପଟ୍ଟନାୟକ

ଅବନା ଭଜନ ୬୭୭
ତୁମେ ପତିତପାବନ ୬୭୮

* ଜେନା ଅମରେନ୍ଦ୍ର ପ୍ରତାପ ବାଘସିଂହ

ଜଗତର ପ୍ରଭୁ ହେ ଜଗନ୍ନାଥ ୬୭୯

* ଜ୍ଞାନନ୍ଦ କର

ତୋତେ ଡ଼ାକିବ କେତେ ? ୬୮୦

* ସଂଗ୍ରାମ କେଶରୀ ମହାପାତ୍ର

ଚକାଡୋଳା ଭଲ ଲୀଳା ୬୮୧

* ବଂଶୀଧର ମିଶ୍ର (କ)

ଯାହା ଇଚ୍ଛା କର ୭୮୨

* ଶ୍ରୀମତୀ ପ୍ରମିଳା ନାୟକ

ଭଜମନ ଚକାଆଖି ୭୮୩
ଭାବକୁ ନିକଟ ଅଭାବକୁ ଦୂର ୭୮୪

* ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର

କଳା ଶିରୀମୁଖ ଦେଖରେ ୭୮୬
ହେବ ସିନା ବାହାଦୁରୀ ୭୮୭

* ଶୁଭନାରାୟଣ ସ୍ୱାଇଁ

କହିବାକୁ ଲାଜ ୭୮୯

* ଡକ୍ଟର କୁଞ୍ଜବିହାରୀ ଦାଶ

ଗଢ଼ିଲ ଜୀବନ କମା ? ୭୯୦

* ଡକ୍ଟର କୃଷ୍ଣଚରଣ ବେହେରା

ଆଲୋକ ଦୀକ୍ଷା ୭୯୧
ସମର୍ପଣ ୭୯୨

* ମୁରଲି ମୋହନ ଜେନା

ଅନାଥର ନାଥ ୭୯୩
ହେ ନୀଳକନ୍ଦର ବାସୀ ୭୯୪
ଭଜରେ ଅବୁଝା ମନ ୭୯୫

ଖଦ-ବାଙ୍ଗଲାରେ ୬୧୬
ଖାଇ ବସ ବସ ୬୧୭
ଆରେ ବାଇ ମନ ୬୧୮
ନବଶାର ନଅାଁ ୬୧୯

*** ଡକ୍ଟର ଗୋପାଳ ଚନ୍ଦ୍ର ମିଶ୍ର**

କାଳିଆ ଠାକୁର ୭୦୧
ଜଗତର ନାଥ ଆହେ ଜଗନ୍ନାଥ ୭୦୨

**କବି ପରିଚୟ** ୭୦୩

**

# ଜୟ ନୀଳାଚଳନାଥ

## ସାରଳା ଦାସ

(ପଞ୍ଚଦଶ ଶତାବ୍ଦୀ)

ଜୟ ନୀଳାଚଳ ନାଥ ଅଗତି ତାରଣ
ଜୟ ରମାପତି ପ୍ରଭୁ ମାନ ଉଦ୍ଧାରଣ

ଅହେ କଳାକର ମୁଖ ପାଣ୍ଡବ ରକ୍ଷକ
ସେ ମୁଖ ଦର୍ଶନେ ପାପ ନ ରହଇ ପାଖ

ବଡ଼ ଦେଉଳେ ବସିଛ ହୋଇ ବକ୍ର ସେହ୍ନା
ପତିତପାବନ ବୋଲି ଉଡ଼ାଉଛ ବାନା ।

ମୁଁ ପତିତ ମୋ ଗୁହାରି ଶ୍ରବଣେ ଅକ୍ଷମ
ଅଜାମିଳ ଠାରୁ ମୁଁ କି ଅଟଇ ଅଧମ ?

ତାହାକୁ ତାରିଲ ପ୍ରଭୁ କଟାକ୍ଷ ମାତ୍ରରେ
ସେହିପରି ଦୃଷ୍ଟି ପଡ଼ୁ ମୋ ଉପରେ ଥରେ

ବାଟ ଖରଚକୁ ମୋର କିଛି ନାହିଁ ଧନ
ତୁମେ ହିଁ ସମ୍ବଳ ମୋର ରଙ୍କର ରତନ ।

ଅନ୍ତ୍ୟେଶ ବେଳକୁ ଭରସା କେହି ନାହିଁ
ତୁମ୍ଭେ ଉଦ୍ଧାରନ୍ତା ଅଟ ପ୍ରଭୁ ସର୍ବଗ୍ରାହୀ

୨

ଇଚ୍ଛାମୟ ହରି ତୁମ ମହିମା ଅସୀମ
ଡୁବଗଛ କରିପାର ଭୟଙ୍କର ଦ୍ରୁମ

ତୁମ୍ଭର କୃପାରେ ପଙ୍ଗୁ ଲଙ୍ଘି ପାରେ ଗିରି
ତୁମର ବଳେ କପିଏ ଗଲେ ସିନ୍ଧୁ ତରି ।

ତୁମ୍ଭ ମହିମା ବର୍ଣ୍ଣିବେ ଅଛି କା' ଶକତି
ସାରଳା ଦାସ ମାଗଇ ହେ ପ୍ରଭୁ ମୁକତି ।

**

**

## ଚକାନୟନ ହେ...

**ମାଧବୀ ଦାସୀ**

(ପଞ୍ଚଦଶ ଶତାବ୍ଦୀ)

(ରାଗ-ସାବେରୀ)

ଚକାନୟନ ହେ ! ଜଗୁ ଜୀବନ ଶ୍ରୀହରି
କାତରେ ଜଣାଣ କରୁଛୁ ତୁମ୍ଭରେ
ଶୁଣ ପ୍ରଭୁ ଶ୍ରୁତି ଉତ୍ତର ॥ ଘୋଷା ॥୦॥

କେତେ ସଙ୍କଟୁ କାହାକୁ ରଖି ନାହିଁ ଦୟାଳୁ ସାରଙ୍ଗଧାରୀ
ତା' ବର୍ଣ୍ଣି ବସିଲେ ପୋଥିକର ପାଠ କି ବର୍ଣ୍ଣିବ ଏ ପାମରୀ ॥୧॥

ଅହଲ୍ୟା ତାରଣ ଦ୍ରୌପଦୀ କଷଣ ହେଲେ ଦେଇଛ ନିବାରି
ମୃଗୁଣୀ ଆରତ ଜାଣି ଜଗନ୍ନାଥ ବିପଦୁଁ ଦେଲ ଉଧାରି ॥୨॥

ଶବରୀକ ଦବ୍ୟ ଗଣ୍ଠ ଯାଚ ଦେଲ ତା' ଉଚ୍ଛିଷ୍ଟ ଭକ୍ଷି କରି
ମୀରା କରମାଙ୍କ ଭାବେ ହୋଇ ରଙ୍କ ସ୍ଥାନ ଦେଲ ବ୍ରଜପୁରୀ ॥୩॥

ଜୀବନ୍ତୀ ପିଙ୍ଗଳା ଆଦି ବାରବାଳା ସଂସାରୁ ଗଲେ ନିସ୍ତରି
ଅପାର ମହିମା କେତନ ଉଡ଼ାଇ ରଖିଛ କୀରତି ଶିରୀ ॥୪॥

ମୁଁ ଛାର ନିର୍ମାଖୀ ତୁମ୍ଭର ସେବକୀ ପଣେକୁ ଅଯୋଗ୍ୟ ନାରୀ
କରୁଛୁ ଦଇନ ଯୋଡ଼ି କର ବେନି ଶୁଣ ମାଧବୀ ଗୁହାରି ॥୫॥

**

**

# ମହାପ୍ରଭୁ...!!!

**ବଳରାମ ଦାସ**

( ଷୋଡ଼ଶ ଶତାବ୍ଦୀ )

[ରାଗ—ସାବେରୀ, ଚନ୍ଦନପାଢ଼ୁଆ ଭଜନ-ବୃନ୍ଦେ]

ମହାପ୍ରଭୁ ! ଭକତ ଦୁଃଖରେ ଦୁଃଖୀ,
ରୁଧିର ନଦୀ ସାତତାଳ ମଧ୍ୟରୁ
ଭରଢ଼ଆ ପକ୍ଷୀ ରଖି ॥ ଘୋଷା ॥

ଭକତ ନିମନ୍ତେ ହସ୍ତିନା ପୁରକୁ
ପଡ଼ା ମାରିବାକୁ ଗଲ
ବେଢ଼ି କଉରବେ ଯେବେ ଝିଙ୍ଗାସିଲେ
ଭକତ ହୃଦେ ସହିଲ ॥ ୧ ॥

ଦଶ ସହସ୍ର ରଜାଙ୍କର ନିମନ୍ତେ
ଗଧ ମୁଖେ ଶଙ୍ଖ ଦେଲ
ଭୀମହସ୍ତେ ଜରାସନ୍ଧ ବଧ କରି
ବନ୍ଦୀଙ୍କୁ ମୁକୁଳାଇଲ ॥ ୨ ॥

ଶରରେ ସାଗର ବାନ୍ଧି ଧନଞ୍ଜୟ
ମୀନ ରୂପେ ବଳେ ହରି
ଗିରି ଘେନି ହନୁ ଝମ୍ପକ ହଠନ୍ତେ
ଶ୍ରୀମୁଖୁଁ ରୁଧିର ଝରି ॥ ୩ ॥

ଭୀଷ୍ମକ ଦୁଲଣୀ ରୁକ୍ମଣୀ ଡାକିଲ
ଶିଶୁପାଳ ଅଭିମାନେ
ଲକ୍ଷେ ରଜା ମୁହେଁ କାଳି ଲଗାଇଣ
ଘେନିଗଲ ଅନ୍ତର୍ଦ୍ଧାନେ ॥୪ ॥

୫

ଚକ୍ଷୁକୁ ଯେସନେ ପିଛଡ଼ା କସ୍ପଣି
ଭକ୍ତକୁ ତେହ୍ନେ ଗୋସାଇଁ
ବଲରାମ ଦାସ ଭାବରେ ଭଣିଲେ
ପ୍ରଭୁପଣେ ଲୁଚ୍ଛଯାଇ ॥ ୫ ॥

**

**

# ବ୍ରଜ ଲୀଳାକୁ କର ଗମନ

**ବଳରାମ ଦାସ**

(ଷୋଡ଼ଶ ଶତାବ୍ଦୀ)

ବ୍ରଜ ଲୀଳାକୁ କର ଗମନ ଆହେ ବ୍ରଜେନ୍ଦ୍ର ମୋହନ ॥୦॥

ବୈଶାଖ ଶୁକ୍ଳ ତୃତୀୟା ଦିବସେ
ବିଜେ ଚଉବର୍ଗ ଦାମୀ
ତେତିଶ କୋଟି ଦେବତା ସଙ୍ଗେ ଧରି
ବ୍ରହ୍ମା କରେ ବେଦ ଧ୍ୱନି ॥୧॥

ଶ୍ରୀ ନୀଳକନ୍ଦରେ ଉତ୍ତର ପାରୁଶେ
ନରେନ୍ଦ୍ର ସାଗର ଭରି
ଚନ୍ଦନ ଯାତ୍ରାକୁ ବିଜେ ମହାପ୍ରଭୁ
ମୋହନ ମୁରଲୀ ଧରି ॥୨॥

ପଞ୍ଚ ସଖା ସଙ୍ଗେ ବିଜେ ଲୀଳାରଙ୍ଗେ
ସୁର ଶ୍ରେଷ୍ଠ ସିଦ୍ଧ ମୁନି
ମଣିମୟ ରତ୍ନ ବିମାନେ ମୋହନ
ଲକ୍ଷ୍ମୀ ସରସ୍ୱତୀ ଘେନି ॥୩॥

ଗଜଦନ୍ତ ରତ୍ନ ପଲଙ୍କେ ବିଜୟେ
ରାମକୃଷ୍ଣ ଭାଇ ବେନି
ଚତୁର୍ଦ୍ଦଶ ଲୋକେ ଦର୍ଶନ ଉତ୍ସୁକେ
ଆନନ୍ଦ ହୁଏ ମେଦିନୀ ॥୪॥

ସାଧୂ ସନ୍ଥ ଜନେ ଦୋଷ ମୋ ନ ଘେନ
କହେ ବଲରାମ ଦାସ
ଶ୍ରୀ ପଦ୍ମ ପଦରେ ଶରଣ ପଶୁଛି
ଦର୍ଶନେ ଦୁଃଖ ବିନାଶ ॥୫॥

**

**

## "ନମସ୍ତେ ପ୍ରଭୁ ଜଗନ୍ନାଥ

### ଜଗନ୍ନାଥ ଦାସ

(ଷୋଡ଼ଶ ଶତାବ୍ଦୀ)

(ଭାଗବତ-ବୃନ୍ଦ)

ନମସ୍ତେ ପ୍ରଭୁ ଜଗନ୍ନାଥ
ଅନାଥ ଲୋକଙ୍କର ନାଥ ।

ନମସ୍ତେ ପ୍ରଭୁ ବାସୁଦେବ
ଭକତ ଜନଙ୍କ ବାନ୍ଧବ ।

ନମସ୍ତେ ପ୍ରଭୁ ହୃଷୀକେଶ
ଭକତ ଜନଙ୍କ ବିଶ୍ୱାସ ।

ନମସ୍ତେ ପ୍ରଭୁ ବିଶ୍ୱରୂପୀ
ସକଳ ହୃଦେ ଅଛୁ ବ୍ୟାପୀ ।

ତୁ ସୃଷ୍ଟି ସ୍ଥିତିଲୟ କରୁ
ଆବର ଗର୍ଭରେ ସଂହରୁ ।

ଅଶେଷ କୋଟି ବସୁନ୍ଧରା
ତୋହର ଗର୍ଭେ ଛନ୍ତି ପୂରି ।

ଚଉଦ ଭୁବନ ଯା' କଣା
ଏ ସବୁ ତୋହର ରଚନା ।

ତୁ ବ୍ରହ୍ମା, ରୁଦ୍ର, ବିଷ୍ଣୁ, ବୁଦ୍ଧ
ତୋ ବିନୁ ଅନ୍ୟ ଗତି ନାହିଁ ।

ସୃଷ୍ଟି ତୋହର ଖେଳ ଘର
ଅଶେଷ ମାୟା ତୋ ଆବର ।

ତୋହର ନିଶ୍ୱାସ ମରୁତ
ଦେବେ ହୋଇଲେ ତହୁଁ ଜାତ

ତୁହିଟି ଅଗ୍ନି ଦେବ ଇନ୍ଦ୍ର
ନୟନୁଁ ଜାତ ସୂର୍ଯ୍ୟ ଚନ୍ଦ୍ର ।

ଭୁଜରୁ ଅନନ୍ତ ମୂରତି;
କଣ୍ଠରୁ ଜାତ ସରସ୍ୱତୀ ।

ସଦା ଚଞ୍ଚଳ ନିଦ୍ରା ନାହିଁ
ଏ ରୂପେ ଶୂନ୍ୟେ ଅଛୁ ରହି ।

ଅଶେଷ ତୋହର ମହିମା
କେ ଜାଣି ପାରେ ଗୁଣ ସୀମା ।

ତୋ ନାମ କରୁଥିଲେ ଲୟ,
କୋଟିଏ ଜନ୍ମ ପାପ କ୍ଷୟ ।

ନାମ ଘୋଷିଲେ ସର୍ବ ସିଦ୍ଧି
ଖଣ୍ଡଇ ରୋଗ ଶୋକ ଆଧି ।

ଆରତ ଭଂଜନ ତୋ ବାନା
ଆତଙ୍କକାଳେ ବଜ୍ର ସେନା ।

ହୋଇଲୁ ଦଶ ଅବତାର
ନାଶିଲୁ ଅବନୀର ଭାର ।

ଦୁଷ୍ଟ ନିବାରି ସନ୍ଥ ପାଳୁ
ତୁ ନାଥ ପରମ ଦୟାଳୁ ।

ତୁ ଅଟୁ ଦରିଦ୍ରଙ୍କ ଧନ
ତୋ ପଦେ ରହୁ ମୋର ମନ ।

ସତୀ ଯୁବତୀଙ୍କର ମନେ
ନିଜର ସ୍ୱାମୀ ଥାନ୍ତି ଯେହ୍ନେ,

ସେହି ପ୍ରକାରେ ମୋର ମନ
ତୋ ପଦେ ରହୁ ଭଗବାନ ।

କହଇ ଜଗନ୍ନାଥ ଦାସ
କମଳ ଚରଣକୁ ଆଶ ।

**

**

## ଏକାକ୍ଷର ପ୍ରଶ୍ନ

### ଜଗନ୍ନାଥ ଦାସ

(ଷୋଡ଼ଶ ଶତାବ୍ଦୀ)

(ରାଗ—ଗୁର୍ଜ୍ଜରୀ)

ଏକାକ୍ଷର ବ୍ରହ୍ମ ଗୁଣ          ଜାଣଇ ଯେ ସୁ ବ୍ରାହ୍ମଣ
ନ ଜାଣିଲେ କେବେହେଁ ବ୍ରାହ୍ମଣ ନୋହଇଛି ।

ଅଣ୍ଡ ବସ୍ତୁ ଏକ କର          ପ୍ରଣବ ଶବ୍ଦରେ ଭର
ଦାରୁବ୍ରହ୍ମ ପଞ୍ଚାତ୍ମକ ନାମ ବହିଛି
ଚତୁର୍ଦ୍ଦଶ ଅଣ୍ଡେ ରହିଲା
ଅପରେ ପଞ୍ଚମ ବ୍ରହ୍ମ କେହୁ ହୋଇଲା । ।୧।

କାମବୀଜ କାହୁଁ ହୋଇ ପଞ୍ଚାତ୍ମକ ନାମ ବନ୍ଧ
ତତ୍ତ୍ୱଚକ୍ର କେମନ୍ତ ପ୍ରକାରେ ହୋଇଛି
ଆଉ ଦେହେ କେତେ ତହିଁ କେମନ୍ତେ ଅଛନ୍ତି ରହି
ଏ କଥାତ ମନକୁ ଗହନ ଲାଗୁଛି
କହ ଭେଦ କାମ ବୀଜର
ଲଭିବି ପରମଗତି ସୁଖ ସାଗର ॥୨॥

ରତିର ଆକୃତି କେତେ ପ୍ରୀତିର ଆକୃତି କେତେ
ଶ୍ରଦ୍ଧାର ଆକୃତି କେତେ ଦୂର ବିସ୍ତାର
କେ କାହାକୁ କେତେ ଛଡ଼ା କେ କାହାକୁ କରେ ଲୋଡ଼ା
କେମନ୍ତେ ପ୍ରକାରେ ଏ ହୋଇଛି ବିସ୍ତାର
କେଉଁ ଭଜି ଲଭେ କାହାକୁ
ଫେଡ଼ାଇ ମିଶାଇ ଦେଲେ ଆପୁ ମନକୁ ॥୩॥

ଯେଉଁ ପ୍ରଭୁ ଜଗନ୍ନାଥ ତହିଁ ସିନା ସବୁ ତତ୍ତ୍ୱ
ଶୁକଳ ଗଉର ରଙ୍ଗ କଳା ବୋଲନ୍ତି
ଏମନ୍ତେ ସ୍ଥିର ହୋଇଲା ଅପରେ ସ୍ଥିର କହିଲା
ଶ୍ରୀ ନୀଳକନ୍ଦରେ ବଜେ ଚତୁର୍ଦ୍ଧା ମୂର୍ତ୍ତି
କେଉଁ ମିଶି ପଞ୍ଚ ହୋଇଲା
ଏ ଭେଦ ଜାଣିବା ପ୍ରେମ କାହୁଁ ଅଇଲା ॥୪॥

ମନ୍ତ୍ରରେ ପଞ୍ଚାଙ୍ଗ ହେବ ମନ୍ତ୍ରେ ପଞ୍ଚତତ୍ତ୍ୱ ଥିବ
ତନ୍ତ୍ରରେ କହିବ ପଞ୍ଚତତ୍ତ୍ୱ ମିଶାଇ
ପଞ୍ଚ ତତ୍ତ୍ୱ ଯେ ଜାଣିବ ତାକୁ ବୋଲି ସୁ-ବୈଷ୍ଣବ
ମୋତେ ଜ୍ଞାନ ଆଜ୍ଞା ହେବ ସୁଜ୍ଞାନ ଯେହି
ଗୁରୁସେବା ଏଥିକି ସିନା
ଭଣେ ଜଗନ୍ନାଥ ଦାସ ପଦ୍ମଲୋଚନା ॥୫॥

## ଏକାକ୍ଷର ଉତ୍ତର

(ପୂର୍ବ—ରାଗ)

ଶ୍ରୀ ଜଗନ୍ନାଥଙ୍କ ରୂପ ଅଶେଷ କରୁଣା କୂପ
ସକଳ ମନ୍ତ୍ରଙ୍କ ଭୂପ ଷୋଡ଼ଶାକ୍ଷର

ସର୍ବଦା ବପୁରେ ଧରେ    କ୍ରମେଣ ଷଟଚକ୍ରରେ
ଯନ୍ତ୍ର ବପୁ ଧରି ମନ୍ତ୍ରେ କରେ ବିହାର
ଆଦ୍ୟ ଚକ୍ରେ ଊର୍ଦ୍ଧମଣ୍ଡଳେ
ବେଦପାଶେ କାମ ବୀଜ ବସେ ଯୁଗଳେ ॥୧॥

ଗୋପୀଜନ ସ୍ଥିରବର୍ଣ୍ଣ    ବସନ୍ତି ଏ କଣ୍ଠ ସ୍ଥାନ
ହୃଦଚକ୍ରେ ବସେ ବ, ଲ, ଅକ୍ଷର ବେନି
ଭ ଯୁ ଏ ବେନି ଅକ୍ଷର    ବସନ୍ତି ନାଭିଚକ୍ରର
ଲିଙ୍ଗ ଚକ୍ରେ ବସେ ବୈଶ୍ୱାନର ଘ୍ରାବନି
ଗୁଦଯନ୍ତ୍ରେ ଆଧାର ସ୍ଥାନେ
ରମା ବୀଜ ବେନି ବସେ ସର୍ବଦା ଧ୍ୟାନେ ॥୨॥

ପୁଣ ପରା ବୀଜ ଦୁଇ    ଉଭୟ ପାଶୁଣେ ରହି
ଚକା ବଇଠିରୁ ମୂଳ ବାହୁ ଆବୋରି
ଏମନ୍ତ ଏ କ୍ଷେତ୍ରବର    ପ୍ରେମଦ ଷୋଡ଼ଶାକ୍ଷର
ଶ୍ରୀ ଜଗନ୍ନାଥ ବପୁରେ ଅଛନ୍ତି ଧରି
ଯେସନ୍ତେ ସୂର୍ଯ୍ୟ ରଥ ଆକାଶେ
ମାନବ ଦୃଷ୍ଟିକି ଚକ୍ର ବର୍ଣ୍ଣ ନ ଦିଶେ ॥୩॥

ଓମଡ଼ି ଯେ ଏକାକ୍ଷର    ପ୍ରକଟ ନୀଳକନ୍ଦର
ପ୍ରଣବ ସହିତେ କ୍ଷେତ୍ରବର ହୋଇଛି
ଅର୍ଦ୍ଧ ମାତ୍ରା ଊର୍ଦ୍ଧ୍ୱେ ବନେ    ବିନ୍ଦୁ ଦାରୁବ୍ରହ୍ମ ସେ ଯେ
ପରଂବ୍ରହ୍ମ ବ୍ୟାପିଣ ଅଖିଳ ମୋହୁଛି
ଅକାର ଉକାର ମକାର
ଋକ ସାମ ଯଜୁ ଅଥର୍ବ ପ୍ରଣବାକ୍ଷର ॥୪॥

ମହାବିରାଟ ବିଶ୍ୱବଟ    ଏ ବିରାଟୁ ସେ ବିରାଟ
ବିରାଟୁ ଅଖିଳ କୋଟି ହୁଏ ପ୍ରକଟ
ସ୍ଥାବର ଜଙ୍ଗମ କୀଟ    ପତଙ୍ଗାଦି ଯେତେ ଘଟ
ତହିଁ ଜୀବ ବଳଦେବ ଶ୍ରେଷ୍ଠ କନିଷ୍ଠ
ଜଗନ୍ନାଥ ପରମ ରୂପୀ
ପ୍ରକୃତି ଅଂଶେ ସୁଭଦ୍ରା ଅଶେଷ ବ୍ୟାପୀ ॥୫॥

ଯନ୍ତରେ ଶ୍ରୀମୂର୍ତ୍ତିନେଇ      ତନ୍ତ୍ର ଶାସ୍ତ୍ର ଦ୍ୱାରେ ମନ୍ତ୍ର
ଯନ୍ତ୍ରରେ ଶ୍ରୀ ଗୁରୁଦେବ ମୁଖ୍ୟ ଶୁଣିବ
ନିଜ ଅନୁଭବ ଦ୍ୱାରେ      ମିଶାଇବ ବିଶ୍ୱାସରେ
ଶ୍ରୀ ସନ୍ଥ ଗୋଷ୍ଠୀରେ ଏହାପର ମଣିବ
ଉପାସନା ନିଷ୍ଠା ବିଧାନ
ନାନାଦି ବିଳାସୁଁ ଶୂନ୍ୟ କରିବ ମନ ॥୬॥

ଯୋଗ ଧର୍ମେ ସ୍ପୃହା ନ ପାଇ      ଜ୍ଞାନ ବଇରାଗ୍ୟେ ନାହିଁ
ତୀର୍ଥବାସୀଙ୍କର ଏହୁ ଗୁପତ ଧନ
ଯେବା କର୍ମକାଣ୍ଡେ ରତ      ତାକୁ ନୋହେ ପରାପତ
ଜପତପ ହୋମ ଯଜ୍ଞ ସକଳ ଭ୍ରମ
କେବଳ ତା' ବାସନା ଅଙ୍ଗେ
ରତି ପ୍ରୀତି ଶ୍ରଦ୍ଧା ଯୁକ୍ତ ପ୍ରେମ ପ୍ରସଙ୍ଗେ ॥୭॥

ଉପାସନା ନିଷ୍ଠା ହେବ      ମେରୁ ତୁଲ୍ୟେ ଫଳଦେବ
କଷ୍ଟ ପାଇଲେଣ ଲୋଭ ବଳିବ ନାହିଁ
କେବଳ ତ୍ରିଭଙ୍ଗି ଠାଣି      ପିତାମ୍ବର ବେଣୁ ପାଣି
ମୟୂର ଚନ୍ଦ୍ରିକା ଚୂଡ଼ା ଦେଖ ହୋ ଯାଇ
ନିତ୍ୟ ଭାନୁ ଜେମା ଯୁଗଳ
କହେ ଜଗନ୍ନାଥ ଦାସ ଧ୍ୟାନର ମୂଳ ॥୮॥

**

**

## ଶ୍ରୀ ପୁରୁଷୋତ୍ତମ ଯିବା ମନ

**ଜଗନ୍ନାଥ ଦାସ**

(ଷୋଡ଼ଶ ଶତାବ୍ଦୀ)

ଶ୍ରୀ ପୁରୁଷୋତ୍ତମ ଯିବା ମନ ସାଙ୍ଗ ହୋଇଥିବା ପାଞ୍ଚ ଜଣ
ତୁନି ହୋଇଥିବା କେହି ନ ଜାଣି ମେ ବସି ଭାଳୁଥିବା ମନେ ମନେ
ପ୍ରଭୁ ପାଞ୍ଚଜଣ      ॥୧॥

ଦାଣ୍ଡକୁ ଫିଟିଛୁ ସିଂହଦ୍ୱାର ବାଇଶି ପାଉଛ ଭକ୍ତକର
କଳ୍ପବଟ ମୂଳେ ଅନନ୍ତ ଶଯ୍ୟାରେ ମୁକ୍ତି ମଣ୍ଡପ ବମ୍ବାଧର
ପ୍ରଭୁ ଲକ୍ଷ୍ମୀ କର ।।୧।।

ସାଜିଣି ହୋଇଛୁ ଢନ ରଥ ପାଟ ପଡନ ମଣ୍ଡଣି ନେତ
ସୁବର୍ଣ୍ଣ କଳଶ ଉପରେ ଚପଳ ଫର ଫର ଉଡ଼େ ବାନା ନେତ
ପ୍ରଭୁ ଢନ ରଥ ।।୩।।

ଶରଧା ବାଲିକ ଶୋଭାବନ ତାଳଧ୍ୱଜରେ କି ବଳରାମ
ରଙ୍ଗ ସଭାତଳେ କଂସକୁ ମାଇଲେ ରାମ କୃଷ୍ଣ ଏହି ବେନି ଜନ
ପ୍ରଭୁ ବଳରାମ ।।୪।।

ଏହି ଜଗନ୍ନାଥ ଗୋପ ପୁରେ ବସ୍ତ୍ରା ରଖିଥିଲେ ନନ୍ଦ ଘରେ
କଂସର କଣ୍ଟକେ ଅଷ୍ଟମଲ୍ଲ ମାରି ଗିରି ଟେକ ଅଛୁ ବାମ କରେ
ପ୍ରଭୁ ଗୋପ ପୁରେ ।।୫।।

ଶ୍ରୀ କୃଷ୍ଣ ଚରଣେ ଆଶା କରି ବୃନ୍ଦେ ବୋଲୁ ଥାଇ ହରି ହରି
କହେ ଜଗନ୍ନାଥ ଚରଣେ ଶରଣ ଆଜ୍ଞା ହେଉ ପ୍ରଭୁ ନୀଳଗିରି
ପ୍ରଭୁ ଦେବହରି ।।୬।।

**

**

# ଦୀନବଂଧୁ

## ଅଚ୍ୟୁତାନନ୍ଦ ଦାସ

(ଷୋଡ଼ଶ ଶତାବ୍ଦୀ)

[ ରାଗ - କାମ୍ବୋଜୀ ]

ଦୀନବଂଧୁ ! ମୋ ଦୁଃଖ ନ ଗଲା ଯେ
ତୁମ୍ଭେ ଦୀନବଂଧୁ ମୋ ବଂଧୁ ନୋହିଲେ
ମୋ ବଂଧୁ ହୋଇବ କେ ।। ଘୋଷା ।।

ଦୀନବନ୍ଧୁ ବୋଲି ଯାହାକୁ କହନ୍ତି
ସେହିତ ପରମ ଯୋଗୀ
ଦୁଃଖୀ ଲୋକଙ୍କର ଦୁଃଖ ନିବାରଣ
ସୁଖୀ ଲୋକଙ୍କର ଭୋଗୀ ।। ୧ ।।

ଅତି ଆରତରେ ମୃଗୁଣୀ ଡାକିଲା
ଇନ୍ଦ୍ରକୁ ପେଶିଲ ହରି
ମୃଗୁଣୀ ଆରତ ଫେଡ଼ି ଜଗନ୍ନାଥ
ତାହାର ମାନ ଉଦ୍ଧରି ।। ୨ ।।

ତୁଳସୀର କଣ୍ଠ ତୁଳସୀ ମୁକୁଟ
ତୁଳସୀ ଭୂଷଣ ହୋଇ
ତୁଳସୀ ଚଉରା ପାଶେ ଅନାଇଲେ
ନୀଳଚକ୍ର ଦିଶୁଥାଇ ।। ୩ ।।

ଅବମାର ଘର ଫଟକ ପଡ଼ିଲା
ପଥରକୁ କଲ ଭେଳା
ଅକୂଳ ସମୁଦ୍ରେ ମୋ ଭେଳା ଭାସୁଛି
ପାରକର ଚକାଡୋଳା ।।୪।।

ସମୁଦ୍ରତଟରେ ପକ୍ଷୀ ଅଣ୍ଡା ଦେଲା
ଡିମ୍ବ ନେଲା ରତ୍ନାକର
ସପ୍ତ ଡିମ୍ବତାର ଜଳରେ ଭାସିଲା
ପାଶକର ଚକ୍ରଧର ॥୫॥

ଚଷ୍ଟିକୁ ଯେସନେ ପିଚୁଡ଼ା ଆବୋଣ
ଭକ୍ତକୁ ତେହ୍ନେ ଗୋସାଇଁ
ଦୀନ ଅଚ୍ୟୁତ ଯେ ଭାବରେ ଭଣିଲେ
ପ୍ରଭୁପଦ ଚନ୍ଦେ ଧ୍ୟାୟୀ ॥୬॥

**

**

## ଜୟ ଜଗନ୍ନାଥ

### ଅଚ୍ୟୁତାନନ୍ଦ

(ଷୋଡ଼ଶ ଶତାବ୍ଦୀ)

ଜୟ ଜଗନ୍ନାଥ ଜୟ ମଙ୍ଗଳ
ଶ୍ରୀ ମୁଖ ମଣ୍ଡଳ କାଳନ୍ଦୀ ଜଳ

ବାହୁ ରେଖା ପୂର୍ଣ୍ଣ କଳସ ଭାବ
ତ୍ରିମୁଖୀ ଚୂଳକୁ ଚୂତ ପଲ୍ଲବ

ଅଧର ଅଟଇ ଶ୍ୱେତ ଚନ୍ଦନ
ମୀନ ଚକୋର କ ଚକା ନୟନ

ଶ୍ରୀଫଳ ଅଟଇ କୁସୁମ ମାଳ
ଶ୍ରୀଭୁଜ ଉପରେ ରଖିଲେ ମୌଳୀ

ଏହ୍ନ ଅନୁକୂଳେ ସକଳ ଜୟ
ବଜ୍ର କବଚ ନାହିଁ କାଳ ଭୟ

ଅର୍ଦ୍ଧ ମହାଶକ୍ତି ଅନାଦ୍ୟ ବୀଜ
ଅଙ୍ଗ ରକ୍ଷକ ନାମ ବେନଭୂଜ

ଜୟ ଶଙ୍ଖଚକ୍ର ସାରଙ୍ଗ ଧର
ରାଜୀବ ଲୋଚନ କମଳା ବର

ମୁକୁଟ କୁଣ୍ଡଳ ଶ୍ରୀବତ୍ସ ଚିହ୍ନ
କୌସ୍ତୁଭ ଭଳା ପୀତ ବସନ

ରଙ୍ଗାଅଧର ଶ୍ୟାମ କଳେବର
ଶରଣ ଶରଣ ବେନ ପସ୍ତୁର

**

**

# ଚନ୍ଦନ ଲାଗି

## ଶ୍ରୀ ଚନ୍ଦନ

( ଷୋଡ଼ଶ ଶତାବ୍ଦୀ )

ରାଗ—କାମ୍ବୋଜୀ

[ ତାଳ—ସରିମାନ ]

ଚନ୍ଦନ ଲାଗି ସମସ୍ତେ ଚନ୍ଦ୍ର ଚନ୍ଦ୍ରାମଣିଙ୍କ ॥'ଘୋଷା ॥
ସୁବେଶର ଲାଗି ଶେଷ ଲାଗି ହୋଇ ଝୀନବାସ
କଟୀରେ ସୁବର୍ଣ୍ଣ ଝୁମ୍ପା
ଆହା କେଡ଼େ ଠାଣି ଙ୍କ ॥ ୧ ॥

ଡନବାଡ଼େ ଡନଲୋକ ସେବକ ପଶୁପାଳକ
ରତ୍ନ ସିଂହାସନେ ଉଭା
ଯୋଡ଼ି ବେନି ପାଣିଙ୍କ ॥ ୨ ॥

ଚନ୍ଦନ ସଂସ୍କାର ସାର ପ୍ରଭୁ ଅଂଗେ ଲାଗି କର
ହରି ଭଦ୍ରା ସୁଦର୍ଶନ
କମଳା ଧରଣୀଙ୍କି ॥ ୩ ॥

ହୁଡ଼ପ ନାୟକ ରଙ୍କ ବାଡ଼ୁଆ ପଣ୍ଡକୁ ବଙ୍କ
କରାଇ ମୁଣୋହି ଛନ୍ଦି
କମ୍ବୁଚକ୍ର ପାଣିଙ୍କ ॥ ୪ ॥

ଡାକଇ ଖୁଣ୍ଟିଆ ଦ୍ୱିଜ ମଣିମା ଶ୍ରେ ଦେ ରାଜ
ଅଖିଳ ବ୍ରହ୍ମାଣ୍ଡ ନାଥ
ପ୍ରଭୁମନ ଜାଣିଙ୍କି ॥ ୫ ॥

ନଜ ନଜ ଗୁଣାବଳୀ ବୀଣା ନାଦେ କୁତୁହଳୀ
ଧଳାଇ ଦୁରିତ ପାପ
ହରିଧ୍ୱନି ଶୁଣିଙ୍କ ॥ ୬ ॥

ସେ କାଳେ କଳାଶ୍ରୀ ମୁଖ　　　ଶୁଣନ୍ତୁ ସକଳ ଦୁଃଖ
ଦର୍ଶନେ ପ୍ରସନ୍ନ ହୋଇ
ରଖ ଦୁଃଖି ଶ୍ରେଣୀ କ　　୳ ୭ ॥

ଆର୍ତ୍ତେ ଶ୍ରୀ ଚନ୍ଦନ ଘଟେ　　　ଚନ୍ଦ୍ରାବଳୀ ମଧ୍ୟେ ଘଟେ
କରୁଣା ନାବେ ବସାଇ
କୂଳେ ରଖ ଅଣିକ　　॥ ୮ ॥

*

**

# ମନ ଅସ୍ତ୍ର କରି ଦେଖ ଏଥ

## ବାଇଧର ଦ୍ୱିଜ

( ଷୋଡ଼ଶ ଶତାବ୍ଦୀ )

[ ମୁନବର ବାଣୀ ]

ମନ, ଅସ୍ତ୍ର କରି ଦେଖ ଏଥ
ନୀଳ କନ୍ଦରେ ସୁନ୍ଦର ଜଗନ୍ନାଥ ||ଘୋଷା||

ଏହୁ ପ୍ରଭୁ ଜଗନ୍ନାଥ କଶ୍ୟପ ଋଷିଙ୍କ ସୁତ
ବାମନ ମୂରତି ହୋଇ ବଳି ଦ୍ୱାରେ ଉପସ୍ଥିତ
କରେ ଘେନି କୁଶ ପାନ୍ଥ ! ହରିଲେ ତାହାର ବିତ୍ତ
ପଦ୍ମପାଦ ଦେଇଥିଲେ ବଳିମାଥ || ୧ ||

ଏହୁ ପ୍ରଭୁ ଜଗନ୍ନାଥ ଦଶରଥଙ୍କର ସୁତ
ସୀତାସ୍ତ୍ରୀ ଘେନି ସଙ୍ଗତେ ବୁଲିଲେ ଗହନ ପଥ
ସାଗରେ ବାନ୍ଧିଲେ ପଥ ! ଲଙ୍କାକୁ କଲେ ନିପାତ
ସୀତା ଛଳେ ବଧିଲେଟି ଦଶମାଥ || ୨ ||

ଏହୁ ପ୍ରଭୁ ଜଗନ୍ନାଥ ନନ୍ଦର ହୋଇଲେ ସୁତ
କାଳୀ ଦଳି ପାଦଗତ ମର୍ଦ୍ଦିଲେଟି ସୁରନାଥ
କଂସ ଅସୁର ନିପାତ ! ଜଗତେ ଅଛୁ ବିଖ୍ୟାତ
ଭାରତ ଯୁଦ୍ଧେ ବାହି ପାର୍ଥ-ରଥ || ୩ ||

ଏ କଳି କାଳରେ ଦେଖ ଶଙ୍ଖ ଚକ୍ର ଧରି ହସ୍ତ
ବସିଛୁ କୈବଲ୍ୟ ହାଟ ପାପୀଏ ଦେଖି ମୁକତ
କି ଶୋଭା କଳା ଶ୍ରୀ ମୁଖ ! ଦେଖିଲେ ଖଣ୍ଡଇ ଦୁଃଖ
ପ୍ରଜାପତି ସଙ୍ଗେ ଶୋଭା ବିଶ୍ୱନାଥ || ୪ ||

ଏହୁ ପ୍ରଭୁ ଜଗନ୍ନାଥ ଶଚିର ହୋଇଲେ ସୁତ
ବୈଷ୍ଣବ ଧର୍ମ ବିଖ୍ୟାତ ଶିଖାଇଲେ ମହାମନ୍ତ୍ର
ବୁଲିଲେ ଏହୁ ଜଗତ ! ଭକତ ଘେନି ସଙ୍ଗତ
ଦ୍ୱିଜ ବାଇଧର ଆଶ୍ରା ଲକ୍ଷ୍ମୀକାନ୍ତ || ୫ ||

*

**

# ଶ୍ରୀ ଜଗନ୍ନାଥ

## ଦେବଦୁର୍ଲ୍ଲଭ ଦାସ

( ସପ୍ତଦଶ ଶତାବ୍ଦୀ )

[ ମଙ୍ଗଳ-ରାଗେଣ ଗୀୟତେ ]

ଶ୍ରୀ ଜୟ ଜଗନ୍ନାଥ

ନୀର କ୍ଷୀର ଦଧି ଘୃତ ସର
ଇକ୍ଷୁ ଲବଣାଦ ସପତ ସାଗର, ଜୟ ଜଗନ୍ନାଥ ॥ ୧ ॥

କ୍ରୌଞ୍ଚ ଶାକ ଶାଳ୍ମଳୀ ପୁଷ୍କର
ପ୍ଲକ୍ଷ କୁଶ ଜମ୍ବୁଦ୍ୱୀପ ଶ୍ରେଷ୍ଠ ସାର, ଶ୍ରୀ ଜଗନ୍ନାଥ ॥ ୨ ॥

ଯମନକ ନାମେ ତୀର୍ଥ ଆଦ୍ୟ
ତହିଁ ଯମେଶ୍ୱର ଦେବତା ପ୍ରସିଦ୍ଧ, ଶ୍ରୀ ଜଗନ୍ନାଥ ॥ ୩ ॥

ତହିଁ ଯମ ସମକ୍ଷରେ ଆସି
ମନ୍ତ୍ର ସଙ୍ଗମଣେ ଯାଇ ପାପ ନାଶି, ଶ୍ରୀ ଜଗନ୍ନାଥ ॥ ୪ ॥

ତେହ୍ନେ କ୍ଷେତ୍ର ନୀଳ ମହାଗିର
ଲକ୍ଷେ ଯୋଜନ ଉସ୍ତର୍ଗ କାୟା କର, ଶ୍ରୀ ଜଗନ୍ନାଥ ॥ ୫ ॥

ଉପ୍ପର ଦେବତା ପଞ୍ଚ ସର
ପଞ୍ଚ ମାଗନ୍ତେ ବରନ୍ଥି ଗୋପ୍ୟ କର, ଶ୍ରୀ ଜଗନ୍ନାଥ ॥ ୬ ॥

ନୀଳ ମହୀଧର ତା' ମୁକୁଟେ
ନାମ ଶ୍ରୀ ପୁରୁଷୋତ୍ତମ ଓଡ୍ରରାଷ୍ଟ୍ରେ, ଶ୍ରୀ ଜଗନ୍ନାଥ ॥ ୭ ॥

କଲପ ମହୀରୁହ ନିକଟେ
ମୁକ୍ତି ମଣ୍ଡପ ବିରାଜ ଥାଳ ଘଟେ, ଶ୍ରୀ ଜଗନ୍ନାଥ ॥ ୮ ॥

ସିଦ୍ଧି ଗଣପତି ବଟ ମୂଳେ
ସିଦ୍ଧ ପ୍ରଚଣ୍ଡ ନନ୍ଦନ ବସେ ଡାଳେ, ଶ୍ରୀ ଜଗନ୍ନାଥ ॥ ୯ ॥

ବଟ ରୋହିଣୀ କୁଣ୍ଡେ ଉତ୍ତରେ
ପ୍ରଭୁ ବିଜେ ବଡ଼ ଦେଉଳ ଭିତରେ, ଶ୍ରୀ ଜଗନ୍ନାଥ ॥ ୧୦ ॥

ଅଷ୍ଟ ଦଳ କମଳ କେଶରେ
ତହିଁ ମହାଯୋଗ ପୀଠର ଶରୀରେ, ଶ୍ରୀ ଜଗନ୍ନାଥ ॥ ୧୧ ॥

ଖୀନ କଟି ନେତର କାଛେଣୀ
ଟକା ଚରଣ ବଇଠି ତଟ ଜିଣି, ଶ୍ରୀ ଜଗନ୍ନାଥ ॥ ୧୨ ॥

ହୃଦସ୍ଥ ଲାଞ୍ଛନ ଶ୍ରୀବତ୍ସଙ୍କ
ଗନ୍ଧ ଚନ୍ଦନ ଚର୍ଚ୍ଚିତ ଗୁରୁ ଅଙ୍ଗ, ଶ୍ରୀ ଜଗନ୍ନାଥ ॥ ୧୩ ॥

କଉସ୍ତୁଭ ମଣି କଣ୍ଠ ତଟ
ହେମମଣି ରତ୍ନ ହୃଦେ ଝଟ ଝଟ, ଶ୍ରୀ ଜଗନ୍ନାଥ ॥ ୧୪ ॥

ଦଇତ ଦଳନ ଭୁଜ ଦଣ୍ଡ
ଶଙ୍ଖଚକ୍ର କୋଟି ବଧୂ ମାରତଣ୍ଡ, ଶ୍ରୀ ଜଗନ୍ନାଥ ॥ ୧୫ ॥

ଅଧର ପ୍ରବାଳ ଜବାରୁଣ
ଚନ୍ଦ୍ରକର ଜିଣି କୁଣ୍ଡଳ କରଣ, ଶ୍ରୀ ଜଗନ୍ନାଥ ॥ ୧୬ ॥

ଶ୍ଵେତ ପଦ୍ମ ଲୋଚନ କୃପାଳ
ଲୁବ୍ଧ ମଧୁପାନ ମଧୁପ ଚଞ୍ଚଳ, ଶ୍ରୀ ଜଗନ୍ନାଥ ॥ ୧୭ ॥

ନବଡ଼ ଜଳଦ ଝଳ ଝଳ
ମଳୟଜ ବନ୍ଧୁ ଇନ୍ଦୁ ଝଳ ମଳ, ଶ୍ରୀ ଜଗନ୍ନାଥ ॥ ୧୮ ॥

ଜଗ୍ଧଟ ମୁକୁଟ ଅବତଂଶ
ଭକ୍ତ ଜନ ଅଘ ତମିର ବିନାଶ, ଶ୍ରୀ ଜଗନ୍ନାଥ ॥ ୧୯ ॥

ଶିରେ ଶୋଭା ଦସ୍ତେଣାର ଚୂଳ
ନାନା କୁସୁମେ ତୁଳସୀ ଧଣ୍ଡା ମାଳ, ଶ୍ରୀ ଜଗନ୍ନାଥ ।। ୨୦ ।।

ଛାମୁରେ ଗରୁଡ଼ ଯୋଡ଼ି କର
କଲା ଶ୍ରୀମୁଖକୁ ଚାହିଁଣ କିଂକର, ଶ୍ରୀ ଜଗନ୍ନାଥ ।। ୨୧ ।।

ସିଦ୍ଧ ରୁଦ୍ରଗଣ ବିଦ୍ୟାଧର
ସେବା ଖଟନ୍ତି ଯୋଗେ ଯେ ଯାହାର, ଶ୍ରୀ ଜଗନ୍ନାଥ ।। ୨୨ ।।

ଛତ୍ରାଲମ୍ବ ଜଳଦ ଡାମ୍ବର
କୋଟି କୋଟି ସିନ୍ଧୁ-ଲହରୀ ଚାମର, ଶ୍ରୀ ଜଗନ୍ନାଥ ।। ୨୩ ।।

ଭେରୀ ଶଙ୍ଖ ଉପାଙ୍ଗ କାହାଳ
ବେଣୁ ବୀଣା ତାଳ ମୃଦଙ୍ଗ ଚହଳ, ଶ୍ରୀ ଜଗନ୍ନାଥ ।। ୨୪ ।।

ଗାବନ୍ତି ଗନ୍ଧର୍ବେ ମିଳି ସଙ୍ଗେ
ମଧ୍ୟେ ନାଚନ୍ତି କିନ୍ନରୀ ନାନା ରଙ୍ଗେ, ଶ୍ରୀ ଜଗନ୍ନାଥ ।। ୨୫ ।।

ନୃତ୍ୟ ଗୀତ ବାଦ୍ୟ ରସ ରଙ୍ଗ
ନାନା ଗତି ଭ୍ରାନ୍ତି ଚାତୁରୀ ତରଙ୍ଗ, ଶ୍ରୀ ଜଗନ୍ନାଥ ।। ୨୬ ।।

ସୁଭଦ୍ରା ସୁଦର୍ଶନ ଶ୍ରୀପତି
ବଳଦେବ ଆଦି ଚତୁର୍ଦ୍ଧା ମୂରତି, ଶ୍ରୀ ଜଗନ୍ନାଥ ।। ୨୭ ।।

ଶ୍ୱେତ ପୀତ ରକ୍ତ ନୀଳ ଚାରି
ଚାରିବର୍ଣ୍ଣ ଏକ କଳେବର ଧାରୀ, ଶ୍ରୀ ଜଗନ୍ନାଥ ।। ୨୮ ।।

ସହସ୍ର ବଦନେ ବେଦଧାରୀ
କୋଟି କୋଟି କଳ୍ପେ କହିତ ନପାରି, ଶ୍ରୀ ଜଗନ୍ନାଥ ।। ୨୯ ।।

ମୋ ଛାର ପାମର ମୂଢ଼ ମତି
ତାହା କହିବାକୁ କିସ ଶକତି, ଶ୍ରୀ ଜଗନ୍ନାଥ ।। ୩୦ ।।

କେବଳ ଭରସା ମୋର ଏହି
ଦୀନବନ୍ଧୁ ବୋଲି ନାମ ଅଛି ବହି, ଶ୍ରୀ ଜଗନ୍ନାଥ ।। ୩୧ ।।

ଆରତ ଭଞ୍ଜନ ବଜ୍ର ସେହ୍ନା
କୋଟି ବ୍ରହ୍ମାଣ୍ଡେ ଉଡ଼ୁଛି ଯା'ର ବାନା, ଶ୍ରୀ ଜଗନ୍ନାଥ ।। ୩୨ ।।

ଏବେ ଯା' ସ୍ଫୁରୁଛି ମୋର ମନ
ତାହା କହିବାକୁ ହୁଅ ପରସନ୍ନ ଶ୍ରୀ ଜଗନ୍ନାଥ ।। ୩୩ ।।

ଆନ ମୁଁ ଯେ କିଛି ମାଗୁନାହିଁ
ତୁମ୍ଭ ଚରଣେ ଶରଣ ଭବଗ୍ରାହୀ ଶ୍ରୀ ଜଗନ୍ନାଥ ।। ୩୪ ।।

**

**

## ଜୟ ନୀଳାଚଳପତି

### ଧନଞ୍ଜୟ ଭଂଜ

(ସପ୍ତଦଶ ଶତାବ୍ଦୀ)

ଜୟ ଜୟ ନୀଳାଚଳ ପତି ମୁକୁନ୍ଦ
ସନ୍ଥ ଜନ ବନ୍ଧୁ ପ୍ରଭୁ ପରମାନନ୍ଦ ।
ଅଖିଳ ଲୋକ ନିବାସ ପୀତବାସ
ବିକଚ ପଦ ଅରବିନ୍ଦ
ଭବ ସନ୍ତ୍ରତ ଆନନ୍ଦ ଧନଞ୍ଜୟ
ନୃପତିର ଇଷ୍ଟ ଏ ପଦ
ଯେ ବଶ
ଚରଣ କରନ୍ତେ ଆଶ୍ରମ
ଭୁବନ ପାବନୀ ଜହ୍ନୁର ନନ୍ଦିନୀ
ଯେନ୍ତୁ ହେଲେ ହେଲେ ଜନମ
ନୀଳାଦ୍ରି ନାଥ ଚରଣ ଯୁଗ ପଙ୍କଜ ମନେ ଧ୍ୟାୟୀ
ନୃପତି ଧନଞ୍ଜୟ ଭଞ୍ଜର ମନ ଷଟ୍ପଦ ହୋଇ ॥

**

* *

# କହ କହ ଆହେ ସଙ୍ଗାତ

## ଦୀନକୃଷ୍ଣ ଦାସ

( ରାଗ-ସିନ୍ଧୁଡ଼ା )

( ସପ୍ତଦଶ ଶତାବ୍ଦୀ )

କହ କହ ଅହେ ସଙ୍ଗାତ ସତେହେଁ ଜୀବନରେ ଆମ୍ଭେ ଥିବା
କୋଟି ବ୍ରହ୍ମାଣ୍ଡ ନାଥର ଶ୍ରୀ ଗୁଣ୍ଡିଚ ଯାତ୍ରା ଉତ୍ସବ ଦେଖିବା ସେ ।

କୃପା କରିବେ ସତେ
କାମପାଳ ସୁଭଦ୍ରା ସହିତେ ସେ
କରିଛୁଁ ଭାଗ୍ୟ ଆମ୍ଭେ ଏତେ ସେ
କହ ହେ ଅଇ କ ମନେ ଦ୍ରତେ ସେ ॥ ୧ ॥

ଖେଳିଲ କେଶରୀ ପ୍ରାୟେ ନୀଳଗିରି ଶିଖୁଁ ପଡୁଥିବେ ଖସି
ଖଟାଙ୍ଗଧର କରିବେ ସେହି କାଳେ ଦେଖିବା ସେ ସୁଖରାଶି ସେ

କ୍ଷଣ କ୍ଷଣକ ଲୀଳା
ଖେଦ ସାଗର ତରିବା ଭେଳା ସେ
ଖର ପାତକ-ତିମିର ହେଳା ସେ
ଖଣ୍ଡେ ଅଶେଷ ସନ୍ତାପ ଜାଳା ସେ ॥ ୨ ॥

ଗଙ୍ଗା-ଯମୁନା ସରସ୍ୱତୀ ପରାୟେ ଢନଗଢ ସେବା ଲାଗେ
ଗଜପତି ପଟୋଆର କରୁଥିବେ ଭଗୀରଥ ପ୍ରାୟେ ଆଗେ ସେ

ଗହ ଗହ ଗହଳ
ଗୀତ ବାଦ୍ୟ ନାଦଙ୍କ ପ୍ରବଳ ସେ
ଗଣ୍ଡୁଥିବ ସହସ୍ର ଚହଲ ସେ
ଗଲେ ସିନା ଦେଖିବାରେ କାଳ ସେ ॥ ୩ ॥

ଘୋର ବରଷା ନଇବର୍ଷି ସମୁଦ୍ର ମିଶିଲା ପରାଏ ହୋଇ
ଘନଘନ ହରି ଧ୍ୱନିକି ବିସ୍ତାରି ପଶୁଥିବେ ଲୋକେ ଯାଇ ସେ
ଘନଶ୍ୟାମ ସୁନ୍ଦର
ଘେନି ଚଉବର୍ଗ ସଙ୍ଗତର ସେ
ଘନଘନ କରାଇବା ଜୁର ସେ
ଘେନି ଘୋଟିଥିବେ ସୁରନର ସେ ॥ ୪ ॥

ନୀଚ ଉଚ୍ଚ ନାନା ସ୍ଥାନରେ ଯେମନ୍ତ ଚନ୍ଦ୍ର କିରଣ ସମାନ
ନୀଳାଦ୍ରି ଚନ୍ଦ୍ରମା ଦାନ ସେହିମତି ସେହି ରୂପେ ଅବଧାନ ସେ
ନୋହିଲେ କି ଈଶ୍ୱର
ନବ ପଞ୍ଚଲୋକ ଅଲଙ୍କାର ସେ
ନାନା ଜୀବ ଯହିଁ ଏକାକାର ସେ
ଯହିଁ ଯହିଁ ସେ ଆଉ ଦୋସର ସେ ॥ ୫ ॥

ଚତୁର୍ଦ୍ଦଶ ଲୋକ ନୟନ ସମ୍ପତ୍ତି ମହାସମ୍ଭାରେ ବିଜୟେ
ଗୃହୁଁ ଗୃହୁଁ ପ୍ରଦ ଅଙ୍ଗକୁ କରଇ କଦମ୍ବ କୁସୁମ ପ୍ରାୟେ ସେ
ଚିତ୍ତ ଚକୋର ଚନ୍ଦ୍ର
ଚନ୍ଦ୍ରା-ପଦ୍ମ ବନ-ଗଜଇନ୍ଦ୍ର ସେ
ଚରାଚର ପାଳିବାରେ ଇନ୍ଦ୍ର ସେ
ଚିନ୍ତାମଣି-ପର୍ବତ ପାଗିନ୍ଦ୍ର ସେ ॥ ୬ ॥

କ୍ଷୀର ସମୁଦ୍ର ଉଚ୍ଛୁଳିଲା ପ୍ରାୟେ ସେ ଛନ୍ଦ ଗୃମର ଦିଶିବା
କ୍ଷୁଦ୍ର ଘଣ୍ଟାଧର ଖଟଣୀ ସାମନ୍ତେ ଅଭୟେ ପାଶେ ମିଶିବା ସେ
ଛନ୍ଦବର ଗହଣ
ଛତ୍ର ଦେବୀ ଶିର ଆଭରଣ ସେ
ଛେଭ-ଜଳନିଧି ଉଦ୍ଧାରଣ ସେ
ଛଡ଼େ ଭାବିଲେ ଭବକଷଣ ସେ ॥ ୭ ॥

ଯମୁନା ଜଳେ ଫୁଟିଲା ପଦ୍ମବନ ପ୍ରାୟେ ସେ ବିସ୍ତାର ଆଖି
ଯେମନ୍ତ ସୁନ୍ଦର କଳା ଶ୍ରୀ ମୁଖକୁ ନେଇଣହିଁ ତହିଁର ସାକ୍ଷୀ ସେ
ଯାଉଁ ଭାବେ ଚଳିବା
ଯାଉଁ ରୂପେ ଦୁଃଖକୁ ଦଳିବା ସେ
ଯେତେ ପ୍ରକାରେ ସୁଖ ପାଳିବା ସେ
ଜାଣି ନୋହଇ ତାହା କଳିବା ସେ ॥ ୮ ॥

ଝଟକ ବଜୁଳି ପ୍ରାୟେ ଅଙ୍ଗ ଛାଳି ବାର ସୁନ୍ଦରୀଙ୍କ ନାଚ
ଝଲ ଝଲ ଫୁଲ ବୃଷ୍ଟି ନିରନ୍ତରେ ଅଗର ଧୂପ ଚହଟ ସେ
ଝଳି କଂସାଳ ଛାଳି
ଝମଝମ ଝଞ୍ଜାଳ ମର୍ଦ୍ଦଳ ସେ
ଝଳି ବାଜିବା ନାଦ ପ୍ରବଳ ସେ
ଝାମ୍ପି ଥିବ ଗଗନ ମଣ୍ଡଳ ସେ ।। ୯ ।।

ନିବଡ଼ ଅନ୍ଧାରେ ପଡ଼ିଲେ ଯେମନ୍ତ ଅନ୍ଧାରୁ ଆନ ନ ଦିଶେ
ନବଘନ ଶ୍ୟାମ ସୁନ୍ଦର ଶ୍ରୀ ମୁଖ ଦର୍ଶନହିଁ ସେହି ଆଣେ ସେ
ନାନା ଦେଶ ନୃପତି
ନାନା ସଜହୁଁ ଯୁବା ଯୁବତୀ ସେ
ନିରନ୍ତରେ ପୂରୁଥିବେ ଛତି ସେ
ନେତ୍ର ଦେଖଇ ସେଇ ମୂରତି ସେ ।। ୧୦ ।।

ଟଳିବ ସତେହେଁ ଦୁର୍ଦ୍ଦଶା ଆମ୍ଭର ଦେଖିବା ଯାଇ ସେ ସଜ
ଟେକି ଆସିଥିବେ ଦୁର୍ବାଦଳ ଶିରେ ଦେବାଧିଙ୍କ ଦେବରାଜ ସେ
ଟେକ ନେତ୍ର ଗୃହାଣୀ
ଟେକ ଶ୍ରୀକର ବଇଠି ଠାଣି ସେ
ଟକାଟକ ଓଲଣି ଉଠାଣି ସେ
ଟାକ ଦେଖନ୍ତ ସୁକୃତି ପ୍ରାଣୀ ସେ ।। ୧୧ ।।

ଠାକୁରେ ଘଣ ମହିମା କ କଳିବ ଚନ୍ଦନୁ ଶୀତଳ ହିଆ
ଠା' ଠିକ କର ସବୁର ମନ ଜାଣି କେତେହେଁ କରନ୍ତ ଦୟା ସେ
ଠେଲଠେଲରେ ପଶି
ଠାବେ ଠାବେ ପାରୁଶରେ ମିଶି ସେ
ଠିକେ ଜଣାଇଁ ଯେତେ ଭରସି ସେ
ଠିକେ ଶୁଣନ୍ତ କର୍ଣ୍ଣେ ନବେଶି ସେ ।। ୧୨ ।।

ଡରନ୍ତ ଯାହାର ଭ୍ରୂମୁ ଜଣାଣକୁ ବ୍ରହ୍ମାଦି ଦେବ ଶଙ୍କରେ
ଡାକନ୍ତ ତାହାକୁ ଏକ ମୁଖ ହୋଇ ଦୀନ ପାପୀ ନିଶଙ୍କରେ ସେ
ଡାକ ଶୁଣନ୍ତ ରହି
ଡାକିବାକୁ ଭୟେ ତହିଁ ନାହିଁ ସେ
ଡୋଳେ ଦେଖିଲତ ଅଛୁ ତହିଁ ସେ
ଡାକଲେହେଁ ରଥେ ଥାନ୍ତ ବାହି ସେ ।। ୧୩ ।।

ତଳ ହଳ ଚନ୍ଦ୍ର ମଣ୍ଡଳ ଧବଳ ମେଘଁ ପ୍ରକାଶିଲା ପ୍ରାଏ
ତଳ ତୋରଣଦ୍ୱାରେ ହଳୀ ଦଅନ୍ତେ ଦଶେ ସବୁ ଝଳମଧ୍ୟେ ସେ
ତଳ୍ପ ବିଜେ କରିବା
ତାଲେ ସତେ ହେଁ ଦେଖି ପାରିବା ମେ
ତମେ ଅମୃତ ପାନ କରିବା ସେ
ତଗ ପସରା ପରି ହରିବା ସେ ।।୧୪।।

ଉତ୍ତମ ରଥ ଗଜ ଅଶ୍ୱ ଉତ୍ତମ ସ୍ତ୍ରୀ ରତ୍ନ ଲକ୍ଷ୍ମୀ ପ୍ରଭା
ଆହା ସେ କ୍ଷୀର ସମୁଦ୍ରରୁ ଜନ୍ମିଲା ପ୍ରାଏ ପାଉଥିବେ ଶୋଭା ସେ
ଇନ୍ଦ୍ର ଆଦି ଅମରେ
ଆସି ରହି ଅଧ ଆକାଶରେ ସେ
ଅଶ୍ରୁ ପୂରିତ ଆନନ୍ଦ ଭରେ ସେ
ଅନାଇଁ ଯେ ଥିବେ ଅତି ଧୀରେ ସେ ।।୧୫।।

ତ୍ରିପୁରାସୁର ମାରଣେ ମହାଦେବ ରଥେ ବିଜେ କଲା ପ୍ରାଏ
ତାଳଧ୍ୱଜରଥ ମଣ୍ଡିବେ ସେ ତାଳଧ୍ୱଜ ବଳଦେବରାଏ ସେ
ତେଜ ପୁଞ୍ଜ ମୂରତି
ତିନି ଲୋକର ସୁଖ ସମ୍ପତ୍ତି ସେ
ତାଙ୍କ ବିନୁ ନାହିଁ ଆନଗତି ସେ
ତାଙ୍କୁ ଦେଖିଲେ ଲଭେ ମୁକତି ସେ ।।୧୬।।

ଥକିତ ବିଜୁଳି ସୂର୍ଯ୍ୟ ଅଙ୍ଗ ମିଳି ଉଦେ ହେଲା ପ୍ରାଏ ହୋଇ
ଥିରେ ସୁଭଦ୍ରା ସୁଦର୍ଶନ ମଣ୍ଡିବେ ପଦ୍ମ ଧ୍ୱଜ ମୁଖେ ଯାଇ ସେ
ଥିରେ ରଥରେ ବସି
ଥୀର ମନ୍ଦମା ମଧୁରହାସୀ ସେ
ଥିବେ ସେବକ ପାଖରେ ବସି ସେ
ଥିବା ଆମ୍ଭେମାନେ ସ୍ତୁତି ଭଣି ସେ ।।୧୭।।

ଦୁର୍ଲଭ ଦର୍ଶନ ସୁଲଭ କରି ସେ ପ୍ରଭୁ ପରମ ଈଶ୍ୱର
ଦେଖୁ ଦେଖୁ ସିଂହ ପରାଏ ସତ୍ତ୍ୱରେ ପାଇଯିବେ ସିଂହଦ୍ୱାର ସେ
ଦିବ୍ୟ ପଦ୍ମଚରଣ
ଦେବୀ ପଦ୍ମ ଆସନୀ ଚରଣ ସେ
ଦାସ ଜନଙ୍କ ଦୁଃଖ ହରଣ ସେ
ଦେବୀ ପୃଥ୍ୱୀ କରେ ଆବରଣ ସେ ।।୧୮।।

ଧନ୍ୟ ଧରଣୀ ଫଣି ମଣି ବାସୁକୀ କମଠ ମଣ୍ଡଳ ସବ
ଧରାଧର ହୋଇ ବୈଷ୍ଣବ ବେଶରେ ଧରନ୍ତି ଦେବଙ୍କ ଦେବ ସେ
ଧନ୍ୟ ଧନ୍ୟ ସେ ଧୂଳି
ଧୀରେ ତାଙ୍କ ଭାଗ୍ୟ ନୋହେ କଳି ସେ
ଧର ପ୍ରଭୁଙ୍କ ବିଜୟ ତୁଳି ସେ
ଧାଇଁଥାନ୍ତି ଧ୍ରୁବଲୋକ ବଳି ସେ ॥୧୯॥

ନଷ୍ଟେ ପରଶମଣି ଗୁଣପ୍ରମାଣ ଲୁହାକୁ କରଇ ସୁନା
ନୀଳାଦ୍ରି ମଣ୍ଡନ ଦର୍ଶନ ପରଶ ତହୁଁକି ଅଧିକ ସିନା ସେ
ନାନା ଜୀବଙ୍କ ହିତେ
ନିରାକାର ସାକାରର ମତେ ସେ
ନିତ୍ୟେ ବିହରେ ନୀଳପର୍ବତେ ସେ
ନାନା ଯାତ୍ରାହିଁ ସେହି ନିମନ୍ତେ ସେ ॥୨୦॥

ପୃଥିବୀରେ ପୂର୍ଣ୍ଣ ଚନ୍ଦ୍ରମା ଖେଳିବା ପ୍ରାୟ ବିଚକ୍ଷ ଦର୍ଶିବା
ପସ୍ତ ପାରିବାର ପରାସ୍ତେ ସମସ୍ତେ ପୁଣି ପୁଣି ପୂର୍ଣ୍ଣ କିବା ସେ
ପାର ଜାତକ ବୃକ୍ଷ
ପ୍ରାପ୍ତେ ହୋଇ ଯେ ଥିବେ ପ୍ରତ୍ୟକ୍ଷେ ସେ
ପୂର୍ଣ୍ଣ କରି ବାଞ୍ଛା ଲକ୍ଷ ଲକ୍ଷ ସେ
ପାପ କଷ୍ଟରୁ କରିବେ ମୋକ୍ଷ ସେ ॥୨୧॥

ଫଗୁଣ ମାସେ ଫଗୁ ଖେଳ ଉତ୍ସବେ କାମଦେବ ବିକେ ପ୍ରାପ୍ତେ
ଫୁଲ୍ଲାରବିନ୍ଦ ନେତ୍ର ଫୁଲ ସ୍ଥଳନ୍ତେ ଫୁରୁଣାହିଁ କେତେ ହୋଏ ସେ
ଫୁଲ ଛନ୍ଦ ଭ୍ରମର
ଫୁଲ ଆଳଟ ପଖା ଅପାର ସେ
ଫୁରୁଣାରେ ଧରି ଥିବେ ନର ସେ
ଫୁଲ ବିନୋଦିଆଙ୍କ ଗ୍ରୁମୁର ସେ ॥୨୨॥

ବ୍ରହ୍ମାଦି ଶଙ୍କର ଦେବଙ୍କୁ ଦୁର୍ଲଭ ଯାହାଁ କରୁଣା କଟାକ୍ଷ
ବୃଷ୍ଟି କଲି ପ୍ରାପ୍ତେ ଦୃଷ୍ଟି ଯା' କରେ ସେ ପଡ଼ିଥିବ ଲକ୍ଷ ଲକ୍ଷ ସେ
ବେନି ହସ୍ତ ସେବକେ
ବେତ୍ରଧାରୀ ହୋଇ ଏକେ ଏକେ ସେ
ବେଢ଼ି ଥିବେ ସ୍ଥଳପାଖ ଯାକେ ସେ
ବିକେ କରାଉଥିବେ ନିଶଙ୍କେ ସେ ॥୨୩॥

ଭକ୍ତଜନମନ କୁସୁମ ଚନ୍ଦ୍ରମା ମଧୁର ହସି ଗୁହିବା
ଭୁଜ ଭରା ଦେଇ ଭୃତ୍ୟାଙ୍କ ଉପରେ ଭଙ୍ଗିମା ହୋଇ ରହିବା ସେ
ଭଙ୍ଗି ଦେଖିବା ଯାଇ
ଭଲେ ଜୀବନରେ ଜହିଁଥାଇ ସେ
ଭାଗ୍ୟ ସତେ ଏତେ କରିଛନ୍ତି ସେ
ଭବଭୟକୁ ଦେବା ପକାଇ ସେ ।।୨୪।।

ମେରୁ ପର୍ବତକୁ ସୂର୍ଯ୍ୟ ପରିକମା କଲା ପ୍ରାୟେ ରଥ ବୁଲି
ମହିମା ସମୁଦ୍ର ଗୃହକୁ ଉଠିବା ମତ୍ତଗଜ ପ୍ରାୟେ ଗଲି ସେ
ମହା ସୁଖ ଦେଖିବା
ମନୁ ସବୁ ଦୁଃଖ ଉପେକ୍ଷିବା ସେ
ମହୀମଣ୍ଡଳେ ଯଶ ରଖିବା ସେ ।।୨୫।।

ଯେତେବେଳେ ଚକା ଅପସର ହୋଇ ଲୋକଙ୍କୁ ଦିଅନ୍ତି ଦୃଷ୍ଟି
ଜଗତ ଯାଙ୍କରେ ଏକା ଲଗକରେ ହୋଅଇ ଅମୃତ ବୃଷ୍ଟି ସେ
ଜଗ ମୋହନ ମୂର୍ତ୍ତି
ଜାତ କରାଇ ସୁଖ ସଂପତ୍ତି
ଜଗତକୁ ଦେଇ ଏକା ଗତି ସେ
ଜ୍ୟୋତି ମଣ୍ଡଳରେ କ ଦିଅନ୍ତି ସେ ।।୨୬।।

ରାଜୀବନୟନ ଶ୍ରୀ ମୁଖ ସିଂଘାର ବଜାଇ ଅତି ସଧୀରେ
ରଙ୍ଗ ଅଧରେ ମନ୍ଦରେ ହସି ବନେ କରିବା ସଜ ଲାଗିରେ ସେ
ରଚ ରୁଚିର ବେଶ
ରଙ୍ଗେ ହୋଇଥିବ ପୀତବାସ ସେ
ରହି ଅନାଇଁ ଥିବେ ତ୍ରିଦଶ ସେ
ରସିଥିବ ସବୁର ମାନସ ସେ ।।୨୭।।

ଲକ୍ଷ୍ୟ ରହିବ ବେଶକୁ ତ ସହଜେ ଲକ୍ଷ ଅଂଶେ ଲକ୍ଷ୍ୟ ନାହିଁ
ଲଲାଟ ପଟ ସ୍ୱର୍ଣ୍ଣ ଚିତା କର୍ପୂର ଭ୍ରୂଲତାକୁ ଲକ୍ଷ୍ୟ କାହିଁ ସେ
ଲକ୍ଷ୍ୟ ତାହାକୁ ସେହି
ଲୋକ କହିବାକୁ ଲୋକେ ନାହିଁ ସେ
ଲୋଭେ ଲୋଡ଼ିଲେ ପାଇବା କାହିଁ ସେ
ଲୋଡ଼ି ଲୋଚନକୁ ଦେବା କହି ସେ ।।୨୮।।

ବୀର ବେଶରେ ବୀର ଛନ୍ଦୀ ଧନାଇ ବୀର ଆସନେ ବସିବା
ବକ୍ରମ କେଶଗ୍ରୀ ବନ୍ଦମିଲ୍ଲ ପ୍ରାପ୍ତେ ବାହୁ ବସ୍ତ୍ରେ ଦଶିବା ସେ
ବୀରବରଙ୍କ ବର
ବୀର କେଦାରେ ମଣ୍ଡିତ ଶିର ସେ
ବୀର ବାନା ବସ୍ରଜିତ କର ସେ
ବୀରବାହୁରେ ମଣ୍ଡିତ ପୁର ସେ ।।୨୯।।

ସ୍ୱର୍ଗରୁ ଇନ୍ଦ୍ର ଅଇଲ ପ୍ରାପ୍ତେ ଆସି ନୃଇନ୍ଦ୍ର ସେବା ସର
ଶାଢ଼ୀ ପାଇଁ ଶୁଭେ ବଜେ କଥିବେ ଗହଙ୍କୁ ଅନୁସର ସେ
ସଙ୍ଗେ ଥିବେ ସମସ୍ତେ
ଷୋଳ ସାମନ୍ତ ନିୟୋଗ ଯେତେ ସେ
ସମସ୍ତ ଗଜ ଅଶ୍ୱ ସଙ୍ଗତେ ସେ
ସଂଖ୍ୟା କରିବା ପଦାର୍ଥ କେତେ ସେ ।।୩୦।।

ସେତ ସୁନ୍ଦର ସକଳ ଗୁଣେ ସାର ଉଚ୍ଚୈଃଶ୍ରବା ସହୋଦର
ସଇବ ସୁଗ୍ରୀବ ମେଘ ପୁଷ୍ପ ବଲାହକ ନାମ ଯାହାଙ୍କର ସେ
ସାର ଅଶ୍ୱକୁ ଯୋଚ
ସତ୍ୟ ଅସତ୍ୟ ବାଗକୁ ଆଞ୍ଚ ସେ
ଶଏ ପାଞ୍ଚଣ ଦଣ୍ଡକୁ ସଞ୍ଚ ସେ
ଶୀଘ୍ରେ ସାରଥି ରହିବା ଆଞ୍ଚ ସେ ।।୩୧।।

ଶ୍ରବଣ ମଙ୍ଗଳ ଜଗନ୍ନାଥ ହସି ବଳଦେବଙ୍କୁ ଅନାଇଁ
ଶୁଭେ ଆଗେ ବଜେ କର ବୋଲିବାର ବଜେ କରିବେ ଗୋସାଇଁ ସେ
ସଙ୍ଗେ ସୁଭଦ୍ରା ଯିବେ
ଶତଶତ ଘଣ୍ଟାଦି ବାଜିବେ ସେ
ଶୀଘ୍ରେ ଲୋକ ପାଖେ ଆଉଜିବେ ସେ
ସେହି ଢଙ୍ଗରେ ପ୍ରଭୁ ସାଜିବେ ସେ ।।୩୨।।

ହାହା ହୁହି କରି ଅଶ୍ୱଙ୍କୁ ଆବୋରି ସାରଥି ଉଚ୍ଚେ ଡାକିବା
ହସ୍ତକୁ ବୁଲାଇ ବକଟାଳ ହୋଇ ବନ୍ଦ ଗୀତ ଉକୁଟିବା ସେ
ହରି ଧ୍ୱଜ ଉଡ଼ିବା
ହାତେ ହାତେ ଦଉଡ଼ି ଭିଡ଼ିବା ସେ
ହରଷରେ କେ କର ଯୋଡ଼ିବା ସେ
ହସ ଶ୍ରୀମୁଖେ ନେତ୍ର ପଡ଼ିବା ସେ ।।୩୩।।

କ୍ଷିତି ପତି ଶିର ଲଗାଇ ପଛର ମଧୀର କରି ପେଲିବା
କ୍ଷୀର ସମୁଦ୍ରରେ ସୁବର୍ଣ୍ଣ ବୋଇତ ପ୍ରାୟେ ରଥଙ୍କ ଗ୍ଭଲିବା
କ୍ଷମା ସାଗର ଲୀଳା
କ୍ଷୋଭ ସିନ୍ଧୁ କରିବାକୁ ଭେଲା ସେ
କ୍ଷୟ କରେ ମହାପାପ 'କଳା' ସେ
କ୍ଷଣେ ଦୀନକୃଷ୍ଣ ଆ ବାଉଲା ସେ ॥୩୪॥

**

**

## ମଦନ ମୋହନ

### ଦୀନକୃଷ୍ଣ ଦାସ

(ସପ୍ତଦଶ ଶତାବ୍ଦୀ)

[ ରାଗ-ତୋଡ଼ି; ତାଳ-ଆଠତାଳୀ ]

ମଦନ ମୋହନ ! କଣ୍ଠାଦ୍ର ଦନ୍ତ ପଲଙ୍କ ତେଜି ପ୍ରଭୁ,
ନରେନ୍ଦ୍ର ଗୃହେ ଗମନ ହେ ॥ ଘୋଷା ॥

ଧନ୍ୟ ବେଶକାରୀ କ ସଜାଡ଼ି କରି
ଖଞ୍ଜି ଅଛୁ ମାଲ ମାନ
ଚନ୍ଦନ ଯାହାକୁ ବନେ କରଛନ୍ତି
ସିନ୍ଧୁ ସୁତା ପ୍ରାଣ ଧନ ହେ ॥୧॥

ଇନ୍ଦ୍ର ନଇରୁତ ବରୁଣ କୁବେର
ଧାତା ଆଦି ଦେବ ଗଣ
ଖଦୀ ଗ୍ଭମର ଆଲଟ ପଙ୍ଖା ଧରି
ବ୍ରହ୍ମା ଲେପନ୍ତି ଚନ୍ଦନ ହେ ॥୨॥

ଲକ୍ଷେ ଚନ୍ଦ୍ରଦୀପ ଗ୍ରମୁରେ ଜଳୁଛୁ
ଦିଶୁଅଛୁ ଝଟ ଝଟ

ପଟୁଆରୀ ମାନେ ଆଗରେ ଚଳନ୍ତି
ମାହାରୀ କରନ୍ତି ନାଟ ହେ ॥୩॥

କି ଶୋଭା ଦିଶୁଛି ପୁଷ୍ପକ ବିମାନ
ମୋହୁଅଛି ତ୍ରିଭୁବନ
ପଟୁଆରେ ବିଜେ କରି ଯାଉଛନ୍ତି
ସଙ୍ଗେ ଘେନି ଭକ୍ତ ଜନ ହେ ॥୪॥

ନରେନ୍ଦ୍ର କଣରୁ କି ଶୋଭା ପାଉଛି
ଜଗନ୍ମୋହନକୁ ବୋଲି
ସେ ଦେବ ମହିମା ଡାକ ଶୁଭୁଅଛି
ମହାମତ ଗଜ ସ୍ଥଳି ॥୫॥

ନରେନ୍ଦ୍ର ତଡ଼ାଗ ଚଉପାଶେ ଘେରି
ଜନେ ଦେଖନ୍ତି ଚନ୍ଦନ
ଧନ୍ୟ ସେହୁ ପୁରୀ ଧନ୍ୟ ସେହୁ ନାରୀ
ଆଗେ କରନ୍ତି ଦର୍ଶନ ହେ ॥୬॥

ତପନ ତନୟା ତଟରେ ମୋହନ
କରନ୍ତି ମୁରଲି ସ୍ୱନ
ବୋଲେ ଦୀନକୃଷ୍ଣ ତୁମ୍ଭ ଶ୍ରୀ ଚରଣେ
ନିରନ୍ତରେ ରହୁ ଧ୍ୟାନ ହେ ॥୭॥

**

**

# ଜଣଥିବ ଏକା ଲୟେ

## ଦୀନକୃଷ୍ଣ ଦାସ

(ରାଗ---ବଙ୍ଗଳାଶ୍ରୀ; ତାଳ-ପଞ୍ଚତାଳ)

(ସପ୍ତଦଶ ଶତାବ୍ଦୀ)

ଯହିଁ ଥିଲେ ଥିଲ ଯହିଁ ଗଲେ ଗଲ
କାହାକୁ ମୋ ଅଛି ଭୟେ
ଅନ୍ତରରେ ଯେବେ ନୀଳାଦ୍ରି ସିଂହକୁ
ଜରଥିବ ଏକା ଲୟେ ॥୧॥

ଜଳ ସ୍ଥଳ ମଧ୍ୟ ଅରଣ୍ୟ ଅନଳ
ଅନଳ ଦୁର୍ଗମ ପଥ
ଅରକ୍ଷିତକୁ ଯେବେ ସେ ନ ରଖିବେ
ଶଙ୍ଖଚକ୍ରକୁ କପାଁ ହସ୍ତ ॥୨॥

ହରତା କରତା ଜଗନ୍ନାଥ ପ୍ରଭୁ ସେ
ବିଶେଷେ କରୁଣା ମୟେ
ଦୀନବନ୍ଧୁ ନାମରେ ଯେଉଁ ବାନା ଉଡ଼େ
ବ୍ରହ୍ମ ଲୋକଂ ଯାଏ ॥୩॥

ଜଗତ ଯନ୍ତ୍ର ଜଗନ୍ନାଥ ଯନ୍ତ୍ରକାର
ଅଛନ୍ତି ଦେବାଧିରାଜ
ବୋଲେ ଦୀନକୃଷ୍ଣ ସବୁପ୍ରକାରେ ମୋ
ଭରସା ଗରୁଡ଼ ଧ୍ୱଜ ॥୪॥

**

**

## ଦୀନ ବଞ୍ଚଇ ସେ ଧ୍ୟାନରେ

### ଦୀନକୃଷ୍ଣ ଦାସ

(ସପ୍ତଦଶ ଶତାବ୍ଦୀ)

ସଂଶୟ ଲଗିଲ ମହାବାହୁ ମୋର ମନରେ
କୃପା କୃପଣ ପଣ ଶିଖିଲ କାହୁଁ ଦୀନଜନରେ
ଆତଙ୍କେ ଡାକଲେ ଚକ୍ଷେ ଶୁଣୁଥିଲ କର୍ଣ୍ଣରେ
ଗଜକୁ ରଖିଲ ଗ୍ରାହ ଛେଦ ସୁଦ୍ରିସେନରେ ॥୧॥

ଦ୍ରୋପଦୀଙ୍କ ଯାହା ସାହା ହେଲ ବିବସନରେ
ଏବେ କାହିଁ ଗଲ ତାହା ମୋର କର୍ମ ହୀନ ରେ
ତୁମ୍ଭ ପଦ୍ମପାଦ ବିନୁ ମନ ନ ରହଇ ଆନ ରେ
ବୋଲେ ଦୀନକୃଷ୍ଣ ଦୀନ ବଞ୍ଚଇ ସେ ଧ୍ୟାନ ରେ ॥୩॥

**

**

# ମହାପ୍ରଭୁ ହେ ମୁଁ ଚାତକ

**ଦୀନକୃଷ୍ଣ ଦାସ**

(ରାଗ—ଭୈରବ)

(ସପ୍ତଦଶ ଶତାବ୍ଦୀ)

ମହାପ୍ରଭୁ ହେ, ମୁଁ ଚାତକ ତୁମ୍ଭେ ନବଘନ
କରୁଣା ଜଳ ବରଷା କଲେ ନଗଲେ ମୋ ଆଶା
ତୁମ୍ଭ ବିନୁ ନ ଜାଣଇ ଆନ ॥ ଘୋଷା ॥

ଅମର ଗିରି ଅରୁଣା ପରାଏ ହୋଇ କରୁଣା
ତୁମ୍ଭଙ୍କ ମୋ ଆଶା ନ ଛୁଡ଼ିଲା
ଶ୍ରୀମୁଖ ଅମୀସୁ ତା'ର ଦେଖି ନୟନ ଚକୋର
ଦୁଃଖ ଏଡ଼ି ସୁଖରେ ବୁଡ଼ିଲା ॥୧॥

ଏବେ ମୋର ଏତେ ଦୁଃଖ ଦେଖିଲେ ପଙ୍କଜ ମୁଖ
ଦିନକୁ ଦିନ ଅଧିକ ହୋଇ
ଏଥୁ ଯେବେ ପରିତ୍ରାଣ ନ କରିବ ଭଗବାନ
ତେବେ ମୋର ଜୀବ ଜାଇ ନାହିଁ ॥୨॥

ପତ୍ନୁର ଯାହାକୁ ଆଁଶ ସେ ଯେବେ କରେ ନିରାଶ
ଭକ୍ତ ସିନା ହୋଇବ ହତାଶ
ଏମନ୍ତ ହୋଇଲା କପାଁ। ଥିବ ଆଉ ଅନୁକମ୍ପା।
ନିଶ୍ଚେ ଦୀନକୃଷ୍ଣ ଗଲା ନାଶ

**

**

# କୃପାସିନ୍ଧୁ ବଦନ

## ଦୀନକୃଷ୍ଣ ଦାସ

(ସପ୍ତଦଶ ଶତାବ୍ଦୀ)

[ ରାଗ—କାମୋଦୀ ]

କୃପାସିନ୍ଧୁ ବଦନ          କର ଅବଲୋକନ
କେଉଁ କରମ ହୀନଜନ
କାକୁ ସ୍ତ ଭର ହୋଇ          କର ଯୋଡ଼ି ଜଣାଇ
ଗରୁଡ଼-ସ୍ତମ୍ଭ ସନ୍ନିଧାନ
ହେ ମହାପ୍ରଭୁ
କୃପା ସରିତ ପତି ହୋଇ          କର୍ମହୀନ ଜନର ତହିଁ
କରୁଣା କଲ ନାହିଁ          କମ୍ପାହେ ଭାବଗ୍ରାହୀ
ଏହା ମୁଁ ବିଚାର୍ଯ୍ୟ ମଣଇ
ହେ ମହାପ୍ରଭୁ ।।୧।।

ଖିଳ ବ୍ରହ୍ମାଣ୍ଡୋଦରେ          କର୍ମ ହୀନ ଜନରେ
ଯେଣୁ ମୋ ସମ ଆନ ନାହିଁ
ଖଗ ତିଳକ କାନ୍ତ          ସେ କାରଣୁଁ ଏମନ୍ତ
ଖେଦ ଆରତେ କହୁଲଇଁ
ହେ ମହାପ୍ରଭୁ
ଖଣ୍ଡିଲ ନାହିଁ ଯେଣୁ ମୋର ! ଖେଦ ଆରତ ରତ୍ନାକର
ଖିଳବ୍ରହ୍ମାଣ୍ଡ ଧର          ଖଣ୍ଡି ନାହିଁ କାହାର
କଉଁ ବିପତ୍ତି ବିଶ୍ୱମ୍ଭର
ହେ ମହାପ୍ରଭୁ ।। ୨ ।।

ଗଜରାଜକୁ ଜଳେ          ଗ୍ରାହ ଗ୍ରାସିବା କାଳେ
ଡାକିଲା ରଖ ଆଦ୍ୟମୂଳ
ଗୁରୁତର ଆତଙ୍କ          ଜାଣିଣ ତା' ଶ୍ରୀରଙ୍ଗ
ରଥାଙ୍ଗ ପେଷିଲ ତତ୍କାଳ
ହେ ମହାପ୍ରଭୁ !

ଗ୍ରାହ, ଜୀବନ ନିବାରିଲ          ଗଜ ବିପତ୍ତିରୁ ତାରିଲ
ଗରୁତ୍ମାନ-କେତନ          ମର୍ମ କର୍ମକୁ ହିନ
ନିତ୍ରାଣ-ନିରବଧି ହେଲ
ହେ ମହା'ପ୍ରଭୁ ।।୩।।

ଘନଶ୍ୟାମହେ ଘନ          ବିପଦ ବିନାଶନ
ବିସ୍ମୃରୁ ଥାଇ ମନେ ମୋର
ଘୋର ବିପତ୍ତି ଗ୍ଣର          କେତେ ମାଫ ଯାହାର
ପ୍ରଭୁ ମହିମା ଅକୂପାର
ହେ ମହାପ୍ରଭୁ !
ଘନେ ଏ କଥା ମନେ ଥିଲି          ଘଣା କି କାରଣେ ନୋହିଲି
ଘୋର ବିପତ୍ତି ମୋର          ହୋଇ ଘଟକୁମ୍ଭର
ମହିମା ବାରିଧି ଶୋଷିଲି
ହେ ମହାପ୍ରଭୁ ।।୪।।

ନିରକ୍ଷ ନିସ୍ତାରଣ          କାରଣେ ପ୍ରହରଣ
କର କମଳରେ ବହିଛ
ନିଧନ ସମୟରେ          କଂପା ମୋ ବିଷୟରେ
ନିର୍ଦ୍ଦୟ ହୃଦୟ ହେଉଜ
ହେ ମହାପ୍ରଭୁ
ନୀଳାଚଳରେ ତୁମ୍ଭେ ଥିବ          ନିରେଖି ନିଶ୍ଚେ ନାଶ ଯିବ
ନିଖିଳ ନିକେତନ          ନବପଞ୍ଚ ଭୁବନ
ମଧ୍ୟରେ କେମନ୍ତ ଶୁଭିବ
ହେମହାପ୍ରଭୁ ।।୫।।

ଚତୁର୍ବର୍ଗ ଯାହାର          ଚରଣେ ପରସ୍ପର
ଚଞ୍ଚଳା ଯା'ର ଆଜ୍ଞାକାରୀ
ସ୍ମୃହିଁ ଯାହା ଶ୍ରୀମୁଖ          ତ୍ୟତ ଦୂରନ୍ତ ଦୁଃଖ
ସେ ପ୍ରଭୁ ଭୃତ୍ୟହିଁ ଭିକାର
ହେ ମହାପ୍ରଭୁ

ଚତୁର୍ଦ୍ଦଶ-ଭୁବନ ପ୍ରାଣୀ ଚକିତ ହେବେ ଏହା ଶୁଣି
ଚନ୍ଦ୍ର ନୋହେ କି ଏହୁ କଥା ହେ ମହାବାହୁ
ନୀଳ ଶଇଳ ଚୂଡ଼ାମଣି
ହେ ମହାପ୍ରଭୁ ॥୬॥

ଛାଡ଼ି ସକଳ ଆଶ ତୁମ୍ଭ ପଦ ସାରସ
ଭରସା କରିଛୁ ସନ୍ତତେ
ଛୋଭ-ସାଗରେ ପଡ଼ି ମରିବା ବେଳେ ବୁଡ଼ି
ଛାଡ଼ିତ ଦେଇଅଛ ମୋତେ
ହେ ମହାପଭୁ
ଛତ୍ର ମଣ୍ଡଳେ ତୁମ୍ଭ ବିନା ଛଣେ ହେଁ ନାହିଁ ଆନ ସେହ୍ନା
ଛନ୍ଦ ନୁହେଁ ଉଚିତ କହୁଛୁ ପ୍ରଭୁ ସତ୍ୟ
ନଷ୍ଟେ ଏତେବେଳକୁ ସିନା
ହେ ମହାପ୍ରଭୁ ॥୭॥

ଜଗତ ଅନୁରାଗେ ଜାତ ଅବନୀ ସ୍ୱର୍ଗେ
ଦାଇବେ ଜଗତର ନାଥ
ଜଗତ ଜନଙ୍କର ଭିତରୁହିଁ ବାହାର
ମୁହିଁ କି କାରଣେ ଅନାଥ
ହେ ମହାପ୍ରଭୁ
ଜଗନ୍ନାଥ ନାମ ବହିବ ଜନ ଆଉତ ନ ଶୁଣିବ
ଜଗତପତି ହୋଇ ଅନାଥ କଲ ଠାଇଁ
ଆଉ କେ କା' ଆଗେ କହିବ
ହେ ମହାପ୍ରଭୁ ॥୮॥

ଝୁଲିଛୁ ଏ ବଚନ ନବପଞ୍ଚ ଭୁବନ
ଆରତ ଭଞ୍ଜନ ଶ୍ରୀହରି
ଝଞ୍ଜିକା ମଣୁ ଅଛ କମ୍ପା ମୋ ବପୁରେ
ବିନାଶକାଳେ ଦଇତାରି
ହେ ମହାପ୍ରଭୁ

ଝାଡ଼େ ଡାକଲ ଗର୍ଭଏଣୀ          ଝାଡକାରେ ତା' ଡାକ ଶୁଣି
ଝିମିଟେ ସେ ବପତ୍ତି          ହରଲ ହେ ଶ୍ରୀପତ
ମୋରେ ନର୍ଦ୍ଦୟ କମ୍ପା ପୁଣି
ହେ ମହାପ୍ରଭୁ ॥୯॥

ନରଖ ଥଲେ ଚତ୍ତେ          କହ ହେ ପ୍ରଭୁ ମୋତେ
ମୋ ଜୀବ ପ୍ରତ ଆଶା ତୁଟି
ନଶ୍ଚେ କରୁଣାନଧି          ହେଲ ନର୍ଦ୍ଦୟ ବୁଦ୍ଧି
ବୋଲ ଯିଭୁବନେ ପ୍ରକଟି
ହେ ମହାପ୍ରଭୁ
ନଶ୍ଚେ ନର୍ଦ୍ଦୟ ହେବ ଯେବେ          ନଖିଲେ ଆଉ କକ ଥିବେ
ନାଗ ନୃପତ ସୁର          ସମୀର ନଧି ଧର
ଯେ ଯାହା ସତ୍ୟକୁ ଲଙ୍ଘିବେ
ହେ ମହାପ୍ରଭୁ ॥୧୦॥

ଟିକଏ ବଳମ୍ବିତ          ନ କର ପଣ୍ଡୁ ସୁତ
ପୋଷିତ ସଙ୍କଟୁ ତାରଲ
ଟେକ ଦୁଃସହ ଘୋର          ଦାରଦ୍ର୍ୟ ସୁଦାମାର
ଦର୍ଶନ ମାତ୍ରକେ ହରଲ
ହେ ମହାପ୍ରଭୁ
ଟେକ କରୁଣା କଟାକ୍ଷରେ          ଟିକାଏ ବଲୋକଲେ ମୋରେ
ଟଳବ କ ମହିମା          ସଂସାର ସୁଖସୀମା
ଏମନ୍ତ ବଗ୍ଭର ମନରେ
ହେ ମହାପ୍ରଭୁ ॥୧୧॥

ଠାବ ନ କଲ ଚତ୍ତେ          କଉଁ ଦୋଷକୁ ମୋତେ
ନରସ କରୁଛ ଗୋସାଇଁ
ଠାକୁର ହୋଇ ଭୃତ୍ୟ          ଠାରେ କଲେ ଏମନ୍ତ
ଆଉ କାହାର ଗତ କାହିଁ
ହେ ମହାପ୍ରଭୁ

ଠୁଳ ବିପତ୍ତି ଦେଖି ମୋର ଠିକେବା କରୁଛ ଅନ୍ତର
ଠଣ ପଦ୍ମଚରଣ ବନ୍ଦୁଁ ପ୍ରତକାରଣ
ଅଛୁ କେ ବ୍ରହ୍ମାଣ୍ଡ ଭିତର
ହେ ମହାପ୍ରଭୁ ।।୧୨।।

ଡେଇଥିଲ ଶ୍ରବଣ ଗଜ ଆର୍ଦ୍ଧ ବାହ୍ମଣେ
ଡାକଲ ମାନକେ ଶୁଣିଲ
ଡୋଳା ଗୋଚରେ ଥାଇ ଡାକଲେ ନ ଶୁଭଇ
କର୍ଣ୍ଣ କୁହର କ ମୁଦ ଲ
ହେ ମହାପ୍ରଭୁ
ଡାକ ବାଜୁଛି ଜଗତରେ ଡାକଲେ ତ ଶୁଣ କର୍ଣ୍ଣରେ
ଡରିଲ କ ମୋହର ବିପତ୍ତି ଦେଖି ଘୋର
ତେଣୁ ବା ନ ଶୁଣୁଛ ବାରେ
ହେ ମହାପ୍ରଭୁ ।।୧୩।।

ଢାଳେ ତୁମ୍ଭେ ବାହାରେ ଅଛୁ କେ ବ୍ରହ୍ମାଣ୍ଡରେ
କାହା'ଗେ ଜଣାଇବି ଆଉ
ଢାଳେ ବିପଦାର୍ଣ୍ଣବେ ଭାସୁଛି ଭୃତ୍ୟ ଏବେ
ତୁମ୍ଭ ପରାଏ ପ୍ରଭୁ ଆଉ
ହେ ମହାପ୍ରଭୁ
ଢମାଳ ପ୍ରାୟେ ମୋ ଉଦର ଢାଳେ ନମଣ ଚକ୍ରଧର
ଢଳ ନ ଯାଉ ଜୀବ ଦେଇ କରୁଣା ନାବ
ଉଦ୍ଧର ଧର ବଶ୍ୱମ୍ଭର
ହେ ମହା ପ୍ରଭୁ ।।୧୪।।

ଆହେ ହେ ମହାବାହୁ ବିପଦ ଚନ୍ଦ୍ର ରାହୁ
ଆଜ୍ଞା ଯେ ଦେଇଛ ଶ୍ରୀମୁଖେ
ଆରତ ଜନ ହେଲେ ଆରତରେ ଡାକଲେ
ମୁଁ ତାହା ନ ସହଇ ରେଖେ
ହେ ମହାପ୍ରଭୁ

ଆଉ ଆରତ ମୋହପରେ ଅଛୁ କେ ବ୍ରହ୍ମାଣ୍ଡ ଭିତରେ
ଆରତତ୍ରାଣ ତାହା ଜାଣ ହେ ଚଉବାହା
ପ୍ରତେତ ନାହିଁ ମୋ ମନରେ
ହେ ମହାପ୍ରଭୁ ।।୧୫।।

ତୁମ୍ଭେ ତ୍ରିତାପହର ତ୍ରିଭୁବନ ଈଶ୍ୱର
ପତିତ ଜନ ନିସ୍ତାରଣ
ତେଣୁ କରି ମୋହର ଭରସା ନିରନ୍ତର
ଯେଣୁ ମୁଁ ପତିତ ଭୂଷଣ
ହେ ମହାପ୍ରଭୁ
ତଥାପି କରୁଣା ନିଧାନ ତ୍ରାହି ନ କଲେ ଦୀନଜନ
ତେଣୁ ତୁମ୍ଭର ଦୀନ- ବଂଧୁ ନାମ କେତନ
ତେଜ ତ୍ରିଭୁବନ-ମୋହନ
ହେ ମହାପ୍ରଭୁ ।।୧୬।।

ଅସ୍ଥିର ହୋଉଛି ମନ ଯେହ୍ନେ ବିଜୁଳି ଘନ
ନଳିନୀ ଦଳ ଜଳପ୍ରାୟେ
ଥିଲି ଯେଉଁ ପ୍ରଭୁଙ୍କ ଆଶା ଉଦ୍ଧରିବାକୁ
ଦେଖି ସେ ପ୍ରଭୁର ନିର୍ଦ୍ଦୟ
ହେ ମହାବାହୁ
ଥିଲେ କେ ଅଛୁ ଜଗତରେ ଅଥବା କେ ଧରିବ ମୋରେ
ସ୍ଥିତି ଆଦି ପ୍ରଳୟେ ଯାହା ଆଜ୍ଞାରେ ହୁଏ
ସେ ପ୍ରଭୁ ନ ରଖିଲା ଠାରେ
ହେ ମହାପ୍ରଭୁ ।।୧୭।।

ଦୟା ସାଗର ବୋଲି ଦମ୍ଭ ତେଜି ଭଜିଲି
ଅଭୟ ଚରଣେ ତୁମ୍ଭର
ଦେଲ କାହିଁ ବିବୁଧ ପତି ପଦ ବିଶୁଦ୍ଧ
ମୋ କର୍ମେ ଦୟା ହିଁ ଦୁସ୍ତର
ହେ ମହାପ୍ରଭୁ

ଦୀନ ବନ୍ଧୁ ନାମ ତୁମ୍ଭର ଦ୍ୱିସପ୍ତ ଲୋକରେ ବିସ୍ତାର
ଦେଖି ଦେଖି ଦୁର୍ଗତି ଦେଉଛ ଦଣ୍ଡ ଅତି
ଏ କୃପା ହୋଇବ କାହାର
ହେ ମହାପ୍ରଭୁ ॥୧୮॥

ଧରିଛ ଏଡ଼େ ସୁଖ ମନେ ହେ ପଦ୍ମମୁଖ
ଅଭୟ ପଞ୍ଜରେ ପଶିଲେ
ଧରି ଦାରୁଣ ମୂର୍ତ୍ତି ହୋଇ ସନ୍ତୋଷ ଅତି
ବିଷମ ବିପଦ ଗ୍ରାସିଲେ
ହେ ମହାପ୍ରଭୁ
ଧରି ଯାହା ନାମ ମନରେ ଧ୍ରୁବ ପ୍ରହ୍ଲାଦ ନିସ୍ତାରିଲେ
ଧରି ଏଡ଼େ ଭରସା ପଢ଼ିତ ପ୍ରତି ଆଶା
କରିଛ ରଜନୀ ବାସରେ
ହେ ମହାପ୍ରଭୁ ॥୧୯॥

ନିଗୁଡ଼ି ସଙ୍କଟକୁ ପେଷ ସୁଦର୍ଶନକୁ
ଏବେ କି କାରଣେ ନପେଷ
ନିଷ୍ଟେ ନିରକ୍ଷ ନାଶ ଗଲେ ହେ ହୃଷୀକେଶ
ଏଥିକି ହୋଇବ ପୌରୁଷ
ହେ ମହାପ୍ରଭୁ
ନସହି ଆଶ୍ରିତ ବିଳମ୍ବ ନିସ୍ତାରିଛ ନୃପ କଦମ୍ବ
ନିଧନ ସମସ୍ତରେ ନିରକ୍ଷ ଜନଠାରେ
ଏବେ କି କାରଣେ ବିଳମ୍ବ
ହେ ମହାପ୍ରଭୁ ॥୨୦॥

ପରିହରି ସକଳ ଆଶା ହେ ଆଦିମୂଳ
ପଶିଛି ଶରଣ ତୁମ୍ଭରେ
ପ୍ରଭୁତ ଅବିସ୍ମର କରି ଦେଉଛ ଘୋର
ବିପଦ ସଙ୍କଟ ମୁଖରେ
ହେ ମହାପ୍ରଭୁ !

ପରାତ୍ପର ତୁମ୍ଭର ନାହିଁ ପରମ ଦୟାଳୁ ଗୋସାଇଁ
ପତିତଗତି ହୋଇ ପତିତ ଜନଠାଇଁ
ଏତେ ନିର୍ଦ୍ଦୟ କାହିଁପାଇଁ
ହେ ମହାପ୍ରଭୁ ॥୨୧॥

ଫେଡ଼ି କହିବ କେତେ ଭରସା ଅଛୁ ଯେତେ
ତୁମ୍ଭ ଶ୍ରୀଚରଣେ ମୋହର
ଫୁଲ୍ଲେନ୍ଦୀ ଈଷଣ ତୁମ୍ଭେତ ତାହାଜାଣ
ଜାଣି କରୁଛ କପାଁ ଦୂର
ହେ ମହାପ୍ରଭୁ
ଫନ୍ଦା ମୁଁ କରିଛୁ ତୁମ୍ଭକୁ ପାଇ ଦୁସ୍ତର ତରିବାକୁ
ଫଣି ଶୟନ ଦୀନ ବାନ୍ଧବ ହୋଇ ଭିନ୍ନ
କରୁଛ ନିରକ୍ଷ ଜନକୁ
ହେ ମହାପ୍ରଭୁ ॥୨୨॥

ବନଜ କରେ ଯାନ- ଚରଣ ବିଲୋକନ
କରି ପ୍ରମୋଦ ହେଉଥାଇଁ
ବିଷମ ସମୟରେ ମୋହ ପକ୍ଷପାତରେ
ପ୍ରତିକାର କରିବା ପାଇଁ
ହେ ମହାପ୍ରଭୁ
ବିଷମ ସଙ୍କଟ ପଡ଼ିଲା ବାରେ କି ଚକ୍ର ନ ଭେଦିଲା
ବିନାଶିବାକୁ ଗାଢ଼ ସଙ୍କଟମାନ ଦାଢ଼
ଚକ୍ର କି ବକ୍ରକୁ ଭଜିଲା
ହେ ମହାପ୍ରଭୁ ॥୨୩॥

ଭୂମି ଭାର-ହରଣେ ପତିତ-ନିସ୍ତାରଣେ
ଭୃତ୍ୟଜନ ତାରିବା ପାଇଁ
ଭାବେ ନୀଳକନ୍ଦରେ ବିଜେ କରିଛ କରେ
କମ୍ବୁ ଚକ୍ର ଭୂଷିତ ହୋଇ
ହେ ମହାପ୍ରଭୁ

ଭକ୍ତ ବତ୍ସଳ ତୁମ୍ଭ ବାନା　　ଭବଭୟକୁ ବଜ୍ରସେନା
ଭବ ସାଗରେ ଯେବେ　　ଭୃତ୍ୟ ଭାସିବ ଏବେ
ସେ ନିନ୍ଦା ତୁମ୍ଭଙ୍କୁ ହିଁ ସିନା
ହେ ମହାପ୍ରଭୁ ॥୨୪॥

ମହାପ୍ରଭୁ ଅନ୍ତର　　କଣଲେ ହେଁ ମୋହର
ତୁମ୍ଭ ବିନା ଦୋସର ନାହିଁ
ମୃଗଧ୍ଵଜ ଚକୋର　　ଚାତକ ଜଳଧର
ମୀନ ଜୀବନ ପ୍ରାପ୍ତ ହୋଇ
ହେ ମହାପ୍ରଭୁ !
ମୋରେ ଯେବେ ଦୟା ନୋହିବ　　ମୋ ଜୀବ କ୍ଷଣେ ନ ରହିବ
ମହତ କରି କହୁ-　　ଅଛୁ ହେ ମହାବାହୁ
ସବୁରି ସଂଶୟ ରହିବ
ହେ ମହାପ୍ରଭୁ ॥୨୫॥

ଯେ ନାମ ସୁମରଣେ　　ମରଣେ ଭୟ କ୍ଷଣେ
ନୋହେ ଦଣ୍ଡଧର ଦଣ୍ଡକୁ
ଜଗତ ନିସ୍ତାରଣ　　ଆଉଁ ଏତେ ଦାରୁଣ
ହୋଇଲ ବିପତ୍ତି କାଳକୁ
ହେ ମହାପ୍ରଭୁ
ଜୀବ ଯିବାର ବଡ଼ ସୁଖ　　ଜୀଇବା ସମ ନାହିଁ ଦୁଃଖ
ଯାହା ସାମନ୍ତ ଗୃହ-　　ବର୍ଗରେ ଅଧିକାଙ୍ଗୀ
ତାହା ସେବକର ଏ ଦୁଃଖ
ହେ ମହାପ୍ରଭୁ ॥୨୬॥

ରାଜୀବପଦ ଯାର　　ପାଷାଣ କରେ ନର
ଶୋକ କଳ୍ମଷ ନିବାରଣ
ରଙ୍କ ପ୍ରାପ୍ତ ତାହାର　　ପରଶୁର ହେବାର
ଏ ନିଜ ପ୍ରଭୁଙ୍କ ଭୂଷଣ
ହେ ମହାପ୍ରଭୁ

ରମା ଯାହାର ପ୍ରିୟବତୀ    ରସାଦ୍ଧ ତ୍ରୈଲୋକ୍ୟର ପତି
ରତିଏତ ସୁନ୍ଦର    ନୋହିଲ ମୋ ଉତ୍ତର
ଏମନ୍ତ ପ୍ରଭୁର ଏ ସ୍ଥିତି
ହେ ମହାପ୍ରଭୁ ।।୧୭।।

ଲଲାଟର ଲିଖନ    କେ କରିପାରେ ଆନ
ଏମନ୍ତ ଆଜ୍ଞା ହେବ ଅବା
ଲଭି ତୁମ୍ଭଙ୍କ ପଦ-    ପଣେ ହେ ରମା ପତି
କର୍ମକୁ ଯେବେ ଆଦରିବା
ହେ ମହାପ୍ରଭୁ ।
ଲୀଳାମାନଙ୍କେ ଏ ସଂସାର    ଲୁଚାସୁଚା ପ୍ରାପ୍ତେ ସଂହାର
ଲୋକକର୍ମକୁ ସହୁ    ସତେ କି ମହାବାହୁ
ଏମନ୍ତ ବିଘ୍ନର ମନର
ହେ ମହାପ୍ରଭୁ ।।୧୮।।

ବିଚାର କରି ଗୁରୁ-    ପୁତ୍ର ଶମନ ପୁରୁ
ଈପ୍ସିତ ମାନଙ୍କେ ଆଣିଲ
ବିଂଶକର ଅମର-    ବର କରିଣ ଦୂର
ବିନାଶି ବଧିକ ଜାଣିଲ
ହେ ମହାପ୍ରଭୁ ।
ବିଷମ ସଂକଟୁ ଉଦ୍ଧର    ବିଶ୍ୱ ସଂସାରୁ କର ପାର
ବିଶେଷେ ବାଞ୍ଛାନିଧି    ବାଞ୍ଛା କର ପ୍ରସିଦ୍ଧି
ବୋଲି ବହୁତ ବାଞ୍ଛା ମୋର
ହେ ମହାପ୍ରଭୁ ।।୧୯।।

ଶେଷ ବିରଞ୍ଚି ଶିବ    ସୁର ଆଦି ବାସବ
ଶୁକ ସନକ ସନାତନ
ସେବେ ଯେଉଁ ପଦ୍ମରେ    କୋଟି ଅଂଶେ ଲକ୍ଷରେ
ମୁଁ ଦାସ ପଣେ କି ଭଜନ
ହେ ମହାପ୍ରଭୁ ।

ସବୁ ଭରସା ଅଛୁ ଏଣୁ          ଶରଣ ନିସ୍ତାରଣ ଯେଣୁ
ଶୁଣିଅଛୁ ଆହୁର          କଥାଏ ଚନ୍ଦ କର
ସୁମେରୁ ସମ କର ରେଣୁ
ହେ ମହାପ୍ରଭୁ ।।୩୦।।

ଶୁଣି ତୁମ୍ଭେ ଭରସା          ବିଶ୍ରାମ ନାବ ଆଶା
ସେବିଛୁ ତୁମ୍ଭ ଶ୍ରୀ ଚରଣେ
ସୁଖ ସାଗର ହୋଇ          ଦୁଃଖ-ସାଗରେ ନେଇ
ମେଲି ଦେଇଛ ଅକାରଣେ
ହେ ମହାପ୍ରଭୁ ।
ସେବିଛୁ ତୁମ୍ଭ ପାଦ ଦୁଇ          ଶୋକସିନ୍ଧୁ ତରିବା ପାଇଁ
ଶିଶୁବତ୍ସ ଲାଞ୍ଛନ          କର ପ୍ରଭୁ କରଣ
କରୁଣା କଟାକ୍ଷେ ଅନାଇଁ
ହେ ମହାପ୍ରଭୁ ।।୩୧।।

ସେବକ ହୋଇ କରି          ପ୍ରଭୁ କୋପକୁ ଡରି
ଭରସି ଯେବେ ନ କହିବ
ଶୁଣ ମହିମା ମେରୁ          ଏ ଦୁଃଖ ଜଳଧିରୁ
କେମନ୍ତ ପ୍ରକାରେ ତରିବ
ହେ ମହାପ୍ରଭୁ ।
ସର୍ବଜ୍ଞ ପୁରୁଷ ଗୋସାଇଁ          ସକଳଜୀବ ହୃଦେ ଥାଇ
ସେବକ ଦୁଃଖ ଜାଣି          ଦୟା ନକଲେ ପୁଣି
ଆଉ ଜାଣିଛ ଅଛୁ କେହି
ହେ ମହାପ୍ରଭୁ ।।୩୨।।

ହୃଦୟେ ଅଛୁ ମୋର          ଏହୁ ଭବ ସାଗର
ତରିବ ତୁମ୍ଭ ମହିମାରୁ
ହେଉ ଅବା ସଂଶୟେ          ଯେଣୁ ମୋହ ବିଷୟେ
ଅକରୁଣା ମହିମା ମେରୁ
ହେ ମହାପ୍ରଭୁ ।

ହୋଇଲା କର୍ମ ମୋ ବଇରୀ          ହୃଦୟସ୍ଥ ଦହଇ ମୋହରି
ହେତୁ କର୍ମର ତୁମ୍ଭେ          ତେଣୁ କରି ମୁଁ ଦମ୍ଭେ
ଗୁହାରି କଲି ଦଇତାରି ହେ
ମହାପ୍ରଭୁ ।।୩୩।।

କ୍ଷମା ସାଗର ବୋଲି          ଶରଣ ମୁଁ ପଶିଲି
ଜଣାଇଲଇଁ ଶ୍ରୀ ପୟରେ
କ୍ଷଣେହେଁ ମୋହ ମନ          ନରହେ ତୁମ୍ଭ ଧ୍ୟାନ
ଗୁଣ ଗାୟନ ମାନଙ୍କରେ
ହେ ମହାପ୍ରଭୁ ।
କ୍ଷୋଭ ଯେବେ ମନେ ନୁହନ୍ତା          କ୍ଷଣେ ହେ ନାମ କେ ଘୁଡନ୍ତା
କ୍ଷାର ଦୀନ ପାମର          କୃଷ୍ଣ କପାଇଁ ଘୁର
ଭବସାଗରକୁ ତରନ୍ତା
ହେ ମହାପ୍ରଭୁ ।।୩୪।।

**

**

# ଆହେ ନୀଳାଚଳ ନାୟକ

## ଦୀନକୃଷ୍ଣ ଦାସ

(ସପ୍ତଦଶ ଶତାବ୍ଦୀ)

[ ରାଗ—ଖରହରପ୍ରିୟା ]

ଆହେ ନୀଳାଚଳ ନାୟକ
ଦୀନ-ଅକଞ୍ଚନ-ସୁଖ ଦାୟକ ।।ଘୋଷା।।

ଚନ୍ଦ୍ର କାନ୍ତ ଜିଣି କମନୀୟ ଠାଣି
କାହ୍ନା କଳେବର କି ଜକଜକ
ଆର୍ତ୍ତୀ ଜନ କର ଆର୍ତ୍ତ ବିଧ୍ୱଂସନେ
ମହା ବାହୁ ପ୍ରସାରିଛ କାଳିକ ।।୧।।

ଧବଳ କମଳ ନୟନ ଯୁଗଳ
ଚାହାଁଣୀ ଭଙ୍ଗିମା ତ ଅତିରେକ
ଦଶନ ବସନ ରଙ୍ଗିମା ଅତୁଳ
ପ୍ରସନ୍ନମୟ ଶ୍ରୀକଳା ଶ୍ରୀମୁଖ ॥୨॥

କପାଳରେ ସୁନାଚିତା ସୁଶୋଭିତା
ତହିଁକି ପୁଣି କସ୍ତୁରୀ ତିଳକ
ଚନ୍ଦନର ବିନ୍ଦୁ କି ସେ ବାଳଇନ୍ଦୁ
ଅତ୍ୟନ୍ତ ଘଟଣ ସେ ତ୍ରିପୁଣ୍ଡ୍ରକ ॥୩॥

ଶ୍ରବଣ ଯୁଗଳେ ମକର କୁଣ୍ଡଳ
ଖେଳଇ ସେ ଗଣ୍ଡମଣ୍ଡଳ ପାଖ
କରରେ କଚଟି କଙ୍କଣ ବାହୁଟି
ହୃଦୟରେ ବ୍ୟାଘ୍ରନଖ ପଦାକ ॥୪॥

କଣ୍ଠେ ବିଲମ୍ବିତ ମଣିମୟ ହାର
କଉସ୍ତୁଭ ଦୀପ୍ତିମନ୍ତ ଝଲକ
କଳିତ ଲଳିତ ବାସ ବନମାଳ
ବୈଜୟନ୍ତୀମାଳ ଆଜାନୁଲମ୍ବକ ॥୫॥

କଷ୍ଟ ଦୁଷ୍ଟ ବିନାଶନ ଶ୍ରୀଆୟୁଧ
ଶଙ୍ଖ କମଳ ସୁଦର୍ଶନ ଚକ୍ର
କଟିକି ଶୋଭଇ କନକ କିଙ୍କିଣୀ
ତହିଁ ସଜେ ପୀତପଟ୍ଟ ଝଟକ ॥୬॥

କିବା ଦେବା ଲକ୍ଷ କରୁଣା କଟାକ୍ଷ
କୋଟି ମଦନର ଧନୁ ଶାୟକ
ମୋହନ ବେଶକୁ ଭକ୍ତେ ଦେଖି ଦେଖି
ସର୍ବାଙ୍ଗରେ ଜାତ ହୁଏ ପୁଲକ ॥୭॥

ଭଣେ ଦୀନ କୃଷ୍ଣ ହୋଇଣ ସନ୍ତୁଷ୍ଟ
ଅରୁଣ ପଙ୍କଜ ଚରଣ ରଙ୍କ
ବଳସ୍ଥାର ଭୁଜ ଗ୍ରସ୍ଥା ତଳେ ପ୍ରଭୁ
ଆହ୍ଲାଦ ହୃଦୟେ ଦାସକୁ ରଖ ।।୮।।

**

**

# ଜୟ ଜୟ ଜଗନ୍ନାଥ

## ଦୀନକୃଷ୍ଣ ଦାସ

(ସପ୍ତଦଶ ଶତାବ୍ଦୀ)

[ରାଗ-କଳସା]

ଜୟ ଜୟ ଜଗନ୍ନାଥ ନୀଳଗିରି ପତି
ଅଭିନବ ଜଳଧର ସୁନ୍ଦର ମୂରତି ହେ ।।୧।।
ସୁଗନ୍ଧ ଠାଣିରେ ଶୋହେ ସୁବର୍ଣ୍ଣର ସୂତା
ଚୂଳରେ ଦୟଣା ଗର୍ଭ କସ୍ତୁରୀର ଚିତା ହେ ।।୨।।

ଢଳ ଢଳ ଦଶଇ ମୁକୁତା କଣ୍ଠିମାଳ,
ଶ୍ରବଣ ପୁଟରେ ବେନି ମର୍କତ କୁଣ୍ଡଳ ହେ ।।୩।।

ନବରତ୍ନ ପଦକ ହୃଦରେ ଭଲ ସାଜେ,
ମର୍କତ କଂକଣ ବେନି ଭୁଜରେ ବିରାଜେ ହେ ।।୪।।

ଡମ୍ବରୁ ମଣ୍ଡାକୁ ଶୋଭା ଦବ୍ୟ ଓଢ଼ିଆଣି,
ଶ୍ରୀ ଅଙ୍ଗେ ଚନ୍ଦ୍ର, ଚନ୍ଦନ ନେଇ ଗୁରୁ ଠାଣି ହେ ।।୫।।

ରୂପକୁ ନୁହଇ ଲକ୍ଷ କୋଟିଏ ମଦନ
ରଙ୍ଗ ଅଧରକୁ ଶୋହେ ଡାଳିମ୍ବ ଦଶନ ହେ ।।୬।।

କଟତଟି ବାହୁଟି ଯେ ବିବିଧ ରତ୍ନ ଜଡ଼ି,
ଦମ୍ଫୁଣାର ଧଣ୍ଟାମାଳ ହୃଦ ଯାଏଁ ପଡ଼ି ହେ ॥୭॥

କଳା ମୁଖ ଗୋଟିକି ସୁନ୍ଦର ଚକାଡୋଳା
ପଦ୍ମଫୁଲ ଭିତରେ କି ଭୃଙ୍ଗ କରେ ଖେଳା ॥୮॥

ଶଙ୍ଖ-ଚକ୍ର ଗଦାପଦ୍ମ ଚତୁର୍ଭୁଜେ ଶୋହେ
କୋଟିଏ କନ୍ଦର୍ପ ରୂପ ତ୍ରିଭୁବନେ ଶୋହେ ହେ ॥୯॥

ଭକତ ଜନ ଶଙ୍କାଳି ମୁକତିର ଘର,
ଶରଣ ମାଗଇ ଦୀନ କୃଷ୍ଣ ଦାସ ତ୍ବର ହେ ॥୧୦॥

**

**

## ଜଗବନ୍ଧୁ ପରି ଜଣେ ସାମନ୍ତ

'ଦୀନକୃଷ୍ଣ ଦାସ'

(ସପ୍ତଦଶ ଶତାବ୍ଦୀ)

ଜଗବନ୍ଧୁ ପରି ଜଣେ ସାମନ୍ତ
ନାହିଁ ନାହିଁତ
ଚଉଦ ଭୁବନ ବାରତା ଜାଣନ୍ତି
ଚକ୍ଷୁରେ ହେଦନ୍ତି ଆରତ ॥ଘୋଷା॥

ଯେତେବେଳେ କୃଷ୍ଣ ଗୋପପୁରେ ଥିଲେ
ଅକ୍ରୁର ଆଣିଣ ଗଲା ତ
ଗାଈ ଦୁହୁଁ ଦୁହୁଁ କେଶ ଫିଟିଗଲା
ଚତୁର୍ଭୁଜ ହେଲେ ଅନନ୍ତ ॥୧॥

ସୁଗ୍ରୀବର ସଙ୍ଗେ ମଇତ୍ର ହୋଇଣ
ବାଲୀକି ବିନାଶ କଲେ ତ
ରାବଣ ଭ୍ରାତା ଯେ ଶରଣ ପଶିଲା
ଲଙ୍କା ଗଡ଼ ତାକୁ ଦେଲେ ତ ॥୨॥

କୁରୁ ସଭାତଳେ ଦ୍ରୌପଦୀ ଚନ୍ଦ୍ରଳା
କୋଟି ବସ୍ତ୍ର ଦିଆଇଲେ ତ
ଭାରତ ଯୁଦ୍ଧରେ ଭରଦ୍ୱଆ ପକ୍ଷୀ
ଘଣ୍ଟ ଘୋଡାଇ ରଖିଲେତ ॥୩॥

ଏମନ୍ତ ସାମନ୍ତ ତ୍ରିଭୁବନେ ନାହିଁ
ନାଶନେ ଆରତ୍ତି ଆରତ
କହେ ଦୀନକୃଷ୍ଣ ଦାସ ଯେ ଶ୍ରୀକୃଷ୍ଣ
ପଦ୍ମପାଦ ଚନ୍ଦ୍ରେ ଧ୍ୟାୟୀ ତ ॥୪॥

**

**

## ପାହୁଲାକ ନଶି

### ଦୀନକୃଷ୍ଣ ଦାସ

(ସପ୍ତଦଶ ଶତାବ୍ଦୀ)

[ଯୋଗ ବୃତ୍ତ]

'ପାହୁଲାକ ନଶି ପହରେକ ଅଛୁ
ଘନ ଘନ ଶଙ୍ଖ ଫୁରୁଛୁ
ରତ୍ନ ପଲଙ୍କ ତେଜିଣ ଜଗନ୍ନାଥ
ସିଂହାସନେ ବିଜେ କରୁଛୁ ॥୧॥

ସ୍ୱର୍ଗକୁ ଅର୍ଗଳ ଫିଟିଲା କବାଟ
ସ୍ୱର୍ଗ ଅପସରୀ ଆସୁଛୁ

ହରହର ଇନ୍ଦ୍ର କୁଶ କେତୁ ବ୍ରହ୍ମା
ହରେ ରାମ ରାମ ଭାଷୁଛୁ ।।୨।।

ଦାନ୍ତୁଡ଼ି ଯେନ କେ ନଯୋଗର ଲୋକ
ଗ୍ରାମୁକୁ ବୋଲଣ ଆସୁଛୁ
ବାସୀ ବସନ ମାନ ଝାଡ଼ି ଝୁଡ଼ିକେ
କର୍ପୁରର ଧୂଳି ଘେନୁଛୁ ।।୩।।

ଚନ୍ଦ୍ର ଦେବତା ନଶାର ଅଧିପତି
ସେହି ଦର୍ଶନକୁ ଉଇଁଛୁ
ଲଙ୍କାର ସଜ୍ଜନ ନାମ ବିଭୀଷଣ
ସେ ଯେ ଆଟ ଘେନ ଧାଇଁଛୁ ।।୪।।

ପାର୍ବତୀଙ୍କି କୋଳେ ଘେନ ସଦାଶିବ
ଆନନ୍ଦରେ ଉଦ୍ଧି ଆସୁଛୁ
ସବୁ ଭୂତମାନ ସଙ୍ଗତରେ ଘେନ
ବାବନାଭୂତ ହିଁ ଧସୁଛୁ ।।୫।।

ପାତାଳପୁର ନାଗ ଲୋକ ସହିତେ
ଶେଷ ଦର୍ଶନକୁ ଆସୁଛୁ
ଚରାଚରଙ୍କର କଲ୍ମଷ ପଟଳ
ସେହି ଦରଶନ ନାଶୁଛୁ ।।୬।।

ଉଚ ସ୍ୱର ଡାକ ଫିଟିଲା କବାଟ
କେହି ପେଲା ପେଲ ହେଉଛୁ
ଜଳୁଛୁ ଚନ୍ଦ୍ରଉଦଆ ଯେ ଦାନ୍ତୁଡ଼ି
ଶ୍ରୀ ମୁଖକୁ ଶୋଭା ପାଉଛୁ ।।୭।।

ଦାନ୍ତୁଡ଼ି ଘେନ କେ ନଯୋଗର ଲୋକ
ଗ୍ରାମୁକୁ ବୋଲଣ ଧାଇଁଛୁ
ଦାନ୍ତକାଠି ଥୋଇ ଦର୍ପଣ ଦେଖାଇ
ଶ୍ରୀ ମୁଖ କେହି ପଖାଳୁଛୁ ।। ।।

ପ୍ରଭୁଙ୍କର ଛଡ଼ା ତୁଳସୀ ଚନ୍ଦନ
ଯେତନ କରି କେହୁ ଧାଇଁଛୁ
ଜଗମୋହନରେ ଛୁଡ଼ା ହୋଇ କେହୁ
ଧର ଧର ବୋଲି ଯାଚୁଛୁ ॥୯॥

ଉଠ କନା ମନ! ଧରୁଛୁ ଚରଣ
ଗହଳ ହୋଇ ଯେ ଆସୁଛୁ
କାଳିଆ କାହ୍ନୁକୁ ବେଗେ ଦେଖିଯିବା
ସୁଖରେ ଦର୍ଶନ ମିଳୁଛୁ ॥୧୦॥

ଆନନ୍ଦରେ କେହୁ କର ପ୍ରସାରଣ
ତୁଣ୍ଡେ ଖାଇ ମୁଣ୍ଡେ ପୋଚୁଛୁ
ସୁଦର୍ଶନ ଚକ୍ର ଗୃହିଁ କରି ତହିଁ
ଦୀନକୃଷ୍ଣ ଦାସ ଭାସୁଛୁ ॥୧୧॥

**

**

# ଜୟ ଜଗବନ୍ଧୁ

## ଦୀନକୃଷ୍ଣ ଦାସ

(ସପ୍ତଦଶ ଶତାବ୍ଦୀ)

[ରାଗ-କାମୋଦୀ]

ଜୟ ଜଗବନ୍ଧୁ ହେ ଯଦୁ ନନ୍ଦନ
ବ୍ରଜବାଳୀ ହୃଦତଟ ଚନ୍ଦନ ॥ଘୋଷା॥

ବଡ ଦେଉଳେ ବିହାର ବଡଚଡା ବଡଚୂଳ
କି ଶୋଭା ଦିଶୁଛୁ କଳାବଦନ ॥୧॥

ସେ ଯେଉଁ ଅଳକା ପନ୍ତି ଦେଖି ଭୁଲି ଯିବ ମତି
ମୁନିଜନଙ୍କର ମନ ମୋହନ ॥୨॥

ବଡ ବଡ ଚକା ଆଖି          ବଳଆର ଭୃଲ ଦେଖି
ତହିଁରେ ରହିଲା ଲାଗି ମୋ ମନ ॥୩॥

ସେ ଯେଉଁ ରଙ୍ଗ ଅଧର          ପୁଣ ରହିଛୁ ମଧୁର
ନାସେ ଗଜମୋତି ଅତି ଶୋଭନ ॥୪॥

କଟୀତଟେ ପାଟ ଝୁମ୍ପା          ଓଡ଼ଆଣି ତନୁକମ୍ପା
କି ଶୋଭା ଦିଶୁଛି ରେଖା କୁନ୍ଦନ ॥୫॥

ଶ୍ରୀ ଜଗନ୍ନାଥ ଚରଣେ          ଚିତ୍ତ ରହୁ ଅନୁକ୍ଷଣେ
ଦୀନକୃଷ୍ଣ ଦାସଙ୍କର ବଖାଣ ॥୬॥

**

**

# ଜୟ ଜନାର୍ଦ୍ଦନ

## ଦୀନକୃଷ୍ଣ ଦାସ

(ସପ୍ତଦଶ ଶତାବ୍ଦୀ)

ଜୟ ଜନାର୍ଦ୍ଦନ          ଭବଭୟ ଭଂଜନ
ପୀତ ବସନ ବନମାଳୀ
ଦୈତ୍ୟ ବିନାଶନ          ସତ୍ୟ ସନାତନ
ଅତୁଳ ପ୍ରତୁଳ ଯଶ ଶାଳୀ ॥ଘୋଷା॥

ପୁରଟ ମୁକୁଟ ଧାରୀ          ଶକଟ-ଚୟ ହାରୀ
ପ୍ରସ୍ଫୁଟ ପଙ୍କଜ ଧାରୀ
ଶ୍ରୀ ପାଦ ପଦ୍ମ ତବ          ଯା'ର ମୂଳ ବିଭବ
ତା'ର କାହାକୁ ହେ ମୁରାରି ॥୧॥

ବ୍ରଜ ନରେନ୍ଦ୍ର ସୁତ          ଗୋପୀନାଥ ଅଚ୍ୟୁତ
ହେ ବନ୍ଧୁ ପାତକ ହାରି

କମଳା ଦେବୀକାନ୍ତ      ଜୟ ଜଗନ୍ନାଥ
ଶଙ୍ଖରଥାଙ୍ଗ ଗଦାଧାରୀ ।।୨।।

ଜୀବନ ବାନ୍ଧବ      ମୁକୁନ୍ଦ ମାଧବ
ବୈକୁଣ୍ଠ ଭବନ ବିହାରୀ
ପତିତ ପାବନ      ମାନ ଉଦ୍ଧାରଣ
କେଶବ କୃଷ୍ଣ କଂସାରି ।।୩।।

ଲଙ୍କା ନିବାରଣ      ବାରଣ ତାରଣ
ବଳି ଦୁଆର ଭିକାରି
ଅଭୟ ଚରଣ      ପଙ୍କଜେ ଶରଣ
ଦୀନକୃଷ୍ଣ ମଧୁହାରୀ ।।୪।।

**

**

# ଆହେ ନୀଳ ଶଇଳ···

## ସାଲବେଗ

(ସପ୍ତଦଶ ଶତାବ୍ଦୀ)

[ରାଗ-ପ୍ରଭାତ ଭୈରବ]

ଆହେ ନୀଳଶଇଳ ପ୍ରବଳମତ୍ତ ବାରଣ
ମୋ ଆରତ ନଳିନୀ ବନକୁ କର ଦଳନ ।।ଘୋଷା।।

ଗଜରାଜ ଚିନ୍ତା କଲା ଥାଇ ଘୋର ଜଳେଣ
ଚକ୍ର ପେଶି ଗ୍ରାହ୍ନାଶି ଉଦ୍ଧରିଲ ଆପଣ ।।୧।।

ଘୋରବନେ ମୃଗୁଣୀକି ପଡ଼ିଥିଲା କଷଣ
କେଡ଼େ ବଡ଼ ବିପତ୍ତିରୁ କରିଅଛ ତାରଣ ।।୨।।

କୁରୁସଭାତଳେ ଶୁଣି ଦ୍ରୌପଦୀର ଜଣାଣ
କୋଟି ବସ୍ତ୍ର ଦେଇ ହେଲେ ଲଜ୍ଜା କଲ ବାରଣ ।।୩।।

ରାବଣର ଭାଇ ବିଭୀଷଣ ଗଲା ଶରଣ
ଶରଣ ସମ୍ଭାଳି ତାକୁ ଲଙ୍କେ କଲ ରାଜନ ।।୪।।

ପ୍ରହଲାଦ-ପିତା ସେ ଯେ ବଡ଼ ଦୁଷ୍ଟ ଦାରୁଣ
ସ୍ତମ୍ଭରୁ ବାହାରି ତାକୁ ବିଦାରିଲ ତକ୍ଷଣ ।।୫।।

କହେ ସାଲବେଗ ହୀନ ଜାତିରେ ମୁଁ ଯବନ
ଶ୍ରୀରଙ୍ଗାଚରଣ ତଳେ କରୁଅଛି ଜଣାଣ ।।୬।।

**

**

# ଅହେ ନୀଳଗିରି

## ସାଲବେଗ

(ସପ୍ତଦଶ ଶତାବ୍ଦୀ)

(ରାଗ-କାମୋଦୀ)

ଆହେ ନୀଳଗିରି
ତୁମ୍ଭ ଶ୍ରୀଭୁଜେ ଦସ୍ତା ଜଣା କେଶ କେଶ ॥ଘୋଷା॥

ତୁଳସୀ ଚଉରା ପାଖେ ଜଗି
ବସି ଧ୍ୟାଉଛନ୍ତି କେତେ ଯୋଗୀ
ବ୍ୟାଘ୍ର ଚର୍ମ ପାତି ସ୍ତୁତି କରୁଛନ୍ତି
ଜପୁଛନ୍ତି ନାମ ସଂଖ୍ୟା କରି ॥୧॥

ବଡ଼ ଦାଣ୍ଡ ଦେଖି ହେଲି ତୋଷ
ରେଣୁ ମାତ୍ର ତେଣୁ କଲି ଗ୍ରାସ
ଷିଷ୍ଟି ଖେଚଡ଼ିରେ ମନ ନ ବୋଧଇ
ଟଙ୍କ ତୋରାଣିରେ ମନ ତୋଷ ॥୨॥

ସିଂହଦ୍ୱାରେ ବାଜେ ବେତ ବାଡ଼ି
ବାଜନ୍ତେ ପାତକ ଯାଏ ଛୁଡ଼ି
ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ନିମନ୍ତେ
ଏକକୁ ଆରେକ ହୁଡ଼ାହୁଡ଼ି ॥୩॥

ବାଇଶି ପାବଚ୍ଛେ ଗଲି ସୁଖେ
କୈବଲ୍ୟ ପସରା ବେଢ଼ା ପାଖେ
ଚଣ୍ଡାଳୁଁ ବ୍ରାହ୍ମଣ ଶୁଦ୍ର ପରସନ୍ତେ
କୈବଲ୍ୟ ଭୁଞ୍ଜନ୍ତି ମୁଖେ ମୁଖେ ॥୪॥

ରୋହିଣୀ ପାଦୁକ କୁଣ୍ଡ ରଜ
ସିଂହ ମାଡ଼ି ବସିଅଛୁ ଗଜ
ସତେ କି ଏ ନେତ୍ର ସୁଫଳ ହୋଇବ
କାକ ପକ୍ଷୀ ହେଲ ଚତୁର୍ଭୁଜ ।।୫।।

ଗରୁଡ଼ ପଛରେ ରହି ଦେଖ
କି ଶୋଭା ପାଉଛୁ ପଦ୍ମମୁଖ
ହୀର ନୀଳା ମୋତି ମାଣିକ୍ୟ ଜଳୁଛୁ
ହୃଦେ ଲମ୍ବି ଅଛୁ ବ୍ୟାଘ୍ରନଖ ।।୬।।

ଶ୍ରୀ ଜଗନ୍ନାଥଙ୍କ ଠାକୁରାଣୀ
ସୁବର୍ଣ୍ଣ ଥାଳିରେ ଅର୍ଘ୍ୟ ଆଣି
କଲାଶ୍ରୀ ମୁଖକୁ ବନ୍ଦାଣ କରନ୍ତି
ସାଧୁ ସନ୍ଥ ଦ୍ୟନ୍ତି ହରିଧ୍ୱନି ।।୭।।

କହେ ସାଲବେଗ ହୀନ ଜାତି
ଶ୍ରୀରଙ୍ଗା ଚରଣେ ରହୁ ମତି
ଶ୍ରୀ ଜଗନ୍ନାଥଙ୍କୁ ଜଣାଣ କରୁଛି
ଦୟାକର ବାରେ ଲକ୍ଷ୍ମୀପତି ।।୮।।

**

**

# ବାଛି କେ ନାମ ଦେଲ୍ ଦୟାନିଧି

**ସାଲବେଗ**

(ସପ୍ତଦଶ ଶତାବ୍ଦୀ)

[ରାଗ-ବଙ୍ଗଳାଶ୍ରୀ]

ବାଛି କେ ନାମ ଦେଲ ଦୟାନିଧି
ଦଇତାରି ଦୟାନିଧି ଦୟାଳୁ ରାମହରି
ନିର୍ଦ୍ଦୟ କପାଁ ହେଲ ନିରବଧି ।।ଘୋଷା।।

ଭଜିଣ ସେ ପଦାମ୍ବୁଜ ହେଲେ ତରି ଗଲ୍ ଦ୍ୱିଜ
କାହ୍ନୁଁ ସୁମରିଲ ତାର ବଳ ବୁଦ୍ଧି ।।୧।।

ଚିନ୍ତିଲ୍ ପ୍ରହ୍ଲାଦ ଭକ୍ତ ପାଇଁ ବିଷାଦ
ସ୍ତମ୍ଭରୁ ବାହାରି ତା' ପିତାକୁ ବଧି ।।୨।।

ଗୋପେ ରଖି ଗୋକୁଳ ଗିଳିଲ୍ ଦାବାନଳ
କଲ ଗୋପୀଙ୍କର କାମନା ସିଦ୍ଧି ।।୩।।

କହେ ସାଲବେଗ ହୀନ ଏହି ମୋର ନିବେଦନ
ସେ ପାଦେ ଚିତ୍ତ ରହୁ ନିରବଧି ।।୪।।

**

**

# ଜଗ ମୋହନ ରୂପ ଧରିଛ

**ସାଲବେଗ**

(ସପ୍ତଦଶ ଶତାବ୍ଦୀ)

ଅଣସର ଘରେ ଥିଲ
ଆଜ ବାହାର ହେଲ
କି ଭଙ୍ଗୀ ଭଙ୍ଗୀ କରି ଗୃହୁଁଛ ॥୧॥

ଶ୍ରୀ ଭୁଜେ ଭୁଜ ପେଲି
ମତ୍ତଗଜ ପ୍ରାୟେ ଝୁଲି
ମହ ପାତକ ମାନ ଦହୁଛ ॥୨॥

ମୃଦୁ ମଧୁର ହାସ
ଅଧରେ ଜଗଦୀଶ
ଢନ୍ନ ପୁରକୁ ଯାଚି ଦେଉଛ ॥୩॥

ଅତି ମୋହନ ବେଶ
ଧରି ନୀଳାଦ୍ରି ବାସ
ରହି ଢନ୍ନ ପୁରକୁ ତାରୁଛ ॥୪॥

କହେ ସାଲବେଗ ହୀନ
ଏତ ଜଗ ମୋହନ
ଜଗମୋହନ ରୂପ ଧରିଛ ॥୫॥

**

**

# ଆହେ ନୀଳାଚଳ ବାସୀ

## ସାଲବେଗ

(ସପ୍ତଦଶ ଶତାବ୍ଦୀ)

ଆହେ ନୀଳାଚଳ ବାସୀ
ଶୋକ ଜଳଧିରେ ଗଲି ଭାସି ॥ଘୋଷା॥

ବାରଣ ଭୟକୁ ବାରଣ କର ହେ
ଶରଣ ପଞ୍ଜର ବାନା
ଆରତ ନାଶନ ଖଳ ବିନାଶନ
ବାରେ ହୁଅ ବକ୍ର ସେହ୍ନା ॥୧॥

ଜଗତ ଯାକରେ ଡିଣ୍ଡିମ ବାଜୁଛି
ଉଡ଼େ ଅବଧୂତ ବାନା
ମୃଗୁଣୀ ଆରତ ଖଣ୍ଡିଲ ହେ ନାଥ
ପଡ଼ତ ଭୟ ଭଞ୍ଜନା ॥୨॥

ଧଇର୍ଯ୍ୟରେ ମେରୁ ନାମ କଳ୍ପତରୁ
ତୃଷ୍ଣା ଶୀତ ହେଲି ସିନା
ଅରୁଣ ଚରଣ ଆଶ୍ରେ କଲଠାରେ
ବୁଡ଼ିଲା ମୋର ଚେତନା ॥୩॥

ମୁଁ ଅବା ଅପ୍ରାଧୀ ହେ କୃପା ବାରଧି
ଥରେ ନୋହିଲ କରୁଣା
କହେ ସାଲବେଗ ପ୍ରଭୁ ପଣକୁ ଏ
ଦଶିବ ବହୁତ ଊଣା ॥୪॥

**

**

# କାଳିଆ ଧନ

## ସାଲବେଗ

(ସପ୍ତଦଶ ଶତାବ୍ଦୀ)

କାଳିଆ ଧନ, ତୋ' ଲାଗି ଯାଉ ଏ ଜୀବନ
ବାରେ ନ ଦେଲୁ ଦରଶନ !
କାଳିଆ କାଳିଆ ନିପଣ୍ଟ କାଳିଆ ପିନ୍ଧିଛୁ ଝୀନପଟନ
କାଳିଆ ଅଙ୍ଗରୁ ବହେ ଶ୍ରମଝାଳ କାଳନ୍ଦୀ ନଦୀର ପାଣି ।।୧।।

ନନ୍ଦଘୋଷ ରଥେ ବସିଛୁ କାଳିଆ ଜଗତ ମୋହିବା ପାଇଁ
ହରି ହରି ବୋଲି ଶବଦ ଶୁଭୁଛୁ ମନରେ ଆନନ୍ଦ ହୋଇ ।।୨।।

ଅଣ୍ଟା ଗୋଟି ତୋର ଡମ୍ବରୁ ଆକାର ଗଢ଼ିଛୁ କେଉଁ ବନ୍ଧାଣି
ଗୃଳଗୋଟି ତୋର ମତ୍ତ ଗଜ ପ୍ରାୟେ ଗୃହାଣୀ ତୋ ସିଂହଠାଣି ।।୩।।

ଏ ଗୋପପୁରରେ ଯେତେକ ବାଳକ ସମସ୍ତେ ଧରନ୍ତି ତାଳ
ସର୍ବ ଗୋପୀ ମୁଣ୍ଡେ ଫୁଲ ଖଣ୍ଡେ ଖଣ୍ଡେ କୃଷ୍ଣ ଶିରେ ଜାମୁଡାଳ ।।୪।।

ସେ ପାଖେ ଚଉରି ଏ ପାଖେ ଚଉରୀ ମଝିରେ ଗୁଞ୍ଜରି ମାଳ,
ଶ୍ରୀ ଜଗନ୍ନାଥଙ୍କ ଶ୍ରୀ ପାଦେ ଶରଣ କହେ ସାଲବେଗ ହୀନ ।।୫।।

**

**

# କେଣେ ଘେନି ଯାଉଛ

## ସାଲବେଗ

(ସପ୍ତଦଶ ଶତାବ୍ଦୀ)

କେଣେ ଘେନି ଯାଉଛ ଜଗନ୍ନାଥଙ୍କୁ
ଆମ୍ଭେ ଦର୍ଶନ କରିବୁ କାହାକୁ ? ॥୦॥

ଖୁଣ୍ଟିଆ ଡାକ ଦେଲେ ପହଣ୍ଡି ବିଜେ ହେଲେ
ବିଜୟ କର ପ୍ରଭୁ ଗୁପକୁ,
ଆମ୍ଭେ ଦର୍ଶନ...... ॥୧॥

କୁଳବଧୂଙ୍କ ରଡ଼ି ପଣ୍ଡାଏ ଗଡ଼ାଗଡ଼ି
ବିଧାତା ବାମ ହେଲା ଆମ୍ଭଙ୍କୁ
ଆମ୍ଭେ ଦର୍ଶନ ..... ॥୨॥

ବଡ ଦେଉଳରୁ ବାହାର ଶଗଡ଼ରେ ବିଜେ କର
ରେଣୁ ଯେ ଗଡ଼ୁଥିବ ଶ୍ରୀ ମୁଖକୁ
କହଇ ସାଲବେଗ ନିର୍ମାଲ୍ୟ କାହୁଁ ହେବ
ଧିକ ଧିକ ଆମ୍ଭ ଜୀବନକୁ
ଆମ୍ଭେ ଦର୍ଶନ...... ॥ ॥

**

**

# ଚାଲ ସଖୀ ଅମ୍ଭେ ଦର୍ଶନ କରିବା

## ସାଲବେଗ

(ସପ୍ତଦଶ ଶତାବ୍ଦୀ)

ଚାଲ ସଖୀ ଆମ୍ଭେ ଦର୍ଶନ କରିବା
ନୀଳଗିରି କାଳିଆକୁ
କେଉଁ ସୁରପତି ବେଶ କରିଅଛୁ
ଗିରିବର ଚୋଳିଆକୁ
ସେ ଯେ ଶ୍ରୀମୁଖ ଶୋଭା
ଶିରେ ସୁନାସୂତା କେଶ କେଶ ॥୧॥

ଶ୍ୱେତ ପଦ୍ମ ଆଖି ଦେଖିଲେ ଗୋ ସଖୀ
ଚିତ୍ତ କି ବାହୁଡ଼େ ଆଉ
କର୍ଣ୍ଣରେ କୁଣ୍ଡଳ ଦିଶେ ଝଲଝଲ
କଉସ୍ତୁଭ ଦାଉ ଦାଉ
ସେ ଯେ ଦୁଆ ବୃଷାନ,
ମିଶାମିଶି ବରନଧି ଫଳ ॥୨॥

ଶଙ୍ଖ ଚକ୍ର ଗଦା ପଦ୍ମ ମହାପ୍ରଭୁ
ଧରିଛନ୍ତି ଆଣ୍ଠୁ କରି
ଦୁଃସହ ଦୁର୍ଗତି ଗ୍ରହ ପୀଡ଼ା ମାନେ
ଆଉ କି ପଶିବେ ଡରି
ସେ ଯେ ଦୟାସାଗର
ତାଙ୍କ ପଦ୍ମ ପାଦେ ଲୟ କର ॥୩॥

ଶ୍ରୀ ପୁରୁଷୋତ୍ତମ ଦର୍ଶନ କରିବା
ଖାଇବା ଛଡ଼ା ତୁଳସୀ

କହେ ସାଲବେଗ ସିଂହଦ୍ୱାର ଠାରେ
ହୋଇଥିବା କ୍ଷେତ୍ରବାସୀ
ସେ ଯେ ଆରତ୍ତ ଦାଣ
କାଳଗଜକୁ ସିଂହ ପ୍ରସ୍ଥାଣ
ଘୁଲ୍ ଘୁଲ୍ ପଶିବା ଶରଣ ॥୪॥

**

## ଏକା ତୋ ଭକତ ଜୀବନ

### ସାଲବେଗ

(ସପ୍ତଦଶ ଶତାବ୍ଦୀ)

ଏକା ତୋ' ଭକତଜୀବନ
ଭକତ ନିମନ୍ତେ ତୋର ଶଙ୍ଖଚକ୍ର ଚିହ୍ନ ॥ ୦ ॥

ଭକତ ତୋ ପିତାମାତା ଭକତ ତୋ ବନ୍ଧୁ
ଭକତ ହୃଦରେ ତୋର ନାମ କୃପାସିନ୍ଧୁ ॥ ୧ ॥

ଧେନୁ ପଛେ ପଛେ ବତ୍ସା ଗମେ କ୍ଷୀର ଲୋଭେ
ଭକତ ପଛରେ ତୁହି ଥାଉ ସେହି ଭାବେ ॥ ୨ ॥

ବୋପା ମୋ ମୋଗଲ ପୁଅ ମାଆ ମୋ ବ୍ରାହ୍ମଣୀ
ଏ କୂଳେ ଜନ୍ମିଲି ହିନ୍ଦୁ ନ ଖାଏ ମୋ ପାଣି ॥ ୩ ॥

କହେ ସାଲବେଗ ହୀନ ଜାତିରେ ଯବନ
ଶ୍ରୀରଙ୍ଗାଚରଣ ବିନୁ ନ ଜାଣଇ ଆନ ॥ ୪ ॥

**

# ଜଗବନ୍ଧୁ ହେ ଗୋସାଇ

## ସାଲବେଗ

(ସପ୍ତଦଶ ଶତାବ୍ଦୀ)

ଜଗବଂଧୁ ହେ ଗୋସାଇଁ
ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟ ଗତି ନାହିଁ ॥ ୦ ॥

ସାତଶ ପଞ୍ଚାଶ କୋଶ ଚଳି ନ ପାରଇ
ମୋହ ଯିବା ଯାଏ ନନ୍ଦଘୋଷେ ଥିବ ରହି ॥ ୧ ॥

ରଥ ଚାରିପାଶେ ଲମ୍ବେ ମୁକୁତାର ଝରି
ଝଲଝଲ ଦିଶୁଥାଇ ପ୍ରଭୁ ଚକାଡୋଳା ॥ ୨ ॥

ବାଇଶ ପାବଚ୍ଛ ତଳେ ବିକା ହୁଏ ଭାତ
ଦର୍ଶନ ଦେଖିକି ଥାଉ କୈବଲ୍ୟ ମୁକତି ॥ ୩ ॥

ଆଗେ ଚଳେ ବଳଭଦ୍ର ମଧ୍ୟେ ଚନ୍ଦ୍ରମୁହିଁରେ
ଆସୁଛି କାଳିଆ ପଛେ ଗହଣ ଲଗାଇରେ ॥ ୪ ॥

କହେ ସାଲବେଗ ହୀନ ଜାତିରେ ଯବନ
ଏହି ମତେ ଆଜ୍ଞା ହେବ ଶିରୀ ବୃନ୍ଦାବନ ହେ ॥ ୫ ॥

**

**

# ଦୀନବନ୍ଧୁ ହୋ

## ସାଲବେଗ

(ସପ୍ତଦଶ ଶତାବ୍ଦୀ)

ଦୀନବନ୍ଧୁ ହୋ
ତୁମ୍ଭେ ଡାକଲେ ନ ଶୁଣ କାହିଁକ ?
କୃପାସିନ୍ଧୁ ହୋ
ତୁମ୍ଭେ ଡାକଲେ ନ ଶୁଣ କାହିଁକ ॥

ଆହେ ଦ୍ରୌପଦୀ ଆତଙ୍କ ବିବସନ କାଲେ
ବସ୍ତ୍ର ଦେଲ ପଠିଆଇକ
ଲକ୍ଷେ ଯୋଜନରେ ଗଜ ଡାକ ଦେଲା
କର୍ଣ୍ଣ ଡେରିଥିଲ ତହିଁକ ॥ ୧ ॥

ଆହେ, ଅନୁଢ଼ ଶାଳରେ କ୍ଷୀର ଦେଲାବେଳେ
ମାର ପକାଇଲ ଧାଇକ
ଗର୍ଭର ଭିତରେ ଚଉଦ ବ୍ରହ୍ମାଣ୍ଡ
ଦେଖାଇଲ ହଜ ଆଇକ ॥ ୨ ॥

ଆହେ କାଲହ୍ରଦରେ ପଶି ପୁଷ୍ପ ତୋଳୁ ତୋଳୁ
ମର୍ଦ୍ଦିଲ କାଳୀୟ ଅହିକ
ଗୋପପୁରେ ପଶି ଘାଟ ସାଧୁଥିଲ
ଗୋପ ଗଉଡୁଣୀ ଦହିକ ॥ ୩ ॥

ଆହେ ମଧୁପୁରେ ପଶି ଗଜମାଲ ନାଶି
ମାଇଲ ମାତାର ଭାଇକ
କହେ ସାଲବେଗ ଜାତିରେ ଯବନ
ଚକାନୟନକୁ ଧ୍ୟାୟିକ ॥ ୪ ॥
ଦୀନବନ୍ଧୁ ହୋ···

**

**

# ବିଜେ କରିଅଛ ନୀଳଗିରି

## ସାଲବେଗ

(ସପ୍ତଦଶ ଶତାବ୍ଦୀ)

ରାମ ହରି !
ପ୍ରଭୁ ବିଜେ କରିଅଛ ନୀଳଗିରି ହେ
ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରବାସୀ
ଭାଗ୍ୟଥିଲେ ସାଧୁ ସଂଗେ ମିଶି
ସର୍ବ ଜନମାନେ କ୍ଷେତ୍ରରେ ପ୍ରବେଶ
ଗଡ ମୁକ୍ତି ହେବା ପରବାସୀ ॥୧॥

ବଡ ଦାଣ୍ଡେ ହେଲେ ପରବେଶ
ରେଣୁ ଧୂଳିରେ ପୂରିଲା ଗ୍ରାସ
ଦାଣ୍ଡରେ ବସିଛୁ କୈବଲ୍ୟ ପସରା
ଟଙ୍କ ତୋରଣିରେ ମନ ତୋଷ ॥୨॥

ସିଂହଦ୍ୱାରଠାରେ ବେତବାଡ଼ି
ବାଜିଲେ ପାତକ ଯାଏ ଛାଡ଼ି
ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ନିମିତ୍ତ
ସାଧୁଜନମାନେ ଠେଲାଠେଲି ॥୩॥

ବାଇଶି ପାବଛ ଗଲା ଶିଖେ
କୈବଲ୍ୟ ବସିଛୁ ବେଢ଼ା ପାଖେ
ବ୍ରାହ୍ମଣ କ୍ଷତ୍ରିୟ ଶୂଦ୍ର ସର୍ବବର୍ଣ୍ଣେ
କୈବଲ୍ୟ ଦଅନ୍ତି ମୁଖେ ମୁଖେ ହେ ॥୪॥

ବେହଣି କୁଣ୍ଡ ପାଦୁକା ରଜ
ସିଂହେ ମାଡ଼ିବସିଅଛି ଗଜ
ସତେକି ଏ ଜୀବ ସଫଳ ହୋଇବ
କାକପକ୍ଷୀ ହେଲେ ଚତୁର୍ଭୁଜ ହେ ।।୫।।

ଗରୁଡ଼ ପଛରେ ରହି ଦେଖ
କି ଶୋଭା ପାଉଛି ପଦ୍ମମୁଖ
ହୀରା ନୀଳା ମୋତି ମାଣିକ୍ୟ ଜଳୁଛି
ଲମ୍ବି ଅଛି ବ୍ୟାଘ୍ରନଖ ହେ ।।୬।।

ସୁଲକ୍ଷ ସୁନ୍ଦର ବଡ଼ ଦାଣ୍ଡ
ନବ କୋଟି ଲୋକ ତହିଁ ରୁଣ୍ଡ
ଦର୍ଶନ ମାତ୍ରକେ ପାପକ୍ଷୟ ଯିବ
ପାପାଧି ପାତକ ହୋଇ ଖଣ୍ଡ ହେ ।।୭।।

ସିଂହଦ୍ୱାର ଆଗେ ତିନିରଥ
ପାଟ ପତନୀରେ ମଣ୍ଡି ନେତ
ଆଗେ ବଳଭଦ୍ର ମଧ୍ୟରେ ସୁଭଦ୍ରା
ପଛେ ବିଜେ କଲେ ଜଗନ୍ନାଥ ହେ ।।୮।।

କହେ ସାଲବେଗ ମୂଢ଼ମତି
ରାଧାକୃଷ୍ଣ ପାଦେ ଦେଇ ମତି
ଜନ୍ମେ ଜନ୍ମେ ମୋତେ ଏଇ ଆଜ୍ଞା ହେଉ
ରତ୍ନାକର ତୀରେ ଲକ୍ଷ୍ମୀପତି ହେ ।।୯।।

**

**

# ଶ୍ରୀ ପୁ ରୁଷୋତ୍ତମ ଯିବା ମନ

## ସାଲବେଗ

(ସପ୍ତଦଶ ଶତାବ୍ଦୀ)

ଶ୍ରୀ ପୁରୁଷୋତ୍ତମ ଯିବା ମନ
ସାଙ୍ଗ ହୋଇ ଯିବା ପାଞ୍ଚଜଣ
ଭିନ୍ନ ହୋଇ ଯିବା କେହି ନ ଜାଣିବେ,
ବସି ଭାଳୁଥିବା ମନେ ମନେ
ଆରେ ପାଞ୍ଚଜଣ ॥୧॥

ସଲଖ ସୁନ୍ଦର ବଡ଼ ଦାଣ୍ଡ
ନବକୋଟି ଲୋକେ ତହିଁ ରୁଣ୍ଡ
ଦେଖିବା ମାତ୍ରକେ ପାପ କ୍ଷୟ ଯିବ,
ପାପାଧି ପାତକ ହେବ ଖଣ୍ଡ
ଆହେ ବଡ଼ଦାଣ୍ଡ ॥୨॥

ଦାଣ୍ଡକୁ ଲାଗିଛି ସିଂହଦ୍ୱାର
ବାଇଶି ପାବଚ୍ଛ ତ୍ରୈଲୋକ୍ୟର
ବଟ ମୂଳେ ଆଇ ଅନନ୍ତ ମୂରତି
ମୁକ୍ତା ମଣ୍ଡପେ ବିମ୍ବାଧର
ଆହେ ତ୍ରୈଲୋକ୍ୟର ॥୩॥

ସାଜେଣୀ ହୋଇଛି ତନରଥ
କି ଶୋଭା ପାଉଛି ପଦ୍ମମୁଖ
ହୀରା, ନୀଳା, ମୋତି, ମାଣିକ ଜଳୁଛି
ଫରହର ବାନା ଉଡ଼େ ନେତ
ଆହେ ଜଗନ୍ନାଥ ॥୪॥

ଏହି ଜଗନ୍ନାଥ ଗୋପପୁରେ
ବଛା ରଖିଥିଲେ ନନ୍ଦଘରେ
ଇନ୍ଦ୍ର ବବାଦରୁ ଅଷ୍ଟମଲ୍ଲ ମାର
ଗିର ଟେକିଥିଲେ ବାମ କରେ,
ଆହେ ଗୋପପୁରେ ॥୫॥

ଏହି ଜଗନ୍ନାଥେ ଆଶ୍ରେ କର
ସାଲବେଗ ବୋଲେ ସ୍ୱମହର
ନି ସନ୍ଧ୍ୟା କାଳରେ ସମ୍ପୂର୍ଣ୍ଣ ହୋଇଲ
ପାଶକର ଦାରୁ ଦୁବ କର ॥୬॥

**

**

# ହେ ଚକାଡୋଳା

## ସାଲବେଗ

(ସପ୍ତଦଶ ଶତାବ୍ଦୀ)

ହେ ଚକାଡୋଳା
ସ୍ୱହୁଁ ସ୍ୱହୁଁ ବୁଡ଼ିଲ ମୋ ଭେଳା
ଏକ ଚକେ ରଥ ଚଳୁଥିଲ
ବେନି ଚକ ହେଲୁ ନ ଚଳିଲ
ଢଳ ଗ୍ଲେପା ପ୍ରାପ୍ତ କବାଟ ଲଗିଛୁ
ତହିଁ ମତ୍ତଗଜ ଖେଳୁଥିଲ ॥୧॥

ବନ୍ଧ ନାହିଁ ପାଣି ରହୁଥିଲ
ବନ୍ଧ ହେଲ ପାଣି ବହିଗଲ
ସେ ବନ୍ଧ କାଟନ୍ତେ ତଳକୁ ନଯାଇ
ଉପରକୁ ପାଣି ବହିଗଲ ॥୨॥

ବାଇଶି ପାବଚ୍ଛ ଗଳା ମୁଖେ
କୈବଲ୍ୟ ରହୁଛି ବେଢପାଖେ
ବ୍ରାହ୍ମଣଠାରୁ ଚଣ୍ଡାଳ ପର୍ଯ୍ୟନ୍ତେ
କୈବଲ୍ୟ ଦିଅନ୍ତି ମୁଖେ ମୁଖେ ।।୩।।

କହେ ସାଲବେଗ ରସଲୀଳା
କେ କହି ପାରିବ କୃଷ୍ଣଲୀଳା
ସହସ୍ର ଦୀପରେ ଅନଳ ଜଳୁଛି
ତଇଲ ପକାନ୍ତେ ଲିଭିଗଲା ।।୪।।

**

**

## ମହାପ୍ରଭୁ

### ସାଲବେଗ

(ସପ୍ତଦଶ ଶତାବ୍ଦୀ)

ମହାପ୍ରଭୁ ! ମୋ ଠାରେ ନୁହ କୃପଣ
ହୀନ ଅରକ୍ଷିତ ଅଟଇ ମୁହିଁତ ନ ଜାଣେ ସେବକ ପଣ (ଘୋଷା)

ତୁମ୍ଭେ ଦୀନବନ୍ଧୁ ଦୁଃଖୀଙ୍କ ସୋଦର
ଅଶରଣ ଜନଙ୍କର ଶରଣ
ପାପତାପ-ହର କମଳା ବର ଦରଧର ଭବଭୟ ବାରଣ ।।୧।।

ତୁମ୍ଭେ ଆର୍ତ୍ତତ୍ରାଣ ବିପଦ ନାଶନ
କ୍ଷମା ନିଧାନ ହେ ଜଗଜୀବନ
ଗୋ କୁଳ ନାୟକ ସୁଗତି ଦାୟକ ଭକତବତ୍ସଳ ପଦ୍ମଲୋଚନ ।।୨।।

ତୁମ୍ଭେ ପତ୍ତିଦାତା ଜଗତ କରତା ଦେବତା ମାନଙ୍କ ସୁଖ-ସଦନ
ଦୁଷ୍ଟ ଦର୍ପ ଦଳା-ଚଉଷଠି କଳା
ପୂର୍ଣ୍ଣ ବ୍ରହ୍ମ ମୂରତି ସନାତନ ।।୩।।

ତୁମ୍ଭେ ଅଇଶ୍ୱର୍ଯ୍ୟ ମାଧୂର୍ଯ୍ୟ ବିଗ୍ରହ
ଗୋପୀଙ୍କର ହୃଦତଟ ଚନ୍ଦନ
କହେ ସାଲବେଗ ଜାତରେ ଯବନ
ତୁମ୍ଭ ନାମ ଧରି ଯାଉ ଜୀବନ ॥୪॥

**

**

# ନୀଳଗିରି ପତି

## ସାଲବେଗ

(ସପ୍ତଦଶ ଶତାବ୍ଦୀ)

ହେରି ହୋ, ନୀଳଗିରି ପତି ରାଜନ୍ତି
ସୁଭଦ୍ରା ବଳରାମ ସଙ୍ଗେ ଅନୁପମ
ସିଂହାସନ ମଣ୍ଡପ ମାଝେ ହି ॥ ୧ ॥

ଶଙ୍ଖ ଘଣ୍ଟା କାଂସୀ ବେଣୁ ବୀଣା ବଂଶୀ
ମଧୁର ଦୁନ୍ଦୁଭି ବାଜନ୍ତି
ସେବକ ପଡ଼ିଆରି ଘଟ ଭରିବାରି
ତାରିଉ ତାହାଙ୍କୁ ମାଖନ୍ତି ॥ ୨ ॥

ଜୟ ଜୟ ଧ୍ୱନି ସୁର ନର ମୁନି
ସ୍ତୁତି ନତି ପ୍ରଣିପାତ ହିଁ
ଶ୍ରୀମୁଖ ଚନ୍ଦ୍ରରୁ ସୌରଭ ଆସୁଛି
ଗଜେନ୍ଦ୍ର ବେଶ ଉ ଆପନ୍ତି ॥ ୩ ॥

ଜୟ ଯଦୁପତି ଧନ ଲୋକ ଗତି
ବହୁ ଉପହାର ଭୋଜନ୍ତି
ମଣି-କୋଠାତଳେ ସାଲବେଗ ବଳେ
ଦେବ ନାରୀଗଣ ନାଚନ୍ତି ॥ ୪ ॥

**

**

# ଅଜ୍ଞାମନ ସ୍ଥଳ ଯିବା

## ସାରଥି ଭିକ

(ସପ୍ତଦଶ ଶତାବ୍ଦୀ)

[ରାଗ—ଖମାଜ]

ଅଜ୍ଞାମନ ସ୍ଥଳ ଯିବା
ଚକାନୟନ ଦେଖିବା
ଶଙ୍ଖ ନାଭି ମଣ୍ଡଳରେ
ଦେହ ନେତ୍ର ପଖାଳିବା ॥ ଘୋଷା ॥

ବାଟରେ ବାଟ ମଙ୍ଗଳା
ଦେଖିବା ଅଠର ନଳା
ପାଞ୍ଚମନ ଏକମେଳା
ନରେନ୍ଦ୍ର ସ୍ନାନ କରିବା ॥ ୧ ॥

ପହଞ୍ଚିବା ବଡ଼ ଦାଣ୍ଡେ
ସେ ରେଣୁ ପାଇବା ତୁଣ୍ଡେ
ଛତା ତଳେ ରହି ଦଣ୍ଡେ
ସାଧୁଙ୍କ ସେବା କରିବା ॥ ୨ ॥

ସିଂହ ଦ୍ୱାରେ ଭିଡ଼ାଭିଡ଼
ବାଜୁଅଛି ବେତବାଡ଼ି
ଠେଲି ଦେଇ ଯିବା ମାଡ଼ି
ଧକ୍କା ବାଜିଲେ ସହିବା ॥ ୩ ॥

ବାଇଶି ପାବଚ୍ଛେ ବଙ୍କା
ହେଉଛି କୈବଲ୍ୟ ଚଖା
ହାଣ୍ଡି କ ପଡ଼େ ସୀଉକା
ମନ ରଙ୍କା ଛଡ଼ାଇବା ॥ ୪ ॥

୨୫

ଗରୁଡ଼ ପଛରେ ଦେଖ
ଦିଶୁଛି କଳା ଶ୍ରୀମୁଖ
କହଇ ସାରିଆ ଭକ
ବଳରାମଙ୍କୁ କହିବା ॥ ୫ ॥

**

**

# ଦୀନ ବଂଧୁ ହେ

ଭିକାରୀ

(ସପ୍ତଦଶ ଶତାବ୍ଦୀ)

ରାଗ-ପ୍ରଭାତ ଭୈରବୀ]

ଦୀନବନ୍ଧୁ ହେ ! ବାରେ ଘେନ ଜଣାଣ
ଏ ମହାଦୁଃଖକୁ ମୋର ଶୀଘ୍ର କର ଦହନ ।।ଘୋଷା ।।

ସତ୍ୟ ତ୍ରେତା ଦ୍ୱାପର        କଳିରେ ଅବତାର
ବସିଛ ନୀଳକନ୍ଦର
ହୋଇ ପର୍ବ ମଣ୍ଡନ ।।୧।।

ତୁମ୍ଭ ନାମ ଶୁଣି ହନୁ        ଅଇଲ ଲଙ୍କାଭୁବନୁଁ
ବଂଶ ବାନ୍ଧୁ ବିନାଶିଣ
ବିଭୀଷଣ ରାଜନ ।।୨।।

କୁରୁପତି ସଭାତଳେ        ଦ୍ରୋପଦୀ ଆତଙ୍କକାଳେ
କୋଟି ବସ୍ତ୍ର ଦେଲ ହେଲେ
ଲଜ୍ଜା ତା' ନିବାରଣ ।।୩।।

ବନସ୍ତେ ଡାକେ ହରିଣୀ        ରଖ ଆହେ ଚକ୍ରପାଣି
ସେ ଡାକ କର୍ଣ୍ଣରେ ଶୁଣି
ରଖିଛ ଭଗବାନ ।।୪।।

ଅଗାଧ ଜଳରେ ଗଜ        ଡାକିଲ ଦେବରାଜ
କାକ ପଡ଼ି ଚତୁର୍ଭୁଜ
ହେଲାଟି ଘେନ୍ନ ନାମ ।।୫।।

ଶ୍ରୀ ଗୁରୁଦେବ ଚରଣେ ଚିତ୍ତ ରହୁ ଅନୁକ୍ଷଣେ
ବାଇ ଭିକାରିଆ ଭଣେ
ଦୁଃଖ କର ଦହନ ॥୬॥
**

**

## ନଗଲୁ ମନ

**ଭିକାରୀ**

(ସପ୍ତଦଶ ଶତାବ୍ଦୀ)

[ରାଗ—କଲ୍ୟାଣ]

ନଗଲୁ ମନ କ୍ଷେତ୍ରସ୍ଥଳକୁ
ଧନଦାରା ସୁତା ଆଦୋର ବସିଛୁ
କେହୁ ନୋହେ ସଂଗ ଗଲାବେଳକୁ ॥ ଘୋଷା ॥

ତୁଳସୀ ଚଉରା— ଠାରେ ନୃତ୍ୟ ଲୀଳା
ପ୍ରଦକ୍ଷିଣ କର ଯୋଡ଼ି କରକୁ
ମଧ୍ୟେ ପଞ୍ଚ କୋଶୀ ପ୍ରଭୁ ଛନ୍ତି ବସି
ସେଠାରୁ ଦେଖ ତୁ ନୀଳଚକ୍ରକୁ
ଧ୍ୱଜା ଖଣ୍ଡିକୁ
ଗୃହ୍ମାଁ ଆଗକୁ
ଚଉକଛନ୍ତି ଅଠର ନଳାକୁ ॥ ୧ ॥

ସେ ଅଠର ନଳା ପଶ୍ଚିମରୁ ଜଳା
କହୁଯାନ୍ତି ପଥ ପୂର୍ବଭାଗକୁ
ଜନକପୁର ବାଳ ଆପେ ହସି ଗୁଳ
ସେ ରେଣୁ ନ ମିଳେ ବ୍ରହ୍ମା ଶିବଙ୍କୁ
ଧ୍ୟାନ୍ତି ତାହାଙ୍କୁ
ଚଉବାହାକୁ
ବଜାଏ ଡମ୍ବରୁ ଚଢ଼ି ଷଣ୍ଢକୁ ॥ ୨ ॥

ଧନ୍ୟ ବଡଦାଣ୍ଡ ସର୍ବପାପ ଖଣ୍ଡ
ସକଳ ତୀର୍ଥ ସେବନ୍ତ ତାହାକୁ
ଗୋରୁବିପ୍ର ମାର ଗୁରୁପତ୍ନୀ ହର
ସେ ଠାବକୁ ଗଲେ ଦହେ ପାପକୁ
ଛଳେ ହସ୍ତକୁ
ଦେଇ ମସ୍ତକୁ
ଗଡ ଘାଲ ଶୁଅ ବଡଦାଣ୍ଡକୁ ॥ ୩ ॥

ଛତା ପୋଢ ସାଧୁ ବୈଷ୍ଣବ ମହନ୍ତ
କରୁଛନ୍ତି ଲୀଳା ଗାଇ ନାମକୁ
କଡୁଆ ଗଣ୍ଡାଇ ବଡ଼ାବଡ଼ା ଖାଇ
ଡାକୁଛନ୍ତି ସେ ମୁକତ ଧାମକୁ
ଚଉବାହାକୁ
ଧ୍ୟାନ୍ତି ତାହାଙ୍କୁ
ମିଳୁଛି ଅବଢ଼ା ଛେକ ବେଳକୁ ॥ ୪ ॥

ସେ ଅରୁଣ ସ୍ତମ୍ଭ ମେରୁ ସମ ଦମ୍ଭ
ଦେଖ ସିଂହଦ୍ୱାରେ ଗଜ ସିଂହକୁ
ବାଇଶ ପାବଛ ଲଗା ତହିଁ ହସ୍ତ
କୈବଲ୍ୟ ପସରା ବେନ ପାଖକୁ
ସ୍ପୃହାଁ ଆଗକୁ
ବିକାକଣାକୁ
ବନ୍ଧୁ ନେଉଛନ୍ତି ବଡ଼ଦାଣ୍ଡକୁ ॥ ୫ ॥

ସେ ଠାବରୁ ଧୀରେ କଲ୍ପବଟ ମୂଳେ
ଦେଖ ବଟ ପୁଟ ଶାୟୀ ପ୍ରଭୁଙ୍କୁ
ପଦାଙ୍ଗୁଳି ନେଇ ବଦନରେ ଦେଇ
ହସୁଛନ୍ତି ସ୍ପୃହିଁ ମାତା ମୁଖକୁ
ତହିଁ ଆଗକୁ
ଦାକ୍ଷ ଭାଗକୁ
ପାହାଶ୍ରି ରଖିଛୁ ଗଜ ମୁଖକୁ ॥ ୬ ॥

ମୁକତ ମଣ୍ଡପେ            ବସିଛନ୍ତି ବିପ୍ରେ
ପଢ଼ୁଛନ୍ତି ବେଦ ସ୍ମୃତି ଶାସ୍ତ୍ରକୁ
ସେ ରୋହିଣୀ କୁଣ୍ଡ            ସର୍ବ ପାପ-ଖଣ୍ଡ
କାକ ପକ୍ଷୀ ହେଲା ଚତୁର୍ଭୁଜକୁ
ଗଲା ସ୍ୱର୍ଗକୁ
ଯାଅ ଆଗକୁ
ବିମଳା ଦେଖ ପଶ୍ଚିମ ଭାଗକୁ ॥ ୭ ॥

ସେଠାରେ ହିରଣ୍ୟ            କୋପେ ନାରାୟଣ
ଚନ୍ଦ୍ରାକର ବାରେ ହୃଦେ ତାହାଙ୍କୁ
ମାତା ସରସ୍ୱତୀ            ତହିଁ ଆଗେଛନ୍ତି
ନମସ୍କାର କର ତାଙ୍କ ପାଦକୁ
ତହିଁ ଆଗକୁ
ଉତ୍ତର ଦିଗକୁ
ମାତା ମହାଲକ୍ଷ୍ମୀ ଦେଖ ତାହାଙ୍କୁ ॥୮॥

ସେ ଠାବରୁ ଏକ            କୁଣ୍ଡ ଯାଇଁ ଦେଖ
ତହୁଁ ନେଇ କ୍ଷେପ ନିଜ ଗର୍ଭକୁ
ପର ପ୍ରାପ୍ତ ପ୍ରଭୁ            ଫିଙ୍ଗି ଦେଉଅଛ
ଏ ନିନ୍ଦା ହୋଇବ ଆଉ କାହାକୁ ?
ଚଉବାହାକୁ
ଗୁହାଁ ଊର୍ଦ୍ଧ୍ୱକୁ
ଉଡ଼ୁଛି ପତାକା ଚିନପୁରକୁ ॥୯॥

ଜଗ ମୋହନରେ            ପଶିଯାଅ ଥରେ
ଆଲିଙ୍ଗନ କର ପକ୍ଷୀରାଜକୁ
ରତ୍ନବେଦୀ ପରେ            ଗୁହିଁ ଦିଅ ଥରେ
ଦେଖ କଳା ଧଳା ମୁଖ ଶୋଭାକୁ
ପାଦ ତଳକୁ
ଲଗା ଶିରକୁ
ପରିକ୍ରମା କର ରତ୍ନବେଦୀକୁ ॥୧୦॥

ଆଗେ ରତ୍ନ ଦୀପ ଜଳେ ଦପଦପ
ଅନ୍ଧ ହୋଇ ଲମ୍ଫ କର ତାହାକୁ
କହଇ ଭିକାରି ସାହା କେହୁ ନାହିଁ
ଦଣ୍ଡେ ନ ଛାଡ଼ଇ ଧର ଧନ୍ଦାକୁ
ଧର ନାମକୁ
ଡାକେ ତୁମ୍ଭଙ୍କୁ
ଅନ୍ତେ ନୋହୁ ଗତ ଯମପୁରକୁ ॥୧୧॥

**

**

# ଜୟ ଜୟ ଜଗନ୍ନାଥ ମହାବାହୁ

## ବୈଦ୍ୟନାଥ ଦ୍ୱିଜ

(ସପ୍ତଦଶ ଶତାବ୍ଦୀ)

[ ରାଗ-ହନୁମତ ତୋଡ଼ୀ ]

ଜୟ ଜୟ ଜଗନ୍ନାଥ ମହାବାହୁ
ଜଗବନ୍ଧୁ ବୋଲି ମୋ ଜୀବନ ଯାଉ ।।ଘୋଷା।।

ଆରତ ତାରଣ ଶରଣ ରକ୍ଷଣ
କାରଣେ ବାନା ଉଡ଼ାଇ
ମୋର ପକ୍ଷେ ଯାଉ ପ୍ରାଣ କେବେ ନ ମିଳୁ ଦୂଷଣ
ଭବଭୟ ବାନାକୁ ତୋ ନିନ୍ଦା ନୋହୁ ।।୧।।

ଭରଡ଼ଆ ପକ୍ଷୀ ଘଣ୍ଟ ତାଙ୍କି ରଖି
ଜୀବଦାନ ଦେଲ ଯେଉ
ମୋ ସଙ୍କଟ ଡାଢ଼ୁଁ ବଳି ରଖ ଆହେ ବନମାଳି !
ତୋତେ ଭଲ ହେବକି ମୁଁ ମଲେ ଆଉ ।।୨।।

ତୃଷାର୍ତ୍ତ ଯେ ଜନ ଦ୍ୱାରେ କି ଜୀବନ
ଗଙ୍ଗାକୁ ଲେ ଆଉ ଥାଉ
ଶିରୀଷ ପୁଷ୍ପରେ ଯେବେ କୁଳିଶ ବରଷା ହେବେ
ମୋତେ ମାରି କାଳେ କାଳେ ଯଶ ଆଉ ।।୩।।

ଆହେ ପଦ୍ମମୁଖ ଦେଲ ଯେତେ ଦୁଖ
ଏହା କାହା ଦେହ ସହୁ
ଦ୍ୱିଜ ବୈଦ୍ୟରାଜ ବୋଲେ ଏ କାଳରେ ନ ରଖିଲେ
ପାପ ଶରୀରକୁ ମୋର ଅଗ୍ନି ଖାଉ ।।୪।।

**

***

## ଶ୍ରୀ ଜଗନ୍ନାଥ କୃପା ନିଧାନ ହେ

### ଦୀନବନ୍ଧୁ ରାଜ ହରିଚନ୍ଦନ

(ସପ୍ତଦଶ ଶତାବ୍ଦୀ)

(ରାଗ-କାମୋଦୀ)

ଶ୍ରୀ ଜଗନ୍ନାଥ କୃପା ନିଧାନ ହେ !
କର ଦୀନରେ କୃପା ଅବଧାନ ହେ ॥ପଦ॥

ସେବକ ଅପରାଧ ହେଲେ କରୁଣାନିଧି
କ୍ଷମା ତ ପ୍ରଭୁପଣ ବିଧାନ ହେ ॥୧॥

ସାଧୁଜନଙ୍କ ସଙ୍ଗେ ମଜ୍ଜି କୀର୍ତ୍ତନ ରଙ୍ଗେ
ନକଲି ତୁମ୍ଭ ଯାତ୍ରା ଲୋକନ ହେ ॥୨॥

ତୁମ୍ଭ ଶ୍ରୀମୂର୍ତ୍ତି ଶୋଭା ଦେଖି ମୋ ନେତ୍ର ଲୋଭି
ନୋହିଲା ବ୍ୟର୍ଥ ହେଲା ନୟନ ହେ ॥୩॥

ସେବା ବିନା ତୁମ୍ଭର ହେ କଞ୍ଜନେତ୍ର ମୋର
ଧିକ ରାଜ୍ୟପ୍ରଭୁତ୍ୱ-ଜୀବନ ହେ ॥୪॥

ଆହେ ଆରତତ୍ରାଣ ହୁଅ ଦୁଃଖି ଶରଣ
ଦୀନବନ୍ଧୁ ଦୁଃଖ ବିମୋଚନ ହେ ॥୫॥

**

**

## ରମାରମଣ ହେ

### ଉପେନ୍ଦ୍ର ଭଂଜ

(ଅଷ୍ଟାଦଶ ଶତାବ୍ଦୀ)

ରମାରମଣ ହେ ! ତୁମେ ପରା ଦୟାସିନ୍ଧୁ
ଦୀନଠାରେ କମ୍ପା ହୃଦେ ଅନୁକମ୍ପା
ହେଉନାହିଁ ଦୀନବନ୍ଧୁ ॥ଘୋଷା ॥

ତ୍ରିଭୁବନ ଦୁଷ୍ଟ ନିବାରଣ ରୁଷ୍ଟ
ବାଡ଼ବାଗ୍ନି ଗର୍ଭେ ଭର
ଲୋକାଲୋକ ଗିର ଉଗତ ମଣ୍ଡଳୀ
ମଧ୍ୟେ ହୋଇଛ ମାଧୁର୍ଯ୍ୟ ॥୧॥

ଅଗାଧ ସୁଷମା ଅଶେଷ ମହିମା
ଫଳୁଲେ ହୋଇ ପ୍ରଚୁର
ମଚ୍ଛ କଚ୍ଛ ଜଳଚର ଅବତାରଙ୍କର-
ଅଟ ଜନ୍ମ ସ୍ଥଳ ॥୨॥

ଜଳଜ ଗଭୀର ବାଣୀ ସୁମଧୁର
ଘୋଷକୁ କର ବଂଦିତ
ତରଙ୍ଗ ବିଶେଷ ମହା ମହୋଲ୍ଲାସ
ଭରେ ହୋଇଛ ରଞ୍ଜିତ ॥୩॥

ତରଙ୍ଗିଣୀ ବୃନ୍ଦ ସୁମନସ କଦମ୍ବର-
ନୃପତ୍ୱ ବୋଲାଇ
ମହତ୍ତ ପରମ ଯୋଗେ ଦୁରାଧମ
ଜନକୁ କରୁଛ ବାହ୍ୟ ॥୪॥

ଅଣିମାଦ୍ୟ ଅଷ୍ଟ ରତନ ବିଶିଷ୍ଟ
ପ୍ରଦାନେ କୁଶଳ ହୋଇ
କଷ୍ଟକୁ ଲୋକର କରୁଛ ନିକର
ଭଞ୍ଜ ବୀରବର କହି ।।୭।।

**

**

## କଳା ଶ୍ରୀମୁଖ ହେ

### ଉପେନ୍ଦ୍ର ଭଞ୍ଜ

(ଅଷ୍ଟାଦଶ ଶତାବ୍ଦୀ)

କଳା ଶ୍ରୀ ମୁଖ ହେ ! ନଗଲା ମୋର ଦୁଃଖ
କଳପ ତରୁକୁ ଆଶ୍ରେ କରିଛି ମୁଁ
କି ବୋଲିବେ ଶୁଣି ଲୋକ ।।ଘୋଷା।।

ବିବସନ କଲବେଳେ ଅମ୍ବବାଳା
ବୃନ୍ଦା ବନେ ହରିଣାଙ୍କ
ଆଣି କୋଟି ଚେଲ ପାଞ୍ଚାଳୀକି ଦେଲ
କି ରୂପେ ହୋଇତା ପକ୍ଷ ।।୧।।

ଗୋକୁଳ ଶବରୀ ଆଣି ଦେଲା କୋଳି
ଚକବାକୁ ବନଜାକ୍ଷ
ହେଲା ତାଂ ପସରା ଯାକ ହେମ ପରା
ପଡ଼ନ୍ତେ ତୁମ୍ଭ କଟାକ୍ଷ ।।୨।।

ଦରିଦ୍ର ବିପ୍ରର କଥାକୁ ତୁମ୍ଭର
ହୃଦୟେ କରି ବିବେକ
କେଉଁ ସଂପଦକୁ ନ ଦେଲ ତାହାକୁ
ଦେବାଧିଦେବ ନାୟକ ।।୩।।

ବଳୀଙ୍କ ପାତାଳେ ମଣିମୟ ପୁରେ
ଦିଲେ'ହ ଅନେକ ସୁଖ
ରଖିଅଛ ପୁଣି ତାକୁ ଚକ୍ରପାଣି
ତହୁଁ କରିବାକୁ ମୋକ୍ଷ ॥୪॥

ହେବାର ବିନତ ଦଶାନନ ଭ୍ରାତ
ତବ ଶ୍ରୀ ଚରଣରେ ଦେଖି
ବସିଛୁ ସଜୀବେ ଅଦ୍ୟାପି ଏ ଭବେ
ପାଇ ସ୍ୱର୍ଣ୍ଣମୟୀ ଲଙ୍କ ॥୫॥

ମୃକଣ୍ଡୁ କୁମର ପାଣ୍ଡବାଦିକାର
ନ ଫେଡ଼ି କେଉଁ ଆତଙ୍କ
କାହାକୁ କି ଦୟା କରି ନାହିଁ ମାୟାଧର
କୈବଲ୍ୟ ଦାୟକ ॥୬॥

କହେ ଭଞ୍ଜ ବୀରବର ରମାବର
ପ୍ରଭୁ ଦୀନଜନ ରକ୍ଷ
ଭାସୁଛି ଏ ଭବ ଦୁସ୍ତର ଅର୍ଣ୍ଣବ
ମଧ୍ୟେ ମୁଁ ହୋଇ ନିରଖ ॥୭॥

**

**

# ଜୟ ଜୟ ଜଗନ୍ନାଥ

## ଉପେନ୍ଦ୍ର ଭଞ୍ଜ

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-ମଙ୍ଗଳ ଗୁର୍ଜରୀ]

ଜୟ ଜୟ ଜଗନ୍ନାଥ ଦାରୁ ରୂପ ଧାରୀ
ନୀଳ ଗିରୀଶ ଗିରୀଶ ବନ୍ଦନୀୟ ହରି ॥୧॥

ମହାବଳ ବଳ ଅବରଜ ଇନ୍ଦ୍ରାନୁଜ
ଗରୁଡ଼ାସନ ସନକ ପୂଜ୍ୟ ଚତୁର୍ଭୁଜ ॥୨॥

ନୀରଦ ସୁନ୍ଦର ଦରହର ହରଷଦ
ଶମନ ମନରେ ଜାତ କର ମହା ଖେଦ ॥୩॥

ସେ ପ୍ରଭୁ କମଳା କାନ୍ତ କାନ୍ତ ପଦଧ୍ୟାନେ
ଉପଇନ୍ଦ୍ର ବୀରବର ଅତ ତୋଷ ମନେ ॥୪॥

**

**

## ସିନ୍ଧୁ ତଟେ ଶ୍ରୀ ପୁରୁଷୋତ୍ତମ

### ଉପେନ୍ଦ୍ର ଭଞ୍ଜ

(ଅଷ୍ଟାଦଶ ଶତାବ୍ଦୀ)

ସିନ୍ଧୁତଟେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରରାଜ
ସାଧୁଜନେ ଅଛ ତହିଁ ବହୁତ ଆଶ୍ଚର୍ଯ୍ୟ ହେ

ସେ ଭୂମି ପ୍ରବେଶେ ବ୍ରହ୍ମହତ୍ୟା ପାପ ହରେ
ସାକ୍ଷାତ ହୋଇଛ ଏ କପାଳ ମୋଚନରେ ହେ ।

ସେ ହୁଏ ଚତୁର୍ଭୁଜ ସେ ଯେ କ୍ଷେତ୍ରେ ରହ
ସାକ୍ଷୀ ଏ କଥାକୁଟି ଅଜ୍ଞାନ କାକ ତହିଁ ହେ ।

ସ୍ୱପଚକରୁ ବ୍ରାହ୍ମଣ ତହିଁ ପାଇ ଅନ୍ନ
ଶଏ ଜନ୍ମ ପାପ ଗଲା ଭାବ ତୋଷ ମନ ହେ

ସିଂହଦ୍ୱାରେ ମୁକତି ପସରା ବସି ଥାଇ
ସାରେ ପାପ ନର ବସ୍ତୁ କେ କିଣିନେଇ ହେ ।

ସମିଧ ଶଙ୍ଖର କୃତ ବସ୍ତ୍ର ନକେ ତହିଁ
ସୁଦରଶନେ ଆଶ୍ଚର୍ଯ୍ୟ ଅକ୍ଷିବର୍ଗେ ଦେଇ ହେ ।

ସ୍ୱରୂପ ଏ ନାସାକର୍ଣ୍ଣ ହସ୍ତ ପାଦ ସ୍ଥାନ
ସ୍ବର କୋଠୀ ନୋହେ ତେବେ ଶୋଭାକୁ ସମାନ ଯେ ।
ସହସ୍ର ଯୋଜନରୁ ଅଧିକ ହୋନ୍ତି ଜନେ
ସବୁ ରୂପେ ବଣ ହୋଇ ଯାଦା ଦରଶନେ
ସଙ୍କରଶଣ ଆପଣେ ବେଳା ପାଶେ ବଳେ
ସ୍ନେହ ବଡ ଭଗ୍ନିଠାରେ ମଧ୍ୟ ସେ ବସାଳେ ଯେ ।

**

**

## ପଣ୍ୟ ଧାମ

### (ଉପେନ୍ଦ୍ର ଭଞ୍ଜ)

[ଅଷ୍ଟାଦଶ ଶତାବ୍ଦୀ]

ଶୁଣ କୋବଦେ ଭରତଖଣ୍ଡେ ପୁଣ୍ୟଧାମ ।
ଯେଣୁ ନାରାୟଣ ଦେଖା ତେଣୁ ସେହି ନମ ହେ ॥୧॥

ଗୀବାଣ ମତେ ନବାଣ ସାରୂପ୍ୟକୁ ଦେଇ
ସାକ୍ଷୀ ପକ୍ଷୀ କରନ୍ତି ପ୍ରଥମା ରୂପେ ଥାଇ ଯେ ॥୨॥

ଯେ ବ୍ରହ୍ମହତ୍ୟା-ପାତକ-ନପାତକ ମସ୍ତୀ
କପାଳମୋଚନ ତ୍ରିଲୋଚନ ସାକ୍ଷୀ ଯହିଁ ହେ ॥୩॥

ଆସି କାଶୀଶ୍ୱର ବାସ କଲେ ଏହା ଜାଣି
ଅନ୍ୟ କ୍ଷେତ୍ର ସମସ୍ତଙ୍କ ଏ ମସ୍ତକ ମଣି ହେ ॥୪॥

ଏଣୁ କ୍ଷେତ୍ର-ନରେନ୍ଦ୍ର ପଦଟି ସମ୍ଭାବତ
ବିନାଶେ ଭୁଜଙ୍ଗ-ଦୋଷ ତାକୁ କେତେ ମାତ୍ର ହେ ॥୫॥

ଅବିଦ୍ୟା-ବିଷମ-ଆଶୀବିଷ ଘାରି ଜନେ
ଜ୍ଞାନାଜ୍ଞାନେ ପରଧିନେ ଯେ ସ୍ଥାନ ଗମନ ହେ ॥୬॥

ଶ୍ରୀ ମହାପ୍ରସାଦ ଗଦ ପଦ ଘଣ୍ଟ ଘୋଷ
ଭକ୍ଷଣେ ଶ୍ରବଣେ ଯେ କଲ୍‌ବିଷ-ବିଷ ନାଶ ହେ ॥୭॥

ଉନ୍ନତ ପ୍ରାସାଦ ଧ୍ୱଜ ପତାକା ଉଡ଼ାଇ
ଏ ପ୍ରଦେଶେ ସମବର୍ତ୍ତୀପଣ ନାହିଁ ନାହିଁ ହେ ॥୮॥

ବଟଗ୍ରଜ ଶାଖା ଘେନ ନିଗମ ସାକ୍ଷାତ
ପାପ-ତାପ-ପଶୁ ନାଶ ସୁକର୍ମ ଉଦିତ ଯେ ॥ ୯ ॥

ସେ ଦୁର୍ଗ-ପଶଖା ତୀର୍ଥଗ୍ରଜ ଗର୍ଜନରେ
କରେ ଅବଗାହେ ପାପବ୍ୟୂହ ଦହନରେ ହେ ॥ ୧୦ ॥

ଦହି ସବୁ ବାଡ଼ବରେ ଦେବ ଏ ପକାଇ
ଏ ଦରବଶରୁ ଦୂରୁ ଦୁରିତ ପଳାଇ ହେ ॥ ୧୧ ॥

ସେ କମ୍ବୁ କଟକ ରାଜା ନାମ ଜଗନ୍ନାଥ
ସ୍ବରବର୍ଣ୍ଣେ ଚତୁର୍ବର୍ଗ ଦେବାକୁ ସମର୍ଥ ହେ ॥ ୧୨ ॥

ଭକ୍ତି ଦେବା ଗୁପ୍ତ ହୋଇଅଛି ଯୁକ୍ତାକ୍ଷରେ
ବୈଷ୍ଣବ ବହୁନେ କେବା ଜାଣିବ ସଂସାରେ ହେ ॥ ୧୩ ॥

ପାଦେ ବନ୍ଦେ ସାର୍ବଭୌମ ବୋଲବା କ ଯଶ
ବୃଷାସନଙ୍କର ଶିର ଲଗିବାକୁ ଆଶ ହେ ॥ ୧୪ ॥

ଯାହା କଟାକ୍ଷ-କୁଠାର ପତନ ମାତରେ
ଅନେକ ଦୁଃଖ-ଅନେକ କୋହକୁ ଛେଦ ପାରେ ହେ ॥ ୧୫ ॥

ସେହି ପାଦପଦ୍ମାସନୀ ପାଟ ମହାଦେବୀ
ଅଷ୍ଟଐଶ୍ୱର୍ଯ୍ୟଦାୟିନୀ ଅଷ୍ଟଶକ୍ତି ସେବି ହେ ॥ ୧୬ ॥

ଭରସା କରି ଆସନ୍ତି ଦୂରଦେଶୁଁ ପ୍ରାଣୀ
ଆରତଭଞ୍ଜନ ଦୀନବନ୍ଧୁ ନାମ ଶୁଣି ହେ ॥ ୧୭ ॥

କରଯୋଡ଼ି ଭୂମୁରେ ଜଣାଇ ପକ୍ଷି ଧବ
ଆର୍ତ୍ତିଜନ ଗୁହାରକ ସାବଧାନ ହେବ ହେ ॥ ୧୮ ॥

କୋଟି-କନ୍ଦର୍ପ-ଲାବଣ୍ୟ ମୂର୍ତ୍ତି ଦରଶନ
ହେବାକୁ ସୁବେଶେ ବିଜେ ରତ୍ନସିଂହାସନ ହେ ॥ ୧୯ ॥

ଶିରେ ହେମ-ରତନ-ମୁକୁଟ ସପ୍ତଶାଖା
କରୁଣା-ସିନ୍ଧୁରେ କି ବଡ଼ବାନଳ ଶିଖା ହେ ॥ ୨୦ ॥

କପାଳଁ ସାଥ ନୋହିବ ଏମନ୍ତ ବିସ୍ତର
ପୁଣି ମଞ୍ଜୁଳ କୁଣ୍ଡଳ ମକର ଆକାର ହେ ॥ ୨୧ ॥

ପ୍ରବାଳତରଣୀ ଦୃଷ୍ଟି ରଙ୍ଗାଧରେ ଅଛି
ବିଶେଷ ଯହିଁ ଲାବଣ୍ୟ ଲକ୍ଷ୍ମୀ ସମ୍ଭବିଛି ହେ ॥ ୨୨ ॥

ଦଶ ଅବତାରେ ଲୀଳା ଯାହା ବିରଚନ
ଜନଙ୍କୁ ଦେଖାନ୍ତି ଯୁଗାନ୍ତର କଥାମାନ ହେ ॥ ୨୩ ॥

ସ୍ନାନଗୁଣ୍ଡିଚା ଏ ବେନି ସ୍ୱୟଂଲୀଳା ଯାର
ପତିତପାବନ ଅର୍ଥେ ପ୍ରସାଦୁଁ ବାହାର ॥ ୨୪ ॥

ଜ୍ୟେଷ୍ଠ ପୌର୍ଣ୍ଣମାସୀ ପୂର୍ବନିଶି ଅବଶେଷେ
ସେବକେ ଉତ୍ସୁକେ ମିଳି ମହାପ୍ରଭୁ ପାଶେ ହେ ॥ ୨୫ ॥

ସେ କାଳକୁ ଅନୁସରି ଯାତ୍ରୀ ନର ନାରୀ
ଯେ ଯାହାର ନିତ୍ୟକର୍ମ ଭୁଲି ହୋଇ ସାରି ହେ ॥ ୨୬ ॥

ହରି ହରି-ଦ୍ୱାରେ ମିଳି ହରି-ଧ୍ୱନି କଲେ
ହର୍ଷିତ ପୂରିତ ଦିଗନ୍ତରେ ତହିଁ ହେଲେ ହେ ॥ ୨୭ ॥

ପଡ଼ିଲା ତୁଳୀ ପାହାଡ଼ା ବିଜୟ ନିମିତ୍ତେ
ବାଜିଲେ ମେଘା ମୃଦଙ୍ଗ ମର୍ଦ୍ଦଳ ସହିତେ ହେ ॥ ୨୮ ॥

କଂସାଳ ତାଳ କର୍ତ୍ତାଳ ପଟହ ଝର୍ଝର
ମୋ ପରେ ବାଜେ କରିବେ ଭାବ ତୋଷ ପର ହେ ॥ ୨୯ ॥

ନୋହିବେ ସର୍ବଙ୍କ କାମ୍ୟ ବ୍ରହ୍ମ-ପରିକର
ଜାଣିଲେ ନିଷ୍ଟସ୍ଥ ପ୍ରଭୁ-ଦକ୍ଷିଣ-କୁଞ୍ଜର ହେ ॥ ୩୦ ॥

ପୂର୍ବକରେ ପୂର୍ବଗଜ ଭାବ ଉପୁଜାଇ
ପହଣ୍ଡି ବିଜୟ କଲେ ଝୁଲଇ ଝୁଲଇ ଯେ ॥ ୩୧ ॥

ଏମନ୍ତ ନୋହିଲେ କି ପ୍ରାସାଦ-ଦଣ୍ଡୀ ତେଜି
ମଣ୍ଡପ-ସର ଅବଗାହିରେ ଚଉ ମଞ୍ଚି ହେ ॥ ୩୨ ॥

ସାର ଗନ୍ଧସାର ପଙ୍କେ ଭୂଷିତ ହୋଇବେ
ଜନ-ପଙ୍କ-ପଙ୍କଜ-ବନକୁ ଉଜାଡ଼ିବେ ହେ ॥ ୩୩ ॥

ସବୁଦିନେ ଲୀଳାସ୍ଥାନ ନୀଳ ମହୀଧର
ଭକ୍ତଭାବ-ରଜ୍ଜୁରେ ବନ୍ଧନ ଅଛି ଯାର ହେ ॥୩୪॥

ଜଡ଼ ଯେତେଛନ୍ତି ଏତେ ଭାବ କି ଜାଣିବେ
ବାହୁଡ଼ିବା ବେଳେ ବେଶେ ବ୍ୟକତ ହୋଇବେ ॥୩୫॥

ଭବ ସାଗର-ସୁବର୍ଣ୍ଣ-ତରଣୀ ବିସ୍ତର
ସୁଭଦ୍ରାଙ୍କୁ ବିଜେ କରାଇଲେ ତଥା ଧର ହେ ॥୩୬॥

ତାପତ୍ରୟ-ଖଣ୍ଡ ଭଞ୍ଜନକୁ ଦଣ୍ଡବର
ସୁଦରଶନଙ୍କ ବିଜେ ସେହି ପରକାର ହେ ॥୩୭॥

ଇନ୍ଦ୍ରପଦଦାତା ଯେ ରାଜାଧିରାଜେଶ୍ୱର
ବିଜେ କରେ ଦ୍ୱିଜେ ଦେଇ ନିଜ କରଭର ହେ ॥୩୮॥

ଡାଳନ୍ତି ଚାମର ଶ୍ୱେତଛତ୍ର ଟେକା ତହିଁ
କ୍ଷୀର-ସାଗର-ଲହରୀ ଭ୍ରମ ଉପୁଜାଇ ହେ ॥୩୯॥

ଗହଳ ହୋଇଣ କଳାଛତ୍ର ଶୋଭା ଦର୍ଶି
ତୁଙ୍ଗ ଶିଖରୀ ପରେ କି ଜଳଦ ଆକର୍ଷି ହେ ॥୪୦॥

ପତାକା ବ୍ୟାଜଟି ତେଜେ ଶୂନ୍ୟେ ନୀରଧାର
ସ୍ୱେଦ ଛଳେ କରେ ନରତନୁ ଜରଜର ହେ ॥୪୧॥

ଚଞ୍ଚଳାଖେଳା ଚଳିବା ଖଦି ପୀତବାସ
ତୃଷିତ ଦ୍ୱିଜ-ଚାତକ ଜଳପାନେ ତୋଷ ହେ ॥୪୨॥

ଏ ପ୍ରମାଣ ବରଦ୍ଧଣ ପୂର୍ଚ୍ଛି ତେଣୁ ଚଳି
ନିଶାଣ ମଣ୍ଡୁକ-ନାଦେ ଦିଗନ୍ତ ଉଚ୍ଛୁଳି ହେ ॥୪୩॥

ପ୍ରଭୁ ଚଳନ ଶବଦ ଜନିତ ସ୍ତନିତ
ପୁଷ୍ପାଞ୍ଜଳି-ବକାବଳୀ ଉଡ଼ି ଖସେ ସତ ହେ ॥୪୪॥

ଏମନ୍ତେ ସ୍ନାନ ମଣ୍ଡପେ ସିଂହାସନ ପର
ବିଜେ ମହାପ୍ରଭୁ ଘେନି ଭଗ୍ନୀ ସହୋଦର ହେ ॥୪୫॥

ନାଗ ନର କିନ୍ନର ଗନ୍ଧର୍ବ ଛନ୍ତି ଘୃହିଁ
ଅନେକ କନକ ଘଟେ ପୂର୍ଣ୍ଣ କରି ତହିଁ ହେ ॥୪୬॥

ଢାଳିଲେ ଭୂସୁରେ ନୀର ଶ୍ରୀମୁଖ ମଣ୍ଡଳେ
ଧାରମାନ ପତନ ହୋଇଲା ମହାଙ୍କଳେ ହେ ॥୪୭॥

କି ମେରୁ-ଶିଖର-ମାରଗ-ହେମ-ଶୃଙ୍ଗୁ ଖସି
ଜାହ୍ନବୀ ଯମୁନା ହରିତାଳ-ଧାର ଆସି ହେ ॥୪୮॥

ଲେପନ ଚନ୍ଦନ ଖସି ଦିଶିଲା ଏମନ୍ତ
ସେ ଘନ ଶୃଙ୍ଗୁଁ କି ଜାତ ତରଳ-ରଜତ ଯେ ॥୪୯॥

ଦେଖିଲା ଆଖିରେ ଦରିଦ୍ରତା ନ ରଖିଲା
ମନହିଁ ଦୁଃସହ ଦୁଃଖମାନ ଉପେଖିଲା ହେ ॥୫୦॥

ହରିଚନ୍ଦନ ସଙ୍ଗରୁ ସେହି ବୋଲି ଘେନି
ବର୍ଣ୍ଣିଲେ ହେବେ ଏତ ବାଞ୍ଛାବରଣୀ ହେ ॥୫୧॥

ସବୁରୂପେ ଏ ଉପମା ଉତ୍ତମ ସମ୍ଭବେ
ବିରାଜିତ ଭୁଜ-ଶାଖା ଅଧର-ପଲ୍ଲବେ ହେ ॥୫୨॥

ଭକ୍ତି ମୁକ୍ତି ଫଳ ଅଛି ନ ଦେଖନ୍ତି କେହି
ସ୍ୱଭାବରେ ବ୍ରହ୍ମ-ଦାରୁ ବ୍ୟସ୍ତପଦେରହି ହେ ॥୫୩॥

ସୁରଭର ସ୍ନାନ ସେନାପଟା ବଳକଳ
ଯାହା ପଦେ ସଦା ଢଳଢଳ ଗଙ୍ଗାଜଳ ହେ ॥୫୪॥

ଭାଗ୍ୟରୁ ଏ ଉପମାକାରକ ମୁଁ ଯେ ହେଲି
ପୁଲକିତ-ଶରୀରେ ହରଷେ ସ୍ତୁତି କଲି ହେ ॥୫୫॥

ମହିମା ଅନନ୍ତ ପ୍ରଭେ ମହିମା ଅନନ୍ତ
ମନୋହାରୀ ସହୋଦର ହୋଇ ଯାର ଖ୍ୟାତ ହେ ॥୫୬॥

ଅରି-ଦର-କର ନଟଭ୍ରେ ଅରି-ଦର-କର
ଯୁଗେ ଯୁଗେ ଧରି ନାନା ବିଧ ଅବତାର ହେ ॥୫୭॥

ବିଭୀଷଣ-ଅଘ ବିଭୀଷଣ-ଅଘହର
ସ୍ଥାନ କରି ଦେଲ ଲଙ୍କା ନିଜ କଳେବର ହେ ॥୫୮॥

ଭବ-ବିରଞ୍ଚି-ପୂଜିତ ହେ ଭବ-ବିରଞ୍ଚି
ଶୁଚିକବଳକ ସଦାନନ୍ଦ ସଦାଶୁଚିହେ ॥୫୯॥

କବି ଉପଇନ୍ଦ୍ର ତବ କୃପାରେ ହୋଇଛି
ଏତେ ମନୋରଥ ପାର୍ଥେ କି ସଂଶୟ ଅଛି ହେ ॥୬୦॥

**

**

## ମାନ ଉଦ୍ଧାରଣ

### ଉପେନ୍ଦ୍ର ଭଞ୍ଜ

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-ହନୁମନ୍ତ ତୋଡ଼ି]

ମାନ ଉଦ୍ଧାରଣ କରନ୍ତେ କାରଣ
ଶରଣ ମୁଁ ତୁମ୍ଭ ପାଦ ତଳେ ॥ଘୋଷା॥

ଅନାଥର ନାଥ ନୀଳଗିରି ନାଥ
ଜଗନ୍ନାଥ ନାମ ନୀଳା ଚଳେ

ମହୋଦଧି କୂଳେ                କଳ୍ପ ବଟ ମୂଳେ
        ବିଜେ କରିଛ ବଡ ଦେଉଳେ ॥୧॥

ଲକ୍ଷେ ଯୋଜନରେ              ଗଜ ଡାକ ଦେଲା
        ତା' ଡାକ ଶୁଣିଲ ପଣା ଖେଳେ
ମାରକଣ୍ଡ ଋଷି                ଯାଉଥିଲେ ଭାସି
        ଉଦ୍ଧାର ଧରିଲ ବାମ କରେ ॥୨॥

ଲଙ୍କା ଦ୍ଵୀପକୁ ଗଲ              ବାଳି ବିନାଶିଲ
        ବନ୍ଧ ଯେ ବାନ୍ଧିଲ ସିନ୍ଧୁ ଜଳେ
ଲଙ୍କାରେ ରାବଣ               ବଧିଲ ଆପଣ
        ଜନକ ନନ୍ଦିନୀ ସୀତା ଛଳେ ॥୩॥

ଯୁଧିଷ୍ଠିର ବୋଲେ               ହସ୍ତିନାକୁ ଗଲ
        ଭୋଜନ କଲ ବିଦୁର ଘରେ
କୁରୁ ସଭାତଳେ                ଦ୍ରୌପଦୀ ଚହଲା
        କୋଟି ବସ୍ତ୍ର ଦେଲ ଅବହେଳେ ॥୪॥

ବଣ ପୋଡ଼ି ବେଳେ              ଘୋର ଦାବାନଳୁଁ
        ଉଦ୍ଧାରି ରଖିଲ ବ୍ରଜବାଳେ
କହେ ଉପଇନ୍ଦ୍ର                କବି କୁଳ ଚନ୍ଦ୍ର
        ଶରଣ ମୁଁ ତୁମ୍ଭ ପାଦ ତଳେ ॥୫॥

**

**

# ଜୟ ନୀଳାଦ୍ରି ବିହାରୀ

## ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା

(ଅଷ୍ଟାଦଶ ଶତାବ୍ଦୀ)

ଜୟ ନୀଳାଦ୍ରି ବିହାରୀ
ଭକତଙ୍କ ହିତେ ବିଜେ କରିଅଛ କରେ ଶଙ୍ଖଚକ୍ର ଧରି ।। ପଦ ।।

ସୀତା ମାତାଧର-ସୁତା ବାହନର
ଭକ୍ତ ଡାକିଲା ଆରତେ
ରଥାଙ୍ଗ ପେଶିଲ ଅରାତି ନାଶିଲ
ରକ୍ଷା କରିଛ ତୁରିତେ ।।୧।।

ନାଗଲୋକ ରାଜ ତନୁଜ ଅଗ୍ରଜ
ଜାୟା ଚିନ୍ତିଲା ଆରତେ
ଲଜ୍ଜା ନିବାରଣ ଲଜ୍ଜାରୁ ତାରଣ
ରକ୍ଷା କରିଛ ତୁରିତେ ।।୨।।

ଗିରିଶ ଦୁଲାଳ-ଜନନୀ ମାତୁଳ
ସଙ୍ଗେ ମଇତ୍ର ହୋଇଲ
କାମନାର ଅରି ଆତ୍ମଜଙ୍କୁ ହରି
ଏକା କାଣ୍ଡକେ ନାଶିଲ ।।୩।।

ସମ୍ବରାରି-ପର-ଧରାଧର ଶୂର-
ବଂଶେ ଜାତ ଅଜାମିଲ
ଅନ୍ତଃକାଳେ ପୁତ୍ର ନାମ ଜପିବାରେ
ବଇକୁଣ୍ଠେ ଠାବ ଦେଲ ।।୪।।

ବୋଲେ ସଦାନନ୍ଦ ବେନ୍ନଜନ୍ମ ମନ୍ଦ
ମୁଁ ଅଜାମିଳୁ ଅଧିକ
କେଳୀପ୍ରିୟ-ପୁଷ୍ପ-ଉଦ୍ଭବ-ବାନ୍ଧବ
କୁମାର ଭୟରୁ ରଖ ॥୫॥

**

**

## ମଣିମା ଶୁଣିମା ହେଉ

### ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା

(ଅଷ୍ଟାଦଶ ଶତାବ୍ଦୀ)

[ ରାଗ-କାମୋଦୀ ]

ମଣିମା ! ଶୁଣିମା ହେଉ ଗରବ ଡାକ
ମୀରକ୍ଷ ଜନକୁ ରଖ ପଙ୍କଜ ମୁଖ ॥ ଘୋଷା ॥

କୃପା ସାଗର କାହ୍ନିକ ମୋ ବେଳକୁ ଗଲୁ ଶୁଖି
ଜାଣିଲି ମୋ କର୍ମ ବାଙ୍କ ନୁହେଁ ସଲଖ ॥ ୧ ॥

ଆତଙ୍କ ନାଶନ ବାନା ନଶୁଣ ଭୃତ୍ୟ ବେଦନା
ଏବେ ହୋଇଯିବ ମନା କେ ଦେବ ଡାକ ॥ ୨ ॥

ଦାସ ଯେବେ ନାଶ ଯିବ କ୍ଷିତିରେ ଅକୀର୍ତ୍ତି ହେବ
କୀରତି ଚନ୍ଦ୍ରରେ ଲାଗିଯିବ କଳଙ୍କ ॥ ୩ ॥

କହେ ସଦାନନ୍ଦ ଧୀର ନାହିଁ ଆନ ପ୍ରତିକାର
ଏ ଦୀନ ଅବସ୍ଥା ମୋର ନେନେ ନଦେଖ ॥ ୪ ॥

**

**

# ମୋ ଦୁର୍ଭାଗ୍ୟ କର ଚୂନା

## ଗୋବିନ୍ଦ ଭଞ୍ଜ

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-କଲ୍ୟାଣୀ]

କୃପାସିନ୍ଧୁ ! ଦୀନବନ୍ଧୁ ! କାହିଁକି କରୁଣା ଊଣା ?
ମୋହପରି ଦୀନହୀନ ଧରାଧାମେ ନାହିଁ ଶୁଣା ॥ ଘୋଷା ॥

ଯାଚି ଯା ନଥିଲି ମନେ    ବସାଇ ଉଚ୍ଚ ଆସନେ
ସୁଖ ସଙ୍ଗେ ଦୁଃଖ ଦେବା
ରୀତି ତ ନଥିଲା ଜଣା ॥୧॥

ତୃଷାର୍ତ୍ତି ଜନେ ଆଦରେ    ଡାକି ବସାଇ ପାଶରେ
ପିଇବା ଆଗୁଁ ଭାଙ୍ଗିଲ
ଯାଚି ସୁମଧୁର ପଣା ॥୨॥

ବିତରି ସଂସାର ସାର-    ଫଳକୁ କଲ ଅସାର
ତାର କି ମୋ ଭାଗ୍ୟ ଦୋଷ
ଭବ ମୁଁ ହେଉଛି ବଣା ॥୩॥

ତୁମ୍ଭର ମଙ୍ଗଳମୟ    ଇଚ୍ଛାରେ ମୁଁ କରି ଜୟ
ନୋହୁଛି ଦୁଃଖିତ ପ୍ରଭୋ !
ପଡ଼ି ଏ ବିପଦେ ସିନା ॥୪॥

ନୃପତି ସୁତ ଗୋବିନ୍ଦ    ଚିନ୍ତଇ ପଦାରବିନ୍ଦ
ହେ ମଧୁହାରୀ ମୁକୁନ୍ଦ
ମୋ ଦୁର୍ଭାଗ୍ୟ କର ଚୂନା ॥୫॥

**

**

# କହଇ ମନ ଆରେ

## ଭକ୍ତଚରଣ ଦାସ

(ଅଷ୍ଟାଦଶ ଶତାବ୍ଦୀ)

[ ରାଗ କଳହଂସ କେଦାର ]

କହଇ ମନ ଆରେ ମୋ ବୋଲ କର
କଳାଶ୍ରୀ ମୁଖ ବାରେ ଦେଖିବା ଚାଲରେ
କେତେ ଧନକୁ ମନ ବାନ୍ଧିଛୁ ଆଣି
କି ଘେନି ଯିବୁ ତୋର ଛୁଟିଲେ ଘଟ ରେ ॥୧॥

ଖଣ୍ଡି ଯେ ଖଣ୍ଡି ତୋର ପଞ୍ଜରା କାଠି
ଖାଉଣ ଥିବେ ଶ୍ୱାନ ଶୃଗାଳ ବାଣ୍ଟି ରେ
ଖଟ ପଲଙ୍କେ ମନ ଶେଯାଇ ଶୋଉ
ଖଳ ଦୁର୍ଗନ୍ଧ ହେବ ଏ ତୋର ଦେହୁ ରେ ॥୨॥

ଗଲେଣି ତୋ ସଙ୍ଗରୁ ଯେତେକ ଜନ
ଗଣ୍ଠି ରେ ବାନ୍ଧିନେଲେ କେ କେତେ ଧନ ରେ
ଗୁରୁ ଗୋବିନ୍ଦ ନାମ ତୁଣ୍ଡେ ନ ବୋଲୁ
ଗାଢ଼େ ମରିକି ଣ ନିତ୍ୟେ ଧନ ଅର୍ଜିଲୁ ରେ ॥୩॥

ଘର ବୋଲି ଅର୍ଜିଛୁ ଯେତେ ପଦାର୍ଥ
ଘଟ ଛୁଟିଲେ ତୋତେ ବୋଲିବେ ଭୂତ ରେ
ଘର ଘରଣୀ ଦେହ କଳାହୁ ଥିବ
ଘେନ କ୍ଷୀଣ କୁଟୁମ୍ବ ଶୁଙ୍କ ହୋଇବ ରେ ॥୪॥

ଉଦ୍ଧାର ହେବୁ ଯେବେ ଭବସାଗରୁ
ଉପାୟ କରି ଏବେ ଭଜ ଶ୍ରୀଗୁରୁ ରେ

ଊଣା ହେଉଛୁ ଦିନୁଁ ଦିନ ଆୟୁଷ
ଆଉ ଏଣିକି ଅଛୁ କେତେ ବୟସ ରେ ॥୫॥

ଚନ୍ଦ୍ର ପ୍ରତିମା ପ୍ରାୟେ ଦିଶୁ ସୁନ୍ଦର
ଚଶ ଭିତର ଦେଖ କି ନାରଖାରରେ
ଚର୍ମ ଘେରିଛି ସିନା ଚଉରାଶିକି
ଚିତ୍ତ ତୁ ଦିଅ ନୀଳଗିରି ବାସୀଙ୍କି ରେ ॥୬॥

ଛାର ଦେହକୁ ମନ କରୁ ତୁ ସଜ
ଛନ୍ଦ କପଟ ତେଜି ଗୋବିନ୍ଦ ଭଜ ରେ
ଛୁଇଁବେ ନାହିଁ ତୋତେ ବୋଲିବେ ମଡ଼ା
ଛ' ଖଣ୍ଡ କାଠ ତୋର ହୋଇବ ଲୋଡ଼ା ରେ ॥୭॥

ଯମ ଯେ ନ ଜାଣଇଁ ବାଳୁତ ଯୁବା
ଜାଇବୁ ବୋଲି ମନ କରିଛୁ ଅବାରେ
ଜଣେହେଁ ଏଥି କେହି ନାହିଁ ଅମର
ଜଗନ୍ନାଥଙ୍କୁ ଭଜ ହେବୁ ଉଦ୍ଧାର ରେ ॥ ॥

ଝୋଲି କନ୍ଥା ପାଟଗୁଡ଼ା ପିନ୍ଧାକୁ ରସୁ
ଝାଡ଼ ଫସାରେ ମନ ଝସାଇ ପଶୁରେ
ଝୁଣ୍ଟି ପଡ଼ିଲେ ଉଠି ପାରିବୁ ନାହିଁ
ଝଡ଼ିଲା ପତ୍ର ବୃକ୍ଷେ ଲାଗିଛି କାହିଁ ରେ ॥୯॥

ଞଣି ଦିବସେ ଅସ୍ଥି ନୋହୁ ନା ମନ
ଞଦ୍ରାରେ ଦେଖୁଅଛୁ ଯଥା ସପନରେ
ଞ ଯିବେ ସଙ୍ଗେ କେହି ଯିବୁ ତୁ ଏକା
ଞାମମାତ୍ର ଅଟଇ ପଥକୁ ସଖା ରେ ॥୧୦॥

.ଟାଣ କରିଛୁ ମନ ସବୁ ମୋହର
ଟଳି ପଡ଼ିଲେ କେହି ନୋହେ କାହାର ରେ
ଟେର ଭିତରେ ଯେଉଁ ଅପୂର୍ବ ନାଗ
ଟୋପ ଚଉଦ ଅଛୁ ତୋ' ଦେହେ ପୁରି ରେ ॥୧୧॥

ଠିକେ ମୁଁ କହୁଅଛି କର ମୋ କଥା
ଠିକେ ତୋ ଦେହେ ଅଛି ଶୂନ୍ୟ ଦେବତାରେ
ଠକ ଯିବୁଟି ଠିକମୁଣ୍ଡ ପଡ଼ିଲେ
ଠିକେ ଗୁରୁଙ୍କ ସେବା କର ତୁ ଭଲେ ରେ ।।୧୨।।

ଡାକ କହୁଛି ମନ ଭଜ ଗୋବିନ୍ଦ
ଡର କଙ୍କାଳ ଯାଉ ତୋହର ହୃଦରେ
ଡଙ୍ଗା ଯେହ୍ନେ ଜଳରେ ଗୃହାଁ ପଛକୁ
ଡେଉଥାନ୍ତି ଶ୍ରବଣ ଭକ୍ତି ଡାକକୁ ରେ ।।୧୩।।

ଢୋଲ ଯେସନ ଢାଉଁ ଢାଉଁ ବାଜଇ
ଢାଲେ ଢହିଁ ଭିତରେ କିଛିହିଁ ନାହିଁରେ
ଢାଙ୍କି ରହିଛି ଦେହ ସବୁଟି ତୁଚ୍ଛ
ଢଳ ପଡ଼ିଲେ ସବୁ ହେବଟି ମିଛ ରେ ।।୧୪।।

ଏଣେ ତୁ ଦେଇଥିଲେ ତେଣେ ପାଇବୁ
ଅଣ ଆୟୁଷ ବେଳେ କା ଯେନ ଯିବୁରେ
ଅଣ ନିଶ୍ୱାସୀ ହୋଇ ରହିବୁ ଦିନେ
ଅନେକ ଦୁଃଖ ଦେବେ ଯମ ଭୁବନେ ରେ ।।୧୫।।

ତୁ ଯେବେ ବୋଲୁ ମୋର ଅର୍ଜିଲା ଧନ
ତୋ ଦେହ ନୋହେ ତୋର ଦେଖ ଏଥାନ ରେ
ତୋହର ସଙ୍ଗେ ମନ ଗଲେଣି କେତେ
ତୁ ମିଥ୍ୟା କଥାକୁ ନଯାଉ ପରତେ ରେ ।।୧୬।।

ଥିଲେ ଏ ସଂସାରରେ ଯେତେ ନୃପତି
ଅସ୍ତ କରି କେ ଭୋଗ କଲା ଏ ପୃଥିରେ
ଥୋଇଲ ଧନ ଚୋର ଖଣ୍ଡି ଖାଇବେ
ଆନ ତୋହର ଘର କରି ରହିବେ ରେ ।।୧୭।।

ଦେହେ ପୂରିଛି ତୋର ଅଶେଷ ରୋଗ
ଦାନ ସ୍ୱରକ ସିନା ଏ ସୁଖ ଭୋଗ ରେ

ଦଣ୍ଡେହେଁ କେହି ତୋତେ ରଖିବେ ନାହିଁ
ଦଣ୍ଡ୍ୟ ଯେ ଥିବେ ଯମ-ଡଗରେ ନେଇ ରେ ॥୧୮॥

ଧର୍ମ ଅଧର୍ମ କଥା ନ ଜାଣୁ ତୁହି
ଧନ୍ଦହେଉଛୁ ଧନ ଅର୍ଜିବା ପାଇଁ ରେ
ଧୋକା ରଖିଲେ ଧନ୍ଦା ଫିଟିବ ନାହିଁ
ଧର୍ମରେ ଆତଯାତ ହେଉଛି ମନ୍ଦ ରେ ॥୧୯॥

ନିନ୍ଦିତ କର୍ମ କଲେ ନିନ୍ଦା ପାଇବୁ
ନରକେ ପଡ଼ି କେତେ ଦୁଃଖ ସହିବୁ ରେ
ନିମିଷେ ମାତ୍ର ମୁଖେ ନ ବୋଲୁ ହରି
ନାଶ ହେତୁକୁ କପଁା ଅଛୁ ଆବେଶ ରେ ॥୨୦॥

ପାହିଲେ ନିଶି ଯେସନ୍ତେ ରବି ଉଦ ଏ
ପଦ୍ମଲୋଚନ ସବୁ ଦେହେ ରଜ ଏ ରେ
ପ୍ରଭୁଙ୍କୁ ଆଶ୍ରେ କର ତରିବୁ ଯେବେ
ପାଦପଦ୍ମରେ ଚିତ୍ତ ଦିଅତୁ ଏବେ ରେ ॥୨୧॥

ଫୁଲୁ ଗନ୍ଧ ହରିଲା ପ୍ରାୟେ ସମୀର
ଫିଟି ପଳାଇ ଯିବ ଜୀବ ତୋହର ରେ
ଫଳ ସଂସାରେ ଲଭ ହରି ଭଜନ
ଫାଶ ଗଳାକୁ କପଁା କରୁଛୁ ଧନ ରେ ॥୨୨॥

ବେଳକୁବେଳ ତୋତେ କହୁଛି ମୁହିଁ
ବାନ୍ଧିଣ ନେବ ଯମ କି ଦୁଃଖ ଦେଇରେ
ବିକଳେ କାନ୍ଦୁଥିବୁ ଆକୁଳ ହୋଇ
ବେଳନ୍ତୁଁ ଆଶ୍ରେ କର ଭଜ ଗୋସାଇଁ ରେ ॥ ୩॥

ଭେଳା ବୁଢ଼ିବ ହେଲା କଲେ କହୁଛି
ଭଙ୍ଗା ନାବରେ ନେବା ସିନ୍ଧୁ ତରିଛି ରେ
ଭାବକୁ ନିକଟ ସେ ଅଭାବେ ଦୂର
ଭକତଦାସ କହେ ଜୀବନ ତୁର ହେ ॥୨୪॥

ମିଛ ମାୟା ସଂସାର ନୋହେ କାହାର
ମଲବୋଲଣ ଧନେ ପଡ଼ିବ ହୁର ରେ
ମହୀ ଭିତରେ କେହି ରହିବେ ନାହିଁ
ମଲ ବୋଲି କାନ୍ଦୁଛୁ ମରବୁ ତୁହିରେ ॥୨୫॥

ଜନମ ହେଲେ ପ୍ରାଣୀ ଅବଶ୍ୟ ମର
ଯଶ ରଖିବୁ ଯେବେ ଭଜ ଶ୍ରୀ ହରରେ
ଯମ ଯେ ନେବ ବାନ୍ଧ ହେବୁ ମେଲଣି
ଜଗନ୍ନାଥ ମହିମା ଏଣିକି ଆଣି ରେ ॥୨୬॥

ରଙ୍ଗା ପସର ସିନା ଭବସାଗର
ରଙ୍ଗ ଭିତରେ ଅଛି କି ନାରଖାର ରେ
ରୂପ ପ୍ରତିମାକୁ ତୁ ପରତେ ନ ଯା
ରହିବେ ନାହିଁ କେହି ରଜା ପରଜା ରେ ॥୨୭॥

ଲୋଚନେ ଦେଖି କର୍ଣ୍ଣେ ଶୁଣୁଛୁ କଥା
ଲୋଭ କର ଅର୍ଜିଲୁ ଧନସଂପତ୍ତି ରେ
ଲୋଭଟି ସବୁନାଶ କରଇ ମନ
ଲେଉଟିଲେ ନପାଇବୁ ଆଉ ଜୀବନ ରେ ॥୨୮॥

ବୃଥର୍ଥେ ବହିଅଛୁ ଦୁର୍ଲଭ ଦେହ
ବିଷୟ ବଶେ ଆଉ ନବଳା ସ୍ନେହରେ
ବୃକ୍ଷ ସିଦଟି ମୂଳ ଲୋଭ ସରବ
ବେଳହୁଁ ଆଗେ କର ଭଜ ମାଧବ ରେ ॥୨୯॥

ଶ୍ରୀକୃଷ୍ଣ ପାଦପଦ୍ମେ ଦିଅ ତୁ ମନ
ସରିଲେ ନପାଇବୁ ଆଉ ଜୀବନରେ
ଶ୍ରୀକୃଷ୍ଣ ନାମ ଗୋଟି କର ଭଜନ
ଶ୍ରୀକୃଷ୍ଣ ପାଦପଦ୍ମେ ଦିଅ ତୁ ଧ୍ୟାନ ରେ ॥୩୦॥

ସନ୍ତୋଷଚିତ୍ତେ ତୁହି ହରଙ୍କି ଭଜ
ସଂସାରେ ପଡ଼ି ଆଉ ନପାଅ ଲାଜ ରେ

ସବୁଟି ମିଛ ହରି ନାମଟି ସତ
ଶ୍ରୀକୃଷ୍ଣ ପାଦ ପଦ୍ମେ ଦଅନ୍ତୁ ଚିତ୍ତ ରେ ।।୩୧।।

ସତ୍ୟ ମଣୁଛୁ ତୁଚ୍ଛ ଭବ ସାଗର
ସରି ଯାଉଛୁ ପରମାୟୁ ତୋହର ରେ
ସନ୍ତୋଷ ହୋଇ ଦୃଢେ଼ ଭଜ ଶ୍ରୀହରି
ଶୋକ ସାଗରୁ ଯେବେ ହୋଇବୁ ପାରି ରେ ।।୩୨।।

ହୁଡ଼ିଲେ ଯେତେ ଜନ ହରିନାମକୁ
ସ୍ଥାନଗଢକ ଗଲେ ବୁଡ଼ି ତଳକୁ ରେ
ହଜିଲେ ଦେହ ଆଉ ପାଇବୁ ନାହିଁ
ହାଟବସାଇଥିବେ ତୋ ଦେହପାଇଁ ରେ ।।୩୩।।

କ୍ଷୟୁ ଦୁର୍ଲ୍ଲଭ ଦେହ ହୋଏ ଆୟୁଷ
କ୍ଷୟୁ ନଯିବ ନାମ ହୃଦରେ ଘୋଷ ରେ
ସ୍ଥିର ଦେହକୁ ମନ ନଯା'ବିଶ୍ୱାସ
ସ୍ଥିର ଦୁର୍ବୁଦ୍ଧି କହେ ଭକତ ଦାସ ରେ ।।୩୪।।

**

**

# ଘେନ ଘେନ ମୋର ଜଣାଣ

## ଅଭିମନ୍ୟୁ ସାମନ୍ତ ସିଂହାର

(ଅଷ୍ଟାଦଶ ଶତାବ୍ଦୀ)

ଘେନ ଘେନ ମୋର ଜଣାଣ
                    ବାରେ କୃପାନିଧାନ
ବକାରି କଂସାରି ନୀଳାଦ୍ରି ବିହାରୀ
                    ଗୋବର୍ଦ୍ଧନ ଗିରି ଧାରଣ ॥୧॥

ସତ୍ୟଯୁଗେ ସତ୍ୟବନ୍ତ ହୋଇ
                    ହରି ଇନ୍ଦ୍ର ଛଳେ କରି ଗମନ
ମାୟାବନ୍ତ ବେଶ ଧରି ଶ୍ରୀନିବାସ
                    ବଳିକି କରିଛ ବାରଣ ॥୨॥

ତ୍ରେତୟା ଯୁଗରେ ମିହିର ବଂଶରେ
                    କୌଶଲ୍ୟା କୋଳେ ଜନମ
ପିତା ସତ୍ୟ ମାନି ହେଲ ବନବାସୀ
                    ନାଶିଲ କୈକସୀ-ନନ୍ଦନ ॥୩॥

ଦ୍ୱାପର ଯୁଗରେ ମଥୁରା ନଗରେ
                    ଜନ୍ମ ହେଲ ବଳି ସଦନ
ଆସି ଗୋପପୁରେ ମୋହି ବ୍ରଜନାରୀ
                    କଂସକୁ ଧ୍ୱଂସିଲ ଆପଣ ॥୪॥

କଳିଯୁଗରେ ଶ୍ରୀ ନୀଳାଚଳରେ
                    ଜଗନ୍ନାଥ ନାମ ଧାରଣ
କରି ଲୀଳା ଖେଳା ଆହେ ଚକାଡୋଳା
                    ଭକ୍ତଙ୍କୁ କରିଛ ତାରଣ ॥୫॥

ଏହିରୂପେ କେତେପର ଅନୁସାରେ
ଲୀଳା କରଅଛ ଧାରଣ
ବୋଲେ ଅଭିମନ୍ୟୁ ସାମନ୍ତ ସିଂହାର
ଶ୍ରୀରଙ୍ଗଚରଣେ ଶରଣ ॥୫॥

**

**

## ଜୟ ଜୟ ଜଗନ୍ନାଥ

### ଅଭିମନ୍ୟୁ ସାମନ୍ତସିଂହାର

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-କେଦାର]

ଜୟ ଜୟ ଜଗନ୍ନାଥ ଚଢ଼ି ନନ୍ଦଘୋଷ ରଥ
ଅନ୍ତର୍ଯ୍ୟାମୀ ! ଅନ୍ତର୍ଗତ ବାରତା ଜାଣ
ଦୁଃଖୀ ଜଣାଇଲେ ଦୁଃଖ କେବେହେଁ ନୁହଁ ବିମୁଖ
ଦୁଃଖ ଏଡ଼ି ସୁଖ ତାକୁ ଦିଅ ପ୍ରମାଣ
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ॥୧॥

ପୂର୍ବେ ନରସିଂହ ରୂପେ ସ୍ତମ୍ଭରୁ ବାହାର ଆପେ
ହିରଣ୍ୟ ରାଜାର ହୃଦ ନଖେ ଚିରିଲ
ତା ପୁତ୍ର ପ୍ରହ୍ଲାଦକୁ ସ୍ୱର୍ଗେ ଇନ୍ଦ୍ର କଲ ତାକୁ
ଧ୍ରୁବ କୁମରକୁ ଅଭିମାନୁଁ ତାରିଲ
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ॥୨॥

ଦୁର୍ଯ୍ୟୋଧନ ସଭାତଳେ ଦ୍ରୌପଦୀଙ୍କୁ ନେଲବେଳେ
ସତୀ ବିବସନ କାଲେ ଚନ୍ଦ୍ରଲେ ଯହୁଁ

ଆତଙ୍କ ନାଶନ ବାନା    ବିପଦକୁ ବଜ୍ରସେହ୍ନା
ପଞ୍ଚାବନ କୋଟି ବସ୍ତ୍ର ଦେଲଟି କହ୍ନୁଁ
ସେହୁ ପ୍ରଭୁ ନୁହେଁ କି ତୁମ୍ଭେ
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ॥୩॥

ବନଜୀବ ପଶୁ ଜାତି    ତା' ସଙ୍ଗେ ବାଲ ସନ୍ତତି
ଆପେ ଗର୍ଭବାସ ହୋଇ ବୁଲେ ବନରେ
ଶବର ବିନ୍ଧିଲା ବାଣ    ମୃଗୀ ଚିନ୍ତେ ନାରାୟଣ
ବଜ୍ର ମାରି ବ୍ୟାଧ ପ୍ରାଣ ନେଲଟି ଖରେ
ସେହୁ ପ୍ରଭୁ ନୁହେଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ॥୪॥

ଗଜରାଜ ଜଳ ପିଉଁ    ଗ୍ରାହ୍ଲ ପୀଡ଼ା କଲା ସହୁଁ
ଆତଙ୍କେ ଡ଼ାକିଲା ଗଜ ରଖିଲ ହେଲେ
ଆତଙ୍କ ନାଶନ ବାନା    ବିପଦକୁ ବଜ୍ରସେହ୍ନା ।
ଅଦଭୁତେ ଗ୍ରାହ୍ଲ ଶିର ଛେଦିଲ ଜଳେ
ସେହୁ ପ୍ରଭୁ ନୁହେଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ॥୫॥

ବାଳି ଦଶାନନ ମାରି    ସୁଗ୍ରୀ ବିଭୀଷଣ ତାରି
ଅକଣ୍ଟକ ରାଜ୍ୟ ଦେଲ ସୁବର୍ଣ୍ଣପୁରୀ
ଉଗ୍ରସେନେ ଶାଢ଼ୀ ଦେଇ    ଯୁଧିଷ୍ଠିରଙ୍କି ହେଲ ସ୍ନେହୀ
ଦୁର୍ଯ୍ୟୋଧନ ଶତଭ୍ରାତା କୁଟେଣ ମାରି
ସେହୁ ପ୍ରଭୁ ନୁହେଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ॥୬॥

ଦାମୋଦର ପଣ୍ଡା ଦୁଃଖ    ଆଚମ୍ବିତ କଥା ଦେଖ
ଭିକ୍ଷାକୁ ମାଗିଣ ସେହୁ ବଞ୍ଚଇ ଦିନ
ସେ ଗଲା ଦ୍ୱାରକାପୁର    ସେବିଲା ତୁମ୍ଭ ପୟର
ବିପୁଳ ସମ୍ପତ୍ତି ଦେଲ ହେ ଭଗବାନ
ସେହୁ ପ୍ରଭୁ ନୁହେଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନଶୁଣ ଏବେ ॥୭॥

ଦୀନ ଅଭିମନ୍ୟୁ ମାନ କହିଲେ କଥା ନଶୁଣ
ଆହେ ପ୍ରଭୁ ଶଙ୍ଖଚକ୍ର ସାରଙ୍ଗଧର !
ଲକ୍ଷ ଯୋଜନରେ ଥାଇ ଡାକିଲେ ଶୁଣ ଗୋସାଇଁ
ତେଣୁ କରି ଭରସାଟି ଅଛୁ ମୋହର
ସେହି ପ୍ରଭୁ ନୁହଁ କି ତୁମ୍ଭେ ?
ଦୁଃଖୀ ଜଣାଇଲେ ଦୁଃଖ ନଶୁଣ ଏବେ ॥୮॥

**

**

## ଦୟାମୟ କୃପାସିନ୍ଧୁ ପଦେ

### ଅଭିମନ୍ୟୁ ସାମନ୍ତ ସିଂହାର

(ଅଷ୍ଟାଦଶ ଶତାବ୍ଦୀ)

ଦୟାମୟ କୃପାସିନ୍ଧୁ ପଦେ
ଲଗାଇଥିଲି ମୁଁ ମନ ଲୟ ହେ
ରଖିଥିଲି ଆଶା ଗୋପନ ବନ୍ଧୁତା
ଜାଣେ କହାଇଛ କେତେ ସିନ୍ଧୁସୁତା
କାଳକୁ ରହିଛୁ ଶ୍ରୀଯୁଣ୍ଡିଙ୍କ କଥା
ଭଲି ମନ ନୁହେଁ ଥୟ ହେ ॥ ୧ ॥

ଜରବାକୁ ପ୍ରେମ ପୋଷିଥିଲି ମନେ
ଚନ୍ଦ୍ରାବଳୀ ଦଶା ପଡ଼ିଥିଲା ଧ୍ୟାନେ
ଖଲେ ଜରନ୍ତର ମନକଥା ମନେ
କେମନ୍ତେ ହେବ ନିର୍ଭୟ ॥ ୨ ॥

କପଟ ରଖି ଯେ ତୁମ୍ଭଙ୍କୁ ଜଣିବା
କେଉଁ ଭରସାରେ ପାଞ୍ଚିବ ମୁଁ ଅବା
ମନେପଡ଼େ ଅଭିମନ୍ୟୁ ଜୀବ ଯିବା
କେମନ୍ତେ କରିବ ଜୟ ॥ ୩ ॥

ଘାରବାରୁ କଠ ଘୋର ଦୁଃଖ ଶୋକ
ହାରବାରୁ ହୋଇ ନାଗଶ ଅଧିକ
କରପାରଛ ମୁଁ ଅନାଇଁ ଶ୍ରୀମୁଖ
ଯାହା ତୁମ୍ଭ ଅଭିପ୍ରାୟ ॥ ୪ ॥

**

**

## କୃପାସିନ୍ଧୁ ଦୀନବନ୍ଧୁ

### ଅଭିମନ୍ୟୁ ସାମନ୍ତ ସିଂହାର

(ଅଷ୍ଟାଦଶ ଶତାବ୍ଦୀ)

[ ରାଗ-ଶୋକ କାମୋଦୀ ]

କୃପାସିନ୍ଧୁ ଦୀନବନ୍ଧୁ ଶ୍ରୀଚରଣରେ
ଜଣାଉଛି ଅପରାଧୀ ଦୀନ
ଖେଦ ଜଲଧିରେ ଭାସି ମୁଁ ଯାଉଛି
କାହ୍ନକର ହୋଇ ସୁପ୍ରସନ୍ନ
ଆହେ ଗିରିଧର
ଘୋଷଣା ବାଜୁଛି ତ୍ରିଭୁବନପୁର
ଉଡୁଛି କେତନ ପତିତପାବନ
ଶରଣ ଦୋସର ବିଶ୍ୱମ୍ଭର ॥୧॥

ଚରାଚର-ଚରାଚରିତ ଚଞ୍ଚଳା
ପଡ଼ି ବହୁବର୍ଗ ଦାସୀ ତୁମ୍ଭେ
ଛାଡ଼ି ସବୁ ଆଶା କରିଛି ଭରସା
ଏହି ଗୁଣମାନ ଧରି ଦମ୍ଭେ,
ଆହେ ଜନାର୍ଦ୍ଦନ !
କେବେ ନହେଲେ ସୁପ୍ରସନ୍ନ
ନିର୍ମଳଯଶ କଳାନିଧି ଅଙ୍ଗରେ
କଳଙ୍କ ଲଗିଯିବଟି ଜାଣ ॥୨॥

ଝାଣକର କନ୍ଧ ଆଗ ମହାପ୍ରଭୁ
ଅଖିଳକୋଟି ବ୍ରହ୍ମାଣ୍ଡେଶ୍ୱର
ଠକ ଏଥର ନଷ୍ଟସ୍ଥ ହସିବେଟି
ପ୍ରଭୁଙ୍କର ଦେଖି ଅବସ୍ଥର
ଆହେ ଉରହସ
ଛାଲେ କଳ, ମୋତେ ପର ପସ
ଅହ୍ୱଣୀ ଜନ ତୁଣ୍ଡେ ଶୁଣାଯିବ
ପ୍ରଭୁ ହେଲେ ଅନୁଗତ ମର ।।୩।।

ଛାପ ଜସ୍ଥହର ମୁକଣ୍ଠ ପସର
ଅଗାଧ ,ମୁଦ୍ର ମହାମେରୁ
ସ୍ଥାଣୁର ଗଙ୍ଗ ଲବକେ ଦଳପାର
ଟିକାକେ ଦୁବକୁ କର ଦାରୁ
ଆହେ ଧୀନଯାଣ
ଧ୍ରୁବ-ପ୍ରହ୍ଲାଦ ନସ୍ତାରଣ
ନୃପ ନହୁଷ ଅଜାମିଳ ବ୍ୟାଧର
ମିଯତା ଭାବ କରେଛ ଜାଣ ।।୪।।

ପାଞ୍ଚାଳୀ ହରଣୀ ଗଜ ଆଦ୍ଧ ଜାଣି
ଆରତେ ଡାକଲେ ସଙ୍କଟରେ
ଫଣୀ ପୁଣ୍ଡ୍ରସ୍ଥକ ବେଣଛଦ୍ମ କାକ
ଗଢ ଦେଲ ଦ୍ରୋହ କଲଠାରେ
ଆହେ ବଶ୍ୱମ୍ଭର
ଭକ୍ଷିଲ ଶବଣ୍ଠ ଚଖାଫଳ
ମନ୍ଦୋଦସ୍ଥ ଇଳା ଅହଲ୍ୟା ପିଙ୍ଗଳା
ମାନଙ୍କୁଟି ପସ୍ଥ ଗଢ ଦେଲ ।। ୫ ।।

ଜାମ୍ବବାନ ବାଲୀ ମସ୍ଥ ସୁଗ୍ରୀବର
ବଖାଷଣ୍ଡରତ ସୁଖେଦାମ୍ନୀ
ରଙ୍କ ଦାମୋଦର ସୁଦାମ ସୁବଳ
ମିଯତା ଭାବକୁ ଅଛ ଘେନି

ଆହେ ଲୋକନାଥ
ବିଦୁରର ବାଞ୍ଛା କଲ ସାର୍ଥ
ଦରିଦ୍ରକୁଳତିଳକ ସୁଦାମାର
ପୂର୍ଣ୍ଣ କରିଦେଲ ମନୋରଥ ॥ ୭ ॥

ଶମନପୁରରୁ ଗୁରୁପୁତ୍ର ଆଣି
ଅନ୍ଧକୁ ଦ୍ୱନ୍ଦ୍ୱରେ ଚକ୍ଷୁ ଦେଲ
ସେ ମହିମାମାନ ଏବେ କେଣେ ଗଲା
ଶ୍ରୀହସ୍ତ ଚକ୍ର କି ହଜାଇଲ
ଆହେ ହୃଷୀକେଶ !
କ୍ଷମାକର ଦୀନ-ଜନ ଦୋଷ
ଅଭୟ ଚରଣେ ଶରଣ ପଶୁଛି
ଅଭିମନ୍ୟୁର ପୂରାଅ ଆଶ ॥ ୭ ॥
**

**

# ଜଗନ୍ନାଥ ହେ

## ବନମାଳୀ ଦାସ

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-କାମୋଦୀ]

ଜଗନ୍ନାଥ ହେ...
କିଛୁ ମାଗୁନାହିଁ ମୁଁ ତୋତେ
ଧନ ମାଗୁନାହିଁ ଜନ ମାଗୁନାହିଁ
ମାଗୁଛି ଶରଧା ବାଲିରୁ ହାତେ ॥ ଘୋଷା ॥

ଆନ ଦରଶନ ନ ଲୋଡ଼େ ନୟନ
ଏକା ତୋହ ଦେଖା ବିନା
ଶୁଣିବାକୁ କାନ ନ ଇଚ୍ଛଇ ଆନ
ତୋହ ଚରିତେ କାମନା ॥୧॥

ରସନା ନ ବାଞ୍ଛେ ଗ୍ରାମ୍ୟଗୀତ ଗାଇ-
ବାକୁ ରଜନୀ ଦିବସ
ତୋହ ନାମାବଳୀ କେବଳ ଶଙ୍ଖାଳ
ହୋଇଥାଉ ପୀତବାସ ॥୨॥

ନାସା ମୋର ତୃପ୍ତି ନ ଲଭଇ ଆନ
ସୁବାସ ଦ୍ରବ୍ୟ ଆଘ୍ରାଣେ
ତୋହ ଛଡ଼ା ମାଳ ତୁଳସୀ କୁସୁମ
ଚନ୍ଦନ କର୍ପୂର ଘ୍ରାଣେ ॥୩॥

ମୋ ହସ୍ତ ଅଙ୍ଗୁଳି ରାମ ବନମାଳୀ
ହରେକୃଷ୍ଣଜପୁଥାଉ
ବୋଲେ ବନମାଳୀ ମୋ ବେନି ଚରଣ
ତୋ ତୀର୍ଥ ଭ୍ରମଣେ ଯାଉ ॥୪॥

**

**

# ମହାବାହୁ

**ବନମାଳୀ ଦାସ**

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-ସାବେରୀ]

ମହାବାହୁ ! ଏହି କଥାରେ ମୋ ମନ
ନିତି ଦେଖୁଥିବ          ନୀଳାଦ୍ରି ମଣ୍ଡପେ
କଞ୍ଜ ସୁନ୍ଦର ବଦନ ॥ ଘୋଷା ॥

ଅଞ୍ଜଳିରେ ଜଳ          ପିଇ ପିନ୍ଧୁଥିବ
ବକଳ କରି ବସନ
ଶଚୀପତି ପଦ          ତୁଚ୍ଛ ମଣୁଥିବ
ଥିଲେ ତୁମ୍ଭ ସନ୍ନିଧାନ ॥ ୧ ॥

ଲେଖି ହୋଇଥିବ          ଅର୍ଦ୍ଧ ଚନ୍ଦ୍ର ମୁଖ
ଚନ୍ଦନ ଲାଗି ବେଳକୁ
ଧୀରେ ଚାହୁଁଥିବ          ବିପୁଳ ଭୁଜକୁ
ସୁଭଦ୍ରା କାମପାଳଙ୍କୁ ॥ ୨ ॥

ଅବକାଶ ମାନଙ୍କରେ          ମୋ ଲାଳସ
ହୋଇଥିବ ଅହର୍ନିଶ
ଭେଟେବେଳେ ତୋଳେ          ହେଲେ ନ ଦେଖିବ
ବ୍ରହ୍ମ ରୁଦ୍ର ପିନାଈଶ ॥ ୩ ॥

ଛନ୍ନ ବଦନ ଚନ୍ଦ୍ରକୁ          ଗୁହିଁ ମୁହିଁ
ତାପତ୍ରୟକୁ ନାଶିବ
ବୋଲେ ବନମାଳୀ          ଜନ୍ତୁପଥ ପାଖ
ଲୋକଙ୍କୁ ଦେଖି ହସିବ ॥ ୪ ॥

**

**

# କଳା ଧଳା ସୋଦରେ

**ବନମାଳୀ ଦାସ**

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-ସୁରଟ ମହ୍ଲାର]

କଳା ଧଳା ସୋଦରେ
ବଳା ଚନ୍ଦ ମୋଦରେ
ପଳାଇବ ଦୁରିତ ଜରଦ୍ଧ ମହାଖେଦରେ ॥ଘୋଷା॥

ଦଳିତ ସୁ ଅଞ୍ଜନ
ବଳି ତନୁ ରଂଞ୍ଜନ
ଲଳିତ ତମାଳ ଇନ୍ଦ୍ରମଣି ଦର୍ପ ଗଂଜନ ॥୧॥

ଗଙ୍ଗା ଚନ୍ଦ୍ରୁଁ ଧବଳ
ଅଙ୍ଗ ବଳୀଏ ବଳ
ରଙ୍ଗାଧର ଶୋଭା ଦେଖ ଦୁଃଖ ହେବ ଦୁର୍ବଳ ॥୨॥

ବ୍ରହ୍ମାଁ ଲୋକ ନିସ୍ତାରେ
ମହା ବାହୁ ବିସ୍ତାରେ
ଆହ୍ଲାଦରେ ଏ ପଦ ଚଉଦଲୋକ ଶାସ୍ତାରେ ॥୩॥

ବନମାଳୀ ଭାଷିଲା
ଜନମ ବିନାଶିଲା
ଘନଶ୍ୟାମ ରୂପଠାରେ ମନ ନିବେଶିଲା ॥୪॥

**

**

# ଏହି ଅଳି ଶ୍ରୀ ଛାମୁଁରେ

**ବନମାଳୀ ଦାସ**

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-ମାଙ୍ଗା ମାଳବ ଗୌଡ଼ା]

ଏହି ଅଳି ଶ୍ରୀ ଛାମୁଁରେ ଦୀନବନ୍ଧୁ
ଏହି ଅଳି ଶ୍ରୀ ଛାମୁଁରେ
ଶ୍ରୀରଙ୍ଗାଚରଣ ସେବାରେ ମୋ ମନ
ରହିଥାଉ ନିରନ୍ତରେ ।।ଘୋଷା।।

ଦୀନା କନା ପଛେ ମନା ହେଉ ମୋତେ
ନୀଳଚକ୍ର ବାନା ଚାହିଁ
ସୁଖୀ ହେଉଥିବ ଅଖିଳ ପଣ୍ଡ ହେ
ନିର୍ଦ୍ଦୟ ହୋଇବ ନାହିଁ ।।୧।।

ବାର ମାସେ ତେର ଯାତ୍ରା ଦେଖୁଥିବ
ଶ୍ରୀ କ୍ଷେତ୍ରେ ହୋଇ ଭିକାରୀ
ସାଧ ସନ୍ଥଙ୍କର ବୋଲାଇ କିଂକର
ମାଗୁଥିବ ମାଧୁକରୀ ।।୨।।

ଆନନ୍ଦ ବଜାରେ ବୁଲି ମୁଁ ମଜାରେ
ଗାଉଥିବ ତୋର ନାମ
ତୋ ପ୍ରେମ ସାଗରେ ବୁଡ଼ି ଯାଉଥିବ
ବୋଲି ହରେକୃଷ୍ଣ ନାମ ।।୩।।

ଏଥିପାଇଁ କୁଳମୂଳ ହରାଇଛି
ସାଥୀ କରି ତୋତେ ଏକା
ଦାସ ବନମାଳୀ ଦୋଷ ନ ଧରିବୁ
ଗୋବର୍ଦ୍ଧନ ଗିରି ଟେକା ।।୪।।

**

**

# ଦୀନବନ୍ଧୁ ଦଇତାରୀ

## ବନମାଳୀ ଦାସ

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-କାମୋଦୀ]

ଦୀନବନ୍ଧୁ ଦଇତାରୀ
ଦୁଃଖ ନ ଗଲା ମୋହର
ହେଲ କି ନିଷ୍ଠୁର ଏତେ ନୀଳାଚଳେ ବିଜେ କରି ।।ଘୋଷା।।

ଲକ୍ଷ ଯୋଜନରେ ଗଜ ଡାକିଲା ହେ ଦେବରାଜ
ତା' ଡାକକୁ ଚତୁର୍ଭୁଜ ! ଶୁଣିଛ ଶ୍ରବଣ ଡେରି ।।୧।।

କୁରୁପତି ସଭାତଳେ ଦ୍ରୌପଦୀ-ଆତଙ୍କ କାଳେ
କୋଟି ବସ୍ତ୍ର ଦେଇ ହେଲେ ଲଜ୍ଜାରୁ କରିଛ ପାରି ।।୨।।

ବଳଭଦ୍ର ପ୍ରଭୁ ବୋଲି ବୋଲେ ମୁଁ ଯେ ଆଶ୍ରା କଲି
ଦେଖି ଦେଖି ଭାସିଗଲି କେ ଏଥୁ କରିବ ପାରି ।।୩।।

ରଖ ବା ନରଖ ମୋତେ ଶରଣ ତୋ ପାଦଗତେ
କହେ ବନମାଳୀ ଗୀତେ ବସିଅଛୁ ଧ୍ୟାନ କରି ।।୩।।

**



**

# ଚକାଡୋଳା ଚକ୍‌କଣ କାଳିଆ ହେ

## ବନମାଳୀ ଦାସ

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-ଗୁର୍ଜ୍ଜରୀ]

ଚକାଡୋଳା ଚକ୍‌କଣ କାଳିଆ ହେ
ବକାରି ମୋ କଥା ଶୁଣ
ଠକାଠକି ଖଣ୍ଡ୍ର ଚଳିବ ନାହିଁଟି
ପକାଇ କହୁଛୁ ରାଣ ।।ଘୋଷା।।

ଢକା ବାଜୁଅଛୁ ଚଉଦ ବ୍ରହ୍ମାଣ୍ଡେ
ତୁମ୍ଭର କେତନ ଗୁଣ
ପକ୍‌କା ଜଣେ ବୋଲି ଆଗୁ ଜାଣିଥିଲି
ଡକାଇତରେ ଆପଣ ।।୧।।

କକାରଥେ ବସି ପକାଇଲି ଧ୍ୱଂସି
ନିଜ ମାତୁଳେ ଆପଣ
ହକାରି ଥିଲି ଯେ ମନେ କୁଟି ପାଞ୍ଚି
ଶୁଝି ଦେଲେ ପିତୃଋଣ ।।୨।।

ଅକାମନା ଭକ୍ତ କରି ଗୋପ ଗୋପୀ
ଚରଣେ ଗଲେ ଶରଣ
ବକା ଛଳେ କେବା ରଙ୍ଗ ରହସ୍ୟରେ
କଲେ ନିତ୍ୟ ସୁମରଣ ।।୩।।

ଅକାଳିଆ ଦାସ ବନମାଳୀ ପାଣି-
ଛଡ଼ା ହେଲେ ଏକ କ୍ଷଣ
ତକାଇବ ନାହିଁ ନିଶ୍ଚେ ଗାଳିଦେବ
ଯା'ଇଚ୍ଛା ତାହା ବୋଲିଣ ।।୪।।

**

**

# ଆହେ ପ୍ରଭୁ କଳାଶ୍ରୀମୁଖ

## ବନମାଳୀ ଦାସ

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-ଦକ୍ଷିଣ କାମୋଦୀ]

ଆହେ ପ୍ରଭୁ କଳା ଶ୍ରୀମୁଖ
କାଳେ କାଳେ ମୋର ନ ଗଲା ଦୁଃଖ ।।ଘୋଷା।।

କି ଅବା ତୁମ୍ଭୁରେ ଜଣାଇବି ମୁହିଁ
ସାକ୍ଷାତେ ମୋ ଦୀନ ଅବସ୍ଥା ଦେଖ
ତେଣୁ ଶ୍ରୀମୁଖକୁ ଯାଇ ନପାରଇ
ଖଣ୍ଡିଏ ତ ମୋର ନ ଥାଇ ଭେକ ।।୧।।

ସାଉଙ୍କ କଂକାଳ କୁଟୁମ୍ବଙ୍କ ଗୋଳ
ଅନ୍ତର ବେଦନା ସବୁ ଅଧିକ
କା' ଆଗେ କହିବ କେ କଷ୍ଟ ଫେଡ଼ିବ
ସଂସାରେ ମୋ ସରି ନାହିଁ ନରେଖ ।।୨।।

ମନମଧ୍ୟେ ମୋର ହରଷ ନ ଥାଇ
ହୃଦୟ ମଧ୍ୟରେ ସଦା ବିମୁଖ
ଚତୁର୍ବର୍ଗ ଦାନୀ ଆଶ୍ରାକରି ମୁଁ ଯେ
କାହିଁରେ ଆଉ ନ ପାଇଲି ସୁଖ ।।୩।।

ବାତଚକ୍ର ପ୍ରାୟେ ମନ ଭ୍ରମୁଥାଇ
ଦଣ୍ଡେ ନ ରହଇ ତୁମ୍ଭର ପାଖ
କହେ ବନମାଳୀ ଶଙ୍ଖରେ ପୂରାଇ
ଚକ୍ର ଉହାଡ଼ଣ ଘୋଡ଼ାଇ ରଖ ।।୪।।

**

**

# ଦୁଃଖ ନାଶନ ହେ

**ବନମାଳୀ ଦାସ**

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-ସାବେରୀ ଚନ୍ଦନ ଯାତ୍ରା ଭଜନ ବୃନ୍ଦେ]

ଦୁଃଖ ନାଶନ ହେ ! ସୁଖ ନପାଇଲି ଦିନେ
ବେଳୁଁ ବେଳ ଦୁଃଖ ପ୍ରବଳ ହେଉଛି
ବିଜୁଳି ଯେସନେ ଘନେ ।।ଘୋଷା।।

ଅନାଥର ନାଥ ନୀଳଗିରି ନାଥ
ଜଗନ୍ନାଥ ଲକ୍ଷ୍ମୀ ସାଇଁ
ଅରକ୍ଷିତଙ୍କୁ ତ ରକ୍ଷି ଦେଉନାହଁ
ଭବ ଜଳରେ ଭସାଇ ।।୧।।

ଆହେ ହରି ! ମୁହିଁ ସହିତ ନପାରି
ଅନ୍ତର ବେଦନା ମାନ
ଯେଣୁ କରି ତୁମ୍ଭେ ଦୟା ନ କଲ ହେ
ପ୍ରଭୁ ଆର୍ତ୍ତଙ୍କ ନାଶନ ।।୨।।

ଏତେ ନିଷ୍ଠୁରତା ହେଲ ମୋହ ଭଳି
ଦୁଖୀ ଜନ ସ୍ଥାନ ଠାରେ
ଦୀନ ଜନମାନେ ଗୁହାରି କରନ୍ତି
ନ ଶୁଣିକ ତୁମ୍ଭେ ବାରେ ।।୩।।

ପୋଡ଼ୁ ମୋ ଅଦୃଷ୍ଟ ଅନ୍ନ-ବସ୍ତ୍ର କଷ୍ଟ
ଏତେ ବଡ଼ ପ୍ରଭୁ ଥାଉ
ବନମାଳୀ ବୋଲେ ଚଞ୍ଚଳ ମନ ମୋ
ପଦ୍ମପାଦେ ତୁମ୍ଭ ରହୁ ।।୪।।

**

**

# ଆହେ ଜଗବଂଧୁ

**ବନମାଳୀ ଦାସ**

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-କାମୋଦୀ]

ଆହେ ଜଗବଂଧୁ !
ଆପଣଙ୍କ ବିନେ ନ ଜାଣେ ଆନ ଦେବତା
ଆପଣ କରୁଣା ଊଣା କଲେ ଆଉ
ନାହିଁଟି କେହୁ ରଖନ୍ତା ।।ଘୋଷା।।

ସପନକୁ ଦନେ ସ୍ମୃହିଁ ନାହିଁ
ତପନକୁ ଭଲ କରି
ଜପ ନ କରଇ ଶରଧାରେ ପଞ୍ଚ-
ଲପନେ ନାମ ଉଚ୍ଚାରି ।।୧।।

ସର୍ବତୋ ପ୍ରକାରେ ନ ପ୍ରବର୍ତ୍ତେ ଚିତ୍ତ
ପର୍ବତ ନନ୍ଦନା ଠାରେ
ଖର୍ବ ତନୁରେ ମୁଁ ନ କରଇ ସ୍ତୁତ
ସର୍ବ ତୀର୍ଥ ମାନଙ୍କରେ ।।୨।।

ଶ୍ରୁତିରେ ନ ଶୁଣେ ରହିଏ ବସି ମୁଁ
ସ୍ମୃତି ଛନ୍ଦ ଯାହା ଲେଖି
ସ୍ଫୂର୍ତ୍ତି ନହନ୍ତି ଆନ ଦେବୀ ଦେବତା
ମୂର୍ତ୍ତି ତୁମ୍ଭର ନିରେଖି ।।୩।।

ମନ ବଚନ କର୍ତ୍ତବ୍ୟରେ ତୁମ୍ଭର
ଅନବରତରେ ମୁହିଁ
ଅବଧାନ ନ ହୋଇଲେଟି ଭାସିଲି
ବନମାଳୀ ଦାସ କହି ।।୪।।

**

**

# ଜୟ ଜଗନ୍ନାଥ ହେ

## ବନମାଳୀ ଦାସ

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-ଶଂକରାଭରଣ]

ଜୟ ଜଗନ୍ନାଥ ହେ ଯଶୋଦା କୁମର
ଶ୍ରୀମଣି ଚନ୍ଦ୍ର ସ୍ତବକ ନବଜଳଧର ।।ଘୋଷା।।

ଶିରେ ଶିଖି ପୁଚ୍ଛଚୂଡ଼ା ଗୁଞ୍ଜ କଆପତ୍ର ବେଢ଼ା
ସଖିଙ୍କ ବରତ ଛଡ଼ା ମୁରଲୀ ନଟବର ।।୧।।

ନିତ୍ୟ ସତ୍ୟ ପୂର୍ଣ୍ଣାନନ୍ଦ ଗୋକୁଳରକ୍ଷ ଗୋବିନ୍ଦ
ପାଦ ଅରବିନ୍ଦେ ଭକ୍ତ ଭ୍ରମର ନିକର ।।୨।।

ଶେଷ ଯାଁ ମହିମା ଲେଶ ନକରି ପାରନ୍ତି ଶେଷ
ଯାଁ ନାମ ଜପି ମହେଶ ମୃତ୍ୟୁକୁ କଲେ ଦୂର ।।୩।।

ଲବଣ ଜଳଧି ତଟ ନୀଳାଦ୍ରି ନାମ ପ୍ରକଟ
କଳ୍ପବଟ ମୂଳେକି ଲଗିବ ମୋର ଶିର ।।୪।।

କହେ ବନମାଳୀ ଦାସ ଶ୍ରୀଗୁରୁ ଚରଣେ ଆଶ
ସତେ କ୍ଷେତ୍ରବାସେ ଜୀବନ ଯିବ ମୋର ।।୫।।

**

**

# ଅପରାଧ ଅବା

## ନିତ୍ୟାନନ୍ଦ ଦାସ

(ଅଷ୍ଟାଦଶ ଶତାବ୍ଦୀ)

[ ଘୋଷ ରାଗ ]

ଅପରାଧ ଅବା	କଲି ମହାପ୍ରଭୁ
କରୁଅଛୁ ଏତେ ସରି
କ୍ଷମାଶୀଳପଣେ	ତୁମ୍ଭକୁ କେ ସରି
ଅଛୁ ନୀଳାଦ୍ରି କେଶରୀ
ମହାପ୍ରଭୁ ହେ ॥୧॥

ପୂର୍ବେ ଶ୍ରୀବତ୍ସ	ବ୍ରାହ୍ମଣ ବକ୍ଷସ୍ଥଳେ
ପଦଘାତ କଲା ନେଇ
କୃପା କଲ ଯେତେ	ଶୁଣି ଏତେ ବେଳେ
ତନୁ ମୋର ପୁଲକଇ
ମହାପ୍ରଭୁ ହେ ॥୨॥

କାଳିନ୍ଦୀ ଜଳରେ	ପଦ-କମଳରେ
ବିଷ ଅଗ୍ନି ଜାଳଦେଲା କାଳୀ
କୋପ କରି ଯାହା କୃପା କଲ ତାହା
ଶେଷେ ଶିବ ନ ପାଇଲେ ଖାଲି ॥୧॥

ଅଧିକ ମୁକୁଟେ ବାନ୍ଧିଲ ପ୍ରକଟେ
କୁକୁଟ ପ୍ରାୟେ ରଥାଙ୍ଗ ଚିହ୍ନ
ଏବେ କ୍ଷମା ଦୟାନିଧି କି ଶୁଖିଲା
ମୋହ କର୍ମ ନିକି ହେଲା କ୍ଷୀଣ ॥୨॥

ମୁଁ ଯେ ଅପରାଧ ବୃକ୍ଷେ ଆରୋହିଛି
ଡାଳେ ଦୁଖ-ଜାଲ ଅଛି ଘୋଟି
ଏତେ ଆପଦରେ ନିରଣ କୁଠାରେ
ତୁମ୍ଭେତ ମୂଳ ଦେଉଛ କାଟି

ତେବେ କ୍ଷମାଶୀଳ ହୃଦ ହେଲା ଶିଳ
କେମନ୍ତେ ଦମ୍ଭ ରଖିବ ଆଉ
ନ ଜାଣି ଅପ୍ରାଧ ପ୍ରଭୁ କଲେ କ୍ରୋଧ
ମୁଁ ଯେ କାହାକୁ କହିବ ଆଉ ।।୪।।

ଭୃତ୍ୟ ନ ଜାଣଇ ଅପ୍ରାଧ କରଇ
ପ୍ରଭୁ-କୋପ ଦୁଇ କଥା ସର
ଏତ ନ ଜାଣିଲା ସେ କୋପେ ମାଇଲା
ମହତପଣ କି ହେଲା ହର ।।୫।।

ତୁମ୍ଭେ ଜଗନ୍ନାଥ ମୁହିଁ ଯେ ଅନାଥ
ହୋଇ ଜଗତ ଭିତରେ ଜଣେ
ଏହି ନାମରେ ସେ ଭରସା କରିଛି
ପୁଣି ଅଭରସା ହୋଏ ମନେ ।।୬।।

ଯେଣୁ ଜଗବନ୍ଧୁ ଆଉଁ ମୁଁ ଅବନ୍ଧୁ
ହୋଇ ନ ଶୁଣୁଛ ଏଣୁ କରି
ତୁମ୍ଭ ସେହି ନାମ ପତିତପାବନ
କେତେ ଲାଜ ନ ନିବାରେ ହରି ।।୭।।

ତୁମ୍ଭ କରେ ଯାହା ଧରିଅଛ ତାହା
ପୂର୍ବ ତେଜ ନାଶ ହେଲା ନିକି
ଦୂରେ ଜଣାଇଲେ ନିକଟେ ଶୁଭିବ
ଏ ଭାବ ଅନ୍ତର ହେଲା ଟିକି ।।୮।।

ଗତ ଅନୁକମ୍ପା ଛାଡ଼ିଲା କି ଶମ୍ପା
କି ଥିଲା ଶରଦ ଘନ ସରି

ପୂର୍ବ ଦୁଃଖ ନାଶ ଶୁଣିଅଛୁ ଘୋଷ
ମୋ ମନ ଚାତକ ଆଶା ଧର ॥୯॥

ସେ ନ ବରଷିଲ ଏ ପ୍ରାଣେ ନାଶିଲ
କାଲ ବଳେ ଆଶା ମଳାଇଲ
ନିତ୍ୟାନନ୍ଦ ବୋଲେ କଷ୍ଟ-ଦାବାନଳେ
ଧଇର୍ଯ୍ୟ ପତଙ୍ଗ ହଜାଇଲ ॥୧୦॥
**

**
## ପତିତ ଜନଙ୍କୁ

**ନିତ୍ୟାନନ୍ଦ ଦାସ**

(ଅଷ୍ଟାଦଶ ଶତାବ୍ଦୀ)

[ ଯୋଇ ରାଗ ]

ପତିତଜନଙ୍କୁ ଉଦ୍ଧାରିବା ପାଇଁ
ଉଡ଼ାଉଅଛ ପତାକା
ବାହୁ ଟେକି ତୁମ୍ଭେ ବସି ଗୁହାଁ ଗୁହାଁ
ବିପତ୍ତି କରୁଛ ଡକା
ମହାପ୍ରଭୁ ହେ ॥୦॥

ନାଶଗଲେ ତୁମ୍ଭେ ପରେ କି କରିବ
କରୁଣା ଭଣ୍ଡାର ଫେଇ
ଦୁଃଖୀ ଗଲେ ନାଶ ଅର୍ଜିବ କି ଯଶ
ପଛେ ଚତୁର୍ବର୍ଗ ଦେଇ
ମହାପ୍ରଭୁ ହେ ॥୦॥

ଘୋର ନବଘନ ଆଉଁ ଯେବେ ଦାନ
ଚାତକ ଜୀବନ ହରାଇବ

ସମୁଦ୍ରେ ବରଷି ଘୋର ଜଳରାଶି
ଶୃଙ୍ଖଳ ବନ୍ଧୁ କ ବୋଲାଇବ ॥୧॥

ମାଲତୀ-ବକୁଳ-ବକଚ-କମଳ
ବନ ଥିବ ଅଳି ଯିବେ ମରି
ପୂର୍ଣ୍ଣ ସୁଧାକର ଅନାଇଁ ଚକୋର-
ମାଳିକା ଯେବେ ମରିବେ ଝୁରି ॥୨॥

କଳ୍ପଲତା ତଳେ ଥାଇ ଯେ ମୁଁ ଫଳେ
ନିରାଶ ହୋଇବା କେଡେ ଲାଜ
ରତ୍ନାକର ହୋଇ ରତ୍ନରଙ୍କ ଯହିଁ
ଏ କଥା କେମନ୍ତେ ଦେବରାଜ ॥୩॥

ଥାଉଁ ଗଙ୍ଗାକୂଳେ ପରାଣ ବିକଳେ
ତୃଷାରେ ଯେବେ ହରିବ ପ୍ରାଣ
ଘନ ମଣି ଥିବ ଅନ୍ଧାର ହୋଇବ
ଏ କଥା ପ୍ରଭୁ ମନକୁ ଆଣ ॥ ୪ ॥

ସାମନ୍ତ ଯେ ଚତୁର୍ବର୍ଗ ଅଧିକାରୀ
ଲକ୍ଷ୍ମୀ ପରିଗ୍ରହୀ ଥିବେ ହୋଇ
ଏମନ୍ତ ସାମନ୍ତେ ଆଶା କରି ଭୃତ୍ୟ
ଭିକ୍ଷା ମାଗୁଥିବ ଦୁଃଖ ପାଇ ॥ ୫ ॥

ଏଥୁ ଅଧିକ କି ଅଛି ଲୋକହସା
ଆଉ କି ରହିଲା ପ୍ରଭୁ ଆଣି
ଝମକିଲା ସିଂହ ପ୍ରାୟ ଝମକିବା
ବିଅର୍ଥ ଧାରିବା ଚକ୍ର ପାଣି ॥ ୬ ॥

ଦୀନବନ୍ଧୁ ବୋଲି ନାମ ଯେ ବହୁଛ
ଏହା କି ଚେତନ୍ତ ଭାବଗ୍ରାହୀ
ଏବେ ଏ ନାମ ଏଣିକି ନ ବହିବ
ଚକ୍ର ପରୁ ନେତ ଥିଅ ନେଇ ॥ ୭ ॥

ତେବେ ତୁମ୍ଭଙ୍କୁ କେ କାହିଁକ କହିବ
କର୍ମ ଆଦର ସହିବ ଦୁଃଖ
ନବଘ ଜଳଧି ତୁମ୍ଭ ନାମ ସିକି
ଜଗତରେ ବାଜିଯିବ ଡାକ ॥ ୮ ॥

ଆଉ ଭୁବନରେ ଠାକୁର ଖୋଜିବା
ତୁମ୍ଭ ପର କେହି ଥିଲେ ଜଣେ
ଦୁଃଖି ଲୋକଙ୍କର ଦୁଃଖ ହରୁଥିବେ
କୃପା ବଲୋକନ ନେତ୍ରକୋଣେ ॥ ୯ ॥

ସୁଦର୍ଶନ ନାମେ ଚକ୍ର ବହୁଥିବେ
ଟେକ ବାହୁରେ ଦକ୍ଷିଣ କରେ
କହେ ନିତ୍ୟାନନ୍ଦ ଅପରାଧୀ ମନ୍ଦ
ମୋହର ଶରଣ ତାଙ୍କଠାରେ ॥୧୦॥

**

**

## ତୁମ୍ଭପରି ପ୍ରଭୁ

**ନିତ୍ୟାନନ୍ଦ ଦାସ**

(ଅଷ୍ଟାଦଶ ଶତାବ୍ଦୀ)

[ଯୋଇ ରାଗ]

ତୁମ୍ଭ ପରି ପ୍ରଭୁ ଆଉଁ ଆଉଁ ମୁଁ ଯେ
ବୁଡ଼ିଲି ବିପଦ ଜଳେ
ଏତେବେଳେ ପ୍ରଭୁ ଡାକ ନ ଶୁଣୁଛ
ଯେତେ ଡାକିଲେ ବିକଳେ
ମହାପ୍ରଭୁ ହେ ॥୦॥

ଜଳ ମୀନ ଯେହ୍ନେ ସିନ୍ଧୁର ତେଜରେ
ତେମନ୍ତ ହେଲାଣି ଦଶା
ଏଥିରେ କାହିଁକେ କରୁଣା ନୋହୁଛ
ମୁଁ ଯେ କରିଛୁ ଭରସା
ମହାପ୍ରଭୁ ହେ ।।୦।।

ବିପଦ ଧାଡ଼ି ଯେତେ ମାଡ଼ି ପଡ଼ୁଛି
କେତେହେଁ କହିବ ମନେ ହେଜି
ସିଂହ ମୃଗ ଆଗେ ପଡ଼ିଲେ ତରଙ୍ଗେ
ଧୈର୍ଯ୍ୟ ବନ୍ଧ ଯାଉଛି ଭାଜି ।।୧।।

ଯେତେ ରୂପେ ଦଣ୍ଡ ଦୁଃଖ ଦେଉଅଛ
କହିବାକୁ ମୋତେ ଆସୁନାହିଁ
ଯେତେ ଥିଲା ଆଶ ଆହେ ପୀତବାସ
ଏବେ ତୁମ୍ଭ ନିରାଶକୁ ଚାହିଁ ।।୨।।

ପ୍ରଭୁ ହୋଇ କୃପା ନ କରୁଛ କିମ୍ପା
ଦୀନ ପତିତଜନଙ୍କ ଠାରେ
ଅତିହିଁ ନିରାଶ ପଣ କରିବାରେ
ଭାସିଗଲି ଶୋକ ନଦୀ ଧାରେ ।।୩।।

ଥାଉଁ ପ୍ରଭୁ ପଣ କରୁଣା କୃପଣ
ହେବାରୁ ନୀତି କି ନ ଆସଇ
ବୁଡ଼ି ଥିଲେ ଭେଳା ତହିଁ କଲେ ହେଲା
ଦାରୁଣ ପଣ କି ଏ ନୁହଇ ।।୪।।

କରୁଣା-ନାବିକ ନାବ ଥାଉଁ କୂଳେ
ଖେଦ ଜଳଧିରେ ଗଲି ବୁଡ଼ି
ତରଳ ତରଙ୍ଗ ଭଉଁରି ପ୍ରଖର
ଏମନ୍ତ ନଦୀରେ ଦେଲେ ଛାଡ଼ି ।।୫।।

ମୁଁ ଯେ ମଲେ ମଲି ଭାସିଗଲେ ଗଲି
ତୁମ୍ଭଙ୍କ ସିନା ଏ ଅସୁନ୍ଦର

ତୁମ୍ଭ ନାମ ଧରି ହେବା ଏତେ ସରି
                    ଜଗତେ କିବା ବୋଲିବେ ନର ।।୬।।

ମୋରେ ଏ ଦୁର୍ଗତି ଯେତେ ନ ବାଧଇ
                    ତୁମ୍ଭ ନିନ୍ଦା ଲାଗେ ମରୁଅଛି
ପୂର୍ବର କରୁଣା ଏବେ ଦେଖି ଊଣା
                    ନିଶି ଦିବା ମନେ ଗୁଣୁଅଛି ।।୭।।

ନାନାରୂପେ ଶାସ୍ତି ଦେଇ ଦୁଃଖ ହସ୍ତୀ
                    ଦନ୍ତରେ ଗୁନ୍ଥିବା ମନେ କଲା
ବିପତ୍ତି-କରି-ନାଶନ ତୁମ୍ଭ ବାନା
                    କମ୍ପାଇ ନୀଳାଦ୍ରି ସିଂହ ହେଲା ।।୮।।

ଧଇର୍ଯ୍ୟ କମଳ-ବନକୁ ମୋହର
                    ଧ୍ୱଂସି ପକାଉଛି ପ୍ରବଳରେ
ରଖ ରଖ ପ୍ରଭୁ ପ୍ରମତ୍ତ କେଶରୀ
                    ବୋଲି ଜଣାଉଛି ବିକଳରେ ।।୯।।

କେବେହେଁ କରୁଣା ନଦୀ ନ ବହିଲା
                    ବଢ଼ିଲା ସଙ୍କଟ ଗିରିବର
କହେ ନିତ୍ୟାନନ୍ଦ କର୍ମହୀନ ମନ୍ଦ
                    ସଦସ୍ତ-କୁଳିଶେ ନାଶ କର ।।୧୦।।

**

**

# ଜୟ ଜଗନ୍ନାଥ ଗୋସାଇ

## ଚଣ୍ଡୀଦାସ

(ଅଷ୍ଟାଦଶ ଶତାବ୍ଦୀ)

ଜୟ ଜଗନ୍ନାଥ ଗୋସାଇଁ
ଦିନେ ମୋ ଗୁହାରି ଶୁଣିଲ ନାହିଁ
ଜଗତ ଈଶ୍ୱର ସଂସାର ପାଳକ
ଭକତ ଭାବକୁ କମଳା ସାଇଁ ॥ପଦ॥

ଗଜ ଉଦ୍ଧାରିଲ ମୃଗୁଣୀ ତାରିଲ
ତରିଲା ଅହଲ୍ୟା ପଦକୁ ଧାୟୀ
ରଖି ବ୍ରଜବାଳ ନାଶିଲ ଅସୁର
ଗୋବିନ୍ଦ ନାମ ତୁମ୍ଭର ଅଟଇ ॥୧॥

ବିକଟାଳ ରୂପ ନୃସିଂହ ହୋଇ
ହିରଣ୍ୟ ବଧିଲ ସ୍ତମ୍ଭ ଓହ୍ଲାଇ
ପ୍ରହ୍ଲାଦକୁ ରଖି ସ୍ୱର୍ଗପୁରେ ସ୍ଥାପି
ବଳିକି ଚାପିଲ ପାତାଳେ ନେଇ ॥୨॥

ସୁଗ୍ରୀବ ସଂଗତେ ମଇତ୍ର ହୋଇ
ବାଳିକି ବଧିଲ ସାକ୍ଷାତେ ଯାଇ
ଦଶଶିର ଦଶକନ୍ଧକୁ ଛେଦିଣ
ଶରଣ ରଖିଛ ରାବଣ ଭାଇ ॥୩॥

କୁରୁ ପାଣ୍ଡବଙ୍କ ସମର ଭୂଇଁ
ଭାରତ ଯୁଦ୍ଧ ତମଠାରେ ଅଟଇ
ଭରଢଆ ନାମେ ପକ୍ଷୀ ଏକ ଥିଲା
ତାହାକୁ ରଖିଛ ଘଣ୍ଟ ଘୋଡାଇ ॥୪॥

ଆହେ ପୀତବାସ ନ କର ନିରାଶ
ଚରଣେ ଶରଣ ପଶୁଛୁ ମୁହିଁ
ତୁମ୍ଭେ ନ ରଖିଲେ ଆହେ ମହାବାହୁ
ନିଶ୍ଚୟ ଅନାଥ ହୋଇଲି ମୁହିଁ ॥୫॥

ସବୁଙ୍କର ଧନ ସବୁରି ଜୀବନ
ତୁମ୍ଭ ବିନା ମୋର ଶରଣ ନାହିଁ
ସର୍ବ ଜୀବପତି ପରଂବ୍ରହ୍ମ ଜ୍ୟୋତି
ଶ୍ରୀ ନୀଳାଚଳରେ ବସିଛ ରହି ॥୬॥

ଆରତ ଭଞ୍ଜନ ପତିତ ପାବନ
ଅନାହ୍ଲକ ବନ୍ଧୁ ସେହ୍ନା ଅଟଇ
ବୋଲେ ଚଣ୍ଡୀଦାସ ନୀଳାଚଳେ ଆଶ
କଳା ଧଳା ରୂପ ହୃଦରେ ଧ୍ୟାଇ ॥୭॥

**

**

## କଳା ଧବଳ ରୂପ

**ଚଣ୍ଡୀ ଦାସ**

(ଅଷ୍ଟାଦଶ ଶତାବ୍ଦୀ)

ଦେଖିବ କଳା ଧବଳ ରୂପ
ଦେଖିଲେ ଖଣ୍ଡଇ ଏ ଭବ ତାପ ॥ ଘୋଷା ॥

ଚଞ୍ଚଳା ଯାହାଙ୍କ ପାଦେ ପରିଚରୀ
ତାହାଙ୍କ ଦର୍ଶନେ ନ ରହେ ପାପ
ନର ଦେହ ବହି କହିତ ନୁହଇ
ସୃଜି ସଂହାରୁଛି ଅପକୁ ଆପ ॥ ୧ ॥

ଆପେ ବ୍ରହ୍ମା ହୋଇ ସୃଷ୍ଟିକି ସୃଜଇ
ଯୋଗୀଙ୍କ ହୃଦରେ କରୁଛ ଜପ
ପଞ୍ଚାନନ ହୋଇ ପଞ୍ଚମୁଖେ ଧ୍ୟାଇ
ନୀଳାଚଳେ ଦେଖ ଚତୁର୍ଦ୍ଧା ରୂପ ।।୨।।

ଏହି ବିଶ୍ୱରୂପ ଆକାଶ ମଣ୍ଡଳେ
ନାରାୟଣ ରୂପେ କରନ୍ତି ତାପ
ଚତୁର୍ଦ୍ଦଶ ପୁର ନବଖଣ୍ଡ ମହୀ
ନିରଞ୍ଜନ ରୂପେ ମହାପ୍ରତାପ ।। ୩ ।।

ସତ୍ୟ ଯୁଗରେ ସତ୍ୟଗୁଣେ ବିହାର
ହୋଇଥିଲେ ଶୁକ୍ଳାମ୍ବର ସ୍ୱରୂପ
ତ୍ରେତୟା ଯୁଗରେ ରଜଗୁଣ ବହି
ହରିଥିଲେ ଯାଇ ରାବଣ ଦର୍ପ ।। ୪ ।।

ତମ ଗୁଣ ବହି ଦ୍ୱାପର ଯୁଗରେ
ଜନ୍ମ ହୋଇଥିଲେ ଶ୍ରୀକୃଷ୍ଣ ରୂପ
ଶ୍ରୀ ବୃନ୍ଦାବନରେ ରାହାସ କରଣ
କଂସ ନାସ କଲେ ଗ୍ରୁଣ୍ଡିଲ ତାପ ।।୫।।

ଏ କଳିଯୁଗରେ ବୌଦ୍ଧ ଅବତାରେ
ହୋଇଛନ୍ତି ପ୍ରଭୁ ମଉନ ରୂପ
ବୋଲେ ଚଣ୍ଡୀଦାସ ନେତ୍ର ଦେଖି ନାହିଁ
ଜନ୍ମ ଜନ୍ମାନ୍ତରେ କରିଛ ପାପ ।।୬।।

**

**

# ଭଜମନ ଜଗନ୍ନାଥଙ୍କୁ

## ଚଣ୍ଡୀଦାସ

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-ଖରହର ପ୍ରିୟା]

ଭଜମନ ଜଗନ୍ନାଥଙ୍କୁ
ନୀଳାଚଳ ବାସୀ ଦାରୁ ବ୍ରହ୍ମଙ୍କୁ ।। ଘୋଷା ।।

ଭକ୍ତଣ ଭୁଷଣ୍ଡ ହୋଇଲେ ଅମର
ଧ୍ୟାୟନ୍ତି ବରୁଣ କୁବେର ଯାଁକୁ
ସ୍ୱର୍ଗେ ଶଚୀପତି ଯା' ପାଦକୁ ଚିନ୍ତି
ବାସୁକୀ ଧ୍ୟାଉଛନ୍ତି ପଦ୍ମପାଦକୁ ।। ୧ ।।

ବେଦବ୍ୟାସ ଆଦି ଶୁକ ସନକାଦି
ଧ୍ୟାଉଛନ୍ତି ହୃଦେ ଯାଁହା ନାମକୁ
ବ୍ରହ୍ମାବେଦବର ସ୍ତବଇ ପସୁର
ପଞ୍ଚାନନ ସ୍ତବୁଛନ୍ତି ଯାହାକୁ ।। ୨ ।।

ନିତି ଦିବାକର ଅଷ୍ଟଦିଗ ପାଳ
ଧ୍ୟାଉଛନ୍ତି ହୃଦେ ଯାହା ପାଦକୁ
ସ୍ୱର୍ଗ ମର୍ତ୍ତ୍ୟ ଆଦି ପାତାଳ ବୈକୁଣ୍ଠ
ରହିଅଛି ଯାହା ଆଜ୍ଞା ପଦକୁ ।। ୩ ।।

ଯେଉଁ ନାମ ସୁଧା ଧ୍ୟାଇଣ ବସୁଧା
ରଖିଅଛି ସେହି ସତ୍ୟ ପଦକୁ
ସେ ସତ୍ୟକୁ ଡର ଚନ୍ଦ୍ର ଦିବାକର
ଚଳାଚଳ ସେହି ରାଜ ଦିନକୁ ।। ୪ ।।

ଗଙ୍ଗା ଯା' ପସ୍ଥର		ଭାବ ନିରନ୍ତର
　　ଚଞ୍ଚଳା ଧାଉଛୁ ଯା'ର ରୂପକୁ
ସେ ରୂପ ଦର୍ଶନ		କରୁଅଛୁ ଧ୍ୟାନ
　　ବାକ୍ୟ ଦେବୀ ଭଣେ ଯା'ର ନାମକୁ ॥ ୫ ॥

ଯେଉଁ ପାଦ ପଦ୍ମ		ଭାବୁଛନ୍ତି ସାଧୁ
　　ଭ୍ରମୁଛନ୍ତି ସେ ସାଧନ ଦ୍ୱାରକୁ
ସେ ଦ୍ୱାରକା ନାଥ		ଭାବେ ଚଣ୍ଡୀଦାସ
　　ନିତ୍ୟେ ପ୍ରଣମଇ ବ୍ରଜପୁରକୁ ॥ ୬ ॥

**

✳✳

# ଶ୍ରୀ ନୀଳଗିରି ଶିଖରେ

## ବିଶ୍ୱନାଥ ଖୁଣ୍ଟିଆ

(ଅଷ୍ଟାଦଶ ଶତାବ୍ଦୀ)

[ଗୁଣ ସାଗର ବାଣୀ]

ଶ୍ରୀ ନୀଳଗିରି ଶିଖରେ ବିଜେ ହରି
ଦ୍ୱାଦଶ ଯାତ୍ରା ବିନୋଦେ
ସ୍ନାନ ଶ୍ରୀଗୁଣ୍ଡିଚ୍ଚ ଅୟନ ଶୟନ
ପାରଶ୍ୱ ପାଲଟ ମୋଦେ ।
ଦେବ ଉଥାପନ ମକର ଓଢଣ
ଦୋଳ ଦମନକ ଶ୍ରେଷ୍ଠ
ଚନ୍ଦନ ଚମ୍ପକ ଉତ୍ସବ ସନ୍ଧ୍ୟତେ
ଏ ବିଧି ଲୀଳା ଆଚରି ॥ ୧ ॥

ଦ୍ୱାଦଶ ଯାତ୍ରାରୁ ତିନି ଯାତ୍ରା ସାର
ଦୋଳ ସ୍ନାନ ଶ୍ରୀଗୁଣ୍ଡିଚ୍ଚ
ସକଳ ଜୀବର ଅବଲୋକନରେ
ପାତକ ସମୂହ ମୁଞ୍ଚ ।
ଶ୍ରୀ ଜଗନ୍ନାଥ ଚଢିଣ ନନ୍ଦିଘୋଷ
ଗୁଣ୍ଡିଚ୍ଚ ଘରୁ ବିଜୟ
ଦେଖି ନାଗ ନର ଗନ୍ଧର୍ବ କିନ୍ନର
କରୁଥାନ୍ତି ଜୟ ଜୟ ॥ ୨ ॥

ରତ୍ନ କୁଣ୍ଡଳ ମୁକୁଟ ବ୍ୟାଘ୍ରନଖ
ହୀରଚୂଳ କଣ୍ଠମାଳ
ହୃଦୟ ପୂରି ପଦକ ଘଣ୍ଟାଘଣ୍ଟି
ପଦ୍ମମାଳ ପଦତଳ ।

ହେମ ଶ୍ରୀ ପୟରେ ହେମ ଶ୍ରୀଭୁଜରେ
ଶୋହେ ହେମ ଧନୁର୍ବାଣ
ଯେବଣ ଦକ୍ଷିଣ ମୂର୍ତ୍ତି ଦର୍ଶନକୁ
ଟାକିଥାନ୍ତି ବିଭୀଷଣ ।। ୩ ।।

ସିଂହଦ୍ୱାରେ ହରି ରଥରୁ ବିଜୟ
କରନ୍ତେ କମଳା ଭେଟ
ସେହି ସମୟରେ ଜନ ସମୂହରେ
ଫିଟିଲି ମୁଦା କବାଟ
ଠାକୁର ଠକୁରାଣୀ ଚନ୍ଦ୍ର ଆଳତି
ସର୍ବାକ୍ଷତ ବନ୍ଦାପନା
ଜୟଧ୍ୱନି ଜଗତରେ ଯେ କରନ୍ତି
ହୋଇଣ ଆନନ୍ଦ ମନା ।।୪।।

ଜୟ ବିଜୟ ଦ୍ୱାରେ ହରି ବିଜୟ
କବାଟ ପଡ଼ିବ ଖିଲା
ଅନେକ ମତେ ପବୋଧି ପ୍ରିୟାଙ୍କୁ
କହିଲେ କମଳ ଡୋଳା
ଭିତରେ ହରି ପ୍ରିୟାଭେଟି ସାରି
ରତ୍ନ ସିଂହାସନେ ବିଜେ
ଶ୍ରୀ ଦିବ୍ୟସିଂହ ଗଜପତି ଶ୍ରୀ ଜଗନ୍ନାଥ
ଶ୍ରୀ ଚରଣେ ଭଜେ ।।୫।।
**

**

# ଜୟ ଜୟ ଜଗନ୍ନାଥ

## ବିକ୍ରମ ନରେନ୍ଦ୍ର

[ ଅଷ୍ଟାଦଶ ଶତାବ୍ଦୀ ]

(ରାଗ-କଳସା)

ଜୟ ଜୟ ଜଗନ୍ନାଥ ଜୟ ଲକ୍ଷ୍ମୀପତି
କ୍ଷୀର ସିନ୍ଧୁ ମଧ୍ୟରେ ସର୍ବଦା ଯା'ର ସ୍ଥିତି ॥୧॥

ଅନନ୍ତ ଅଙ୍କରେ ସଦା ଯାହାର ଶୟନ
ଶଙ୍ଖ ଚକ୍ର ଗଦା ପଦ୍ମ ଶ୍ରୀକରେ ଶୋଭନ ॥୨॥

କୋଟି ନୋଟି ବ୍ରହ୍ମାଣ୍ଡ ଯା' ଲେମ ମୂଳେ ଅଛି
ଯେ ପ୍ରଭୁ ବିଚିତ୍ର ଲୀଳା ଜଗତେ ବ୍ୟାପିଛି ॥୩॥

ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଶରୀରେ
ଅଲକ୍ଷିତ ରୂପେ ବିହରନ୍ତି ନିରନ୍ତରେ ॥୪॥

ସଦା ସିଦ୍ଧଗଣ ଯା'ର ପାଦପଦ୍ମ ଚିନ୍ତି
ଭୀଷଣ ସଂସାର ଶୋକ ତାପୁଁ ତରିଯାନ୍ତି ॥୫॥

ଯାହାଙ୍କ କରୁଣା ବଳେ ଏ ବିଶ୍ୱ ଚରିତ
ଚନ୍ଦ୍ର ସୂର୍ଯ୍ୟ ଯାହା ଆଜ୍ଞା ପାଳନ୍ତି ନିୟତ ॥୬॥

ଗ୍ରୀଷ୍ମ ବର୍ଷା ଶରତ ଷଡ଼ଋତୁ ଆଦି
ଏକ ପରେ ଏକ ଯାଉଛନ୍ତି କାର୍ଯ୍ୟସାଧି ॥୭॥

ଯେବଣ ଦେଖି ପାଳନ୍ତି ପୃଥ୍ୱୀ ଚରାଚର
ବୋଲେ ବିକ୍ରମ ତା' ପାଦେ ଶରଣ ମୋହର

**

**

## ଶ୍ରୀ ଜଗନ୍ନାଥଙ୍କୁ

### ବୃନ୍ଦାବନ ଦାସ

(ଅଷ୍ଟାଦଶ ଶତାବ୍ଦୀ)

[ ରାଗ-ସାରଙ୍ଗ ତାଳ-ଆଠତାଳି ]

ଶ୍ରୀ ଜଗନ୍ନାଥଙ୍କୁ ଅନାଥ ନାଥଙ୍କୁ
ଧ୍ୟାନ କରରେ ମନ ଶ୍ୱେତପଦ୍ମ ନେତ୍ରଙ୍କୁ ।।ଘୋଷା।।

ଫୁଟିଛୁ ଶ୍ୱେତ କମଳ ସର୍ବଦା କାଳ ଅମଳ
ବାସନାରେ ହୋଇ ଭୋଳ ଚୁମ୍ବଇ ମତ୍ତ ଭ୍ରମର
ପାଇ ଶୀତଳ ହୋ ନ ଛାଡ଼େ କୋଳ ହୋ
ଅମୃତ ପାନେ ସଦା ବୁଡ଼ାଏ ତା' ଚଉକୁ ।।୧।।

ଧନ୍ୟ ସେ ସ୍ୱରୁ ଭ୍ରୂଲତା ସୁଧାସିନ୍ଧୁ କଳ୍ପଲତା
ଗୃହି ଯାହା ଉର୍ଦ୍ଧ୍ୱ ଚେତା ଧ୍ୟାନେ କରୁଥାନ୍ତି ଚନ୍ତା
ଚନ୍ଦନ ଚିତା ହୋ, କେଡ଼େ ଶୋଭିତା ହୋ
କେଡ଼େ ସୁଷମା ଉଦେ ହୋଇଛୁ ଜଗତକୁ ।।୨।।

ଧନ୍ୟ ସେ ନୀଳାଦ୍ରି ଡ଼ୋଳା ଭବସାଗରକୁ ଭେଳା
ଦିଶୁଥାଇ ଫଞ୍ଜକଳା ଗୃହି ସଦାଶିବ ଭୋଳା
ମନକୁ ମେଳା ହୋ ତୋ ନେତ୍ର ଗଳା ହୋ
ହେଳା କଲେ ପାଇବୁ ତୁ ଦଣ୍ଡଧର ଘାତକୁ ।।୩।।

ମୟୂର ଚନ୍ଦ୍ରିକା ଚୂଳେ କବା ଇନ୍ଦ୍ର ଦର୍ପ ବଳେ
ବସିଣ କାଳିନ୍ଦୀ କୂଳେ ଚୂଳକୁ ବାନ୍ଧ ମଞ୍ଜୁଳେ
ସେ ଚୂଳ ତଳେ ହୋ କେଡ଼େ ସୁଢଳେ ହୋ
ତା' ପାଦତଳେ ବୃନ୍ଦାବନ କହେ ଗୀତକୁ ।।୪।।

**

**

# ଲଗିଛି ଲୀଳା ନୀଳାଚଳରେ

**ହୃଦାନନ୍ଦ ଦାସ**

[ଅଷ୍ଟାଦଶ ଶତାବ୍ଦୀ]

(ତାଳ-ଝୁଲା)

ଲଗିଛି ଲୀଳା ନୀଳାଚଳରେ ହୋ
ରାଧାକୃଷ୍ଣ ଏକ ଅଙ୍ଗ ଯା' ସଦା କାଳରେ ହୋ ।।ଘୋଷା।।

ଅନନ୍ତ ମସ୍ତକେ ଫଣୀ ଫଣୀ ପରେ ଦିବ୍ୟ ମଣି
ତା' ପରେ ଅବ୍ୟକ୍ତ ମଣି ସହସ୍ର ଦଳରେ ହେ ।। ୧।।

ଆସୁଛି ଯାଉଛି ବାର ଏ ବାରରୁ ସେ ବାହାର
ବାର ଭେଦ ଠାବ କର ଛେର ମୂଳରେ ହେ ।।୨।।

ଊର୍ମି ଧୂର୍ମି ଜ୍ୟୋତି ଜ୍ୱାଳା ପ୍ରକାଶ ଏ ସ୍ୱର କଳା
ପରେ ଲଗି ଅଛି ଲୀଳା ଠୂଳ ଶୂନ୍ୟରେ ହେ ।।୩।।

ଧନ୍ୟ ଧନ୍ୟ ନୀଳ କନ୍ଦ ଯହିଁ ବିଜେ ଆଦିକନ୍ଦ
କହେ ଦାସ ହୃଦାନନ୍ଦ ପାଦ ତଳରେ ହେ ।।୪।।

**

**

## ଗୁହଁ ବାରେ ମନ ଚକାଡୋଳାକୁ

### ବୃନ୍ଦାବନ ଦାସ

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-କାମ୍ବୋଜୀ]

ମେଘ-ମାଳାକୁ
ନନ୍ଦେ କଲାକୁ
ଗୁହଁବାରେ ମନ ଚକାଡୋଳାକୁ ॥୦॥

ଏ ଭବ ସରିତେ ତରିଗଲେ ଭକ୍ତେ
ଆଶ୍ରେ କରି ଯାର ନାମ-ଭେଳାକୁ
ସଦାଶିବ ହର ହୋଇଲେ ଅମର
କୋଳେ ଧରିଛନ୍ତି ଗିରି ବାଳାକୁ
ଗୁନ୍ଥି ମାଳାକୁ, ପିନ୍ଧି ଗଳାକୁ
ନାମ ପଢ଼ୁଛନ୍ତି କଳା ଧଳାକୁ ॥୧॥

ସତ୍ୟରେ ଶ୍ରୀପତି ସମୁଦ୍ରକୁ ମନ୍ଥି
ତହିଁରୁ ଜାତ କଲେ କମଳାଙ୍କୁ
ଦେବାସୁର ଯୁଦ୍ଧେ ଅମୃତ ବିବାଦେ
ମୋହିନୀ ହୋଇଲେ ଦେବ ଛଳାକୁ
ରାହୁ ଗଳାକୁ ଛେଦ ହେଲାକୁ
ମୋହ କଲେ ମହାଦେବ ଭୋଳାକୁ ॥୨॥

ତ୍ରେତୟା ଯୁଗରେ ରାମ ଅବତାରେ
ଭଜ ମନ ବାରେ ରଘୁବଳାକୁ
ପାଇ ସୀତା ଛଳ ଘେନି କପିବଳ
ସିନ୍ଧୁରେ ବାନ୍ଧିଲେ ଶିଳା ଭେଳାକୁ
ଜାତ ଖେଳାକୁ ରଣ ସ୍ଥଳୀକୁ
ରଣେ ଛେଦିଲେ ରାବଣ ବଳାକୁ ॥୩॥

ଦ୍ୱାପର ଯୁଗରେ ଜନ୍ମି ଗୋପପୁରେ
ଓପାଡ଼ି ପକାଇଲେ ଯାମଲାକୁ
କାଳନ୍ଦୀରେ ପଶି କାଳୀ ଦର୍ପ ଧ୍ୱଂସି
ଜବାଇଲେ ମହା ବିଷ ଜାଲାକୁ
ଯାଇ ମେଳାକୁ ରଙ୍ଗ ସ୍ଥଳାକୁ
କପଟେ ମାଇଲେ ସେ ମଲ୍ଲାକୁ ॥୪॥

ଏ କଳି ଯୁଗରେ କଳ୍ପବଟ ମୂଳେ
ମାଡ଼ି ବସିଛନ୍ତି ଲକ୍ଷେ ଶିଳାକୁ
ବିକାଇଲେ ଅନ୍ନ ନେଲେ ନାହିଁ ଧର୍ମ
କେହି ନ ଖୋଜଇ କାହା ଧର୍ମକୁ
କ୍ଷେତ୍ର ସ୍ଥଳାକୁ ମୁକ୍ତି ଖଳାକୁ
ଭବେ ହୃଦାନନ୍ଦ ସନ୍ତ ମେଳାକୁ ॥୫॥

**

**

## ଅନାଥ ନାଥଙ୍କୁ

### ହୃଦାନନ୍ଦ ଦାସ

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-ଗୌରୀ]

ଅନାଥ-ନାଥଙ୍କୁ ଶ୍ରୀ ଜଗନ୍ନାଥଙ୍କୁ
ଧ୍ୟାନ କର ହୋ ମନ ଶ୍ୱେତପଦ୍ମ ନେତ୍ରଙ୍କୁ ॥ଘୋଷା॥

ଧନ୍ୟ ସେ ନୀଳାଦ୍ରି ଭୋଳା ଭବ ସାଗରକୁ ଭେଳା
ଭବେ, ନାହିଁ ଅନ୍ତ କଳା ଧ୍ୟାନେ ସଦାଶିବ ଭୋଳା
ମନକୁ ଗଲା ହୋ, ସେ ନେତ୍ରେ ମିଳାହୋ
ହେଳା କଲେ ପାଇବୁ ତୁ ଦଣ୍ଡଧର ଘାତକୁ ॥୧॥

ଧନ୍ୟ ସେ ଗୁରୁ ଭ୍ରୂଲତା    ସୁଧାସିନ୍ଧୁ କଳ୍ପଲତା
ଗୁଣ୍ଠିଣ ଯା' ଉର୍ଦ୍ଧ୍ୱରେତା    ଧ୍ୟାନେ କରୁଛନ୍ତ ଚନ୍ତା
ଚନ୍ଦନ ଚତା ହୋ,    କେତେ ଶୋଭୁଛା ହୋ
କବା ସବତା ଉଦେ    ହୋଇଛୁ ଜଗତକୁ ॥୨॥

ଫୁଟିଛୁ ଶ୍ୱେତ କମଳ    ସର୍ବଦା କାଳେ ଉଜ୍ଜଳ
ବାସନାରେ ହୋଇ ଭୋଳ    ଚୁମ୍ବଇ ଭକ୍ତ ଭ୍ରସଳ
ପାଇ ଶୀତଳ ହୋ,    ନ ଛୁଡେ କେଳା ହୋ
ଅମୃତ ପାନେ ସର୍ବଦା    ବଳାଇଛୁ ଚିତ୍ତକୁ ॥୩॥

ସୁଗନ୍ଧ କୁସୁମ ମାଳେ    ବାନ୍ଧଣ ଅଛନ୍ତ ଗଳେ
ଇନ୍ଦ୍ରଧନୁ ଦର୍ପ ଜଳେ    ମୟୂର ଚନ୍ଦ୍ରିକା ଚୂଳେ
କେତେ ସୁଡଲେ ହୋ,    ବାମକୁ ଢଳେ ହୋ
ତେ ପାଦପଦ୍ମରେ    ହୃଦାନନ୍ଦ ରଖେ ଚିତ୍ତକୁ ॥୪॥

**

**

# ମନ ଭଜରେ ଚଉ

## ବଲ୍ଲଭ ଦାସ

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-ଲଳିତ ଗୌରୀ]

ମନ ଭଜରେ ଚଉ ! ଭଜରେ ମନ ଭଜରେ
ଅନାଥର ନାଥ ଦେବ ଜଗନ୍ନାଥ
ଦେବ ନାକପଦ ମନ ! ଭଜରେ
କାଳ ଏ ସକଳ ସକଳ ପ୍ରବଳ
କଳିକାଳ ମୋହ ଚଉ ! ବର୍ଜରେ ॥ଘୋଷା॥

ବରଜ ମଣ୍ଡନ ବନଜ ବଦନ
ଭଜନ ଭାବରେ ମନ୍ତ୍ରରେ
ବନଜଚରଣ ମୂରଲୀ ବଦନ
ନନ୍ଦସୁତ ଦ୍ୱିଜରାଜରେ ॥ ୧ ॥

ଆଳୀଙ୍କି ପାଳିଲେ ବାଳକ ଦଳିଲେ
ବଳେ ଛଳି ସୁରରାଜରେ
ଟେକ ଗୋବର୍ଦ୍ଧନ ରଖିଲେ ଗୋଧନ
ବରଷ ସପତ ବ୍ରଜରେ ॥ ୨ ॥

ଅସୁର କେଶୀକ ନାଶିଲେ ନ ଶଙ୍କି
ଧ୍ୱଂସିଲେ ଦନୁଜ ରାଜରେ
ଉଗ୍ରସେନ ମାଥ ଉତ୍ରାଶଲେ ଛନ୍ଦ
ଉଦେ କଲେ ମଧୁରାଜରେ ॥ ୩ ॥

ମନ ! କର ମନ ମଦନ ମୋହନ
ଶରଣ ଚରଣ କଞ୍ଜରେ
ହରିବ ଦୁରିତ ହରିର ଚରିତ
ତୁରିତେ ତୁ ଟଣ୍ଢ ମଙ୍କରେ ॥ ୪ ॥

ହୋଇଲେ ଶରଣ ହୋଇବୁ କାରଣ
ରଖିଛୁ ବନେ ଯେ ଗଜରେ
ବୋଲଇ ବଲ୍ଲଭ ଚରଣ ପଲ୍ଲବ
କୁଳ ଦେବେ ଦେବରାଜରେ ॥ ୫ ॥

**

**

## ଦୁଃଖ ନାଶନ ହେ

**ବୀରକିଶୋର ଦେବ**

(ଅଷ୍ଟାଦଶ ଶତାବ୍ଦୀ)

ଦୁଃଖ ନାଶନ ହେ ! ସୁଖ ନ ପାଇଲି ଦିନେ
ବେଳୁବେଳ ଦୁଃଖ ପ୍ରବଳ ହେଉଛି
ବିଜୁଳି ଯେସନ ଘନେ ।।ଘୋଷା।।

ଅନାଥର ନାଥ ନୀଳଗିରି ନାଥ ଜଗନ୍ନାଥ ଲକ୍ଷ୍ମୀସାଇଁ
ଅରକ୍ଷିତକୁ ତ ରଖି ଦେଉନାହଁ ଭବଜଳରେ ଭସାଇ।।୧।।

ଆହେ ହରି ! ମୁହିଁ ସହିତ ନପାରି ଅନ୍ତର ବେଦନାମାନ
ଯେଣୁ କରି ତୁମ୍ଭେ ଦୟା ନ କଲ ହେ ପ୍ରଭୁ ଆତଙ୍କ ନାଶନ ।।୨।।

ଏଡ଼େ ନିଷ୍ଠୁର ତ ହେଲ ମୋହ ଭଳି ଦୁଃଖୀଜନ ଦୀନଠାରେ
ଦୀନଜନ ମାନେ ଗୁହାରି କରନ୍ତି ନଶୁଣ କି ତୁମ୍ଭେ ବାରେ ।।୩।।

ପୋଡ଼ୁ ମୋ ଅଦୃଷ୍ଟ ଅନ୍ନବସ୍ତ୍ର କଷ୍ଟ ଏଡେବଡ ପ୍ରଭୁ ଥାଉଁ
ଭଣଇ ବୀରକିଶୋର ମହାରାଜା ପଦ୍ମପାଦେ ଚିତ୍ତ ଥାଉ ।। ୪ ।।

**

**

# ମୁକ୍ତି ଦିଅ ଦୟାବନ୍ଧୁ

## ବୀରକିଶୋର ଦେବ

(ଅଷ୍ଟାଦଶ ଶତାବ୍ଦୀ)

ଦୀନବନ୍ଧୁ ଦଇତ୍ୟାରି ନାମ କାହିଁ ପାଇଁ ହେ
ଦୀନଜନ ଦୁଃଖଲୀନ ସରିଗଲା ନାହିଁ ହେ ॥ପଦ॥

ନୀଳଗିରି ବାସୀ ଦବାନଳି ଥିବୁ ଧାୟି ହେ
ଗିରିସମ ପାପଖଣ୍ଡ ନାମ ଶ୍ରବଗ୍ରାହୀ ହେ ॥ ୧ ॥

ଯେହୁ ତୁମ୍ଭ ନାମ ଗାଇ ପ୍ରେମେ ନାଚୁଥାଇ ହେ
ତାହାରେ କରୁଣା ଊଣା କମ୍ପା ଶ୍ରବଗ୍ରାହୀ ହେ ॥ ୨ ॥

ଆଶା ଥିଲା ତୁମ୍ଭ ନାମ ଭଜି ହେବ ଯାହୁ ହେ
ନାମ ବେଳେ ମାୟାଜାଳେ ପକାଇଲ ନେଇ ହେ ॥୩॥

ତବ ପଣ ହରି ଆଉଁ ଭବେ ପଡ଼ି ରହୁ ହେ
ଏ ନନ୍ଦା ହେବକାହାକୁ ଶ୍ରବ କହେ ନାହିଁ ହେ ॥ ୪ ॥

ମୃଗୁଣି ଗଜ ଜନ୍ତୁକୁ କରିଅଛ ଯାହୁ ହେ
ମୁଁ ଡାକିଲେ ନ ଶୁଣୁଛ କିସ ମନେ ବନ୍ଧୁ ହେ ॥ ୫ ॥

ଯେ ସ୍ୱପଦେ ଚିନ୍ତୁଅଛି ତାରିଅଛ ପାଇଁ ହେ
ଜାଣେ ମୋ କରମ ବଙ୍କା ସଲଖ ନୁହଇଁ ହେ ॥ ୬ ॥

ଲଜ୍ଜା ତବ ପଦ୍ମନାଭ ମୋର ଅନ୍ୟ ନାହିଁ ହେ
କିଶୋର ପାପୀକୁ ମୁକ୍ତିଦିଅ ଦୟାବନ୍ଧୁ ହେ ॥ ୭ ॥

**

**

# ଫିଟାଅ ପତିତ ପାବନ ବାନାକୁ

## ବୀର କେଶରୀ ଦେବ

(ଅଷ୍ଟାଦଶ ଶତାବ୍ଦୀ)

ଫିଟାଅ ପତିତପାବନ ବାନାକୁ
ଶ୍ରୀ ମଧୁସୂଦନ ।।ପଦ।।

ଆଶ୍ରା କରିଅଛୁ ନଦୀ ସ୍ରୋତକୁ
ପେଲିତ ଦେଉଛ ଦୂର ଦେଶକୁ
ପକ୍ଷ ଗଲା ପକ୍ଷୀ ପଙ୍ଗୁଏ ହୋଇଲା
ଜୀବନ ରହିଛି କ୍ଷଣ ମାତ୍ରକୁ ।। ୧ ।।

ତୁମ୍ଭ ବିସ୍ମରକୁ ଯାଉଛୁ ସରି
ନ ବିସ୍ମର ଆଉ ଭରତ ପରି
ପ୍ରଭୁ ପଣ ଥିଲେ ବାରେକ ଦେଖାଅ
କଥା ରହିଥାଉ ଏ ଢନପୁରୀ ।। ୨ ।।

ଦୟାଣୋ ଭୂଷଣ ଅନାଥ ବଂଧୁ
କରୁଣା ସାଗର ହେ କୃପାସିନ୍ଧୁ
ଦୁଃଖୀ ଦୁଃଖ ଜଣାଇଲେ ତ ନ ଘେନ
ଅଛ ଆରତ ହେଲ ଦୀନବଂଧୁ ।। ୩ ।।

କଣପାର ଅବା ନ କଣପାର
କଲକଥା ତ କଲ ଏତେଦୂର
ଶଙ୍ଖ ଚକ୍ର ଗଦା ନବନ୍ଧ ହେ କର
ଦାଣ୍ଡକୁ ଦଶୀବଟି ଅସୁନ୍ଦର ।।୪।।

ଶରୀରକୁ ପୀଡ଼ା ଦେଉଛ ଯାହା
ସର୍ବ ଅନ୍ତର୍ଯ୍ୟାମୀ ନଜାଣ ତାହା
ସବୁଛାଡ଼ି ତୁମ୍ଭ ପାଦେ ଆଶ୍ରାକଲି
ଦୀନ ଜନଠାରେ ନକଲ ଦୟା ।। ୫ ।।

ପତିତପାବନ ବାନା ତୁମ୍ଭର
ପତିତମାନଙ୍କୁ କର ଉଦ୍ଧାର
ଶ୍ରୀ ବୀର କେଶରୀ ଦେବ ସେ ଭଣିଲେ
ମୋହ ଅଦୃଷ୍ଟକୁ ହେଲ ନିଷ୍ଠୁର ॥ ୭ ॥

**

**

## ଭୁଜତଳେ ମୋତେ ରଖ

**ବୀରକିଶୋର ଦେବ**

( ଅଷ୍ଟାଦଶ ଶତାବ୍ଦୀ )

[ରାଗ-ସାବେରୀ, ଆଠତାଳି ବା ରୂପତାଳ]

ଭୁଜତଳେ ମୋତେ ରଖ ମହାବାହୁ
ବାହୁତଳେ ମୋତେ ରଖ
ବିପୁଳ ଭୁଜ ବିସ୍ତାର ଦେଲେ ପ୍ରଭୁ
କି କରି ପାରିବ ଦୁଃଖ ॥ ଘୋଷା ॥

ସଜ ହୋଇଥିବ ନନ୍ଦିଘୋଷ ରଥ
ମୁଁ ଥିବ ତୁମ୍ଭ ସେବାରେ
ତୁମ୍ଭେ ଦୀନବନ୍ଧୁ ! ନିର୍ଦ୍ଦୟ ହୋଇଲେ
କି ବୋଲିବେ ଏ ସଂସାରେ ॥୧॥

ଏ ଗଜରାଜ କ୍ଷିତି ପତି ସମ୍ପତ୍ତି
ରତିଏ ରୁଚଇ ନାହିଁ
ଭୁବନମୋହନ ଚକା ନୟନକୁ
ଯେତେବେଳେ ଦିଏ ଚାହିଁ ॥ ॥

ଧନକୁଳଜନିତ ଦୁଃଖ ଅତିରେକ
ସୁଖତ ଦିଶଇ ନାହିଁ

ଭାସି ଯାଉଅଛୁ ଏ ଭବ ସାଗରେ
ରକ୍ଷାକର ଶ୍ରୀବତ୍ସାଙ୍କ ॥୩॥

ଶ୍ରୀକ୍ଷେତ୍ର ନଗରେ ମହା ଐଶ୍ୱର୍ଯ୍ୟରେ
ଥିଲେ ହେଁ କମଳା ସାଇଁ
ବାଇଶିପାବଚ୍ଛ ନ ଉଠିବା ଯାଏଁ
ଆନନ୍ଦ ନପାଏ କାହିଁ ॥୪॥

ସେବାରୁ ଅନ୍ତର ହେଲ ଯେବେ ପ୍ରଭୁ
ଏ ପ୍ରାଣ ଥିବ କାପାଇଁ
ଓହ୍ଲାଇ ନ ଦିଅ କମ୍ପା ମୋ ମଥାରୁ
କଙ୍ଗାଳ ଶ୍ୱର ଗୋସାଇଁ ॥୫॥

ମୁଁ ସ୍ତୁର ପତିତ ଭରସା ରଖିଛୁ
ଶ୍ରୀରଙ୍ଗା ଚରଣ ତଳେ
ଶ୍ରୀ ବୀରକିଶୋର ମହାରାଜା ଭଣେ
ଦୟାକର ଏତେବେଳେ ॥୬॥

**

**

## ପତିତପାବନ ବାନା

### ବୀରକିଶୋର ଦେବ

(ଅଷ୍ଟାଦଶ ଶତାବ୍ଦୀ)

[ ରାଗ-କାମ୍ଭୋଜୀ ]

ପତିତପାବନ ବାନା ଆଉ କେତେ ବେଳକୁ
ଭାସିଗଲି ଭବଜଳେ ନାବ ଦିଅ କୂଳକୁ ॥ ଘୋଷା ॥

ରୋପିବାର ବୃକ୍ଷଗୋଟି କାଟୁଅଛ ମୂଳକୁ
ଚନ୍ଦପୁରେ ଅପକୀର୍ତ୍ତି ହେବ ଆଦ ମୂଳକୁ

ଦୂରେ ଥାଇ ଡାକଦେଲେ ଡେଶଥାଅ କର୍ଣ୍ଣକୁ
ନିକଟରେ ନ ଶୁଣିଲ ମୋ କର୍ମ ଅବଲକୁ॥୨॥

ଲକ୍ଷ ଯୋଜନରେ ଗଜ ଡାକ ଦେଲା ତୁମ୍ଭଙ୍କୁ
ନକ୍ର ନାଶିବାକୁ ଚକ୍ର ଦେଲ ପେଷି ଜଳକୁ ॥୩॥

ନକ୍ଷତ୍ର ଦିହୁଡ଼ି ଜଳେ ସଂଧ୍ୟା ଦୀପ ବେଳକୁ
ଲମ୍ବିଛି ଦସ୍ତାଣମାଳ ପଦ୍ମପାଦ ତଳକୁ ॥୪॥

ଯୋଗୀଜନମାନେ ହୃଦେ ଧାଉଛନ୍ତି ଯାହାକୁ
ଭଣିଲେ ବୀରକେଶରୀ ଆଶା ପଦ ତଳକୁ ॥୫॥

**

**

# କରୁଣା କର

## ସାନନ୍ଦ ଦ୍ୱିଜ

(ଅଷ୍ଟାଦଶ ଶତାବ୍ଦୀ)

କଳହଂସ କେଦାର ଚ୍ଛନ୍ଦବୃତ୍ତି

କରୁଣା କର ! ଅହେ କରୁଣା କର
ଆରତେ ଡାକୁଅଛୁ ଯୋଡ଼ିଣ କର ହେ
ଖେଦ ଜଂଜାଳ ମୋର ହର ସତ୍ୱରେ
ଖଟି ମୁଁ ଅଛୁ ପରା ତୁମ୍ଭ ପଦ୍ମରେ ହେ ॥୧॥

ଏ ଘୋର ସଙ୍କଟରୁ କର ଉଧାର
ଉଆଁସ ଅନ୍ଧାର ତ ଚଉଦଗର ହେ
ଘୋଟିଲା ସବୁ ମୋରେ ଦଶେ ମୁକର
କେଣିକି ଯିବି ନାହିଁ ଉପାୟ ମୋର ହେ ॥୨॥

କରୁଛୁ ନିବେଦନ ତୁମ୍ଭ ଛାମୁରେ
ଭସି ଯାଉଛୁ ପଡ଼ି ଶୋକସାଗରେ ହେ
ବେଳକୁ ବେଳ ମୋର ବଢ଼ିଲା କଷ୍ଟ
ତୁମ୍ଭେତ ନିର୍ଣ୍ଣିମେଷରେ ଦେଖୁଛ ହଟ ହେ ॥୩॥

ହେ ଚଉବାହା ! ମୋର ଆଉ କେ ସାହା
କଷ୍ଟ ଉପରେ କଷ୍ଟ ଦେଉଛ ଯାହା ହେ
ରଖିଲେ ରଖ ଅବା ମାରିଲ ମାର
ସାନନ୍ଦ ଦ୍ୱିଜ କରେ କୋଟି ଜୁହାର ହେ ॥୪॥

**

**

# କାହାକୁ ମୁଁ କରିବଇଁ ସାକ୍ଷୀ

ସାନନ୍ଦ ଦ୍ୱିଜ

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-ଜୟନ୍ତ]

କାହାକୁ ମୁଁ କରିବଇଁ ସାକ୍ଷୀ
ହେ ବକାଆକ୍ଷି ||ଘୋଷା||

ଡାକିଲେ ନାମ ଆରତେ
ନଶୁଣ କର୍ଣ୍ଣା ଭରତେ
କି ବଧିର ହୃଦ ଗତେ
ନ ଡେର ଶ୍ରବଣ ପଥେ
ଜପିନାମ
କଣ୍ଠ ଗଲା ଶୁଖି ହେ ||୧||

ମୋ ଶୋଷ ଘଟ ମାତର
ତୁମ୍ଭ କୃପା ଅକୂପାର
ରଖିଛ ରଙ୍କ ଉଦର
ତୃଷା ନ ହରଇ ମୋର
ହେଉଅଛ
ନିଷ୍ଠୁର କାହିଁକି ହେ ||୨||

ନେବ ବୋଲି କଛୁ ଲାଞ୍ଚ
ମନେ କରିଅଛ ପାଞ୍ଚ
ସେ କଥା ମନରୁ ମୁଞ୍ଚ
ଚଳିଗଲା ମନ ସ୍ୱଚ୍ଛ
ଗୋପ ପୁରେ
ପଦ୍ମ-ସର ଶୁଖି ହେ ||୩||

ପାଇ ନାନା ଉପବନ
ହେବାରେ ହରଷ ମନ
ଅଳସ କ ଅପଘନ
ଘାରିଲା ନିଦ୍ରା ନୟନ
ନ ଶୁଣୁଛ
ସେ କାରଣୁ ଜାଗ ହେ ।।୪।।

କହଇ ସାନନ୍ଦ ଦ୍ୱିଜ
ଆହେ ପ୍ରଭୁ ଚତୁର୍ଭୁଜ
ଗଲାଣି କ ପୂର୍ବ ତେଜ
ଦୁଃଖି ଦୁଃଖ ଯା ନ ବୁଝ
ହୋଇବାରୁ
ନୀଳାଚଳେ ସୁଖୀ ହେ ।।୫।।

**

**

# ଚକାଡୋଳା ଚକ୍‌କଣ କଳା

## ଭରତ ଦାସ

(ଅଷ୍ଟାଦଶ ଶତାବ୍ଦୀ)

[ ରାଗ-ସିନ୍ଧୁ ଭୈରବୀ ]

ଚକାଡୋଳା ଚକ୍‌କଣ କଳା
ଚତୁର୍ବର୍ଗ ଦାୟୀ ନନ୍ଦର ବଳା
ଚିନ୍ତିବା ମାତ୍ରକେ ଦୂରିତ ପଳାଏ
ସୋରିଷ ନ ରହେ ସଂସାର ଜାଳା ॥ ଘୋଷା ॥

ଚମତ୍କାର ବେଶ ପ୍ରଭୁ ହୃଷୀକେଶ
ଚରଣ ସେବନ୍ତି ଯା'ର କମଳା
ଚଉଦବ୍ରହ୍ମାଣ୍ଡ ଯା'କର ବଲ୍ଲଭ
ଚମ୍ପା ଦସ୍ତୁଣିଆ ସେ ଭାବ ଭୋଳା ॥୧॥

ଚାରିଧାମେ ସାର ଶ୍ରୀପୁରୁଷୋତ୍ତମ
କ୍ଷେତ୍ରବର ନାମେ ଯେବଣ ଖଳା
ଚଟକ ନୀଳକନ୍ଦର ମୃଗପଥ
ଭଲ ଭୁଆଇଲେ ଭକତ ମେଳା ॥୨॥

ଚଢ଼ି ନନ୍ଦଘୋଷ ଅତ୍ୟନ୍ତ ଉଲ୍ଲାସେ
ଲଗାନ୍ତି ରଥ ଉତ୍ସବ ଲୀଳା
ଚନ୍ଦନପାଟୀ କି ମନୋହର ଦଶେ
ଅଳକ ଆବଳୀ କୁଣ୍ଡଳ ଖେଳା ॥୩॥

ଚତୁର୍ଦ୍ଧା ମୂରତି ଜଗତର ପତି
ଚତୁର ସାମନ୍ତ ସେ କଳା-ଧଳା
ଚିତ୍ତ ରଞ୍ଜନିଆ ଗର୍ବ ଗଞ୍ଜନିଆ
ଚରଣେ ଭରତ ମତି ଭୁସଳା ॥୪॥

**

**

# କଳାକୃଷ୍ଣ କମଳଆଖି

## ଭରତ ଦାସ

(ଅଷ୍ଟାଦଶ ଶତାବ୍ଦୀ)

କଳାକୃଷ୍ଣ କମଳ ଆଖି
ଡାକଲେ ନଶୁଣ କାହିଁ ପାଇଁକ ।।ଘୋଷା।।
ଶ୍ରୀ ନୀଳକନ୍ଦରେ ବିଜେ କରଅଛ
ମିଛେ ଭଣ୍ଡିବାକୁ ଲୋଡ଼ୁଅଛକ ।।୧।।

ଅହଲ୍ୟା ତାରଣ ଭସ୍ମ ନିବାରଣ
ବାଳକ ମାର ରଖିଲ ସୁଗ୍ରୀକ ।।୧।।

ମହା ବଳବନ୍ତ ବିଶ୍ରବାର ସୁତ
ଛେଦ ପକାଇଲ ଦଶଶିର
ଲକ୍ଷେ ଯୋଜନରେ ଗଜ ଡାକଦେଲା
ତା' ଡାକ ଶୁଣିଲ ପଶାଖେଳେବ ।।୨।।

କୁରୁ ସଭାତଳେ ଦ୍ରୌପଦୀ ଚନ୍ଦ୍ରଲ
ତାକୁ କୋଟି ବସ୍ତ୍ର ଦେଇ ଥିଲକ
ଭାରତ ଯୁଦ୍ଧରେ ଘଣ୍ଟ ଘୋଡ଼ାଇଣ
ରଖିଥିଲ ଭରତଆ ପକ୍ଷୀକ ।।୩।।

ସେ ରଥରେ ଥରେ ଅର୍ଜୁନ ରଥରେ
ଆପଣ ସାରଥି ହୋଇଥିଲକ
ଭଣଇ ଭରତ ଆହେ ଜଗନ୍ନାଥ
ମୋ ମନ ରହୁବ ନୀଳାଚଳେବ ।।୪।।

**

**

## ଜଗବନ୍ଧୁ ନାଥଙ୍କୁ

### କବି କଳ୍ପଲତା ଜେମା

(ଅଷ୍ଟାଦଶ ଶତାବ୍ଦୀ)

[ରାଗ—ଗୌରୀ]

ଜଗବଂଧୁ ନାଥଙ୍କ ଯେ ମୂର୍ତ୍ତି ନୁହଇ
ଯେଣିକ ଗୁହିଁଲେ ତେଣେ ଶ୍ରୀମୁଖ ଦଶଇ ॥ଘୋଷା॥

ଧନ୍ୟ ତାଙ୍କ ଚକା ଆଖି ମନ ରହୁଥାଏ ଲଖି
ବାହୁ ଟେକିଛନ୍ତି ଦୁଃଖୀ ତାରିବା ପାଇଁ ॥୧॥

ମାଳାମାନ ଲମ୍ବିଥାଇ ପାଦ ତଳ ଯାଏଁ ରହି
ଗୁମୁଁରେ ଗହଳ ଭଙ୍ଗେ ପଶି ନୁହଁଇ ॥୨॥

ଯେଣିକ ଦେଲେ ନୟନ ଦଶଇ କଳା ବଦନ
କଟୀରେ ଯେ ପିତାମ୍ବର କି ଶୋଭା ପାଇ ॥୩॥

କବି କଳ୍ପଲତା ଜେମା ବୋଲେ ଦୋଷକର କ୍ଷମା
ଜେମା ବୋଲେ ପାଦେ ପଡ଼ି ଉଠିବି ନାହିଁ ॥୪॥

**

**

# ଦୀନବନ୍ଧୁ କୃପାସିନ୍ଧୁ

## ବଳଭଦ୍ର

(ଅଷ୍ଟାଦଶ ଶତାବ୍ଦୀ)

[ରାଗ—ଚନ୍ଦ୍ରା କାମୋଦୀ]

ଦୀନବନ୍ଧୁ ! କୃପାସିନ୍ଧୁ ! ମୋ ବନ୍ଧୁ କେ ବୋଲାଇବ
(ଯେବେ) କୃପାରେ କୃପଣ ହେବ ? ॥ ଘୋଷା ॥
ବିପଦ ନାଶନ ବାନା          ବିପଦକୁ ବଜ୍ର ସେହ୍ନା
ଉଡ଼ାଉଛ ହେ ଇନ୍ଦିରା ଧବ !
ବିପଦରେ କେ କାହିଁକି ଶରଣ ଯିବ
ଜୀବଧନ ନ ଶୁଣିଲେ କର୍ମକୁ ଆଦରିବ ॥୧॥

ଆଉ ଆଉ ଗଙ୍ଗାକୂଳେ          ତୃଷାର୍ତ୍ତିକ ତୃଷା ବଳେ
ପୟ ବିନା ପ୍ରାଣ ହରାଇବ
ତୁମ୍ଭେ ତୁଂ ନିନ୍ଦା ଲାଜ କାହାକୁ ହେବ
କଳ୍ପ ବୃକ୍ଷ ହୋଇ ଯେବେ କର୍ମକୁ ନ ଫଳିବ ॥୨॥

ହେ ପ୍ରଭୁ କରୁଣା ରାଶି          ଭବଜଳେ ଗଲି ଭାସି
ପଛେ ଆଉ ନାବ କି କରିବ
ଚକ୍ରଧର ! ଚକ୍ର କର୍ମା କରେ ବନ୍ଧିବ
ଚକ୍ର ହେଲା ଧାର ବୋଲି ବାଜଣ ଯିବ ॥୩॥

ଶୁଣି ବା ନଶୁଣି ବାରେ          ଜଣାଉଛୁ ଶ୍ରୀଛାମୁରେ
କଣ୍ଠଗତରେ ଦସ୍ତାତ ହୋଇବ
ବୋଲେ ବଳଭଦ୍ର ଯା' ବଗୃର ଯାଦବ
ଶିରୀଷ ଫୁଲରେ ଯେବେ କୁଳିଶ ବରଷା ହେବ ॥୪॥

**

**

# ଦୀନେ ଦୟା ନୋହିଲା

## ରାମଚନ୍ଦ୍ର

(ଅଷ୍ଟାଦଶ ଶତାବ୍ଦୀ)

[ରାଗ- ନ୍ତ୍ରା କେଦାର]

ଦୀନ ବାନ୍ଧବ ହୋଇ ଦୀନେ ଦୟା ନୋହିଲା
ତୋ ଭରସା କରି ହରି ! ବୃଅର୍ଥେ ପ୍ରାଣ ଗଲା ।।ଘୋଷା।।

ଜଗବନ୍ଧୁ ହେ
ଯେତେଦୂରେ ଯେତେ ଯେତେ ମୋକ୍ଷଣ ହେଲ
ତୁମ୍ଭରେ ଭରସା କରି ଦ୍ରୁପଦ ରାଜକୁମାରୀ
ଶୁଣିଛୁ ଥିଲ ଉଧରି
ମୋ ଦୁଃଖ ନ ଲାଗିଲା ।।୧।।

ପତି ଶାପେ ଘୋର ବନେ ଥିଲା ଅହଲ୍ୟା
ଲାଗି ଶ୍ରୀଚରଣ ରେଣୁ ମୋକ୍ଷ ହେଲା ସେ ପାଷାଣ
ମୋ ଭରସା ଥିଲା ତେଣୁ
କର୍ମକୁ ନ ଆକଳିଲ ।। ୨ ।।

ଗଜରାଜ ଦେବରାଜ ! ଜଳେ ଚନ୍ତ୍ରଲା
ବିଷମ ଗ୍ରାହ ମୁଖରୁ ଉଧରିଛ ଚନ୍ତ୍ରା-ନୀରୁ
ସେ କାଳ କରୁଣା ହରି
ଏ କାଳେ କେଣେ ଗଲା ।।୩।।

ଶୁଣିଅଛୁ ଚକ୍ରପାଣି ! ବେଶ୍ୟା ପିଙ୍ଗଳା
ସର୍ବ ପାପର ଆକର ଥିଲା ସେ ତାର ଶରୀର
ତାକୁ କରିଛ ଉଦ୍ଧାର
ମୋ ଦୁଃଖ ନ ଲାଗିଲା ।।୪।।

ରାମଚନ୍ଦ୍ର ହେ ଗୋବିନ୍ଦ ! ତାହା ଶୁଣିଲି
ଭକତକୁ ଅଛ ବଢ଼ାଇ          ବୋଲୁଛ ମୁଁ ରଖିନାହିଁ
ଆଉ କିଏ ଆହେ ହରି !
ପାଣ୍ଡବଙ୍କୁ ରଖିଲି ।। ୫ ।।

**

**

# ନମସ୍ତେ କମଳା ଗଳା ମାଳା

## ରାମ

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-ପଞ୍ଚମ ବରାଡ଼ି]

ନମସ୍ତେ କମଳା ଗଳା          ମାଳା ବଳାହକ କଳା
ନୀଳାଚଳ ଧୂପ ଚକାଡୋଳା
ଢଳାଙ୍କେ ମୋ'ଠାରେ ହେଳା          କଲେ ବୁଡ଼ିଲଟି ଭେଳା
କର ଶ୍ରୀ କୋମଳାଙ୍ଗରେ ମେଳା ହେ
ବଳାନୁଜ ! ନୀଳା ବିନୋଦିଆ ନନ୍ଦ ବଳା
ଥରେ ହେ ମୋତେ ଶଙ୍ଖୋଳା          କର ଆହେ ପାର୍ଥ ଶଳା
ପଳାଉ ମୋ ତାପତ୍ରୟ ଜ୍ୱାଳା ହେ ।।୧।।

ଖଳଇ ମୋତେ ସମ୍ଭାଳ          ଶରଣ ମୋ ଅସମ୍ଭାଳ
ହେ ଗୋପାଳ ବାଳ ମେଳ ଖେଳା
ଟାଳ ମୋ ଜଂଜାଳ ଜାଳ          ଆଳସ୍ୟ ଜାଗ୍ର ଦୁଲାଳ
ଲାଳସେ ମୁଁ ପଡ଼ି ହେଲି ଭେଳା ହେ
କାଳିନ୍ଦୀଶ ! କାଳି କୂଟ ହାରି କାଳ ଜ୍ୟୋଥ
କାଳ ନ ଭମିର କାଳ          ପୁରାଇଲ ତତ୍ କାଳ
କାଳ ଯବନର କାଳସ୍ୱର ହେ ।।୨।।

ଚଉ କାମରେ ମୋହିତ ହେଲି ହେ ସୁଦାମାମିତ
ମୁଁ ପତିତ ଅତି ଅରକ୍ଷିତ
ସୁ ତଡ଼ିତ ଜିତପୀତ ବାସ ହେ ତୁମ୍ଭ ଚରିତ
ଇତର ନ ମଣେ କଦାଚିତ ହେ
ହିତକାରି ! ଇତର କାମରେ ବିବର୍ଜିତ
ତୁମ୍ଭ ଚରଣ ସେବିତ ଅଟଇ ହେ ନନ୍ଦସୁତ
ଭବାର୍ଣ୍ଣବେ ଭାସୁଅଛୁ ଭୃତ୍ୟ ହେ ।।୩।।

କାନନେ ଏଣୀ ବେଦନ କାନରେ ଶୁଣି ବନ୍ଧନ
କି ନ କଲ ହେ ନାଗର କାହ୍ନୁ
ସଭା ମଧ୍ୟେ ଧ୍ୱଂସ ମାନ ଗୋବିନ୍ଦ ଗର୍ବ ଗୁମାନ
ଛାଇଲ ଦ୍ରୌପଦୀ ଅଭିମାନ ହେ
ଦାନବାରି ! ମୁଁ ମାନସ ଅତି ହୀନମାନ
ମାନବରେ ବର୍ତ୍ତମାନ ରହଇ ପଶୁ ସମାନ
ମାନଇ କୁଜନ କଥାମାନ ହେ ।।୪।।

ସଂସାରେ ମୋ ପରି ହୋଇ ଅସାର ନଥିବେ କେହି
ଦଶାର ଦୁର୍ବଳୁ ହେଲି ହୀନ
ଉଷା ଶାଶୁର ଶ୍ୱଶୁର ସୁ ସାରସ ଶ୍ରୀପଦ୍ମର
ମୁଁ ସାର ନକଲି ନେଲି ଧନ ହେ
କଂସାରିଡ ! ମୁଁ ବିମ ଯେ ନିଶାଖା ଅଟଇ
ନିଶାକର ଭୂଷାଙ୍କର ଯୋଷା ଯାନ ବଂଶଧର
ରସାଗଡଙ୍କର ପୋଷା ମୁହିଁ ହେ ।।୫।।

**

**

## ଜଗବନ୍ଧୁ ରଥାଙ୍ଗ ପାଣି

### ହରେକୃଷ୍ଣ ସିଂହ ଯୁବରାଜ

(ଅଷ୍ଟାଦଶ ଶତାବ୍ଦୀ)

[ ରାଗ-କଲ୍ୟାଣୀ]

ଜଗବଂଧୁ ରଥାଙ୍ଗ ପାଣି
ରତ୍ନ ସିଂହାସନ ମଣ୍ଡନମଣି
ମହୋଦଧି ତୀରେ ଶ୍ରୀନୀଳ କନ୍ଦରେ
ସଙ୍ଗେ ଘେନି ରଙ୍ଗେ ଭାଇ ଭଉଣୀ
କରିଛ ବିଜୟ ପ୍ରଭୁ ଦୟାମୟ
କୋଟି ମନ୍ଦ ସିଂହ ବିକ୍ରମ ଠାଣି ॥୧॥

ପତିତଙ୍କ ହିତେ ଅନୁରାଗ ଚିତେ
ହସିହସାଉଛ ଜଗତପ୍ରାଣୀ
ଅତି ମନୋହର ବେଶ ନଟବର
ଚକା ନୟନରେ ମୃଦୁସ୍ମିତବାଣୀ ॥୨॥

ଅପୂର୍ବ ମୂରତି ପଦ୍ମାଳୟା ପତି
ଅଗତିଙ୍କ ଗତି ବିଶ୍ୱ ବିଜ୍ଞାଣୀ
ପାତକୀ ମାନଙ୍କ ଅଶେଷ ପାତକ
ପକାଉଛ ଚକ୍ର ଦାଢ଼ରେ ହାଣି ॥୩॥

ଆହେ ଆର୍ତ୍ତତ୍ରାଣ ଗରୁଡ଼ ଆସନ
ମୁଁ କି ଜଣାଇବ ନମ୍ର ରେ ବାଣୀ
ହରେକୃଷ୍ଣ ସିଂହ ଯୁବରାଜା ଲେହ
ହୃଦୟ ଦବାଇ ନବାକୁ ପାଣି ॥୪॥

**

**

# ଦୟାକର ଦୀନବନ୍ଧୁ

## ରାମକୃଷ୍ଣ ପଟ୍ଟନାୟକ କବିଚନ୍ଦ୍ର

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-ଲଳିତ]

ଦୟାକର ଦୀନବନ୍ଧୁ ! ଶୁଭେ ଯାଉ ଆଜ ଦିନ
କର ଯୋଡ଼ି ତୁମ୍ଭ ପଦେ କରୁଅଛୁ ନିବେଦନ ।।ଘୋଷା।।

ଅନାଦି ଅନନ୍ତ ହରି କ୍ଷୀର ସାଗର ବିହାରୀ
ଲକ୍ଷ୍ମୀ ଦେବୀ ମନୋହାରୀ ପ୍ରଭୁ ପତିତ ପାବନ ।।୧।।

ସନ୍ଥ ଶାନ୍ତି ପ୍ରଦାୟକ ଦୁଷ୍ଟ ଶାସ୍ତି ବିଧାୟକ
ରୁକ୍ମିଣୀ ପ୍ରାଣନାୟକ ଜଗତଜନ ବନ୍ଦନ ।।୨।।

ଜଗଜ୍ଜନ ହିତକାରୀ ଦଶ ଅବତାର ଧାରୀ
ମଧୁସୂଦନ ମୁରାରି କାଳୀୟ ଦର୍ପ ଗଂଜନ ।।୩।।

ଯେଣେ ଚକ୍ଷୁ ପଡ଼େ ନାହିଁ ତୁମ୍ଭ କୀର୍ତ୍ତି ବିରାଜଇ
ଭାବ ଚିତ୍ତ ପୁଲକଇ ହେ ଭକ୍ତ ହୃଦ ଚନ୍ଦନ ।।୪।।

ତୁମ୍ଭେ ଧ୍ୟାନ ତୁମ୍ଭେ ଜ୍ଞାନ ମୁକ୍ତିଦାତା ଭଗବାନ
ତୁମ୍ଭ ବିନୁ ନାହିଁ ଆନ କଳି କଳୁଷ ନାଶନ ।।୫।।

ତୁମ୍ଭେ ଏ ସଂସାରେ ସାର ଆଉ ସବୁ ମାୟା ଘୋର
କୃତାନ୍ତ ଭୟୁଁ ଉଦ୍ଧର କହେ ରାମ କୃଷ୍ଣ ଦୀନ ।।୬।।

**

**

# ଅହେ ନୀଳାଦ୍ରି ବିହାରୀ

## ଅର୍ତ୍ତ ଦାସ

(ଅଷ୍ଟାଦଶ ଶତାବ୍ଦୀ)

ଅହେ ନୀଳାଦ୍ରି ବିହାରୀ
ଦୀନଦିବସ ଛାମୁରେ ଜଣାଉଛି
ଦୁଃଖ ନଗଲା ମୋହର ॥୦॥

ସମୁଦ୍ର ତଟରେ ପକ୍ଷୀ ବସା କଲା
ଡିମ୍ବ ନେଲେ ରତ୍ନାକର
ସାତଦିନ ଡିମ୍ବ ଜଳେ ଭାସୁଥିଲା
ରକ୍ଷା କଲ ଚକ୍ର ଧର ॥୧॥

ଶରେ ସାଗର ବାନ୍ଧିଣ ଧନଞ୍ଜୟ
ମୀନରୂପ କଲେ ହରି
ଗିରିଧର ହନୁ ଝମ୍ପନ୍ତ ସ୍ଖଳନ୍ତେ
ଶ୍ରୀ ମୁଖୁଁ ରୁଧିର ଗଲା ॥୨॥

ଲକ୍ଷ ଯୋଜନରେ ଗଜ ଡାକ ଦେଲା
ସୁଦର୍ଶନ ଦେଲ ପେଶି
ଏହି ପରକାରେ ଅଶେଷ ମହିମା
କହିବି କେତେ ବିଶେଷି ॥୩॥

ଭକ୍ତର ନିମନ୍ତେ ହସ୍ତିନା ବାରୁଣୀ-
ପଡ଼ା ମାଗିବାକୁ ଗଲ
ବେଢ଼ି କଉରବେ ଯେତେ ଶାସ୍ତି ଦେଲେ
ଭକତ ହିତେ ସହିଲ ॥୪॥

ଭକତ ଛଳେ ପ୍ରହ୍ଲାଦ ଇନ୍ଦ୍ରଙ୍କୁ
ସ୍ୱର୍ଗେ ଇନ୍ଦ୍ରପଦ ଦେଲ
ଦେବ ଲୋକେ ଯହୁଁ ପ୍ରଣାମ ନୋହିଲେ
ଆପେ ପ୍ରଣାମ ହୋଇଲ ॥୫॥

ଅନ୍ତ ଆରତରେ ଡାକିଲା ହରିଣୀ
ବାସବକୁ ଦେଲ ପେଶି
ଜାଲ ବାଡ଼ ଛିଣ୍ଡ଼ ଶବର ହିଁ ମଲା
ମୃଗୁଣୀ ଗଲା ବରଢ ॥୬॥

ଭାବକୁ ନିକଟ ପ୍ରସନ୍ନ ହୁଅନ୍ତ
ଅଭାବକୁ ଦୂର ହର
ଭଣିଲେ ଆରତ କିଛୁ ମାଗୁନାହିଁ
ମାଗୁଛି ଚରଣ ଧୂଳି ॥୭॥

**

**

## ଅହେ ଚକା ଆଖି

### ଆର୍ତ୍ତ ଦାସ

(ଅଷ୍ଟାଦଶ ଶତାବ୍ଦୀ)

ଆହେ ଚକା ଆଖି
ଏଡ଼େ ନିର୍ଗୁଣ କାହିଁ ପାଇଁକି ॥ ପଦ ॥

ଆରତ ନାଶନ ବୋଲି ଜଣାଇଲ ତହିଁକି
ଜଗତ ଯାଉଛି ଭାସି ତ୍ରିଲୋକରେ ନାହିଁକି ॥ ୧ ॥

ଭାର ହେଲା ବସୁମତୀ ତେଜିଗଲ କାହିଁକି
ମଉନେ ରହିଲ ତୁମ୍ଭେ ବଚନ ନ କହିକି ॥ ୨ ॥

ବୃନ୍ଦାବନ ତେଜି କରିଗଲ ନିଜ ଥାଇକି
ମହୋଦଧି ତଟ ପଥ ତୁମ୍ଭ ମନେ ନାହିଁକି ॥ ୩ ॥

ମହାକ୍ଷଣୀ ନାଶ କଲ ମେଲଛ କରାଇ କି
ନାଶ ଗଲେ ହିନ୍ଦୁ ଲୋକ ଦର ହସିବା ପାଇଁକି ॥ ୪ ॥

ଓଡ଼ିଆ ଜନକୁ ତୁମ୍ଭ ହୃଦେ ଦୟା ନାହିଁକି
ପରମ ପୁରୁଷ ଦେବ ନ ଶୁଣୁଛ କାହିଁକି ॥ ୫ ॥

ଦନୁଜ ଜନଙ୍କୁ ମାର ଚକ୍ର କରେ ଧରିକି
ଭଣିଲେ ଆରତ ମୋର ଭୟ ଦୂର ନୋହିକି ॥ ୬ ॥

**

**

## ଆସ ସଂଗାତ ଗୁଣ୍ଡିଚା ଯାତ

### ଅର୍ଦାସ

(ଅଷ୍ଟାଦଶ ଶତାବ୍ଦୀ)

ଆସ ସଙ୍ଗାତ ଗୁଣ୍ଡିଚା ଯାତ
ଦେଖିଯିବା ପରି ଆସ ଗୋ
ବରଷା ଦେଖି ଭରସା ପାଇନ
ସହଜେ ଆଷାଢ଼ ମାସ ଗୋ ॥ ୦ ॥

କ୍ଷେତ୍ରନାମ ଅଟେ ଶ୍ରୀପୁରୁଷୋତ୍ତମ
ରଥ ନାମ ନନ୍ଦଘୋଷ ଗୋ
ଆମ୍ଭ ନାଥ ନାମ ଛାଡ଼ି କରି
ଜଗନ୍ନାଥ ନାମ ପରକାଶ ଗୋ ॥ ୧ ॥

ବଂଶୀ ବଟଠାରୁ କଳ୍ପବଟ ଯାଏ
ସାତଶ ପଚ୍ଚିଶ କୋଶ ଗୋ
କେମନ୍ତେ ଚାଲିବ ଏତେ ଦୂର ପଥ
ପାଦ ହୋଇଯିବ ପ୍ରାସ ଗୋ ॥ ୨ ॥

ଆଦ୍ଭୁତ କଥାଏ ଶୁଣ ଗାଉଅଛୁ
ବଡ଼ କଉତୁକ ରସ ଗୋ
ଶୁଦ୍ରଠାରୁ ଅନ୍ନ ଛଡ଼ାଇ ବ୍ରାହ୍ମଣ
ଖାଉଛନ୍ତି ଅବଶେଷ ॥ ୩ ॥

ଗୋପେ ଥିଲ୍ ବେଳେ ଖାଇବା ବିନା ତ
ପାଉଥିଲେ କେତେ କ୍ଲେଶ ଗୋ
ଦରଫୁଟା ଭାତ ହରଡ଼ ଆମ୍ବିଲ
ଏବେ କରୁଛନ୍ତି ଗ୍ରାସ ଗୋ ॥ ୪ ॥

ଏ କି ବିଡ଼ମ୍ବନ କଥାଏ ଶୁଣ ଗୋ
କହିଲେ ମାଡ଼ିବ ହସ ଗୋ
କେମନ୍ତେ ଲେଖାରେ ସୁଭଦ୍ରା ଭଉଣୀ
ତାକୁ ନ ଛାଡ଼ନ୍ତି ପାଶ ଗୋ ॥ ୫ ॥

କେ ଅବା ଆମ୍ଭଙ୍କୁ ଚିହ୍ନି ନ ପାରିବେ
ଦେଖି କାଙ୍ଗାଳୁଣୀ ବେଶ ଗୋ
ପୁଚ୍ଛିଲେ କହନ୍ତି ଆମ୍ଭ ନିବାସଟି
ନନ୍ଦ ମହାଖୁଡ଼ ଦେଶ ଗୋ ॥ ୬ ।

ଆମ୍ଭ ଦୁଃଖ ସୁଖ ତୁମ୍ଭରେ ଜଣାଇ
ଖଣ୍ଡେ ଦେବ ଦରଖାସ ଗୋ
ବୋଲିବ ନିଜ ଦାସରେ କଲେ ରୋଷ
ଅର୍ଜିବ କି ପଉରୁଷ ଗୋ ॥ ୭ ॥

ଧବଳ ବଉଳ ଗାବ ମାନଙ୍କର
ମୁଖରେ କି ଦେବ ଘାସ ଗୋ

ସୁବଳ ସୁଦାମ ସଖା ସଙ୍ଗତରେ
କେ କରିବ ପରିହାସ ଗୋ ॥ ୮ ॥

କଲେ ଅନୁକୂଳ ଗୋପର ଯୁବତୀ
ପନ୍ଧାଇଲେ ଝିନ ବାସ ଗୋ
ଭଣିଲେ ଆରତ ମୋତେ ସଙ୍ଗେ ନିଅ
ମୁଁ ପରା ତୁମ୍ଭର ଦାସ ଗୋ ॥ ୯ ॥

**

**

## ସୁନ୍ଦର ଦେଉଳେ ହରି

### ଅର୍ଜ୍ଜୁନ ଦାସ

(ଅଷ୍ଟାଦଶ ଶତାବ୍ଦୀ)

ସୁନ୍ଦର ଦେଉଳେ ହରି ହେ
ସୁନ୍ଦର ଦେଉଳେ ହରି
ସୁନ୍ଦରୀ କି ଯେଉଁ ବେଳେ କରିଛନ୍ତି
ମହାପ୍ରଭୁ ହେ
ଶଙ୍ଖ ଚକ୍ର ଗଦାଧାରୀ ॥୦॥

ସୁନ୍ଦର ମୋହନ ଚୂଳ ହେ
ସୁନ୍ଦର ପୀତ ଦୁକୂଳ
ଶ୍ରୀଜଗନ୍ନାଥଙ୍କ ସୁନ୍ଦର ଦର୍ଶନ
ମହାପ୍ରଭୁ ହେ
ଧଣ୍ଡା କରଡ଼ିଆ ମାଳ ॥ ୧ ॥

ସୁନ୍ଦର ସପତ ଫଣୀ ହେ
ସୁନ୍ଦର ସପତ ଫଣୀ
ଶ୍ରୀଜଗନ୍ନାଥଙ୍କୁ ସୁନ୍ଦର ଦିଶଇ
ମହାପ୍ରଭୁ ହେ
ଭାଇ ତାଙ୍କ ହଳପାଣି ॥୨॥

ଭଣଇ ଆରକ୍ତ ଧୀର ହେ
ଦୋଷ କ୍ଷମା କର ମୋର
ଶ୍ରୀଜଗନ୍ନାଙ୍କ ଚରଣେ ଶରଣ
ରକ୍ଷା କଲେ, ଚକ୍ରଧର ॥୪॥
**

**

## ତବ ନାମ ପତିତପାବନ

### କାର୍ତ୍ତିକ

(ଅଷ୍ଟାଦଶ ଶତାବ୍ଦୀ)

[ତାଳ-ପହପଟ]

ତବ ନାମ ପତିତପାବନ ତିନି ଭୁବନେ ପ୍ରକଟି ବାଜେ
ମୁଁତ ପତିତ କଦମ୍ବ ମୁକୁଟ ମଣିଙ୍କ ଉପରେ ରାଜେ ॥୧॥

ମୈଇ କଶଲି ଅଭିମାନ ଲୋଭ କ୍ରୋଧ ପରକୁ ହିଂସା
କାମିକ ସଙ୍ଗେ କପଟୀ ମୁଁ ନ ସହେ ପର ପ୍ରଶଂସା ॥୨॥

ମୁଁ ଗର୍ବିତ ପର ନିନ୍ଦକ ଖଳ ବିଶ୍ୱାସ ଘାତୀ
ବଞ୍ଚିତ ତବ ନାମୁଁ କଠୋର ବିଷୟୀ-ବିଷ ମୋହୀ ॥୩॥

ମୁଁ ମିଥ୍ୟାରତ ଧରମ ବିରୋଧୀ କର୍ମ କୁଟିଳ ବୁଦ୍ଧି
ପରଧନ ପରଦାରା ଲମ୍ପଟ କର୍ମଗୁଣେ ଅସିଦ୍ଧି ॥୪॥

ମୁଁ ଗଜ ଅଜାମିଳ ବ୍ୟାଧା ହରଣୀ ଛାଡ଼ି
ପରୋକ୍ଷ ଦାମୀ
କାର୍ତ୍ତିକ ଦୀନ କହଇ ପ୍ରଭୁ
ସୁକଳ ଅନ୍ତର୍ଯ୍ୟାମୀ ॥୫॥

**

**

# ଭଜ କଲାଧଲା ବେନ ଭାଇଙ୍କି

## ଗୋପାଳ

(ଅଷ୍ଟାଦଶ ଶତାବ୍ଦୀ)

ଭଜ କଲାଧଲା ବେନ ଭାଇଙ୍କିରେ ମନ ॥୦॥

ହୃଦେ କରଙ୍ଗମାଳ ପଢ଼େ ଆଲ୍‌ଛ ଭ୍ରମର
ତୋ ଜନ୍ମ ସୁଫଳ କର ସ୍ପର୍ଶି କରେ ॥୧॥

ରତ୍ନ ସିଂହାସନେ ଉଭା      କୋଟି କାମ ଜିଣି ଶୋଭା
ମଧ୍ୟରେ ସୁଭଦ୍ରା ଶଶି ମୁହିଁକରେ ॥୨॥

ଯା'ର ଲଗିଣ ପଥର      ପାଷାଣୁ ନଜ ଶରୀର
ପାଇଲା ମୁକତ ହେଲା ସ୍ପର୍ଶିକ ରେ ॥୩॥

ଯେତେକ ଅଛୁ ତୋ ଦୁଃଖ      ଜଣାଅ ସ୍ପର୍ଶି ଶ୍ରୀମୁଖ
ବୋଲେ ଗୋପାଳ ଚତୁର୍ଦ୍ଧାରୂପ ଧାଯ୍ଯିକରେ ॥୪॥

**

**

# ଦୀନବନ୍ଧୁ ଦୟାସିନ୍ଧୁ

## ଦାମୋଦରଦ୍ୱିଜ

(ଅଷ୍ଟାଦଶ ଶତାବ୍ଦୀ)

ଦୀନବନ୍ଧୁ ଦୟାସିନ୍ଧୁ ତୁମ୍ଭେ ଦୁଃଖ ନିବାରଣ ହେ ॥ପଦ॥
ଆହେ ନୀଳଗିରି ଦରି ବିହାରୀ ପ୍ରଭୁ ଦଇତାରି
ନିତ୍ୟ ପୁରୁଷ ହେ ନିତ୍ୟ ଅବତାରୀ
ନାରାୟଣ ହେ ପ୍ରଭୁରକାରୀ
ନରସିଂହ ନରହରି ମୁରାରି ହେ
ନଳିନ ଈକ୍ଷଣ ହେ ॥ ୧ ॥

ଆହେ ପ୍ରଭୁ ଲକ୍ଷ୍ମୀପତି କଳା ଜଳଧର ମୂର୍ତ୍ତି
ରସିଲି ନାହିଁ ମୁଁ ତୁମ୍ଭ ଭଗତି
ବସିଲି ନାହିଁ ସାଧୁଙ୍କ ସଙ୍ଗତି
ପୋଷିଲି ନାହିଁ ପ୍ରଭୁଙ୍କ ଗୁଣ କୀର୍ତ୍ତି
ମୁଁ କରି ପରିତ୍ରାଣ ହେ ॥ ୨ ॥

ଯେବେ ମୋତେ ରଖିବ, ରଖିବାର ଆଉ କି ଦଶିବ
କପାଳରେ ମୋର ଯାହାଥିବ କାଳେ-
କାଳେ ଅନ୍ୟଥା ନୋହିବ
ଏମନ୍ତ ଆଜ୍ଞା ମୋତେ ଯେବେ ହେବ
ଏ କାହାକୁ ଦୂଷଣ ହେ ॥୩॥

ଭଣେ ବିପ୍ର ଦାମୋଦର ଛାର-ହେଲ
ପ୍ରଭୁ କଷ୍ଟ ମୋର
ଭରସା କରିଛୁ ଶ୍ରୀପଦ୍ମ ପୟର
ଭସାଇ ଦେଲ ହେ ଭବସାଗର
ଭେଲା ହୋଇବ ସେ ଆଉ କାହାର
ମୋ ଯେନବା ଜଣାଣ ହେ ॥୪॥

**

**

# ଅଶେଷ ମଙ୍ଗଳ

## ନୃସିଂହ ଗଜପତି

(ଯାତ୍ରା-ମଙ୍ଗଳ ଗୁଚ୍ଛାଷ୍ଟି)

[ଅଷ୍ଟାଦଶ ଶତାବ୍ଦୀ]

ଅଶେଷ ମଙ୍ଗଳ ପୂର୍ଣ୍ଣକୁମ୍ଭ କଳା ମୁଖ
ବସନ ପ୍ରାସ୍ତେକ ବେଢ଼ି ଶୋହେ ଚାନ୍ଦ୍ର ରେଖ ଯେ ॥୧॥

ଜଗନ୍ନାଥ ନାମ ଏକା ତ୍ରିଭୁବନେ ସାର
ଭକ୍ତ ଯାହା ଦୁରିତକୁ ଛେଦନ କୁଠାର ହେ ॥୨॥

ଅଧର ଚୂତ ପଲ୍ଲବ ଅରୁଣର ଜ୍ୟୋତି
ଶ୍ରୀ ନୀଳାଦ୍ରିନାଥଙ୍କ କପାଳରେ ବିରାଜନ୍ତି ହେ ॥୩॥

ଅଧର ନୟନ ଶ୍ୱେତ ପଙ୍କଜ ସୁନ୍ଦର
ମଧୁ ଲୋଭେ ଚୁମ୍ବି ରହେ ଭୋଳା ମଧୁକର ହେ ॥୪॥

ବାରତିଥି ତାରଚନ୍ଦ୍ର ଯୋଗ ଏ କରଣ
କିଛୁ ନ ବିଚାର ପଶ ନାମରେ ଶରଣ ହେ ॥୫॥

କାଳବେଳା ଶୁଭ ଲଗ୍ନ ନବଗ୍ରହ ଶାନ୍ତ
ପଦକୁ ପଦ ସମ୍ପତ୍ତି ନ ଥାଇ ବିପତ୍ତି ହେ ॥୬॥

ଯାତ୍ରାର ଆରମ୍ଭ ବେଳେ ଗୋବିନ୍ଦ ସୁମର
ଲଭ ଯେଣେ ଗ୍ରହମାନେ ଥିବେ ସଙ୍ଗତର ହେ ॥୭॥

ଜଗନ୍ନାଥ ପଦ୍ମପାଦେ ଚନ୍ଦ୍ର ହେ ସୁମତି
ପଦଯୁଗ ବନ୍ଦିତ ନୃସିଂହ ଗଜପତି ହେ ॥୮॥

**

**

# ଅହେ ମହାପ୍ରଭୁ

## ପଦ୍ମନାଭ ପଟ୍ଟନାୟକ

(ଅଷ୍ଟାଦଶ ଶତାବ୍ଦୀ)

[ରାଗ-ରାମକେରୀ]

ଆହେ ମହାପ୍ରଭୁ ନୀଳାଦ୍ରି ସିଂହ କମଳାପତି
ତୁମ୍ଭ ଆଉ ଦୀନଜନରେ ପଡ଼ୁଅଛୁ ବପତ୍ତି ॥୧॥

ପତିତପାବନ ବାନାକୁ ନୀଳଚକ୍ରେ ଉଡ଼ାଅ
ମୋହବେଲକୁ ଏ ମହିମା କାହିଁପାଇଁ ବୁଡ଼ାଅ ॥୨॥

ଅପରାଧ ଅଛୁ ଏମନ୍ତ ଯେବନଛକ ଚତ୍ତରେ
ଅପରାଧ ଭୟ ଭଞ୍ଜନ ବାନା ଏ ଜଗତ ରେ ॥୩॥

ଶରଣ ସମ୍ଭାଳ ପରା ହେ ବାଞ୍ଛା କଳପତରୁ
ଅଶରଣ ଜନ ରଖିଲେ ସିନା ଏ ଆରତରୁ ॥୪॥

ଦୁରିତ ସମୁଦ୍ରେ ଭାସୁଛୁ ପ୍ରଭୁ ଏକା ଉଚିତ
କଳୁଷ ନାଶନ ବାନାକୁ ଏତ ଅଟେ କଙ୍ଖିତ ॥୫॥

**

**

# ନଶୁଣୁଅଛ କାହିଁକ ?

## ପଦ୍ମନାଭ ପଟ୍ଟନାୟକ

(ଅଷ୍ଟାଦଶ ଶତାବ୍ଦୀ)

ମହାପ୍ରଭୁ ମହାଆର୍ତ୍ତି ହେଲା ଯେ
ନ ଶୁଣୁଅଛ କାହିଁକ ॥୦॥

ଚତୁର୍ଥ ଯେତେ ସଙ୍କଟ ମାନଙ୍କରୁ
ରଖିଛ ଯାହା ଯାହାକୁ
ଜଗଦୀଶ ଏ ଉତ୍ତରେ ଜଣାଇ
ଦଆଉ ମୋ ଦୁଃଖ କାହାକୁ ॥୧॥

ଅନ୍ତରଗତ କଥା ଅନ୍ତରଯାମୀଙ୍କ
ଅନ୍ତର ହୋଇଛି ନକ
ଭୃତ୍ୟ ହେଲେ ଅବରତେ ଅପରାଧୀ
ପ୍ରଭୁ ଚିତ୍ତରେ ଘେନକ ॥୨॥

ସନ୍ତତ ସନ୍ତାପ ପ୍ରତାପ ଅନଳ
ଜଳୁଛି ହୃଦ ଭିତରେ
କରୁଣାସିନ୍ଧୁ କାରୁଣ୍ୟ ଜଳ ବୃଷ୍ଟି
କର ଜନା ତୁରିତରେ ॥୩॥

ଅନିତ୍ୟ ସଂସାର ଉତ୍ପତ୍ତି ପ୍ରଳୟ
ସ୍ଥିତିକି ଅଟ କାରଣ
ଏ ଘେନି ତବ ଚରଣ ବିନୁ ମୋର
ଅଛି କେ ଅନ୍ୟ ଶରଣ ॥୪॥

ଅଗାଧ ସମୁଦ୍ର ମଧ୍ୟରେ ପଡ଼ିଣ
ଅତରେକ ହେଲି ହରି
ବୋଲେ ପଦ୍ମନାଭ ଭାବଗ୍ରାହୀ ସାନ୍ଧୁ
କର ଏ ବିପଦୁଁ ହର ॥୫॥

**

**

## ଦୟାକର ଦୀନବନ୍ଧୁ

### ରାମକୃଷ୍ଣ

(ଅଷ୍ଟାଦଶ ଶତାବ୍ଦୀ)

ଦୟାକର ଦୀନବନ୍ଧୁ ! ଶୁଭେ ଯାଉ ଆଜ ଦିନ
କର ଯୋଡ଼ି ତୁମ୍ଭ ପଦେ କରୁଅଛି ନିବେଦନ ।।ଘୋଷା।।

ଅନାଦି ଅନନ୍ତ ହରି କ୍ଷୀର ସାଗର ବିହାରୀ
ଲକ୍ଷ୍ମୀଦେବୀ ମନୋହାରୀ ପ୍ରଭୁ ପତିତପାବନ ।।୧।।

ସନ୍ଥ ଶାନ୍ତ ପ୍ରଦାୟକ ଦୁଷ୍ଟ ଶାସ୍ତି ବିଧାୟକ
ରୁକ୍ମଣୀ-ପ୍ରାଣନାୟକ ଜଗତ ଜନ ବନ୍ଦନ ।।୨।।

ଜଗଜ୍ଜନ ହିତକାରୀ ଦଶ ଅବତାର ଧାରୀ
ମଧୁସୂଦନ ମୁରାରି କାଳିୟ ଦର୍ପ ଗଞ୍ଜନ ।।୩।।

ଯେଣେ ଚକ୍ଷୁ ପଡ଼େ ସହିଁ ତୁମ୍ଭ କୀର୍ତ୍ତି ବିରାଜଇ
ଭାବି ଚିତ୍ତ ପୁଲକଇ ହେ ଭକ୍ତ ହୃଦଚନ୍ଦନ ।।୪।।

ତୁମ୍ଭେ ଧ୍ୟାନ ତୁମ୍ଭେ ଜ୍ଞାନ ମୁକ୍ତିଦାତା ଭଗବାନ
ତୁମ୍ଭ ବିନୁ ନାହିଁ ଆନ କଳିକଲୁଷ ନାଶନ ।।୫।।

ତୁମ୍ଭେ ଏ ସଂସାରେ ସାର ଆଉ ସବୁ ମାୟା ଘୋର
କୃତାନ୍ତ ଭୟୁଁ ଉଦ୍ଧର କହେ ରାମକୃଷ୍ଣ ଦୀନ ।।୬।।

**

**

# ଜୟ ଜୟ ହରି

ସଧାନାଥ

(ଅଷ୍ଟାଦଶ ଶତାବ୍ଦୀ)

ଜୟଜୟ ହରି ନୀଳାଦ୍ରି ବିହାରୀ
ଯେନ କରେ ଅଶି ଅଚ୍ଛ ବସି
ପାପମତ୍ତ କରୀ କୋପ ଟାଙ୍ଗି ଧରି
ମୋ ହୃଦ କମଳ ବନେ ପଶି
ଆହେ ବ୍ରହ୍ମରାଶି
ଧର୍ମକର୍ମ ସବୁ ଦିଏ ନାଶି ॥୧॥

କଳା ବଳୟକ କମନୀୟ ମୁଖ
ଦେଖିଲେ ମୋ ଦୁଃଖ ହୁଏ ଦୂର
ସୁରଙ୍ଗ ଅଧର ଦଶେ କି ସୁନ୍ଦର
ଧାତା ପୁରନ୍ଦର ଯା' କିଙ୍କର
ଆହେ କମ୍ବୁଧର
ଶମ୍ଭୁ ସେ ବାଞ୍ଛନ୍ତି ଯା' ପୟର ॥୨॥

ପବିତ୍ର ଜାହ୍ନବୀ ଯା' ପଦୁ ସମ୍ଭବ
ଜଗତକୁ କଲେ ପରିତ୍ରାଣ
ଗୌତମ ମହିଳା ହୋଇଥିଲେ ଶିଳା
ମୁକ୍ତ ହେଲ ଲଗି ଶ୍ରୀଚରଣ
ଆହେ ନାରାୟଣ
ଭୟ କର ମୋର ନିବାରଣ ॥୩॥

ଜୟ ଦୀନବନ୍ଧୁ        ଅଘତମ ଇନ୍ଦୁ
ନାମ କୃପାସିନ୍ଧୁ ଅଛୁ ବହୁ
ଚଳେ ମୋତେ ଊଣା        ନ କର କରୁଣା
ଦୀନ ରାଧାନାଥ ଗୀତେ କହୁ
ଆହେ ଭବତ୍ରାତା
ଜୀବ ଯାଉ ତବ ନାମ ଗାଇ ।।୪।।

**

**

# ନୀଳଚକ୍ରେ ଉଡୁଛି ବାନା

## ରସାନନ୍ଦ

(ଅଷ୍ଟାଦଶ ଶତାବ୍ଦୀ)

ନୀଳଚକ୍ରେ ଉଡ଼ୁଛି ବାନା
ଚଉ ଚଇତନ ହରି ଭଜନା
ଉତ୍ତରୁ ଉଜାଣି ବହୁଛି ତ୍ରିବେଣୀ
ମଧ୍ୟରେ ଗଙ୍ଗା ଯମୁନା
ଝଲଝଲ ଜ୍ୟୋତି ଶୂନ୍ୟେ ବିରାଜୁଛି
ସେ ରୂପ ଦେଖିଲେ ହେବୁ ଭେଟଣା ॥୧॥

ପାଣି ପଙ୍କ ନାହିଁ ଫୁଟିଅଛି କଇଁ
କରୁଚି ଦିବ୍ୟ ବାସନା
ଅଦ୍ଭୁତ ମୂରତି ଦୃଷ୍ଟିରେ ରହିଛି
ଯେହ୍ନେ ବାରମାଢ଼ ଅଟଇ ସୁନା ॥୨॥

ଅଥଳ କୂଳରେ ଦେଉଳ ରହିଛି
ଲହଡ଼ିକି ଟଳ ମଟଳ ସିନା
ପଣ୍ଡାନାହିଁ ଯହିଁ ଭୋଗ ପାଉଅଛି
ଶୂନ୍ୟରେ ବାଜୁଛି ଘଣ୍ଟ ବାଜଣା ॥୩॥

ଗଙ୍ଗା ସେ ଯମୁନା ସରସ୍ୱତୀଧାର
ବୁଡ଼େ ପାଶବାକୁ ହୋଇଛି ମନା
ଭଣେ ରସାନନ୍ଦ ନବଘନ ସ୍ୱନ୍ଦ
ହଜାଇ ଦେଉଛି ମୋହ ଚେତନା ॥୪॥

**

**

# ମଣିମା ଶୁଣ'ମା ହେଉ

## ସ୍ୱପ୍ନାନନ୍ଦ

( ଅଷ୍ଟାଦଶ ଶତାବ୍ଦୀ )

[ତାଳ-ଏକତାଳି ଆଡ଼ଖେମଟା]

ମଣିମା ଶୁଣିବା ହେଉ ଗମ୍ଭୀର ଡାକ
ଦରକ୍ଷ ଜନକୁ ରଖ ପଙ୍କଜ ମୁଖ ।।ଘୋଷା।।

କୃପା ସାଗର କାହିଁକି ମୋ ବେଳକୁ ଗଲ ଶୁଖି
ଜାଣିଲି ମୋ କର୍ମ ବାଙ୍କ, ନୋହେ ଅଲକ୍ଷ ।।୧।।

ଆତଙ୍କ ନାଶନ ବାନା ନ ଶୁଣୁ ଭୃତ୍ୟ ବେଦନା
ଏବେ ହୋଇଯିବ ମନା କେ ଦେବ ଡାକ ।।୨।।

ଦାସ ଯେବେ ନାଶଯିବ କୀର୍ତ୍ତିରେ ଅକୀର୍ତ୍ତି ହେବ
କ୍ଷୀରଧି ଚନ୍ଦ୍ରରେ ଲାଗିଯିବ କଳଙ୍କ ।।୩।।

କହେ ସ୍ୱପ୍ନାନନ୍ଦ ତ୍ୱର, ନାହିଁ ଅନ୍ୟ ପ୍ରତିକାର
ଏ ଦୀନ ଅବସ୍ଥା ମୋର ନେତ୍ରେ ନ ଦେଖ ।।୪।।

**

**

## କେହି ସରିକି

### କବିସୂର୍ଯ୍ୟ ବଳଦେବ ରଥ

(ଊନବିଂଶ ଶତାବ୍ଦୀ)

କେହି ସରିକି, ପ୍ରଭୁ ପଣେ ନୀଳାଦ୍ରି କେଶରୀ କି
ଯା' ଠାରେ ଯୁରନ୍ତି ଦୁଃଖିଜନ ଦସ୍ତା
ନଖଠାରୁ ଶିଖା ସରିକି ॥ପଦ॥

କି କହିବା ଆଉ ତାଙ୍କ ଶ୍ରୀଚରଣ
ଅନୁସରଣ ଚାତୁରୀକି
ବଜାଉଛନ୍ତି ବିଭୀଷଣ ଆଗରେ
ଜଗତ ବିଜୟୀ ତୂରୀକି ॥୧॥

ମାନକୁ ବଡ଼ କରିବାରେ
ଉଡ଼ାଇ ଅଛନ୍ତି ଧ୍ୱଜ ମଞ୍ଜରୀକି
ଦେଖି ନାଗ ନର ଗନ୍ଧର୍ବ କିନ୍ନର
ଉପରେ ଧ୍ରୁବ ନଗରୀକି ॥୨॥

କି କହିବ ତାଙ୍କ ପୀରତି କରିବା
କ୍ଷୀରଧି ଚନ୍ଦ୍ର ମାଧୁରୀକି
ରଙ୍କ ବିପ୍ର ପାଦ ଧୂଆଇ ଯା' ଦେଲେ
ଟମା କରେ ରହି ଝରୀକି ॥୩॥

କ୍ଷମା ସାଗର ଯେ ତାହାଙ୍କୁ ଭଜିଲେ
କାଳ କିଂକରଙ୍କ ଡରିକି
ବୋଲେ କବିସୂର୍ଯ୍ୟ ଆନ ଉପାୟକୁ
ପେଲିଦିଅ ଗିରି ଦରୀକି ॥୪॥

**

**

# ପ୍ରାଣ ବାନ୍ଧବ ହେ

## କବିସୂର୍ଯ୍ୟ ବଳଦେବ ରଥ

(ଊନବିଂଶ ଶତାବ୍ଦୀ)

[ରାଗ-କାମୋଦୀ]

କମଳା ବାସିନୀ ପ୍ରାଣ ବାନ୍ଧବ ହେ
ଆର୍ତ୍ତିତ୍ରାଣ କମନୀୟ କଳାମୁଖ ଚନ୍ଦ୍ର
କମ୍ବୁ ମଧୁପୁଞ୍ଜ ନୀଳ ବସୁନ୍ଧରା ଧରା ଚୂଳ
ଗୁହାଗୃହ ବିହାରୀ ପାରିନ୍ଦ୍ର
ହେ ମହାବାହୁ
କଉଣପ କୁଳ କ୍ଷୟ ଦକ୍ଷ
କୃପଣ କା ମିତ କଳ୍ପ ବୃକ୍ଷ
କହି ନୋହିବା କନ୍ଦନ ସିନ୍ଧୁ ନିମଜ୍ଜନ ଜନ
କର୍ଣ୍ଣ ଧାରବର ରକ୍ଷ ରକ୍ଷ ହେ ॥୧॥

ଖଣ୍ଡ ପରଶୁ ଚନ୍ଦନ ମୁରଲୀ ସୁସାବଧାନ
ଖମଣି ମଣ୍ଡଳ ମଧ୍ୟ ବାସୀ
ଖଗାଧିପଧ୍ୱଜ ବ୍ରଜ ଖଞ୍ଜନ ନେତ୍ରାସମାଜ
ଚଞ୍ଚଳା କୌତୁକ ଅଭିଳାଷୀ
ହେ ମହାବାହୁ
କ୍ଷୀଣ ଜନଙ୍କର ଅନ୍ତଃସାର
ଖଣ୍ଡିତ ମେଦିନୀ ଭସ୍ମ ଭାର
ଖରମୟୂଖର ପୁତ୍ର ଚରକର ଦରପନ୍ତ
ନିଦାରଣ ଦସ୍ୟାକର ହେ ॥୨॥

ଗହ୍ୱନେ ଗର୍ଭିଣୀ ଏଣୀ ଗରଷ୍ଟ ବପଦ ପୁଣି
ଗୁହ୍ୱାର ଗର୍ଭକ ସ୍ଥିତ ଜଳ
ଗୋଜ ଅମିଟଙ୍କୁ ଫାରମାସିକା ମାନକେ
ତାର କେତେବଡ଼ ଦର ଦୂର ହେଲ
ହେ ମହାବାହୁ
ଗୋପେ ଗୋବତ୍ସା ଗୋପିକା ଗୋପ
ଗ୍ରାସି ଦେଉଥିଲ ଶକ୍ର କୋପ
ଗୋବର୍ଦ୍ଧନ ଗିରଛନ୍ତ୍ର ଟେକିଟିକ ପଦ୍ମନେତ୍ର
ବହିଲ ସେ ଉପତାପ ଲେପ ହେ ॥୩॥

ଘନା ଘନଘଟା ଘୋର ନୃଶଂସ ହିରଣ୍ୟାସୁର
ବାଞ୍ଛି ନିଜ ତନୁଜର ବଧ
ଘମିଞ୍ଜି ତୀବ୍ର କୋପରେ ଘଟାଇଲା ତା' ଉପରେ
ବଜ୍ରାଧିକ ଅନେକ ଆୟୁଧ
ହେ ମହାବାହୁ
ଘେନି ପୁବାସିଂହ ଅବତାର
ଘାତ ମାନକରେ ଜରଜର
ଘଟୀ ଅର୍ଦ୍ଧକରେ ଭକ୍ତ ପ୍ରହ୍ଲାଦର ଭୟ ମୁକ୍ତ
କଲ ପରା ତୁମ୍ଭେ ଚକ୍ରାୟୁଧ ହେ ॥୪॥

ନାଗନାଥକୁ ସଲଲେ ଚକ୍ର ଆକର୍ଷିଲ କାଲେ
ଲକ୍ଷ୍ମୀ ଅକ୍ଷ ଖେଲେ ଥିଲେ ମାତ
ନରେଖି ସାରକୁ ଭଲେ ନମେଷ ମଧ୍ୟେ ଦେଖିଲେ
ନାଗାର ହେବାର ଖରଶ୍ୱାସୀ
ହେ ମହାବାହୁ
ନନ୍ଦ କୀର୍ତ୍ତିନରୁ ଚକ୍ରଧାର
ନନ୍ଦୁଥିଲ ବନ୍ଧୁକ ପ୍ରକର
ନଖିଲ ଲୋକେ ଏ ଯଶ ନାଚୁଛୁ ହେ ଜଗଦୀଶ
ନୋହିଁଲଟି କେଉଁ ଖ୍ୟାତ କର ହେ ॥୫॥

ଚତୁର୍ଦ୍ଦଶ ଲୋକ ଯେଉଁ, ଚନ୍ଦ୍ରପରାକ୍ରମ ଗାଉ-
ଅଛନ୍ତି ଅଭୟ ପାଇ ନିତି
ଚକାନୟନ ହେ ସେହି ଚନ୍ଦ୍ରକୁ ଶ୍ରୀକରେ ବାନ୍ଧି
ଗୁହୁଁଛ ତ ମୋହର ବିପତ୍ତି
ହେ ମହାବାହୁ
ଚରାଚରେ ଚନ୍ଦ୍ର ଅସ୍ତ ହେଲା
ଚକୋର କି ଚନ୍ଦ୍ର ନ ପାଇଲା
ଚିନ୍ତୁଛି ମୁଁ ଚିରନ୍ତନ ହେବାରୁ ତାର୍କ୍ଷ୍ୟକେତନ
ଚପଳା କି ଚିର ହୋଇଗଲା ହେ ॥୬॥

ଛଳପଟ୍ଟ ବେଶ ଧରି, ଛଦନ ଶାଳାରୁ ହରି
ନେଲା ଯେ ଦେବୀକୁ ସୁରମିତ୍ର
ଛେଦ ତାହାକୁ ମାର୍ଗଣେ, ଛନ୍ଦ୍ର କ୍ରୁଦ୍ଧ ବିଭୀଷଣେ
ଟେକାଇଲେ ଆପଣେ ତ ଛତ୍ର
ହେ ମହାବାହୁ
ଛାର ଦୁଃଖ କେତେ ଅବା ମୋର
ଛିନ୍ନାନାଥ ତୁମ୍ଭେ ସେ ଅନ୍ଧାର
ଛଦ୍ମ ବଳି ଦ୍ୱାର ଖର୍ବ ଦ୍ୱିଜେନ୍ଦ୍ର ବେଶେ ତା ସର୍ବ
ଛଡ଼ାଇଲ ପରମଈଶ୍ୱର ହେ ॥୭॥

ଜଗତେ ଜାଣନ୍ତି ଜନ, ଯାହା କଲା ଦୁଃଶାସନ
ଦ୍ରୁପଦ ଜେମାକୁ ସଭାତଳେ
ଜଳଜ ଚରଣେ ସ୍ତୁତି କରିବାରୁ ମହାସତୀ
ପ୍ରତିଷ୍ଠା ତୁଟିଲା ନାହିଁ ତଳେ
ହେ ମହାବାହୁ
ଜମା ହୋଇଥିଲେ ଯେତେ ଜନ
ଜଣେ ଦେଖିନାହିଁ ଅପଘନ
ଜୟ ଦେବେ ଜଗଦ୍ବସ୍ତ୍ର ଜଠର ପୂରିଲା ଭୟ
ନିବାରଣ ଜଳଧି ଶୟନ ହେ ॥୮॥

ଝଞ୍ଜାନିଳେ ଝାଡ଼ିଦଳ ଜଡ଼ିଗଲାପରି ଜଳ
ଝରିଗଲା ପରି ଫଟା ଘଟ୍
ଝାଙ୍କି ମନସ୍ତାପ ଭସ୍ମ ଅମଳେ ମୋ ଆୟୁ କ୍ଷୟ
ହୋଇଲାଣି ଦୀନ ଦୟାପଟ୍
ହେ ମହାବାହୁ
ଝଟେଣ ମୋ ଅଭିଳାଷ ପୂର
ଝିମିଟି ହେଲାଣି ମନ୍ୱନ୍ତର
ଝାଞ୍ଜି ଛପ୍ତ ଅଲ୍ପ ଜଳ ଜମ୍ବାଲ ବଶୁଁ ବ୍ୟାକୁଳ
ଝଷଦଶା ହୋଇଲା ମୋହର ହେ ॥୯॥

ନଗା ନାମେ ନୃପବର ନରେନ୍ଦ୍ର ନମଙ୍କି ଟେ-
କାନ୍ତ ହୋଇଥିଲେ କୃକ ସର
ନବୀନ ନୀରଦ ନନ୍ଦା ନବ ରତନ ବସନ୍ଧା
ଶ୍ରୀହସ୍ତେ ତାହାଙ୍କ କର ଧରି
ହେ ମହାବାହୁ
ନେଇଯିବା କାଳେ ତୁଳେ ତୁଳେ
ନିରେଖି ତାହାଙ୍କ ତେଜ ଭଲେ
ନାକ ନିତମ୍ବିନୀମାନେ, ନନ୍ଦନବନ ପ୍ରସୂନେ
ନାଥନାଥ ଉପହାର ଦେଲେ ହେ ॥୧୦॥

ଟେକିଛୁ ଅଦ୍ୟାପି ପୀନ, ବାହୁଯୁଗଳ ଦୀନ-
ଜନରେ ତ୍ରୁସ୍ଥା ଦେବାକୁ ଟଳ
ଟାକ ରହିଛୁ ମୁଁ ସେହି, ବାହୁବୃନ୍ଦାରକ ମହୀ-
ରୁହ ଅନାତପକୁଟି ନାଥ
ହେ ମହାବାହୁ
ଟିକିଏ କରୁଣା ଜାତ ହେଉ
ଟୋପାଏ ତହୁଁ ଏ ଟେକା ପାଉ
ଟାଳିଦେଲେ ଭବତ୍ରାସୀ, ଦୁର୍ଗତ ଦୁଃଖକୁ ଖିନ୍ଦି
ଟମକ ପିଷ୍ଟପେ ବାଜିଯାଉ ହେ ॥୧୧॥

ଠଣାଦାରପରି କାଳ, କରରେ ଧରି କରାଳ
ଦଣ୍ଡ ଜଗି ରହିଅଛି ଠଣା
ଠିକମାର୍ଗ ପରିହରି, ଠକ ଆଚରଣ କରି
ବଞ୍ଚିବା ଜନ୍ତୁର କି ଠିକଣା
ହେ ମହାବାହୁ
ଠଉରିଥିବାରୁ ଏ ଜଗତେ
ଠଉରାଇ ଗଢ଼ ହସ୍ତାହସ୍ତେ
ଠାକୁରମାନଙ୍କ ମଥାମଣି ହେ ମୁଁ କେଉଁ କଥା
କରିବି ବିସ୍ମୃତି ଦର୍ବ୍ୟ ଚଏ ହେ ॥୧୨॥

ଡାକ ଗଉରବେ ଆଣି ବନ୍ଦନାସ୍ତୁ ଜନ ପାଣି
ପଦ୍ମେ ଦେଉନାହିଁ ବରିଷ୍ଟକା
ଡ଼ୁବାଇ ନାହିଁ ମସ୍ତକ, ମନ୍ଦାକିନୀ ହ୍ରଦୋଦକ
ପୁରେ ପଶି ହରି ହରି ଡାକ
ହେ ମହାବାହୁ
ଡରୁଛି ଯେ ତୁମ୍ଭରେ ତୁମ୍ଭର
ଡାକୁଅଛି ଆହେ ବିଶ୍ୱମ୍ଭର
ଡ଼ମ୍ବର ଦୋଷକଳାପ ତୁମ୍ଭେ ପରି ବାପ ମାଫ
ନ କଲେ କି କରିବି ଇତର ହେ ॥୧୩॥

ଢାଳ କରୁଣା ପୀୟୂଷ, ଅଶେଷ ଦୋଷୀଙ୍କ ଦୋଷ
ନାଶିବାରୁ ସିନା ବାରମ୍ବାର
ଢକ୍କା ବାଜୁଛି ସଂସାର ମଧ୍ୟ ଏହି ଅନ୍ତଃସାର
ସକାଶୁଁ ମୁଁ କରୁଛି ବ୍ୟାପାର
ହେ ମହାବାହୁ
ଢାଳେ କ୍ଷିତି ଅନାଇ ନ ଗଲି
ଢମ କରୁଅଛି ଗୁଡ଼ ଠେଲି
ଢାଙ୍କି ରହିଥିବା ଘୋର, ଦାବାଗ୍ନିକି ନାଥ ମୋର
ଢୋକ ଦେବ ଅନାୟାସେ ବୋଲି ହେ ॥୧୪॥

ଅପରିମିତ ମହିମ ଅଘବିଧ୍ୱଂସନ ନାମ
ଅତ୍ୟନ୍ତ ପ୍ରବଳ ହେଲେ ହେଲେ
ଅପରାଧ ହେବା ଡ଼ରେ ଅଘରେ ଆତଙ୍କ ନରେ
ଆସକ୍ତ ନୋହିବେ ଜାଣେ ଭଲେ
ହେ ମହାବାହୁ
ଅଣୁଏ ଆସ୍ତିତ୍ୱ ନାହିଁ ମୋର
ଆଚରୁଛୁ ପାତକୀ ପ୍ରକାର
ଆପଣ ହୃଦେ ନିବାସ, କର ଯେଉଁ ଫରମାସ
କରୁଛି ତା କରୁଛି କିଙ୍କର ହୋ ॥୧୫॥

ତାରିବାକୁ ମାରିବାକୁ ତାପାହିଁ ନିବାରିବାକୁ
ତୁମ୍ଭତୁଲ୍ୟ ପ୍ରଭୁ ଆଉ ନାହିଁ
ତପନ୍ନ୍ୟସ୍ତ ଗିରିତଳେ ତପୋଧନମାନେ ଥିଲେ
ତବତତ୍ତ୍ୱ ଜାଣନ୍ତି ବା ନାହିଁ
ହେ ମହାବାହୁ
ତର୍କି ନ ପାରିବାରୁ ବିଭୂତି
ତସ୍କର ବନିଲେ ପ୍ରଜାପତି
ତନୁରୁ ତର୍ଣ୍ଣକ ଶିଶୁ, ତକ୍ଷଣେ ହେବା ସକାଶୁଁ
ତଳେ ଲୁଠି ଲଜେ କଲେ ସ୍ତୁତି ହେ ॥୧୬॥

ଥିବାରୁ ମନ୍ତ୍ରୁପେ ଗଣ୍ଡି, ପର ହେ ବୈକୁଣ୍ଠ କଣ୍ଠୀ
ରବ ତବ ପ୍ରଭାବ ମୋ ମନେ
ଥିଆ ଧନ ସିନା ଭୋଗ କର ହରିବ ଉଦ୍‌ବେଗ
ବୋଲି ଭାବୁ ଭାବୁ ଅନୁଦିନ
ହେ ମହାବାହୁ
ଥାଏ ମୋ ଭରସା ମେରୁପର
ଥାପିରେ ଧଇର୍ଯ୍ୟ ଥାଏ ପୂର
ଥରୁଅଛୁ ଏବେ ଭୟଭରେ ଅନୁକମ୍ପାମୟ
ନୟନାନ୍ତ ଛଟା ଦିଅଠାରି ହେ ॥୧୭॥

ଦିନେ ଦୟାକୃତା ବାନା ଦୃଶ୍ୟ କରାଇଲେ ସିନା
ଦୀନବନ୍ଧୁ ନାମକୁ ତୁମ୍ଭର
ଦୁଷ୍ଟ ଦୁଃଖ ଦନ୍ଦଶୂକ-ଦଷ୍ଟ ହୃଦନ୍ତର ଲୋକ
ରକ୍ଷା କାଙ୍ଗଳିକ ପୁରନ୍ଦର
ହେ ମହାବାହୁ
ଦରିଦ୍ରକୁ ଦାନ ଦେବା ଯଶ
ଦିଗନ୍ତକୁ କରଇ ଅଶ୍ଳେଷ
ଦଇବେ ଦ୍ରବିଣବନ୍ତ ଜନେ କଲେ ବଢ଼ ଦଣ୍ଡ ହେ
ଦାତାର କି ହେବ ପରିତୁଷ ॥୧୮॥

ଧରିଥିଲେ ତରୁ ରୂପ, ଧାତାପୁତ୍ର ମୁନିଶାପ,
ବଶୁଁ ଧନାଧିନାଥଙ୍କ ସୁତେ
ଧରିଛିଲ ଦିବ୍ୟତନୁ, ଧ୍ରୁବକୁ ବାଳକ ଦିନୁଁ
ଦିବ୍ୟ ଧାମ ଦେଲ ଏ ଜଗତେ
ହେ ମହାବାହୁ
ଧଡ଼ି ଶେଷୁ ସମର୍ପି ନିଜର
ଧନୀ ହେଲେ ସୁଦାମା ଭୂସୁର
ଧବଳ କରିଛୁ ଏହୁ, ଯଶ ବ୍ୟୋମେ ତୁଲେ ମହୀ
ଧର୍ମ ଧାରିବନ୍ତ ଧୁରନ୍ଧର ହେ ॥୧୯॥

ନିରର୍ଗଳ ଅଧିକାର, ନିତ୍ୟ ନିଳୟ ଯାହାର
ନାଥଙ୍କର ନାଥ ଶୁଭୁଅଛୁ
ନିସ୍ତାରଣ ହୋଇ ତାର, ନରଦେହ ବନ୍ଧବାର
ନାଶଗଲା ବୋଲାଇଣ ଛୁ ଛୁ
ହେ ମହାବାହୁ
ନ ନିଗୁଇ ଏହା ଜନମୁଖ
ନିଯୋଜନା କର ମୋର ସୁଖ
ନଳିନେ ଉଲ୍ଲାସ ଶିରି ନିଧାନ ରଚିଲା ପରି
ନବୋଦିତ ମିହିର ମୟୂଖ ହେ ॥୨୦॥

ପ୍ରପନ୍ନ ହୋଇ ମୁଁ ବାରେ ପଦପଙ୍କେ ରୁହନ୍ତଲେ
ପଡ଼ୁ ପଡ଼ୁ ପେଲ୍‌ଦେବା ନୋହୁ
ପଡ଼ିବ ସିନା ତୁମ୍ଭର ଗର୍ଭେ ଦେଇ କରଭର
ପଦାରେତ ସ୍ଥଳ ନାହିଁ ଆଉ
ହେ ମହାବାହୁ
ପରମ ସୌଭାଗ୍ୟ ମୋର ଏକା
ପର ପରମାଣୁ ନାହିଁ ଦେକା
ପଞ୍ଚଭୂତାତ୍ମକ ମାୟିକ ପ୍ରପଞ୍ଚ ମଣ୍ଡଳସାକ
ନନ୍ଦାହେବ ବୋଲି କରେ ଡକା ହେ ॥୨୧॥

ଫନ୍ଦା କର ଆପଣଙ୍କୁ, ଫଳ ଲଭ ବିନା ରଙ୍କୁ
ବଳିଲଣି ଆଚରଣେ ସିନା
ଫେଡ଼ି ଏ ମାନସ କଥା, କା ଆଗେ କହିବ ବ୍ୟଥା
ଫେଡ଼ିନେବ ଆଉ ତୁମ୍ଭ ବିନା
ହେ ମହାବାହୁ
ଫାଟିଅଛୁ ଯେବେ ମୋ କରମ
ଫନ୍ଦାଇବାକୁ ଆପଣ କ୍ଷମ
ଫୁଟିଥିଲା ପହଣ୍ଡକେ, ଯେଉଁ କୁବ୍‌ଜା ଏହି ଲୋକେ,
ନ କଲ କି ତାକୁ ରମ୍ଭା ସମ ହେ ॥୨୨॥

ବିଳମ୍ବେ ସହିବା ପୀଡ଼ା, ହେଲେହେଁ ବରହ ଚୂଡ଼ା-
ବତଂସ ମୁଁ ବଳାଅଛି ଏତେ
ବିରକତ କଣ ଅଛ, ବିଜ୍ଞାପନ, ନ କରନ୍ତ,
ବାଧା ବଳି ପଡ଼ିଲଣି ମୋତେ
ହେ ମହାବାହୁ
ବଳିଷ୍ଠ ବାହୁଯୁଗଳ ତଳେ
ବେଗେ ମୋତେ ଗ୍ରହିବା ବେଳେ,
ବଳଦେବ ବଳାହିତା ବରଜ ହେ ସିନ୍ଧୁସୁତା
ବର ବନ୍ଦେ ଅମନ୍ଦ ବିକଳେ ହେ ॥୨୩॥

ଭୟାନକ ଭବ ଅବ୍ଧି ମୁଖେ ପଡ଼ିଛନ୍ତି ମୁହିଁ
ଭବ୍ୟ କଥା ଲୋଡ଼ିଲେ କେ ଦେବ
ଭରଜିଲେ ଭଲେ ଏହା ତୁମରୁ ହେ ସ୍ୱମାନାହା
ଭଲ ଲୋଡ଼େ ନ ଲୋଡ଼ି ଲାଘବ
ହେ ମହାବାହୁ
ଭରସା ଏତକ ଆଏ ମୋର
ଭର୍ତ୍ତା ଯେଣୁ ତୁମ୍ଭେ ବଳଆର
ଭ୍ରୂଭଙ୍ଗ ମାତ୍ରକରେ, ଭସାଇଲ ରତ୍ନାକରେ
ମହୋନ୍ନତ ବହୁତ ଭୂଧର ହେ ॥୨୪॥

ମହାମହିମା ହେ ମଣି, ମଉଳ ଗର୍ଭକମଣି
ମହୋନ୍ନତ ମସ୍ତଧର ସିନା
ମନାସି ତୁମ୍ଭର ଯଶ, ପଙ୍ଗୁ ଲଙ୍ଘିଛୁ ନମିଷ
ମାତ୍ରକେ ତାହାକୁ ଶ୍ରମ ବିନା
ହେ ମହାବାହୁ
ମଜ୍ଜିଥିବା ଜଗମକୁ ଗୁଣି
ମଳ ଗୁରୁଜନସ୍ଥଙ୍କୁ ଆଣି
ମହରାଦ ଲୋକେ ଦର, ମଲ୍ଲୀମାଳା ମନୋହର
କାନ୍ତିରେ ମଣ୍ଡିଲ ଯଦୁମଣି ହେ ॥୨୫॥

ଯମଙ୍କ କଙ୍କରେ ମନ୍ତୁ, ମନ୍ତ୍ର ହେବା ଯେଉଁ ଯନ୍ତୁ-
ମାନଙ୍କୁ ଯାତନ ଦେଉଥାନ୍ତି
ଯାଗଭାଗ ଭୁଞ୍ଜିବାକୁ, ଯୋଗ୍ୟ କରାଅ ତାହାଙ୍କୁ,
ଯଶୋଦାଙ୍କ ଯବସ୍ଥ ସନ୍ତତ
ହେ ମହାବାହୁ
ଯଦୃଚ୍ଛା ବିଳାସ ବିଚକ୍ଷଣ
ଯତ୍ନକଲେ ନମିଲ ଆପଣ
ଯାବତ ଘଟରେ ବହ୍ନି-ରନ୍ତ୍ରରେ ସନ୍ତତ ରହି
କରୁଛ କି ଇଚ୍ଛା ତୁମ୍ଭେ ଜାଣ ହେ ॥୨୬॥

ରତ୍ନାକର ଯା ମନ୍ଦିର, ରମା ରମଣୀ ଯାହାର
ଯାହାର କୌସ୍ତୁଭ ମଣିବର
ରଥ ସୁତ୍ତବନତାର, ରଥଚରଣ ହତ୍ୟାର
ରୁଦ୍ରଦେବ ପଦ୍ମ ପରିବାର
ହେ ମହାବାହୁ
ରସା ଚରମରେ ପଡ଼ି ପଡ଼ି,
ରହିଛୁ ସନ୍ତତ କରଯୋଡ଼ି
ରଙ୍କ ଗୁହାର-ଭାରତୀ, ରତ୍ନକୁଣ୍ଡଳ ଆ ଶ୍ରୁତି
ରନ୍ଧ୍ର ପାଶେ ଅରେ ଯାଉ ପଡ଼ି ହେ ॥୨୭॥

ଲଗି ଗାଲେ ଏ ମକର, କୁଣ୍ଡଳ ଯୁଗଳ ମୋର
ଦୁଃଖ ଜଣାଇବେ ବୋଲି ଚିନ୍ତ
ଲଗାଇ ରସାରେ ଶିର, ଲକ୍ଷ ଲକ୍ଷ ନମସ୍କାର
ଲମ୍ଫଦେଇ କରୁଥାଏ ସ୍ତୁତି
ହେ ମହାବାହୁ
ଲବ୍ଧ ହୋଇ ଏତେ ରତ୍ନଗଣ
ଲଗିଲେ କାହିଁକି ମୋର ଋଣ
ଲଭି ଶ୍ରୁତି ପାଶେ ଘର, ଲଗଡ଼ କି ଲାଟସାର
ଲୋକରେ ଲୁଳିତ ଲୁବ୍ଧଗୁଣ ହେ ॥୨୮॥

ବଡ଼ ମୃଦୁଳ ଏ ବନମାଳା ବୋଲି ପ୍ରତିଦିନ
ବନ୍ଧୀ କରୁଥାଏ ବାଞ୍ଛାପନ
ବିଶେଷ ତାହାଙ୍କ ସଙ୍ଗ, କରି ଆସୁଥିବା ଭୃଙ୍ଗ
ପଛେ ଗୋଡ଼ାଇବାକୁ ମୋ ମନ
ହେ ମହାବାହୁ
ବରଜ ବନିକା ଯାକ, ବୁଲି
ବୁଝୁଥାଏଁ ଦେଖି ପ୍ରତି ବଲ୍ଲୀ
ବଇଜୟନ୍ତୀ ବଲ୍ଲରୀ, ବକ୍ଷରେ ଯେ ଥିଲେ ଶିରୀ
ଭ୍ରମୁରେ କି ପଡ଼ିଥିଲ ବୋଲି ହେ ॥୨୯॥

ଶର୍ବ ବେଲକୁ ବଳ, ଅଦ୍ୟାପି ନାହାନ୍ତ କଳ
କାଲେହେଁ ନଛ୍ୟା ମୁଁ ଲଭ ରଥ
ଶଶି କୁରଙ୍ଗକୁ ଶେଷ, ଧର୍ତ୍ରୀକୁ ଶଙ୍କର ବଷ
ଜନଙ୍କ ପର୍ଯ୍ୟେ ବନ୍ଧଛନ୍ତି
ହେ ମହାବାହୁ
ଶରଣ ବୋଲବା ଡାକପଣେ
ଶରଣାର୍ଥୀ ଜନ ଛତେ ଜଣେ
ଶତ୍ରୁ ହେଲେ ସେ ମୋହର ବୋଲି ତ ହୁକୁମ କର
ପ୍ରତିପାଳୁ ନାହିଁ ଏବେ କେଣେ ହେ ॥୩୦॥

ଷୋଡ଼ଶ ସହସ୍ର ବ୍ରଜ ସରୋରୁହାକ୍ଷୀ-ସମାଜ
ଯେଣୁ ସୂରସୁତା ତୀର କୁଞ୍ଜେ
ଷଡ଼ାସ୍ୟଜନକାହୃତ ସଙ୍ଗର ପ୍ରସଙ୍ଗେମତ୍ତ
ହୋଇ ପ୍ରଫୁଲ୍ଲିତ ପୁଷ୍ପ କୁଞ୍ଜେ
ହେ ମହାବାହୁ
ଷଡ଼ଙ୍ଘ୍ରି ରଚଲି ପର କେଳି
ଷଡ଼ାହୃତ ନରସନ ଶାଳୀ
ଷଡ଼ଅଙ୍ଗୀ ଶ୍ରୁତିମାନେ, ସ୍ତୁତି କଲେ ଅବସାନେ
ନ ଲଭିଲି ପାଦ ଧୂଳି ହେ ॥୩୧॥

ସବୁ ସଂସାର ସଦନୁ, ସମସ୍ତ ଜନ ବଦନୁ
ଶୁଣିଅଛୁ ସତ ଅବା ମିଛ
ସହସ୍ର ସଂଖ୍ୟକ ଅପ-ରାଧ କଲେ ହେଲେ ମାଫ
କର ପ୍ରସନ୍ନକୁ ରଖି ଅଛ
ହେ ମହାବାହୁ
ସେ ସକାଶୁଁ ମୋର ଏ ସାହସ
ସଙ୍କୋଚକୁ ମନେ ନାହିଁ ବାସ
ସରଲ ସକଲ ସୁର, ସାମନ୍ତ ମାନଙ୍କ ସାର
ସରଜ ସେବକ ସମୁଲ୍ଲାସ ହେ ॥୩୨॥

ହରହସ୍ତ ବନ୍ଧିତକ, ହଂସରଆଧିକୃତକ
ହଟି ରହୁ ନାହିଁ ମୁଁ ସମ୍ମୁଖେ
ହର୍ମ୍ୟତଳେ ଥିବାଯାକେ, ହାସ୍ୟାସ୍ପଦ ନୋହୁ ଲୋକେ
ହରନେବ କାଲ କା ମୁଖେ
ହେ ମହାବାହୁ
ହଇଗଣ ନୋହୁ କ୍ଲେଶକାଳେ
ହରେ ହରେ ବୋଲି ଅନ୍ତଃକାଳେ
ହସି ହସି ଯିବ ହରଦଶ୍ୱସୁତଙ୍କ ନଗରୀ
ସୀମା ନ ଦେଖିବ ଭୋଳେ ହେ ।୩୩।।

କ୍ଷିତକ ବନ୍ଧୁବା ଅନ୍ଧ, କ୍ଷମ ନୋହୁବାରୁ କନ୍ଧ
ନପାରନ୍ତି ଯାହାଙ୍କ ପୁରତେ
କ୍ଷମା ପୀୟୂଷ ସମୁଦ୍ର, ହେବାରୁ ମୁଁ ଅତି କ୍ଷୁଦ୍ର
ଶ୍ରୀଗୁମୁରେ ଜଣାଇଲି ଏତେ
ହେ ମହାବାହୁ
କ୍ଷମ ଅପରାଧ ଏତ ନୁହେ
କ୍ଷମାଧିପବାନାଧିବାସ ହେ
କ୍ଷମା କର ଆଜ୍ଞା ହେବ, କ୍ଷିତସୁର ବଳଦେବ
କବରବ ରାୟୁରୁ କହେ ହେ ।।୩୪।।
**

***

# ବଧିଲ୍ ଜାଣି କ୍ଷମା

## କବିସୂର୍ଯ୍ୟ ବଳଦେବରଥ

(ଊନବିଂଶ ଶତାବ୍ଦୀ)

[ରାଗ-କାମୋଦୀ]

ବାଧିଲ୍ ଜାଣି କ୍ଷମା କର ନୋହିଲେ ରମା-
ରମଣ ଦଣ୍ଡ ଦିଅ ଟାଳି
ତୁମ୍ଭଙ୍କୁ ଜଗନ୍ନାଥ ! ଆଜ ମୋ ମନୋରଥ
ଭରତ ଭବଦେବ ଗାଳି
ହେ କୃପାନିଧି !
କରୁଣା ସିନ୍ଧୁ ବୋଲି କର
କହନ୍ତି ବୁଧେ ଡର ମର
କାଳସର୍ପ ଆପଣ କବଳ କର ପ୍ରାଣ
ପବନମାନଙ୍କୁ ସବୁରି ହେ ॥୧॥

ଜଳଧି ଅନ୍ତେ ନିଜ ଘର ଦେବାଧିରାଜ
ବୁଡ଼ାଇ ଦେଇଛ ଆପଣ
ତୁମ୍ଭର ସିନା ଯେନ ଆଶ୍ଚର୍ଯ୍ୟ ନୋହେ ଆନ
ଜନର ଘରବୁଡ଼ା ପଣ
ହେ କୃପାନିଧି
ଭୁଜଙ୍ଗ ସାମ୍ୟ ଆମ୍ଭ ତୁଲେ
ବଞ୍ଚାଅ ବୋଲି ଆଜ୍ଞା ହେଲେ
ମୁଁ ନୁହେଁ ଘରବୁଡ଼ା ବଞ୍ଚାଇବାକୁ ଛୁଡ଼ା
ହୋଇଛ ବଞ୍ଚାଇବ ଭଲେ ହେ ॥୨॥

ତାହାକୁ ବୋଲି ଚଣ୍ଡୀ ଚଣ୍ଡ ଥିବାରୁ ଚଣ୍ଡୀ
ତୁମେତ ବୋଲଅ ମଣ୍ଡଳେ
ବେଦ୍ଧରେ କୁଣ୍ଡଳୀ ସେ ଆପଣ ତ ବିଶେଷେ
ଭୂଷିତ ମକର କୁଣ୍ଡଳେ
ହେ କୃପାନିଧି
ଅଦୃଶ୍ୟ ହେବାରୁ ତା ପାଦ
ତାହାକୁ ବୋଲି ଗୂଢ଼ପଦ
ଆପଣା ଚରଣ ତ ବିରଞ୍ଚିକ ଗୁପତ
କାହିଁ ତା' ଠାରୁ ତୁମ୍ଭ ଭେଦ ହେ ।।୩।।

ହେବ ବା ଅବଧାନେ ତାହାକୁ ତ୍ରିଭୁବନେ
ବୋଲନ୍ତି କାକୋଦର ନରେ
ଏ ତ୍ରିପିଷ୍ଟପ ଯାକ ମଧ୍ୟେ ଗୋଟିଏ କାକ
ନାହିଁକ ତୁମ୍ଭର ଉଦରେ
ହେ କୃପାନିଧି
ବିବରେ ସେ ଅଛି ଲମ୍ପଟ
ବିବର ବିହଙ୍ଗମ ସଙ୍ଗ
କଣ୍ଠରେ ସେ ଲମ୍ପଟ, ଆପଣ ସେତ ପଟ୍ଟ-
ପଟଳେ ହୋଇ ଅଛ ସ୍ପୃଷ୍ଟ ହେ ।।୪।।

ଭାନ ନ ଆଇ ଆଖି ଭୁଜଙ୍ଗଠାରେ ଦେଖି
ନୟନଶ୍ରବା ବୋଲି ତାକୁ
କହ କମଳାନନ ! କାହିଁଛୁ ତୁମ୍ଭ କାନ
ସର୍ପ ବୋଇଲେ ଜଳବାକୁ
ହେ କୃପାନିଧି
ଫଣୀ କାୟାକୁ ବୋଲି ଭୋଗ
ଥିବାରୁ ସେ ଦୁଇ ସଂଯୋଗ
ତାହାକୁ ବୋଲି ଭୋଗୀ, ତୁମ୍ଭେ କି ନୁହ ଭୋଗୀ
କରୁଛ ଅଛ ମହାଭୋଗ ହେ ।।୫।।

ଯେବେ ଭୁଜଙ୍ଗ ନୁହଁ କାଳୀୟଠାରେ ଦ୍ରୋହ

ଜଳ କାହିଁକ ଏତେ କର

କେତେ ନ ଥିଲେ ଗୋପେ ତୁମ୍ଭେ କାହିଁକ କୋପେ

ତାହାକୁ ଦେଲ ପ୍ରାଣେ ମାର

ହେ କୃପାନିଧି

ତାହାର ନାମେ ତୁମ୍ଭ ନାମ

ଅଦ୍ୟାପି ହୋଇଛ ଜନମ

ଯେବେ ସ୍ୱଗୋଷ୍ଠ ଦୋଷ ନଥିଲା ନାଥ କହ

ଜମାଇ ହୁଅନ୍ତା ଏ କମ ହେ ॥୬॥

ଜାଣିବାକୁ ତ ଜାଳୁ ଲବଣୀ ହାଣ୍ଡି ତଳୁ

ଧର ପାଣରେ ଦୃଢେ ଭିଡ଼ି

ଦୟା ନ କର ତଳେ ଯାମଳା ତରୁ ଡଳେ

ଜନନୀ ନେଇ ଦେଲେ ଗୁଡ଼ି

ହେ କୃପାନିଧି

ଯେତେକ ଥିଲ ଗର୍ବେ ପଡ଼ି

ଜୀର୍ଣ୍ଣ ହେବାକୁ ହେଲ ଭିଡ଼ି

ତିନି ଜଗତ ଯାକେ ଜାଣିତ ଥିବେ ଲୋକେ

ସେ ତରୁ ଯିବାର ଉପୁଡ଼ି ହେ ॥୭॥

ବ୍ରହ୍ମା ଶଙ୍କର ମୁଖ୍ୟ ଦେବଙ୍କଠାରୁ ମୋକ୍ଷ

ପ୍ରଧାନ ଧନ ଗୁଢ଼ କଲ

ପତଙ୍କୁ ନ ପୋଷି ବାରୁ କମରେ ଆଣି-

ବିଷ ପର୍‌ବ ଏ ଆଶ୍ରିଲ

ହେ କୃପାନିଧି

ଅସାବଧାନେ ଗଲେ ମିଳି

ଗୋଟିକୁ ଗିଳଇ କୁଣ୍ଡଳୀ

ଅଗଣିତ ବ୍ରହ୍ମାଣ୍ଡ ହାଣ୍ଡି ମଣ୍ଡଳୀ ଭୁଣ୍ଡ

କର ଆପଣ ଅଛ ଗିଳି ହେ ॥୮॥

ଅଦ୍ୱୈତ ବୋଲିଏ ସେ ଏକ ଅକ୍ଷର କୋଷେ
ଅଦ୍ଭୁତ ବୋଲିଅ ନପୁଣ,
କଂସ ପ୍ରମୁଖାସୁର ବିପକ୍ଷମାନଙ୍କର
ଅଦ୍ଭୁତ ହୋଇଛ ଆପଣ
ହେ କୃପାନିଧି,
ଜଗତେ ଧରି ଯେବେ ଅନ୍ଧ
ଘଟ ଗୋଟିକେ ନେଇ ଥୋଇ
ଅଛ ଯାବତ ଘଟେ ବଞ୍ଚାଅ ଯେ କପଟେ
ମୋର ହାବୁଡ଼ୁ ଯିବ କାହିଁ ହେ ॥୯॥

କେଉଁ ଶିଶୁ କାମିନୀ ସ୍ତନ୍ୟ ପାନରୁ ଘେନ
ଜୀବନ ଯାଇଛୁ ଜଗତେ,
ଶୋଷି ପୂତନା ପ୍ରାଣ ଘେନିବାର ଜୀବନ
ନାହିଁକି ତୁମ୍ଭ ଦ୍ରବ୍ୟ ଚରେ ?
ହେ କୃପାନିଧି,
ସଫଳ କଥା ମୋର ଦେଖି
ଅଛନ୍ତି ଲକ୍ଷ ଲକ୍ଷ ସାକ୍ଷୀ,
ବ୍ରଜେ ଭୁଜଙ୍ଗ ସ୍ଥୁଲ କରି ମୁଁ ନାହିଁ ବୋଲି
ଛୁଅଁ ତ ଥରେ ଚଜ୍ଜା ଆଖି ହେ ॥୧୦॥

ନୁହେଁ ଆବାସ ଘର ମାନସ ସରୋବର
ଶୁଭିଲା ନାଗେଶ୍ୱର ରବ,
କ୍ଷଣେ ନ ରହି ଧାଇଁ ଗଲଟି କାହିଁ ପାଇଁ
ଆଉ ନ ଥିଲେ କେତେଦେବ
ହେ କୃପାନିଧି
ମନ୍ତ୍ର ଜାଣିବା ଲୋକେବଣ
ହୁଅନ୍ତି ସବୁ ଆଶୀବିଷ
ମନ୍ତ୍ରାଧୀନ ତ ତୁମ୍ଭେ ବଞ୍ଚାଉ ଅଛ ଦମ୍ଭେ
ଭୁଜଙ୍ଗ ନୁହେଁ ଆଉ କସ ହେ ॥୧୧॥

କହଇ କବିସୂର୍ଯ୍ୟ ନାଥ ନୁହଁ ଅଧୈର୍ଯ୍ୟ
ଏଣିକି ମହତ ନ ଯାଉ,
ମୁଁ ତୁମ୍ଭ ପରସ୍ପର ଜାଣିଲେ କି ବିସ୍ତର
ଇତରେ ନ ଜାଣନ୍ତୁ ଆଉ,
ହେ କୃପାନିଧି
ଯେତେବେଳେ ମୋ ଅନ୍ତ ହେବ
ଏତିକି ମାତ୍ର ମୋତେ ଦେବ
ପରେତରାଟ ଦ୍ୱାର ସୀମାରୁ ପରିହାର
କରାଇ ଯହିଁ ତହିଁ ନେବ ହେ ॥୧୨॥

**

**

## କ୍ଷୀରମଧ୍ୟସିନ୍ଧୁ

### କବିସୂର୍ଯ୍ୟ ବଳଦେବ ରଥ

(ଊନବିଂଶ ଶତାବ୍ଦୀ)

[ ରାଗ-କାମ ବର୍ଦ୍ଧିନୀ ]

କ୍ଷୀର ମଧ୍ୟ ସିନ୍ଧୁ-ଜେମା ଜୀବ ବନ୍ଧୁ ତୁମ୍ଭେ ତ ଜଗତପତି
ଟେକ ସମଦୃଷ୍ଟି ପତାକାକୁ ପୁଣି ଏ କି ପକ୍ଷପାତ ରୀତି ?
ହେ ମହାପ୍ରଭୁ
କେ କି କଲା ମୁଁ ନ କଲି
କେ କି ଦେଲା ଅବା ମୁଁ ଅବା ନ ଦେବା
ଯେଣୁ ଏତେ ହରି ହେଲି ହେ ॥୧॥

ମୃଗଯୂଥପତିକି ରକ୍ଷିଲ ଯେ ନାଶି ମୃଗୟୁ-ବିଦ୍ୱେଷ-ଦାଉ
ଚରଣ ପଙ୍କଜ ସ୍ମରଣ ବିନା ସେ କିସ କରିଥିଲା ଆଉ ?
ହେ ମହାପ୍ରଭୁ

କୁମ୍ଭୀର ଗ୍ରାସନ୍ତେ ଗଜେନ୍ଦ୍ର,
ଜଣେ କହିବାର ଅନେକପା-ରାଜ
ମନେ କଲ ସିନା ମାତ୍ର ହେ ।।୨।।

ନୃପସଭା ମଧ୍ୟେ ଅସ୍ଥିର ହୁଅନ୍ତେ ଦ୍ରୁପଦ ସୁତା ଆବର
ଧ୍ୟାନରତ ଆନ କିଛି କହିବାର କାନ ଶୁଣିନାହିଁ ମୋର
ହେ ମହାପ୍ରଭୁ
ହୃତେ ଯେ ଆଅ ଜାରତେ
ଲକ୍ଷ ଦେଇଥିଲେ କାଞ୍ଚନ କେତେ କି
ପାଞ୍ଚ ପଣ୍ଡୁ ରାଜ ସୁତେ ହେ ।।୩।।

ରୂପରେ କେଳଠ ଉପରେ ପତାକା ଦୀଆଇଲ ଯେ ଭୁଜୀକ
ଯାହା ହୋଇଥିଲା ଯାହା ହେଲା ତୁମ୍ଭ ପ୍ରସାଦ ବଶୁର ଜକା
ହେ ମହାପ୍ରଭୁ
ଜଗତେ ତ ତାହା ଜଣା
ଅନ୍ଧକୁ ନେତ୍ର ମିଳିବାରୁ ହୋଇଛୁ
ଯଶ ଡିଣ୍ଡିମ ବାଜଣା ହେ ।।୪।।

ନଳ କୁବରଙ୍କ ଚରିତକୁ ବୁଧେ ବଳକୁ ଅଛନ୍ତୁ ଏବେ
ପ୍ରହ୍ଲାଦକୁ ମହା ଆହ୍ଲାଦ ଆପଣ କରିଛ ପରା ପୁରୁବେ
ହେ ମହାପ୍ରଭୁ
ମୁନିଙ୍କ ଆଶ୍ରମ ଶିଳା
ତୁମ୍ଭଙ୍କ କି ଉପକାର କରି ରୂପବତୀ
ହୋଇ ବଳସିଲ ହେ ।।୫।।

କେବଳ ସୁଦାମା ଦ୍ୱିଜ ନିଜ ଶକ୍ତି ଅନୁରୂପ ଆଚରିଲେ
ଗଳାତାଏ ଖୁଦ ନଜର ଦେବାରୁ ଫଳ ତା' ଦୃଶାଲଭିଲେ
ହେ ମହାପ୍ରଭୁ
ଆଉ କେ କି କଲା କହ
କାହା କାମକୁମ୍ଭ ପୁରିନାହିଁ ତୁମ୍ଭ
ଅହେତୁକ ଅନୁଗ୍ରହ ହେ ।।୬।।

ଅନନୁଗତ ତୋ ମନନୋହେ ବୋଲ ଆଜ୍ଞା ହେବ ପରା ମୋତେ
ନାମ ସ୍ୱସୁତର ଡାକବାରୁ ଦିବ୍ୟଧାମ ଲଭିଲ କେମନ୍ତେ
ହେ ମହାପ୍ରଭୁ
ଅଜାମିଳ ମହାସୁର
କେଉଁ ସାବଧାନ ହୋଇ ନାମ ଗାନ
କରିଥିଲେ ସେ ତୁମ୍ଭର ହେ ।।୮।।

ଜବ ରବ ରାଧ୍ୟଗୁରୁ ଯୋଡ଼ି କର ଯୁଗକୁ ଶ୍ରୀମୁଁରେ କହେ
ଭଲ ଅବା ମନ୍ଦ କରିବାକୁ ତ ମୁଁ ମୋହର ଆୟତ୍ତ ନୁହେଁ
ହେ ମହାପ୍ରଭୁ
ସବୁ ତୁମ୍ଭ ଇଚ୍ଛା ସିନା
ରଖ ବା ନରଖ ମୋହର ଗତି ତ
ପତିତପାବନ ବାନା ହେ ।।୯।।
**

**

# ସଙ୍ଗାତ ଦେଖିଲେ ରହୁଛି ଲଖି

ଯଦୁମଣି ମହାପାତ୍ର

[ରାଗ-ତୋଡ଼ି ପରଜ]

ସଙ୍ଗାତ ଦେଖିଲେ ରହୁଛି ଲଖି
ଭାଲୁଣୀ ପରାୟେ କାଳିଆ ମୁହଁକୁ
ଗୁଲୁଣୀ ପରାୟେ ଆଖିରେ ।।ପଦ।।

ପଣ୍ଡା ରଣ୍ଡା ଭାତ ଗଣ୍ଡାକ ସେ ଯେବେ ନୟନେ ଦଅଇ ଦେଖି
ଭଣ୍ଡାରୀ କୁହନ୍ତି ତାଙ୍କଠାରୁ ନେଇ ବ୍ରାହ୍ମଣେ ଦଅନ୍ତି ରୁଖିରେ ।।୧।।

ଯଗତ ଯା'ଙ୍କ ଭଜୁଥାନ୍ତି ତାହାକୁ କେଉଁ ଗୁଣ ତା'ର ଦେଖି
ପୁରତେ ନରତେ ବସିଛୁ ଯାହାର ଦ୍ୱିଗୁଣ ସାଗୁଣା ପକ୍ଷୀରେ ।।୨।।

ଧଳାକଳା ବେନି ଭାଇ ସେ ମଧ୍ୟରେ ଜଗିଛନ୍ତି ବେନି ପାଖି
ଜଗତ ଯା'କର ମନ ମୋହୁଅଛୁ ବନ ହଳଦିଆ ମୁଖୀରେ ।।୩।।

ଯଦୁମଣି ଭଣେ ନିଜଗତ ଦୀନଜନଙ୍କୁ ପାରଇ ରଖି
ନାମ ଧରିଥିବୁ ଅରେ ଯେବେ ଯମ କରଣ ନ ପାରେ ଲେଖିରେ ।।୪।।

**

**

# ମାନସ ଚକା

ଯଦୁମଣି ମହାପାତ୍ର

[ ରାଗ-ତୋଡ଼ି ପରଜ ]

ମାନସ ଚକା ତୁ ଉତ୍ତମ କରରେ
ତମ ଚକାଚଲ ମୁକୁଟ ଅଲଙ୍କାର ଚକ୍ରାନୟନ ସ୍ମୃତିସ୍ରୋତରେ ମାନସ ।।ପଦ।।

ସାବର୍ଣ୍ଣୀ ପ୍ରମୋଦ ପ୍ରବୀଣ ତରୁଣ ସୁଧାକିରଣ ମଣ୍ଡଳୀ
ଲୋଚନ ଗାଣ୍ଡ ବଦନଙ୍କ ପଦ୍ମଣ୍ଡ ପୀୟୂଷ ପ୍ରାଶନ ଥାଳୀରେ ।।୧।।

ହୀରକ ମଳକ ନୀଳମଣି ଝେକ ଝଲରେ ବଳି ଦ୍ୱନ୍ଦ୍ୱଆ
ଜଗଜ୍ଜନ ମନମୋହନ ତାରକ ଲକ୍ଷ୍ମୀରେ ବେଳ ବନ୍ଧଆ ।।୨।।

ବାର ବେଳପୁର ନାରଙ୍ଗୀ ନକର ତାରଣେ ସର୍ବସ୍ୱର୍ଣ୍ଣିଙ୍ଗୀ
ଫଗ୍ରହେ ଗରୁଆ ହେବାରୁ ଫରୁଆ ଫିଟିପଡ଼ିଥିବା ପଣରେ ।।୩।।

ନାରଙ୍ଗୀ ନକର ମଣି ଯଦୁମଣି କହେ ଚଢେ ଭଲ ଭଲ
ଦୁଗ୍ଧ ଜଳଧି ପୁତ୍ରୀ ହେମ ଗାତ୍ରୀର ଗଣ୍ଡମଣ୍ଡନ ମୁଚୁଳୀରେ ।।୪।।

**

**

# ଚକାନୟନକୁ ଚକାରେ

**ଯଦୁମଣି ମହାପାତ୍ର**

(ଊନବିଂଶ ଶତାବ୍ଦୀ)

[ରାଗ-ଏକତାଳି କାମୋଦୀ]

ଚକା ନୟନକୁ ଚକାରେ ମାନସ
ଚକା ନୟନକୁ ଚକା
ନାଳିକ ବନ୍ଧୁଜ ନାଳ ନେତ୍ର ତେଜ
କର୍ଣପାରନ୍ତ ଯେ ଫଙ୍କା ॥ ଘୋଷା ॥

ଯାହା ବକେ ଭଜେ ପଢ଼ି ଗୃଧ ଭୁଜେ
ବାହ୍ୟରେ ବଳେମେ କକା
ଦର୍ଶନ ମାତ୍ରକେ ଯେ ଅଘ ଲଙ୍ଘନ
କଲେ ମଘବାଣ କକା ॥୧॥

ପଶୁ ତୀର୍ଯ୍ୟକେ ଦୁଷ୍ଟ ପଣ ସର୍ଜକେ
ସୃଷ୍ଟ ଯେଉଁ ଷଣ୍ଢାବକା
ଯୁଗଳ ବଘାତ ସର୍ଜି ବର୍ଜି ଦେଲେ
ଅର୍ଜିତ ବୃଜିନ ଦକା ॥୨॥

ବାଳା-ବଳ ପାପୀ ରାଜା ଅଜାମିଳ
ପୁତ୍ରକୁ ଡାକିବା ଛଳା
ଗରିଷ୍ଠ ନଷ୍ଟ ଦୁରିତ ପାପିଷ୍ଠଙ୍କୁ
ଦ୍ୱାରତେ ମାଇଲେ ଧକ୍କା ॥୩॥

ନିନ୍ଦାସ୍ତୁତ ଭକ୍ତ                ଯେନ ମୁକ୍ତ ଦେବା
ଶକ୍ତ ମନ୍ତ୍ର ପଟରେ ପକା
ଚେଦରାଜପୁତ୍ର                ନଦୀଜ ପବିତ୍ର
ପାଦକୁ ଯେ କଲେ ଏକା ॥୪॥

ମହା ମଦ୍ଦମାବନ୍ତ                ବୋଲି ଯା' ନାମେ
ବ୍ରହ୍ମାଣ୍ଡେ ବାଜଇ ଡକା
ମାନକୁ ଛଡ଼ାଇ                ସେ ମାନଗୋବିନ୍ଦ
ନୃପକୁ କଲେଟି ବୋକା ॥୫॥

ଯଦୁମଣି ଭଣେ                କଲାକର୍ମ ଗୁଣେ
ରଖିବେ ନାହିଁ ବଡ଼ କା
ନୀଳାଚଳ ଚୂଳେ                ନୀଳଚକ୍ରେ ଲୁଳେ
ପାପୀ ପାବନ ଫଡ଼କା ॥୬॥

**

**

## ଓଜଶୀଳ ଭୋଜ ରାଜ

**ଯଦୁମଣି ମହାପାତ୍ର**

( ଊନବିଂଶ ଶତାବ୍ଦୀ )

[ ରାଗ-ବରାଡ଼ି ]

ଓଜଶୀଳ ଭୋଜ ରାଜ            ଜୀବନ-ହରଣେ ତେଜ
ଅର୍ପଣ କଲ କୃପଣେ ନୋହି
ଗମ୍ଭୀର ଜଳେ କୁମ୍ଭୀର            ଗଜ ଗ୍ରହଣେ କୁମ୍ଭୀର
ଜୀବରକ୍ଷା କଲ କକ୍ଷା ବନ୍ଧି
ହେ ନୀଳାଚଳ କଳାକାର !
ସତ କି ଏ ମିଛ ?
ନେଲ ଯାହା ଦେଲ ତାହା            ଏଥକୁ କିପାଇଁ ମହା-
ଦାତା ପଣେ ପତାକା ବାନ୍ଧିଛ ହେ ॥୧॥

ଦଳି ବଳିଷ୍ଠ ବାଳକ            ଅକଳିତ ବିଭୂତି କି
ବଳିତ କରରେ କରିଥିଲ
ନ ମାନିକରି ରମାକୁ            ଅକିଞ୍ଚନ ସୁଦାମାକୁ
ବିପୁଳ ସମ୍ପଦେ ମଣ୍ଡି ଦେଲ
ହେ ନୀଳାଚଳ କଳାକାର !
ସତ କି ଏ ମିଛ ?
ନେଲ ଯାହା ଦେଲ ତାହା            ଏଥକୁ କିମ୍ପାଇଁ ମହା-
ଦାତାପଣେ ପତାକା ବାନ୍ଧିଛ ହେ ॥୨॥

ଗୋକୁଳ-କଳାଧରର ଗଉରାଙ୍ଗୀଙ୍କ ମହତ୍ତ୍ୱ
ନେଇଥିବା ସକାଶରୁ କର
ଦ୍ରୁପଦ ନୃପ ନନ୍ଦନା- ମହତ୍ତ୍ୱ ହର ବେଦନା
ବନାଶନେ ହେଲ ଧନ୍ୱନ୍ତରୀ
ହେ ନୀଳାଚଳ କଳାକର !
ସତ କି ଏ ମିଛ ?
ନେଲ ଯାହା ଦେଲ ତାହା ଏଥିକୁ କିପାଇଁ ମହା-
ଦାତାପଣେ ପତାକା ବାନ୍ଧିଛ ହେ ॥୩॥

ପାତକ-ମୁକୁଟ ଶ୍ରେଣୀ ଶିରୋମଣି ଯଦୁମଣି
ମନ ଛଳେ ନେଇ ନ ପାରିବ
ଏହା ଉଦ୍ଧାରଣେ ଯେବେ ଚିତ୍ତ ଦେଇ ପାର ଲବେ
ତେବେ ସିନା ଜାଣ ବୋଲାଇବ
ହେ ନୀଳାଚଳ କଳାକର !
ସତ କି ଏ ମିଛ ?
ନେଲ ଯାହା ଦେଲ ତାହା ଏଥିକୁ କିପାଇଁ ମହା-
ଦାତାପଣେ ପତାକା ବାନ୍ଧିଛ ହେ ॥୪॥
**

**

## ଜଗବନ୍ଧୁ ଦୟାଳୁ

### ଗୋପାଳକୃଷ୍ଣ ପଟ୍ଟନାୟକ

(ଊନବିଂଶ ଶତାବ୍ଦୀ)

[ରାଗ-କାଫିରବାଣୀ]

ଜଗବନ୍ଧୁ ଦୟାଳୁ ଥାଉଁ ମନ କାହିଁପାଇଁ ଭାଳୁରେ
ରହ ଉଦ୍ଧରିବେ ଏ ଜଞ୍ଜାଳୁରେ ॥ ଘୋଷା ॥

ନିରୁପାଧି କୃପାକର ମହିମାବ୍ଧି
ନୀଳାଚଳ ସୁଧାକର
ନିଖିଳ ପ୍ରାଣି ହିତକାରୀ ତୋହର
ବଦନ କି ତାଙ୍କୁ ଘୋର ॥୧॥

ପ୍ରଭୁ ବଦାନ୍ୟେଶ ସ୍ୱରୂପେ ଅର୍ଥୀଙ୍କି
କରୁଣ ନୃପ ପ୍ରସନ୍ନେ
ଯୁବତୀଙ୍କି କାମ ସଖାକୁହିଁ ସମ
ଅଧୀଶ ସ୍ୱଭକ୍ତେ ଜନେ ॥୨॥

ଦାମୋଦର ଗଲେ ନ ମାଗି ଯା' ଦେଲେ
ଶୁଣିଛ ଥିବୁ ପୁରାଣେ
ବୃଥାହୋଇବକ ଜଣାଇବାର ରୁ
ପ୍ରଣାମ କର ଚରଣେ ॥୩॥

କୃପ ଲୁ ପଣେକେ କାଳିବ ପିଆଇ
ଦେଇଥିଲା ବିଷ ବକୀ

ଦୋଷ ଘେନ କଂସ ଦଣ୍ଡିବେ ଜନନୀ
ଗଣ୍ଡରେ ଦେଲେ ଗଣ୍ଡକ ॥୪॥

ନୃପ ମୁନି ଗୋପୀ ସୀତା ପିତଙ୍କର
ଶତ୍ରୁ ଷଷ୍ଠ ଆତ୍ମା ମୋକ୍ଷ
କରିଛି ଯା ନାମ ମାତ୍ରକେ ସେ ପ୍ରଭୁ
ହୋଇଅଛନ୍ତି ପ୍ରତ୍ୟକ୍ଷ ॥୫॥

ନାରଣ କର-ପଣପ୍ରାଣ ଘୋଷଣ
ବ୍ରହ୍ମାଣ୍ଡ ଭିତ୍ତି ଫଟାଇ
ବାହାରି ଯାଇଛି, ନ କର ସ୍ମରଣ
ଦୁଃଖୀ ହେଉ କାହିଁପାଇଁ ॥୬॥

କୁରୁ ସଭାତଳେ ଡାକିବାର ବେଳେ
ଯାହା ଦେଲେ ଦ୍ରୌପଦୀଙ୍କି
ଥାଉ ତାହା, ପୁଣି ବୋଲି ମୁଁ ତା ଋଣୀ
କହୁଅଛନ୍ତି ସେ ଡାକି ॥୭॥

ଭକ୍ତ ବନ୍ଧୁ ପଣ ଭାରତ ଯୁଦ୍ଧରେ
ଭୀଷ୍ମଠାରେ ହରାଇଲେ
ନିୟମ ଲଂଘି ରଥରୁ ଡେଇଁ ରଥ-
ଚରଣ ଧରି ଧାଇଁଲେ ॥୮॥

ଶରଣ ପଶି ବିଭୀଷଣ ଆସିଛି
ବୋଲି କହୁ ଶ୍ରୀ ରାମୁଁରେ
ଦେଲେଣି ଭେଟିବେଳକୁ ତାଙ୍କୁ ଲଙ୍କା
ପଦବୀ ଭ୍ରୂରୁ ଲୀଳାରେ ॥୯॥

ବିଧିପଦ ସୁଖ ବୋଲି ହନୁମାନ
କଲରୁ ଅନୁମୋଦନ
ବ୍ରହ୍ମା କରିବେ ରଖିଛନ୍ତି ପ୍ରଭୁ କେ
ଏପରି ଜାଣିବ ମନ ॥୧୦॥

ଧ୍ରୁବ ମନୋରଥ ପୂର୍ଣ୍ଣ କରିବାରେ
ପ୍ରତ୍ୟକ୍ଷରେ ତ ଦିଶୁଛ
ଚରଣ ପଙ୍କଜ-ରଜରେ ପଥର
ପଥରୁ ନାରୀ କରିଛ ।।୧୧।।

ପ୍ରହର ଅର୍ଦ୍ଧେକ ଧୂଳି କଲେ ଭକ୍ତ
ବଇରି ରାକ୍ଷସ ମେରୁ
ସେ ପ୍ରହ୍ଲାଦଙ୍କ ବିପଦ ଠାରୁତ
ନୁହଇ ମୋ ଖେଦ ଗରୁ ।।୧୨।।

ଭଜନ କୀର୍ତ୍ତନ ଆତ୍ମ ସମର୍ପଣ
ଦାସ୍ୟ ସଖ୍ୟାଭିବାଦନ
ସ୍ମରଣ ପୂଜା ଶ୍ରବଣ ନବରତ୍ନ
କୃଷ୍ଣ କରିଛନ୍ତି ଦାନ ।।୧୩।।

ରମା ଶୁକବଳୀ ହନୁମାନାର୍ଜ୍ଜୁନ
ଅକ୍ରୁର ଦୈତ୍ୟ ତନୁଜ
ପୃଥୁ ପରୀକ୍ଷିତ ହୋଇ ଅଲଂକୃତ
ଲଭିଛନ୍ତି ପଦକଂଜ ।।୧୪।।

ବୋଲିବୁ ମୁଁ ଧ୍ୟାନ ଭଜନ ସାଧନ
ନ ଜାଣଇ ଜନମରୁ
ଅଜାମିଳ ଯାମଳାର୍ଜ୍ଜୁନ କ ସେ
କରିଥିଲେକି ପୂର୍ବରୁ ।।୧୫।।

ଯା, ଗୁଣାର୍ଣ୍ଣବରୁ ବିନ୍ଦୁଏ ବର୍ଣ୍ଣିଲେ
ଶେଷରେ ନ ହେବ ଶେଷ
କି କହିବ ତାହା ଗୋପାଳ କୃଷ୍ଣ ତ
ନୁହଇ କାଷ୍ଠ ସଦୃଶ ।।୧୬।।

**

**

# ଅନୁସ୍ମରିତ

## ଗୋପାଳକୃଷ୍ଣ ପଟ୍ଟନାୟକ

(ଊନବିଂଶ ଶତାବ୍ଦୀ)

[ରାଗ-ହନୁମତ ତୋଡ଼ି]

ଅନୁସରିତ
ପ୍ରଭୁ ! କାଳ ଯାକ ଗଲା ସରିତ
କଣ ବିତରଣ କଲେ କେତେ ଗୁଣ।
ହୁଅନ୍ତା କରୁଣା ସରିତ ।। ଘୋଷା ।।

ଅଶରଣ ଜନ ବନ୍ଧୁପଣ ଯଶ
ସଂସାରେ ହୋଇଛୁ ଉଦିତ
ପଥର ହୋଇ ପଥରେ ପଡ଼ିଥିଲା
ଅହଲ୍ୟାକୁ ଦେଲ ତାରିତ ।।୧।।

ପାଞ୍ଚାଳୀକି ଦୁଃଶାସନ ଘଞ୍ଚାଳିଲା
ବଞ୍ଚାଇଲ ବାସ ଦେଇତ
ଘୁଞ୍ଚାଇଲ ନାହିଁ ମୋ ଭୁର କଦନ
ପୋଛାଇଲ ନେତ୍ର ବାରିତ ।।୨।।

କାନ୍ଦିଥିଲା ତଟ କାନ୍ଦିଥିଲା ନଟ
ପଲକ ପତନ ନୋହୁତ
ଛୁଡ଼ିଗଲା ମଥା ରହିଗଲା କଥା
ଡାକିଲା ମାଙ୍କେ କାନ୍ତ ତ ।।୩।।

କାଳ କଙ୍କର ଭୟରେ ଅଜାମିଳ
ପୁତ୍ରୋପସ୍ୱରରେ ଡାକିତ
ପରମପଦ ପାଇଲା ଆପଣଙ୍କ
ନାମ ମହିମା ଏପରିତ ॥୪॥

ନିରୁପାଧି କୃପା କର ବୋଲି ବିଧି
ଭବାବ୍ଧିରେ ଥାଉ କଥିତ
ମୁଁ କଳି ଦୋଷକ ? ନାଶିଛନ୍ତ ବଳୀ
ବିଷ ପିଆଉଁ ତା ଦୂରିତ ॥୫॥

ଗୋପାଳ କୃଷ୍ଣ କହେ ଜଗନ୍ମଙ୍ଗଳ
ଯାହା କରିବ ତୁମ୍ଭ ଚିତ୍ତ
ଆପଣା କୃପାଳୁ ପଣକୁ ବଳି ମୋ
ଦୁଷ୍କୃତ ନୁହଇଁ ଖଣ୍ଡିତ ॥୬॥
**

⁂*

# ନୀଳଚକ୍ରେ ହେ, ଦେଖ ଉଡ଼ୁଛି ବାନା

## ଗୌରଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ରାଗ-ଶଙ୍କରାଭରଣ-ରୂପକ ତାଳ]

ନୀଳଚକ୍ରେ ହେ, ଦେଖ ଉଡ଼ୁଛି ବାନା
ପତିତ ପାବନ ନାମଟି ଯା' ନାଁ ॥ ଘୋଷା ॥

ଆସ ଆସ ବୋଲି ପାତକୀମାନଙ୍କୁ
ଡାକୁଅଛୁ ପଣ୍ଡ ଫଗାଡ ! ଅନା
ନେତ ଧ୍ୱଜାବର ଉଡ଼ି ଫର ଫର
ଉଡ଼ାଇ ଦେଉଛି ଭବ ଯାତନା ॥୧॥

ପଞ୍ଚକୋଶୀଯାଏ ଜନେ ଦେଖାଯାଏ
ଦର୍ଶନେ କଳୁଷ ହୁଅଇ ଚୂନା
ଚଉଦ ବ୍ରହ୍ମାଣ୍ଡ କର ତାଙ୍କ ଲୀଳା
ଶଙ୍ଖନାଭି କ୍ଷେତ୍ରେ ବଚନ ସିନା ॥୨॥

ସଳଖ ସୁନ୍ଦର ବଡ଼ଦାଣ୍ଡ ଶୋଭା
ମର୍ତ୍ତ୍ୟମଣ୍ଡଳରେ କାହିଁ ଅଛି ନା
ଶରଧା ବାଲିରୁ ସ୍ୱର୍ଗଦ୍ୱାର ଯାଏଁ
ଗହଳ ଚହଳ ନୁହେଁ କଳନା ॥୩॥

ପାପ ଛଡ଼ାପୁରେ ବାସ କରିବାକୁ
ଯାହାକୁ ତାହାକୁ ନୁହଇ ମନା

ଆଗ୍ନିଣ୍ଡାଲ ବସ୍ତ୍ର ପଣ୍ଡଙ୍କେ ଭୁଞ୍ଜଇବା
ବଡ଼ ଆଚମ୍ବିତ ଲଗଇ କନା ॥୪॥

ଗୌର ଦ୍ୱିଜ ଭଣି ଶ୍ରୀକ୍ଷେତ୍ର ରହଣି
ପାଇଁ କରୁଥାଇ ସଦା ଭାବନା
ସତେ ହେବେ ସାହା ବଳଆର ବାହା
ସଂପୂର୍ଣ୍ଣ କରିବ ମନ କାମନା ॥୫॥

**

**

## ଦୀନବନ୍ଧୁ ଦୁରିତ ନାଶନ ହେ

### ଗୌରଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ ରାଗ-ସାବେରୀ ]

ଦୀନବନ୍ଧୁ ଦୁରିତ ନାଶନ ହେ
ଶ୍ରୀ ଦେବାଧି ଦେବରାଜେ
ମହାମହୋତ୍ସବ କରିବାକୁ ଦେବ-
ସ୍ନାନ ମଣ୍ଡପକୁ ବିଜେ ॥ ଘୋଷା ॥

ତେଜି ରତ୍ନସିଂହାସନ ମହାପ୍ରଭୁ !
ହେଜି ପତିତଙ୍କ ଦୁଃଖ
ନରେଶମାନେ ନିସ୍ତାର ହୋଇଯିବେ
ନିରେଖି କଳା ଶ୍ରୀମୁଖ ॥୧॥

ଦିବ୍ୟବେଶ ହୋଇ ଦୟାଳୁ ସାମନ୍ତ
ଦେଉଳରୁ ବାହାରିଲେ
ମସ୍ତକରେ ହସ୍ତ ନିବେଶି ସମସ୍ତ
ଜନମାନେ ଜୁହାରିଲେ ॥୨॥

ବାଜେ ଜୟ ଶଙ୍ଖ ମଙ୍ଗଳ ମହୁରୀ
ମର୍ଦ୍ଦଳ ବୀର କାହାଳୀ
ପୁରୁଷମାନଙ୍କ ହରିବୋଲ ଧ୍ୱନି
ନାରୀଙ୍କର ହୁଳହୁଳି ॥୩॥

କେହୁ ଧରେ ଛତ୍ର ଆଢ଼େଣୀ ବିଚିତ୍ର
କେ ଧୀରେ ଢାଳେ ଚାମର
ଆଗେ ମାଳ ମାଳ ଉଡ଼ୁଛି ିଶାଳ
ଢଳେ ଆଲଟ ରୁଚିର ॥୪॥

ଛଡ଼ ବାଡ଼ ଧରି ଡାକେ ପଢ଼ିଆରୀ
ମଣିମା ମଣିମା ବାଣୀ
ସ୍ନାନ ମଣ୍ଡପକୁ ବିଜେ କର ପ୍ରଭୁ
ତ୍ରୈଲୋକ୍ୟର ଚିନ୍ତାମଣି ॥୫॥

ଖଟଣି ସେବକ ପଥ ସମାର୍ଜନ୍ତି
ପକାନ୍ତି ପାହାଡ଼ା ଭୁଳି
ପହଣ୍ଡି ବିଜୟେ କରନ୍ତି ଗୋବିନ୍ଦ
ଧୀରେ ଧୀରେ ଢଳି ଢଳି ॥୬॥

ରତନ ମଣ୍ଡପ ସ୍ଥରୁ ଚନ୍ଦ୍ରାତପ
ଚିତ୍ର ବିଚିତ୍ରରେ ଶୋଭା
ମଦ୍ଧିରେ ପାବଚ୍ଛ ବସିଅଛି ସ୍ୱଚ୍ଛ
ଶୁଭ୍ର ବ୍ରହ୍ମକାଠ ହୀରା ॥୭॥

ଜାମ୍ବୁନଦ ହେମବାଡ଼େ ମନୋରମ
ଆଚ୍ଛଜିବା ଅପସର
ଭାଇ ଭଗ୍ନୀ ସଙ୍ଗେ ସେଜକରି ରଙ୍ଗେ
ବିଜୟେ ଜଗୁ ସୋଦର ॥୮॥

ଇନ୍ଦ୍ର, ଚନ୍ଦ୍ରଦେବ, ନୈରୃତ, ବରୁଣ
ସୁର ସିଦ୍ଧ ବିଦ୍ୟାଧରୀ

ଶ୍ରୀ ଗୁମୁଟରେ ଆସି ସେବା କରୁଛନ୍ତି
ମାନବ ମୂରତି ଧରି ॥୯॥

ଅନେକ କନକ ଘଟ ପୂର୍ଣ୍ଣ କରି
ଆକାଶର ଗଙ୍ଗା ପାଣି
ଜୟ ଜୟ ଜଗନ୍ନାଥ ବାଣୀ ଭଣି
ଶିରେ ନ ଢାଳନ୍ତି ଆଣି ॥୧୦॥

ବ୍ରହ୍ମା ଶିବଙ୍କୁ ଲଭ୍ୟ ନୋହୁଥିଲା ଯେ
ସେହୁ ସେ ଚରଣାମୃତ
ଏବେ ଇଚ୍ଛା ସୁଖେ ପାନ କରି ଲୋକେ
ହେଉଛନ୍ତି କୃତକୃତ୍ୟ ॥୧୧॥

ଅତି ସମ୍ଭ୍ରମରେ ସ୍ନାନ ମହୋତ୍ସବ
ବିଧାନକୁ ବତାଇଲେ
ଧୂପ ଦୀପ ବନ୍ଦାପନା ଦେବାର୍ଚ୍ଚନ
କର୍ପୂର ଆଳତି କଲେ ॥୧୨॥

ପଣ୍ଡା ପଶୁପାଳ ନାନା ଧଣ୍ଡାମାଳ
ଶ୍ରୀ ଅଙ୍ଗରେ ଲମ୍ବାଇଲେ
କଳା କରିବର ବେଶଧରି ହରି
ବାହୁଡ଼ା ବିଜୟେ କଲେ ॥୧୩॥

ବିଘ୍ନରାଜ ଉପାସକ ଏକ ଦ୍ୱିଜ
ଭକ୍ତ ପୂର୍ବେ ଥିଲା ଆସି
ଏ ମହାପ୍ରଭୁ ନୁହନ୍ତି ବୋଲି କ୍ରୋଧେ
ଯାଉଥିଲା ସେହୁ ରୁଷି ॥୧୪॥

ଜାଣି ତାର ମନ କରୁଣା ନିଧାନ
ଆଣି ପାଶେ ରଖାଇଲେ
ଗଜ ବଦନ ଶୋଭା ବେନି ନୟନ
ତାର ଆଗେ ଦେଖାଇଲେ ॥୧୫॥

ହେନ୍ତୁଘନଠାରୁ ଗଜ ବେଶ ହେଲେ
ଭକ୍ତବନ୍ଧୁ ଶ୍ରୀବତ୍ସାଙ୍କ
ବଡ଼ ଦେଉଳକୁ ଝୁଲି ଝୁଲି ବିଜେ
ଠାବେ ଠାବେ ରହି ରହି ॥୧୬॥

ଅନେକ ଜଳ ଅଭିଷେକ ହେବାରୁ
ଶ୍ରୀ ଅଙ୍ଗେ ଅଳସ ସହୁଁ
ଲୋକଣ୍ଡ ବେଢାର ଅଣସର ଘରେ
ଗୁପତେ ରହିଲେ ତହୁଁ ॥୧୭॥

ଭକ୍ତଙ୍କ ଆକୁଳ ଜାଣି ଅନୁକୂଳ
କଲେ କରୁଣା ନିଧାନ
ଅଣସର ଘର କରଣ ଅନ୍ତର
ଗୁଣ୍ଡିଚା ଯାତ୍ରା ବିଧାନ ॥ ୮॥

ନବ ଜଲଧର ରୂପ ମନୋହର
ଶ୍ରୀ ମୁଖମଣ୍ଡଳ ଶୋଭା
ଜଗତ ମୋହନ ବେଶଧର ହରି
ମଣୋହି କୋଠାରେ ଉଭା ॥୧୯॥

ସେ କାଳର ଶୋଭା ମଣୋହି ଉତ୍ସବ
ଦେଖିଛି ଯାହାର ଆଖି
କବି ଛାର କାହିଁ ସେ ଛବି ବର୍ଣ୍ଣିବ
ସେହି ତାର ଏକା ସାକ୍ଷୀ ॥୨୦॥

କାଲି ଶ୍ରୀ ଗୁଣ୍ଡିଚା ଯାତ୍ରା ହେବ ବୋଲି
ଆଜଠାରୁ ହୋଇ ସଜ
ନନ୍ଦିଘୋଷେ ରଥେ ବିଜୟେ କରିବେ
ବ୍ରହ୍ମାଣ୍ଡ ବେଢ଼ା ଭୁଜ ॥୨୧॥

ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ପରାକ୍ରମ
କେହି ନଜାଣନ୍ତି କିଛି

ଧର୍ମ ଅର୍ଥ କାମ ମୋକ୍ଷ ଏ ପ୍ରତ୍ୟକ୍ଷ
ଠାବେ ଠାବେ ପୁରିଅଛୁ ॥୨୨॥

କେ କହି ପାରିବ ଶ୍ରୀକ୍ଷେତ୍ର ମହିମା
ଶେଷ ମୁଖେ ନୋହେ ଶେଷ
ଦେବଙ୍କ ଦୁର୍ଲ୍ଲଭ ମର୍ତ୍ତ୍ୟରେ ବୈକୁଣ୍ଠ
ଲୀଳା ଅଶେଷ ଅଶେଷ ॥୨୩॥

ହେ ଜଗନ୍ନିବାସ ମୋର କ୍ଷେତ୍ରବାସ
କରିବାକୁ ବଡ଼ ଆଶ
ନଣି ଦସି ଏହି ଅନୁଜ୍ଞା ମାଗଇ
ଗଉରଚରଣ ଦାସ ॥୨୪॥

**

**

## କାଳିଆ କାହ୍ନୁ

### ଗୌର ଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ ରାଗ-ଖରହରପ୍ରିୟା ]

କାଳିଆ କାହ୍ନୁ ! ଆଉ ବିଳମ୍ବ କର କାହିଁକି ?
ବରଷକ ଥରେ ବିଜୟ ରଥରେ
ପଡ଼ିଛ ଚାରିବା ପାଇଁକି ॥ଘୋଷା॥

ଚଉଦ ବ୍ରହ୍ମାଣ୍ଡ ରୁଣ୍ଡ ହୋଇଛନ୍ତି
ଦର୍ଶନ କରିବା ପାଇଁକି
ଅନେକ କାଳର ଦୁଃଖ ଉପେକ୍ଷିବେ
କଳା ଶ୍ରୀ ମୁଖକୁ ଚାହିଁକି ॥୧॥

ଆଗେ ଗଜପତି ଉଭାହୋଇଛନ୍ତି
ଶିରେ ଯୋଡ଼ି କର ଦୁଇକ
ସୁନା ଶୋଧନୀରେ ମାର୍ଜନା କରନ୍ତି
ପହଣ୍ଡି ବିଜୟେ ଭୂଇଁକ । ୨।

ଛତିଶା ନିଯୋଗେ ଉଭା ହୋଇଛନ୍ତି
ଯେ ଭଜନ ହେବେ ସହିଁକ
ଆକାଶେ ଇନ୍ଦ୍ର ଅମର ବୃନ୍ଦ ପୁଷ୍ପ
ବୃଷ୍ଟି କରୁଛନ୍ତି ତହିଁକ ।।୩।।

ତାଳଧ୍ୱଜ ରଥେ ବିଜୟେ କରନ୍ତି
କାହ୍ନୁ ଦିଅ ବଡ଼ଭାଇଙ୍କି
ଦେବୀରଥ ବଡ଼ ସୁନ୍ଦର ଦିଶିବ
ଭଉଣୀ ହଳଦୀ ମୁହିଁକ ।।୪।।

ତୁମ୍ଭେ ପଛରେ ପଛକେ ଆସୁଥାଅ
କଣ ନବରଙ୍ଗ ଛଇକ
ମଥା ଦୋହଲାଇ ଝାନ୍ଦୁଆ ହଲାଇ
ଠାବେ ଠାବେ ରହୁ ରହୁକ ।।୫।।

ସେବକମାନଙ୍କ ଅଙ୍ଗ ଶ୍ରମ ଝାଳ
ଗମଗମ ପଡ଼େ ବହୁକ
ଝଙ୍କା ଝଙ୍କି କଣବାରୁ ବାଧୁଥିବ
ପଶ୍ଚ ସୁକୁମାର ଦେହୁକ ।।୬।।

ଦେବ ଦାସୀ ନାଟ ଉତ୍କୃଟ କରନ୍ତି
ତା ତା ଧ୍ରୁମିକଟ ଥେଇକ
ବାଜେ ଖୋଳ ତାଳ ମହୁରୀ ମଂଜୁଳ
ମର୍ଦ୍ଦଳ ତା ଧେଇ ଧେଇକ ।।୭।।

କା କେଉଁ ଲେତକ ବହେ ଥକଥକ
କେହୁ ନାଚେ ଗୀତ ଗାଇକ

ଜଗମୋହନଆ ଜଗତଜନଙ୍କୁ
ଲଗାଇଛୁ ପ୍ରେମ ବାଇକ ॥୮॥

କେତେ ଖାଇବ କଦଳୀ କରମଙ୍ଗା
ସରପୁଳି ଖଣ୍ଡ ଷିଣ୍ଡକ
ନାଡ଼ୁ ବଡ଼ି ଗଜା ମନୋହର ଖଜା
ଛେନାପୁର ବସା ଦହିକ ॥୯॥

କେ କେତେ ଚମାଳି ଗୀତ ଶୁଣାଇବେ
କେ କେତେ କରିବେ ଟାହକ
ଖଣ୍ଡି ଚିରଦୁଃଖ ମଣ୍ଡି ଦେବ ଆଜ
କ୍ଷେତ୍ର ବଡ଼ଦାଣ୍ଡ ସାହିକ ॥୧୦॥

ନ' ଦିନ ଅବଧି ଲକ୍ଷ୍ମୀଙ୍କି ପ୍ରବୋଧି
ଆସିଅଛୁ ପରା କହିକ
ତୁମ ହୋଇ ଆସ ଚହ୍ନିଅଛୁ ଟିକ
ଜଳପଡ଼ି ଲେମା ଦେଇକ ॥୧୧॥

ଆହେ ଚକାଡୋଳା! ବୃନ୍ଦାବନ ଲୀଳା
ମନେ ଆଉ ପଡ଼ୁ ନାହିଁକ
ଆସ ବଂଶୀଧର ! ଚରାଇବପର
ଜଗତ-ଭଗତ ଗାଈଙ୍କି ॥୧୨॥

ପାପ ଅନ୍ଧକାର ଦୂର କି କରିବ
ଆଉ ସେ ପାରିବ ତୁଇଁକ ?
ନୀଳଶୈଳ ଶିଖର ପୂର୍ଣ୍ଣଚନ୍ଦ୍ର
ଆସୁଛନ୍ତି ପରା ଉଇଁକ ॥୧୩॥

ଅପଲକ ଦୃଷ୍ଟି କରରେ ମାନସ
ଆଉ ଏ ସମୟ ପାଇ କି ?
ଗଉରଚରଣ ପଶିଲା ଶରଣ
ନନ୍ଦୀଘୋଷ ରଥ ତୁଇ କି ॥୧୪॥
**

**

# ପ୍ରାଣ ସଙ୍ଗାତରେ

## ଗୌରଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ରାଗ-ଖାବେଶ୍ୱ, ରଥଯାତ୍ରା-ବୃତ୍ତେ)

ପ୍ରାଣ ସଙ୍ଗାତରେ ! ନୟନ ପୂରାଇ ଅନା
ସରସ୍ୱର ହୋଇ କେମନ୍ତେ ଉଡ଼ଇ
ଧ୍ୱଜ ରଥେ ଧ୍ୱଜବାନା ॥ ଘୋଷା ॥

ତାଳଧ୍ୱଜ ଦେବଦଳନ ଶ୍ରୀନନ୍ଦି-
ଘୋଷ ନାମ ସୁଘଟଣା
ଭାଇଭଗ୍ନୀ ସଙ୍ଗେ ବସିଛେ କି ରଙ୍ଗେ
ନାଗର ଛଇଳ କହ୍ନା ॥୧॥

ଡାହାଣେ ଶ୍ରୀ ବଳଭଦ୍ର ଦେବରାଜ
ବଡ଼ଠାକୁର ଯାହା ନାଁ ।
ବାମେ ନନ୍ଦଘୋଷ କି ସୁନ୍ଦର ଦିଶେ
ତ୍ରିପଣ୍ଡ କାଳିଆ ସୁନା ॥୨॥

ବେନି ଭାଇ ମଧ୍ୟେ ହରିଦ୍ରା ବରଣୀ
ସୁଭଦ୍ରାଙ୍କ ଚନ୍ଦ୍ରାନନା
ଗୋକୁଳ ନଗରେ ଯିବାକୁ ଭାବରେ
ହୋଇଛନ୍ତି ଉନମନା ॥୩॥

ତ୍ରୈଲୋକ୍ୟ ମୋହନ ସ୍ୱରୁ ଅପଘନ
ଶୋଭା ନୁହଇ କଳନା

ଉପମା ଦେବାକୁ ତିନ ପୁରେ ନାହିଁ
ଯା' ସୌନ୍ଦର୍ଯ୍ୟ ଅତୁଳନା ।।୪।।

ଚାହିଁଆ ଟୁଳିଛ ଘୁଡିକ ଫୁଟିଛ
କି ମନେ କରି ଭାବନା
ପହଣ୍ଡି ବିଜେସ୍ଥେ କରୁ ଦେବଗଣସ୍ଥେ
ପୂରନ୍ତି ଭକ୍ତ କାମନା ।।୫।।

ସିଂହ ଦୁଆରୁ ସରଧା ବାଲି ଯାଏଁ
ଶ୍ରୀକ୍ଷେତ୍ରବର ପାଟଣା
ଶ୍ରୀପୁରୁଷୋତ୍ତମ ଯାହାକୁ ବୋଲନ୍ତି
କାହାକୁ ନାହିଁ ବା ଜଣା ।।୬।।

ଲକ୍ଷ୍ମୀ ଭଉଣିଆ ଜଗନ୍ନାଥଆର
କଉତୁକ ଚୂଡ଼ାମଣି
ଜନମାନଙ୍କର ଗହଳଚହଳେ
କେ କାହିଁ ହୁଅନ୍ତି ବଣା ।।୭।।

ଆଜି କି ଆନନ୍ଦେ ଉଛୁଳି ପଡ଼ୁଛି
ଗୁଣ୍ଡିଚା ପାଟ ଅଗଣା
ଗହ ଗହ ନାଦ ବାଜେ ନାନା ବାଦ୍ୟ
କେ କରିବ ତା' ବର୍ଣ୍ଣନା ।।୮।।

ଆମ୍ଭ ଠାକୁରାଣୀ ଗୃହେ ରହିଛନ୍ତି
କରି ମନ୍ଦିର ମାର୍ଜନା
ଏ କଳା ଶ୍ରୀ ମୁଖ ଦରଶନ କରି
ହରିବେ ହୃଦ ଯାତନା ।।୯।।

ଆମ୍ଭେ ସର୍ବେ ସଖୀ ହୁଳହୁଳି ଦେଇ
କରିବା ଗୋ ବନ୍ଦାପନା
ଗୌର ଦ୍ୱିଜ କହି ସବାପଛେ ରହି
ଛଡ଼ାଇବ ଆବର୍ଜନା ।।୧୦।।
**

**

# ନୀଳାଦ୍ରି ସିଂହ

## ଗୌର ଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ରାଗ—ଦ୍ୱର କାମ୍ବୋଜୀ]

ନୀଳାଦ୍ରି ସିଂହ ! କି ଲୀଳା ଲଗାଇଛ ଆଣିକି ?
ନିସ୍ତାରିବା ପାଇଁ ପତିତମାନଙ୍କୁ
ବିସ୍ତାରିଛ ବେନି ପାଣିକି ।। ଘୋଷା ।।

ଏକାକର ଯାହା ଛୁଡ଼ି ଆସିଅଛ
ମହାଲକ୍ଷ୍ମୀ ଠାକୁରାଣୀଙ୍କି
ସେ ଏବେ କି ଦୁଃଖେ ବସି ମ୍ଲାନ ମୁଖେ
ନଖେ ଚରନ୍ତି ଧରଣୀକି ।। ୧ ।।

ତୁମ୍ଭେ ନନ୍ଦୀଘୋଷ ପୃଷ୍ଠେ ବସି ହୃଷ୍ଟେ
କର କଟାକ୍ଷ ସୁହାଣୀକି
ଦର୍ଶନ ମାତ୍ରକେ ଅଶେଷ କଲ୍ମଷ-
ମାନଙ୍କୁ ପକାଅ ହାଣିକି ।। ୨ ।।

ଆଗେ ବଳଭଦ୍ର ମଧ୍ୟରେ ସୁଭଦ୍ରା
ପଛରେ ଛଇଲ ମଣିକି
ତିନିଗୁଣେ ସ୍ଥିତି ନିର୍ଗୁଣ ମୂରତି
କେ ପାରେ ସେ ତତ୍ତ୍ୱ ଜାଣିକି ।। ୩ ।।

ଜକ ଜକ କଳା ଶ୍ରୀମୁଖ ଝଟକ
ଜିଣେ ଇନ୍ଦ୍ର ନୀଳମଣିକି

କେମନ୍ତ ସୁନ୍ଦର ରଙ୍ଗିମା ଅଧର
ବନ୍ଧୂଲି କୁସୁମ କଣିକ ॥ ୪ ॥

ତ୍ରିସପ୍ତ ବ୍ରହ୍ମାଣ୍ଡ ଯାକ ଶୋଭାବୃନ୍ଦ
ସାର ସାର ଛାଣିଛାଣିକ
ବସ୍ତୁର ବସ୍ତୁଣ ସ୍ତର ବଦନ ଏ
ରୂପ ଅଛୁ କଣମାଣିକ ॥ ୫ ॥

ରଥର ଦଉଡ଼ି ଲମ୍ବେ ଧାଡ଼ି ଧାଡ଼ି
କବା ସେ ବାସୁକୀ ଫଣୀକ
ନର ସ୍ୱରୂପେ ଅମର ଗଣ ମିଶି
ସଧୀରେ ଧରନ୍ତ ଟାଣି କ ॥ ୬ ॥

ଚଣ୍ଡ କଟ କଟ ମାଳେନ୍ଦ୍ରି ପ୍ରକଟ
ଘଣ୍ଟ ନାଦ ଟିଣିଟିଣିକ
ବାଜେ ଦୁମୁ ଦୁମୁ ଦୁନ୍ଦୁଭି ମର୍ଦ୍ଦଳ
ବେଣୁ ବୀଣା ଅନାବେଣିକ ॥ ୭ ॥

ଛଣ ସ୍ତମ୍ଭର କଳସ ମନୋହର
ବିଚଣ ରଥ ସାଜେଣୀକ
କର ଘୁଂ ଘୁଂ ଚଲେ ନନ୍ଦିଘୋଷ
କମ୍ପାଇ ଦଏ ଧରଣୀକ ॥ ୮ ॥

ଗର୍ଜୁ ନାହିଁ ତର୍କୁ ଅଛୁ ସେ ପ୍ରକୋପେ
ବର୍ଜୁଛୁ ପାତକ ଶ୍ରେଣୀକ
ପଲା ରୁ ଅଠର ନଳାଠାରୁ ବଳ
ନ ଆସିବୁ ଆଉ ଏଣିକ ॥ ୯ ॥

ଜଗତ କରତା ଚଉବର୍ଗ ଦାତା
ଫିଟାଇ ଐଶ୍ୱର୍ଯ୍ୟ ଖଣିକ
ପ୍ରେମ ଚନ୍ତାମଣି ଫପନ୍ତିକ ଆଣି
ଦାଣ୍ଡରେ ଦେଇଛୁ ବୃଣିକ ॥ ୧୦ ॥

ଦରଶନେ ଆଜ ଆନନ୍ଦ ଉଛୁଳେ
　　　　　　　　　କେହ୍ନୁ ଘୁଷେ ଜୟ ବାଣୀକ
ଯାହା ମନେ ଯାହା ଅଛଇ ସେ ତାହା
　　　　　　　　　ଜଣାଏଟି ଚନ୍ଦ୍ରାମଣିଙ୍କି ॥ ୧୧ ॥

ଗଉର ଚରଣ ବୋଲେ ବାପରାଣ
　　　　　　　　　ପକାଉଛୁ ଆଥ ଜାଣିକ
ମୋ ମରଣ ବେଳା ଜାଣି ଚକାଡୋଳା !
　　　　　　　　　ଦେଖାଇବ ଏବ୍ଦୁ ଠାଣି କ ॥ ୧୨ ॥

**

* *

## କଳା ସିଂହ ! କାହିଁକି ଅଇଲୁରେ

### ଗୌର ଚରଣ ଅଧିକାରୀ

( ଊନବିଂଶ ଶତାବ୍ଦୀ)

[ ରାଗ-କାମୋଦୀ ]

କଳାସିଂହ ! କାହିଁକ ଅଇଲୁରେ
　　　　　　　　　ଶ୍ରୀ ନୀଳ କନ୍ଦର ଛାଡ଼ି
ଭାଇ ଭଗ୍ନୀ ସଙ୍ଗେ ଯେକ କର ରଙ୍ଗେ
　　　　　　　　　ରହୁଥିଲୁ ସୁଣ୍ଡି ଘ ବାଢ଼ି ॥ ଘୋଷା ॥

ହଜାରେ ସୁଆର ରାନ୍ଧ ପରଶିଲେ
　　　　　　　　　ତେବେ ନ ପୂରଇ ପେଟ
ଏଠାରେ ସପୁରୀ ପଣସ କଦଳୀ
　　　　　　　　　ଖାଇ ହୋଇଯିବୁ ମୋଟ ॥ ୧ ॥

ଅରଗଲା ଗଳା ଯିବାକୁ ତେଣିକ
ବ୍ରାହ୍ମଣଙ୍କୁ ଆଜ୍ଞା ନାହିଁ
ଏବେ ନାନା ଜାତି ଯୁବତୀ ଆସିଣ
ଲଦୁଛନ୍ତି ଖଡୁବାହି ॥ ୨ ॥

ଇନ୍ଦ୍ର ଚନ୍ଦ୍ର ଦେବବୃନ୍ଦ ଆଜ୍ଞାକାରୀ
ବ୍ରହ୍ମା ପଢୁଥାନ୍ତି ବେଦ
ସେ ସୁଖ ନୋହିଲା ବୋଲି ଶୁଣୁଛୁ କି
ଡଗ ଡମାଲିଆ ପଦ ॥ ୩ ॥

ବଡ ଦେଉଳରେ ବଡ ଧଣ୍ଟାମାଳ
ବଡ ରଙ୍ଗ ଧଡ଼ି ପିନ୍ଧା
ଏବେ ଭାଇ ଭଗ୍ନୀ ତିନି ଜଣ ଯା'ଙ୍କ
ଖମ୍ବରେ ହୋଇଛନ୍ତି ବନ୍ଧା ॥ ୪ ॥

କର୍ପୂର ଚନ୍ଦନ ଚୁଆ ଚନ୍ଦ୍ରସମ
ନ ରୁଚିଲା ସେ ସୁବାସ
ଏବେ ଶ୍ରୀ ଅଙ୍ଗରେ ଅଙ୍ଗୁଳେ ବହିଲେ
ଲାଗିଛି ହଳଦୀ କଷ ॥ ୫ ॥

ଯଡ଼ି ବଡ଼ି ଗଜା ଖଣ୍ଡଖଇ ଖଜା
ଏ ତୋତେ ନୋହିଲା ମିଠା
ମାଉସୀ ଦୁଆରେ ଭକ୍ତ ଯେବାଇଲୁ
ପାଉଁଶିଆ ପୋଡ଼ ପିଠା ॥ ୬ ॥

ଘର ଘରଣୀଙ୍କ ନ'ଦାନକୁ ପରା
କରି ଆସିଅଛୁ କଣ୍ଟ
ସେ କଥା ପାଶୋରି ମୁଲଉଛୁ ଗାଳି
ତୁ ବଡ଼ ବିଷମ ଖଣ୍ଟ ॥ ୭ ॥

ହେରା ଦିନ ପରା ରଥ ଭାଙ୍ଗିଗଲେ
ଠାକୁରାଣୀ ହୋଇ କ୍ରୋଧ
ତେବେ ପୁଣି ତୋର ଚେତା ପଶୁ ନାହିଁ
ଯାଉଛୁ ଗଣ୍ଡିମ ନଦ ॥ ୮ ॥

ଆନ ନାରୀ ପଣ ନୁହନ୍ତ କମଳା
ଯେ ଯେ ନ ସହନ୍ତ ଝାନ୍ଧ
ଘଡ଼ିଏ ଉଛୁର ହେଲେ ଘଉଡ଼ିବେ
ଘରେ ପୂରାଇବେ ନାହିଁ ॥ ୯ ॥

ସେମାନ କହିବୁ ଗୋକୁଳ ନାରୀଙ୍କୁ
ଠାରିବୁ ନୟନ କୋଣେ
ବଂଶୀ ବଜାଇବୁ ମନ ମଜାଇବୁ
ଖୋଜାଇବୁ କୁଞ୍ଜ ବଣେ ॥ ୧୦ ॥

ନିଶ୍ଚୟେ ତୋହର ମନେ ପଡ଼ିଗଲା
ବୃନ୍ଦାବନେ ଗାଈ ରଖା
ଦ୍ୱାଦଶ ବନରେ ବିହାର କରିବୁ
ସଙ୍ଗେ ଧେନୁ ଗୋପ ସଖା ॥ ୧୧ ॥

ଐଶ୍ୱର୍ଯ୍ୟ ସଂପତ୍ତି ନୀଳାଦ୍ରିରେ ସ୍ଥିତ
ବ୍ରଜେ ଏକା ପ୍ରେମ ଭାବ
ଜଣାଗଲା ତେବେ ଉଭୟ ପକ୍ଷରେ
ପ୍ରେମ ସେ ପରମ ଭାବ ॥ ୧୨ ॥

ଜଣା ଅଛି ମୋତେ ପୂର୍ବରୁ ତୋହର
ସ୍ୱଭାବ ଗୋଟିଏ ଅଛି
ଠେକ ଲୋକ ଠେକ ଟିକିଏ ନରଖୁ
ଦାନରେ ଦୟା ଶ୍ରୀବଚ୍ଛି ॥ ୧୩ ॥

ହରଙ୍କୁ ମୋହିନୀ ରୂପେ ଭୁଲାଇଲୁ
ବ୍ରହ୍ମାଙ୍କୁ ବସ୍ତ୍ରାହରଣେ
ସୁନାଗିର ଗର୍ବ ଚୂନା କରିଦେଲୁ
ଗୋ ମଣ୍ଡ-ଗିରି ଧାରଣେ ॥ ୧୪ ॥

ଦନ୍ତ କ୍ଷତ ଚୂତ ଶବରୁଣୀ ଦେଲା
ଖାଇଲୁ ତାର ଅଇଣ୍ଠା

ଶୋଇଲା ଶେଯରେ ଶ୍ରୀବତ୍ସ ବ୍ରାହ୍ମଣ
ମାଇଲା ପଦ୍ମ ଗୋଇଠା ॥ ୧୫ ॥

ଭଲ ଭଲ ଲୋକ ଦେଉଳକୁ ଗଲେ
ପଣ୍ଡା ମାରନ୍ତି ଘଉଡ଼ି
ଏବେ ନୀଚ ଲୋକେ ଦରଶନ କରି
ଝିଙ୍କନ୍ତି ରଥ ଦଉଡ଼ି ॥ ୧୬ ॥

ନୋହିଲେ କାହିଁକି ଭକତ ବତ୍ସଳ
ନାମ ଧୀନ ଜନ ବନ୍ଧୁ
ପତିତମାନଙ୍କୁ ଦରଶନ ଦେଇ
ଉଦ୍ଧରିଲୁ ଭବସିନ୍ଧୁ ॥ ୧୭ ॥

ନାନା ନଟକୂଟ ନବରଙ୍ଗ ଜାଣୁ
ଛଇଲା ନାଗର ହରି
ଇତର ଲୋକଙ୍କ ମହତ ସମ୍ଭାଳୁ
ଆପଣା ମହତ ସାରି ॥ ୧୮ ॥

ବଡ଼ ଲୋକ ପୁଅ ବୋଲି ସିନା ତୋତେ
କେହି ନ ବୋଲନ୍ତି କିଛି
ଭଉଣୀକି ଘେନି ଦାଣ୍ଡେ ବୁଲିବାର
କାହା ଘରେ ଦେଖାଅଛି ॥ ୧୯ ॥

ଗଉର ଚରଣ ବୋଲେ ପ୍ରଭୁପଣ
ଜଣାଗଲା ଏବେ ଆସ
ପତିତପାବନ ପତାକା ଉଡ଼ାଇ
ରତ୍ନ ସିଂହାସନେ ବସ ॥ ୨୦ ॥

**

**

# ବଡ଼ ଠାକୁରଙ୍କ

## ଗୌର ଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ରାଗ—ହଂସ ଧ୍ୱନି

ବଡ଼ ଠାକୁରଙ୍କ ସହୋଦର ହେ
　　　　　　　　　ମୋ ଜଣାଣେ ଶୁଣ କାଳ
ବଡ଼ଦାଣ୍ଡେ ବଡ଼ ଭୁଜକୁ ବିସ୍ତାରି
　　　　　　　　　ବଡ଼ ଦେଉଳକୁ ଗ୍ଭଲ ॥ ଘୋଷା ॥

ବଡ଼ ପଣେ ବଡ଼ ଛଇକ ଦେଖାଅ
　　　　　　　　　ପିନ୍ଧି ବଡ଼ ଧଣ୍ଡାମାଳ
ବଡ଼ ରଜା କର ଯୋଡ଼ି ଡାକୁଛନ୍ତି
　　　　　　　　　ତାଙ୍କ ଗୁହାରି ନ ଟାଳ ॥ ୧ ॥

ବଡ଼ପଣ୍ଡା ବଡ଼ ସୁଆର ସେବକ
　　　　　　　　　କଲେଣି ବଡ଼ ପଖାଳ
ବଡ଼ ଠାକୁରାଣୀ ରୋଷ ହେବେ ବଡ଼
　　　　　　　　　ଏ କଥା ମନରେ ଭାଳ ॥ ୨ ॥

ବଡ଼ ପାବଚ୍ଛୁଆ ବଡ଼ ଅଲସୁଆ
　　　　　　　　　ପଣ ଗ୍ଭଡ଼ ଚକ୍ରକାଳ
ବଡ଼ ନୟନଙ୍କୁ କିବା ଅଗୋଚର
　　　　　　　　　ବଡ଼ ଦୁଃଖୀଙ୍କ ଜଂଜାଳ ॥ ୩ ॥

ବଡ଼ ସିଂହାରବେଶକୁ ଦରଶନ
　　　　　　　　　କରିବାକୁ ମୋ କଟାଳ
ବଡ଼ ଅରକ୍ଷିତ ଗଉର ଚରଣ
　　　　　　　　　ଭଜେ ଶ୍ୟାମ କାମପାଳ ॥ ୪ ॥

**

**

# ଅହେ ବିଶ୍ୱମ୍ଭର

## ଗୌର ଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ରାଗ—ଖରହରପ୍ରିୟା]

ଆହେ ବିଶ୍ୱମ୍ଭର
ମୋର ଏ ଦୁରନ୍ତ ଦଶା ହର ॥ ଘୋଷା ॥

ଏ ଘୋର ସଂସାର ଦିଶୁଛି ଅନ୍ଧାର
ଅସ୍ଥିର ହେଉଛି ସଦା ପ୍ରାଣ
କୃପାସିନ୍ଧୁ ହରି ! ଶ୍ରୀଚରଣ ତରି
ଦାନରେ ଦାସକୁ କର ତ୍ରାଣ ॥ ୧ ॥

ହିଂସା କୁଟ ଦ୍ୱେଷ ଆଦି ନାନା ଦୋଷ
ଅଶେଷ କଳୁଷ ମୁଁ ବହୁଛି
ମାୟା ମୋହ ଦ୍ୱନ୍ଦେ ପଡ଼ି ନିରାନନ୍ଦେ
କଳବଳ ଏକା ହେଉଅଛି ॥ ୨ ॥

ଅବଳର ବଳ ଦୁଃଖୀର ସମ୍ବଳ
ଶରଣ ବତ୍ସଳ ଭବତ୍ରାହି
ମହାବାହୁ ମହାମହିମାବନ୍ତ ହେ !
ସଦା ସଙ୍କଟରୁ କର ତ୍ରାହି ॥ ୩ ॥

ପ୍ରଭୁ ଆଦି ମୂଳ ! ତୁମେ ଅନୁକୂଳ
ହୁଅ ଯା'ରେ ତାର କିବା ଭୟ

ଦୁର୍ବଳାକୁ ଦାରୁ କର ମହାମେରୁ !
ଶୁଣିଛୁ ପୁରାଣ ଲୀଳାମୃତ ॥ ୪ ॥

ନୀଳାଦ୍ରି ସାମନ୍ତ ! କେତେ ହନ୍ତସନ୍ତ
ହେବ ଆଉ ଏ କଂକାଳେ ପଡ଼ି
ବାରେ ଅନୁକମ୍ପା ନ ହେଉଛୁ କମ୍ପା
ଚଥ ମଣୁଅଛୁ ଖୋଲା ଘଡ଼ି ॥ ୫ ॥

ଏତେ ପ୍ରଭୁ ହୋଇ ନ ଶୁଣ ଗୋସାଇଁ
ଭୃତ୍ୟର ଗୁହାରି ଡାକ ଥରେ
ସବୁ ଦୁର୍ବାସନା ଅନାର୍ଯ୍ୟ ଭାବନା
ପ୍ରବଳ ହେଉଛି ହୃଦୟରେ ॥ ୬ ॥

ଯାମଳା ଭଞ୍ଜନ ଗରବ ଗଞ୍ଜନ
ମାନସ ରଞ୍ଜନ ବ୍ରଜବନ୍ଧୁ
ଅଭୟ ଦାୟକ ଆଶ୍ରିତ ନାୟକ
ଇଷ୍ଟମୟ ହର କୃପାସିନ୍ଧୁ ॥ ୭ ॥

ସ୍ୱାମୀ ଜନାର୍ଦ୍ଦନ ଶ୍ରୀମଧୁସୂଦନ
ଆଶା ପୂର୍ଣ୍ଣ କର ଦଇତାରି
ଗଉର ଚରଣ ଦୁଷ୍ଟ ଆଚରଣ
ଧ୍ୱଂସି ଦିଅ ପାପ-ତାପ ହରି ॥ ୮ ॥

**

**

# ଦୀନବନ୍ଧୁ ଦୁରିତ ନାଶନ ହେ

## ଗୌର ଚରଣ ଅଧିକାରୀ

( ଊନବିଂଶ ଶତାବ୍ଦୀ )

[ ରାଗ-ସାବେରି ]

ଦୀନବନ୍ଧୁ ଦୁରିତ ନାଶନ ହେ
ଶ୍ରୀ ଦେବାଧି ଦେବରାଜେ
ଅରକ୍ଷ ରକ୍ଷଣ ବୋଲି ପରା ତୁମ୍ଭ
ମହିମା ତ୍ରିଭୁବନେ ବାଜେ ॥ ଘୋଷା ॥

କର ପଦ୍ମ ଯୋଡ଼ି ସ୍ତୁତି କରୁଥାନ୍ତି
ବ୍ରହ୍ମାଦି ଦେବ ସମାଜେ
ତେତେଡ଼େ ବଡପଣ କେ ଘେନି ଗଲାକ
ଫେଡ଼ି କହୁନାହଁ ଲାଜେ ॥ ୧ ॥

ଯେଉଁ ଶ୍ରୀ ଭୁଜକୁ ରଥାଙ୍ଗ କମଳ
ଶଙ୍ଖ ଗଦାବର ସାଜେ
ସେ ଅସ୍ତ୍ର ଛଡ଼ାଇ କେ ଘେନି ଗଲାକ
ତୁଚ୍ଛ ହାତେ ଅଛ ବ୍ୟାଜେ ॥ ୨ ॥

ଯେବଣ ଚନ୍ଦନ ଅର୍ଗଲୀ ଗଳବା
ପାଇଁ ମନା ଦେବରାଜେ
ଏମନ୍ତ ଶ୍ରୀରତ୍ନ ସିଂହାସନ ଅଧି-
କାରୀ କେ ଦେଲା କ କାର୍ଯ୍ୟେ ॥ ୩ ॥

ବଡ ଠାକୁରଙ୍କୁ ସାନ କରିବାକୁ
କ୍ଷମ କେ ଶ୍ରୀକ୍ଷେତ୍ର ରାଜ୍ୟେ

କଥା ନ କହୁଛ ମଉନେ ରହୁଛ
ଦେଖି ମୁଁ ହୁଏ ଥକା ଯେ ।। ୪ ।।

କେତେ ସୁପ୍ରସନ୍ନେ ଧାଇଁ ଧାଇଁ ଯଣେ
କାଳା ଶ୍ରୀମୁଖ ବାରକେ
ଗୌର ଦ୍ୱିଜଠାରେ କେବଳ ଅହଲ୍ୟା
ଆଜ୍ଞା ହେଉ ଦେବରାଜେ ।। ୫ ।।

**

* *

## ଲୀଳାମୟ

### ଗୌର ଚରଣ ଅଧିକାରୀ

( ଊନବିଂଶ ଶତାବ୍ଦୀ )

[ ରାଗ-ଖମ୍ବାବତୀ ]

ଲୀଳାମୟ ! ଏ ଲୀଳା ତୁମ୍ଭର ହେ
କେମନ୍ତେ ବୁଝିବ ମୁହିଁ
ହର ବ୍ରହ୍ମାଙ୍କୁ ଯେ ଅଟ ଅଗୋଚର
ଅନନ୍ତ ଅନ୍ତ ନ ପାଇ ।। ଘୋଷା ।।

ଇନ୍ଦ୍ର ବରୁଣ କୁବେର ଆଦି ଯେତେ
ଛନ୍ତି ଦଶଦିଗ ପାଳେ
ବାଣୀ, ରମା, ଉମା ତୁମ୍ଭର ମହିମା
ଜାଣି ନ ପାରିଲେ ତାଳେ ।। ୧ ।।

କୋଟି କୋଟି ଋଷି କଳ୍ପେ କଳ୍ପେ ବସି
ଧ୍ୟାନେ ହେଉଛନ୍ତି ବଣା

ମୁଁ ଘୃଣ୍ୟ ଅଧମ କି କଣ ବୁଝିବ
ତୁମ୍ଭ ମାୟା ଚୂଡ଼ାମଣି ॥ ୨ ॥

କାହାକୁ କେତେ କି ନ କରୁଛ ହରି
ଦସ୍ୟୁଙ୍କୁ ସାମନ୍ତ ମଣି ।
ମାରିବା ତାରିବା ଦୁଇ କଥା ଭଲ
ବହୁଛ ସାରଙ୍ଗ ପାଣି ॥ ୩ ॥

ଶତ୍ରୁ ମିତ୍ରଙ୍କୁ ଏକଗତି ଦିଅ
ଏତ ବଡ଼ ଆଚମ୍ବିତ
କାହାକୁ ଅଚଳା ବିଭୂତି ସମର୍ପି
କାହାକୁ କର ଅର୍କିତ ॥ ୪ ॥

କେଉଁ ଗୁଣ ବା ତୁମ୍ଭର ବାହୁନିବ
ଆହେ ମହାଭୁଜ ଟେକା
କେ ପିନ୍ଧି ବୁଲୁଛି ଖଣ୍ଡିଆ ଦରଭି
କାହା ମୁଣ୍ଡେ ସୁନା ଠେକା ॥ ୫ ॥

କେହୁ ଦାନା ପାଇଁ ହୁଏ ହାଇଁ ହାଇଁ
କେ ଭୁଞ୍ଜଇ ଶାଳି ଅନ୍ନ
ଖଗ ମଣି ଶିଷ୍ୟ ରଙ୍ଗ ଗୌର ଦୁଃଖ
ନ ଶୁଣି ମୁଦିଛ କର୍ଣ୍ଣ ॥ ୬ ॥

**

✳✳

# ଦୁଃଖନାଶନ

ଗୌର ଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

[ରାଗ—ପ୍ରଭାତୀ]

ଦୁଃଖନାଶନ ଗରୁଡ଼ାସନ ହରି !
ଦୁଃଖ ଜଣାଇବି କାହାକୁ
ଦୀନନାଥ ଥାଉଁ ଅନାଥ ହୋଇଛୁ
ଏ କଥା କହି ଚଉବାହାକୁ ॥ ଘୋଷା ॥

ଚନ୍ଦ୍ରା-ନାବ ପରେ ବସାଇ କରି
ଠେଲିଦେଲ ଯେଣୁ ଯାଉଛୁ ସରି
ରଖ ରଖ ବୋଲି କାହାକୁ ଡାକିବି
ଶ୍ରବଣ ତ କଲ ଲୁହାକୁ ॥ ୧ ॥

ସୁଦାମା-ଦାରିଦ୍ର୍ୟ ଭଞ୍ଜନ କାରି
ରଖିଛ ପାଣ୍ଡବେ କୁରୁ ସଂହାରି
ଜଳର ମଧ୍ୟରେ ଗଜକୁ ରଖିଲ
ଛେଦ ପକାଇଲ ଗ୍ରାହାକୁ ॥ ୨ ॥

ଅଜାମିଳ ନାମେ ଯେ ମହାପାପୀ
ତରିଗଲା ପୁତ୍ର ନାମକୁ ଜପି
ନାଭେକ ମାରିଲ ଶ୍ରୀବସ୍ତ ବ୍ରାହ୍ମଣ
ହୃଦରେ ବହିଲ ତାହାକୁ ॥ ୩ ॥

ବନର ହରିଣୀ ଚନ୍ଦ୍ରବା ମାନେ
ଘନେ କୃପା କଲ ପରା ସାକ୍ଷାତେ

ଅଷିତ ଡାକକୁ ନ ଶୁଣୁଛ ଲଜ୍ଜା
ନୋହୁବ ନ ଲକ୍ଷ୍ମୀ ନାହାକୁ ॥ ୪ ॥

ଯେଉଁ ନାମ ଧରି ପବନ ସୁତ
ତେଣେ ସମୁଦ୍ର ଆଣିଲା ସଙ୍କେତ
ଗଉର ଚରଣ ସେ ପାଦେ ଶରଣ
ହର ବ୍ରହ୍ମା ଚନ୍ଦ୍ରେ ଯାହାକୁ ॥ ୫ ॥

**

**

# ଶ୍ରୀପତି ମୋ ବିପତ୍ତିକି

## ବାଙ୍କା ଦାସ

(ଊନବିଂଶ ଶତାବ୍ଦୀ)

ଶ୍ରୀପତି ମୋ ବିପତ୍ତିକି ହାରିବାକି ପାରିବ ହେ
ଆଶ୍ରିତ କଲ୍ଲ ଜନକୁ ତାରିବ କି ମାରିବ ହେ ॥୦॥

ଭଲେ ତାରିବାରୁ ଜାଣି କରିଛୁ ଭରସା ଶିର
ହରିଣୀ ତାରିଛ ବୋଲି
ଅରିବାକି କରିବ ହେ ॥୧॥

ଦ ରିଦ୍ର ଦୋଷ ମୋହରି ହରି ନପାରିଲେ ହରି
ଦରିଦ୍ର ବାଙ୍କା ବୋଲଇ
ଗରିବ କି କରିବ ହେ ॥୨॥

**

**

# ଦୀନବାନ୍ଧବ ହେ

## ବାଙ୍କା ଦାସ

(ଊନବିଂଶ ଶତାବ୍ଦୀ)

[ ରାଗ-ମାଳବଶ୍ରୀ ]

ଦୀନ ବାନ୍ଧବ ହେ ! କେକ ଦେଲ ମୁଁ ନ ଦେଲି ?
ଠେକିଅଛ କର          ଡାକିଲି ପ୍ରକାର
ଠକ ଦେଲ ମୁଁ କି କଲି ॥ ଘୋଷା ॥

ତାରିଛ କସାକ          ମାରି ତା ଅଶକ
ସ୍ମରି ସେ ହେବାରୁ ଘାଲି
ବାଜାବଜା ପାପୀ          ରାଜା ଅଜାମିଳ
ସଜାରୁ ହୋଇଲା ଖାଲି ॥ ୧ ॥

ଡରି ମରୁଥିଲା          ହରି ଘେନଗଲା
ତରିଗଲା ହରି ବୋଲି
ଗଞ୍ଜାଇ ଭୁଞ୍ଜାଇ          ଗଞ୍ଜାଇ ମାରୁଛ
କେଉଁ ଅପରାଧ କଲି ॥ ୨ ॥

ଅନ୍ଧ ବିପ୍ରକୁ          ଚକ୍ଷୁଦାନ ଦେଲ ତା-
ପୁଅ ସଙ୍ଗେ ଖେଳ ବାଲି
ଅଧମ ଦାସକୁ          ଉଦ୍ଧରିଲ ନାହିଁ
ବଧ ହେଲି ବୁଲି ବୁଲି ॥ ୩ ॥

ପିଲାଟି ଦିନରୁ          ଡକା ପକାଉଛୁ
ଫକା ହୁଅନ୍ତାଣି ନାଲି
ବଙ୍କା ବୋଲେ ଟକା-          ନେଣ ନ ଜାଣଇଁ
ଏଡ଼େ ଡକାଇତ ବୋଲି ॥ ୪ ॥

**

**

# ଆହେ ପ୍ରଭୁ ଜଗନ୍ନାଥ

## ରଘୁନାଥ ଦ୍ୱିଜ

(ଊନବଂଶ ଶତାବ୍ଦୀ)

[ ରାଗ-ଖରହରପ୍ରିୟା ]

ଆହେ ପ୍ରଭୁ ଜଗନ୍ନାଥ
ବାରେ ଫେଡ଼ ମୋ ଆରତ
ଦୁଃଖ ଦେଖି ମହାପ୍ରଭୁ
କର୍ଣ୍ଣେ ଦେଇଛ କି ହସ୍ତ ॥ଘୋଷା॥

ଗଜ ଡାକିଲା ଜଳରେ
ତାହାଂ ଶୁଣିଲ କର୍ଣ୍ଣରେ
ଚକ୍ରକୁ ପେଶିଲ ଖରେ
ଗ୍ରାହ ପ୍ରାଣ କଲ ହତ ॥ ୧ ॥

କୁରୁପତି ସଭାତଳେ
ଦ୍ରୌପଦୀ ଆତଙ୍କ କାଳେ
କୋଟି ବସ୍ତ୍ର ଦେଇ ହେଲେ
ରଖିଲ ତାର ମହତ ॥ ୨ ॥

ଆହୁର କଥାଏ ପୁଣି
ଆତଙ୍କେ ଡ଼ାକେ ମୃଗୁଣୀ
ବ୍ୟାଧକୁ ଜୀବନେ ହାଣି
ଫେଡ଼ିଲ ତାର ଆରତ ॥ ୩ ॥

ଅତି କଷ୍ଟେ ଡାକେ ହରି !
ଦୁଃଖ ନଗଲା ମୋହର
ବାରେ ଶୁଣ ମୋ ଗୁହାର
କହେ ଦ୍ୱିଜ ରଘୁନାଥ ॥ ୪ ॥

**

**

# ଜୟ ଜଗବନ୍ଧୁ

## ଗୋପୀନାଥ

( ଊନବଂଶ ଶତାବ୍ଦୀ )

[ ରାଗ-ଶୁଦ୍ଧ ସାବେରୀ ]

ଜୟ ଜଗବଂଧୁ ଯଦୁକୁଳ ଇନ୍ଦୁ
ଜୟ ଯାମଳା ଭଞ୍ଜନ
ଜୟ ଜନାର୍ଦ୍ଦନ ଜଗତ ଜୀବନ
ଜୟ ଯଶୋଦା ନନ୍ଦନ ।। ଘୋଷା ।।

ସତ୍ୟରେ ମର୍ତ୍ତ୍ୟରେ ନରହରି ! କରେ
ବଧିଲ ବୀର ହିରଣ୍ୟ
ପ୍ରହ୍ଲାଦେ ଇନ୍ଦ୍ର- ପଦକୁ ଗୋବିନ୍ଦ
ବଳେ କରିଛ ପ୍ରଦାନ ।। ୧ ।।

ତ୍ରେତୟା ଯୁଗରେ ରାମ ଅବତାରେ
ପିତୃ ସତ୍ୟେ ଗଲ ବନ
ଲଙ୍କାରେ ରାବଣ ବଧିଲ ଆପଣ
ଭକ୍ତକୁ କଲ ରାଜନ ।। ୨ ।।

ଦ୍ୱାପରେ ଗୋପରେ କୃଷ୍ଣ ଅବତାରେ
ମୋହିଲ ଗୋପୀଙ୍କ ମନ
କଂସ କେଶୀ ନାଶି ଭୂ-ଭାର ଉଶ୍ୱାସି
ରାଜା କଲ ଉଗ୍ରସେନ ।। ୩ ।।

କଳି ଯୁଗେ ହରି ବିଜେ ନୀଳଗିରି
ଶ୍ୱେତ ପୀତ କୃଷ୍ଣ ବର୍ଣ୍ଣ
କମଳ ପଦ୍ମରୁଁ ବହେ ମକରନ୍ଦ
ମଧୂକର ଗୋପୀ ମନ ।। ୪ ।।

**

**

## ଚକାନୟନକୁ

## ଚନ୍ଦନହଜୁରୀ (ଗୋଖିଖୁଣ୍ଟିଆ)

[ ଊନବିଂଶ ଶତାବ୍ଦୀ ]

( ରାଗ-ରସକୁଲ୍ୟା )

ଚକାନୟନକୁ ପତିତ କେହୁ
ଚକାଇ ଖର ନିଶ୍ୱାସ ପକାଇ
ଡକା ପକାଇ ଗରୁଡ଼ ପଛରେ
ବକାର ମୋ ଆର୍ତ୍ତି ଶୁଣ ସତ୍ୱରେ ହେ
ଡକ୍କା ବାଜୁଛି ମହିମା ହେ
ଠକାର କରି କର୍ଣ୍ଣେ ଶିର ନ ଶୁଣ
କାହିଁକି ବିଚାର କର୍ମ ହେ ॥ ୧ ॥

କର୍ଣ୍ଣ ହରଣୀ ଦ୍ରୌପଦୀ ବିପତ୍ତି
ହରି ହରିଛ ପରା ଡେରି ଶ୍ରୁତି
ଦରିଦ୍ର ସୁଦାମାକୁ କୋଟି ନିଧି
ପରିପୂର୍ଣ୍ଣେ ଦେଲ କୃପା ବାରିଧି ହେ
ଧରି ଯା' ମହିମା ଚଉଦ ହେ
ସରିତ ଯାଉଛି ହରି ! ଆଉ ଥରେ
ନ ଚାହିଁଲେ କୃପା ନେନେ ହେ ॥ ୨ ॥

ଆଜାନୁବାହୁ ! ମୁଁ ପତିତ ଜଣେ
ଅଜାମିଳୁଁ ବଳି ସହସ୍ର ଗୁଣେ
ଲଜ୍ଜା ହରି ନ ତାରିଲେ ନିକର
ଧ୍ୱଜାଚକ୍ରରୁ ଦହନ ଉତାର ହେ

ମଜ୍ଜାରେ ମୁ ଏହା ଭବେ ହେ
ବଜାଇ ଜମ୍ବୁ ଆର୍ତ୍ତିହାଣ ଡିଣ୍ଡିମ
ହଜାଇ ଦେଉଛ ଏବେ ହେ ॥ ୩ ॥

ପିତାମାତା ସେବା ମୋର ବିଭଙ୍ଗ
ଲିତାକୁ ଲିତା ମୋ ଅସତସଙ୍ଗ
ସୀତାରେ ଅବଗାହ୍ନ ନାହିଁ ଦିନେ
ଗୀତା ଭାଗବତ ନ ଶୁଣେ କର୍ଣ୍ଣେ ହେ
ପୀତାମ୍ବର ଚନ୍ଦ୍ରେ ଚନ୍ଦ୍ର ହେ
କି ତାପ ଚକ୍ରଗୁପତୁଁ ଚରାଇବ
ମୋ ଅନ୍ତକାଳେ ଯେମିନ୍ତ ହେ ॥ ୪ ॥

ବଟପୁଟ ବାସୀ ଆରତତ୍ରାଣ
ଘଟ ଘଟକେ ରହ୍ନ ସବୁ ଜାଣ
ଖଟନ୍ତ୍ର ଯେଉଁ ଚରଣେ କମଳା
ହଟ କର ମୋ ଦୁର୍ଦ୍ଦଶା ନଗଲା ହେ
ନଟବର ବେଶ ଧାରୀ ହେ
ଝଟିତିରେ ପ୍ରଭୁ ଶ୍ରୁଢଡେର ଶୁଣ
ଏ ଦୀନଜନ ଗୁହାରି ହେ ॥ ୫ ॥

ପାଣ୍ଡୁ ପ୍ରିୟ ହେ ଦଣ୍ଡୁଛ କି ଦୋଷେ
ଦାଣ୍ଡକୁ ଏ କଥା କେମନ୍ତ ଦିଶେ
ଗୁଣ୍ଡରେ ମଇଜ ଛଳେ ଆପଣ
କାଣ୍ଡକରେ ନେଲ ବାଲୀର ପ୍ରାଣ ହେ
ତାଣ୍ଡବ ନୃତ୍ୟ କାହିଁକି ହେ
ଖଣ୍ଡ କରଦେଲ ବିଷ୍ଣୁକୁଟ ମାୟା
ଲଗାଇ ଦେଇ ଭେଲକି ହେ ॥ ୬ ॥

ଆରତ କେହ୍ନ ନାହିଁ ମୋର ପ୍ରଭୁ
ଆରତ ତ୍ରାଣ ପରିତ୍ରାଣ ସବୁ

ସାରଥୀ ହୋଇ ପାର୍ଥ ରଥେ ଶ୍ୟାମ
ଭାରତ ଯୁଦ୍ଧେ ଭରଥିଆ ଡ଼ିମ ହେ
ସାର ଘଣ୍ଟା ଘୋଡ଼ାଇଣ ହେ
ମାର ପିଅର ତା ପରାଣ ରଖିଣ
ଭୁଲାଇଛ ବଡ଼ ପଣ ହେ ॥ ୭ ॥

ପକ୍ଷ ହୀନ ଜନ-ରକ୍ଷଣ ବୋଲି
ଲକ୍ଷଣ ଅଗ୍ରଜଙ୍କୁ ଆଶ୍ରେ କଲି
ପକ୍ଷ ଦାୟକ ହେ ଲକ୍ଷଣ ସୁଖ
ଦକ୍ଷ ପଣେ ରଖିବାରେ ନିରକ୍ଷ ହେ
ଲକ୍ଷ କେ ତୁମ୍ଭର ଅଛୁ ହେ
ବକ୍ଷ ବିଦାରଛ ନଖେ ହରଣ୍ୟର
ପ୍ରହଲ୍ଲଦ ମାନ ଇଚ୍ଛୁ ହେ ॥ ୮ ॥

ଧଣ୍ଡାମାଲ ବୁହା ଦୁର୍ଦ୍ଦଶା ରାହୁ
ଚଣ୍ଡାଳ ଗ୍ରାସୁଅଛୁ ଗ୍ରହୁଁ ଗ୍ରହୁଁ
ଭଣ୍ଡାରେ ଖଣ୍ଡା ନାହିଁକ ମହିମା
ଗଣ୍ଡାକର ହଣୁନାହିଁ ମହିମା ହେ
ହଣ୍ଡା ମୋ ଯାଉଛୁ ଫାଟି ହେ
ଅଣ୍ଡା କରି କୃପାଜଳ ବୃଷ୍ଟି କର
ମୋ ଚଉ ଗ୍ଧତକ ପାଟି ହେ ॥ ୯ ॥

ମନ୍ଦରଧର ନୀଳଗିରି ବାସୀ !
କନ୍ଦର ବାସୀ ପ୍ରାୟେ ଅଛ ବସି
ପନ୍ଦର ନେନ୍ଧ ଧାତା ପୁରନ୍ଦର
ବନ୍ଦନ କରନ୍ତି ଯେଉଁ ପଦ୍ମର ହେ
ଛନ୍ଦଛଡ଼ ଦେବରଙ୍କେ ହେ
ନନ୍ଦନନ୍ଦନ ଶ୍ରୀ ଚରଣର ବନ୍ଦେ
ଚନ୍ଦନଦକୁସ୍ତ ଭକେ ହେ ॥ ୧୦ ॥

**

**

# ଆରେ ପାପ ଈକ୍ଷଣ

## ଚନ୍ଦନହଜୁରୀ (ଗୃହୀ ଖୁଣ୍ଟିଆ)

( ଊନବିଂଶ ଶତାବ୍ଦୀ )

ଆରେ ପାପ ଈକ୍ଷଣ          କୃତାର୍ଥ ହେବୁ ଜାଣ
ବଡ଼ ଶୃଙ୍ଗାର ବେଶ ଦେଖି
ଜଗତେ ନାହିଁ ତାର          ତୁଳନାକୁ ସମ୍ଭାର
ଦେବେ ଯା ନିରେଖିଣ ସୁଖୀ
ରେ ପାପନେତ୍ର
ଚଳ ତୁ ନୀଳାଚଳେ          ଦେଖି ଚପଳ ଡୋଳେ
ସୃଷ୍ଟିକୁ କରିବୁ ପବିତ୍ର ରେ
ପାପ ନେତ୍ର ॥ ୧ ॥

ଖଗୋଳକୁ ଆବୋରି          ତ୍ରିମୂର୍ତ୍ତି ଶୋଭା ଘେରି
ରହିଛି ଚନ୍ଦ୍ରାତପ ସାର
ଷୋଡ଼ଶମାନେ ଯହିଁ          ଚନ୍ଦ୍ରକ ରୂପ ବହି
ଦେଖାନ୍ତି ସ୍ୱଗୁଣ ବେଭାର
ରେ ପାପନେତ୍ର
ନିରେଖ ତାର ତଳେ          ସ୍ମୃରୁ ଚନ୍ଦ୍ରିକା ଢଳେ
ଜନ୍ମାଇ ଦିଏ ସର୍ବ ଶାନ୍ତି
ରେ ପାପ ନେତ୍ର ॥ ୨ ॥

ତୁଳସୀ ବେଢ଼ ତାର          ତଳେ ନିବଳୀ ଘେରି
ଯେସନେ ଜଳାନଳ ଶିଖ

ସ୍ୱଚ୍ଛ ଦିବ୍ୟ ଜ୍ୟୋତି ମଣିଏ ପ୍ରକାଶନ୍ତି
ସ୍ୱାଗ ଚିତାକୁ ଲକ୍ଷ୍ୟ ରଖ
ରେ ପାପ ନେତ୍ର
ଦୁଇ ପାଖୁଣେ ତୋର ଶୋଭା ରାଶି ଭଣ୍ଡାର
ଅଳକା ପନ୍ତିକ ବିଚିତ୍ର
ରେ ପାପନେତ୍ର ॥ ୩ ॥

ଚୂମ୍ବିଛୁ ଚକା ଆଖି ଯାହା ନେତ୍ର ନିରେଖି
କୋଟିଏ ସିଦ୍ଧ ମୋକ୍ଷ ଲଭି
ପାପୀ ତାପ ହିକାର ଯାଚି ମୁକତି ଭବ
ନିରତେ ଅପଲକେ ସୁଖୀ
ରେ ପାପନେତ୍ର
ତା'ମଝିରେ ଧବଳ ତଳକ ଇନ୍ଦୁ ତୁଲ
ବାଟୁକ ବେଷ୍ଟିତ ନକ୍ଷତ୍ର
ରେ ପାପନେତ୍ର ॥ ୪ ॥

ନାସାବରରେ ଝମ୍ପା ବିକାଶେ ଅନୁକମ୍ପା
ଭକତେ ଭବ ପରଶଇ
ବେତକୁ ସାତରଙ୍ଗ ବିଜୁଳିର ତରଙ୍ଗ
ମରୁଆ ଗନ୍ଧ ପ୍ରକଟଇ
ରେ ପାପନେତ୍ର
ଦୁଇ ନୟନ ମଝେ ଜୀବ ବ୍ରହ୍ମ ସମାଜେ
ମାଳା ସ୍ୱରୂପ ଏହି ଚିତ୍ର
ରେ ପାପନେତ୍ର ॥ ୫ ॥

ଶିର କପଡା ଧଡ଼ି ରହିଛି ତଥି ଜଡ଼ି
ପାଖେ କୁଣ୍ଡଳେ ବିରାଜନ୍ତି
ସିନ୍ଧୁ ସନ୍ଧିରେ ଥିବା ଦୁଇ ମକର କିବା
ପାଖୁଣେ ଚକିତେ ରହନ୍ତି
ରେ ପାପନେତ୍ର

ରଙ୍ଗା ଅଧର ଶୋଭା                    ଯଜ୍ଞ ଅନଳ ପ୍ରଭା

ବେଢ଼ିଛୁ ଅଧର ସୁଚନ୍ଦ

ରେ ପାପନେନ୍ଦ ॥ ୬ ॥

ବାମ ନାସାରେ ଗୁଣା                    ଶିଖି ନାଚକୁ ଜଣା

ଦଯୁଣା ଝଂମା ଝଲ ଝଲ

ଘନ ସାର ତିଳକ                    ଆଦୋଶଛନ୍ଦ ଦେଖ

ଯେସନେ ଧୀରଚନ୍ଦ ଟମେଲ

ରେ ପାପନେନ୍ଦ

ଧାମୀଙ୍କ ଚନ୍ଦ୍ରା ସାର                    ଏହ୍ନ ଲପନ ସାର

ଭକତ ଜନଙ୍କର ଛନ୍ଦ

ରେ ପାପନେନ୍ଦ ॥ ୭ ॥

ଦୁଇ କର କମଳେ                    କର ପଲ୍ଲବ ବରେ

ପାଞ୍ଚ ସ୍ୱରଆ ଝୁଲୁ ଥାଇ

ପ୍ରପଞ୍ଚ ନାଶିବାକୁ                    ପାଞ୍ଚ ପାଞ୍ଚଣତାକୁ

ସିଂହାସୀ ଖଞ୍ଜାଇ ନଠାଇ

ରେ ପାପନେନ୍ଦ

ଏହ୍ନ ଶୋଭାକୁ ଲୋଭା                    ବିଲକ୍ଷ ସର୍ବଦେବା

ଦେବାଧି ଦେବରାଜ ବନ୍ଦ

ରେ ପାପନେନ୍ଦ ॥ । ॥

ମଝି ତୁଳସୀ ଦଳ                    ଗଭା ମଣ୍ଡା ଅଧର

ଅଧର ମାଳ ଗଣ୍ଡ ସ୍ଥଳେ

ସପତ ଋଷି ଯେହ୍ନେ                    ବସି ଋଦ୍ଧ୍ୱକାସନେ

ଋକତ ସ୍ତବନ ବହ୍ନଲେ

ରେ ପାପନେନ୍ଦ

ଖଣ୍ଡ ଆଧାର କଶ                    ସଶକ୍ତୁ ସଶ ସଶ

ଲମ୍ବିତ ମାଳା ସୁବିଚନ୍ଦ

ରେ ପାପନେନ୍ଦ ॥ ୯ ॥

ମହାବାହୁ ଭରସା                    କଶ ଏମନ୍ତ ଭୂଷା

ଭୁଜପଦ୍ମର ତଳେ ଥାଇ

କହୁଛୁ ଧନ୍ୟ ମୁହିଁ    ଚରଣ ତଳ ଗୁହିଁ
ପ୍ରଭୁଙ୍କ କୋଳେ ଘେନଛଇଁ
ରେ ପାପନେଇ
ବାରହାଡଆ ଧଣ୍ଡା    ନୁହେଁ ସେ ଧାର ଖଣ୍ଡା
ମାଇକ ପରେ ଅଘ ଗାଇ
ରେପାପନେଇ ॥୧୦ ॥

ହୃଦସ୍ଥ କଉସ୍ତୁଭ    ପ୍ରାପ୍ତ ପଦକ ଶ୍ରୀବ
ବନ୍ଧଣ ଗ୍ରୀବକ ଫୁଲଇ
କହେ ମୁଁ ଶୋଭାସାର    ତୁଳନା ନାହିଁ ମୋର
ତଳକୁ କଡ଼ି ଝୁଲୁଥାଇ
ରେ ପାପନେଇ
ସୁନା କଷା ବସଣି    ଶୋଭାବଳୀକୁ ଜିଣି
କମାଣି କରଅଛୁ ଟାଇ
ରେ ପାପନେଇ ॥ ୧୧ ॥

ତା' ମଧ୍ୟେ ସ୍ବମୀକର    ଝୋବା ଝୁଲି ନକର
କହନ୍ତି ଶୁଣ ପାପୀ ଜନେ
ଏହୁ ଚରଣ ସାର    ତଳକୁ ଆଶ୍ରା କର
ବଞ୍ଚିବ ଭବ ପ୍ରଭଞ୍ଜନେ
ରେ ପାପନେଇ
ନାହିଁ ଆନ ଭରସା    ନିଜଗତର ଏ ଆଶା
ତାରଣେ ସମର୍ଥ ବନ୍ଧୁଇ
ରେ ପାପନେଇ ॥ ୧୨ ॥

କୁରୁବକ ନଆଳୀ    ମାଳତୀ ଚମ୍ପା କଳୀ
ଦମ୍ଭଣା ତଗର କେତକୀ
ଖଞ୍ଜିଣ ଯତନରେ    ଦ୍ୱାଦଶ ଅଳଂକାରେ
ବୋଲନ୍ତି ଜଗତେ ବିବେକୀ
ରେ ପାପନେଇ

ଅରେ ବଲ୍ଲେକ ଦୂରୁ ଅଚଳ ମନ୍ଦାମେରୁ
ନାହିଁ ନଥିବ ହିଜଗତ
ରେ ପାପନେତ୍ର ॥ ୧୩ ॥

ଗୁଖିଆ ରନ୍ଧ୍ର ଦୂରେ ଚନ୍ଦ୍ରଇ ନେତ୍ର ସ୍ଥିରେ
ସ୍ନେହ ବେଶ ବଡ ଶୃଙ୍ଗାରକୁ
ଚନ୍ଦ୍ରବା ମାନେ ମନେ ଶୀତଳ ପ୍ରାଣ ଯେହ୍ନେ
ବରଷା ନାଶେ ଅନଳକୁ
ରେ ପାପନେତ୍ର
ରାଧାନାମ ଅଂକିତ ମହାଭାବ ଜଡ଼ିତ
ରଚନା ଅଟେ ଅପ୍ରାକୃତ
ରେ ପାପନେତ୍ର ॥୧୪॥

ଖଣ୍ଡୁଆ ତଳେ ରଖି ଏକୁ ଆରେକ ଦେଖି
ନୀଳାଦ୍ରି କେଶରୀ ମଣ୍ଡନ୍ତୁ
ଶୟନ ସୁଖ ସାର ଏ ବେଶ ମନୋହର
ପିନ୍ଧଣ ସୁଖେ ପହୁଡ଼ନ୍ତୁ
ରେ ପାପନେତ୍ର
ମୋ ନେତ୍ର ପଟେ ଲେଖି ହେଉ ନିରତ ସୁଖୀ
ଚନ୍ଦନ ହଜୁରୀ ଭଣିତ
ରେ ପାପନେତ୍ର ॥ ୧୫ ॥

**

**

# ପ୍ରଭୁ ନୀଳାଦ୍ରି ବିହାରୀ

## ଦିବ୍ୟସିଂହ ଦେବ ମହାରାଜା

[ ଊନବିଂଶ ଶତାବ୍ଦୀ ]

(ରାଗ-ସାବେରୀ)

ପ୍ରଭୁ ନୀଳାଦ୍ରି ବିହାରୀ
କଣ୍ଟକେ ଅଟକେ ହେବାରୁ ମୋ ମନ
ସରୁ ନାହିଁ ଝୁରିଝୁରି ।। ଘୋଷା ।।

ମହା ବଳଆର ଭୁଜ ଦେବରାଜ
ସୁଦର୍ଶନ ଚକ୍ରଧାରୀ
ଏ ମହା ବିପଦୁଁ ଉଦ୍ଧରିଲ ନାହିଁ
ନ ଶୁଣିଲ ମୋ ଗୁହାରି ।।୧।।

କାନ୍ଦରୁ ଅଣାଇ ବନ୍ଦୀ କରାଇଲ
ଶ୍ରୀ ନନ୍ଦଘୋଷ ବିହାରି
ବଦ୍ଧ କରଦ୍ୱୟ ଦେଖାଉଛୁ ଭୟ
ଦ୍ୱନ୍ଦୀ ବିଜାତ ପାହାରି ।।୨।।

କଳା ଶ୍ରୀ ବଦନ ଏ ଘୋର କଦନ
ବେଳକୁବେଳତ ଭାରି
ଧଳା ଅଶ୍ୱବାଗ ପାଉନାହିଁ କିବା
ଲେଉଡ଼ି ଲେଉଡ଼ି ଦଉଡାର ।।୩।।

କେତେ କାହାକୁ ସଙ୍କଟୁ ରଖିନାହିଁ
କୃପାନିଧି ଦୁଃଖହାରୀ

ମୋହର ବେଳକୁ ନିର୍ଦ୍ଦୟ ହୃଦୟ
ହେଉଚ କଣ ବଜ୍ରର ॥୪॥

ସିନ୍ଧୁ ସୁତା ପତି ! ଅବା ମୋ ବିପତ୍ତି
ପ୍ରତାପେ ହେଉଛ ଘାର
ଦିବ୍ୟସିଂହ ଦେବ କହାକୁ କହିବ
* ଆପଣେ ନକଲେ ପାର ॥୫॥

**

* ବ୍ରିଟିଶ ଶାସକଙ୍କ କୋପରେ ପଡ଼ି କଳିଙ୍ଗରେ ଗଜପତି ମହାରାଜା ଦିବ୍ୟସିଂହ ଦେବଙ୍କୁ କଳାପାଣି ଯିବାକୁ ହୋଇଥିଲା । କଟକରେ ଅଟକ ହେଲା ବେଳେ ତାଙ୍କ ମନର ଭାବ ଏ ଗୀତଟିରେ ପ୍ରକାଶ ପାଇଛି ।

**

## ଜୟ ଜୟ ଜଗବନ୍ଧୁ

**(ଭଗୀରଥି ଦେବ)**

[ଉନବିଂଶ ଶତାବ୍ଦୀ]

**(ରାଗ-ଶଙ୍କରାଭରଣ)**

**ଜୟ ଜୟ ଜଗବନ୍ଧୁ ଜଗତ-ଜୀବନ**
**ଜୟ ଜୟ ଅନାଦି ଅନନ୍ତ ନିରଞ୍ଜନ ହେ ॥୦॥**

ପତିତପାବନ ଦୀନ- ଦୁଃଖହାରୀ ସନାତନ
ଯୋଗୀ-ଋଷି-ପୁଣ୍ୟଜନମାନଙ୍କ ବନ୍ଦନ ହେ ॥୧॥

ଏ ଭବସାଗର-କର୍ଣ୍ଣ- ଧାର କୃପା ନିକେତନ
କଞ୍ଚିତ କରୁଣା କର କଳୁଷ ନାଶନ ହେ ॥୨॥

ଭବଭୟ ବିନାଶନ ପ୍ରଭୁ ଗରୁଡ଼ ଆସନ
ନଳିନୀ ବାସିନୀ-ପ୍ରାଣ-ବନ୍ଧୁ ଜନାର୍ଦ୍ଦନ ହେ ॥୩॥

ନଭୁଲୁ ମାୟାରେ ମନ କରୁ ସୁପଥେ ଗମନ
ଭଣେ ଭଗୀରଥି ଦେବ ଏହି ନିବେଦନ ହେ ॥୪॥

**

**

## ଯତନେ ଜଗବନ୍ଧୁ

### ଗୌରଚନ୍ଦ୍ର ନରପନ୍ତ

[ ଊନବିଂଶ ଶତାବ୍ଦୀ ]

ଯତନେ ଜଗବନ୍ଧୁ ନାମ ଜପରେ ମନୁଆଁ ରେ
ନନ୍ଦ ଉତ୍ତମାଙ୍ଗ ବନ୍ଦ କଲେକ ଚନ୍ଦଧାରେ ॥ ପଦ ॥

ଅମଳ କମଳ ବଦନ ନେତ୍ର
ଦଳିତାଞ୍ଜନ ଲଳିତ ମାତ୍ର
କମଳା ମୁଖ କମଳ
ଭୃଙ୍ଗ ଚୁମ୍ବିତ ମଧୁ ଧାରେ ॥ ୧ ॥

ଅଶରଣ ଜନପୂର୍ଣ୍ଣ କାମ
ପୂର୍ଣ୍ଣ ବ୍ରହ୍ମ ନିଗମ ଧାମ
ଦୁଃଖୀ ଜନଙ୍କ ଦୁଃଖ ହରଣେ
(ଆଉ) ମହୀରେ ନଥିବେ ଗାରେ ॥ ୨ ॥

ଝଲକେ ମୋହ ବସଣି ନାସେ
ଲଳିତ କୋଟି ଚନ୍ଦ୍ର ହାସେ
କୋଟି ମଦନ ରୂପ ଅସମ
ଗୋଟିକ କଲ ତାରେ ॥ ୩ ॥

ରତନ ମୁକୁଟ କିରୀଟୀ ସାର
କଉସ୍ତୁଭ ମଣି ମୁକୁତାହାର
ଗଣ୍ଡ ଯୁଗଳେ କୁଣ୍ଡଳ ଲୁଲେ
ଶୋଭିତ ଉର ହାରେ ॥ ୪ ॥

ଯା' ଶ୍ରୀଚରଣ ରଜକୁ ପାଇ
ନୃତ୍ୟ ରସେ ଗଉରୀ ସାଇଁ
ଶୁକ ସନକ ଅନେକ ଯା' ସଦା
ଚରଣ ସେବାରେ ॥ ୫ ॥

**

**

# ଦୀନ ବନ୍ଧୁ

## ତ୍ରିଲୋଚନ ପଟ୍ଟଯୋଷୀ

[ ଭଜନବାଂଶ ଶତାବ୍ଦୀ ]

ଦୀନବଂଧୁ ! କେ କ ଦେଲା ମୁଁ ନ ଦେଲି ॥ ୦ ॥

କ ଦେଲା ହେ ଧ୍ରୁବ କ ଦେଲା ପ୍ରହ୍ଲାଦ
ଅହଲ୍ୟା କ ଦେଲା ମୁଁ ନ ଦେଲି ॥ ୧ ॥

ଅନ୍ଧ ନନ୍ଦନ ବାଧା ହରି ହରିଲ
ବନ୍ଧ କରି ଖେଳୁ ବାଲି ॥ ୨ ॥

ଉଦ୍ଧରିଲ ନାହିଁ ଅଧମ ଦାସକୁ
ବନ୍ଧ ହେଲା ବୁଲି ବୁଲି ॥ ୩ ॥

ଝୋକା ଦନୁ ଉକା ପକାଇଲ ଯେବେ
ଫକା ହୁଅନ୍ତାଣି ନାଲି ॥ ୪ ॥

ତ୍ରିଲୋଚନ ବୋଲେ ଜାଣିଥିଲ ପ୍ରଭୁ
ଏତେ ଉକାଇଚ ବୋଲି ॥ ୫ ॥

**

**

# ହେ ଜଗନ୍ନାଥ

**ପବନ ଦାସ**

[ ଊନବିଂଶ ଶତାବ୍ଦୀ ]

( ରାଗ-ସାବେରୀ, ଆଠତାଳି )

ହେ ଜଗନ୍ନାଥ, ନକାଣ କ ମୋହର ଆରତ ।। ଘୋଷା ।।

ଗଜ ପୁଣି ସେ ମୃଗୁଣୀ ତାକ କର୍ଣ୍ଣେ ଅଛ ଶୁଣି
ପ୍ରହ୍ଲାଦ ଭକ୍ତ ଜାଣି ସ୍ତମ୍ଭୁ ଜାତ ହେଲ ପୁଣି
ଶୁଣିଅଛୁ ଏଡ଼େ ପୁରୁଷାର୍ଥ ହେ ।। ୧ ।।

ଶିବଙ୍କୁ ନିକଟ ହର ସୁଗ୍ରୀବଙ୍କୁ ମିତ୍ର କର
ଉଚ୍ଛିଷ୍ଟ ଦେଲା ଶବରୀ ତାହା ଦେଲ ଗ୍ରାସ କର
ବାହୁଥିଲ ପର ପାର୍ଥ ରଥ ହେ ।। ୨ ।।

ଶରଣ ସେ ବିଭୀଷଣ ଲଙ୍କେ କଲ ନୃପଗଣ
ସମୁଦ୍ରେ ବନ୍ଧ ବାନ୍ଧଣ ସଙ୍ଗେ ଘେନ କପିଗଣ
କାଟି ପକାଇଲ ଦଶମାଥ ହେ ।। ୩ ।।

ଶ୍ରୀ ନୀଳ କନ୍ଦରେ ରହ ତାକ କର୍ଣ୍ଣେ ଶୁଭୁ ନାହିଁ
ଏଡ଼େ ନିଷ୍ଠୁର ସେ ଦେହି ଦୀନ ପବନ କହଇ
ପଦ୍ମପାଦେ ରହୁ ମୋର ମାଥ ହେ ।। ୪ ।।

**

**

# 'ଜଗନ୍ନାଥ ହେ

## ମାନଗୋବିନ୍ଦ ହୋତା

[ଊନବିଂଶ ଶତାବ୍ଦୀ]

(ରାଗ-ସୁରଟ)

ଜଗନ୍ନାଥ ହେ ତୁମ୍ଭେ ଇନ୍ଦ୍ରାବରଜ
ଜଗବନ୍ଧୁ ମୋର ଘେନ ଅରଜ
ଜନ ଜନକ ହେ ଚତୁର ଭୁଜ
ଯଶ ଭକତର ହୃତେ ଅରଜ ।। ପଦ ।।

କୂଜନ ଶଙ୍ଖ ଚକ୍ର ଗଦାମ୍ବୁଜ
ଯତ୍ନେ ଧାରଣ କରି ଦେବରାଜ
ଜଳଶାୟୀ ହରି ଯମ-ଦରନ
ଜପୁଅଛୁ ମୁହିଁ ପଦ-ସରୋଜ ।। ୧ ।।

ଗତି ଦିଅ ଯାଉ ପାପ ପରାଗ
ଗରୁଡ଼ାସନ ଦୁଃଖ ଘେନ ବେଗ
ଗରିବ ଜଣାଣ ଘେନ ହେ ଆପଣ
ରଖ ରଖ ମୋହର ଏ ଗରଜ ।।୨।।

ନାଗ, ନର, ସୁର, ମୁନି ବନ୍ଦନା
ନାହିଁ ନାହିଁ ପାପ ହୃଡ଼ାଅ ବାନା
ନାରକା ନାଶନ ବିପଦ ଧ୍ୱଂସନ
ଜନକ ହୃତରେ ଘେନ ବିରାଜ ।। ୩ ।।

ଅଣ୍ଡା ମନେ ବୁଝ୍ ଜଗତ ନାଥ
ଥକଲ ନାହିଁ ଆଉ ସାମରଥ
ଥରେ ହେଉ କାର୍ଯ୍ୟ ଦେବାଧ୍ୱ ରାଜ
ସର୍ବ ଶୁଭ କର ମୋହର କାର୍ଯ୍ୟ ॥ ୪ ॥

ଜଗନ୍ନାଥ ନାମ ଏ ସ୍ମର ବୁଝ
ଜପନ୍ତେ ସବୁ ପ୍ରଭୁର କାର୍ଯ୍ୟ
ଦ୍ୱିଜ-ମାନ କବ୍ବ ପଦ୍ମ ପାଦେ ସେବ
ଥରେ ସେବୁ ଆଅ ମନ ମହଜ ॥ ୫ ॥

**

**

# ପଙ୍କଜଡୋଳା ହେ

## ବାଇମୂର୍ଖ

[ ଊନବିଂଶ ଶତାବ୍ଦୀ ]

ଜଗତ ଜନ ବନ୍ଧୁ ପଙ୍କଜ ଡୋଳା ହେ,
କରୁଣା ସିନ୍ଧୁ ବାଟରେ ଉଙ୍କର ଭେଳା ହେ ॥ ଘୋଷା ॥

ଆହେ ନୀଳାଦ୍ରି ପତି ଅଗତି ଜନ ଗତି
ମୁଁ ଯେ ପତିତ ଅତି କରମ କାଳା ହେ ॥ ୧ ॥

ଆହେ ଜଗମୋହନ କର୍ମ ଲେଖନ ଆନ
କଶବାରେ ବହନ ନ କର ହେଳା ହେ ॥ ୨ ॥

ଅସତ୍ୟ କରମେ ପଡ଼ି ପଡ଼ି ମୁଁ ଗଲି ସଢ଼ି
ସୁବୁଦ୍ଧି କାଢ ଏଡ଼ ସନ୍ତତ ଜ୍ୱାଳା ହେ ॥ ୩ ॥

ବାରମୂର୍ଖ ମାଗୁଣି ମୁଁ ପାପୀ ମୂଢ଼ ପ୍ରାଣୀ
ଦବା ରସୁଣୀ ମତ କାମିନୀ ଖେଳା ହେ ॥ ୪ ॥

**

**

# ହେ ନୀଳ ଅଚଳ ବିହାରୀ

## ପରମାନନ୍ଦ ଦ୍ୱିଜ

[ଊନବିଂଶ ଶତାବ୍ଦୀ]

ମହାପ୍ରଭୁ ମହା ଆର୍ତ୍ତି ହେଲା
ହେ ନୀଳ ଅଚଳ ବିହାରୀ
ଆଉତ ତାରଣ ବୋଲାଇ ଆପଣ
ନ ଶୁଣ ଆରତେ କଲେ ଗୁହାରି ।। ଘୋଷା ।।

ଆହେ, ଆଶ୍ରେ କରି ତୁମ୍ଭେ ଅଭୟ ପାଦକୁ
ପ୍ରମାଦ ବୃଦ୍ଧି ହେଉଛୁ
ସନ୍ତାପ-ସରିତେ ପଡ଼ି ବୁଡ଼ିଗଲି
ଉପ୍ପରେ କୃପା ନୋହୁଛୁ ।। ୧ ।।

ଜଣାଇଲେ ଊଣା କର ପରି ପ୍ରଭୁ
ମହା ବିପତ୍ତି ଭକ୍ତକୁ
କରୁଣା ନିଧାନ ହୋଇ ସାବଧାନ
ନୋହିଲି ମୋ ବିଷୟକୁ ।। ୨ ।।

ଦୁଃଖୀ ମୁଁ ଦୁଃଖ ନାଶନ ବୋଲି
ତୁମ୍ଭେ କରିଛୁ ହେ ଭରସା
ଚାତ୍ର ଗୃତକ ଆଶା ତୋଷ ନ କଲ
କରି କରୁଣା ବରଷା ।। ୩ ।।

ଦୀନ ବାନ୍ଧବ ନାମ ବହ୍ନ

ପତିତପାବନ ବାନା ଉଡ଼ାଅ

ମୁଁ ଅତିହୀନ ପତିତ

ମୋହଠାରେ ଏ ମହିମା ନ ବୁଡ଼ାଅ ॥୪॥

ଯାହାକୁ ଯେତେ ଦୁର୍ଗତିରୁ ରଖିଛ

ମୋ ପରି କେହି ନୁହିଁଇ

କର ମହାଘୋର ସଙ୍କଟରୁ ପାର

ପରମାନନ୍ଦ କହଇ ॥ ୫ ॥

**

**

# ଜୟ ଜୟ ଜଗ ବନ୍ଦନ

## ସୋମନାଥ ସିଂହ ମର୍ଦ୍ଦରାଜ

(ଊନବିଂଶ ଶତାବ୍ଦୀ)

[ରାଗ-ମାଳଶ୍ରୀ]

ଜୟ ଜୟ ଜଗବନ୍ଦନ କେଶବ
ଜୟ ହେ ଯାମାଳ ଭଂଜ
ଗର୍ବୀ ଜନଗର୍ବ ତୁରତେ ଭଂଜ ॥ ଘୋଷା ॥

ଚଉଦ ବ୍ରହ୍ମାଣ୍ଡେ ପ୍ରକାଶି ଅଛ
ଯେ ଯାହା କାମନା କଲେ ଦେଉଛ
ଏମନ୍ତ ମହିମା କେ କରେ ଅନ୍ତ
ଅନ୍ତର୍ଯ୍ୟାମୀ ନାଥ କମଳା କାନ୍ତ ॥ ୧ ॥

ଦୁଃଖୀ ଜନ ଦୁଃଖ ଦେଖି ନ ସହ
ପତିତ ଜନ ପାବନ ବୋଲାଅ
ଶଙ୍ଖ ଚକ୍ର ଗଦା ପଦ୍ମକୁ ବହ
ଦାନବଙ୍କୁ କାଳ ଦେବତା ହୁଅ ॥ ୨ ॥

ଦୂରେ ଥାଇ ନୋହୁ କରେ ଗୁହାରି
ରଖିବ ବୋଲି କର୍ଣ୍ଣ ଥାଅ ତେରି
ତ୍ୱରିତେ ମାନସ ପୂର୍ଣ୍ଣ କରି
ଚକ୍ରେ ବିନାଶ କର ଗ୍ରାହ ପରି ॥ ୩ ॥

ଶରଣ ଜନଙ୍କୁ ଅମର କର
କରୁଣା ସାଗର ନାମ ତୁମର
କହୁ ଶେଷ ନୁହେଁ ଜାରଥ ଯା'ର
ଧୀରଥ କର ଲଙ୍କେଶ ପ୍ରକାର ॥ ୪ ॥

ଚନ୍ଦ୍ରାରେ ଯା'ର ବୁଦ୍ଧି ନ ଦଶଇ
ଚନ୍ଦ୍ରାମଣି ବୁଦ୍ଧି ଚଢାଇ ଦେଇ
ଭାରତେ ଅର୍ଜୁନ ଯେସନେ କହୁ
କୌରବଙ୍କୁ ନାଶିଲ ସାହା ଦେଇ ॥ ୫ ॥

ନୃପତି କୁଳେ ପଦ୍ମ ଦିନମଣି
ବୀରଧୀ ବର ବୀରଙ୍କ ଅଗ୍ରଣୀ
ରାଜା ଶ୍ରୀ ସୋମନାଥ ସିଂହ ଭଣି
କଳ୍ପତେ କୃପା କର କମ୍ବୁପାଣି ॥ ୬ ॥
**

**

# ରମାପତି ହେ

## କାହ୍ନୁଚରଣ

(ସାବେଣ୍ଡି-ଆଠଗଡ଼)

(ଉନବିଂଶ ଶତାବ୍ଦୀ)

ରମାପତି ହେ
କ୍ଷମାକର କ୍ଷମାକର ମୋ ଯନ୍ତ୍ରଣା ଶ୍ରୀପତି ॥ ଘୋଷା ॥

ଭ୍ରମାତ୍ମରେ କରଅଛୁ ଦୋଷ
ଧର୍ମାଧର୍ମକୁ ନ ମାନ ଲେଶ
ଶର୍ମୀ ଅଜମିଳକୁ ରଖ ଯଶ
ପରମାର୍ଥରେ ଥରେ ନମକାଇ ମୋ କୁମତି ॥ ୧ ॥

ସିତାମ୍ବୁଜ ନେତ୍ର ଏହୁ ଧ୍ୟାନ
ଗୀତା ପଠନେ ନାହିଁ ମୋ ମନ
ତ୍ରିତାପ ଯେ ମୋ କର୍ମ ଲିଖନ
କି ତାପରୁ କଢ଼ାଇବ ମୋତେ କଳୁପତି ॥ ୨ ॥

ଶିବବ୍ରାହ୍ମି ସର୍ବ ମୂଳାଧାର
ନାବ ଭବାର୍ଣ୍ଣବ କର୍ଣ୍ଣଧାର
ଯାବତ ଦେବ ମଣି ଉଦ୍ଧର
ଠାବ ଦେବ ଅନ୍ତେ ମୋତେ ବୈକୁଣ୍ଠ ବସତି ॥ ୩ ॥

ବ୍ୟାପ୍ତ ଗୁଣ ସର୍ବ ଚରାଚର
ପାପ ପୁଣ୍ୟତ ତବ ଗୋଚରି
ଆପଣ କର୍ତ୍ତା ଉଚ୍ଚ-ନୀଚର
ଆପଦରେ ପ୍ରାଣୀଙ୍କି କେ ହଏ ସଦ୍‌ଗତି ॥ ୪ ॥

ମାନୁଅଛୁ ମୋର ଦୋଷମାନ
ଧ୍ୟାନ ଚରଣୁ ନ ଜାଣେ ଆନ
ଭାନୁକର ପ୍ରଚଣ୍ଡ ସମାନ
କାହ୍ନୁ ଚରଣର ନାଶ ପାପପଙ୍କ ଗନ୍ଧ ॥ ୫ ॥

**

**

# ଦୀନବନ୍ଧୁ ନାମ

## କମଳଲୋଚନ

(ଊନବିଂଶ ଶତାବ୍ଦୀ)

ଦୀନବଂଧୁ ନାମ ବହନ ହେ
ଛେକ ଶ୍ରୀ ମଦନମୋହନ ॥ ୦ ॥

କରି ତୁମ୍ଭ ପଦ୍ମ ପାଦକୁ ଆଶ
କହୁଁ କହୁଁ ଦିନ ଯାଉଛୁ ନାଶ
କୃପାସିନ୍ଧୁ କୃପା ଦନେ ହେଁ ନ କଲ
କେଉଁ ହେତୁ କଲ ଏତେ ନିରାଶ ॥ ୧ ॥

କରୀ ଡାକିଲା ପ୍ରସନ୍ନ ହୋଇଛ
କରି ଅଭୟ ସୁଖକୁ ଦେଇଛ
କ୍ଳେଶ ନିବାରଣ ଆରତ ତାରଣ
ସେ ମହିମା ଏବେ କାହିଁ ଥୋଇଛ ॥ ୨ ॥

ସର୍ବୋପରି ନିରି ତୁମ୍ଭ ଚରଣ
ଶରଣ ପଶିଲି ହେବ କାରଣ
ତାରଣ ନ କଲ ଦାରୁଣ ହୋଇଲ
କେ ମୋର କଷ୍ଟ କରିବ ବାରଣ ॥ ୩ ॥

ଶ୍ରବଣ କରି ତୁମ୍ଭ ଚରିତରେ
ଭବୁ ତରିବ ହେଲେ ଦୁରିତରେ
କରିଥାଇ ଏ ଭରସା ପ୍ରଭୁ ମୋତେ
ଭସାଇ ଦେଲ ଚିନ୍ତା ସରିତରେ ॥ ୪ ॥

ଶୁଣି ସେ ନାମ ମହିମା ବଳକୁ
ସଂଶୟ ମୋର ନ ଥାଇ କାଳକୁ
ବେଳକୁ ଏ ସବୁ ମିଥ୍ୟା ହେଉଅଛି
କଥା ରହୁଛି ଅପାର କାଳକୁ ॥ ୫ ॥

ପ୍ରଭୁ ଥାଇ ପୀଡ଼ା ପାଉଛି ଯାହା
ପଦ୍ମଲୋଚନ କି ନ ଜାଣ ତାହା
ପରିତ୍ରାଣ ଏଥୁଁ ନ କଲେ କମଳ-
ଲୋଚନର ଆଉ ଅଛି କେ ସାହା ॥ ୬ ॥

**

**

# ଦୀନବନ୍ଧୁ କୃପାସିନ୍ଧୁ

## ଅଢକଢ ଦାସ

(ଊନବିଂଶ ଶତାବ୍ଦୀ)

ଦୀନବନ୍ଧୁ କୃପାସିନ୍ଧୁ
ଦୁଃଖି ଦୁଃଖ ନିବାରଣ ହେ ॥ ଘୋଷା ॥

ସଙ୍କଟ ସାଗରେ
ଭାସି ଯାଉଛୁ ହେ ବ୍ରହ୍ମଋଷି
ଆହେ ମହାପ୍ରଭୁ ଦେବାଧିରାଜ
ହେଲେ ନିବାରିଲ ଦ୍ରୌପଦୀ ଲଜ
ଆର୍ତ୍ତଙ୍କେ ଡାକିଲା ରଖିଲ ଗଜ
ସେ ଅଚେତନାଣ ହେ ॥ ୧ ॥

ଧ୍ରୁବଙ୍କୁ ଧ୍ରୁବ ଲୋକେ ନେଇ
ରଖିଲ ହେ ଭାବଗ୍ରାହୀ
ପ୍ରହ୍ଲାଦ ଲାଗି ନୃସିଂହ ରୂପ
ହୋଇ ହିରଣ୍ୟର ହରିଲ ଦର୍ପ
ଜରାସନ୍ଧ ବନ୍ଦୀ ମନ୍ଦିରେ ନୃପ ସେ
ସଙ୍କଟ ହରଣ ହେ ॥ ୨ ॥

ଚନ୍ଦବାକ ଚନ୍ତ୍ରା କଲା
କାଠ ପେଡ଼ା ଫାଟିଗଲା
ବିପ୍ର ପାଦଚିହ୍ନ ହୃଦରେ ଧରି
ମୃଗୁଣୀ ସଙ୍କଟୁ ଫେଡ଼ିଲ ହରି
ଅହଲ୍ୟା ପାଷାଣୁ ମୁକତି କରି ସେ
କଲ ଯେ କାରଣ ହେ ॥୩॥

ଦ୍ୱିଜ ମିଶ୍ର ଦାମୋଦର
ଦୁଃଖ ଦେଖି କଲ ଦୂର
ଭରଢଆକୁ ଘୋଡ଼ାଇଲ ଘଣ୍ଟେ
ମାନଗୋବିନ୍ଦକୁ ମାଇଲ କୂଟେ
ଟଲ୍ଲୀପଣଙ୍କୁ ବସାଇଲ ପାଟେ ସେ
ପଶିଲି ଶରଣ ହେ ॥୪॥

ମୋପରି ପତିତ ଜନ
ନଥିବ ଏ ତ୍ରିଭୁବନ
ଛାଡ଼ିଲି ଭାଇ-ବନ୍ଧୁ ପ୍ରତି ଆଶ
ଘଟିଲି ସନ୍ତ୍ୟାପରେ ପୀତବାସ
ଭରସା ଏକା ଆଦକନ୍ଦ ଦାସ ସେ
ପଙ୍କଜ ଚରଣ ହେ ॥୫॥
**

**

# ଧନ୍ୟ ପ୍ରଭୁ

## ଦାମୋଦର ପଟ୍ଟନାୟକ

[ଊନବିଂଶ ଶତାବ୍ଦୀ]

(ରାଗ-କୁମ୍ଭକାମୋଦୀ)

[ନୂଆନଟ ପଟଳୀ ମୁକୁଟ-ବୃନ୍ଦରେ]

ଧନ୍ୟ ପ୍ରଭୁ କାହିଁ ଲୁଚିଅଛ ହେ
ଦେଖାଅ ରୂପ ମୋହନ
ନିକଟରେ ଥାଇ ଅନ୍ତର କରାଇ
ଦହୁଛ କିପାଁ ଜୀବନ ହେ ॥ ପଦ ॥

ମଳିନ ପଙ୍କିଲ ମନ-ଦରପଣେ
ନ ପଡ଼ଇ ତୁମ୍ଭ ଜ୍ୟୋତି
ପାପୀ ବୋଲି ଯେବେ ଦୂର କରି ଦେବ
ସରିଯିବ ମୋ ସମ୍ପତ୍ତି ॥୧॥

ତୁମ୍ଭ ସୁଖ ସଙ୍ଗ ବରଜିଲି ବୋଲି
ଅରଜିଛୁ ଯେତେ ଗୁଣ
ତୁମ୍ଭୁରେ କି ତାହା ଜଣା ହୋଇନାହିଁ
କହିବି ମୁଁ କିସ ପୁଣ ॥୨॥

କି ଏବା ଶୁଣିବ କା ଆଗେ କହିବ
ହରିବ ମୋର ଦୁର୍ଗତି
ନଷ୍ଟ ପୁଣ୍ୟ ମାନ ଫେରାଇ କେ ଦେବ
କହ କହ ବିଶ୍ୱପତି ॥୩॥

ପତିତପାବନ ବାନା ଜଗତରେ
ଉଡ଼ାଇବା ବ୍ୟର୍ଥ ହେବ
ଯେବେ ଅନାଥରେ ନାଥ ଅନାଥରେ
କିଞ୍ଚିତ ମାନେ ନୋହିବ ॥୪॥

**

# ଡାକଇ ପାପ ଭୁବନ

**ଦାମୋଦର ପଟ୍ଟନାୟକ**

[ଊନବିଂଶ ଶତାବ୍ଦୀ]

ରଖ ରଖ ରଖ ରଖ ଦୀନଜନ ପ୍ରାଣବନ୍ଧୁ
ପଡ଼ିଛି ଡାକଇ ବାରେ କୃପାକର କୃପାସିନ୍ଧୁ ।।ପଦ।।

ସୁଖମୟ ଏ ସଂସାର ଦିଶଇ ଦୁଃଖ ଆଗାର
ତୁମ୍ଭର କରୁଣା ବିନା ହେ ନାଥ କରୁଣା କର ।।୧।।

ବିପଦ ସିନ୍ଧୁ ବେଗେ ଘେରି ରହିଛି ପ୍ରାଣ ଆବୋର
ହେଲେ ତୁମ୍ଭ କୃପାନାଥ ହଳାହଳ ସୁଧା ପର ।।୨।।

ଅସହାୟ ସନ୍ତାନର ତୁମ୍ଭେ ହେ ପିତା ସମ୍ବଳ
କାହାକୁ କହିବ ପ୍ରଭୁ ହୋଇଛି ଅତି ଆକୁଳ ।।୩।।

ଦେଇଛ ଜନମ ଯେଣୁ ରଖିବାକୁ ହେବ ତେଣୁ
ଏହି ବାକ୍ୟ ଅନୁସରି ଡାକଇ ପାପ ଭୁବନୁ ।।୪।।

**

**

# ହେ ପ୍ରଭୁ କଳାଶ୍ରୀ ମୁଖ

## ହାଡ଼ି ଦାସ

[ଊନବିଂଶ ଶତାବ୍ଦୀ]

(ରାଗ-ବଙ୍ଗଳାଶ୍ରୀ ତାଳ-ପହପଟ)

ହେ ପ୍ରଭୁ କଳାଶ୍ରୀ ମୁଖ !
ତୁମ୍ଭ ରଥ ଯାତ ଦେଖି ନପାରିଲି
ଦେବାରୁ ଦାରୁଣ ଦୁଃଖ ॥ ଘୋଷା ॥

କେତେ କେତେ ମହା ଭକତ ମାନଙ୍କୁ
କଢ଼ାଇ ନେଇଛ ପଥ
ମୋତେ ଏତେ ବେଳେ ଏକା କରାଇଲ
ଦେଖିବାକୁ ଅସମର୍ଥ ॥୧॥

ଯେବେ ନିକଟକୁ ନ ନେଲ ଗୋସାଇଁ
ମନେ କେଉଁ କଥା ପାଞ୍ଚି
ଏଇଠାରେ ତୁମ ରଥ ମୁଁ କରିବି
ଆସିବନା ତୁମେ ଘୁଞ୍ଚି ॥୨॥

ଦେଖା ଯାଉ ଭଲା ହଟିଆ ନାଗର
କେତେ ଲଗାଇବୁ ହଠ
ନିଶ୍ଚୟ କରିବ ଛତିଆ ଗ୍ରାମରେ
ତୋହର କଳପ ବଟ ॥୩॥

କାଲିକାଲକୁ ଏ କଥା ବୁଝାଇବି
ଦେଖିବେ ସଂସାର ଜନେ
ହାଡ଼ିଆ କମାର ଥାଣ୍ଟ କ ସଙ୍କଟ
ଶ୍ରୀହରି ବୋଲି ବଦନେ ।।୪।।

**

**

## ରତ୍ନ ସିହାସନ ମଉଡମଣିକ

**ହାଡ଼ି ଦାସ**

[ଊନବିଂଶ ଶତାବ୍ଦୀ]

(ତାଳ-ଏକତାଳି)

ରତ୍ନ ସିଂହାସନ ମଉଡ଼ ମଣିକ କହୁଛି କଥାଏ
ମହୋଦଧି କୂଳେ କଳ୍ପ ବଟ ମୂଳେ କରିଛନ୍ତି ବିଜୟେ ।।ଘୋଷା।।

ସେ ଶ୍ରୀମୁଖ ବଦନ ପଙ୍କଜ ଲୋଚନ
ଆଉ କପାଁ ଏତେ ଭୟେ
ଭାତ ନ ମିଳଇ ତୁଣ ନ ମିଳଇ
ଲୁଣ ବିନା ବଡ଼ ଭୟେ ।।୧।।

ଅଧିଲା ଭିତରେ ଟଙ୍କା ଗୁପ୍ତ ଅଛୁ
ସଂସାର ଅଂଧାରମୟେ
ମୋହ ପାଇଁ କିଛୁ ଧନ ମାଗୁଅଛୁ
ନଶୁଣ ଦେବାଧି ରାୟେ ।।୨।।

କପଟ ଦ୍ରୌପଦୀ ଲଜ୍ଜାକୁ ରଖିଲ
ଏବେକ ପାଶୋର ଯାଏ

ତୁମ୍ଭଙ୍କୁ ତୁମ୍ଭ ଭକ୍ତ ଗଣ ଅଟଇ
ଯେବେ ନୋହୁବନ୍ତି ନାସ୍ୱେ ॥୩॥

ଛତିଆ ଗ୍ରାମରେ ରହୁ ସ୍ଥାନ ଛାଡ଼ି
ଜଣାଉଛୁ ପଦ୍ମ ପାଏ
ମୋହ କର୍ମଙ୍କୁ ଯେ ବଧିର ହେଲକ
ନ ଶୁଣ ହେ ଦୟାମୟେ ॥୪॥
**

**

# ଅହେ ପ୍ରଭୁ ମହାବାହୁ

## ହାଡ଼ ଦାସ

[ ଊନବିଂଶ ଶତାବ୍ଦୀ]

(ତାଳ-ଆଠତାଳି)

ଆହେ ପ୍ରଭୁ ମହାବାହୁ
ଶରଣ ସୋଦର ନୋହୁଲେ ଆଉ
ଦଲୁଦଲୁ ଦୁଃଖ ହେଲ ଅତିରେକ
ବହୁତ କଂଜାଳ କଲେଣି ସାହୁ
ଅନ୍ନ ଜଳ ଥିଲେ ତିଉଣ ନମିଳେ
ଜାଲ ବନା ପଡ଼ି କ ରୂପେ ପାଉ ॥୧॥

ଆସନ ନ ଥାଇ ଶୟନ କରୁଛୁ
ତୈଳ ବନା ତନୁ ଖରସି ଥାଉ
ପେଜ ଯେକ ଅନ୍ନ ଗର୍ଭକୁ ଷେପିଲେ
ସନ୍ଧ୍ୟା କାଳେ ସଂଧ୍ୟା ନଲଗେ ଆଉ ॥୨॥

ଯେତେ ଯେତେ କଥା କଲ ହେ ବ୍ୟବସ୍ଥା
ଅନ୍ୟ ଜାଣିବାକୁ କେ ଅଛୁ ଆଉ
ଦେଖ ଦେଖ ହର କଲ ଏତେ ସର
ପାଦ ପଙ୍କଜରେ ଜୀବ ମିଳାଉ ॥୩॥

ଛଢଆ ଗ୍ରାମରେ ପଡ଼ି ରହୁଅଛୁ
ତୁମ୍ଭ ମନରେ ଆଉକି ନ ଆଉ
ପାମର ହାଡ଼ଆ ଭାସି ଯାଉଅଛୁ
ସାଆନ୍ତ ବିନା କେ କୂଳେ ଲଗାଉ ॥୪॥

**

**

# ଚକା ଆଖି

## ଭଗବାନ

[ ଊନବିଂଶ ଶତାବ୍ଦୀ ]

ଚକା ଆଖି, ଅକ୍‌କା ହୋଇଲଣି ଏବେ
ବକ ଚରି ପ୍ରଭୁ ଡକ୍‌କା ବଜାଇ ମୁଁ
ଡାକୁଛି ନିର୍ଗୁଣ ଲବେ ।

ଧକ୍‌କା ମାରି ମୋତେ ଦବଲୁବେଲ ଦୁଃଖ
ରଖାଇ ନ ଦେବ ଠାବେ···
ଛକାଣ୍ଡି ପଛଏ ବୁଲାଇ ମାରୁଛ
ଶିକାଣ୍ଡି ହୋଇ ଗରବେ ॥୧॥

ସଖା ସହୋଦର କେହୁ ନାହିଁ ମୋର
ଠେକା ବାନ୍ଧ ଦେଖା ଦେବେ
ଏକା ତୁମ୍ଭ ନାମ ଭରସା କରିଛି
ଟେକ ନଥ ଦୟା ନାବେ ॥୨॥

ଭାତ ବିକା ପ୍ରଭୁ ହଦରେ ବସିଲେ
ନିନ୍ଦା କରିବେ ସରବେ
ଡକା ଗୁଡେ ଦୀନ ଭଗବାନ
ଆଶ୍ରା ଶୂନ୍ୟ ହୋଇ ଭବେ

**

# କି ଶୋଭା କଲା ଶ୍ରୀମୁଖ

**ବାମନ ଦାସ**

[ଊନବିଂଶ ଶତାବ୍ଦୀ]

ଆଳଟବେଳ ବଡ ଦେଉଳେ
କି ଶୋଭା କଲା ଶ୍ରୀ ମୁଖ

ପାଞ୍ଚ ମନକୁ ଏକ କରଣ
ଶୁଣିଲେ ହରିବେ ଦୁଃଖ (ମନରେ)
ବାଦ୍ୟ ଗହଳ ଶୁଭେ ଚହଳ
ବାଜୁଅଛି ଜୟ ଶଙ୍ଖ ॥ ॥

ଘଣ୍ଟା ନାଦରେ ଚଉ ଭେଦରେ
ମନକୁ ହରଣ ଲକ୍ଷ୍ୟ
ବ୍ରହ୍ମାଦି ମୁନି କରନ୍ତି ଧ୍ୱନି
ଡାକ ଶୁଭେ ଲକ୍ଷ ଲକ୍ଷ ॥୨॥

ଭକ୍ତେ ଡାକନ୍ତି ଆହେ ଶ୍ରୀପତି
ଏ ଭବ ମାୟାରୁ ରଖ
ବାମନ ଦାସ କରଣ ଆଶ
ପଡ଼ିଣ ଅଛି ନଟରେଖ ॥୩॥

**

**

# ଅହେ ଚକାଡୋଳା

## ବିହାରୀ

(ତାଳ-ଦକ୍ଷିଣୀ)

ଅହେ ଚକାଡୋଳା।
ଭକ୍ତ ଜୀବକୁ ବାନ୍ଧିଛ ଶୂନ୍ୟେ ଭେଳା। ।।ପଦ।।
ଆସୁଥିଲି କିପାଁ ନ ଆସିଲି ମହାନାଟ ପରେ ନିମନ୍ତ୍ରିଲି
ଢଳଟ୍ରେପା ପ୍ରାନ୍ତେ କବାଟ ଲାଗିଛି
ଚନ୍ଧି ମତ୍ତଗଜ ଚଳିଗଲି ।।୧ ।।

ଏକଚକ୍ରେ ରଥ ଚଳୁଥିଲି
ବେଙ୍କ ଚକେ ରଥ ନ ଚଳିଲି
ମହାନାଟ ପରେ ଅନଳ ଜଳୁଛି
ତଇଲ ପଡ଼ନ୍ତେ ଲିଭିଗଲି ।।୨।।

ମୂଳବଟଠାରୁ ଛନକଲା। ଖୋଲ ଗୁମ୍ଫାରେ ବନ୍ଧଣ କଲା।
ମହାନାଟ ପରେ ଅମୃତ ଯୋଗାଡ ଧାଇଁ ଧାଇଁ କିପାଁ ନ ରହିଲି ।।୩।।

ବନ୍ଧ ନଥିବାରୁ ପାଣି ଥିଲା, ବନ୍ଧ ହେଲେ ପାଣି ବହିଗଲା
ସେ ବନ୍ଧ ହାଣନ୍ତେ ତଳକୁ ଖସନ୍ତେ ଉପରକୁ ପାଣି ବହିଗଲି ।।୪।।

ରାଜ ପାହୁଣ ଦିବସ ହେଲି
ନିଜପଥ ଆଉ ନ ଦିଶିଲି
ବିହାରୀ କହଇ ସେ ପାଦକୁ ଧ୍ୟାୟୀ
ଅଧରସେ ରସ ପାନ କଲି

**

**

# ନିଶି ଅବଶେଷେ ଦେବାଧିରାଏ

**ଶ୍ରୀମତୀ କୁଞ୍ଜଲତା**

(ରାଗ-ରସକୋଇଲି)

ନିଶି ଅବଶେଷେ ଦେବାଧି ରାଏ
ପ୍ରଥମେ ମଙ୍ଗଳ ଆଳତି ହୋଏ
ତିନି ଲୋକେ ଏକ ତିନି ଆଳତି
କି ଶୋଭା ଦିଶନ୍ତି ନୀଳାଦ୍ରି ପତି ସେ
କି କହିବି ମୁଖ ଶୋଭା ହେ
କୋଟିଏ ଅରୁଣ ତେଜକୁ ଗଞ୍ଜଇ
ଦିଶଇ ଶ୍ରୀମୁଖ ପ୍ରଭା ହେ ॥ ୧ ॥

କପୋଳରେ ହୀରା ଚିତା ପ୍ରକାଶି
ଆକାଶରେ ଯେହ୍ନେ ନକ୍ଷତ୍ର ଦିଶି
ନାନା ଫୁଲେ ନାକୁ ଆସି ଶୋହଇ
ଝୁଟି ଝୁନି ରାହୁରେଖା ଦିଶଇ ସେ
ବିମ୍ବାଧରେ ମନ୍ଦ ହାସ ହେ
ଚତୁର୍ଦ୍ଦଶ ଲୋକେ ଦର୍ଶନ କରନ୍ତି
ଦେଖି ସେ ସମସ୍ତ ବେଶ ହେ ॥ ୨ ॥

ଆଳତି ଦେଖିଣ ଯେ ସର୍ବଲୋକ
ଜଏ ଜେତେ ରୂପେ କରନ୍ତି ଡାକ
କେହୁ ହରି କେହୁ ହେ ଗୋପୀନାଥ
କେ ବୋଲେ ମୋ ଜନ୍ମ ହୋଇଲା ସାର୍ଥ ହେ
ଶୁଣନ୍ତି ଶ୍ରୀ ଜଗନ୍ନାଥ ହେ
ଶୁଣିଣ ଭାବ ଅନୁରୂପେ ସିଦ୍ଧି କି
କହନ୍ତି କମଳା କାନ୍ତ ହେ ॥ ୩ ॥

ଆଳତି ସାରଣ ବେଶ ଉଲଗି
ସ୍ନାନକୁ ଯେ ପ୍ରଭୁ ଲଡପ ଲାଗି
ଅବକାଶ ବେଳେ ନୀଳାଦ୍ରୀ ରାଏ
ରତ୍ନ ସିଂହାସନେ କର ବିଜସ୍ୱେ ହେ
ଛତିଆ ନିଯୋଗ ଆସି ହେ
ଯେ ଯାହା ସେବାରେ ନିଯୁକ୍ତ ହୁଅନ୍ତ
ବାଲ ବୃଦ୍ଧ ଯୁବା ମିଶି ହେ ॥ ୪ ॥

ଅବକାଶ ସାର ହୋଇ ସୁବେଶ
ବଲ୍ଲଭ ଭୋଗ ଭୁଞ୍ଜ ପୀତବାସ
ଖଇ କୋରା ଦଧି ଲବଣ ସର
ଏପର ବହୁ ପ୍ରକାରେ ସମ୍ଭାର ହେ
ଭୁଞ୍ଜନ୍ତ ଶ୍ରୀ ଯଦୁପତି ହେ
ବଲ୍ଲଭ ସାର ଧୂପକୁ ଉଦ୍‌ଯୋଗ
କରନ୍ତ ସର୍ବେ ଭକତ ହେ ॥ ୫ ॥

ଧୂପରେ ଶ୍ରୀପ୍ରଭୁଙ୍କର ଭୋଜନ
ଷଡ଼ରସ ଚଉଷଠି ବ୍ୟଞ୍ଜନ
କ୍ଷୀରଖେଚଡ଼ି ନାନା ପିଠାମାନ
କେ କହି ପାରବ ତାହାଙ୍କ ନାମ ହେ
ଭୁଞ୍ଜନ୍ତ ଶ୍ରୀ ବାସୁଦେବ ହେ
ଟେରା ଫିଟାଇଣ ଆଳତି ହୁଅନ୍ତ
ଦେଖନ୍ତ ସକଳ ଦେବ ହେ ॥ ୬ ॥

ଶ୍ରୀମହାପ୍ରସାଦ ଭିତରୁ ଆଣି
ଯେ ଯାହା ଇଚ୍ଛାରେ ନିଅନ୍ତ କଣି
ମହାପ୍ରସାଦ ମହିମା ଅପାର
ଯାହା ନ ଲଭନ୍ତ ବ୍ରହ୍ମାଶଙ୍କର
ସେ ମହାପ୍ରସାଦ ପାଇ ହେ
ଋଷିଙ୍କ ବେଶରେ ନାରଦ ସେବଲେ
ଶ୍ରୀଲକ୍ଷ୍ମୀଙ୍କ ପୁରେ ଯାଇ ହେ ॥୭ ॥

ସେ ମହାପ୍ରସାଦ ଏଠାରେ ଜୀବ
ଭୁଞ୍ଜିଲେକ ପକ୍ଷୀ ଜନ୍ତୁ ଧିଁ ନର
ବ୍ରାହ୍ମଣ କ୍ଷତ୍ରିୟ ଶୂଦ୍ର ଚଣ୍ଡାଳ
ଭୁଞ୍ଜନ୍ତି ହୋଇ ସର୍ବେ ଏକ ମେଳ ହେ
ସେ ମହାପ୍ରସାଦରେ ମୋ ଭକ୍ତି ହେ
ଏତିକ ଅନୁଗ୍ରହ କର ମୋ ଠାରେ
ଆହେ ଶ୍ରୀ କମଳାପତି ହେ ॥ ୮ ॥

ପ୍ରତିଜ୍ଞା କରିଲେ ଶ୍ରୀ ଶାକମ୍ବରୀ
ଭୁଞ୍ଜିବେ କୀଟ ପତଙ୍ଗାଦି କରି
ଶ୍ରୀମହାପ୍ରସାଦ ମହିମା ଭାବି
ସଦାଶିବ ହୋଇ ଅଛନ୍ତି ଯୋଗୀ
ସେ ମହାପ୍ରସାଦରେ ବିଶ୍ୱାସ ହେ
ବେନି କର ଯୋଡ଼ି ପଦ୍ମପାଦେ ପଡ଼ି
ମାଗୁଛି ନ ଭାଙ୍ଗେ ଆଶ ହେ ॥ ୯ ॥

ଧୂପ ସାରି ବେଶ ଉଲଗି କରି
ଭୋଗ ମଣ୍ଡପରେ ଶ୍ରୀ ଗିରିଧାରୀ
ଛପନ ପ୍ରକାରେ ଯେ ଭୋଗ ମାନ
ତହିଁରୁ ଶ୍ରୀହରି କଲେ ଭୋଜନ ହେ
କର୍ପୂର ବଡ଼ିଆ ଦେଇ ହେ
ଛନ୍ଦ ଭୋଗ ସାରି ମଧ୍ୟାହ୍ନ ଧୂପକୁ
ଆରମ୍ଭ କଲେକ ଯାଇ ହେ ॥୧୦॥

ମଧ୍ୟାହ୍ନ ଧୂପରେ ଶ୍ରୀ ଗୋପୀକାନ୍ତ
ଅନ୍ନ ବ୍ୟଞ୍ଜନ ଭୁଞ୍ଜନ୍ତି ବହୁତ
ଟେର ଫିଟାଇ ହୁଅଇ ଆଳତି
ତାମ୍ବୁଲ ବଡ଼ିଆ ଲାଗି ହୁଅନ୍ତି ସେ
ନିଦ୍ରାରେ ଅଳସ ଦେହ ହେ
ମଧ୍ୟାହ୍ନ ସମୟେ ପ୍ରଭୁ ପହଡ଼ିଲେ
ପହୁଡ଼ ଆଳତି ହୋଇ ହେ ॥୧୧॥

ଏବା ଅନ୍ତେ ସନ୍ଧ୍ୟା ହେଲା ପ୍ରକଟ
ସକଳ ସେବକ ମନ୍ଦିରେ ଭେଟ
ଜନ୍ତ୍ରା ତେଜ ଲୋକ ତ୍ରୈଲୋକ୍ୟ ମଣି
ସିଂହାସନ ବଜେ ଚକ୍ରପାଣି
ଶଙ୍ଖଚକ୍ର ବେନହସ୍ତ ହେ
ସନ୍ଧ୍ୟା ସମସ୍ତରେ ଆଳତି ହୁଅନ୍ତି
ଦେଖନ୍ତି ସକଳେ ଭୃତ୍ୟ ହେ ॥୧୨॥

ସନ୍ଧ୍ୟା ଧୂପରେ ଶ୍ରୀ ନନ୍ଦନନ୍ଦନ
ଭୋଜନ କଲେ ଯେ ସାମଗ୍ରୀମାନ
ପିଠା ପଖାଳ ନାନା ବଡ଼ାମାନ
ଭୋଜନ କଲେ ଶ୍ରୀ ମଧୁ ସୂଦନ
ଶେଷ ଫିଟାଇ ଆଳତି ହେ
ତାମ୍ବୁଲ ବଡ଼ଆ ଲାଗୁ ହୋଇ ପ୍ରଭୁ
ଚନ୍ଦନ ଲାଗି ହୁଅନ୍ତି ହେ ॥୧୩॥

କର୍ପୂର ଚନ୍ଦନ ଚୂଆ କସ୍ତୁରୀ
କେଶର ଆଦି ବିଲେପନ କରି
ବଳଭଦ୍ର ଦେବ ସୁଦରଶନ
ସମସ୍ତେ ଲାଗି ହୋଇଲେ ଚନ୍ଦନ
ମଣିମା ଶ୍ରୀ ଚିନ୍ତାମଣି ହେ
ଚତୁର୍ଦ୍ଦଶ ଲୋକ ଦର୍ଶନ କରନ୍ତି
ଯୋଡ଼ିକରି ବେନି ପାଣି ହେ ॥୧୪॥

ତେତିଶ କୋଟି ଦେବେ ଯୋଡ଼ିକର
ସ୍ତୁତି କରୁଛନ୍ତି ବ୍ରହ୍ମାଶଙ୍କର
ଯୋଗୀ ବ୍ରହ୍ମର୍ଷି ଯେ ମୁନି ଋଷି
ବ୍ରହ୍ମଜ୍ଞାନୀ ବ୍ରହ୍ମବେଦୀ ସନ୍ୟାସୀ ହେ
ଜଗମୋହନରେ ରହି ହେ
ଶ୍ରୀ ଜଗନ୍ନାଥଙ୍କ ଦର୍ଶନ କରନ୍ତି
ଯେ ଯାହା ଭାବକୁ ଧାଇଁ ହେ ॥୧୫॥

ଚନ୍ଦନ ଲଗିଲେ ହେ ହୃଷୀକେଶ
ଭକ୍ତ ଅନୁରୂପେ ହୋଇଲେ ଦୃଶ୍ୟ
ଭକ୍ତ ଯେଉଁ ରୂପେ ଭାବନା କର
ସେହି ରୂପେ ଦୃଶ୍ୟ ହୋଇଲେ ହର ହେ
ଭକ୍ତ ବତ୍ସଳ ଶ୍ରୀପତି ଯେ
ଲକ୍ଷ୍ମୀ ଯେ ଅନେକ ତପସ୍ୟା କଲେ
ଗୋପୀ ହେଲେ ପ୍ରିୟବନ୍ତି ହେ ।।୧୬।।

ଗରୁଡ଼ ପକ୍ଷରେ ରହିଣ ମନ
ସଦା ଧ୍ୟାନ କର ନନ୍ଦନନ୍ଦନ
ତ୍ରିଭଙ୍ଗୀ ଛନ୍ଦରେ ହୋଇଣ ଛିଡା
ପଦ୍ମରେ ନୂପୁର ପାଉଛି ଶୋଭା ହେ
କଟୀରେ ପୀତଦୁକୂଳ ହେ
ହୃଦରେ ସୁବର୍ଣ୍ଣ ପଦକ ଲମ୍ବିଛି
ତଥି ପରେ ବନମାଳ ହେ ।।୧୭।।

କରରେ କଙ୍କଣ ହସ୍ତରେ ମୁଦି
କର୍ଣ୍ଣରେ କୁଣ୍ଡଳ ଅରୁଣ ନନ୍ଦି
କଣ୍ଠରେ ମୁକୁତା ମାଳ ଲମ୍ବଇ
ନାସାରେ ଶ୍ରୀଫଳ ମୁକୁତା ଶୋହି ହେ
କସ୍ତୁରୀ ତିଳକ ଠାଣି ହେ
ତଥି ମଧ୍ୟରେ ଯେ ଗୋରଚନା ଟୋପା
ନୀଳମେଘେ ଜଣାମଣି ହେ ।। ୧୮ ।।

ଚୂଳରେ ଚନ୍ଦ୍ରିକା ବଙ୍କିମ ଚୂଡ଼ା
କେତକୀ କୁଙ୍କୁମ ତହିଁରେ ବେଢ଼ା
ତରଛ ଗୁହାଣୀ ନୂପୁର ହାସ
ଚରଣେ ଚିହ୍ନ ଧ୍ୱଜ ବଜ୍ରାଙ୍କୁଶ ହେ
ମୋହନ ମୁରଲି ହସ୍ତେ ହେ
ହରିଚନ୍ଦନ ସର୍ବାଙ୍ଗେ ସୁଲେପିତ
ଏହି ରୂପେ ମୋର ଚତେ ହେ ।। ୧୯ ।।

ଏହି ରୂପେ ମୋତେ ହୋଇବ ଦୃଶ୍ୟ
ଚରଣରେ ଦେଖା ତୁଳସୀ ପୁଷ୍ପ
ବାମରେ ଶ୍ରୀମତୀ ରାଧା ସୁନ୍ଦରୀ
ତାଙ୍କ ଚରଣେ ମୁଁ ଅନୁସରି ହେ
କରାଅ ରାଧିକା ଦାସ ହେ
ମୋତେ କୃପାମୃତ ସିଞ୍ଚିବା ଉଚିତ
ନକର ମୋତେ ହରାଣ ହେ ॥୨୦॥

ତଳେ ମୋ କପଟ ଭାବକୁ ଦଥି
ତୁମ ପ୍ରିୟା ପାଦ ସେବା କରାଅ
ତୁମ୍ଭ ନିଜ ଧାମେ କରାଅ ଜନ୍ମ
ତୁମ୍ଭ ଦୁହିଁଙ୍କଠାରେ ହେଉ ପ୍ରେମ ହେ
ଏହି ବାଞ୍ଛା ପୂର୍ଣ୍ଣ କର ହେ
ବ୍ରହ୍ମା-ରୁଦ୍ରାଦି ଯେଉଁରେ କଥା ନାହିଁ
ନ ରୁଚେ ବୈକୁଣ୍ଠପୁର ହେ ॥୨୧॥

ଜନ୍ମ ମରଣ କେତେ ପଥ ଭ୍ରମେ
ଦୁଃଖ ଭୁଞ୍ଜାଇଲ ନାନା ଆଶ୍ରମେ
କେତେକ କଷ୍ଟରେ ମନୁଷ୍ୟ ଦେହ
ତୁମ୍ଭ ଯୁଗଳ ସେବାକୁ ଇଛଇ ହେ
ଶ୍ରୀ ଗୁରୁ କୃପାରୁ କରି ହେ
କର ଇଚ୍ଛାରେ କି ଭେଜନ କାମନା
ପୁରାଅ ମୁରଲୀଧାରୀ ହେ ॥୨୨॥

ବଡସିଂହାର ବେଶରେ ମାଧବ
ଲାଗି ହୋଇଲେ ଶ୍ରୀ କର ପଲ୍ଲବ
ମାଳ ଲମ୍ବିଅଛି ପାଦ ତଳକୁ
ତୁଳସୀ କେତକୀ ଶୋଭା ଚୂଳକୁ ହେ
ନାନା ଫୁଲେ ହୋଇ ସଜ ହେ
ବେଶ ସାରି ପ୍ରଭୁ ମଣୋହି କରନ୍ତି
ଅଖିଳ ବ୍ରହ୍ମାଣ୍ଡ ରାଜ ହେ ॥୨୩॥

ଭୋଗ ସାର ପ୍ରଭୁ ହୋଇ ଆଳନ୍ଦ
କର୍ପୂର ବଡ଼ଆ ଲାଗି ହୁଅନ୍ତ
ପୁଷ୍ପ ଆଞ୍ଜୁଳିରେ ଜଳ। ଶ୍ରୀ ମୁଖ
ଦେଖିଲେ ମନରେ ନ ଥାଇ ଦୁଃଖ ହେ
ରତ୍ନ ପଲଙ୍କକୁ ଆଣି ହେ
ବଡ଼ଆ ପଇଡ ଲାଗି ହୋଇ ପ୍ରଭୁ
ପହୁଡ଼ିଲେ ଚକ୍ରପାଣି ହେ ॥୨୪॥

ଜଗନ୍ନାଥଙ୍କର ଯେ ଲୀଳାମାନ
କହି ନ ପାରବେ ଦେବତା ଗଣ
ନୀଳାଚଳ ଲୀଳା ଶ୍ରୀ ପ୍ରଭୁଙ୍କର
କେ କହି ପାରବ ମନୁଷ୍ୟ ଛାର ହେ
ଜଗନ୍ନାଥ କୃପା କର ହେ
ସହସ୍ର ମୁଖରେ ଅନନ୍ତ କହିବେ
ଯଦି ଲେଖେ ଗଣେଶ୍ୱର ହେ ॥୨୫॥

ତିନି ଭୁବନରେ ମୁଁ ବଡ଼ ନୀଚ
ହୋଇଅଛି ପାପୀ ମାନଙ୍କ ଉଚ
ଜଗତ ଭିତରେ ମୁଁ ବଡ଼ଦୁଃଖୀ
ସେବା ବୃତ୍ତି ଦେଇ କରାଅ ସୁଖୀ ହେ
କୃଷ୍ଣଚନ୍ଦ୍ର କୃପା କର ହେ
ଦନ୍ତରେ ତୃଣ ଧରି ମୁଁ ଶରଣ
ପଶୁଅଛି ଶ୍ରୀ ପଦ୍ମର ହେ ॥ ୨୬॥

କୁଂଜବିହାରୀ ହେ ତୁମ୍ଭ ଚରଣ
କଂଜାଳ ଯାଉ ଦିଅ ଦାସୀ ପଣ
ଲଭିବ ଭକ୍ତ କ ସଂପଦ ବଧି
ତାରତ ଏ ଭବ ଜଳ ବାରଧି ହେ
ଦାବାନଳେ ମୋର ଦୋଷ ହେ
ଶୀଘ୍ର ନାଶ କର ଆହେ ମହାପ୍ରଭୁ
ରଖ ନେଇ ତୁମ୍ଭ ପାଶ ହେ ॥୨୭॥

କୁଂଜଲତା ଏହୁ ଗୀତରେ ଗାଇ
କର ଯୋଡ଼ି କୁଂଜେ ସେବା ମାଗଇ
କରୁଣାକର ଶ୍ରୀ ଗୋପୀନାଥ
ବ୍ରଜେ ଗୋପୀଙ୍କର ହୋଇବ ଭୃତ୍ୟ ହେ
କୃପାସିନ୍ଧୁ ନାମ ଧର ହେ
ଶୁଣିଣ ହୃଦେ ମୁଁ ଭରସା କରୁଛି
ହୋଇବ ବୋଲି କିଂକରୀ ହେ ॥୮॥

**

**

# ପ୍ରଭୁ ହେ

## ସୋମନାଥ ସିଂହ ଜଗଦେବ

(ଊନବିଂଶ ଶତାବ୍ଦୀ)

ପ୍ରଭୁ ହେ ବହୁତ ଦୁଃଖ ହୋଇଲା
ସିନ୍ଧୁ ନନ୍ଦନୀ ବଲ୍ଲଭ ପଦ୍ମ ପାଦ
କୃପାତ ମୋହରେ ନୋହିଲା ।।ଘୋଷା।।

ଜଣାଇବ ଶ୍ରୀ ଗୁରୁରେ ବୋଲି କରି
କରିଥାଏ ମନ ଭାଳେଣି
ଚଉଦ ବ୍ରହ୍ମାଣ୍ଡ ପ୍ରଭୁ ଆଉ ଆଉ
ଚିନ୍ତା ହେବ କାହିଁକି ପୁଣି ।।୧।।

ଶ୍ରୀ ଗୁରୁରେ ସେବା ବଡ ଭରସା ମୋ
ଅଭୟ ହେଲି ଚିତ୍ତରେ
ଗୁହାରି ନ ଶୁଣି ମୋର ମହାମେରୁ
ପ୍ରଭୁ କରୁଣା କି ଟଳିରେ ।।୨।।

ଯାହାର ଶ୍ରୀ ମୁଖ ଦର୍ଶନ ମାତ୍ରକେ
ଅନ୍ଧ ପାଇଲା ଚକ୍ଷୁଦାନ
ସେହି ଶମ୍ଭୁକୁ ସେବା କରି କରି
ହୋଇଲି ଏବେ ହୀନ ମାନ ।।୩।।

ଜନ୍ମା ଯେ ବହିବ ଭୃତ୍ୟ ନାଶ ହେବ
ତୁମ୍ଭର ଦେଖିଣ କପଟ
ଅକାଟ ନୋହୁ ଶ୍ରୀ ମୁଖେ ଆଜ୍ଞା ହେଉ
ଯାଉ ଏବେ ମୋର ସଙ୍କଟ ।।୪।।

ହାସ୍ୟ ହୋଇଲଣି ବେଳକୁ ବେଳକୁ
ଦେଖି ନ ଶୁଣି ମୋର ଦୁଃଖ
କେତେଦୂରେ କରବର ଡାକଲାରୁ
ରଖିଲ ତାକୁ ପଦ୍ମ ମୁଖ ॥୫॥

ଯାହା ମହିମାତ ଅପାରୁ ଅପାର
ଶୁଣିଣ ପଶିଲି ଶରଣ
ଶରଣ ରକ୍ଷଣ ଦ୍ରୌପଦୀ-ତାରଣ
ତୁମ୍ଭ ଆଜ୍ଞା ମୋର କାରଣ ॥୬॥

ଯେତୁ ଦେଖିଥାଇ ସେ ସିନା ଜାଣଇ
ଆଉ କେ ଜାଣିବ କହତ ?
ମାରକଣ୍ଡ ଋଷି ଭସି ଯାଉଥିଲେ
ରଖିଲେ ପତ୍ର ଯେ ତାହାଙ୍କୁ ॥୭॥

ଦୟାସାଗର ଭଜିଲେ ଲୋକେ ଶୁଣି
ହୋଇବେ ବଡ ଆଚମ୍ବିତ
ଅଚନ୍ତା ପୁରୁଷ ଚନ୍ତା ଯାଉ ନାହିଁ
ବେଳ ପୁର ମଧ୍ୟତ ॥ ୮ ॥

ମଣିମା ମୁଁ ଯାହା କହୁଛୁ ଶୁଣିମା
ଆସୁ ଦ୍ରବ୍ୟ ଅବଧାନକୁ
ଲଲାଟ ପଟେ ନ ଥିବ ଯାହା ଲେଖା
ବସ୍ତୁରଲେ ହେବ ତାହାକୁ ॥ ୯ ॥

ଅବ ଧାନକୁ ଆସୁ ଯା' ଜଣାଉଛୁ
ଚଉରେ କରବା ବିସ୍ତର
ଚନ୍ଦ୍ରେ ସୋମନାଥ ଜଗଦ୍ଦେବ ବୀର
କର ରାଧାକୃଷ୍ଣ ପସ୍ତର ॥ ୧୦ ॥

**

**

## ଦେଖ ଦେଖ ପଦ୍ମମୁଖ

### ସୋମନାଥ ସିଂହ ଜଗଦେବ

(ମାଳଶ୍ରୀ)

[ଊନବିଂଶ ଶତାବ୍ଦୀ]

ଦେଖ ଦେଖ ପଦ୍ମମୁଖ ମହାମେରୁ
 କ୍ଷୟ ହୁଏ କୋଟି ଜନ୍ମର ଦୁଃଖ ॥ଘୋଷା॥

ଶିର ଶୋଭୁଛନ୍ତି ସେବତୀ ପୁଷ୍ପ
ଶ୍ରୀ ରଙ୍ଗା ଅଧରେ ଲାବଣ୍ୟ ହାସ
କରୁଛନ୍ତି ପ୍ରଭୁ ଜଗତେ ବାସ
ଚକା ନୟନେ ମୋହନ୍ତି ଦିଗଦଶ ॥ ୧ ॥

ଠେକ ନାସାକୁ ଶୋଭଇ ବସଣୀ
କର୍ଣ୍ଣେ କୁଣ୍ଡଳ କଣ୍ଠେ ନାନା ମଣି
ହୃଦେ କଉସ୍ତୁଭ ବସିଛେ ପୁଣି
ତେଜ ବିକାଶ ଦିନମଣି ଯେହ୍ନ ॥ ୨ ॥

କପୋଳେ ଜମ୍ବୁନଦ ଠିଆ ଚିତା
ଏଥିପରେ ଅଛି ଗଜ ମୁକୁତା
ଭୁଜ ଟେକିଛନ୍ତି ଜଗତକର୍ତ୍ତା
ଭକତ ବାନ୍ଧବ ତ୍ରୈଲୋକ୍ୟ ପିତା ॥୩ ॥

ସିଂହ କଟିରେ ଶୋହେ ପିତାମ୍ବର
ତହିଁ ଭିଡିଛନ୍ତି କିଙ୍କିଣୀ ସାର ॥ ୪ ॥

ରତ୍ନ ସିଂହାସନ ଚକା ଉପରେ
ବିଜେ କରିଛନ୍ତି ନୀଳ କନ୍ଦରେ ॥ ୫ ॥

କରୁଣା କଟାକ୍ଷ ହେଉ ମୋ ଠାରେ
ସୋମନାଥ ସିଂହ ରାଜା ବିସ୍ତରେ ॥ ୬ ॥
**

**

## କାହିଁ ତୋ ଦୟା ନୋହିଲା

### ସୋମନାଥ ସିଂହ ଜଗଦେବ

[ଊନବିଂଶ ଶତାବ୍ଦୀ]

କାହିଁତୋ ଦୟା ନୋହିଲା
କମଳ ଲୋଚନ ପ୍ରଭୁ ଆଉ ଆଉ
ମୋ କର୍ମ ବିଫଳ ହୋଇଲା ହେ ॥ ଘୋଷା ॥

ନୀଳାଚଳେ ଥାଇ ଡାକଲେ ନ ଶୁଣ
ଏ କଥା ସନ୍ଦେହ ଲାଗିଲା
କେତେ ଦୂରେ ଗଜରାଜ ସୁମରନ୍ତେ
ସେ କଥା କର୍ଣ୍ଣକୁ ଶୁଭିଲା ହେ ॥

ମହା ଘୋର କଷ୍ଟ ଗାନ୍ଧାରୀ ନନ୍ଦନ
ସଭାରୁ ଦ୍ରୌପଦୀ ଡାକିଲା
କୋଟି ବସ୍ତ୍ର ପାଇ ଖଳମତି ପଣ
ବଦନେ କାଳି ଲଗାଇଲା ହେ ॥

ଆଉର କଥାଏ ଶୁଣି ଅଛୁ କର୍ଣ୍ଣେ
ପାଷାଣ ଯୁବତୀ ହୋଇଲା

ଶ୍ରୀ ରଘୁନନ୍ଦନ ଚରଣ ଲାଗିଣ
ପଦ୍ଧଭକ୍ତେ ଲେଖା ହୋଇଲା ।।

ଘୋର ବନେ ପଶି କୁରଙ୍ଗୀ ନନ୍ଦନ
କୁରଙ୍ଗୀ କ ଦଶା ପଡିଲା
ଦୀନବଂଧୁ ନାମ ହୃଦରେ ଧରନ୍ତେ
କେଡ଼େ ବିପତ୍ତିତା ଗୁଞ୍ଜିଲା

କମଳାକାନ୍ତକୁ ଭରସା କରିଣ
ଲୋକ ହସା ଏବେ ହୋଇଲା
ଭଣେ ସୋମନାଥ ଅନୁକୂଳ ପନ୍ଥ
ଏ ନିନ୍ଦା କାହାକୁ ହେ ଇଲା
**

**

# ଛାଡ଼ ମାଡ଼ଖିଆ ବୁଦ୍ଧି ହେ

## ବୈଷ୍ଣବ ପାଣି

[ ବିଂଶ ଶତାବ୍ଦୀ ]

ଛାଡ଼ ମାଡ଼ଖିଆ ବୁଦ୍ଧି ହେ
 ବଡ଼ ଦେଉଳ ବଡ଼ ଗୋସାଇଁ
ଯେ ମାଇଲା ମାଡ଼ ସେ ହୋଇଲା ବଡ
 ବାଡ଼ ହେଲୁ ତାକୁ ତୁହି ॥ ଘୋଷା ॥

ମାଡ଼ଦେଲା ଗୋପେ ଗଉଡ଼ୁଣୀ ରାଧା
 ତା' ଗୋଡ଼ ଧଇଲୁ ତୁହି
ନନ୍ଦ ଖଡ଼ ଗୁଣ୍ଟ ଆଣ୍ଠେ ପିଟିବାରୁ
 ଦେଲୁ ବଇକୁଣ୍ଠ ଭୂଇଁ ॥ ୧ ॥

କାମୁଡ଼ିଲା କାଳୀ ପାଦେ ବନମାଳୀ
 କାଳିନ୍ଦୀ ହ୍ରଦରେ ଆଇଁ
କଠାହର ଚିହ୍ନ ତା'ଶିରେ ମୋହନ
 ଦେଲୁ କାହିଁ ଅଛି ରହି ॥ ୨ ॥

ଉଗ୍ରପଣେ ଉଗ୍ରସେନ ଉଗାଳିଲା
 ଲଉଡ଼ି କରେ ଉଞ୍ଚାଇ
ତାର ଶିରେ ପାଟ ଦେଲୁ ନନ୍ଦସୁତ
 କହଣ ମଥୁରା ସାଇଁ ॥ ୩ ॥

ପାଣ୍ଡବଙ୍କ ପାଇଁ ପଦ୍ମ ମାଗି
ମାଡ଼ଖାଇ କଲୁ ରଣଜୟୀ
ପାଦ ପ୍ରହାରନ୍ତେ ଶ୍ରୀବତ୍ସ ବ୍ରାହ୍ମଣ
ତା' ପାଦକୁ ଅଛୁ ବହି ॥ ୪ ॥

ମାଙ୍କୁଆ ମୋହନ ମାଡ଼ ବନୁ ଆନ
ଯୋଗ ତୋ' କରମେ ନାହିଁ
ବଇଷ୍ଣବ ଭକ୍ତ କଣ୍ଢୁଆ ଧରିଛୁ
କରେ ଲଗାଇବା ପାଇଁ ॥ ୫ ॥
**

**

## ଦଗାଦଆ ରଙ୍ଗାଧର

### ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

ଦଗାଦଆ ରଙ୍ଗାଧର
ଅଘା ତାଳୁ ଭଙ୍ଗା ଗାଈ ଜଗା
ଦହି ସ୍ବେର ହେ ॥ ପଦ ॥

ନାହିଁ ଲଗା ପଘା ତୋତେ
ବାନ୍ଧିକେ ରଖିବ ହାତେ
ଯୋଗେ ଜାଗି ଯୋଗୀ ଜନେ
ନୋହିଲେ ପାଖର ହେ ॥ ୧ ॥

ଜଗା ଜଗା ଡାକ ଡାକ
ଜୀବନ ଥିବ ଏଣିକ

ଝଘା ନ ରଖିଲେ ଜାଗା
ନାହିଁ ଏଥି ମୋର ହେ ॥ ୨ ॥

ଗଙ୍ଗା ସ୍ନାନ ଜପତପ
ଯୋଗାଯୋଗ ଏ ମୋ ଲୋପ
ଡଙ୍ଗାବୁହା ରଙ୍ଗାପଦ
କଣଅଛି ସାର ହେ ॥୩॥

ସେ ବଡ ସିଂହାର ବେଶ
ଦେଖୁଥିବ ପୀତବାସ
ବଇଷ୍ଣବ ଷଣ୍ଡ
ରତ୍ନସିଂହାସନ ଚୋର ହେ ॥୪॥

**

***

# ମିଛେ ନୀଳାଚଳ ନାଥ

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

ମିଛେ ନୀଳାଚଳନାଥ, ବସିଅଛୁ ନୀଳାଚଳେ
ପଣ୍ଡା ରନ୍ଧାଭାତ ଡାଲି ଗିଳଣ ବଡ ଦେଉଳେ ॥ପଦ॥

ଚଣ୍ଡାଗଣ୍ଡା ହଣ୍ଡାହଣ୍ଡା କାକର୍ ଆଣସା ମୁଣ୍ଡା
ଅଣ୍ଡା ହୋଇ ଦୁଇଭାଇ ଭଣ୍ଡି ଖାଇ ପାଞ୍ଚବେଳେ ॥୧॥

ଅସ୍ଥି ହେଲା ଯହୁଁ ଭେକ କପାଁ ଶୁଣିବ କା' ଡାକ
ଅରଜଲ ମହାସୁଖ ମଣ୍ଡି ଧଣ୍ଡା ବଢ଼ଚୂଳେ ॥୨॥

ମୁଣ୍ଡାମୁଣ୍ଡା କୁଣ୍ଡାପିଠା ଶେଷରେ ଉଣ୍ଡକୁ ମିଠା
ଭକତ ବଚନ ଖଣ୍ଡା ଲାଗିଯାଏ ଭୂ-ମଣ୍ଡଳେ ॥୩॥

କାଣ୍ଡିକେ ଭକତ ଯେତେ ତାହାଙ୍କ ଫାଣ୍ଡିରେ ତୋତେ
ଭକ୍ତ ବେଣ୍ଟ ଦେଇ ହାତେ ଥୋଇ ହୃଦ ବନ୍ଦୀଶାଳେ ॥୪॥

ବଗଡ଼ା ହୁଆ ଚଣ୍ଡୁଳ ଭକ୍ତି କପାଳ ଉଣ୍ଡାଳ
ଖଣ୍ଡ ବଇର ଭଞ୍ଜନ ପଣ୍ଡ ନୋହୁ କାଳେକାଳେ ॥୫॥

**

**

## ହାତୀ ମୁହାଁ ଜଗବନ୍ଧୁ

### ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

ହାତୀ ମୁହାଁ ଜଗବନ୍ଧୁ
ଜାତି ନାହିଁ ତୋହର ହେ
ଜାତି ଜ୍ଞାନ ଥିଲେ ଛତି
କରନ୍ତୁ କି ମୋହର ହେ ॥ପଦ॥

ନାହିଁ ଉଚ୍ଚ ନୀଚ ତୋର
କେ ଦ୍ୱିଜ କେ ବା ଚମାର
ଖାଇଲୁ ଅଇଣ୍ଠା ପାଣେ
ଯେ କଲା ଗୁହାର ହେ ॥୧॥

ପୋଇଲୁ ପୂଅ ବଢୁର
ଜଳ ସେ ତୋତେ ଆଦର

ଶାକ ଅନ୍ନ ଭୁଞ୍ଜି
ଖୁସି ମନେ ଗଲୁ ବାହାର ହେ ॥୨॥

ଗୋପାଳ ଝୋକାଏ କୋଳି
ଗୁଣି ଦେଲେ ବନମାଳୀ
ତା' ଗର୍ଭକୁ ଦେଲୁ ଗିଳି
ବୃନ୍ଦାବନ ବହାଘ ହେ ॥୩॥

ଦନ୍ତ କ୍ଷତ ଚୂତ ଫଳ
ହରଷେ କଲୁ କବଳ
ହେଲା ଶବଘ୍ନ ନବଘ୍ନ
ବର ଦେଲୁ ତାହାର ହେ ॥୪॥

ମୁଁ ବିପ୍ର ଡାକୁଛି ଏତେ
ବ୍ରୀଡ଼ା ମାଡ଼ୁଛି କେମନ୍ତେ
ବଇ ବୋଲେ ଫଣେ ଭୁଂଜ
ଅଙ୍ଗ ଉଠୁ ଶୀହଘ୍ନ ହେ ॥୫॥

**

**

# ବଡ଼ ପ୍ରଭୁ ବୋଲି

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

ବଡ଼ ପ୍ରଭୁ ବୋଲି ଯେତେ ମୁଁ ଡାକିଲି
ଜଡ଼ ପରି ହେଲୁ ତୋତେ
ଅଡ଼ ହେଲେ ଏ କାଳରେ କମ୍ବୁପାଣି
କେ ବଡ଼ କହିବ ତୋତେ

ଝାଡ଼ ବହାରି ହେ
ଯେବେ ରଖିବ ସେବକ ପଣ
ଲୋଡ଼ା ତା ଈଶ୍ୱର ଆହେ ରମାବର
ନ ହୁଅ କେବେ କୃପଣ ॥୧॥

ବଡ ତୋ ଦେଉଳ ବଡ ଘଣ୍ଟାମାଳ
ସେବକ ତୋ ବଡପଣ୍ଡା
ବଡ଼ଚୂଳ ନୀଳ ଚକ୍ରପରେ ତେଲ
ପକାଇ ହୋଇଛୁ ମଣ୍ଡା
ମୂଢ଼ ଚାରଣ ହେ
ପୁଣି ବଡ଼ ଖଣ୍ଡା ତୋ ଭଣ୍ଡାରେ
ବଡ଼ ଛତା ବଡ଼ ଦାଣ୍ଡ ବୋଲି ହୁର
ପଡ଼ୁଅଛୁ ବ୍ରହ୍ମାଣ୍ଡରେ ॥୨॥

ବଡ଼ଧୂପ ବଡ଼ ସିଂହାର ଘୂଲଛୁ
ଯେତେ କଥା ବଡ଼ ସବୁ
ଏକା ବୁଦ୍ଧି ଶ୍ରେଷ୍ଠ ନନ୍ଦରାଜା ସ୍ପଷ୍ଟ
କାହାକୁ କି କଷ୍ଟ ଦେବୁ
ଜଗମୋହନ ହେ
ଢଳେ ଠିକଣା ତୋ' କିଛି ନାହିଁ
ଦୁଃଖ ପରେ ଦୁଃଖ ଦେଇ ଆଉ ଟାଳି
ଯେ ସେବା ତୋର କରଇ ॥୩॥

ପ୍ରଭୁ ଯେବେ ନିଜ ଭୃତ୍ୟକୁ ଦଣ୍ଡିବ
କେ ଆଉ କରିବ କ୍ଷମା
ଧରିବ କାହାକୁ ହରିବ କିଏ ସେ
ରୋଗ ଶୋକ ଦୁଃଖ ସୀମା
ରମାରମଣ ହେ
ସବୁ ତୋର ବିପରୀତ
ବଇଷ୍ଣବ କହି ପରକୁ ବଞ୍ଚାଇ
ମରାଇଲୁ ନିଜ ସୁତ ॥୪॥

**

**

# ଘର ବୁଢ଼ା ଜଗବଂଧୁ

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

ଘରବୁଢ଼ା ଜଗବଂଧୁ ପର କଲୁ କାହିଁକି
ଶଙ୍ଖଚକ୍ର ଗଦାପଦ୍ମ ଚାରଭୂଜେ ନାହିଁକି ॥ପଦ॥

କାହାର ତୋଳାଇ ଦେଉ ସୁନା ଉଆସ
ନ ଦେଉ କାହାକୁ କୁଟା କାଠ ବାଉଁଶ
କାର କଷ୍ଟଦନ୍ତ ଖଟ କେ ଭଜଇ ମନ୍ଦୁକ ॥୧॥

ବାଁଶବନ ପରି ବଂଶ ବାଢ଼ଇ କାହିଁ
କାହାକୋଳେ ଏକ ଗୋଟି ସନ୍ତାନ ନାହିଁ
ଯଦି ମାଗି ଆଣେ ବଳେ ଦେଉ ଜନ୍ତୁ ସାଇଁକ ॥୨॥

ସ୍ୱର୍ଣ୍ଣ ସିଂହାସନେ କାକୁ ଧରଉ ଛତା
ଅନ୍ନ ଅନ୍ନ ଭଜକାର ହଜଇ ଚେତା
କେ ଜୀଅଇ ପୂର୍ଣ୍ଣ ଭୋଗେ କେ ରୋଗକୁ ବନ୍ଦୁକ ॥୩॥

ମୂରୁଖ ପଣେ କେ ପାଏ ଧନ ଅସଂଖ୍ୟ
ଜ୍ଞାନ ଅରଜନ କରି ମାଗେ କେ ଭିକ
ଶୋକେ ପଡ଼ି କେତେ ମରେ ନାକା ଦୁଃଖ ସନ୍ଦୁକ ॥୪॥

ହସି ହସି ହବା ଜଣି ଯାଉଛୁ କା'ର
କାହା ଚଉରୁ ନ ଛାଡ଼େ ଚନ୍ତା ନଜର
ନ ଦେବୁ ଆଉ କପଣ ତୋ ସେବକ ବଇଁକ ॥୫॥

**

**

# ଚକ୍ରଧର ହେ

## ବୈଷ୍ଣବପାଣି

(ବିଂଶ ଶତାବ୍ଦୀ)

ଚକ୍ରଧର ହେ, ତୋର ଠିକଣା ନାହିଁ
ଖଣାରେ ପକାଇ ବଣା କରୁଅଛୁ
କଣା ପରି ଜୀବ ମରୁଛି ଧାଇଁ

ଝଣାଝଣି ମିଛେ ଲଗାଇ ଦେଉଛୁ
କେ କାହା ଭଉଣୀ କେ କାହା ଭାଇ
କେ କାହାର ଶଳା, କେ କାହା ମଉଳା
କେ କାହାର ଝିଅ, କେ କାହା ଜ୍ୱାଇଁ ॥୧॥

ଗୋଟା ଦାଉଣୀର ଯୋଚଣ ଏହାକୁ
ମରୁଛି ମଝିରେ ଲହୁଣୀ ଖାଇ
ଏକା ଗଉଣୀରେ ଦନେ ପୁରାଉଛୁ
ଚିହ୍ନି ନ ପାରବ ଅଜାକୁ ଆଇ ॥୨॥

ମିଛେ କଣା ବିକା ତୋହର ଜୀବିକା
ମିଛେ ହଣାହଣି ଦେଖୁଛୁ ରହି
ଘଣା ପରି ଘୂରି ଦିବସ ଗ୍ରାଲୁଛୁ
ଅଛି ମିଛୁଆଙ୍କ ଗୁରୁ ଗୋସାଇଁ ॥୩॥

ତୋ ବିନା ଏ ଦେହ କି କହିବ କହ
ଘୋଷାରି ଗଳାରେ ପଘା ଲଗାଇ
ଦେଳକର୍ତ୍ତି ସତ ଥୋଇଛୁ ଜଗତ
ଦଇ ବୋଲେ ତୋତେ ଜାଣିଛୁ ସେହି ॥୪॥

**

**

# ଚଢ଼ି ରେଲ ଗାଡ଼ିରେ

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ

ଚଢ଼ି ରେଲ ଗାଡ଼ିରେ, ଚାଲ ମନ ନୀଳାଚଳକୁ
ଓହ୍ଲାଇଣ ସ୍ଟେସନେ ମିଳ ବଡ ଦାଣ୍ଡେ
ବୋଲ ମୁଣ୍ଡେ ରଙ୍ଗଧୂଳିକୁ ।।ପଦ।।

ମଶାକୁ ନ ଡର ବସା ଖର୍ଣ୍ଣେ କର
ବୁଲି ଯା' ବଡ ଦେଉଳକୁ
ରତ୍ନ ସିଂହାସନେ ଯତ୍ନେ ଛୁଇଁ ଶିର
ବେଢା ବୁଲି ଆସ ତଳକୁ ।।୧।।

ଯେବେ ହୁଏ ମନ କରୁ ଦେଇ ଧନ
କିଣ ଅରୁଆ ପଖାଳକୁ
ବଗଡ଼ା ଅଭଡା ଗିଲ ଥୋଡା ଥୋଡା
ବଳିଲେ ରଖ ସକାଳକୁ ।। ୨ ।।

ନରେନ୍ଦ୍ର ମାର୍କଣ୍ଡ ଚନ୍ଦ୍ର ତୀର୍ଥେ ବୁଡ଼ି
ଯାଅ ମହୋଦଧି କୂଳକୁ
ଇନ୍ଦ୍ରଦ୍ୟୁମ୍ନ ତୀର୍ଥରେ ସ୍ନାହାନ
ସାରି ଲଭ ବାଞ୍ଛା ଫଳକୁ ।। ୩ ।।

ଗୁଣ୍ଡିଚା ମନ୍ଦିର ଲୋକ ନାଥେଶ୍ୱର
ଦେଖି ନ ଯା' ଯମ ଆଲକୁ
ନାହିଁ ତାର ମୂଲ୍ୟ କିଣି ନିଅମାଲ୍ୟ
କୈବଲ୍ୟ ଫେରବା ବେଳକୁ ।।୪।।

ମାଲପାଠ ଫୁଲ ନ ଯା' କେବେ ଭୁଲ
ଯେ କୋଉ ଖଇର ଚୂଲକୁ
ଗାଆ ରେ ପନ୍ଧୁଞ୍ଜ ବାହ୍ୱାରେ ବାଣ୍ଟରୁ
ନ ଭଙ୍ଗ ବଇଆ ଖେଳକୁ ।। ୫ ।।

**

**

## ଭ୍ରାନ୍ତ ବକା ଜଗନ୍ନାଥ

### ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

ଭ୍ରାନ୍ତ ବକା ଜଗନ୍ନାଥ ଘୃତର ମଶବ ହେ
ଭାତରେ ଡାକ ଖାତରେ ପଡନ୍ତେ ଗରବ ହେ ।।ପଦ।।

ଇତର କରବେ ଅଛା ହେବୁ କେତେ ହଟ ହଟା
ଉଦର ଭୁଣ୍ଡରୁ ତେତେବେଳେ ନଷ୍ଟ ରବ ହେ ।।୧।।

ଗୋତର ମଗ ଗୋବନ୍ଦ ଭିତରେ ଟୋ ବଢ଼ମନ
ଭୁଞ୍ଜିବା ପତରେ ଧୂଳି କେ ନେଇ ଭରବ ହେ ।।୨।।

ଶୁଣିଛୁ ସୃଷ୍ଟିଭିତରେ ତାରନ୍ତୁ କେତେ ପାତରେ
ମିଛ ବୋଲ ମୋ ଅନ୍ତରେ ମଣଇ ସରବ ହେ ।।୩।।

ମାତର ତାହେଲେ ସତ ହାତରେ କ ରଖନ୍ତ
ସତର ଦେବଙ୍କୁ ବଇଷ୍ଣବ କ ବରବ ହେ ।।୪।।

**

**

# ହେଲା କରନା ହେ

## ବୈଷ୍ଣବ ପାଣି

(ବଂଶ ଶତାବ୍ଦୀ)

ହେଲା କରନା ହେ, ନୀଳାଚଳ ନାଥ ଆଉ
ବଳାଇଲ ଦୁଃଖ କଳାକର ମୁଖ
ତୋ ପରି ସ୍ବଭାବ ଆଉ ॥ପଦ॥

ମିଳାଇଲ ଦେହ ଜଳେ ଲୁଣ ପରି
ପଳାଇ ଯିବ ଏ ଜୀବ
ଟଳାଟଳ କଲେ ଲୀଳା ବିନୋଦିଆ
କେ କର୍ପା ତୋତେ ଭଜିବ ॥୧॥

ଲୋକଟା ଛକଟା କା'ଠାରୁ ଶିଖିଲୁ
ଭୁଲବୁଡ଼ା ନନ୍ଦବଳା
ଦୁରୁବଳେ ବଧି କି ଫଳ ପାଇବୁ
କୁରୁବଳ ଦମ୍ଭଟଳା ॥୨॥

ଭୁଲାପଟ ପରି ଶଇଳ ତୋଳିଲୁ
ଗୋକୁଳ ଆକୁଳ ଦେଖି
ମୋ ବେଳକୁ ଏବେ ପଛକୁ ଘଞ୍ଚୁଛୁ
ଲାଞ୍ଜ ଦେଇଥିଲେ ସେକି ॥୩॥

ଅରଜୁନେ ଶଳା ହୋଇ ନନ୍ଦଘୋଷ
ଚଳାଇଲୁ ଭାରତରେ
ଦେଲେ କି ଫୁଲାଏ କୋଳ୍ପ ପାଞ୍ଚ ପୋଏ
ସ୍ୱାମୀ ନୀଳା ତୋ ହାତରେ ॥୪॥

ନିଜଗୋଇ ନଜେ ନ ଖୋଲା ସହ୍ଲେ
ଜଳଧି ଜେମା ବଲ୍ଲଭ
ବଇଷ୍ଣବ ଙ୍କଲେ ସ୍ପେ ଶୋକଙ୍କଲେ
ବଢ଼ା ଚୋ କର ପଲ୍ଲବ ॥୫॥
**

**

## ଛୁଡ଼ା ହୋଇ ଜଗମୋହନ

### ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

ଛୁଡ଼ା ହୋଇ ଜଗମୋହନ
ଗରୁଡ଼ ପଛରେ ବହନ ଅନାରେ
ଧଳା ହଳଦିଆ କାଳିଆ ବଦନ
ଦେଖି ଦମ୍ଭକର ଚୂନାରେ ॥ପଦ॥

ରତ୍ନ ସିଂହାସନେ ବଜେ ଚଦନମୂର୍ତ୍ତି
କେ କାହାକୁ ଊଣା ଅଧିକା ନୁହନ୍ତ
ଝଟକଇ ହୀରା ମଣ୍ଡଳ ଉପରେ
ଅଟକଇ ନେତ୍ର ସିନାରେ ॥୧॥

ତା'ପରେ ସାଜଇ ଦମ୍ଭେଣାର ଚୂଳ
ବାହାରେ ଦୋଳଇ ତୁଳସୀର ମାଳ
ନୀଳପୀତପଟ ଶୋଭେ କଟୀତଟ
ଭୁଜେ ଭିଡ଼ାଅଛୁ ବାନାରେ ॥୨॥

ମାଣିକ୍ୟର ଦୀପ ଆଗରେ ଜଳଇ
କଳାମେଘେ କି ସେ ବିଜୁଳି ଖେଳଇ

ସ୍ବମର ଆଲଟ ପଡ଼େ ବେଳପଟେ
ବେଣ୍ଟ ଲଗିଅଛୁ ସୁନାରେ ॥୩॥

ମାଗି ଘେନ ମନ ଚଉବର୍ଗ ଫଳ
ନଷ୍ଟେ ତୋ କାମନା କରବେ ସଫଳ
ଛୁଡ଼ିଲେ ଏ ବେଳ ବଇଆ ପାଗଳ
ବନ୍ଦୀ ହେବୁ ଯମ ଥାନାରେ ॥୪॥

**

**

## ଦେଖ ବଉଳ ଗୋ

### ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

ଦେଖ ବଉଳ ଗୋ,
ବଡ ଦେଉଳ ଭିତର ବେଢ଼ା
ଅରୁଣ ଖମ୍ବକୁ ପାର ହୋଇ
ହୁଅ ପତିତପାବନେ ଛିଡ଼ା ॥ପଦ॥

ଏହାପରେ ଭୋଗ ମଣ୍ଡପରେ ମୁଣ୍ଡ
ମାର ଦେଖ ଗଣେଶଙ୍କୁ
କଳ୍ପ ବଟ ତଳେ ଅଳ୍ପ ରହିଗଲ
ରୋହଣୀ କୁଣ୍ଡ ପାଶକୁ ॥୧॥

ସ୍ବର ଭୁଜ ଧର ଭୁଷଣ୍ଡ ପଡ଼ିଛୁ
ସିଞ୍ଚ ଶିରେ ସେହି ଜଳ
ସେ କୁଣ୍ଡ ପଛରେ ନରେଖ ସ୍ୱଚ୍ଛରେ
ଦର୍ଶେ ବିମଳାଙ୍କ ଆଳ ॥୨॥

ଅଶେଷ କ୍ଷମତା ଧରିଛନ୍ତି ମାତା
ମନକଥା ତାଙ୍କୁ ଜଣା
ସେ କରୁଣା ଦୃଷ୍ଟି ପଡ଼ନ୍ତେ ତୋ'ପରେ
କିଛିହେଁ ନ ହେବ ଊଣା ॥୩॥

ଯମ ମାଆ ସାତ ଭଉଣୀ ତା' ବାମେ
ତା' ବାମେ ଗାବ ଦୋହନ
ଯେଉ ଶିକାଛନ୍ଦ ଗୋରୁଙ୍କୁ ଛନ୍ଦନ୍ତି
ଆନନ୍ଦେ ମନମୋହନ ॥୪॥

ଲକ୍ଷ୍ମୀ ଦେବୀଙ୍କର ଅଟଳ୍ଲା ମଣ୍ଡପ
ତା' ବାମେ ଦିଶେ ସୁନ୍ଦର
ସର୍ବ ଜୀବେପଡ଼ି ଦେଉଛନ୍ତି ରଙ୍ଗ
ଲାଗିଛି ନାନା ହୁନ୍ଦର ॥୫॥

କୋଇଲି ବୈକୁଣ୍ଠ କଇବଲ୍ୟ ହାଟ
ସ୍ନାହାନ ଆସ୍ଥାନେ ଦେଖି
ଏକ୍କାପରେ ବଢ ଦେଉଲେ ପଶିଣ
ବଇ ବୋଲେ ହେବା ସୁଖୀ ॥୬॥

**

**

# କି ମଧୁର ତନ ମୂରତି

## ବୈଷ୍ଣବ ପାଣି

[ବିଂଶ ଶତାବ୍ଦୀ]

(ରାଧାଗୋବିନ୍ଦ-ବୃନ୍ଦେ)

କି ମଧୁର ତନ ମୂରତି, ଆହା ଭୁଲି ମନରେ
ଅଟକି ଯାଉଛି ନୟନ ମନ ଭୁଲି ମନରେ
ଛଟକେ ସେ ସୁଧା କରଣ ପାନ ଭୁଲି ମନରେ ॥ ୧ ॥

ନୀଳ ପୀତପଟ ବେଶ କି ସାଜେ ଭୁଲି ମନରେ
କଳ୍ପ କଳ୍ପାନ୍ତର ଦୁରିତ ଗଞ୍ଜେ ଭୁଲି ମନରେ ॥ ୨ ॥

ଜଳପି ହେଉଛି ବିଷୟୀ ବିଷ, ଭୁଲି ମନରେ
କାଲେ ଜାଲେ ଭସ୍ମ କାଳର ବିଷ ଭୁଲି ମନରେ ॥ ୩ ॥

ହୃଦେ କଉସ୍ତୁଭ ବିଦ୍ୟୁତ୍‌ଝଲକେ, ଭୁଲି ମନରେ
ପକାଇ ନ ଦିଏ ନେତ୍ର ପଲକେ, ଭୁଲି ମନରେ ॥୪ ॥

ଆଗେ ଜଳେ ଗୁରୁ ମାଣିକ୍ୟ ଦୀପ, ଭୁଲି ମନରେ
ଜାଳିଦିଏ ଯେତେ ଯାତନା ପାପ ଭୁଲି ମନରେ ॥୫ ॥

କନକ ଆଲଟ ଗ୍ବମର ପଡ଼େ ଭୁଲି ମନରେ
କବି ବୈଷ୍ଣବ କରକୁ ଯୋଡ଼େ, ଭୁଲି ମନରେ ॥ ୬ ॥

**

**

# ଚକ୍ରଧର ଚଉବାହା

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

[କେଶର କୁଂଜେ-କୁଞ୍ଜେ]

ଚକ୍ରଧର ଚଉବାହା
ଚରଣ କମଳେ ନ ଦେଲେ ବାହା
ଜଗବଂଧୁ ହେ
ମୋତେ ଚରମେ କେ ହେବ ସାହା, ଜଗବଂଧୁ ହେ ॥୧॥

ତୁ ମୋତେ ଛାଡ଼ିଲେ ଛାଡ଼
ମୁଁ ତ ନ ଛାଡ଼ିବ କଣ୍ଟକ ପୀଡ଼
ଜଗବଂଧୁ ହେ
ବନ୍ଧ ହେଲଣି କ ଚକ୍ରଦାଢ଼ ॥ ୨ ॥

ପତିତ ତାରଣ ହରି
ପତିତପାବନ ନାମ ତୋହରି
ଜଗବଂଧୁ ହେ
ଏବେ ମୋ ପାପେ କପଲା ଡରି ॥ ୩ ॥

ଯେବେ ଏତେ ମାଡ଼େ ଡର
ଲଭାଇ ଦିଅ ସେ ଷଡ଼ ଅକ୍ଷର
ଜଗବଂଧୁ ହେ
ଦେଖିବ ସେ ଯାମ ଗଡ଼ଦ୍ୱାର ॥ ୪ ॥

ପୁଣ୍ୟ କଲେ ଅରଜନ
ତରିଯିବ ସେହୁ ବଲେ ସେ ଜନ
ଜଗବଂଧୁ ହେ
ତୋ' ଠାରେ କି ତାର ପ୍ରୟୋଜନ ॥୫॥

ତୋଳିଲୁ ବ୍ରଜେ ମନ୍ଦର
ତହୁଁ ଭାଣକ ମୋ ପାପ ଭାର
ଜଗବନ୍ଧୁ ହେ
ଡରି ଲୁଚୁ ନୀଳାଦ୍ରି କନ୍ଦର ॥୬॥

ଯେ ଭଜିଲା ତୋର ନାମ
ତୁ ତାହାର ପୂର୍ଣ୍ଣ କରିଲୁ କାମ
ଜଗବନ୍ଧୁ ହେ
ଏତ ସ୍ୱାର୍ଥପରଙ୍କର କାମ ॥୭॥

ବିନା ଭଜନେ ପୂଜନେ
ଯେବେ ତାରିବୁ ଏ ପାତକୀ ଜନେ
ଜଗବନ୍ଧୁ ହେ
ଭଲ ଭଲ ବୋଲିବେ ଭୁବନେ ॥। ॥

ବଇଷ୍ଣବ ଏହା ଜାଣି
ବସିଅଛୁ ମଙ୍ଗ ଦଉଡ଼ି ଟାଣି
ଜଗବନ୍ଧୁ ହେ
କେଣେ ନାବ ନେବୁ ଚିନ୍ତାମଣି ॥୯॥

**

**

# ଶରଧା ବାଲିକ ଗୃହାଁରେ

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

(କନାମ ବୋଇଲୁ-ବୃତ୍ତେ)

ଶରଧା ବାଲିକ ଗୃହାଁରେ ସଲଖି
ଶରଧା ବାଲିକ ଗୃହାଁ
ଉନରଧେ ଉନଧ୍ୱଜା ଉଡ଼ୁଅଛୁ
କେମନ୍ତ ସଧୀରେ ଆହା ।।ପଦ।।

ଶରଧା ବଳାଛୁ ମୋର ଦେଖିବାକୁ
ଶରଧା ବଳାଛୁ ମୋର
କଳାଧଳା ହଳଦିଆ ବଦନ ଏ
ଦୀନଜନଙ୍କ ସୋଦର ।।୧।।

ଗୁଣ୍ଡିଚ୍ଚ ଜାତକୁ ବଜେ ଜଣଛନ୍ତି
ଗୁଣ୍ଡିଚ୍ଚ ଜାତକୁ ବଜେ
କେବଳ ପଢତେ ଭାଶବା ମାନସେ
ଦରଶନ ଦେଲେ ହଜେ ।।୨।।

ପଡ଼େ ଝିପି ଝିପି ପାଣି କ ସୁନ୍ଦର
ପଡ଼େ ଝିପି ଝିପି ପାଣି
ପାଣି ନୁହେଁ ଇନ୍ଦ୍ର ସୁଧା ବରଷଇ
ବସୁଧାରେ ଦେଲ ଜାଣି ।।୩।।

ବସ୍ତାଳିଣ ଚକ ନାଦ ଏ ନୁହଇଁ
ବସ୍ତାଳିଣ ଚକ ନାଦ
ଯିବା ଆସିବାରେ ବୈତରଣୀ ଅରକେ
ଯେ ଧୁ ଧୁ ଶବଦ ॥୪॥

ବୈତରଣୀ ନରକ ପାପିକୁ ଡାକୁଛି
ବୈତରଣୀ ନରକ ପାପୀ
ଡରଯା ଡରଯା କାନେ ଶୁଣି ଘନେ
ନ ହୁଅ ଆଉ ସନ୍ତାପି ॥୫॥

ଧନ୍ୟ ସେ ଗୁଣ୍ଡିଚ୍ଛ ରଣୀ ଏ ଜଗତେ
ଧନ୍ୟ ସେ ଗୁଣ୍ଡିଚ୍ଛ ରଣୀ
ନାମ ଗୁଣେ ଜାତ ଖଣ୍ଡିଗଲେ ସେତ
ପଣ୍ଡିତ ତାରବା ଜାଣି ॥୬॥

ସତେ କି ବଇଆ ରଥେ ରହିଥିବ
ସତେ କି ବଇଆ ରଥେ
ଗୀତ ଗାଇଦେଲେ ପଥ ବନ୍ଧୁସିବ
ପଦକେ ହଜାର ହାତେ ॥୭॥

**

**

# ସେ କଳା ଲପନକୁ ଅନା

## ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

[ଜଣା ପଡ଼ିଲରେ ବଣା-ବୃତ୍ତେ]

ସେ କଳା ଲପନକୁ ଅନା
ତପନ କୁମର ଅମାପ କୋପକୁ
ଅମୋଘ କୁଳଶ ସିନା ।। ପଦ ।।

ତପ ଜପ କର ବିଫଳ ପାଇବୁ
କି ହେଲା ଗୋପେ ପୂତନା
ଢୋପ କଣ କେତେ ଖାପରୁ ତାଣଛୁ
ବୈକୁଣ୍ଠ ନୋହିଲ ମନା ।। ୧ ।।

ବାଇଶି ପାବଚ୍ଛେ ଖତ ବକାଉଛ
ବଇଁଶୀ ଗୁଣ୍ଡି ସେ କହ୍ନା
ଆଟିକାକୁ ସ୍ୱଟି ଟିକାଏ ପାଇଲେ
ଯମଭାଟି କରେ ଚୂନା ।। ୨ ।।

କମଳା ବିମଳା ବାମ ଦକ୍ଷିଣରେ
ପୁରନ୍ତ ପ୍ରାଣୀ ବାସନା
ବଡଦେଉଳ ଚକ୍ର ଚୂଳ ସ୍ୱନ୍ଧିଲେ
ପଳାଇବେ କାଳ ସେନା ।। ୩ ।।

ବୈତ ମାଡ଼ରେ ନ ଡରଣ ପାତକଙ୍କି
ଛଡ଼ାଇ ହୁଅନ୍ତ ସୁନା
ବଇଷ୍ଣବ ଲେଖି ସେ ଗୁଣ ଗଣେକୁ
ଉଡ଼ାଏ ବିଷୟ ବାନା ।। ୪ ।।

**

**

## ହେ ବଉଦ୍ଧ ରୂପ

### ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

[କୃପା ପାରାବାର ତୁମ୍ଭେ ପରା-ବୃନ୍ଦେ]

ହେ ବଉଦ୍ଧ ରୂପ ଚଉଦ ଭୁବନେ
ତୋ ପରି ସାମନ୍ତ ନାହିଁ କେ ଆଉ
ଡବ ଡବ ଡବ ବାଜଇ ବାଇଦ
ଟେକ ଅଛ ଲୁତ୍ୟ ଭାରଣ ବାହୁ ।। ପଦ ।।

ମୃଗୁଣୀକ ଦାବାନଳରୁ ତାରିଲ
ଗଜକୁ କୁମ୍ଭୀର ମୁଖୁଁ ଉଦ୍ଧରିଲ
ହିରଣ୍ୟ ବିଦାରି ପ୍ରହଲ୍ଲାଦ ମାନ
ରକ୍ଷା କଲ କେବା ନ ଜାଣେ ଆଉ ।। ୧ ।।

ମହା ପ୍ରଳୟରେ ମାରକଣ୍ଡ ଋଷି
ଜଳ ଗହ୍ୱଳରେ ଯାଉଥିଲେ ଭାସି
ସେ ବିଶ୍ୱ ଉଦରେ ସ୍ଥାନ ଦେଲ ବାରେ
ବଟ ପୁଟେ ଥାଇ ବଞ୍ଚିଲେ ସେହୁ ।। ୨ ।।

ସାତ ବର୍ଷ ସନ୍ତାନ ଧ୍ରୁବ ଦଶା
ଫେଡ଼ିଛ ଏ ମିଛ ନୁହଁଇ ସହସା
ନନ୍ଦେ ଆନନ୍ଦେ ଅଜଗର କବଳୁଁ
ବଳେ ପ୍ରାଣ ନେଲ ନ ସାଧି ଦାଉ ॥ ୩ ॥

ହେ କରୁଣାକର ମୋ ଠା'ରେ କରୁଣା
କେଉଁ ଦୋଷେ ହେ କରିଅଛ ଊଣା
ଏବେ କି ବଗ୍ଭିର ହୁଅ ପଥବଣା
ଅଣାକାର ଭଲ ଗାରିମା ଥାଉ ॥ ୪ ॥

**

**

## ଡାକି ଡାକି କଣ୍ଠ ଗଲା ଶୁଖି

### ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

[ଏତେ ହଟ ହଟା ମୋତେ-ବୃତ୍ତେ]

ଡାକି ଡାକି କଣ୍ଠ ଗଲା ଶୁଖି
ଆଉ ନ ପାରିବି ଡାକି ଏଣିକି
ଚକା ଆଖିକି ଦେଖାଇ ଚକାଇଲେ
ପଳାଇ ନ ଯିବ କେଉଁ କେଣିକି ॥ଘୋଷା॥

ଟିକା ଟିକି ବେଳ ପଡ଼ିଛି
ଠିକା ଠିକି କଲ କି ଘୁଞ୍ଚି
ଯିବି ମୁଁ ପଛକୁ ପାଞ୍ଚିଛି ଚଉବେ
ବକା ବକି ମାନ ହେବ ପୁଣିକି ॥ ୧ ॥

ପକାପକ ହେବା ହେ ଘଣ
କେ କାହାର ରଖିବ ଟାଣ
ଶିଖାଶିଖି ଖାବ ଭୁଲି ପଦ୍ମଲଭ
ଦେଖା ଦେଖା ଢଳେ ବଙ୍କା ଠାଣିକ ॥ ୨ ॥

ଟେକାଟେକ କରିଲି ଯେତେ
ଫୁଙ୍କା ଫୁଙ୍କି କଲି ହେ ତୋତେ
କରି ଝିଙ୍କାଝିଙ୍କି ହୃଦେ ଦେବ ଯାକି
ଯାଇଲେକ ଭକ୍ତ ଚିନ୍ତାମଣି କ ॥ ୩ ॥

ଫୁଙ୍କାଫୁଙ୍କି ମୁରଲି କରି
ଭୁଲାଇଲୁ ବରଜ ନାରୀ
ଲେଖା ଲେଖି କଲେ ସେ ଗୁଣ ନ ସରେ
ଲମ୍ବୁ କରିଆଥ ପାଣି ବାଣୀକ ॥ ୪ ॥

**

**

## ହେ କଳା କାଇଁଚ ମାଳିଆ

### ବୈଷ୍ଣବ ପାଣି

(ବିଂଶ ଶତାବ୍ଦୀ)

[କହ କୃପାନିଧି କେତେ ନୀରବଧି-ବୃତ୍ତେ]

ହେ କଳା କାଇଁଚ ମାଳିଆ ନାହିଁକ
ନୀଳ କନ୍ଦରରେ ଆଉ ହେ
ଥିଲେ କ ମରନ୍ତା ଡାକ ଡାକ ଭୃତ୍ୟ
ନ ଶୁଣନ୍ତ ମହାବାହୁ ହେ ॥ ପଦ ॥

ତୋ ବଡ ଦେଉଳ ପଡ଼ିଛି ଶୂନ୍ୟ
ଶୂନ୍ୟ ଅଛି ପଡ଼ି ରତ୍ନ ସିଂହାସନ
ଦାରୁମୂର୍ତ୍ତି ଦେହେ ନାହିଁକି ଜୀବନ
କି ହୋଇଲା ଗୃହୁଁ ଘୃହୁଁ ହେ ॥ ୧ ॥

ଦଣ୍ଡା ଧଣ୍ଡାମାଳ ଦେଉ କି ନାହାନ୍ତି
ଉଜାଗରେ ଥାଇ ରଜନୀ ପାହାନ୍ତି
ଭକ୍ତେ କି ମଙ୍ଗଳ ଗୀତ ନ ଗାଆନ୍ତି
ମଙ୍ଗଳ ଆଳତି ହେଉଁ ହେ ॥ ୨ ॥

ସେ କଳପ ବଟ ଗଲାକି ଉପୁଡ଼ି
ବିମଳା ଭବନ ପଡ଼ିଲାକି ଝଡ଼ି
ସେ ରୋହିଣୀ କୁଣ୍ଡ ସେ କାକ ଭୂଷଣ୍ଡ
ନାହିଁ କି କୈବଲ୍ୟ ଖାଉ ହେ ॥ ୩ ॥

ଜାଣିଛି ମୁଁ ଜାଣି ଘୋର କଳିଗତି
ଛାଡ଼ି ପଳାଇଲ ଅକଳିତ ଭୂତି
ଟକ ଟକ ପାପେ ହେଲା ବସୁମତି
ଖାତକେ ଭାଗିଲେ ସାହୁ ହେ ॥ ୪ ॥

ଯହିଁ ତହିଁ ଥାଇ ମୋତେ ଦିଅ ଚହ୍ନା
ତୁ ମୋ ଅରଜିଲା ଗଣ୍ଠି ଧନ ସିନା
କେଉଁ ମରଜରେ ବରଜ ଦେଉଛ
ବଇଷ୍ଣବେ ସାଧୁ ଦାଉ ହେ ॥ ୫ ॥
**

**

# କମଳାପତି କଷ୍ଟହର

## ବୈଷ୍ଣବ ପାଣି

( ବିଂଶ ଶତାବ୍ଦୀ )

[ କୃପାସିନ୍ଧୁ ବଦନ-ଛନ୍ଦେ ]

କଉସ୍ତୁଭ ଧାରଣ      କଉଣପ ଦାରଣ
କମଳାପତି କଷ୍ଟହର
କମ୍ବୁ ଅମ୍ବୁଜ ଚକ୍ର      ଗଦା ଯେ କରେ ସଦା
ବିରାଜୁଥାଇ ମନୋହର
ହେ ଜଗନ୍ନାଥ
କଇବଲ୍ୟ ମୁକୁଳା ନାଥ
କର୍ଣ୍ଣେ ଶୁଣି ଦୁଃଖି ଆରତ
କଷଣ ସହୁ କେତେ      ରହିବ ମହୀଗତେ
କଣ୍ଠ ଶୁଖିଛୁ ଅବିରତ ହେ ।। ୧ ।।

ଖଳ ଖଣ୍ଡ ଶମନ      ଶୋଷେ ହିନଙ୍କୁ ହିନ
ଖରେ ଦେହୁଁ ରକତ ସିଣି
ଖରି ବରଷା ଭୋଗି      ହୋଇଲି ମହା ରୋଗୀ
ଖରାପ ହେଲା ଦେହ ଆସି
ହେ ଜଗନ୍ନାଥ
କ୍ଷିତିରେ ନତ ହୁଡ଼େ ବାନା
ଖଣ୍ଡ ଦୁର୍ଗନ୍ଧ ବୋଲି ସିନା
ଖସି ପଡ଼ିଲା କିସେ      କେତନ ଖଗପତି
ଖୋଲିଣ କହୁ ନନ୍ଦ କହ୍ନା ହେ ।। ୨ ।।

ଗଣୁଛି ବସି ଦନ    ଗୁଣୁ ଛୁ ଅନଶନ
ତୋ' ନାମ ଗଳେ କର ମାଳ
ଗଙ୍ଗା ଗୟା ଗୋମତ    ଗଣ୍ଡକୀ ସରସ୍ୱତୀ
ଭୂମି ବଳକବା ନୀଳାଚଳ
ହେ ଜଗନ୍ନାଥ
ଗରୁଡ଼ ଆ ନ ଏ ତୀର୍ଥ
ସବୁ ତୋ ସେବା ବନା ବ୍ୟର୍ଥ
ଗୋବରଧନ ଧର    ଗୀତା କହୁଛି ପର
ସାକ୍ଷୀ ତାହାର ବୀର ପାର୍ଥ ହେ ॥ ୩ ॥

ଘନେ ଚାତକ ଆଶା    କଲ ପର ଭରସା ।
କରଥିଲ ଯାହାକୁ ସଦା
ଘଡ଼ଏ ମାଧ ଘଟ    ମଧ୍ୟେ ତା ନନ୍ଦ ଗୃହ
ନରଖି କରଦେଲୁ ବଦା
ହେ ଜଗନ୍ନାଥ
ଘରୁ ଦେଲୁ ବାହାର କର
ଘୋଟିଗଲ ଶୋକ ତମିର
ଘୋର ଚକ୍ରାର ଭିଡ଼    କାନ୍ଦଲ ମୁଣ୍ଡ କୋଡ଼'
ଆଉ ତ ନ ପାଇଲ ଫେର ॥ ୪ ॥

ଉଇଁଲ କାଳେ ରବ    ଦେଖାଇ ରଙ୍ଗ ଛବ
ଯେସନେ ରାହୁ ଗ୍ରାସ କରେ
ଉପଗତ ମୋ କର୍ମେ    ହେଲ ଯେ ସେହ ଭ୍ରମେ
ଉପାୟ ନ କହଲୁ ଥରେ
ହେ ଜଗନ୍ନାଥ
ଉପାଡ଼ ଦେଲୁ ଦମ୍ଭ ଦ୍ରୁମ
ଉଦଯୋଗେ ନ ମେଣ୍ଟିଲ ଶ୍ରମ
ଉପଲକ୍ଷ ମାଧକ    ହେଲ ବେଗ ପାମର
ଜାଣିଲ ନଷ୍ଟସ୍ୱ ତୁ ଯମ ॥ ୫ ॥

ଚରଣ ବାଜ ନିଲା                    ବନେ ହେଲ ଅବଲା
ଚରାଚରେ ଅଛନ୍ତ ଜାଣି
ଚଇଲୁ ପ୍ରହ୍ଲାଦ                    ଛଳେ ହିରଣ୍ୟ ହ୍ରଦ
ସ୍ତମ୍ଭରୁ ବାହାର ତକ୍ଷଣି
ହେ ଜଗନ୍ନାଥ
ଚଣ୍ଡ ଗୁପ୍ତର କସ ସାଧ୍ଧ
ଚୂରନ୍ତା ମୋହର ସଂପଦ
ଘୃରବାହା ବସ୍ତର                    କହୁରୁ ମୋତେ ଏହା
ନଜାଣୁ କେଉଁ ଭେଦାଭେଦ ॥ ୬ ॥

ଛନ୍ଦ ନନ୍ଦର ନନ୍ଦ-                    ସୁତ ମୋଠାରେ ମନ୍ଦ-
ପଣେ ମାଇଲ ଅଂଧ ସୂତ
ସହ୍ର ତାହା ଗୋବନ୍ଦ                    ଭକତ ଖବେ ଜନ୍ମ
ଅନ୍ଧକୁ ଦାନ କଲୁ ନେତ୍ର
ହେ ଜଗନ୍ନାଥ
ଛଳେ ଗ୍ରଟେ ମାରନ୍ତେ ପିତା
ଛପାଇଲୁ ପୂ ଛନ୍ତେ ମାତା
ଛପି ଗଲୁ ମୋ ଦୁଃଖ                    ଦେଖି ଛଟକେ ମାନ୍ତ
ଛୁ ଛୁ ଏହା ଭଲ କଥା ହେ ॥ ୭ ॥

ଜଞ୍ଜାଲ କଲ ଗୁରୁ                    ସୁତ ଶଯ୍ୟନ ପୁରୁ
ଯାଇଣ ଦେଲ୍ ତାର କୋଳେ
ଜାଣିଅଛୁ ଆୟୂଷ                    ନଥିଲ ତା'ର ଲେଶ
କେହୁ ଲେଖିଲା ତା' କପାଳେ
ହେ ଜଗନ୍ନାଥ
ଜୀବ ମାନକେ ତୋର ବଶ
ଯୁଗେ ଯୁଗେ ହେ ଶ୍ରୀନିବାସ
ଜୀଇ ବା ମରିବା ତୋ                    ଜୁଆଖେଳ ପରାୟେ
ଏ ଜୀବେ କର୍ମା ଏତେ ଦୋଷ ॥ ୮ ॥

ଝଡ଼ି ଯାଉଛୁ ଦେହ    ଝିମିଟେ ନାଥ କହ
ଝଡ଼ିଲା ବୃକ୍ଷ ପତ୍ର ସମ
ଝୋଲ ମାରୁଛୁ ବେଳୁଁ    ବେଳ ହେ ନନ୍ଦବାଳ
ଝାଳ ବହୁଛୁ ଦମ ଦମ
ହେ ଜଗନ୍ନାଥ
ଝିଙ୍କୁଛୁ ମୋତେ ପଞ୍ଚୁ କାଳ
ଝଟଉ ବାରେ କର କୋଳ
ଝରେ ନୟନୁ ନୀର    ଯେସନେ ଜଳଝର
ପୋଛୁବୁ ଧର ତୋ ଅଞ୍ଚଳ ॥ ୯ ॥

ଇନ୍ଦ୍ର ମରୁତ ଶିବ    ବ୍ରହ୍ମାଦି ସ୍ୱର୍ଗ ଦେବ
ନୁହନ୍ତି ଯା’ ସେବାକୁ ସର
ଇହ ଧାମରେ ଦ୍ୱିଜ    କୁଳେ ଜନମି ହେଜ
ସେ ପଦଯୋଗ୍ୟ ମୁଁ କି ହର
ହେ ଜଗନ୍ନାଥ
ଇସିତେ ଶୁଣିଛୁ କର୍ଣ୍ଣରେ
ଉଦ୍ଧରିଛ ଅଧମ ନରେ
ଉଦ୍ଧବ ଅଜାମିଳ    ଅନ୍ଧ ବିଲ୍ୱମଙ୍ଗଳ
ଚଣ୍ଡାଳ ଶବର ଜାଡରେ ॥ ୧୦ ॥

ଟେକ ରହିବ ଯେବେ    ଟୋପେ ନ ପକା କେଭେଁ
ଟେକାପରି ତୋ ସେବକକୁ
ଟୋକାଙ୍କ ପରି ଭଣ୍ଡି    ନ ଦିଅ ହେ କୋଦଣ୍ଡି
ଟେକ ଅନାଥ ଶ୍ରୀ ମୁଖକୁ
ହେ ଜଗନ୍ନାଥ
ଟିକିଏ ମାତ୍ର ଚାହିଁ ଥିଲେ
ଟଳିଯାନ୍ତା କି ଜୀବ ଭଲେ
ଟମକ ଝମ୍ପା ବାଜା    ଜଗତରେ ନ ବଜା
ଟାଣି ନ ପକା କଲବଲେ ॥ ୧୧ ॥

ଠାବ ଦିଅ ବଢ଼ାଇ କାହିଁ ରହିବ ଯାଇଁ
ନାହିଁ ନଥିବ ରୋଗ ଶୋକ
ଠକା ଠକି ନକର ଠିକ ବାଣୀ ଏ ମୋର
ଠଉରାଇଛୁ ପଦ୍ମ ମୁଖ
ହେ ଜଗନ୍ନାଥ
ସେବା ବାଣୀ ତେଜି ଦୂରେ
ଠିକେ କହୁଛୁ ରଖ ବାରେ
ଠେଲ ଦୂରେ ନ ପକା ଗରବର ଟେକା
ଠିକେ ରଖ ତୋ ଚରଣରେ ॥ ୧୨ ॥

ଡାକ କହୁଛି ଡର ମାଡ଼ଇ ଜରନ୍ତର
କାଲ କରାଳ ମୁଖ ଦେଖି
ଡାହାଣ ବାହୂ ବାମ ହେଲ ବେଳେ ହେ ରାମ
ଆସ୍ତ ବସିବ କୋଳେ ଯାକ
ହେ ଜଗନ୍ନାଥ
ଡର ପଳାଇଯିବ ଯଣା
ଡଂଶି ନପାରି କରି ଆଶା
ଡିଣ୍ଡିମ ଯିବ ବାଜି ଦ୍ୱି ସପ୍ତ ଲୋକ ରାଜି
ଶୁଣି କରିବେ ପରଶଂସା ॥ ୧୩ ॥

ଢମାଳି ପଣ ଛାଡ଼ ଢାଳେଣି ଚନ୍ଦ ଦାଢ଼
ବଜ୍ର ନ ହେଜ ଏତେବେଳେ
ଢଳିଗଲ ସମାନ ମୁଦ ବେନି ନୟନ
କପ ଖାବୁଛ ନୀଳାଚଳେ
ହେ ଜଗନ୍ନାଥ
ଢୋକି ଦେଲୁ ଅନଳ ଗୋପେ
ଢାଳେ ଗୋପାଳଙ୍କ ସନ୍ତାପେ
ଢୋଲ ନ ଗଲ ପୋଡ଼ି ମୋ ଶୋକ ଅଗ୍ନି ଏଡ଼ି
ପଳାଇଗଲୁ କେଉଁ ରୂପେ ॥୧୪॥

ଅଣଆୟତ୍ତ ହୋଇ ଏଣେ ସେଣେ ନପାଇଁ
ଧରିଲି ତୋର ଶ୍ରୀଚରଣ
ଅଣାକାର କରୁଣା ଯଦି ହେଉଛି ଊଣା
ମରଣେ କରିବି ବରଣ
ହେ ଜଗନ୍ନାଥ
ଅନ୍ତର ବାହାରେ ତୁ ଥାଉ
ଅନ୍ୟେ ପ୍ରାଣୀଙ୍କି ତାରିନେଉ
ଅନ୍ୱେଷଣ ବହନ୍ତେ ଆସି ତୋଳିବୁ ମୋତେ
ଘୁଞ୍ଜି ନ ଦେବୁ ଦେଖି ଦାଉ ॥୧୫॥

ଛପନ ସୂତ୍ର ବାନ୍ଧି ହୋଇଲି ଜରବଧି
ହେ ଦୟାନିଧି ରକ୍ଷାକର
ତୋଷାନ ପାଣି ଯେନ ଆସି ହେ ନୀଳମଣି
ତେତେବେଳେ ମୋଡ଼ିଲି ଶିର
ହେ ଜଗନ୍ନାଥ
ଚରାଚର ହେଲିଣି ମୁହିଁ
ତାହା ଯେନ ହେ ରମା ସାଇଁ
ଜପତପ ସାଧନା ଜାଣିଥିଲେ ମୁଁ ସିନା
ଦିଅନ୍ତି ତାକୁ ଯଉତାଇ ॥୧୬॥

ଆଉ ତୁମ୍ଭ ସମାନ ପ୍ରଭୁ ହେ ବିଦ୍ୟମାନ
ହେଲିଣି ଏତେସର ଆସି
ଥିଲି ଭରସା କରି ଯାକୁ ହେ ଦଇତାରି
ତାହାରି ଗଲେ ଦେଲୁ ଫାଶି
ହେ ଜଗନ୍ନାଥ
ଥିଲେ କି ହେବ ଏ ଜୀବନ
ଅସ୍ଥି ନୋହିଲା ଯେବେ ମନ
ଅଳ ନପାଇ ବାଟ ହେଉଛି ଛଟପଟ
ଥରେ ନ କରୁ ଅନୁମାନ ॥୧୭॥

ଦଣ୍ଡ୍ର ଜନ ବନ୍ଧୁ ବୋଲି ହେ କୃପାସିନ୍ଧୁ
ନାମ ବହୁଛୁ ଭନ ଲୋକେ
ଦେଖିଛ ନାହୁଁ ସେହୁ ଗୁଣ ହେ କାହିଁପାଇଁ
ସେ ନାମ ମହିମା ପ୍ରତ୍ୟକ୍ଷେ
ହେ ଜଗନାଥ
ଦୁର୍ଦ୍ଦଶା ରହୁ ଘୋଟିଅଛୁ
ଦାରୁଚନ୍ଦ ପେଣ ଶ୍ରୀବକ୍ଷ
ଦଅ କର ଦ୍ୱିଖଣ୍ଡ ଚନ୍ଦ ଦାଢ଼େ ତା' ମୁଣ୍ଡ
ତୁଣ୍ଡ ବିସ୍ତାର ଅନାଉଛୁ ॥୧୮॥

ଧନ୍ଦ ହେଉଛୁ ପଡ଼ି ଧନ୍ଦାରେ ହରଘଡ଼ି
ଫନ୍ଦା ବଢ଼ାଅ ଅଛୁ ଯେବେ
ନନ୍ଦାହେବ କାହାକୁ ଆଣ ଥରେ ମନକୁ
ବୃନ୍ଦାବନ ବିହାରୀ ଭାବେ
ହେ ଅଗନ୍ନାଥ
ଧରିବ ନାହିଁ. ମୋର ଗାଳି
ଧୀରେ କହୁଛୁ ବନମାଳି
ଧରିପଡ଼ୁଛୁ ଗ୍ରେଣ୍ଡ ଏବେ ହେ ବଂଶୀଧାରୀ
କ ହେବୁ ନରଖ ସମ୍ଭାଳି ॥୧୯॥

ନୟନ ନେଲୁ ଛାଡ଼ି ଅଂଧ ସମାନ ଲୋଡ଼ି
ମରୁଛୁ ନ ପାଇଣ ବାଟ
ନର ନରକ ହାଣ ଅଛି ହେ ନାରାୟଣ
ଦେଇଛ ବିଷମ ସଙ୍କେଟ
ହେ ଜଗନ୍ନାଥ
ନାହିଁ ନ କଲୁ ତେତେବେଳେ
ନ ମାନିଥିଲେ କଥା ଛଳେ
ନେଇଥାଲୁ ଛଡ଼ାଇ ନରଖି ମୋ ବଢ଼ାଇ
ବୁଡ଼ାଇ ଦେଇ ଶୋକ ଜଳେ ॥୨୦॥

ପଡ଼ି ବିପଦ କାଳେ   ମରଇ କଳେବରେ
ପରୁପର ନଦିଅ ଠେଲି
ପରମାନନ୍ଦ ନାମ   ଆଉଁଆଉଁ ମୋହର
ପଥରେ ମୁଣ୍ଡକୋଡ଼ି ମଲି
ହେ ଜଗନାଥ
ପିଣ୍ଡ ମୋ ପଡ଼ିଯିବ ଢଳି
ପୀତବସନ ବନମାଳୀ
ପୀୟୂଷ ମଣିବିଷ   ପିଇଛୁ ଜାଣିଯେବେ
ଅମୃତ କର ବାରେ କଳି ॥୨୧॥

ଫାଙ୍କିଦେଲେ କି ସତେ   ଛାଡ଼ିବି ପ୍ରଭୁ ତୋତେ
ବାଞ୍ଛାଫଳ ନହେବା ଯାଏ
ଫୁଟିଗଲା କି ଆଜି   ସେ ଶତପତ୍ର ନେତ୍ର
ଏ ଭାବ ଚକ୍ଷେ କରି ଲକ୍ଷ୍ୟେ
ହେ ଜଗନ୍ନାଥ
ଫୁରୁଣା ମନ କରି ବୁଲି
ଫନ୍ଦା ଫିକର କରୁଥିଲି
ଫୁଲ ଫନ୍ଦାର ହାର   ପରିହୃଦୟସ୍ଥ ମୋର
ଝଡ଼ିଲା ଫୁଟିଗଲୁ ଭୁଲି ॥ ୨୨ ॥

ବାନ୍ଧିଥିଲା ଯଶୋଦା   ଦଧି ମନ୍ଥନେ ରାଧା
ନାଥ ଯାମଳାର୍ଜ୍ଜୁନ ଗଛେ
ବାନ୍ଧିଲେ ବ୍ରଜନାରୀ   ଭକତ ଡୋରେ ଘେନି
ଲବଣୀ ଚୋରି ଦୋଷ ପଛେ
ହେ ଜଗନ୍ନାଥ
ବ୍ରଜବାଳକ ପ୍ରେମେ ବନ୍ଧା
ବଳି ଦୁଆରେ ବନ୍ଧା ସଦା
ବନ୍ଧନ ଏତେ ଲୋକେ   କରି ରଖିଲେ ପାଖେ
ବନ୍ଧା ନ ଦେଲେ ହେବ ନିନ୍ଦା ॥ ୨୩ ॥

ଶବ ହେଉଛି ବେଳ          ବେଳୁ ମୋ କଷ୍ଟମିଳି-
କନ୍ଦରେ ବସିଛୁ କାହିଁକି ?
ଶବଲ ମାଝେ ଭକ୍ତ          ନିକଟ ଉପଗତ
ହେଉ ତା ଶୁଣି ମୁଁ ନାହିଁକି
ହେ ଜଗନ୍ନାଥ
ଶବେ ଧୋଇଲୁ ଭକ୍ତ ପାଦ
ସ୍ୱବକୁ ନିକଟ ଗୋବିନ୍ଦ
ଶାର୍ଙ୍ଗି ଗଲା କି ହାତ          ଗୋଡ ହେ ଗୋପୀନାଥ
ଆସି ନ ପାରୁ ଦେଖି ଖେଦ ।। ୧୪ ।।

ମରଇ ନିଷ୍ଟେ ଜୀବ          ମନ୍ତ୍ରୀ ମଣ୍ଡଳେ ଦେବ
ତା' ଶବ ଭିଆଣ ତୋହର
ମଧ୍ୟେ ହରୁ ଆୟୁଷ          କପାଁ ହେ ନନ୍ଦ ଶିଷ୍ୟ
ବଂଶ ଶତ ନ ହେଉ ତାର
ହେ ଜଗନ୍ନାଥ
ମାରୁ ବାଳକ ବାଳକାଙ୍କୁ
ମିଛେ ଏ ଜଗତକୁ ଠକୁ
ମଞ୍ଚରେ କେଉଁ ପାପ          କଲେ ଅଜ୍ଞାନ ରୂପ
ଧରି ସେ ଦଣ୍ଡ ଦେଲୁ ତାଙ୍କୁ ।। ୧୫ ।।

ଜଣା ପଡ଼ିଲା ମନ          ସ୍ୱାଡ ତୋ ଆଦ୍ଧକନ୍ଦ
ବିବେକ ତଳେ ଆତ୍ମା ଯେବେ
ଯାକୁ ତାକୁ ଅକାଳେ          ବିନାଶନ୍ତୁ କି ହେଲେ
ଏ ଘୋର ସଂସାର ଅର୍ଣ୍ଣବେ
ହେ ଜଗନ୍ନାଥ
ଯେବେ ତୋ ଆଆତ୍ମା ବିସ୍ମର
ଜୀଅନ୍ତେ ବାଳ ଯୁବା ନର
ଯୋଗା ଯୋଗ ଠିକଣା          ନାହିଁ ତୋ ନିକଂଟରେ
ପ ଲା ପଣ କାରବାର ।। ୧୬ ।।

ରାଗ ବନ୍ଧବୁ ନାହିଁ    ରହୁଛୁ ପାଶେ ମୁହିଁ
ଛଇ ପଗ ଫଗେ ତୋହର
ରୋଷ ରଖିଲେ ଦାସ    ପରେ କି ପଉରଷ
ପାଇବୁ କିଛୁ ତା ଉତ୍ତର
ହେ ଜଗନ୍ନାଥ
ଶପୁ ନୁହଁଇ ମୁଁ ତୋହର
ରୁପିଲ ବୃକ୍ଷ କାଟି ହର ॥ ୧୭ ॥
ଭକ୍ଷଣ ଶୀଳ ବାନା    ଛୁଡ଼ ପଡ଼ବ ସିନା
ଭୁଟେୀ ବଧିଲେ ଚକ୍ର ଧର ॥ ୧୭ ॥

ଲଟିଲା ମୋର ଚିନ୍ତା    ଏବେ ହେ ଜଗଜ୍ଜିତା
ଲେଖି ଦେଲି ସରବ ତୋତେ
ଲବେ ହେ ଅଧିକାର    ନାହିଁ କାହିଁରେ ମୋର
ଏ ଧନ ଦାରା ସୁତା ସୁତେ
ହେ ଜଗନ୍ନାଥ
ଲାଗିବ ନାହିଁ ଏ ବଚନ
କଷ୍ଟସ୍ଥ କମଳ ଲୋଚନ
ଲକ୍ଷ୍ମୀ ଦେବୀଙ୍କ ରାଣ    ଦେଲି ହେ ନାରାୟଣ
ଚିନ୍ତା ଜ୍ୱରକୁ ଏ ପାଚନ ॥ ୧୮ ॥

ବରଜରାଜ ଆଜ    ଅରଜ ନ ବରଜ
ଚରଣ ରଜ ଦିଅ ମୋତେ
ବିରଜ ହୃଦେ ଆସ    ସଦା ବିରଜ ବାସୀ
କର ସରଜେ ଧର ତତେ
ହେ ଜଗନ୍ନାଥ
ବାନର ରାଜ ମିତ୍ରବର
ବିନାଶିଲୁ ଅଗ୍ରଜେ ତାର
ବଂଶ କର ସଂହାର    ସେତୁ ସାଗରେ କରି
ବିଜେ କଲୁ ଅଯୋଧ୍ୟା ପୁର ॥ ୧୯ ॥

ଶିଶିର ପଙ୍କ ଜର    ଦଶା ହେଲା ମୋହର
ଶିର ତୁଟିଲା ଶିଖୀପଥ
ଶିର ଭ୍ରମର ନଦ    ଦେଖଇ ସଦା ଖଦ
ସରତ ଗଲା ସବୁ ଗଦ
ହେ ଜଗନ୍ନାଥ
ଶୁଭ୍ର ନାହିଁକ ତୋ ଶ୍ରୁତକ
ସାର ଯା' ଦେଲୁ ମୋ ଧୃତକ
ଶ୍ୟାମସୁନ୍ଦର କର୍ଣ୍ଣ    ରୁନ୍ଧିଲା କେଉଁଜନ
ବାନ୍ଧିଲୁ ବଧୀର ଖତକ ॥ ୩୦ ॥

ଷଣ୍ଢା ଶକଟା ହନ୍ତା    ନ ରଖିଲେ ମୋ କଥା
ବିଷ ଭକ୍ଷିବ ନିଶ୍ଚେ ଜାଣ
ପଣ ଫୁଲ ବସନ    ହେଲେ ଅପଦୂଷଣ
ଚନ୍ଦ୍ରବ ନାହିଁ କେଭେ ଟାଣ
ହେ ଜଗନ୍ନାଥ
ସଂସାରେ ବଂଧୁ ନାହିଁ ମୋର
ଶମ୍ବରର ତାତ ଈଶ୍ବର
ସବୁ ଶଙ୍ଖାଳ ତୁଚ୍ଛ    ଜାଣିଛୁ ନାଥ ମୁହିଁ
ସକଳ ଜୀବ ମୂଳାଧାର ॥ ୩୧ ॥

ସତ କହୁନ ମୋତେ    ସଂଶୟ ଯେବେ ଚଢେ
ସବୁ ତେଜିବ ଆଜଠାରୁ
ଶରାସନ ମଣ୍ଡନ    ସର୍ପ ଦର୍ପ ଖଣ୍ଡନ
ସହି ନପାରେ ଶୋକ ଗାରୁ
ହେ ଜଗନ୍ନାଥ
ଶୁକ ସନକ ସନାତନ
ସପତ ଋଷିଙ୍କ ବନ୍ଦନ
ସର୍ବ ପାପ ହାରିଣୀ    ତୋ ପାଦୁଁ ଗଙ୍ଗା ପାଣି
ଜାତ ସେ ପଦେ ମୋର ମନ ॥ ୩୨ ॥

ହରବର ନ କର    ଖରେ ଦୂରନ୍ତ ହର
ହସିବେ ଭଗତେ ଯ୍ହାଁ ଶୁଣି
ହଂସା ମୋ ଗଲା ଉଡ଼ି    ହଂସା ଚଉରୁ ଗୁଡ଼ି
ଏ ଦୀନଜନେ ରକ୍ଷ ଟାଣି
ହେ ଜଗନ୍ନାଥ
ହାର ହୋଇ କାଟନ୍ତେ ବେକ
ହୁଣ ପଡ଼ିବ ଠନ ଲେଖ
ହୁଅ ବେଲହୁଁ ସାବଧାନ    ହେ ଜନାର୍ଦ୍ଦନ
ରହୁବ ଯେବେ ନିଜ ଟେକ ।। ୩୩ ।।

କ୍ଷର ଯାଉ ଏ କଥା    କ୍ଷମେ ରଚ କବିତା
ଜନମି ଦୀନ ଦ୍ୱିଜକୁଳେ
କ୍ଷମା କରିବା ଦୋଷ    କ୍ଷମା ସାଗର ଦାସ
ଜନକୁ ରଖ ପଦ ତଳେ
ହେ ନୀଳାଚଳ
କ୍ଷମା ଦିଅ ବଇଷ୍ଣବକୁ
କ୍ଷୋଭରେ ଡାକୁଛି ତୁମ୍ଭଙ୍କୁ
ଖ୍ୟାତ ରହୁ କ୍ଷିତରେ    ଖଣ୍ଡ ମୋ ଦୁର୍ଗତରେ
ଉଦ୍ଧର ଧର ସେବକକୁ ।। ୩୪ ।।

**

**

# ଜଗନ୍ନାଥ

## ବେଣୁଧର

(ବିଂଶ ଶତାବ୍ଦୀ)

ଜଗନ୍ନାଥ ମୋ ଆରତ କାହିଁ ପାଇଁକି ନଶୁଣ
କାହାକୁ ନ ତାରିଅଛ ମୋ ବେଳକୁ ନିଦାରୁଣ ।। ଘୋଷା ।।

ଲକ୍ଷେ ଯୋଜନରେ ଜଳେ ଡାକ ଦେଲା ସେ ବାରଣ
ତୁରିତରେ ଚକ୍ର ପେଷି ପ୍ରଭୁ ନେଇ ନକ୍ର ପ୍ରାଣ ।। ୧ ।।

ବନେ ଚହଲ ମୃଗୁଣୀ ତା'ଜାଣିଲ ଅନ୍ତର୍ଯ୍ୟାମୀ
ବନେ ଘୋର ସଂକଟରୁ ତାକୁ କଲ ପରିତ୍ରାଣ ।। ୨ ।।

ଆର୍ତ୍ତେ ଡାକିଲା ଦ୍ରୌପଦୀ କୁରୁ ସଭା ତଳେଣ
କୋଟି ବସ୍ତ୍ର ଦେଇ କଲ ତାର ଲଜ୍ୟା ନିବାରଣ ।। ୩ ।।

ପ୍ରହ୍ଲାଦ ଛଳେ ହିରଣ୍ୟକୁ କଲ ବିଦାରଣ
ସ୍ୱର୍ଗେ ଇନ୍ଦ୍ର ପଦ ଦେଇ ଫେଡ଼ି ଅଛ ତା' କଷଣ ।। ୪ ।।

ସାବତ ଜନନୀ ଛଳେ ଧ୍ରୁବ ଚିନ୍ତା କରନ୍ତେଣ
ଶୂନ୍ୟ ମଣ୍ଡଳରେ ତାକୁ ଦେଇ ଅଛ ଦିବ୍ୟ ସ୍ଥାନ ।। ୫ ।।

ଅଜାମିଳ ନାମେ ଥିଲା ମହା ପାତକୀ ବ୍ରାହ୍ମଣ
ଅନ୍ତକାଳେ ତବ ନାମ ଧରି ଗଲା ସ୍ୱର୍ଗସ୍ଥାନ ।। ୬ ।।

ସୁଦାମା ଦାରିଦ୍ର୍ୟ ଦ୍ୱିଜ ଚହଲ ହେ ନାରାୟଣ
ଐଶ୍ୱର୍ଯ୍ୟ ସମ୍ପଦେ ତାକୁ କରିଦେଲ ପରିପୂର୍ଣ୍ଣ ।। ୭ ।।

ସୁଗ୍ରୀ ସଙ୍ଗେ ମିତ୍ର ହୋଇ ବାଲି ବଧିଲ ଆପଣ
କପିକି ନ୍ୟାରେ ରାଜା କରାଇଲ ତତ୍‌କ୍ଷଣ ॥ ୮ ॥

ଲଙ୍କାଗଡ଼ରେ ଶରଣ ପଶିଲାକ ବିଭୀଷଣ
ଭୁଞ୍ଜିଲା ଲଙ୍କା ବିଭୂତି ପ୍ରଭୁ ତବ ପ୍ରସାଦେଣ ॥ ୯ ॥

ମୁଁ ଅଧମ ମୂଢ଼ମତି ପ୍ରଭୁ ତୁମ୍ଭେ କି ନ ଜାଣ
ହାରୁନାହିଁ ଯେଣୁ ସରୁଅଛି ବେଣୁଧର ଟାଣ ॥ ୧୦ ॥

**

**

## ଦୀନବାନ୍ଧବ

### ବେଣୁଧର

(ବିଂଶ ଶତାବ୍ଦୀ)

[ଆଦି-ତାଳ]

ଦୀନ ବାନ୍ଧବ ହରି ହେ କର କାରଣ
ଏ ଅଧମ ଜନେ ପ୍ରଭୁ ନୁହ କୃପଣ ॥ ଘୋଷା ॥

ଯେମନ ଭକତ ମୋହନ ଆହେ ବୈକୁଣ୍ଠ କେଶବ
ବିଦାରଣ କର ମୋ ବିପତ୍ତି ବାରଣ ॥ ୧ ॥

ହେ ନୀଳାଚଳ ବିହାରୀ ନ ରଖିଲେ ଗଲି ସରି
ତୁମ୍ଭ ବିନା କେହି ନାହିଁ ରମାରମଣ ॥ ୨ ॥

ଆହେ ପ୍ରଭୁ ମହା ବାହୁ ଘୋଟିଛି ବିପଦ ରାହୁ
ଗ୍ରାସୁଅଛି ବିହୁଁ ଗୁହୁଁ ଯେମନ ଶରଣ ॥ ୩ ॥

ଚନ୍ଦ୍ର କହେ ବେଣୁଧର    ଶ୍ରୀ ଛାମୁରେ ଯୋଡ଼ି କର
ଚଣ୍ଡ ପେଶି ଦୁଃଖ ହର ଆରତ ତ୍ରାଣ ॥ ୪ ॥

**

**

# ଆହେ ଚକା ଆଖି

## ବେଣୁଧର

( ବିଂଶ ଶତାବ୍ଦୀ )

[ରାଗ-ଏକତାଳି]

ଆହେ ଚକା ଆଖି
ଶଙ୍କା କଲ କି ଏ ମୋ ବିପତ୍ତି ଦେଖି ॥ ପଦ ॥

ଚକାଇ ଛାମୁରେ ଜଣି ଦିନ
ଥକା ହୋଇଲିଣି କରି ଧ୍ୟାନ
ଢକାଇତ ଏଡ଼େ ବୋଲି ଜାଣିଥିଲେ
ଆଶ୍ରେ କରିଥାନ୍ତ ମୁଁ କାହିଁକି ॥ ୧ ॥

ଦକା ମାନସରୁ ନ ହରିଲ
ପକାଇ ବିପଦେ ସାରି ଦେଲ
ଟକା ବାଜୁଅଛି ବ୍ରହ୍ମାଣ୍ଡେ ଯା'କରେ
ଏକା ଆରତତ୍ରାଣ ବୋଲିକି ॥ ୨ ॥

ବକାରି ଟିକିଏ ନ ଶୁଣୁଛ
ଢକା ପକାଉଛ ହେ ଶ୍ରୀବତ୍ସ
ନଙ୍କା ହେଲଣିକି ଚକାୟୁଧ
ତୀକ୍ଷଣ ଦାଉ ନ ରଖିଅଛ ସଲଖି ॥ ୩ ॥

କି କାରଣେ ହରି ନ ଶୁଣିଲ
ଫିକା ସୁଦଶାକୁ କରି ଦେଲ
ବିକା ହୋଇବାକୁ ଶ୍ରୀଚରଣ ତଳେ
ନିକାଶିବା ପାଇଁ ପାଞ୍ଚିଛକ ॥୪॥

ଠକାଠକି ପଣ ଗୋଟି ଛାଡ଼ି
ଧକ୍କା ଦେଇ ବିପତ୍ତିକି ତଡ଼ି
ଅକାରଣ ନୋହୁ ଦୀନ ବେଣୁଧର
ଜଣାଣ ମାଗୁଛି ମୁଁ ଏତିକି ॥୫॥

**

**

## ରମାରମଣ ହେ

### ବେଣୁଧର

(ତାଳ-ଏକତାଳ)

[ବିଂଶ ଶତାବ୍ଦୀ]

ରମାରମଣ ହେ
କ୍ଷମାକର ମୋ ବିପତ୍ତି ଭାର
ତୁମ୍ଭେ ନ ରଖିଲେ ଆହେ ଦୀନବନ୍ଧୁ
ଏ ଭୃତ୍ୟ ହୋଇବଟି କାହାର ,॥ ଘୋଷା ॥

ଆଉ କେ ମୋ ସାହା ଅଛି ତଉବାହା
ଏ କଷ୍ଟରୁ କରିବ ଉଦ୍ଧାର
ସଙ୍କଟ ଭଞ୍ଜନ ଗରବ ଗଞ୍ଜନ
ଏ ଭବାର୍ଣ୍ଣବରୁ କର ପାର ॥ ୧ ॥

ସୁଦର୍ଶନ ଚକ୍ର ଘୋଡ଼ାଇ ରଖିଲେ
କି କରି ପାରେ ଗ୍ରହ କ୍ରୂର
ଭବ ବନା ଦୁଃଖ ହରିବାକୁ ଏ ସଂସାରେ
କାହାକୁ ନ କଲେ ସାର ॥ ୨ ॥

ଆରତେ ଡାକୁଛି ଆର୍ତ୍ତି ଧ୍ୱଂସନକୁ
କିପାଇଁ କରୁଣ ନ କଲ ବିଚାର
ଯେବେ କିଛି ଅପରାଧ ଅଛି ପ୍ରଭୁ
ନିଜ କରାୟୁଧରେ ସଂହାର ॥ ୩ ॥

ଏ ଦୁଇ କଥାରୁ କଥାଏ କି ହେତୁ
ନ କରୁଛ କଉସ୍ତୁଭ ହାର
କହେ ବେଣୁଧର ମୋହ ପର ଜଣେ
ଖୋଜିଲେ ନ ଥିବେ ଦୁରାଚାର ॥ ୪ ॥

**

**

## ଆହେ ପ୍ରଭୁ ପଙ୍କଜମୁଖ

### ବେଣୁଧର

(ବିଂଶ ଶତାବ୍ଦୀ)

[ତାଳ-ଏକତାଳ]

ଆହେ ପ୍ରଭୁ ପଙ୍କଜ ମୁଖ
କି ହେତୁରୁ ମୋର ନ ହର ଦୁଃଖ ।
କେଉଁ ଦୋଷ ଅବା କଲି ବୋଲି, ମୋହଠାରେ,
ଏ ନନ୍ଦସୁତ ଭାବକୁ ରଖ ॥ ଘୋଷା ॥

ଏ ଭବ ମଣ୍ଡଳେ ମୋହ ସମାନରେ
ନ ଥିବ ଜଣେ ନରେଖ
ଚଣ୍ଡ ଦାଢ ଅବା ବଣ୍ଡ ହୋଇବାରୁ
ମୋର ବାଙ୍କ କର୍ମ ନୋହେ ସଲଖ ॥୧॥

ମାୟା ଜଂଜାଳରେ ନିତ୍ୟ ଘାଣ୍ଟି ହେଲି
ଦିନେ ନ ପାଇଲି ସୁଖ
ତୁମ୍ଭ ପରି ପ୍ରଭୁ ଥାଉଁ ଥାଉଁ ଏବେ
ଲୁଚି ଯାଉଅଛୁ ଦୀନ ଅରକ୍ଷ ॥ ୨ ॥

ଦଳାରବା ଚକା ନେଜ ବନ୍ଧୁବାରୁ
ମୋ କଷ୍ଟ ଢଳେ ନ ଦେଖ
ବଳି ପଡ଼ୁଅଛୁ ବେଳୁ ବେଳ ମୋର
ବିପଦର ଦାଉ ହେ ନଳିନାକ୍ଷ ॥ ୩ ॥

ଘେନ ମୋ ଜଣାଣ ଆହେ ନାରାୟଣ
କେହ୍ନ ଦାସ ହିଁ ଆଉ ସାକ୍ଷ
ଦୀନ ହୀନ ବେଣୁଧର ଅଧମକୁ
ସୁଦର୍ଶନ ଚକ୍ରତଳରେ ରଖ ॥ ୪ ॥

**

**

## ମୂଢ ମନରେ

**ବେଣୁଧର**

(ବିଂଶ ଶତାବ୍ଦୀ)

[ତାଳ-ଝୁଲ]

ମୂଢ ମନରେ, ଚନ୍ଦ୍ର ଜଗନ୍ନାଥଙ୍କୁ
ଲଭିବୁ ସୁଗତି ମୁକ୍ତି ପଥକୁ ॥ ଘୋଷା ॥

ଅଶେଷ ପାତକ କ୍ଷୟ ହୋଇଯିବ
ବେଳୁ ଆଶ୍ରେ କଲେ ରମାକାନ୍ତଙ୍କୁ
ଏ ଭବ ସାଗରୁ ପାରି ହେବୁ ଯେବେ
ଡାକ କର୍ଣ୍ଣଧାର ଚକ ହାତଙ୍କୁ ॥ ୧ ॥

ଆଜନ୍ମରୁ ପାପ ଯେ ଥିବ ଅମାପ
ଖଣ୍ଡିବେ ଦେଖି ତୋ ଭକ୍ତ ମତକୁ
ଜଷ୍ଟିନ୍ତରେ ବଇକୁଣ୍ଠରେ ବସିବୁ
ପୂର୍ଣ୍ଣ କର ତୋର ମନ ରଥଙ୍କୁ ॥ ୨ ॥

ସାଧୁସଙ୍ଗ ଲୋଡ଼ ମାୟାରେ ନ ପଡ଼
ଇଚ୍ଛା ନ କର କେବେ ଅଦ୍ଭୁତକୁ
ଲକ୍ଷ୍ୟ କରିଆଥ ଅନ୍ତରେ ନିର୍ଭୟ
ହୋଇ ଶ୍ରୀ କମଳ ପଦ୍ମ ନେତ୍ରଙ୍କୁ ॥ ୩ ॥

ମାୟା ମୋହ ହିଂସା ରାଗ ଅହଂକାର
ତେଜ ନିରମଳ କର ଚିତ୍ତକୁ
କହେ ଦୀନ ବେଣୁ କଂପା ଜାଣୁ ଜାଣୁ
ଅଜଣା ହେଉଛ ଲଂଘି ମର୍ତ୍ତ୍ୟକୁ ॥ ୪ ॥

**

**

# ଅହେ ମହାବାହୁ

## ବେଣୁଧର

(ବିଂଶ ଶତାବ୍ଦୀ)

[ତାଲ-ଏକତାଲି]

ଅହେ ମହାବାହୁ
ଭାସିଗଲି ଭବ ଜଳେ ଗହନୁଁ ଗହନୁଁ ।। ଘୋଷା ।।

ଭକତ ବତ୍ସଳ ଭାବଗ୍ରାହୀ
ପାର କର କୃପା ନାବ ଦେଇ
ଏ ଘୋର ସଙ୍କଟ ଗମ୍ଭୀର ସାଗରୁ
କେ ରକ୍ଷା କରିବ ତୁମ୍ଭେ ଆଉଁ ।। ୧ ।।

ଶରଣ ରକ୍ଷକ ଦୀନ ବନ୍ଧୁ
ଆରତ ଭଂଜନ କୃପାସିନ୍ଧୁ
ତୁମ୍ଭ ଅକଳଙ୍କ ମହିମା ଚନ୍ଦ୍ରକୁ
ଗ୍ରାସୁଛି ଏବେ ବିପଦ ରାହୁ ।। ୨ ।।

ଚକ୍ର ଦାଢ଼ କିବା ବନ୍ଦ ହେଲା
ଅରି ଛେଦନକୁ ନ ଭେଦିଲା
ଗରିଷ୍ଠ ଗ୍ରହ ବଳିଷ୍ଠ ହେବାରୁ
ହାରିଗଲି ତାର ଦେଖି ଦାଉ ।। ୩ ।।

ଅହେ ପ୍ରଭୁ ଶଙ୍ଖ ଚକ୍ରଧାରୀ
ନ ଦେଖିଲେ କଷ୍ଟେ ଗଲି ସରି
ବୋଲେ ବେଣୁଧର ଏ ଦୁର୍ଦ୍ଦଶା ହର
ତବ ପାଦେ ସଦା ଧ୍ୟାନ ଥାଉ ।। ୪ ।।

**

**

# ମହାବାହୁ ! କେବେ ଦେବ ଦରଶନ ହେ

**ବେଣୁଧର**

(ବିଂଶ ଶତାବ୍ଦୀ)

[ତାଳ-ଆଠତାଳି]

ମହାବାହୁ ! କେବେ ଦେବ ଦରଶନ ହେ ?
ତବ ନାମ ବଳେ ନ ଉଦ୍ଧରିବ ହେଲେ
ଏ ପାମର ଦୀନ ହୀନ ହେ ।। ଘୋଷା ।।

ଏ ବିଷୟ ବିଷ ରଜନୀ ଦିବସ ଘାରୁଅଛି ମୋର ମନ ହେ
ଦିଅ ସଦବୁଦ୍ଧି ଆହେ ଦୟାନିଧି ନାଶ ଯାଉ ମୋ କୁଜ୍ଞାନ ହେ ।। ୧ ।।

ସାଧୁ ସଙ୍ଗ ଦିନେ କଲିନାହିଁ ପ୍ରଭୁ ନ କଲି ନାମ ଭଜନ ହେ
ମାୟା ମୋହେ ପଡ଼ି ଧନ୍ଦି ହେଉଅଛି ଲୋଭ ଗ୍ରସ୍ତେ ଗଲାଦିନ ହେ ।।୨।।

ଜପ ତପ ଦାନ ଧ୍ୟାନ କରିବାକୁ ଅଟଇ ମୁଁ କର୍ମହୀନ ହେ
ଏ ଭବାର୍ଣ୍ଣବରୁ କିପରି ତରିବି କହ ଆରତ ଭଂଜନ ହେ ।। ୩ ।।

ମାଗୁ ଅଛି ଏତେ ଶ୍ରୀ ପଦ ପଙ୍କଜେ ତବ ପଦେ ରହୁ ଧ୍ୟାନ ହେ
ବୋଲେ ବେଣୁଧର ତବ ନାମ ଧରି ଯାଉ ଏ ଛାରର ଜୀବନ ହେ ।। ୪ ।।

**

**

## ଚହାଁ ସଖୀ ଗଜ ଉଦ୍ଧାରଣ ବେଶକୁ

### ବେଣୁଧର

(ବିଂଶ ଶତାବ୍ଦୀ)

[ପ୍ରାଣବନ୍ଧୁ ଆସ କେଳିପୁରେ-ବୃତ୍ତେ]

ଚହାଁ ସଖୀ ଗଜ ଉଦ୍ଧାରଣ ବେଶକୁ ଆଜ ।। ପଦ ।।

ଆହା ସେ ନବ ଲାବଣ୍ୟ ରୂପ କେଡ଼େ ଶୋଭାବନ
ଦରଶନେ ବଶ ନୋହିବ କା ନେତ୍ର ସରୋଜ ।। ୧ ।।

ହୋଇଣ ଦିବ୍ୟ ଭୂଷଣ ଭ୍ରାତା ପତ୍ନୀ ସହିତେଣ
ବିଜେ ରତ୍ନ ସିଂହାସନେ ପ୍ରଭୁ ଶ୍ରୀ ଦେବରାଜ ।। ୨ ।।

ନାନା ପୁଷ୍ପ ହାରମାନ ଗଳାରେ ଦିଶେ ଶୋଭନ
ରତ୍ନ ମୁକୁଟାଦି ଅଳଙ୍କାରେ ହୋଇ ସଜ ।। ୩ ।।

ଆହା ସେ ମୂରତି ଛବି ବର୍ଣ୍ଣିବ କି ଛୁର କବି
ଦୀନ ବେଣୁଧର ଜଣାଏ ସେ ପଦ ସରୋଜ ।। ୪ ।।

**

**

# ଜୟ ଜଗଜ୍ଜନ ହିତକାରୀ

## ବେଣୁଧର

(ବିଂଶ ଶତାବ୍ଦୀ)

[ ରାଗ-ଗୁର୍ଜରୀ । ତାଳ-ଏକତାଳୀ]

ଜୟ ଜଗଜ୍ଜନ ହିତକାରୀ (ହେ ପ୍ରଭୁ)
ଶ୍ରୀ ନୀଳାଚଳ ବିହାରୀ ॥ଘୋଷା॥

ଦୈତ୍ୟକୁଳ ବିନାଶନକାରୀ
ନାମ ବହିଅଛ ଦଇତ୍ୟାରି
ଶଙ୍ଖାସୁରକୁ ହେଲେ ସଂହାରି, (ହେ ପ୍ରଭୁ)
ବେଦ ଆଣିଲ ଉଦ୍ଧାରି ॥୧॥

ପୁଣି କଚ୍ଛପ ରୂପେ ଶ୍ରୀହରି
ଚନ୍ଦ୍ରାକାରେ ଅବନୀକି ଧରି
ହୋଇ ବରାହ ରୂପ ମୁରାରି, (ହେ ପ୍ରଭୁ)
ଦନ୍ତେ ମହୀ ରକ୍ଷା କରି ॥୨॥

ନରସିଂହ ମୂର୍ତ୍ତି ହୋଇ କରି
ଭକ୍ତ ଛଳେ ହିରଣ୍ୟ ବିଦାରି
ପ୍ରହ୍ଲାଦକୁ ସ୍ୱର୍ଗେ ଇନ୍ଦ୍ର କରି, (ହେ ପ୍ରଭୁ)
ଭୁଞ୍ଜାଇଲ ସୁଖ ଶିରୀ ॥୩॥

ହବ୍ୟ ବାମନ ମୂରତି ଧରି
ବଳି ଦ୍ୱାରେ ହୋଇଲ ଭିଖାରୀ
ତିନି ପାଦ ଦାନ ମାଗି କରି, (ହେ ପ୍ରଭୁ)
ରୁପିଲ ପାତାଳ ପୁରୀ ॥୪॥

ପର୍ଶୁରାମ ରୂପେ ପର୍ଶୁଧର
କ୍ଷତ୍ରିୟଙ୍କୁ ରଣେ ଜିଣିକର
ରାମ ରୂପେ ଲଙ୍କା ଧ୍ୱଂସ କର, (ହେ ପ୍ରଭୁ)
ସୀତା ଆଣିଲ ଉଦ୍ଧାର ।।୫।।

ଗୋପେ ନନ୍ଦ ଘରେ ଜନ୍ମି କର
ହଳ ମୂଷଳ ଧାରଣ କାରି
ବୌଦ୍ଧ ରୂପେ ରହି ନୀଳଗିରି, (ହେ ପ୍ରଭୁ)
ମହିମା ଅଛି ବିସ୍ତାର ।।୬।।

କଳି ଶେଷେ କଳ୍କି ଅବତର
ମ୍ଳେଚ୍ଛ ସଂହାରିବ ଖଡ୍‌ଗ ଧର
ବେଣୁଧର ଶ୍ରୀପଦେ ଭିଖାରି, (ହେ ପ୍ରଭୁ)
ଭବାବ୍ଧିରୁ କର ପାର ।।୭।।

**

**

# ଅରକ୍ଷିତ ବନ୍ଧୁ

## ବେଣୁଧର

(ବିଂଶ ଶତାବ୍ଦୀ)

(ରାଗ-ତୋଡ଼ି ପରଜ । ତାଳ-ଏକତାଳୀ)

* ଅରକ୍ଷିତ ବନ୍ଧୁ ଆହେ କୃପାସିନ୍ଧୁ
ଅମଳ କମଳ ଡୋଳା
ଢଳେ ମୋହ ପ୍ରତି ଅକରୁଣ ନୁହ
ପ୍ରଭୁ ଭକ୍ତ ଭାବଭୋଳା ହେ
ଦୁରିତ ନାଶନ ରଥାଙ୍ଗ ପାଣି
ରାସ ରସିକ ଶ୍ରୀ ହରିଙ୍କି ବା କସ
ଅଜଣା ମୋ ଦୁଃଖ ଶ୍ରେଣୀହେ ॥୧॥

ଗୃହ ବର୍ଗ ଦାମ ହେଲି ମୁଁ ଅଧାମ
କାହିଁ ନ ମିଳଇ ବାସ
ପିତାମାତ ମୋର ସଂସାରୁ ବାହାର
କୁଳମୂଳ କଲି ନାଶ ହେ
ମୁହିଁଟି ତୁମ୍ଭର ଚରିତ ଗାଇ
ତେଣୁ କାଳିଆହେ ଏଣେ ତେଣେ ବୁଲେ
ପିତୃ ଅପରାଧୀ ହୋଇ ॥୨॥

---

* କବିଙ୍କର ପିତା କ୍ରୋଧବଶତଃ ଗୃହରୁ ବିତାଡ଼ିତ କରିଦେବାରୁ ଶ୍ରୀ ଶ୍ରୀ ଜଗନ୍ନାଥଙ୍କୁ ଏହି ଗୀତର ଆଦ୍ୟ ଅକ୍ଷରେ କବି କାନ୍ଦି କାନ୍ଦି ନିଜ ଦୁଃଖ ଜଣାଇଥିଲେ । ୧୯୧୫ ମସିହାରେ ଏ ଗୀତ ପୁରୀଠାରେ ରଚିତ ହୋଇଥିଲା ।

ବନ୍ଧୁ ଘର ଖୋଜି ଖୋଜି ଏବେ
ଆଜି ପାଇଛୁ ଦରିଦ୍ର ବନ୍ଧୁ
ଭିନ୍ନ କରି ଦଅପଛେ ତୁମ୍ଭେ ମୋତେ
ମାନସୁ ଗୋକୁଳ ଇନ୍ଦୁ ହେ
ଖାତିର ନାହିଁ ମୋ ଏଥିକି ଲବେ
ରହ ବହୁଲେ ତୁହ୍ମ ଏ ଧାନଠାରେ
ଠେଲ ଚରଣ ପଲ୍ଲବେ ହେ ।।୩।।

ଆଜନ୍ମରୁ କ୍ଲେଶ ଲଭିଛୁ ଅଶେଷ
କର୍ମେ ଯା ଦେଇଛ ଯାଚି
ହେ-ତା ମାଗୁନାହିଁ ବାଞ୍ଛା ମାଗୁନାହିଁ
ମାତ୍ର ଏତିକି ମାଗୁଛୁ ହେ
ହରଷେ, ଆଜ୍ଞା ହେଉ ତବ ସେବା
ଭକ୍ତ ହସ୍ତେ ବେଣୁଧର ଭେଟିବାର ଦୋଷ
ଲେଶ ନ ଧରିବା ହେବା ହେ ।
**

**
# କେତେ କହିବ ହେ
## ବେଣୁଧର
(ବିଂଶ ଶତାବ୍ଦୀ)

[ରାଗ-ତୋଡ଼ି ପରଜ । ତାଳ-ଆଡ଼ତାଳୀ]

କେତେ କହିବ ହେ ମୋ ଦୁଃଖ କାହାଣୀ ଆଜ
ଶୁଣି ନ ଶୁଣିଲା ପରି ତ ହେଉଛ
ମୋ କର୍ମକୁ ମହାବାହୁ ॥ଘୋଷା॥

ଅନ୍ତର୍ଯ୍ୟାମୀ ନାଥ ଆହେ ଜଗନ୍ନାଥ
ପତିତପାବନ ହରି
ଧରାମଧ୍ୟେ ରହି ଏତେ କଷ୍ଟ ସହି
ନପାରେ ମୁଁ ପ୍ରାଣଧରି ॥୧॥

ଶୁଣାଥିଲା କାନେ ଗୀତାଦି ପୁରାଣେ
ତୁମ୍ଭେ ଦୁଃଖ ହରା ବୋଲି
ଦେଖି କାଳ ଜାଣି ଏବେ ମୁଁ ତୁମ୍ଭଙ୍କୁ
ସୁଖହରା ନାମ ଦେଲି ॥୨॥

ନାନା ଅପଖ୍ୟାତି ଅସଂଖ୍ୟ ବିପତ୍ତି
ଭୋଗାଇଲ ବାଳକାଳୁଁ
ଭକ୍ତଙ୍କୁ ସ୍ପୃହା ଦେଇ ବୋଲାଇଛ
ତୁମ୍ଭେ ପରା ପରମ ଦୟାଳୁ ॥୩॥

ବୋଲେ ବେଣୁଧର ଆହେ ବିଶ୍ୱମ୍ଭର
ତୁମ୍ଭକୁ ନାହିଁକି ଜଣା
ମୁଁ ପାତକୀ ବର ବୋଲି ନିରନ୍ତର
ସଂସାରେ ବାଜେ ବାଜଣା ॥୪॥
**

**

# ଥକି ଗଲଣି ଡାକି ଡାକି ହେ

## ବେଣୁଧର

(ବିଂଶ ଶତାବ୍ଦୀ)

[ରାଗ-ଧନାଶ୍ରୀ । ତାଳ-ଝୁଲ]

ଥକି ଗଲଣି ଡାକି ଡାକି ହେ, ଚକା ଆଖି
ବଙ୍କା ବଇରାଙ୍କି ମୋର ବିପତ୍ତି ଗରୁ ହେଲା କି ॥ ଘୋଷା ॥

ରଜତ ମଞ୍ଚୁ ଆଜି    ଫକୀର ବେଶକୁ ସାଜି
ଅକିଞ୍ଚନେ ହୋଇଥିଲ ସାକ୍ଷୀ
ବକି ବକି ଯୋଗାଏଲ ଆଆନ୍ତ ସୁଖୀ
ଠକିଦେଲ କାହିଁ ପାଇଁ ଏବେ ଆଜନ୍ମ ଦୁଃଖିକି । ୧ ॥

ରଙ୍କି ସିନା ମୁଁ ସର୍ବଦା    ଶଙ୍କିତ ନ ଥିଲ କଦା
ପଙ୍କିଲ ନୟନ ତା'ର ଦେଖି
ଠଙ୍କି ନାହିଁ କର କେହ ଶିରେ ସଲଖି
ମୁଁ କି ଅପରାଧୁଁ ଦିବା ରଜନୀ ଲୋତକ ଆଖି ॥ ୨ ॥

ଲୁକି ଗଲକି ତୁମ୍ଭର    ମହିମା ଧନ ଭଣ୍ଡାର
ଶିଖି ଚୂଳିଆ ରହସ୍ୟ ଏକି ?
ଲେଖି ଭକ୍ତ ତମସୁକ ସ୍ୱହସ୍ତେ ଟେକି
ବିକଚ୍ଛୁ ପରା ଏ ଦେହ ଜୀବନ ତୁମ୍ଭ ଛହିଁକି ? ॥ ୩ ॥

ବାକୀ ଦା କି ଅଛୁ ମୋର    କହ ହେ କିଶୋରୀ ବର
ଝାକିଛୁଟା ଶୁଣିବା ପାଇଁକି
ତାଙ୍କି ନ ରଖ ଗୁପତେ ଆଙ୍କା ନଇକି
ଅକାରିଁ ନୋହୁ ଜଗତେ ବେଣୁଧର ଭଣେ ଯେ କି ॥ ୪ ॥

**

**

# ଅହେ ଦୀନବନ୍ଧୁ

## ବେଣୁଧର

(ବିଂଶ ଶତାବ୍ଦୀ)

[ରାଗ-ମଧୁଶ୍ରୀ । ତାଳ-ଏକତାଳି]

ଆହେ ଦୀନବଂଧୁ
ଦିନ ସରୁନାହିଁ ମୋର କାନ୍ଦୁ କାନ୍ଦୁ ॥ ଘୋଷା ॥

ଦୟାମୟ ବୋଲି ଜଗତରେ        ନାମ ବହିଅଛ ସବୁଠାରେ
ଦୁରିତ ନାଶନ ପତିତପାବନ
ବାନା ଲୁଚାଇଛ କେଉଁ ପୁରେ ? ॥ ୧ ॥

ଦୁଃଖି ସୋଦର ବୋଲାଅ ପରା
ଦୁଃଖ ମୋର ଦେଖି ବଂଶୀଧରା
ଦୁଇ ନୟନକୁ        ବୁଜି ଦେଲ କି ହେ
ଶିଖି ଶିଖଣ୍ଡ ମୁକୁଟ ଦ୍ବରା ॥ ୨ ॥

ଦାମୋଦର ଦ୍ୱିଜ ସଙ୍ଗେ ମିଳି ପୂର୍ବରୁ ଥିବାରୁ ପଦ୍ମନେତ୍ର
କୋଟି ବିଧି ଗଣି        ଦେଲ ସେହିକ୍ଷଣି
ମୋ ବେଳକୁ ହେଲ ଶୂନ୍ୟ ହସ୍ତ ॥ ୩ ॥

ଦଶବ୍ରୁ ସଙ୍ଖାଳି ହେ ମୋହନ ! ଦୁର୍ଦ୍ଦଶା ମୋହର ଅକଥନ
ଦୀନ ହୀନ ଭ୍ରର        ଦୋଷୀ ବେଣୁଧର
ଦୁଃସହ କଷଣେ ଝରେ ଦିନ ॥ ୪ ॥

(ଆହେ ଚକାଡ଼ୋଳା ଭକ୍ତ ଭାବକୁ ବାନ୍ଧିଛ ଶୂନ୍ୟ ଭେଳା-ଚୂଡ଼ରେ)

**

**

# ଅନାଥର ବଂଧୁ

## ଗୋପାଳଚନ୍ଦ୍ର ପ୍ରହରାଜ

( ବିଂଶ ଶତାବ୍ଦୀ )

ଅନାଥର ବନ୍ଧୁ,   ଅହେ କୃପାସିନ୍ଧୁ,
ମୋ ଦୁଃଖ ହେଲାଣି ଘୋର
ଉଠୁଛି ଲହର   ନାବ ହୁଏ ଘାର
କେମନ୍ତେ ହୋଇବି ପାର ॥ ୧ ॥

ପ୍ରଲୋଭନେ ପଡ଼ି   ସତ୍ୟପଥ ଏଡ଼ି
ବିବେକ ପଥକୁ ହୁଡ଼ି
ରିପୁବଶେ ଗଡ଼ି   ମାୟା ମୋହେ ଜଡ଼ି
ପାପେ ଯାଉଅଛି ସଡ଼ି ॥ ୨ ॥

ଜାଣୁ ଜାଣୁ ମୁହିଁ   ଅନଳକୁ ଡେଇଁ
ହେଉଛି ପତଙ୍ଗ ସର
ପାପ ପୁଣ୍ୟ ଜାଣି   ହୁଏ ମୁଁ ଅଜ୍ଞାନୀ
ହେଉଅଛି ହତଶିର ॥ ୩ ॥

ଦେଖି ପର ଦୁଃଖ   ନ ହୁଏ ବିମୁଖ
ମନରେ ଗର୍ବ ଆଚର
ମୁହଁରେ କହଇଁ   ଚିତ୍ତେ ନ ହେଜଇଁ
ବେଳକାଳ ଗଲା ସର ॥ ୪ ॥

**

**

# ପାପ ନାଶନ

## ଗୋପାଳଚନ୍ଦ୍ର ପ୍ରହରାଜ

( ବିଂଶ ଶତାବ୍ଦୀ )

ପାପ ନାଶନ ତାପ ବାରଣ
ଜଗତ ଜୀବନ ହେ
ସମ୍ବର ମୋର ଦୁଃଖ ସମ୍ଭର
ଦିଅ ସଦାଜ୍ଞାନ ହେ ॥ ୧ ॥

ଶାନ୍ତି ମୁକତି ଧର୍ମ ସୁଗତି
ଦିଅ ନିରନ୍ତର ହେ
ତୁମ୍ଭ ଚରଣେ ମୁହିଁ ଅନୁକ୍ଷଣେ
ଥାଏଁ ପଶକର ହେ ॥ ୨ ॥

ଯାହା ମୁଁ କରଇଁ ଯାହାମୁଁ କହଇଁ
ଯାହା ଶୁଣୁଥାଇଁ ହେ
ଯାହା ମୁଁ ଦେଖଇଁ ଯାହା ମୁଁ ଚିନ୍ତଇଁ
ରହୁ ତୁମ୍ଭ ଠାଇଁ ହେ ॥ ୩ ॥

ଦୁଃଖ ଜଞ୍ଜାଳ ପାପ ବହୁଳ
ଅସାର ସଂସାର ହେ
ଉଦ୍ଧର ଧର ଜଗତ ମଧ୍ୟର
ମୁଁ ଅଟେ ପାମର ହେ ॥ ୪ ॥

**

**

# ଜୟ ପତିତପାବନ

## ଶ୍ରୀ ଭିକାରୀ ଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

[ ଭୀମପଲାଶ୍ରୀ-କବାଲି ]

(ଜୟ) ପତିତପାବନ
(ତବ) ପତିତପାବନ ବାନା କରି ଦରଶନ
ଧନ୍ୟ ପତିତ ଜୀବନ ଧନ୍ୟ ପତିତ ନୟନ
ପତିତ ବେଦନ ଶୁଣି ପ୍ରଭୁ ଜନାର୍ଦ୍ଦନ
ପତିତପାବନ ମୂର୍ତ୍ତି କରିଛ ଧାରଣ ।

(ବସି) ନୀଳାଚଳେ ଲଗାଇଛ କେତେ ଆୟୋଜନ
ବ୍ରାହ୍ମଣ ଚଣ୍ଡାଳେ ଅନ୍ନ ଏକତ୍ରେ ଭୋଜନ
ଜଗତ ଭିତରେ ଏହି ଅପୂର୍ବ ଘଟଣ
ସର୍ବେ ନିର୍ବିକାର କରି ଶ୍ରୀମୁଖ ଦର୍ଶନ
ଜ୍ଞାନୀ ଧ୍ୟାନୀ ପୁଣ୍ୟବନ୍ତ ଜନ ଆଗମନ
(ଦେଖି) ବିସ୍ମିତ ହେଲ କି ପ୍ରଭୁ ପତିତ ମୋଚନ ।

**

**

## ଜଗବନ୍ଧୁ ଜଗତ ମୋହନ

### ଶ୍ରୀ ଭିକାରୀ ଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

[ ଭୈରବ-କବାଲ ]

ଜଗବନ୍ଧୁ ଜଗତ ମୋହନ
ଅଧମ ଅଗତି ଉଦ୍ଧାର ପାଇଁକି
ହୋଇଛ ପତିତପାବନ
ନୀଳାଚଳ ବାସୀ ନୀଳାଚଳେ ବସି
ଉଡ଼ାଇ ଦେଇଛ କେତନ ॥ ୧ ॥

ଯେତେ ଯେ ଜଗତେ ପତିତ ଜନଙ୍କୁ
ଡାକୁଛ କରିବ ମୋଚନ
ମର୍ତ୍ତ୍ୟପୁରେ ଦେଖି ପାପର ପ୍ରତାପ
ତୁମ୍ଭେ ପାପତାପ ନାଶନ ॥ ୨ ॥

ଭଲ ମର୍ତ୍ତ୍ୟେ ବାସ ସ୍ୱର୍ଗେ ସୁରଗଣ
ଲୋଡ଼ନ୍ତି ତୁମ୍ଭର ଦର୍ଶନ
ଅଶେଷ ପାତକୀ ଡାକୁଛୁ ଆରତେ
ତ୍ରାହି କର ମଧୁସୂଦନ ॥ ୩ ॥

**

**

# କଳା ଶ୍ରୀମୁଖଙ୍କୁ ମୁଁ ପୁଚ୍ଛଇଁ

## ବଛନ୍ଦ ଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

[ କେଶବ କୋଇଲି-ବୃତ୍ତେ ]

କୋଇଲି ! କଳା ଶ୍ରୀମୁଖଙ୍କୁ ମୁଁ ପୁଚ୍ଛଇଁ
କେବେ ପାଦତଳେ ଠାବ ଦେବେ ରମାସାଇଁ
ଲୋ କୋଇଲି ॥ ୧ ॥

କୋଇଲି ! ଖେଦ ଜଳେ ଗଲି ମୁହିଁ ଭାସି
ଷସ୍ତୁ ସେ କରିବେ କେବେ ମୋ ପାତକ ରାଶି
ଲୋ କୋଇଲି ॥ ୨ ॥

କୋଇଲି ! ଗରୁ ସିନା ମୋ ପାତକ ଭାର
ଗରୁଡ଼ଧ୍ୱଜଙ୍କୁ ତାହା କେତେକ ମାତର
ଲୋ କୋଇଲି ॥ ୩ ॥

କୋଇଲି ! ଘୋର ମୋର ଘରର ଜଞ୍ଜାଳ
ଘଡ଼ଏ ନ ଚଞ୍ଚଳଇଁ ପ୍ରଭୁ ଆଦ୍ୟମୂଳ
ଲୋ କୋଇଲି ॥ ୪ ॥

କୋଇଲି ! ଅଣାସ୍ଥିତ କରଇ ବ୍ୟବସ୍ଥା
ଅଖିଳ ବ୍ରହ୍ମାଣ୍ଡ ପତି ନ କରନ୍ତି ଦସ୍ଥା
ଲୋ କୋଇଲି ॥ ୫ ॥

କୋଇଲି ! ଚକାଡୋଳା କଣ୍ଠେ କି ସତେ
ଚିତ୍ତ ମୋ ରହିବ ତାଙ୍କ ମଧ୍ୟେ ଅନୁବ୍ରତେ
ଲୋ କୋଇଲି ॥ ୬ ॥

କୋଇଲି ! ଛିଣ୍ଡି ଯାଉ ଏ ବିଷୟୀ ଡୋର
ଛଚ୍ଛନ୍ଦା ପଦ୍ମରେ ତାଙ୍କ ଏ ମୋର ଗୁହାର
ଲୋ କୋଇଲି ॥ ୭ ॥

କୋଇଲି ! ଜଗନ୍ନାଥେ କରନ୍ତୁ କରୁଣା
ଯୋଡ଼ହସ୍ତେ ମାଗଇଁ ମୁଁ କଲି ତୋତେ ଜଣା
ଲୋ କୋଇଲି ॥ ୮ ॥

କୋଇଲି ! ଝାଡ଼ ସରି ଏ ଜୀବନ ପଥ
ଝୁଣ୍ଟି ମରେଁ ଖସି ଗୋଡ଼ ହୋଇ ଅଣାୟତ
ଲୋ କୋଇଲି ॥ ୯ ॥

କୋଇଲି ! ଅଳି ଯେମା କରି ଶିଖିପଢ
ଅମ୍ବରତେ ପଦ୍ମପାତେ ଖଣ୍ଟାନ୍ତୁ ମୋ ମଢ
ଲୋ କୋଇଲି ॥ ୧୦ ॥

କୋଇଲି ! ଟିକାଏକ କଲେ କୋପଦୃଷ୍ଟି
ଟଳିଯିବ ନିମିଷକେ ମୋ ପାତକ ସୃଷ୍ଟି
ଲୋ କୋଇଲି ॥ ୧୧ ॥

କୋଇଲି ! ଠିକେ ଏ ସଂସାର କରେ ବଣା
ଠୁଲେ ବିଚ୍ଛନ୍ନ ପାତକ ଗିରି ହେଉ ଚୂନା
ଲୋ କୋଇଲି ॥ ୧୨ ॥

କୋଇଲି ! ଡାକବକା ଅଟେ ମୋ ଦୁରିତ
ଡୋଲେ ଦେଖି ନ ଦେଖନ୍ତୁ ନୀଳଗିରି ନାଥ
ଲୋ କୋଇଲି ॥ ୧୩ ॥

କୋଇଲି ! ଡାଳେ ଯେବେ କରୁଣାର ବାଣ
ଡାଳନ୍ତେ ଦୂରିତ-ତମ ରହନ୍ତା କି ମୋର
ଲୋ କୋଇଲି ॥ ୧୪ ॥

କୋଇଲି ! ଅନନ୍ତ କୋଟି ବ୍ରହ୍ମାଣ୍ଡ ପତି
ଅଣୁ ଏକ କଲେ କୃପା ଏଡ଼ନ୍ତ ବିପତ୍ତି
ଲୋ କୋଇଲି ॥ ୧୫ ॥

କୋଇଲି ! ତରିଯାନ୍ତି ଏ ଭବ- ସରିତ
ଧଲେ ନ ଛୁଅନ୍ତା ମୋରେ ପ୍ରପଞ୍ଚ ଦୂରିତ
ଲୋ କୋଇଲି ॥ ୧୬ ॥

କୋଇଲି ! ଅନ୍ତେ ଠାବ ଲଭି ତାଙ୍କ ପଦେ
ଥିର ସୁଖ ଭୁଞ୍ଜିବି କି ଥାଇ ଅପ୍ରମାଦେ
ଲୋ କୋଇଲି ॥ ୧୭ ॥

କୋଇଲି ! ଦାସ୍ୟା ସତେ ବସିବ ଚଉରେ
ଦାସ୍ୟାନନ୍ଦ ଭସାଇବେ ଦାସ୍ୟା-ସରିତରେ
ଲୋ କୋଇଲି ॥ ୧୮ ॥

କୋଇଲି ! ଧାମ ତାଙ୍କ ହରାଇ ମୁଁ ଆସି
ଧରାତଳେ ରହିଛୁଁ ହୋଇ ପରବାସୀ
ଲୋ କୋଇଲି ॥ ୧୯ ॥

କୋଇଲି । ନରକର ବାଟୁଁ ହାତ ଧରି
ନେବକି ସତେ ସେ ମୋର ନୀଳାଦ୍ରି ବିହାରୀ
ଲୋ କୋଇଲି ॥ ୨୦ ॥

କୋଇଲି ! ପାପ ମୋର ଅଛି ଅଗଣିତ
ପ୍ରଭୁ କୃପା କଲେ ହେଲେ ହେବ ତାହା ହତ
ଲୋ କୋଇଲି ॥ ୨୧ ॥

କୋଇଲି ! ଚିହ୍ନାନ୍ତୁ ସେ ଭାବ ଗର୍ଣ୍ଣି ମୋର
ଫନ୍ଦାଧନ ମୋର ସେ ଯେ କମଳାଙ୍କ ବର
ଲୋ କୋଇଲି ॥ ୧୨ ॥

କୋଇଲି ! ବାସ ସିନା ମୋର ତାଙ୍କ ଧାମ
ବନ୍ଧ ବନ୍ଧଅଛୁ ପରବାସେ ହୋଇ ବାମ
ଲୋ କୋଇଲି ॥ ୧୩ ॥

କୋଇଲି ! ଭବ ଜଳଧିରୁ କରେ ଗ୍ରାଣି
ଭବଭୀତ ବନ୍ଧୁନ୍ଦେ ରଖନ୍ତୁ ଚକ୍ରପାଣି
ଲୋ କୋଇଲି ॥ ୧୪ ॥

କୋଇଲି ! ମାଟିର ଏ ଦେହ ହେବ ମାଟି
ମଙ୍ଗଣାନ୍ତେ ଧାମେ ତାଙ୍କ ଯିବଇଁ କ ଛୁଟି
ଲୋ କୋଇଲି ॥ ୧୫ ॥

କୋଇଲି ! ଯମ ଫାଶ ନ ଲାଗିବ ଗଳେ
ଯିବ ସବୁ ଲୋକ ଲଙ୍ଘି ଜଗନ୍ନାଥ ଆଳେ
ଲୋ କୋଇଲି ॥ ୧୬ ॥

କୋଇଲି ! ଗଙ୍ଗାଧରେ ଆଜ୍ଞା ଦେଲେ ହର
ରମା ସାରଦା ଫେଡ଼ିବେ କଷଣ ମୋହର
ଲୋ କୋଇଲି ॥ ୧୭ ॥

କୋଇଲି ! ଲୀଳା ତାଙ୍କ ହୋଇବ ଗୋଚର
ଲୀଳାମୟ ଦେବେ ଠାବ ନିଜ ପସ୍ମରର
ଲୋ କୋଇଲି ॥ ୧୮ ॥

କୋଇଲି ! ବଡ଼ ଆଶା ପୋଷିଅଛୁ ମନେ
ବିଷ୍ଣୁ ପଦ୍ମରେ ପଶିବ ଗୁରୁ ସୁପ୍ରସନେ
ଲୋ କୋଇଲି ॥ ୧୯ ॥

କୋଇଲି ! ମିଳିବ ମୋର ବନ୍ଦିବେ ଶାରଦା
ଶୋଣ କମଳଚରଣା ଶ୍ରୀ ହେବେ ବରଦା
ଲୋ କୋଇଲି ॥ ୩୦ ॥

କୋଇଲି ! ଷଡ଼ାନନ ପିଅର ଶଙ୍କର
ଚଉରସ୍ତୁ ନାଶେ ଯାହା ହୋଇବେ ମୋହର
ଲୋ କୋଇଲି ॥ ୩୧ ॥

କୋଇଲି ! ସବିତା ଗଣେଶ ଗିରିବାଳା
ସମସ୍ତେ ନାଶିବେ ମୋର ପଥରୁ ଅର୍ଗଳା
ଲୋ କୋଇଲି ॥ ୩୨ ॥

କୋଇଲି ! ହେଉ ମୋର ବିଷ୍ଣୁ ପଦେ ବାସ
ହରି ଚନ୍ଦନେ ମଗନ ହେଉ ମୋ ମାନସ
ଲୋ କୋଇଲି ॥ ୩୩ ॥

କୋଇଲି ! କ୍ଷମି ସବୁ ସଞ୍ଚିତ କରମ
କ୍ଷମାନିଧି ବିଚ୍ଛେଦେ ଦିଅନ୍ତୁ ନିଜ ଧାମ
ଲୋ କୋଇଲି ॥ ୩୪ ॥

**

**

# କୋଟି ଜନମର

ବଚ୍ଛନ୍ଦଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

[ ରାଗ-ଶୋକ କାମୋଦୀ ]

କୋଟି ଜନମର କଳୁଷ ଖଣ୍ଡନ୍ତ
କଣାଏଁ କରୁଣା କଲେ୍ ହରି
କ୍ଷୟ ଯାନ୍ତା ମୋର ସକଳ ଦୁଷ୍କୃତ
କଲା ଶ୍ରୀମୁଖକୁ ବାରେ ହେରି
ଆହେ ଗିରିଧାରୀ !
ଘଟ ଘଟକେତ ଅଛ ପୂରି
ଅଧମେ ମୋ ସରି ଅକରୁଣା କର୍ମା
ମରଇ ମୁଁ ମାୟାଜାଲେ ଘୂରି ॥୧॥

ଚପଳା-ଖେଳାରୁ ଚପଳ ଯେ ଭୋଗ
ତହୁଁ ନ ତୁଟଇ ଆଶା ମୋର
ଛନ୍ଦି ହେବାପାଇଁ ଭୋଗ ନାଗ ଫାଶେ
ମନ ମୋ ହୁଅଇ ତତପର
ଆହେ ଯଦୁପତି !
ଝଟତି ସୁଧାର ଏ ମୋ ମତି
ନବ ଦୂର୍ବାଦଳ ଶ୍ୟାମ ଅଭିରାମ
ନାମରେ ଉନ୍ମତ୍ତ ଦିଅ ରତି ॥୨॥

ଟାଳି ଦିଅ ହରି ଚଉଁ ମୋହଗିରି
ନୟନୁଁ ପରଳ କର ଦୂର

ଠାବ ଦିଅ ରଙ୍ଗା ଚରଣରେ କାକ
ଭୂଷଣ୍ଡି ଭାଗ୍ୟ କରି ଦିଅ
ଆହେ ଗିରିଧାରି !
ଟାଳେ ମୋ ଦୁର୍ଗତି ଦିଅ ସାରି
ଅଗତିର ଗତି ଜନକଜାପତି
ଅହଲ୍ୟା ତାରଣ ଦଇତାରି ॥୩॥

ତିନି ଭୁବନରେ ମୋହ ସମାନରେ
ପତିତ କେ ଅଛି ନାହିଁ ଜାଣି
ଅସ୍ଥି ନୋହେ ଲେଶ ଏ ମୋର ମାନସ
ନଳିନୀ ଦଳରେ ଯେହ୍ନେ ପାଣି
ଆହେ ଦାରୁ ହରି !
ଧୃତି ଭୂତି ମୋର ଯାଏ ସରି
ନୀଳାଦ୍ରି ଚନ୍ଦ୍ରମା ! ମୋହ ମାୟା-ଅମା-
ଅନ୍ଧାର ଗ୍ରାସଇ ମୋରେ ଘେରି ॥୪॥

ପତିତ କାହାକୁ ତାରି ନାହିଁ ନାଥ
ଭବ କୂପେ ନିପତିତ ମୋରେ
ଫାନ୍ଦ ହୋଇ ମାୟା ବାନ୍ଧଇ ନିରତେ
ଦେଖୁଥିବ ଚକା ନୟନରେ
ଆହେ ବିଶ୍ୱମ୍ଭର
ଭବଭୀତ ମୁଁ ଯେ ନିରନ୍ତର
ମାୟାର ପଟଳ ବଢଇ ପ୍ରବଳ
କମ୍ପାଏ ମୋ ଛର ଅରଧର ॥୫॥

ଯମ ଯାତନାରୁ ନିସ୍ତରିବି କେହ୍ନେ
ଯମ ନିୟମରେ ନାହିଁ ଚଳି
ରତିଏ ହେଲେ ମୁଁ ଭୀତି ରଖିନାହିଁ
ଅଧର୍ମୀ ଚରଣେ ବନମାଳି !
ଆହେ ଲୀଳାମୟ !

ବଶ କର ନାହିଁ ମୁଁ ଇନ୍ଦ୍ରିୟ
ଶମଇ ନାହିଁ ମୋ ମନୋରଥ ଜ୍ୱାଳା
ତ୍ରିତାପ ଦହନେ ମୁଁ ଅଥୟ ।।୭।।

ଷୋଳ ଉପଚାରେ ପୂଜା ଲଭିବାରେ
କାମନା-କାମିନୀ କରେ ହଠ
ସନ୍ତରିବ କେମନ୍ତେ ଭବସିନ୍ଧୁ-ନୀର
ନାହିଁ ଅଳକୂଳ ନାହିଁ ଘାଟ
ଆହେ ହୃଷୀକେଶ ।
କ୍ଷମା କର ଦଶାଇବ ଦଶ
କ୍ଷୀଣ ବୁଦ୍ଧି ଶୁଭ ବିଚ୍ଛନ୍ନ ପାମର
ନୋହିଲେ ମୁକର'ଗଲ ନାଶ ।।୮।।

**

**

# ଆହେ ନୀଳାଚଳ ବିହାରୀ

## ବିଚ୍ଛନ୍ନ ଚରଣ ପଟକାତ୍ମକ

( ବିଂଶ ଶତାବ୍ଦୀ )

[ରାଗ-କଲ୍ୟାଣ]

ଆହେ ନୀଳାଚଳ ବିହାରି !
ପାତକ ପାତକ ଖଣ୍ଡନ କାରି ।। ଘୋଷା ।।

ନବ କଳେବର ଦରଶନ ତୁମ୍ଭ
ପାତକ ସୃଷ୍ଟିକ ଦେଉଛୁ ସାର
ପ୍ରେମ ଚନ୍ଦ୍ରାମଣି ଉଜାଡ଼ି ଦେବାକୁ
ରଥେ ଅବେଢ଼ିଛ ରଥାଙ୍ଗଧାରୀ ।। ୧ ।।

ସଭିଙ୍କ କଲୁଷ କରିବାକୁ ନାଶ
ଡାଳି ଅକାତରେ କରୁଣା-ବାରି
ଅକଳିତ ଜନ ଆଣିଅଛ ଟାଣି
ଚରଣ ତଳକୁ ଲଗାଇ ଡୋରି ॥ ୨ ॥

ମୁଁ ହୀନ ପାମର କୀଟ ନରକର
କଲୁଷେ ଆବୃତେ ଅଛି ମୋ ସରି
ଭ୍ରମି ଭବପଥ ତୃଷାରେ ଆରତ
ଆଶ୍ରା ଏକା ତୁମ୍ଭ କରୁଣା ଝରି ॥ ୩ ॥

ଅସୁମାରି ଦାଉ ଜନନୀ ଜଠର
ଭ୍ରମିଲିଣି ତୁମ୍ଭ ଧାମ ମୁଁ ହାରି
ମୋରେ ଆଜ୍ଞା ହେଉ ଆହେ ମହାବାହୁ
ଏଥୁଁ ଗର୍ଭବାସ ଯାଉ ମୋ ସରି ॥ ୪ ॥

ଭୌମ ବଇକୁଣ୍ଠ ବିହାରି ! ଅକୁଣ୍ଠ
ମନେ କେତେ କା'ରେ ନ ଦେଲ ତାରି
ଦସ୍ୟୁଙ୍କୁ ସାମନ୍ତ ଦସ୍ୟୁଙ୍କୁ ପଙ୍କୁ
ବଳି ମୋ ପାତକ ନୁହେଁ ତ ଭାରି ॥ ୫ ॥

ମୋ ସଞ୍ଚିତ କର୍ମ ବଳାଉଛି ମୋରେ
ନ ପାରଇଁ ବହି ତା ଅତି ଭାରି
କାନ୍ଦ ମୋ ଉଶ୍ୱାସ କର ବଶ୍ୱବାସ !
ପାତକୀ ବିଚ୍ଛନ୍ଦ ଡାକେ ଫୁକାରି ॥ ୬ ॥

**

**

## ଜଗବନ୍ଧୁ

### ଲୋକନାଥ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ଜଗବନ୍ଧୁ ତୁମେ ମୋର
ମୋର ଗୁହାରି ଶୁଣ ॥ ଘୋଷା ॥

କାଳ ଜନ୍ତୁ ସିଣ ଦେଖାଏ ଡରିଣ
ପରାଣ ନେବାକୁ କରିଛି ଟାଣ
ବାରଣ ତାରଣ କର ହେ କାରଣ
ତୁମ୍ଭଙ୍କୁ ମୋ ପ୍ରାଣ ହେ ରଘୁପ୍ରାଣ
ଦାତା ଆପଣ, ହେଲେ କୃପଣ ପଣକୁ ପଣ
ପାପୀଗଣ କାହିଁରେ ଡାକିବେ ପୁଣ ହେ ॥ ୧ ॥

ବିରଞ୍ଚି ଭିଖାରି କରି ପରାୟଣ
ତୁମ୍ଭଙ୍କ ନାମକୁ ହେ ନାରାୟଣ
ଲଭିଲେ କାରଣ ଚରଣେ ଶରଣ
ଗାଏ ମୁହିଁ ଜଗବନ୍ଧୁ ଜଣାଣ
ଗୁଣନ୍ତି ଗୁଣ ଚନ୍ଦ୍ର ଅରୁଣ ବାୟୁ ବରୁଣ
ଶୁଝି କେ ପାରିବ ତୁମ୍ଭର ଋଣ ହେ ॥ ୨ ॥

ତୁମ୍ଭେ ସବଜାଣ ମୋ କପଟ ଜାଣ
ଜାଣି ଜାଣି ଯେବେ ହେବ ଦାରୁଣ
ଭକତ ଭୂଷଣ ନାମକୁ ଦୂଷଣ
ନ ହେବକି ବାରେ ମନରେ ଗୁଣ
କଲେ କ୍ଷେପଣ କୃପା ଇକ୍ଷଣ ଦୀନ ରକ୍ଷଣ
ଦୁଃଖ ଯିବ ଦୂରେ ସହସ୍ର କୁଣ ହେ ॥ ୩ ॥

**

**j

# ଜଗବନ୍ଧୁ ଅନ୍ଧାରକଣା

## ଲୋକନାଥ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

ଜଗବନ୍ଧୁ ଅନ୍ଧାରକଣା
ଭଲମନ୍ଦ ତୋତେ ନଗଲା (ଆରେ) ଭଲମନ୍ଦ
ତୋତେ ନଗଲା ଜଣା
ଯେତେ ମାରୁସାରୁ ଅଖାଦ୍ୟ କଖାରୁ
କୈବଲ୍ୟ କଣାରେ କଲୁ ତୁ ଗଣା ॥ ୦ ॥

ମହାପରସାଦ ଅଭଡ଼ା ଗରଗଡ଼ ମିଶା ବଗଡ଼ା
(ହେ ନାଲି ବଗଡ଼ା)
ପାଟିରେ ପୂରାଇ ରଗଡ଼ ଦେଉଛୁ (ପାଟିରେ)
ଡାଲି ବୋଲି ଖାଲି ଅସିଝା ଚଣା ॥ ୧ ॥

ପିଠା ବୋଲି କାଳିଆ ସୂନା-ଖାଉ ଖାଲି ଗୁହଳ ଚୂନା
(ହେ ଗୁହଳ ଚୂନା)
ଅମାଲୁ ଦମାଲୁ ଭଣ୍ଡି କରେ ଗଲୁ
ସେତ ରହଣିଆ ଘିଅରେ ଛଣା ॥ ୨ ॥

ଖାଉ ଭୋଗ ବାର ବୋଲଣା-ଲୁଣିଆ କି ହେଉ ଅଲଣା
(ହେ ହେବ ଅଲଣା)
ଅକାଣ୍ଡିଆ ଚୂଡ଼ା ହୁଡୁମ୍ବ ଉଖୁଡ଼ା
ଗିଳିଦେବାପାଇଁ ହେଉଛୁ ବଣା ॥ ୩ ।

ଜୀଭ ତୋର ସହସ୍ର ଫଣା-ଫେଟରେ ତୋ କୋଟିଏ ଠଣା
(ହେ କୋଟିଏ ଠଣା)
ହେଣ୍ଟି ମାର ମାଣ ତେଣ୍ଟି ଦେହ ହର
ଅଁଧର ସଗଳ ଅଧର ପଣା ॥ ୪ ॥

ଜଗବନ୍ଧୁ କରୁଛୁ ଜଣା କର ନବ ଅବତାରଣା
(ହ ଅବତାରଣା)
ବାରେ ଜଗନ୍ନାଥ ମୋର ମନ-ରଥ
ଦଉଡ଼ି ଲଗାଇ ତୋ ପାଶେ ଟଣା ॥ ୫ ॥

**

**

# ଜଗବନ୍ଧୁ ବଡ଼ ହୁଟିଆ

**ଶ୍ରୀ ଲୋକନାଥ ପଟ୍ଟନାୟକ**

(ବିଂଶ ଶତାବ୍ଦୀ)

ଜଗବନ୍ଧୁ ବଡ଼ ହୁଟିଆ (ଜଗବନ୍ଧୁ ବଡ଼ ହୁଟିଆ)
ଅଘଟ ଘଟିଆ ନଟକୁଟିଆ (ରେ ଅଘଟ······)
ମଞ୍ଚାରୁ ପକାଇ ମାମୁଁକୁ ମାଇଲା
ବାଳୀକି ମାଇଲା ପଛପଟିଆ ॥୧॥

ନନ୍ଦପୁଅ ନୂଆ ନଟିଆ କପଟିଆ ପୀତ ପଟିଆ
(ସେ ପୀତ ପଟିଆ)
ମାଈଁ ସଙ୍ଗେ କେତେ ରଙ୍ଗ ଲଗାଇଲା
ବରଜ ଯୁବତୀ ପଟ ଲୁଟିଆ ॥୨॥

ଚକା ଡୋଳା ବଡ଼ ଗଣ୍ଡିଆ—ଜଗଜ୍ଜନ ମନ ଲୁଣ୍ଡିଆ
କାହାକୁ ଦେଇଛ କୋଠିଆ ବେଠିଆ
କାହାକୁ ଦେଇଛ ରୁଗ୍ଣ ମାଠିଆ ॥୩॥

ଚକା ଆଖି ଚୂଳ ବେଣ୍ଡିଆ ପଣ୍ଡା ପଢ଼ି ହାଣ୍ଡି-ମେଣ୍ଡିଆ
କାହାକୁ ଦେଉଛ ଶ୍ରୀ ଅଙ୍ଗ ଶୁଣ୍ଡିଆ
କାହାକୁ ଦେଉଛ ଦୂରୁ ଭଣ୍ଡିଆ ॥୩॥

ବଡ଼ ଦାଉଁ ବନମାଳିଆ   ବଡ଼ଲୋକ ପ୍ରୀତି ପାଳିଆ
କାହାକୁ କରୁଛ ଗ୍ରାମୁ ଖୁଣ୍ଟିଆତ
କାହାକୁ କରୁଛ କଳା ବେଠିଆ ॥୪॥

ଆଘ.ମର କୂଳ କାଳିଆ   ଦଗାଦିଆ ଜଗା କାଳିଆ
କାହାକୁ ନରୁଚେ ପଲଙ୍କ ସୁପାତ
କାହାକୁ ନମିଳେ ଭଙ୍ଗା ଖଟିଆ ॥୫॥

କାରେ କଲା ପାଟ ଶାଢ଼ିଆ-କଲାକାରେ ଧାନ କୁଟିଆ
କାହାକୁ କରୁଛ ତିଳକ ମାଟିଆ
କାରେ ବା କରୁଛ ଦାସ କାଠିଆ ॥୬॥

**

**

## ଜଗବନ୍ଧୁ ବଡ଼ କାଳିଆ

### ଶ୍ରୀ ଲୋକନାଥ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ଜଗବନ୍ଧୁ ବଡ଼ କାଳିଆ
ତା ଗୀତ ଦେଖି ମୁଁ ହେଲିଟି (ଆହେ)
ତା ଗୀତ ଦେଖି ମୁଁ ହେଲି ହାଲିଆ ।
ଖଜା ସରଭଜା ମହଜେ ଭୁଞ୍ଜିଲ
ମୋ ପାଇଁ ଖଞ୍ଜିଲ ଦୋଭଜା ଲିଆ ॥ ୦ ॥

ସରପଣା ଗୁଣିଗୁଣିଆ   ଖାଏକୋଠ ବେଗ କାଜକା
(ହେ ସରୁକାଜକା)
ମୋ ପାଇଁ ଦେଇଛୁ ବଗଡ଼ା ଅଭଡ଼ା
ସେ ପୁଣି କର୍ମକୁ ତୁଚ୍ଛା ବାଲିଆ ॥ ୧ ॥

କଳା ଖାଲୁ ଖାଉଛୁ ବସି   ଅପମାଲୁ ଛାଡଆ କସି
(ହେ ଯାଉଛୁ ଚଷି)
ସଶସିବ ବୋଲି ବରଦ କରଛୁ
ଗଣବଙ୍କ ପାଇଁ ଖଡ଼ା ଜାଲିଆ ॥ ୨ ॥

ଜଳେ ପିନ୍ଧେ ପାଟ ପଡନୀ   କଷ୍ଟୀଉଟେ ଫେର ଲୋଟଣି
(ହେ ସବୁକାଛେଣି)
ମୋ ପାଇଁ ହଣଆ ଦେଇଛୁ କଣଆ
ସେ ପୁଣି ଜପଟ ଜାଲି ଜାଲିଆ ॥ ୩ ॥

ଘରକଲା ମାଳ ଶଇଲେ ବଡ଼ ପେଟା ବଡ଼ ଦେଉଲେ
ମୋ ପାଇଁ କରୁଣା ବାଣଧି ଦେଇଛୁ
ଘୃଣ ହାତ ଲମ୍ବ ଖଣ୍ଡେ ଘୃଳଆ ॥ ୪ ॥

ଜଗବନ୍ଧୁ ଅନ୍ଧାର କଣା-   ଖମ୍ବଆଲୁ ତା ଭୁଟ୍ଟାମଣା
(ହେ ତା ଭୁଟ୍ଟାମଣା)
ନ ଶୁଭେ କାଲକୁ ଭଲ ମୋ ଖାଲକୁ
ଭଲ ଯାକ ସବୁ ହେଲା ଖଲଆ ॥ ୫ ॥

ପର ଘର ବୁଡ଼ା କାଲିଆ କଲା ମୋତେ କର ଛାଲିଆ
(ହେ ଜଡ ପାଲିଆ)
ଧରାଇଲା ହାତେ ଖପର ଆଲିଆ
ମୁଣ୍ଡରେ ପିଟିଲା କାଠ ଫାଳିଆ
(ମୋ ମୁଣ୍ଡରେ ପିଟିଲା କାଠ ଫାଳିଆ) ॥ ୬ ॥

**

**

# ଭଜମନ-ସଜ୍ଜନ ରଞ୍ଜନକାରୀ

## ଶ୍ରୀ ଲେକନାଥ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

[ ରାଗ-ଆଶାବରୀ ]

ଭଜମନ-ସଜ୍ଜନ ରଞ୍ଜନ କାରୀ (ଭଜମନ)
ଭଜ ମୁରାରି ଭବଭୟ ହାରୀ
କେଶବ କୃଷ୍ଣ କଂସାରି ||୦||

ମୃଗମଦ ଚର୍ଚ୍ଚିତ ସୁରନର ଅର୍ଚ୍ଚିତ
ଚରାଚର ମାନସ ହାରୀ
ବ୍ରଜରାଜ ନନ୍ଦନ ଯୋଗୀଜନ ବନ୍ଦନ
ମୋହନ ମନ୍ଦର ଧାରୀ ||୧||

ବାରଣ ନିସ୍ତାରଣ ଧନୁଶର ଧାରଣ
ଉଦ୍ଧାରଣ ଗୌତମ ନାରୀ
ସୀତାପତି ସୁନ୍ଦର ବିଜେ ନୀଳ କନ୍ଦର
କମଳ ସଙ୍କାଶ ଧାରୀ ||୨||

ବିପତ୍ତି ବିଭଞ୍ଜନ ଅଳିକୁଳ ଗଞ୍ଜନ
ବୃନ୍ଦାବନ ନିକୁଞ୍ଜ ବିହାରୀ
ଚନ୍ଦ୍ରରେଖା ଖଣ୍ଡିତ ମଣିମାଳା ମଣ୍ଡିତ
ଦାରୁବ୍ରହ୍ମ ଦଇତ୍ୟାରି ||୩||

**

**

# ମଣିମା ଶୁଣିମା ଦ୍ୱାରେ

## ଶ୍ରୀ ଲୋକନାଥ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ମଣିମା ଶୁଣିମା ବାରେ
ଡାକେ ମୁଁ ମନ୍ଦର ଦ୍ୱାରେ
ବୁଡ଼ିତ ଯାଉଛି ନାଥ   ପଡ଼ି ଦୁଃଖ ପାରାବାରେ ॥୧॥

ବ୍ରହ୍ମାଣ୍ଡେ ବାଜୁଛି ବାଜା
କୃପାଳୁ ନୀଳାଦ୍ରି ରାଜା
ନିବାର ଦ୍ରୌପଦୀ ଲଜ୍ଜା
ଉଡ଼େ ଯା କୀରତି ଧ୍ୱଜା
କୃତାନ୍ତ ଅନ୍ତକାରୀ-କାଣ୍ଡ କୋଦଣ୍ଡ ଧାରୀ
ଚରା ଚର ସଂସ୍କୃ   କଳି କଳୁଷ ହାରୀ
ବାରୁଣୀବନ୍ତ ତାରୀ   ଦାରୁ ବ୍ରହ୍ମ ମୁରାରୀ
ମୋହମାୟା ଜଳଧି   ଜନ୍ତୁ କରିବା ପାରି ॥୨॥

ଆଜନ୍ମ କାଳରୁ ଆଶ
ଶ୍ରୀ ପଦେ ରଖିଛି ଦାସ
ଭୃଶତେ ଦୁରିତ ନାଶ   ଶ୍ରୀବତ୍ସାଙ୍କ ପୀତବାସ
ପ୍ରପଞ୍ଚ ଜନ୍ମରଣ   ନେବ ପଞ୍ଚ ପରାଣ
ମାର ମରମ ବାଣ   ଭାଙ୍ଗି ଦେବଟି ଟାଣ
ଶରଣାଗତ ଜନେ   ଉଦ୍ଧର ନାରାୟଣ
କରୁଣାକର ପ୍ରଭୁ   କରହେ ପରିତ୍ରାଣ ॥୩॥

**

**

# ନାହିଁ କରି ଦେଲେ

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ନାହିଁ କରିଦେଲେ କଥାଟି ସରନ୍ତା
  କାହିଁକି ପିଟନ୍ତି ମଥା,
କେତେ ଆଉ କହୁ, ଦାଦରା କାନ୍ଥରେ
  ଲଥୀ ପରେ ଦେବ ଲଥା
  ଜଗନ୍ନାଥ !
  ବୋଲାଉଛ ଦୀନବନ୍ଧୁ
ମୋହରି ବେଳକୁ ଶୁଖିଗଲ କହେ
  ଅଥଳ କରୁଣା ସିନ୍ଧୁ ? ॥ ୧ ॥

ନୟନେ ଯମୁନା ଉଜାଣି ଖେଳୁଛି
  ମନ ହେଲେ ଖେଳ ନାଆ
ସାରା ବରଷର ସବୁ ଋତୁ ଛାଡ଼ି
  ଶ୍ରାବଣ ଧାରା ମୋ ସାହା
  ଜଗନ୍ନାଥ !
  ତେବେ ହେଲେ ମନୋରଥ
ପୁରିଲା ନାହିଁ ତ କଠୋର ପାଷାଣ
  ପାଲଟିଲା ସ୍ୱର ରଥ ॥ ୨ ॥

ଶକତ ନ ଥିଲେ ବତାଇ ଦଅ ହେ
  କିଏ ସେ ଭରସା ଆନ
କାହା କାନେ ଆଉ, ଶୁଣାଇବି ମୋର
  ଜୀବନର ଦୁଃଖ ଗାନ
  ଜଗନ୍ନାଥ !

ଶାରଣ ରକ୍ଷଣ ବାନା
ଉଡ଼ାଇବ ନାହିଁ ଏ ଥର ଜଗତେ
କବିଚନ୍ଦ୍ର କରେ ମନା ॥ ୩ ॥
**

**

## ଆଜରେ ନବ ସାଜରେ

### କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ଆଜରେ ନବ ସାଜରେ ହେଉ ଜଗବନ୍ଧୁ ସଜରେ
ନନ୍ଦିଘୋଷ ରଥେ ବିଜେ ତେଜ ତୁଳ ଶେଷରେ ॥ ୦ ॥

ପଞ୍ଚପାବନ ବାନା
ଉଡ଼ଇ ଗଗନେ ଅନା
ବରଷେ ଆଷାଢ଼ ଧାର
ଛନ୍ଦି କି ନାହିଁ ପସର
ପୁଲକଭରେ
କୋଟି କୋଟି ନାରୀ ନର
କଣ୍ଠେ କଣ୍ଠେ ଶୁଭେ ସଙ୍ଗୀତ ମଙ୍ଗଳ
"ଦୁଃଖ ନାଶନ ଜଗନ୍ନାଥ ଭଜରେ"
(ପଦ୍ମ)
ବଳଭଦ୍ର ରଥେ କଳା ଶ୍ରୀମୁଖ
ନିରେଖି ହରେ ଜନମନ ଦୁଃଖ
ବନ୍ଦ ମାନସ ଦ୍ୱନ୍ଦ ପଦ ରଜରେ ।
**

**

## ଜଗାଦ୍ଧଅଁ

### କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

**ଜଗାଦ୍ଧଅଁ**

ଦଗାଦ୍ଧଆପଣ ଗ୍ରୁଡ଼ି କହ…ରେ ॥ ୦ ॥

ଅକ ଯେ ଆରତେ		ଡାକ ମରେ ତୋତେ
ତୁ କ ରଖୁ ତାର ଅସ୍ଥ ?
ଟେକ ଚଉବାହା		କହ୍ନ ଲକ୍ଷ୍ମୀନାହା
ତୁହିଁ ତୋ ଆପଣା ଦନ୍ଧ ॥ ୧ ॥

କୁଳବୁଡ଼ା ପଣ		ଖଳ ଆଚରଣ
କାଳକ ତୋର କ ନୁହଁ ?
ବାଳୁତ କାଳରୁ		କାଳ ତୁ ହେବାରୁ
ରାଧାର ଝରୁଛି ଲୁହ ॥ ୨ ॥

ଗୃହୁକାର ପଣେ		ପନ୍ତୁ ନୁହେଁ ମୁହିଁ
ତୁଟୁ ପଛେ ତୋର ସ୍ନେହ
କହେ କବ ଶଶୀ		ଶୁଣ କଳା ଶଶୀ
ଦୂରୁ ପଛେ ଥରେ ଚୁହଁ ॥ ୩ ॥

**

**

# ତୁମେ ବୋଲୁଥ ପରା

**କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ**

(ବିଂଶ ଶତାବ୍ଦୀ)

ତୁମେ ବୋଲୁଥ ପରା ପ୍ରଭୁ ପତିତପାବନ
ଯେ କୁହେ ହେ ହରି ଡରି ମରି ଅକାରଣ ॥୦॥

କାହିଁ କହ ତାରିଛ ମୋ ପରି ଅଜ୍ଞଜନ
ଲକ୍ଷମାନ କାହିଁ ସତେ କି ହେଲା ସପନ ॥୧॥

କାଳି ବୋଲି ତୁଏଁ ପରା
କାଳିଆ ଅପଘନ !
ଜାଣି କି ଥିଲ ଜଗତେ ମୋ ପରି ପତିତ
ଜନମ ଲଭିବ ଦିନେ ସାରିବ ମହତ
ସତ କହ ଭଗବାନ ॥ ୨ ॥

**

**

# ଲୋକେ କହୁଥାନ୍ତି

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ଲୋକେ କହୁଥାନ୍ତି ଦୟାନିଧି ତୁମେ
                    ମୋହର ପାଇଁକି ପଥର ହେଲ
ସବୁ ଦେଖ, ସବୁ ଶୁଣ ବୋଲି, ଶୁଣେ
                    ମୋହର ପାଇଁକି ସବୁ ମୁଦିଲ ? ।।୦।।

ଶରଣ ଜନର ଅଛୁ ବୋଲି ଠାଇଁ
                    ତୁମ ପାଦତଳେ ଆସିଥିଲି ଧାଇଁ
ବୁଝିଲି ଦେବତା ମୋହ ପାଇଁ ଏକା
                    ଖାଲି ଏ ମିଛ ମନ୍ଦିର
ସୁଅ ମୁହେଁ କେତେ ବାଲିବନ୍ଧ ଦେଇ
                    ସମ୍ଭାଳି ପାରିବ ବୋଲ ।। ୧ ।।

ଲୁହା ଗୁଡ଼ ପରେ ଲୁହା ଘଷା ଦାଉ
                    ସନ୍ତେ ହେ ଠାକୁର, ସହି ନୋହେ ଆଉ
ଦେଲ ଯେବେ ଜୀବ, ଜୀବେ ଥାଉଁ ଥାଉଁ
                    କଲ ଖାଲି କଲବଲ
କବିଚନ୍ଦ୍ର ବୋଲେ ଦୀନବନ୍ଧୁ ନାମେ
                    କାଳି ସିନା ବୋଲି ଦେଲ ।। ୨ ।।

**

**

## ଜଗବନ୍ଧୁ ହେ

**କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ**

(ବିଂଶ ଶତାବ୍ଦୀ)

ଜଗବନ୍ଧୁ ହେ, ବନ୍ଧୁ ଯଦୁ ନନ୍ଦନ
ପ୍ରଭୁପଣେ ବଡ଼ ପତାକା ଉଡ଼ୁଛୁ
ବୋଲଉଛ ପରା ଜଗ ବନ୍ଦନ ॥୧॥

ରସେ ମଜାଇଲ ଗୋପ ଗୁଆଲିଙ୍କ
ଦଳିଥିଲ ପରା କାଳୀ ବଳକୁ
ହେ, କର ଭେଳକ
ମିଠାଗୁଣି ସାଣ ମୁଠା ଜବ୍ଦ ହେଲ
ରାଧା ମଲା ଝୁର ବଂଶୀ ବଦନ ॥୨॥

ଦୁଃଖ ସହୁ ସାବ୍ ଜନମ ବଢାଇଲ,
ସୁଖ ବୋଲି କାର ହେଲା ସପନ
ହେ, ଧନ୍ୟ ଆପଣ
ଆଉକ ରଖିଛ ସାଇତ ମୋପାଇଁ
ଦେଖିବ ହାଣ ହେ ବଡ଼ମା ଶାଣ ॥୩॥

ଟେକା ଟେକ କରି ଡାକ ଯେ ମାଇଲି
ଦାନସାଗ ପାଦେ ମଥା କୁଟିଲି
ସେ ଭବୁ ତଳି
କେତୋଟି ତାଉଛ ମୋପରି ଅଧମ
ଦିନେ ଯେ ନ ଡାକେ ମଧୁସୂଦନ ॥୪॥

ବଡ଼ପଣେ ଯେତେ ଜଂଜାଳ ଢାଙ୍କିଲ
ମଥାପାତି ପ୍ରଭୁ ସବୁ ସହିଲ
ମୁଁ ଅଳି ନକଲି
ଲାଜନାହିଁ··· ବଳି କଷ୍ଟର ଆହୁତି
କାହିଁ ପରବତ କାହିଁ ପାଷାଣ ॥୪॥
**

**

# ମନ୍ଦର ଗିରିଧର

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

ମନ୍ଦର ଗିରିଧର ବ୍ରଜସୁନ୍ଦର ହେ
ବାମ ନୀଳକନ୍ଦର ହେ,
ନନ୍ଦ-ନନ୍ଦନ ଆନନ୍ଦ କନ୍ଦର ହେ ॥୦॥

ଜନମର ସିନା ମୁଁ ସାଆନ୍ତ ବୋଲୁଛି
ମନ କହୁନାହିଁ ସାଆନ୍ତ ମୋର,
ବଡ଼ପଣେ ବଡ଼ ପତାକା ବାନ୍ଧିତ
ମୋ ଲାଗି କଲାଲ ସିଂହଦୁଆର
ନିଦାପଥର, ମଲି ଏଥର
ବୁଡ଼ିଯିବ ପ୍ରଭୁପଣ ଗୁମର
(ପଡ଼ି) ବଡ଼ ବୋଲି କେ କରିବ ଖାତର ହେ ॥୧॥

ଅଳି ଅଝଟକୁ ଡରିଗଲେ ପ୍ରଭୁ
ପ୍ରଭୁ ବୋଲାଇବ କେଉଁ ଗୁଣରେ ?
ବୁଡ଼ି ରହୁ ନିଜେ ଛପନ ଭୋଗରେ
ସେବକ ଜନରେ କରିଲ ପର ହେ

ଜଦା ପଥର, ମଲ ଏଥର
ଛଡ଼ାଇ ନେଉଛ ବଢ଼ା ପଭର
(ପଦ୍ମ) ଫକାଶୀ ଉଜ୍ଜଳ ରଖ ଏଥର ହେ ॥୨॥

**

**

## କଳା ବଦନ ଛବି ଗୃହ୍ଣେଁ

### କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

କଳା ବଦନ ଛବିସ୍ୱହ୍ନିଁ ଆରତ ଜଣେ
କର ଯୋଡ଼ି କାକୁସ୍ଥରେ ଗୁହାରି ଭଣେ
କରମ ଯେବେ ଫଟା କାହିଁକି ସଟାବଟା
କହି ଦେଲେ ସରନ୍ତା ଆଉ ନଥାନ୍ତା ହଟା
କଏ ମଥା କୁଟନ୍ତା ଖାଉନ୍ଦ ପଣେ ॥୧॥

କାଳି ଲାଗିବ ବୋଲି ବଢ଼େ ଥାଆନ୍ତୁ ଡରି
ସ୍ରୁଏଁ ତ ମୁଖେ କାଳି ବୋଲଛ ବନମାଳୀ
(ଆଉ) କି ଡରନାହା କଲେ ହଜାରେ ପଣେ ॥୨॥

**

**

# ଅନାଥେ ଅନାଥ ଥରେ

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ଅନାଥେ ଅନାଥ ଥରେ ଆହେ ଅନାଥ-ଶରଣ
କି କହିବି ମନକଥା ଅନ୍ତର୍ଯ୍ୟାମୀ କି ନ ଜାଣ ? ॥ ୦ ॥

ତବ ବିନେ କିଏ ମୋର
ଘୁଞ୍ଚାଇବ ଖେଦଭାର,
ଅନ୍ଧରନ୍ଧ୍ର ଜଞ୍ଜାଳରେ ଭିଡ଼ି ଜୀବନ ବନ୍ଧନ ॥ ୧ ॥

ଆଶାରେ ଆଶାରେ ମର
ଗଲିଣି ହେ ନାଥ ସର
ଏ ଆଶା ପୂରିବ ଯେବେ ମେଲିବ ତୁମେ ନୟନ ॥ ୨ ॥

ଚରଣ ଧୂଳିର ତଳେ
ଥରେ ହେଲେ ଠାବ ଦେଲେ
ମେଣ୍ଟିଯିବ ସବୁ ତୃଷା ଅଭାଜନ ଅକିଞ୍ଚନ ॥ ୩ ॥

**

**

# ପତିତପାବନ ନାମ

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ପତିତପାବନ ନାମ
କିଏ ବା କହିବ　　ନ ଡାକିବ ଯେବେ
ମୋ ଭଳି ପତିତ ଜନ ? ॥ ୦ ॥

ଜାଣି ତ ନ ଥିଲ　　ମୋ ପରି ପତିତ
ଜନମ ଲଭିବ ଭବେ,
ଜାଣିଥିଲ ସତେ　　ପତିତପାବନ
ନାମ କି ଧରନ୍ତ କେବେ ?
ଅଳି କରୁନାହିଁ　　ପାଖେ ନେବାପାଇଁ
ସ୍ୱଏଁ ନ ଡାକିବ ଯେବେ
ନାମରେ ତୁମର　　କଳଙ୍କ ଲାଗିବ
ହସିବ ତିନି ଭୁବନ ॥ ୧ ॥

ଲାଜ ଡର ଥିଲେ　　ହେଜ ଦୟାନିଧି
ପତିତ ଜନର ପାଶ
କେବେ ନେବ ଅବା　　କେତେ କାଳ ପରେ
ଏ ପରାଣେ ଦିଅ ଆଶ
ଅଜାତ ପାଶୋର　　ପତିତ ଆସିଛି
ଗତି ତ ନାହିଁ ଜାବେଶ
ପ୍ରତି ଦାନେ ନୀର　　ଧାର ଯାଉଛି
ନିରେଖ ଦୁଇ ନୟନ ॥ ୨ ॥

**

**

# ନୀଳମାଧବ

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ନୀଳ ମାଧବ
ତୁମ୍ଭେ ପରା ଜଗତ ନାଥ
ମୋ କଥା ଶୁଣି ଶ୍ରୀମୁଖେ ଲାଜେ ନ ପୋତ ॥୦॥

ଜଗତେ କହନ୍ତି ତୁମେ ଦୟା ସାଗର
ଅନୁଭବେ ବାରି ନାହିଁ ଦିନେ ମାତର
ଫଳୁଛି ବିପରୀତ
ଭଲପେ ଦିଏ ଚିତ୍ତ
କାଢି ତ ନେଇଛ ତା' ବାଢ଼ିଲା ଭାତ ॥୧॥

ମନେ ପଡ଼ୁଛି କି ନାହିଁ ଗୋପରେ ଥରେ
ରାଧାକୁ ବସାଇଥିଲ ବ୍ରଜ ପଥରେ
ତୁମ ପ୍ରେମରେ ଭୁଲି
ମତି ଟଳିଲା ବୋଲି
ଝୁରିମଲା ସେ ସିନା ନୁହେଁ କି ସତ ॥୨॥

କାହାର କି କରିଛ ହେ ବିନା ସେବାରେ
କିଏ ଅବା ଜାଣିଥିବ ଦେବା ନେବାରେ
ଦିନେ ଯେ ଡାକି ନାହିଁ
ତାରିଛ ତାକୁ କାହିଁ
କହିଲ ରଖି ନିଜ ହୃଦରେ ହାତ ॥୩॥

**

**

## ଟଙ୍କା ନମ୍ବନକୁ ଗୃହ୍ନାଁ

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

ଟଙ୍କା ନମ୍ବନକୁ ଗୃହ୍ନାଁ ଗରିବ ଜଣେ
ଅକ୍କା ହୋଇ ଡକାପାର ଗୁହାର ଭଣେ ॥୦॥

ଦୀନବନ୍ଧୁ ନାମ ହରି ବହିଛ ମିଛେ
ମୋ ପରି ଗରିବ ପରା ଧାଇଁଛୁ ପଛେ
ମୋତେ ଯେବେ ହେ ହରି
ଦେବଟି ପାରିକରି
ଚରଣ ତଳେଦେବ
ଏ ପାପୀ ଠାବହେବ
ଜଗବନ୍ଧୁ ହେ··· ଜଗବନ୍ଧୁ ହେ
ଗଣିବ ତେବେ ମୁଁ ସିନା ଖାଉନ୍ଦ ପଣେ ॥୧॥

ମୋ ପରି ପତିତ ଜଣେ ଅଛୁ ଜଗତେ
ଜାଣି ନଥିଲ ବୋଲି ମୁଁ ମଣୁଛୁ ଚତ୍ତେ
ଲେଖିଛ ଯାହା ଅରେ
ଏ ମୋର ଫଟା ଭାଲେ
ଆଉ କାଟିବା ପାଇଁ
ଶକତ ଯେବେ ନାହିଁ
ଜଗବନ୍ଧୁ ହେ···ଜଗବନ୍ଧୁ ହେ
ଚକ୍ରଧର ବୋଲି ମିଛେ ଜଗତ ଭଣେ ॥୨॥

**

**

# ନବୀନ ନୀଳ-ଘନ

**କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ**

(ବିଂଶ ଶତାବ୍ଦୀ)

ନବୀନ ନୀଳଘନ, ନୀଳମାଧବ ଛଇ ହେ
ଲୁଚିଯିବ ରବି ଛବିକି ଗ୍ରାହିଁ ॥ ୦ ॥

ନୀଳ କନ୍ଦରେ ବିଜୟ ମହିମା
ପତିତପାବନ ବାନା ଉଡ଼ାଇ,
ପତିତ ଜନର ଗତି ତ ସତତ
ମହତ ରଖତ ମୋର ଗୋସାଇଁ
ମୁଁ ଚରଣ ଛୁଇଁ ସତ ଭଣଇ
ମୋ ସରି ପତିତ ଜଗତେ ନାହିଁ
(କହ) ତାରିବ କି ଥିବ ମୁଖ ଲୁଚାଇ ॥ ୧ ॥

ଭ୍ରମରେ ଦିନେ ମୁଁ ନାମ ଜପି ନାହିଁ
ଆଣ୍ଠ ଶୁଣ ମୋର ଜଗତ ସାଇଁ
ଲୋକେ କହୁଛନ୍ତି ପତିତ-ପାବନ
ପରଖି ଦେଖିବ ସତ କି ନାହିଁ
ମୁଁ ଡରିବ ନାହିଁ ଦେଖିବା ପାଇଁ
ପାପୀ ପଣେ ଅଛୁ ବାନା ଉଡ଼ାଇ
ରଖିଅଛୁ କାହିଁ ଠାବ ମୋ ପାଇଁ ॥ ୨ ॥

**

**

## ଜଗବନ୍ଧୁ ଭଲ୍ଲ ନାଟୁଆ

### କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ଜଗବନ୍ଧୁ ଭଲ୍ଲ ନାଟୁଆ,
ଭଗ୍ନ ଦଶଆରେ ଲଗାଏ ନିଆଁ ॥ ୦ ॥

ପୋକା କନ୍ଦ ଅଚାଣ୍ଟା ସାରୁ
ସୁଖେ ଖାଏ ସେ ଦିଅଁ ଦାରୁ

ଭଲ୍ଲ କାଗଜର ବାହାଦୂରୀ ତାର
ଗୁଡ଼ ଦେଖାନାହିଁ ବନାଏଁ ମୁଆଁ ॥ ୧ ॥

ରାଣ୍ଡୀଠାରୁ ଖଣ୍ଡିକ ଯାଏଁ
ଚଟା କଟା ଏଠି ସଭିଏଁ

ମଶା, ମୂଷା, ମାଛି, ମାହାଣ୍ଟି ମହନ୍ତ
ମାଙ୍କଡ଼ ପୋଷାଏ ଦେଉଳ ଦୁଆ ॥ ୨ ॥

**

**

# ଦୀନବନ୍ଧୁ ହେ

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

ଦୀନବନ୍ଧୁ, ହେ, ମନ୍ତ କହିବ ମୋତେ
ତୁଛିଁ ଲଗାଇଲା ଆପଣାର ହାତେ ॥୦॥

ମୋ ବିପଦେ ମୁଁ ତ ଡାକଇଁ ତୁମ୍ଭଙ୍କୁ
ଆହାକଲ ହେବ ବୋଲି ମୋ ସାହା
ତୁମ ବିପଦରେ, କିଏ ସେ ରଖିବ
କାହା ନାମ ଧରି ଡାକିବା ସତେ ? ॥୧॥

'ବାପ ମୋର କିଏ' ପଚାରିଲେ ମୁଁ ତ
କହିବି ନୁହେଁ ମୁଁ ଅଣବାପୁଆ,
ଜଗନ୍ନାଥ ମୋର ବାପ ବସିଛନ୍ତି
ତୁମ ବାପ କିଏ କହ ଜଗତେ ॥୨॥

ଅଣବାପୁ ବୋଲି ଲୋକେ ପଞ୍ଚ ମୁଖେ
କାଳି ବୋଲିଅଛ ଆପେ ଗୋବିନ୍ଦ
ଛନ୍ଦ ଗୁଣ୍ଡି ଆଜ ବତାଅ ହରି ହେ,
ତୁମ କୁଳ ଗୋଟି ଯିବ ପରତେ ॥୩॥

**

**

# ଜୟ ଜଗନ୍ନାଥ ପ୍ରଭୁ

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

ଜୟ ଜଗନ୍ନାଥ ପ୍ରଭୁ          ନମିଉ ଆଉ ସବୁ
ତୋ'କଥା ତୁ ଜାଣୁ ମହିମା !
ଅନ୍ଧରେ ହେଉ ସାହା          ତୁ ପୁଣି ଚଉବାହା
ବିଶ୍ୱରେ ଅଜଣା ତୋ ସୀମା
ହେ ମହାବାହୁ
ତୁ ଏକା ତୋହର ଉପମା,
ଘଡ଼ି ଘଣ୍ଟକେ ଆନ          ମନ ବଚନ ଜ୍ଞାନ
ଗୋଚର ନୁହେଁ ତୋ ଗରିମା
ହେ ମହାବାହୁ ॥୧॥

ଦେଇ ଡିଆଇ ହରି          ରଖି ମାରୁ ତୁ ହରି !
ଏ ଖେଳ ତୋହର ଭିଆଣ
ବଡ଼ ପଥର ଘରେ          ଖଣ୍ଡ ଦାରୁ ଭିତରେ
ବୋଲାଇ ପତିତପାବନ
ହେ ମହାବାହୁ
ପଦତଳେ ଏ ମାଥ ଥାଉ;
ଧନ ରତନ ମଣି          ନ ମାଗେ ଚିନ୍ତାମଣି
ତୋ ନାମ ଧରି ଜୀବ ଯାଉ
ହେ ମହାବାହୁ ॥୨॥

**

**

# ଦୟା ସାଗର

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

ଦୟା ସାଗର ବୋଲାଇ କଲ ପାତର ଅନ୍ତର
କାହା ଭାଗେ ଖଣ୍ଡ ଖିଆ କା'ରେ ଅଁଠା ପତର ॥ ୧॥

ଦିନରାତି ଡାକି ଡାକି ତଣ୍ଟି ମୋ ଗଲାଣି ଶୁଖି
ପାହୁଣ୍ଡେ ତ ଚଳିବାକୁ ଆଉ ନଚଳେ ଗାଡର ॥୨॥

କେ ଅବା ଦେଇଛୁ କସ-ମୁଁ ହେଲି ତୁମର ବଷ
ଦୁଃଖ ପରେ ଦୁଃଖ ଦାଉ ସହିବ ମୁଁ କି ପାତର ॥୩॥

ଫଟା କରମକୁ ମୋର ଯୋଡ଼ିବାକୁ ନାହିଁ ବଳ
ଦାତାପଣେ ଦିନପୂରେ କାହିଁକି ଏଡ଼େ ଗୁମର ॥୪॥

**

**

# ଚକାଡୋଳା

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ

( ବିଂଶ ଶତାବ୍ଦୀ )

ଚକାଡୋଳା! ଚକାଡୋଳା
ଭଲ ଲଗାଇଛ ବସି ମେଳା ॥ ୦ ॥

ପଥର ଦେଉଳେ ଗଣ୍ଡି କାଠ ଦିଅଁ
ହାତ ଗୋଡ଼ କାନ ନାହିଁ
ପଲକ ନପଡ଼େ ଚକା ଚକା ଆଖି
ମୁହଁ ଯାକ କଳା ବୋଳା ॥ ୧ ॥

ଛେଷ୍ଟ କଷ୍ଟ ଖାଇ ପହଣ୍ଡିକୁ ବଳେ
ପେଟରେ ଦଉଡ଼ି ବନ୍ଧା
ନଚେ ବୁଝି ଏବେ ଲୋକଙ୍କୁ ସନ୍ତେଇ
କି ସୁଖ ସେ ଠେଲ ପେଲ ॥ ୨ ॥

ରତନ ବେଦୀରେ, ଛ'ପନ ଭୋଗରେ
ଛତିଶା ନିଯୋଗ ଖଟେ
ଖରା ବରଷାରେ ମଉଜ ସମ୍ଭାଳ
(ବଡ଼) ଦେଉଳ ପଡ଼ିଛି ମେଲା ॥ ୩ ॥

**

**

# ଜଗନ୍ନାଥ

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

ଜଗନ୍ନାଥ ! ଧରିବ ନାହିଁ ମୋ ଦୋଷ
ଯେତେ ଦେଉଥିବ ସେତେ ମାଗୁଥିବ
କାହିଁରେ ନୁହେଁ ମୁଁ ତୋଷ ॥୦॥

ଦିଅ ଦିଅଁ ବୋଲି ନିଅ କର ମେଲି
ଦିଅ ସିନା କରେ ଅଂଶ
ମୁଁ ନିକ ନୋହିଲେ ମୁନିଙ୍କି ହେଲେ କି
ମାଗନ୍ତି ହେଲେ କି ବଂଶ ॥୧॥

ଯେ ପିତା କୋଳରେ ଜନମ ମୋହର
ନ ଜାଣିବ ପୀତବାସ
ଯେ କରେ ମୁଁ କରେ ପ୍ରଣତ ପଦ୍ମରେ
ପାତିବ ଇତର ପାଶ ? ॥୨॥

ଧୋଇତ ଦେଇଛ ଲୋଡ଼ିବା ଆଗରୁ
କଠୁର ବୋଲିବ କସ ?
ଶରଣ ତେବେକେ ମାଗେ କବଶଶୀ
ଏତେକେ ମାଗୁଣି ଶେଷ ॥୩॥

**

**

# ବଗ୍ତରୁଛି ମୁହିଁ ମନେ

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ବଗ୍ତରୁଛି ମୁହିଁ ମନେ
ଖଳ ମଳ ସିନା ଦୀନ ବନ୍ଧୁ ବୋଲି
କହନ୍ତି ଜଗତ ଜନେ ॥ ୦ ॥

ନ ଦେଇ, ନ ପାଇ, କାହୁଁହିଁ କାହାଇ
କାହାଠାରୁ ଭଲ କହ
ଅଜାଡ଼ି ଦେଇଛ ବଳେ ବଳେ ସତେ
କାହା ଶିରେ ଅନୁଗ୍ରହ
ଦେଖିନ ନାହିଁ ସପନେ ॥ ୧ ॥

ଜଗତର ସବୁ ସୁଖ ପାଶୋର ଯେ
ତୁମକୁ ପାଇଲା ସୁଖ,
ତାହାର କରମ ଫାଟିଲା ଦେଖୁଛି
ଭୋଗି ସେ ଯେତେକ ଦୁଃଖ
ନଥ ପରମାଦ ଗଣେ ॥ ୨ ॥

ଜନମ କାଳରୁ ଜଞ୍ଜାଳିଆ ବୋଲି
ଜାଣିକ ନଥିଲି ମୋତେ
ଅନ୍ତର ନବୁଝି ଯେବେ ଅନ୍ତର୍ଯ୍ୟାମୀ
ବୋଲାଇ ହେଉଛ କେତେ
କବିଚନ୍ଦ୍ର ଏତେ ଭଣେ ॥ ୩ ॥

**

**

# ମୁଁ ଯେବେ ତୁମକୁ ବାପ ନ ବୋଲିବି

## କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

( ବିଂଶ ଶତାବ୍ଦୀ )

ମୁଁ ଯେବେ ତୁମକୁ ବାପ ନ ବୋଲିବି
ତୁମେ ବାପ ହେବ କାହୁଁ ?
'ଜଗତର ପିତା' ଜନେ ବୋଲିବାର
ଟେକ ରହିବକି ଆଉ ? ॥ ୦ ॥

ତୃଷିବାର ମୋର ଅଛି ଅଧିକାର
ବାହା ପିଟି ଏହା କହେଁ ବାର ବାର
ଜଞ୍ଜାଳିଆ କରି ଜନମ ଦେଲତ
କିଏ ସହିବ ମୋ ଦାଉ
ପାଦେ ଠେଲିଦିଅ ଲୋକହସା ହୁଅ
ତୁମ ପିତାପଣ ଯାଉ ॥ ୧ ॥

ଆଗରୁ କାହିଁକି ବିଚାର ନକଲ
ବାପା ବୋଲାଇବା ମଣିଲକି ଗେଲ ?
ତୁମ କୁଳଦୀପ ମଳିନ ହୋଇବ
ତୁମେ ଯେବେ ଆଉଁ ଥାଉଁ
ଏଥୁଁ ବଳି ଲାଜ ଅଛି କିସ ହେଜ
ବୋଲାଉଛ ମହାବାହୁ ॥ ୨ ॥

ବାପ ଯା'ର ରଜା ଦୟାର ଭଣ୍ଡାର
ପୁଅ ନ ପାଇବ ଆଶିଷ ତାହାର
ତୃଷିବ ଏଥର ହେଉ ଯା' ହେବାର
ସହିବାର ଯେ'ବା ସହୁ
କବି ଶଶୀ କୁହେ ବେଳ ଆଉଁ ପଦେ
ଠାବ ଦିଅ ଟେକ ରହୁ··· ॥ ୩ ॥

**

**

# ବଡ଼ ଠାକୁର

## ଉଦୟନାଥ ଷଡ଼ଙ୍ଗୀ

(ବିଂଶ ଶତାବ୍ଦୀ)

ବଡ଼ ଠାକୁର ହେ ବଡ଼ ବୋଲାଇ
ସାନ କଥା ଯେବେ ଶୁଣିବ ନାହିଁ
ବଡ଼ ବଡ଼ ଯେତେ ବଡ଼େଇ କରିବେ
ସାନଙ୍କର ଠାବ ରହିବ କାହିଁ ?
କେହ୍ନେ ବୋଲାଇବ ଜଗତ ସାଇଁ ? ॥ ୦ ॥

ବଡ଼ ମାଗୁଥିବେ          ଧନ ମାନ ଯଶ
ଲୋଡ଼ା ନାହିଁ ତାହା ସାନଙ୍କ ପାଇଁ
ଭକତି ବିଶ୍ୱାସ          ମାତ୍ରକ ମିଳିଲେ
ଧନ୍ୟ ହେବେ ତୁମ ମହିମା ଗାଇ ॥ ୧ ॥

ଦୁଃଖ ଦିଅ ଯେତେ          ନଥିବ ପରତେ
ଶୋକେ କେବେ ଭାଙ୍ଗି ପଡ଼ିବେ ନାହିଁ
ସହିବା ଶକତି          ଦେଇଥିଲେ ତୁମ୍ଭ
ପୁଲକିତ ହେବେ କଷଣ ସହି ॥ ୨ ॥

କାମନା ବାସନା          ହରି ନିଅ ସବୁ
ନ ଦିଅ ମମତା-ଜଳେ ବୁଡ଼ାଇ
ଗର୍ବ ଅହଂକାର          କାତର ଗୁତର-
ପଣିଆ ମନରୁ ନିଅ ଛଡ଼ାଇ ॥ ୩ ॥

ତେବେ ଜଗନ୍ନାଥ ନାମ ହେବ ସାର୍ଥ
ହିଂସା ରାଗ ଦ୍ୱେଷ ଶୁଣିବ କାହିଁ
ପୁଲକିତ ହେବ ଏ ମର ଜଗତ
ତୁମ ଯଶରାଶି ମହିମା ଗାଇ ॥ ୪ ॥

**

**

## ଜଗତର ନାଥ

ଉଦୟନାଥ ଷଡ଼ଙ୍ଗୀ

( ବିଂଶ ଶତାବ୍ଦୀ )

ଜଗତର ନାଥ ଜଗତର ନାଥ
ପଡ଼ି ଅଛୁ ପର ଦ୍ୱାର
ଜଗତରେ ତେବେ ଲାଗିଛି କିମ୍ପାଇଁ
ନାଶ ଦାନ ଦୁଆ ଘୋର, ହେ ଦେବତା
ନାଥ ହୋଇ ତୁମେ ଦେବ
ଅନାଥ ସାଗରେ ଜଗତ ବୁଡିଲେ
ତୁମର କି ଯଶ ହେବ ॥ ୧ ॥

ବଡ଼ ମାନଙ୍କର ବଡ ଲୋଭ ଏଠି
ସାନେ ମରୁଛନ୍ତି ଝୁରି
ଅକାଣ୍ଡିଆ କୁଣ୍ଡା ନମିଳେ କାହାକୁ
କିଏ ଖାଉଅଛୁ ପୁରି, ହେ ଦେବତା
କିଏ ହସେ କରି କରି
କାନ୍ଦି କାନ୍ଦି କାର ଦିନ ସରୁନାହିଁ
ଡାକି ଡାକି ହରିଗିରି ॥ ୨ ॥

ଅଲସୁଆ ଯେତେ ପରଜୋଟି ଚପା
ସେଇ ଯାଉଛନ୍ତି ଫୁଲି
କ୍ଷୀଣୁ କ୍ଷୀଣତର ହେଉଛୁ ବାପୁଡ଼ା
ମୂଲିଆ ଦୁନିଆ ବୁଲି, ହେ ଦେବତା
ତେଲିଆ ମୁଣ୍ଡରେ ତେଲ
ଧାନ ସ୍ଥାନ ଯେତେ ରଙ୍କୁଣୀ ଅଛନ୍ତି
ଖୁନ୍ଦିଛନ୍ତି ବଳ ବଳ ॥ ୩ ॥

ଅନ୍ୟାୟ ଅନୀତ ବୋଲି କଛୁ ନାହିଁ
ନାହିଁ ତ ସ୍ନେହ ମମତା
ପତଙ୍ଗ ପରି ସ୍ୱେ ଧାଆନ୍ତି ସକଳେ
ପାଇବା ପାଇଁ କ୍ଷମତା, ହେ ଦେବତା
କପଟେ ଦୁନିଆ ଗୁଳେ
ଗୁରୁ ଗଉରବ ସବୁ ଲାଗିଲାଣି
ତୁମର ଶାସନ କାଳେ ॥ ୪ ॥

ତୁମ ରାଜୁତରେ ଡର ନାହିଁ କାର
ନୁହନ୍ତି କେହି ଗୁହାଁଆ
ସେ ଯୁଗ ଏ ଯୁଗ ଫରକ ହେଲାଣି
ବୁଡ଼ିବ ସିନା ଦୁନିଆ, ହେ ଦେବତା
ପ୍ରଳୟ ପୟୋଧି ଜଳେ
ବୁଡ଼ାଇ ଦିଅ ଏ ବ୍ରହ୍ମାଣ୍ଡ ଖଣ୍ଡକୁ
ଯାଉ ଚୂଲି ରସାତଳେ ॥ ୫ ॥

ଲୁଚିବ ଜଗତ, ଜଗତର ନାଥ
ନାମ ସବୁ ଦିନ ପାଇଁ
ନ ଥିବ କେ ଏଥି ଝର ମରବାକୁ
ହେବା ପାଇଁ ହାଇଁ ପାଇଁ, ହେ ଦେବତା
ହୋଇ ପୁଣି ଅବତାର
ବରାହ ଦନ୍ତରେ ଟେକିବ ଦୁନିଆଁ
ଦେଇ ନୂଆ କଲେବର ॥ ୬ ॥
**

**

# ଯେତେବେଳେ ଯେଉଁ ଦିଗେ

## ଉଦୟନାଥ ଷଡ଼ଙ୍ଗୀ

(ବିଂଶ ଶତାବ୍ଦୀ)

ଯେତେ ବେଳେ ଯେଉଁ ଦିଗେ ଦିଏ ମୁଁ ଅନାଇ
ଦେଖୁଅଛି ତୁମବିନା ଆଉ କେହି ନାହିଁ
ବିଶ୍ୱଜୀବନ ହେ

ଗଗନ ପବନ ଗାଏ ତୁମରି ମହିମା
ନ ପାରେ କଳି ମୁଁ ତୁମ ଆଦିଅନ୍ତ ସୀମା
ବିଶ୍ୱଜୀବନ ହେ ।

ସାଗରେ ଭୂଧରେ ଶୁଭେ ତୁମରି ସଙ୍ଗୀତ
ତୁମରି ଭିଆଣ ଦେବ, ଖରା ବର୍ଷା ଶୀତ
ବିଶ୍ୱଜୀବନ ହେ ।

ଫୁଲଫଳ ବୃକ୍ଷଲତା କୀଟରୁ ପତଙ୍ଗ
ତୁମରି କରଣି ପ୍ରଭୁ, ତୁମହାତ ରଙ୍ଗ
ବିଶ୍ୱ ଜୀବନ ହେ ।

ରବିଶଶି ଗ୍ରହତାରା ତୁମରି ଆଦେଶେ
ଅଭିନେତା ସାଜିଛନ୍ତି ନବନବ ବେଶେ
ବିଶ୍ୱଜୀବନ ହେ ।

ଅଇରି ସୋଦର ସଖା ପୁଣି ତାତ ମାତ
ମବୁଠାରେ ବିରାଜିତ ତୁମେ ଜଗନ୍ନାଥ
ବିଶ୍ୱଜୀବନ ହେ ।

**

**

# ତୁମ ସମାନ ନାଥ


## ଉଦୟନାଥ ଷଡ଼ଙ୍ଗୀ

( ବିଂଶ ଶତାବ୍ଦୀ )


ତୁମ ସମାନ ନାଥ          ଥାଉଁ ହେ ଜଗନ୍ନାଥ
ଅନାଥ ଆଜ ମୁହିଁ ହୀନ
ସେ ପଦ-ସରୋରୁହ          ଜପୁଚ ଅହରହ
ଧିଆନେ କାଟେ ରାତ୍ର ଦିନ, ହେ ଜଗନ୍ନାଥ
ତଥାପି ଦୟା ତଳେ ନାହିଁ
ପଥକୁ ତୁମେ ଚାହିଁ ଚାହିଁ
ଝରଇ ନେତ୍ର ଲୁହ          ଦୟାନିଧି ହେ କୁହ
ନିଠୁର ଏତେ କାହିଁ ପାଇଁ, ହେ ଜଗନ୍ନାଥ ॥ ୧ ॥

ଛତିଶା ଭୋଗ ଭୁଲ          ବଡ଼ ଦାଣ୍ଡରେ ବୁଲ
ଆନନ୍ଦ ହେଉ ଅଛ ଜନେ
ଏ ପଦଦାସୀ ଗ୍ରୁର          ଏତେ ତା' ପାପଭାର
ଯା ପାଇଁ ଦୟା ନାହିଁ ମନେ ହେ, ଚକାଡୋଳା,
ଦେଖୁଛ ଦଣ ଦଣ ପରା,
ମୋ ଚନ୍ତା ପଡ଼େ ନ କ ଧରା ?
ଜନ୍ମ ଜନ୍ମ ଅନ୍ତରେ          ଡାକୁଚ ଏକାନ୍ତରେ
ଆକୁଳେ ହୋଇ, ପଥହରା ହେ ॥ ୨ ॥

ଦ୍ୱାପର ଯୁଗେ ଗୋପୀ          ଜନମି ନାମ ଜପି
ଯମୁନା ତୀରେ କଲ ଧ୍ୟାନ
ସକଳ କଲ ଦୋଷ          ମୋ ଠାରେ କିଆଁ ରୋଷ
ହେଲି ମୁଁ ଏତେ ହୀନମାନ ହେ, ଦୟାନିଧି

ମୋ ପୂଜା ଫୁଲ ହେଲା ବାସି
ହସିଲେ କେତେ ବ୍ରଜବାସୀ
କରାଇ ଲୋକହସା          କହ ହେ ମହାଯଶା
କି ସୁଖ ମୋର ଆଶା ନାସି ହେ ॥ ୩ ॥

ବ୍ରହ୍ମାଣ୍ଡ ମାଳ ମାଳ          ଲୋମ କୂପେ ଯାହାର
ଅନନ୍ତ କାଳୁ କରେ ଖେଳା,
ନାହିଁ ଯା ଆଦ୍ୟ ଅନ୍ତ          ଚରା ଚର ସାମନ୍ତ
ଆଉଁ ମୋ ଦଶା ହୀନ ହେଲା, ହେ ମହାପ୍ରଭୁ
ଯେଉଁ ଦାଗକୁ ଦାଏ ଗୁହାଁ
ତୁମର ହାତ ଯଶ ତହିଁ
କେବଳ ଜାଣେ ମୁହିଁ          ଏ ଦୀନହୀନ ପାଇଁ
କରୁଣା ଢଳେ ହେ ନାହିଁ ହେ ॥ ୪ ॥

ଚତୁର୍ଦ୍ଦଶ ଭୁବନ          ତୁମର ଉପବନ
ସାଗର ତୁମ ସ୍ୱେଦ ବାଶ
ଅପାର ତେଜ ରାଶି          କଣିକା ରବି ଶଶି
ପାଇ ହୋଇଲେ ବ୍ୟୋମସ୍ପୃଶ୍ୟ, ହେ ବିଶ୍ୱବ୍ୟାପୀ
ତୁମ ସମାନ ହେବାପାଇଁ
ଜଗତେ କାହୁଁ ଦେଖୁନାହିଁ,
ତୁମେ ତ ଏକା ତୁମେ          ଗଗନ ପାଦ ଚୁମ୍ବେ
ବୁଝିବା ଶକ୍ତି ମୋର ନାହିଁ, ହେ ବିଶ୍ୱବ୍ୟାପୀ ॥ ୫ ॥

**

**

# ଦାରୁ ଦେବତା

## ରାଧାମୋହନ ଗଡନାୟକ

(ବିଂଶ ଶତାବ୍ଦୀ)

—୧—

"ଦାରୁ ଦେବତା ମୁଁ ଲାଗିଲିଣି ଆସି
ତୁମ ଏ ବାଲି ମୁହାଣରେ
ରାଇଜର ରାଜା          ଜାଣି ପାରୁନାହଁ
ନିଭୃତ ତୁମ ପରାଣରେ ?
ନୀଳ ଜଳଧିର ଜଳେ ଭାସି ଭାସି
ଦୂର ଦ୍ୱାରକାରୁ ଅଛି ମୁହିଁ ଆସି,
ରହିବି ଏ ବେଳା ବିତାନରେ,
ଦାରୁ ଦେବତା ମୁଁ ଲାଗିଲିଣି ଆସି
ତୁମ ଏ ବାଲି ମୁହାଣରେ ।"

—୨—

ଦିଗ୍ ବଳୟରୁ          ଉଠୁ ଉଠୁ ରବି
ଦେଖିଗଲା ଦିବ୍ୟ ଝଲକ,
ଆକାଶର ତୀରେ          ନୀରଧିର ନୀରେ
ଢାଳିଲା ପ୍ରାଣର ପୁଲକ ।
ଭଗବାନ ତୁମ୍ଭେ ଜଗତ ଠାକୁର
ହୃଦୟର ତମ କରି ଦେଇ ଦୂର
ଆଲୋକିତ କର ଜୀବନ,
ତୁମ ଦାନ ନେଇ ନିତି ନିତି ମୁହିଁ
ଆଲୋକିତ କରେ ଭୁବନ ।"

—୩—

ସାଗର କୋଳରୁ     ବାହାର ସମୀର
ବହଇଲା ନବ ସଉରଭ,
ମରତର କେଉଁ     କୁସୁମର ନୁହେଁ,
ସରଗର ମନ୍ଦା ଗଉରବ ।
ନାଇକେଳ ତରୁ ଶାଖା ବୀଥିପରେ
ଖେଳିଲା, ଡେଇଁଲା ଅତୁଲ ଆଦରେ,
ଝାଉଁବନେ ଯାଇ ତରତର
ମର ମର ଗୋଲ ଉଚ୍ଛ୍ୱାସ ଭରି
ଛନ୍ଦ ସୃଜିଲା ମରମର ।

—୪—

ରଇଜର ରଜା     ଡକାଇଲେ ପାଶେ
ପାଣ୍ଡ ମନ୍ତ୍ରୀ କଟୁଆଳ
ଫିଟାଇ କହିଲେ     ସପନର ବାଣୀ
ସପନର ଶୁଭ ସମାଚାର ।
କେତେ ଆଉ କଲେ କେତେ ଆଲୋଚନା,
କେଉଁପରି ହେବ ଦଅଁ ଆରାଧନା,
କେଉଁ ପଣ ଯିବ ପଟୁଆର,
କେଉଁ ପରି ଦାରୁ ଦଅଁ ଅଣା ହେବେ
ବହୁତ କଥାର ସମାହାର ।

—୫—

ବାଜିଲା ଶଙ୍ଖ,     ବାଜିଲା ମହୁରି
ବାଜିଲା ଦାମାମା, ଭେରି, ତୁରୀ
କମ୍ପି ଉଠିଲା     ଆକାଶ ବତାସ
କମ୍ପି ଉଠିଲା ସାରା ପୁରୀ ।
ଜାହ୍ନୁଁ ଠିଆ ହେଲା ଚନ୍ଦ୍ର ତୋରଣ
କଳସ ଶୋହିଲା, ଉଡ଼ିଲା କେତନ,
ଉଚ୍ଛୁଳିଲା ଶୁଭ ହୁଳହୁଳି,
ଚାଲିଲେ ଜନତା ଚାଲିଲେ ରାଜନ
ଚରଣେ ଲଙ୍ଘି ପଥଧୂଳି ।

—୬—

ଉଦ୍‌ବେଳ ସେଇ          ପଥର ପ୍ରବାହ
ମିଳିଲା ବାଙ୍କି ମୁହାଣରେ
ଦେଖିଲା, ବକ୍ଷେର          ବରୁଣ ସ୍ଵଜନ
ନୂତନ ସେ ଏକ ଭିଆଣରେ,
ତପ୍ତ ହୃଦସ୍ତ ଲହରୀର କରେ
ଦାରୁ ଦେବତାରେ ବହୁତ ଆଦରେ,
ଡାଳି ଦେଉ ଅଛି ବାର ବାର,
ଶୁଭ୍ର ଫେନର ଫୁଲ ଅଂଜଳି
ଓଂକାର ବାଣୀ ସସ୍ଵର ।

—୭—

ବ୍ୟଗ୍ର ସ୍ଵଜନ,          ସ୍ଵଜଜନ, ଜନ
ଦାରୁ ଦେବତାର ଦରଶନେ
ତରଳ ହୃଦସ୍ତ          ଡାଳି ଦେଲେ ତହୁଁ
ସରଗର ସ୍ତବ ପରଶନେ
"ଜଗତର ନାଥ ପରମ ଠାକୁର
ତବ ଆଶେ ଆଜ ଆତ୍ମା ଆକୁଳ,
ସ୍ଵାଗତ ହେ ମହା ମହାସ୍ଥାନ ।
ଉଠି ଆସ ପ୍ରଭୁ ଉଠି ଆସ ପ୍ରଭୁ
ଘେନ ଏ ଆକୁଳ ଆହ୍ଵାନ ।"

—୮—

ଜୟ ଜୟ ଜୟ          ସ୍ଵର କଲ୍ଲୋଳ
ସୃଜି ଦେଲା କଳ କୋଳାହଳ,
କମ୍ପି ଉଠିଲା          ସାଗର ପୁଳିନ,
କଂପି ଉଠିଲା ନଭ ତଳ ।
ବିପ୍ର ପୁରୋଧା ବ୍ୟଗ୍ର ପାଣିରେ
ଦାରୁ ଦେବତାରେ ଧଇଲେ ଅଧୀରେ
ସ୍ଵହୁଁ ସ୍ଵହୁଁ ହେଲେ ବଞ୍ଚିତ
ଟଂକିଲେ ନାହିଁ ଦାରୁ ବ୍ରହ୍ମ ସେ
ଟଂକିଲେ ନାହିଁ କଞ୍ଚିତ ।

—୯—

"ସ୍ୱାଗତ ହେ ପ୍ରଭୁ ଜଗତର ନାଥ
କି ଦେଖିଲ ମୋର ପରମାଦ ?
ଅଜ୍ଞ ମୁଁ ଥିଲେ ଜାଣି ପାରୁ ନାହିଁ
କି ଦେଖିଲ ମୋର ଅପରାଧ ?"
ମିନତି ଜଣାଇ ସଜଳ କଥାରେ
ଚୋଳଲେ ପୁଣି ସେ ଦାରୁ ଦେବତାରେ
ବୁଝି ହେଲା ନାହିଁ ମର୍ମ,
ତଥାପି ଅଚଳ, ଅଟଳ ରହିଲେ
ମହାନ ସେ ଦାରୁ ବ୍ରହ୍ମ ।

—୧୦—

ଶୂନ୍ୟର ବାଣୀ ମନ୍ଦ୍ର ଉଠିଲା—
"ସେ ଦିନର ସେଇ ନୀଳ ତନୁ
ସେଦିନର ସେଇ ପାଷାଣ ପ୍ରତୀକ
ସେ ଦିନର ନୀଳ ମାଧବ ମୁଁ ।
ପାଷାଣ ଭିତରୁ ଯାଉଚି ଉଭେଇ
ଦାରୁ ବନ୍ଧହେ ଆସିଅଛୁ ଏଇ
କି କରୁଛ ରଜା ଏତେବେଳେ ?
ଶଙ୍କର ବଳେ ଏଇଠାରୁ ମତେ
ନେଇ ପାଶବନ୍ଧ କେବେ ହେଲେ ।"

— ୧୧—

"ଜଗତ ଠାକୁର ଆହେ ମହାପ୍ରଭୁ
ଆପେ ବସିଜଛ ଏଇ କୂଳେ,
ସରଗର ଶିଖ ଭରି ଦେବା ପାଇଁ
ପ୍ରାଣେ ପ୍ରାଣେ ଏଇ ପୁରେ ପୁରେ ।
ଜାଣି ପାରୁନାହିଁ, କାହିଁ ପାଇଁ ତେବେ
ନିଠୁର ବଚନ ଶୁଣାଉଚ ଏବେ ?
ତୁଚ୍ଛ ଜନ ମୁଁ ତୁମର
ଜଗତର ନାଥ ତୁମରି ଶ୍ରୀମୁଖରେ
କି ଅବା ଶକ୍ତି ମୋହର ?"

—୧୨—

"ପାଖକେ ହେ ରଜା ଠିଆ କର ଆଣି
ବିଶ୍ୱାବସୁର ବଂଶ
ଆର ପାଖେ ପୁଣି ଠିଆ କର ଆଣି
ବିଦ୍ୟାପତିର ଅଂଶ ।
ତୁମର ସମ୍ମୁଖେ ଅଜାତି ଯେ ଜନ
ସେମାନେ ମୋହର ମମତା ଭାଜନ,
ସେମାନେ କରିଲେ ସ୍ପର୍ଶ
ସେମାନେ ଧଇଲେ ମୁଁ ପରା ଉଠିବି
ତହିଁ ମୋ ଅତୁଳ ହର୍ଷ ।"

—୧୩—

ଆକୁଳ ଚରଣେ ଆଗେଇ ଆସିଲେ
ବିଶ୍ୱାବସୁର ବଂଶ,
ଆକୁଳ ଚରଣେ ଆଗେଇ ଆସିଲେ
ବିଦ୍ୟାପତିର ଅଂଶ ।
ବ୍ୟଗ୍ର ବାହୁରେ ଅତି ଶରଧାରେ
ଧଇଲେ ମହାନ୍ ଦାରୁ ଦେବତାରେ,
ତୋଳି କୋଳାହଳ ଶବ୍ଦ,
ଆଖିର ପଲକ ପଡ଼ୁ ନ ପଡ଼ୁଣୁ
ଦାରୁରେ ଜାଗିଲା ସ୍ପନ୍ଦ ।

—୧୪—

ଆକାଶ ତୋଳିଲା ଓଁକାର ବାଣୀ
ତାଳ ଦେଲା ତହିଁ ପାରାବାର
ସମୀର ବ୍ୟଜନ ପରଶ ଢାଳିଲା
ଲେଟି ଲେଟି ଯାଇ ବାରବାର ।
ରାଇଜର ରଜା, ରାଇଜର ଜନ,
ତୋଳିଲେ ପ୍ରାଣର ସ୍ତୁତିବନ୍ଦନ,—
"ଜୟ ଜଗତର ତାତ ହେ
ଜୟ ଜୟ ଦାରୁବ୍ରହ୍ମ ଦେବତା
ଜୟ ଶ୍ରୀଜଗନ୍ନାଥ ହେ ।"

**

**

# ସ୍ନିଗ୍ଧା ଚଣ୍ଡାଳୁଣୀ

**ରାଧାମୋହନ ଗଡ଼ନାୟକ**

(ବିଂଶ ଶତାବ୍ଦୀ)

—୧—

ମାର୍ଗଶିର ମାସର ସେଇ
ପହିଲି ଗୁରୁବାର,
ଊଷାର ଶିଖା ଯୋଗାଉଥିଲା
ସୁନାର ଉପଚାର ।

ସାଗର ବୁକେ ଉଚ୍ଛୁଳୁଥିଲା
ସୁନାର ଚଳ ଲହରୀ-ମାଳା

ଦେଖିଲି ନୀଳ ଚନ୍ଦ ପରେ
ଅରୁଣ ରାଗ-ବର୍ଣ୍ଣ,
ମରକତପୁରେ ସରଗଶିଖା
ଝଟକୁଥିଲା କିବା !

— ୨ —

ଦେଉଳ ଗୁଡ଼ି ବାହାର ହେଲେ
ଲକ୍ଷ୍ମୀ ଠାକୁରାଣୀ,
ଘରକୁ ଘର ବିହରିଗଲେ
ପଲକେ ସବୁ ଜାଣି ।

ଦେଖିଲେ କେଉଁ ଘରଣୀ କାହିଁ
ଅଳସ ଶେଯ ବରଜ ନାହିଁ

ଦୁଆର ଘର ଅସନା ହୋଇ
ପଡ଼ିଛି ଘୃଣଧାର,
ମଥାନ ପରେ ଡାମରା କାଉ
ରାବୁଛି ବାରବାର ।

— ୩ —

ବାହାର ଘରେ କହଇ ଦାସୀ
"ଲକ୍ଷ୍ମୀ-ପୂଜା ଆଜି,
ସ୍ନାହାନ ବେଗେ ସାଇଲେ ଯିବା
ଥୋଇବ ପୂଜାସାଜ ।

ଲିପୁଛି ମୁହିଁ ପୂଜାର ଠାଆ,
ସଅଳ ଟିକେ ଉଠ ଗୋ ମାଆ !"

ଘୁମରୁ ଉଠି ଅଳସ ସୁରେ
କହିଲେ ସାଆଁତାଣୀ,
"ମୋତେ ଯେ ଭୁଉ ଡରାଉଅଛୁ
ମୁଁ ଉ କ ନାହିଁ ଜାଣି ?"

—୪—

ଲକ୍ଷ୍ମୀ ମାଆ ଦେଖିଲେ ଯାଇ
ନଗରୀ-ପ୍ରାନ୍ତରେ,
ଚଣ୍ଡାଳର କୁଟୀରଟିଏ
ଅତୁଳ ଛବି ଧରେ ।

ଗୋମୟ-ଲିପା ଅଗଣାତଳ
ଦିଶୁଛି କେଡ଼େ ସୁନିରମଳ

ନୟନ ମନ ନେଉଚି ହରି
ପିଠଉ-କମ-ଝୋଟି,
ଶତେକ ଦଳେ ହୋଇଚି ଲେଖା
ପଦ୍ମ ଫୁଲ ଗୋଟି ।

—୫—

ପଦ୍ମ ଫୁଲ— ଚନ୍ଦ ଆଗେ
ଲକ୍ଷ୍ମୀ ପୂଜାରୁଣୀ,
ବସିଛି ଆଖି ନିମୀଳି କରି
ଶ୍ରୀୟା ଚଣ୍ଡାଳୁଣୀ ।

ଦୀପରେ ଜାଳି ଉଜଳ ଆଶ,
ଧୂପରେ ଜାଳି ସୁରଭି ଶ୍ୱାସ,

କଣ୍ଠ-ତାର ମୁଖର କରି
ଆବେଶ-ଭରା ତାନେ,
ମିନତି ତାର ଦେଉଚି ବାଢ଼ି
ଭକତି-ଭରା ପ୍ରାଣେ ।

—୬—

"ଆସ ଗୋ ମାଆ ଲକ୍ଷ୍ମୀ ଆଜ
ଚଣ୍ଡାଳୁଣୀ ଡାକେ,
ଅଛୁଆଁ-ଛୁଆଁ — ଭେଦ ଗୋ ମାଆ
ନାହିଁ ତ ତୋହ ପାଖେ ।

ମୋହର ଏହ ପଦ୍ମପରେ
ଆସ ଗୋ ମାଆ ବସ ଗୋ ଥରେ,

ପ୍ରାଣର ମୋର ଆରତ୍ତ ଦେନ
ଆଉ ତ କିଛୁ ନାହିଁ,
କି ଉପଚ୍ଚର ମିଳବ ମୋତେ
ତୋହର ପୂଜା ପାଇଁ ?

—୭—

କରୁଣା ତୋର ପାଉଚ ନତ
ଏ ମୋର ମାଟି ଘରେ,
ଦୁଃଖେ ସୁଖେ କାଟୁଛୁ ଦନ
ଶାନ୍ତ-ସୁହାଗରେ

କରମ କର ତାହାର ଫଳ
ପାଉଚ ନତ ଅନ୍ନ ଜଳ,

ସେନେହ-ପ୍ରୀତ- ବନ୍ଧନରେ
ସଭିଏ ଅଛୁ ମିଳ,
ଜୀବନ ଭର ପାଉଚ ନତ
ମାଆଲେ ତୋହ ଶିସ୍ତ ।"

—୮—

ଅଚିରେ ତାର ଝମୀଲ ଆଖି
ମୁକୁଳି ଗଲା ଗୁଆଁ,
ପଦ୍ମ ଫୁଲ ଚକ୍ଷ ପରେ
ଦେଖିଲା ମହାମାଆ ।

ପଲକହୀନ ନୟନ ଭରି
ଦେଖିଲା ରୂପ ସୁଧାର ଝସା,

ଚରଣ ତଳେ ଲଗାଇ ମଥା
ଲୋଟାଇ ଦେଲା ହୃଦୟା,
ହରଷ-ଭରା କଣ୍ଠ ଖୋଲି
ସମ୍ଭାଷିଲା ଶ୍ରୀୟା ।

—୯—

“ସତେ ଗୋ ମୋର ଲକ୍ଷ୍ମୀ, ମାଆ
ଆସିଲ ମୋର ଘରେ
ସପନ ମୋର ସଫଳ ହେଲା
ମ୍ଳାନ ଏ ଜୀବନରେ ।

ଧନ୍ୟ ହେଲି ଅଭାଗୀ ମୁହିଁ,
ପୁଣ୍ୟ ହେଲା ଏ ମୋର ଭୂଇଁ,

ପୂର୍ଣ୍ଣ ହେଲା ଏ ମୋର ଆଶା
ଆଖିର ପଲକରେ,
ଜୁଆର ପରି ହୃଦୟ ମୋର
ଫୁଲଇ ପୁଲକରେ ।”

—୧୦—

ଚଣ୍ଡାଳର ଘରଣୀ ସେଇ
ଶ୍ରୀସ୍ୱା ଚଣ୍ଡାଳୁଣୀ,
ବାରକୁ ବାର ଲୋଟାଇ ମଥା
ନମିଲା ପୁଣି ପୁଣି ।

ଢରଳ କଳା ଆଖିରୁ ତାର
ଝରିଲା ଖାଲି ସଲିଳ-ଧାର,

ଲକ୍ଷ୍ମୀ-ରୂପ ଆଖିରେ ଦେଖି
ଦୁନିଆ ଗଲା ଭୁଲି,
କହିଲା ଖାଲି- "ମଥାରେ ମୋର
ଦିଅ ମା ପାଦ-ଧୂଳି ।"

—୧୧—

ପୁଲକ ଭରେ ଲକ୍ଷ୍ମୀ ଦେବୀ
ବୋଇଲେ, "ଆଲୋ ଶ୍ରୀସ୍ୱା,
ମୋହର ପୂଜା କରିବା ପାଇଁ
ତୋହର ଅଛି ଦିସ୍ତା ।

ଆଶିଷ ଏବେ କରୁଛି ମୁହିଁ,
ସକଳ ଶିକ୍ଷା ଲଭିବୁ ତୁହି,

ସୁଖର ଘର ଦୁଆର କରି
ରହିବୁ ମହାସୁଖେ,
ଧରଣୀ ତଳେ କାଟିବୁ ଦିନ
ହରଷ-କଉତୁକେ ।"

—୧୨—

ଦେଉଳ ମୁଖେ  ଫେରିଲେ ଦେବୀ
ଦେଖିଲେ ଆଖି-ଆଗେ
ଆଗରେ ଉଭା  ଜଗନ୍ନାଥ
ସିଂହଦ୍ୱାର-ଭାଗେ ।

"ଲକ୍ଷ୍ମୀ ଆଗେ କହିଲ ଦେଖି
ତୁମର ନାମେ ଶୁଣୁଚ ଏ କି ?

କୁଆଡ଼େ ଭଲ  ବୁଲୁଚ ତୁମେ
ଦେଖିଲେ ବଡ଼ ଭାଇ,
ଚଣ୍ଡାଳର  ଅଗଣା ତଳେ
ବସି ଯେ ଥିଲ ଯାଇ ।

—୧୩—

କିଏ ସେ ଭଲ  ପାଶବ ସହୁ ?
ତୁମର ଏଇ ସ୍ୱାଦ,
ଅପବାଦ  କରୁଛ କିଆଁ
ଦେଉଳେ ଆମ ନାଦ ?

କାହିଁକି ତୁମେ ଅପଥ ପଥେ
ବୁଲୁଚ ଭଲ ଇଚ୍ଛାମତେ ?

ଖାଇ ତ ଆଜ  ଅଗ୍ନିବାଣ
ମୁଁ ଏବେ କରୁପାସ୍ତୁ,
ଦେଉଳେ ନାହିଁ  ତୁମର ଠାଇଁ
ଏଲାଗେ ଚାଲିଯାଅ ।"

—୧୪—

"ଇଏ କି କଥା କହୁଚ ଦେବ ?
ପାରୁନି ମୁଁ ତ ବୁଝି,
ଏଇ କି ମାତ୍ର ମହାପ୍ରଭୁ
କହୁଚ ଆଖି ବୁଜି ?

କରୁଚ ମୁଁ ଯେ ଅନ୍ନଦାନ
ସକଳ ଘରେ ମୋହର ଆନ,

ସୃଷ୍ଟି ତବ ପାଳିବା ପାଇଁ
ଘୂରୁଚ ଅବିରଳ,
କିଏ ସେ ନୁହେ ନିଜର ମୋର ?
କିଏ ସେ ମୋର ପର ?"

—୧୫—

ଜଗନ୍ନାଥ ବୋଇଲେ, "ଏଥେ
ନାହିଁ ଯେ ମୋର ଦୋଷ
ନିଶ୍ଚୟ ମୁଁ ସାଧିବ, ଭାଇ
ଲଭିବେ ଯହିଁ ତୋଷ ।

ଲକ୍ଷ୍ମୀ ମୋର ପ୍ରାଣର ପ୍ରିୟା,
ଉଚ୍ଚୁର ଆଉ କରୁଛ କିଆଁ ?

ବୃଥାରେ ଭଲ କାହିଁକି ଆଉ
ଯୁଝୁଁ ଚ ମୋର ମତ ?
ଯୁଆଡ଼େ ମନ ଯିଆଡ଼େ ଯାଅ
ମୁକ୍ତ ତୁମ ପଥ ।"

—୧୬—

ଚରଣ-ରେଣୁ ମଥାରେ ଘେନି
ଆଖିରେ ଭରି ଜଳ,
ସ୍ନିଗ୍ଧ-କେମା ବୋଇଲେ ବାଣୀ
କଣ୍ଠ ଥର ଥର ।

"ଯାଉଚ ଆଜ୍ଞେ ପରାଣପ୍ରିୟ,
ଅଭାଗିନୀର ହୃଦୟ ନିଅ ।

ନିଠୁର ତୁମେ ଦେବତା ମୋର
ମୁରୁଛୁ ଦେଲ ସିନା,
ଜୀବନ ମୋର ମରଣ ଏବେ
ହୋଇବ ତୁମ ବିନା ।"

—୧୭—

ଜଗନ୍ନାଥ ମହାପ୍ରଭୁ
ଦେଉଳେ ଗଲେ ଫେରି,
ଲକ୍ଷ୍ମୀ ଏଣେ ଧରିଲେ ପଥ
ନ କରି ଆଉ ଡେରି ।

ବଳଭଦ୍ର ପୁଚ୍ଛିଲେ ତହୁଁ
"କୁଆଡ଼େ ଏବେ ଗଲେ ଯେ ବହୂ ?"

ଅଚଳ ହୋଇ ଜଗନ୍ନାଥ
ଉତ୍ତରିଲେ, "ଏଇ,
ଆସିଲ ପରା, ଇନ୍ଦିରାକୁ
ବିଦାୟ କରି ଦେଇ ।"

—୧୮—

ଦେଉଳ-ଶିଖ ଉଭେଇଗଲା
ଲକ୍ଷ୍ମୀ ସାଥେ ସାଥେ,
ବଳଭଦ୍ର ଜଗନ୍ନାଥ
ଦେଖିଲେ ଏକା ଘଟେ ।

ପ୍ରଭାତେ ପୁଣି ଦେଖିଲେ ଚାହିଁ
ପାଶରେ କେହୁ ସେବକ ନାହିଁ

ପଣାର କାହିଁ କିଏ ସେ ଦେବ ?
ଶ୍ରୀମୁଖ ହେବେ ଧୋଇ,
ଗୋଟାଏ ଦିନେ ଦେଖିଲେ ଏକ
ଲକ୍ଷ୍ମୀଛଡ଼ା ହୋଇ ।

—୧୯—

ବଳଭଦ୍ର ଜଗନ୍ନାଥ
ଦେଖିଲେ ଦୁରୁଯୋଗ,
ଦେଉଳେ ଆଉ ଏଣିକ କାହିଁ
ଲାଗିଲା ନାହିଁ ଭୋଗ ।

ଦିନକେ ସବୁ କୁହୁକ ପରି
ମନ୍ଦିରରୁ ଉଭେଇ ଗଲା ।

ବ୍ରାହ୍ମଣର ମୂରଛ ଧରି
ଅନ୍ନ ପାନ ପାଇଁ,
ଦେଉଳ ଛାଡ଼ି ବାହାର ହେଲେ
ଦୁଃଖ ବେଦନା ଖାଇ ।

—୨୦—

ଯାଇରୁ ଯାଇ ନଗସ୍ତ ଯାଗ
ଘୂରିଲେ ନେଜ ଖାଇ,
କଏ ସେ ଦେବ କଅଣ ଦେବ ?
ମିଳୁଚି ଅବା ନାହିଁ ?

ତଥାପି ବେଳ ଭିକ୍ଷା ଆସେ
ମିଳିଲେ ଯାଇ ବହୁତ ବାସେ,

ଯାହାର ଦ୍ୱାରେ ହୋଇଲେ ହସ୍ତ
ଆତମ୍ବିତ ଆହା,
ଦାତାର ଘରୁ ଉଭେଇ ଗଲା
ଦେବାର ଶକ୍ତି ଯାହା ।

—୨୧—

ଲକ୍ଷ୍ମୀଛଡ଼ା ଯୁଗଳ ଭାଇ
ବୁଲିଲେ ଦୂରେ ଦୂରେ,
କ୍ଷୁଧାରେ ଅତି କାତର ହୋଇ
ବସିଲେ ତରୁ-ମୂଳେ ।

“ପେଟର ଜ୍ୱାଳା ଜୀବନଦାୟୀ
ଜଗା ରେ, ସହି ପାରିବା ନାହିଁ ।

ଏଇଠି ପ୍ରାଣ ରହିବ ନାହିଁ,
ଧରିବା ଦୂରପଥ ।”
ଜଗନ୍ନାଥ ବୋଇଲେ, “ଆଉ
ଚଳୁଚି କିକ ଭଅ ?”

—୨୨—

ସାଗର ଧାରେ	ବାଲୁକା ପରେ
ଅଙ୍କଭ ପାଦେ ଯାଇ,
ନୂତନ ଏକ	ନଅର ପାଶେ
ମିଳିଲେ ବେନ ଭାଇ ।

ଅନ୍ନସ୍ଥାନେ ଅନ୍ନଦାନ
ଚାଲିଛି ତହିଁ ଅବଶ୍ରାମ

ଫେରୁଚ ଭୋକୀ,	ଫେରୁଚ ଶୋଷୀ
ସଫଳ କରି ଆଶା,
ମୁଖରେ ତୋଳି	ଆନନ୍ଦର,
ଉଲ୍ଲାସର ଭାଷା ।

—୨୩—

ଦୁଆରେ ରହି	ବେଦଧ୍ୱନି
ତୋଳିଲେ ବେନ ଭାଇ,
"ଗୋସାଇଁ ତୁମେ"	ପୁଚ୍ଛଇ ଦାସୀ,
"ଆସିଛ କାହିଁପାଇଁ ?"

ମନର ଆଶା ପୂରିବ ଜାଣି
ବଳଭଦ୍ର ବୋଇଲେ ବାଣୀ,

"ଭୋକିଲା ଦୁଇ	ବ୍ରାହ୍ମଣରେ
ଅନ୍ନ କର ଦାନ
ଦାଁଦନ ହେଲୁ	ମିଳନ କିଛୁ
ରଖ ଗୋ ଆମ ପ୍ରାଣ ।"

"ଜାଣନ୍ତ ବୋଧେ          ଆମର ଏଯେ
ଚଣ୍ଡାଲର ଘର
ଆମର ପାକ          ଛୁଇଁବ ନାହିଁ
ତୁମେ ଯେ ଦ୍ୱିଜବର ।

ରୋଷେଇ ସାଜ ସାଆନ୍ତାଣୀ
ଦେବେ ଯେ ମୁହିଁ ଦେଉଛୁ ଆଣି

ଯତନ କରି          ଏକ୍ଷଣେ ତୁମେ
ରାନ୍ଧି ବାଢ଼ି ଖାଅ,
ଭୋଜନ ପରେ          ଦକ୍ଷିଣା ନେଇ
ସୁଖରେ ଚାଲିଯାଅ ।"

—୨୫—

ବଳଭଦ୍ର          ଜଗନ୍ନାଥ
ହୋଇଲେ ତହିଁ ରାଜା,
କପର ମୁଠେ          ଅନ୍ନ ଲୁଚି
ଜୀବନ ରକ୍ଷୁ ଆଜି ।

ଚାଉଳ ଡାଲି ପରିବା ମାନ;
ରନ୍ଧନର ସରଞ୍ଜାମ

ଦାସୀଏ ପୁଣି          ଥୋଇଲା ଆଣି
ନୟନ-ଲୋଭନିଆ,
ଅପର ଦାସୀ          ଯତନେ ଆଣି
ଥୋଇଲା କାଠ ନିଆଁ

—୧୭—

ଜଗନ୍ନାଥ ଜାଳିଲେ ଚୂଲି
କେଜାଣି ଭଲ କଥାଁ ?
ଯତନ କରି ଜାଳିଲେ ମିଶେ
ଜଳିଲା ନାହିଁ କଥାଁ ।

ଜୋ'ର କରି ଫୁଁକିଲେ ସିନା,
ଶେଷକୁ ଖାଲି ଥକିଲେ ସିନା,

ଜଳିଲା ନାହିଁ ଚୂଲିର କାଠ
ଉଠିଲା ଖାଲି ଧୂଆଁ ;
ଧୂଆଁରେ କଳା ହୋଇଲେ ପ୍ରଭୁ
ଜଗତ-ବନୋଦଆ ।

—୧୭—

"ଚୂଲିଟା ଜାଳି ପାରୁନୁ ଜଗା
ସବୁଠି ପୁଣି ଆଗ,
ଦେଖୁଚି ତୋର ହାତରେ ଏବେ
ସିଝିବ ନାହିଁ ଶାଗ ।"

ଜ୍ୟେଷ୍ଠ ଭାଇ ବଳଭଦ୍ର ଚାପେ
ଚୂଲିରେ କାଠ ଜାଳିଲେ ଆପେ,

କାଠ ତ କଞ୍ଚା ଜଳିଲା ନାହିଁ
ଲାଗିଲା ନାହିଁ କାଠ,
ଚୂଲିରେ ପାଣି ଅଜାଡ଼ି ଦେଲେ
ନ ଦେଖି ଆଉ ବାଟ ।

—୮—

ଅନ୍ତଃପୁରୁ ବାହାରି ପଡ଼ି
ବୋଲଇ ପରସ୍ପର,
"ଗୋସାଇଁ, ତୁମେ କଅଣ କଲ ?
ଗଲ ତ ଏବେ ହାରି ।"

ବଳଭଦ୍ର ବୋଇଲେ ତହୁଁ
"ଦାସୀ ଗୋ ଏବେ ଜୀବନ ରହୁ,

ତୁମରି ପାକ ଅନ୍ନ ମୁଠେ
ତୁରିତ କର ଦାନ,
ଜାଡରି ମାନ ଖୋଜୁଚ କିଏ
ଯାଉଚ ଯେବେ ପ୍ରାଣ ?"

—୧୯—

ଦିବ୍ୟପାକ ଆସିଲା ତହିଁ
ଅତିଥିଜନ ପାଇଁ,
ହରଷେ ବସି ଭୋଜନ କଲେ
ଆତୁରି ବେନି ଭାଇ ।

"ଲକ୍ଷ୍ମୀ ପାକ ପରାଏ ସତେ !
ଜଗ ରେ ଏହା ଲଗୁଛି ମତେ ।"

ଜଗନ୍ନାଥ ବୋଇଲେ, "ଭାଇ
ଥାଉ ସେ କଥା ଥାଉ,
ହରେଇ ଅଛେ ଯେ ସୁଖ ଭଲ
ଭାବୁଚ କିଆଁ ଅଉ ?"

—୩୦—

ଅନ୍ନ ପରେ ଆସିଲା ପୁଣି
ଦୁଇଟି ପୋଡ଼ପିଠା,
ବଳଭଦ୍ର ବୋଇଲେ, "ଜଗା,
ସ୍ୱମିଛ ତ ଏ ମିଠା,

ଭୁଞ୍ଜିଲେ ଯେ ଖାଦ୍ୟଯାକ
ଭାବୁଛୁ ମୁହିଁ ଲକ୍ଷ୍ମୀପାକ,

ଲକ୍ଷ୍ମୀ ବିନା ନୋହିଲେ କିଏ
ଏ ପୋଡ଼ପିଠା ଆଣି,
କହିଲୁ କେଝି ଯୋଗାଇ ଦେବ
ଆମର ମନ ଜାଣି ?"

—୩୧—

ଭୋଜନ ସାରି ହରଷଭରେ
ବଢ଼ାଇ ଆଚମନ
ଭାଇରେ ଡାକି ଜ୍ୟେଷ୍ଠ ଭାଇ
ଭାଷିଲେ ସୁବଚନ ।

"ମୋହର ଯୋଗେ ଏ ଧରାଧାମେ
ଲକ୍ଷ୍ମୀଛଡ଼ା ହୋଇଲେ ଆମେ,

ନିମିଷକେ ଆମର ସବୁ
ଭାଗ୍ୟ ଗଲା ଜଳି,
କଳନାଶନ ଦୁର୍ଦ୍ଦଶାରେ
ହୋଇଲେ ଏତେ ସରି ।

— ୩୨ —

ଲକ୍ଷ୍ମୀ ଦେବୀ      ରୁଷ୍ଟ ପୁଣି
ହୋଇବେ କେଉଁପଣେ,
କପଟ ଅବା      ଆମ୍ଭଣ ଘର
ଛୁଟିବ ପୁଣି ଭଣ ।

ବୃଥାରେ ମୁହିଁ କଲ ଯେ ରୋଷ
ଭାଳୁଚ ଏବେ ତାହା ମୋ ଦୋଷ ।"

"ସନ୍ତାପିଲେ      କି ହେବ ଆଉ ?"
ବୋଇଲେ ସାନ ଭାଇ,
"ଗଲଣି ଗଲ      କଥା ତ ଏବେ
ଭାଳୁଚ କାହିଁପାଇଁ ?"

— ୩୩ —

ଅନ୍ତରକୁ      ସିନ୍ଧୁ ଜେମା
ବାହାରପଣ୍ଡା ଘରେ
ଦୂରରୁ ଟିକେ      ନମିଲେ ବେନି
ଦେବତା ପାଦତଳେ,

ମରମେ ଭରି ପୁଲକ ପାଇ
ବିଭୋର ହେଲେ ଯୁଗଳ ଭାଇ ।

ବଳଭଦ୍ର ବୋଇଲେ,      "ଦେବୀ
ଭୁଲ ଗୋ ମୋର ଦୋଷ,
ମନ୍ଦରକୁ      ଚାଲ ଗୋ ଏବେ
ହୃଦୟେ ଘେନ ତୋଷ ।"

"ବହୁତ କଥା ହେଲା ତ ଆଗୋ
ଲକ୍ଷ୍ମୀ ଠାକୁରାଣୀ"
ପାଖକୁ ଯାଇ ଜଗନ୍ନାଥ
କହିଲେ ଧୀର ବାଣୀ ।

"କଅଣ ଆଉ ଭାବୁଛ ତେବେ ?
ଦେଉଳେ ଚାଲ ଫେରିବା ଏବେ ।

ଆମର ସବୁ ଦୁଃଖ ଦଶା
ସାଙ୍ଗ ହେଉ ଆଜ,
ତୁମକୁ ପାଇ ପୁଣି ଏ ଆମ
ଦେଉଳ ଉଠୁ ସାଜ ।"

— ୩୫ —

"ପ୍ରଭୁ ହେ ତୁମ ଆଦେଶ ପାଇ
ଦେଉଳ ଛାଡ଼ିଥିଲି,
ପୁଣି ଏ ତୁମ ଆଦେଶ ପାଇ
ଯିବି ମୁଁ ଯିବି ଫେରି ।

ମାତର ଦେବ ଗୋଟିଏ ଅଳି,
କୁହ ତ ଏବେ ବିଚାର କରି,

ସେ ଯେଉଁ ଶ୍ରୀୟା ପୂଜାରେ ମତେ
ଘରକୁ ନେଲା ଟାଣି,
ତାହାର କଥା କଅଣ ଭଲ
ବୁଝିବ ମହାମାନୀ ।"

"ଶ୍ରୀସ୍ୱାର କରେ ତୁମେ ତ ଦାନ
ଦେଇଚ ଭରପୂର'
ଶ୍ରୀସ୍ୱାର ଯୋଗେ ହଜିବବେ
ଏବେ ତା ଜାତିକୁଳ

ଏଣିକି ଆମ ଦେଉଳେ ଜାଣ
ସଭିଏ ହେବେ ଏକଇ ପ୍ରାଣ,

ଦେଉଳେ ଥିଲା ଯେ ଭେଦାଭେଦ
ଏଥର ହେଲା ରଦ,
ଚଣ୍ଡାଳର ହାତରୁ ଦ୍ୱିଜ
ଖାଇବେ ମାହାରଦ ।"

✳✳

**

# ଅନାଥରେ

କିଶୋରକବି ଶ୍ୟାମସୁନ୍ଦର ଦାସ

[ରାଗ-ଚୋଖିପରଜ । ତାଳ-ଆଦିତାଳ]

( ବିଂଶ ଶତାବ୍ଦୀ )

ଅନାଥରେ···ଅନାଥର ଭୀମଦ କାମରୂପକୁ
(ଅନାରେ) କଳପୀ କାଳିଆ ଭୂପକୁ ॥୦॥

ପଦ୍ମାଭିଳାଷ ଆସ୍ପଦ, ଶ୍ରୀମସ୍ମୁଖ କୋକନଦ
ଇନ୍ଦ୍ରାଦିବୃନ୍ଦାର୍କ ବୃନ୍ଦ ବନ୍ଦିତ ବିଶ୍ୱଦର୍ପକୁ ॥୧॥

ମହାମହୋଦଧିତଟ, ନୀଳାଦ୍ରି ଅଟବୀ ପୁଷ୍ଟ-
ପ୍ରମତ୍ତ ମାତଙ୍ଗ ଶ୍ରେଷ୍ଠ ପାବନ ଯୟୁତାପକୁ ॥୨॥

ଅଗ୍ରଣ ଶେଷ ମଣ୍ଡଳ, ପାର୍ଶ୍ୱେ ହଳାୟୁଧ ବଳୀ
ଶୁଭଦା ମଧ୍ୟମା ଭଦ୍ରା ସୁଦର୍ଶନ ଅନୁପକୁ ॥୩॥

ଭକ୍ତ ବାଞ୍ଛା ଚିନ୍ତାମଣି, ମୋକ୍ଷଦ ସୁଗନ୍ଧ ଖଣି
କିଶୋର କବିର ହୃଦ ପଦ୍ମ ସରସ କୂପକୁ ୪॥

**

**

# ହେ ନୀଳଶଇଳ ବଳାସୀ

**କଶୋରକବ ଶ୍ୟାମସୁନ୍ଦର ଦାସ**

[ରାଗ-ଖଣ୍ଡକାମୋଦୀ । ତାଳ-ଆଡ଼ତାଳି]

( ବିଂଶ ଶତାବ୍ଦୀ )

ହେ ନୀଳଶଇଳ ବଳାସୀ ଛଇଳ ଛପନକୋଟି ପଡ଼ିଦାତା
(ପୁଣି) ଛପନପଉଟି ମଣୋହିକ କଣ୍ଠି ଛତଶା ନଯୋଗଣକତା ହେ
ମହାପ୍ରଭୁ । ଚଉଦ ବ୍ରହ୍ମାଣ୍ଡ କରତା ।
ପତତପାବନ ଦାରୁବ୍ରହ୍ମ ରୂପେ କଳି କଳୁଷ ଉଦ୍ଧାରନ୍ତା ।।୧।।

ପାପୀତାପୀ ପରତାପୀ ତପୀଜନ ଜନକ ପଣେ ସାମରଥ,
ଶରଣାଗତକୁ ଚରଣସରୋଜେ ଅଳଦେଇ ପାଳ ନରତ ହେ
ମହାପ୍ରଭୁ । ଜଗତନାଥ ନାମେ ଖ୍ୟାତ
ଦଇତା ପତଙ୍କ ଗହଣେ ପୂଜିତ ମହମା ତ୍ରିଲୋକେ ବଦତ ।।୨।।

କେତେ ଜନ୍ମ ପୁଣ୍ୟେ ଅନୁଗତ ପଣେ ଇନ୍ଦ୍ରଦ୍ୟୁମ୍ନ ଅଧିଇଶ୍ୱର,
ଲଭି ଅନୁଗ୍ରହ ବଚନ ବଗ୍ରହ ପୂଜିଲ ଆଶ୍ୱାସ ନିଃସ୍ୱର
ମହାପ୍ରଭୁ । ମର୍ତ୍ତ୍ୟବଇକୁଣ୍ଠ ବଶ୍ୱର
ବରଚ ବଗ୍ରହ ନୀଳଚକ୍ର ଧ୍ୱଜ ଫଦ ବଲେ କବକଶୋର ।।୩।।

**

**

# ଏହି ସିନାରେ

## କିଶୋରକବି ଶ୍ୟାମସୁନ୍ଦର ଦାସ

[ରାଗ-ଧନାଶ୍ରୀ ବା ଧନ୍ୟାସି । ତାଳ-ମିଶ୍ରରୂପତାଳ]

(ବିଂଶ ଶତାବ୍ଦୀ)

ଏହି ସିନାରେ···ବଡ଼ ଦେଉଳର ବଡ଼ ମହିମା ।
ବଡ ବୋଲି ଢନ ଥୁରେ ପଡ଼ିଛି ସ୍ୱର୍ଗ ମଣିମା ॥ ୦ ॥

ବଡ଼ ସାମନ୍ତ ପଣେ ତ, ବଜେ ଜଗତର ନାଥ
ବଡ଼ ଘରଣୀ ମା' କ୍ଷୀର ସାଗର ଦୁଲଣୀର ରମା ॥ ୧ ॥

ବଡ ପ୍ରସାଦ ଏ ମାଆ ପ୍ରସାଦ ପାଇଥା'ରେ ପାଇଥା',
କୋଟି କୋଟି ଜନ୍ମ ପୁଣ୍ୟ ଫଳକୁ ସାଇତାରେ ସାଇତା ;
ବଡ଼ ସାନ ନାହିଁ ଭେଦ ଚଣ୍ଡାଳ ବ୍ରାହ୍ମଣ ଶୁଦ୍ର ଶ୍ରୀ ଚରଣ ତଳେ
ସବୁ କ୍ଷମାରେ ॥ ୨ ॥

ବଡ଼ ଜମଟ ଏ ବଡ଼ କୈବଲ୍ୟ ହାଟରେ ଧନ କୈବଲ୍ୟ ହାଟ
ବଡ ମନ ବୋଲି ଆମ ଜାଣ ବରାଟ,
ବଡ଼ ବଡ଼ ଶିର ନୋଇଁବାର ଏ ବଚନ ସୀମା ॥ ୩ ॥

ବଡ଼ କରୁଣା ମୟୀ ମା' ଏ ଠାକୁରାଣୀ,
ବଡ଼ ପ୍ରସନ୍ନର ସ୍ୱାହାଁ ସ୍ୱରୁ ସ୍ୱାହାଁଣୀ;
ବଡ଼ ଆଶିଷ ପ୍ରଦାନେ ନାହିଁ ନଥିବରେ ଜଣେ
ଘୋଷନ୍ତ ବ୍ରହ୍ମାଶଙ୍କର ଯା'ର ଗାରିମା ॥ ୪ ॥

**

**

# ଚଣ୍ଡାଳର ଠାକୁର

## ଜଣୋରକବି ଶ୍ୟାମସୁନ୍ଦର ଦାସ

[ ରାଗ-ପରଜ । ତାଳ-ଆଡ଼ତାଳି ]

(ବିଂଶ ଶତାବ୍ଦୀ)

ଚଣ୍ଡାଳର ଠାକୁର···ଠାକୁର ହେ···
ଘଣ୍ଟା ଟେକିଲ ଏବେକି ଭଣ୍ଡାଇବାରେ ?
କୁଣ୍ଢାଇ ରୂପେ ବିରାଜି ଧଣ୍ଡାମାନେ ଭେଣ୍ଡାସାଜି
ଲୁଣ୍ଠାଇଲ ବଡ଼ପଣ ତଣ୍ଡାଇବାରେ ॥ ୦ ॥

ଗୁଣ୍ଡା ବଳବାକୁ ଯାଠିଏ ପଣ୍ଡାଟିକି
କୁଣ୍ଢାଇ ବସିଲ ଚକାବଇଠିକି,
ପଣ୍ଡା ପଡ଼ିହାରୀ ମେଘନାଦ ପାଚେରୀ ଏତେ ଆଙ୍କଟ
ଶ୍ରୀ ଅଙ୍ଗ ମଣ୍ଡାଇବାରେ ॥ ୧ ॥

ଦେବତାଙ୍କର କଥା ହେଲା ଚଉବାହା
ଗୁହକ ଶବର:ଘରେ ଭୋଜିଖିଆ ;
ଦ୍ୱାପରେ ମଲ୍ଲିକା ଶବରୁଣୀ ଚଖା—
ଉଚ୍ଛିଷ୍ଟ ଭୁଞ୍ଜି ଏବେ ଲୁଣ୍ଠାଇବାରେ ॥ ୨ ॥

ବଡ଼ ବଡ଼ ଚକା ନୟନ ମେଲିକି
ବଡ଼ ଦେଉଳରେ ବସିଲ ବୋଲିକି,
ତବ ବଡ଼ପଣ ହେବ ପ୍ରଭୁ ହୀନ
(ଖାଲି) ପତିତପାବନ ବାନା···ମୁଣ୍ଡାଇ ବାରେ ॥ ୩ ॥

**

**

# ନୀଳ ଶଇଳହାରୀ

କିଶୋରକବି ଶ୍ୟାମସୁନ୍ଦର ଦାସ

[ରାଗ-ଲଳିତ ଶ୍ରୀ । ତାଳ-କହରବା]

(ବଂଶ ଶତାବ୍ଦୀ)

ସ୍ୱର ବିନୋଦିଆ ନୀଳ ଶଇଳ ହାତୀ
ନୀଳ ଶଇଳ ହାତୀ ।
ଭକତ ବଢ଼ିବା ପାଇଁ କେଡ଼େ ଟାଣ କର ଯୁକ୍ତି ॥ ୦ ॥

ଭକତ ନକତ ଟେକି, ତଳେ ପାସଙ୍ଗ ନରଖି
ଚକା ତୋଳେ ଟାକି ଏକ ନରକ୍ଷ ପରଖା ସ୍ୱତ ? ॥ ୧ ॥

ସର୍ବସ୍ୱହର ହେ ହର କର ବାଉଳା,
ମନାଥ ଦେଇ କପଣ କପଟି ଶିଳା ;
ଦୁନିଆଁ ନିଆଁରେ ସୁନା ପୋଡାଇ ବଢାଅ ଜ୍ୟୋତି ॥ ୨ ॥

କାଳିଆ କପଟି ମାୟା, ଦେବେ ଅଗୋଚର ଯାହା
ସ୍ୱୟମ୍ଭୂ ଶମ୍ଭୂ ସେବକ ପଣେ ତଳାଙ୍କେ ଜାଣନ୍ତି ॥ ୩ ॥

**

**

# କାଠଗଡ଼ କି ହେଲ

କିଶୋରକବି ଶ୍ୟାମସୁନ୍ଦର ଦାସ

[ରାଗ-କୀରବାଣୀ । ତାଳ-ପଦ୍ମପଛ]

(ବଂଶ ଶତାବ୍ଦୀ)

ଟକା ତୋଳାତୁମେ ପକ୍କା, ଠକ ଠାକୁର ହେ
ଟିକି ଦାନୁ ଠକ ଠକ ସ୍ୱର୍ଗି ଠେକ
ଠାକଛ ପର୍ଶ ପାଇ କେତେ ଠୁକର ହେ ॥ ୦ ॥

ଠକାରକୁ ଠିକେ ଠାକୁର ବୋଲିକେ
ଠେକା ବାନ୍ଧି ବୋକା କଲ ଖାତର ?
ଠକ ଦେବକୀ କି ନ କରଛ କି କି ଗୋପ ଗୋଈ ଗୋଠେ
ଶଠ ଶେଖର ହେ
ଠଣ ସୁନ୍ଦର, ଠାପୁଆ ସ୍ୱୈର
ଠାସକରେ ଦାନ ବଳୀର ନେଲ ;
(ଆଉ· ଠକ ଠାବ ଦେଲ ପାତାଳ ପୁର ॥ ୧ ॥

ଘେନ ଭଉଣୀକୁ ବେନ କନ୍ଧୁଣୀକୁ ଝେକଛ ଝାଣ ପଣରେ—
ଶ୍ରୀ ଧର;
ସ୍ୱାନ ମାନଆ ମୁଁ ନ ବହ୍ନି ବୋଇଲ ବଳସ୍ୱାର ଭୂଜ ଦସ୍ତା ସାଗର
ହେ ହେଲ ବିକଳ, ବୋଲିକି କଲ
କଳାକର ମୁଖ କଳା କରି ବସିଲ,
ମୋ ବେଲକୁ କାଠ ଗଡ଼କି ହେଲ ହେ ॥ ୨ ॥

**

**

# ମୋ ବନ୍ଧୁ ନୋହିଲେ ଯେବେ ଗୋ

## କିଶୋରକବି ଶ୍ୟାମ ସୁନ୍ଦର ଦାସ

[ରାଗ-ଝିଞ୍ଜୋଟି । ତାଳ-ମିଶ୍ରରୂପକ ତାଳ]

(ବିଂଶ ଶତାବ୍ଦୀ)

ସେ ଜଗବନ୍ଧୁ, ମୋ ବନ୍ଧୁ ନୋହିଲେ ଯେବେ ଗୋ,
ପ୍ରଭୁ ପଣେ ସାମରଥ ବୋଲି ସେ ତ କିପାଇଁ ଗଣିବି ଲବେ ଗୋ ।।୦।।

ହୋଇ କାହା ଅଜା କାହାର ଭଣଜା କାହାର ଶଶୁର କାହା ଜୁଆଁଇ
ତାରିଲେ ମାରିଲେ ସାରିଲେ ହାରିଲେ କରିଲେ ସେ ଅବା କିସ ମୋପାଇଁ;
ଖାଇ ଭଜା ଖୁଦ କାହାକୁ ସମ୍ପଦ ଢାଳି ଦେଲେ ସଖା ବୋଲିବା ଲୋଭେ ।।୧।।

କାହାକୁ ସମୁଦ୍ର କଲେ ବାଦସାଧ୍ୟ, ଖାଇ ମାନ୍ୟ ଦେଲେ କାହାକୁ ସମ୍ପାଦ,
କାହାକୁ ବାନ୍ଧବ କରି ଗୀତା ସ୍ତବ ସମଜାଇ କଥା ରଖିଲେ ଭବେ ।।୨।।

କାହା ପୂର୍ଣ୍ଣ ରୂପେ ବିହରିଲ ଗୋପେ, କାହିଁ ନଟବର ନାଗର ସ୍ୱରୂପେ
ତ୍ରିଲୋକ ମୋହିଲେ ମୋପାଇଁ ନୋହିଲେ କେଉଁ ଗୁଣେ ସମସରି କରିବେ ।।୩।।

**

**

# କଳା ଘୋଡ଼ା ଚଢ଼

## ବୈକୁଣ୍ଠ ନାଥ ବ୍ରହ୍ମଚାରୀ

( ବିଂଶ ଶତାବ୍ଦୀ )

କଳା ଘୋଡ଼ା ଚଢ଼ି ବାହାର କାଳିଆଦଅଁ
କଳି ମ୍ଳେଚ୍ଛଙ୍କୁ ଦଳି ଜନେ ଦିଅ ଅଭୟ ॥୦॥

ହାଥେ ଶ୍ୱେତ ଅଶ୍ୱ ବାନ୍ଧି ରେବନ୍ତ ପତି
ଭାରତ ଆଟେ ହନୁଅନ୍ତ ସେ ସେନାପତି
ଚକ୍ରଧର ଶ୍ରୀକରେ-ବିଗଳ ସୀମାନ୍ତରେ
ଦେଖି ଏ ଅଭିଯାନ-ହଟିବେ ଶତ୍ରୁ ସୈନ୍ୟ
ତୁଟିଯିବ ସେ ପାପୀଙ୍କର ସାମ୍ରାଜ୍ୟ ମୋହ ॥୧॥

ଅଟ୍ଟହାସ୍ୟେ ହସି ନାଶି ଦେଶ ଦ୍ରୋହୀଙ୍କୁ
ଚକ୍ର ଉହାଡରେ ରଖ ଭକ୍ତ ଜନଙ୍କୁ
ତ କଳ୍ପ ଧର୍ମବୀର ପ୍ରଭୁ ନୁହଁ ପଥର
ପାଷାଣ ଦେଉଳରୁ ଶୂନ୍ୟ ଗଡ ବାହାରୁ
ସଦ୍ୟ ସାମ୍ରାଜ୍ୟ ମୁଖେ ଘୋଷୁ ତୁମ୍ଭ ବିଜୟ ॥୨॥

ଯେଉଁ ଦିନୁ ଆମ୍ଭ ଦେଖୁ ହଜିବ ହିଂସା
ସେ ଦିନ ଜନ୍ମଭୂମିର ଫେରିବ ଦଶା
ଦୁଃଖ ରାତି ପାହିବ ସୁଖସୂର୍ଯ୍ୟ ଉଇଁବ
ଅସତ୍ୟ ଯିବ ଧ୍ୱଂସ ସତ୍ୟ ହେବ ପ୍ରକାଶ
ଭକ୍ତଜନେ ଗାଇବେ ଜଗନ୍ନାଥଙ୍କ ଜୟ ॥୩॥

**

**

## ଜଗା କାଳିଆ ଜାଗ

### ବୈକୁଣ୍ଠ ନାଥ ବ୍ରହ୍ମଚାରୀ

(ବିଂଶ ଶତାବ୍ଦୀ)

ଜଗାକାଳିଆ ଜାଗ ହେଳା ନ କର
ଭେଳା ବାହୁଛୁ ତୁମ ନାଁ ଆ ସୁମର ହେ ସମର ॥୧॥

ବାହୁରେ ଆମର ଢଥ ଅସୀମ ବଳ
ଦେହରେ ଅସୀମ ବଳ
ହସି ହସି ହସାଇବୁ ଅଗାଧ କୂଳ
ଯାଉ ସେ ଆରପାରେ କ'ଳ ବୋଲ ମୁହଁରେ
ଆମ ସ୍ୱାଧୀନ ଚେଷ୍ଟା ଦେଖି ରଖୁ ସେ ହନ୍ତା
ନୀଳାଚଳ ମହିମା କର ଜାହିର ହେ ଜାହିର ॥୨॥

କାଞ୍ଚି ବଜସ୍ତୁତ ଯାଇନାହିଁ ପାଶୋର
ଆଜି ସେଇକଥା ଭାବି ଭାରତବୀର
ସାଜିଣ ରଣ ସାଜେ ଶଙ୍ଖ ସଙ୍ଗତେ ଯୁଦ୍ଧେ
ପଠାଇ ସୁଦର୍ଶନ କର ଆଶୀଷ ଦାନ
ଯୁଗେ ଯୁଗେ ଏ ପୁଣ୍ୟଭୂମି ଆମର ହେ ॥୩॥

**

**

# ଚକାଡୋଳା ବସିଛ କାହିଁ ?

## ବୈକୁଣ୍ଠ ନାଥ ବ୍ରହ୍ମଚାରୀ

( ବିଂଶ ଶତାବ୍ଦୀ )

ଚକାଡୋଳା ବସିଛ କାହିଁ ହୋଇଣ ଅକା
ଦେଖି ମୋ ଦୁଃଖ ତୁମ୍ଭେ ବନ୍ଦ ଗଲକ ବୋକା ॥ ୦ ॥

ଜନମ କାଳରେ ମୋ କରମ ପତରେ
ଯେଉଁ ଗାର ମାରଅଛ ନିଜ ହାତରେ
ଜାଣେ ମୁଁ ମୋ ଜୀବନ      ସେ ଦିନୁ ହୀନମାନ
କହିଲେ ହେବ କିସ      ସେ ମୋ କରମ ଦୋଷ
ଆନ କର ଦେବକ ଆଉ ସେ ବେନ୍ଧ ଲେଖା ॥ ୧ ॥

ରଙ୍କ ଡାକ ବାଙ୍କେ ଯାଉ ନପଶୁ କାନେ
ଶଙ୍କାଟିଏ ତଥାପି ତ ଜଣାଣ ଭଣେ
ଦିନା ହେବାରୁ ମନେ      ଦେଖା ଖୁହେଁ ମୁଁ କ୍ଷଣେ
ରକ୍ଷା ନକଲେ ନାହିଁ      ସଙ୍ଗାର କରେ ମୁହିଁ
ଅନ୍ତମରେ ନୋହିବ ପ୍ରଭୁ ମୋ'ଠାରେ ଖପା ॥ ୨ ॥

ଦେଖା ଦିଅ ବା ନଦିଅ ସେ ତୁମ୍ଭ ଦୟା
ରଖାଅ ମନ ଶ୍ରୀପଦେ ତୁଟାଇ ମାୟା
ଚଖାଇ ନାମାମୃତ      ଲଗାଇ ରୂପେ ଚିତ୍ତ
ରଙ୍ଗା ବସ୍ତ୍ର କରି      ଦଙ୍ଗାରୁ ଦେବ ତାରି
ଏଇପାଇଁ ବଇକୁଣ୍ଠ ଭୋ' ଚରଣେ ବିକା ॥୩॥

**

**

# ମୋର ଜଣାଣ ଘେନ

## ବୈକୁଣ୍ଠ ନାଥ ବ୍ରହ୍ମଚାରୀ

(ବଂଶ ଶତାବ୍ଦୀ

ମହାପ୍ରଭୁ ହେ, ମୋର ଜଣାଣ ଘେନ
ମୋ ପରି କେହି ନଥିବେ ଏ ମହୀ
ସବୁଥିରେ ମୋର କରମ ହୀନ ॥ ୦ ॥

ଆହେ ମହାବାହୁ ଘୁର ଦୁଃଖ ସିନ୍ଧୁ
ଟାଳି ଦେଉଛ ମୋ ଧୈର୍ଯ୍ୟ ଟାଣ
ଛନ୍ଦରେ ପକାଇ ବାନ୍ଧି ନେଉଅଛ
କାନ୍ଦି ବୁଲେ ହୋଇ ମୁଁ ହୀନମାନ ॥ ୧ ॥

ସିହାତ କେଉଁଠି ନଦେଖେଇ ଆଉ
ସାହା ତୁମ୍ଭେ ଏକା ହେ ଭଗବାନ !
ତୋ ମହା ମହିମା ବିକାଶ ମଣିମା,
ମୋହ ପାଇଁ ଥରେ ମହତ ଗୁଣ ॥ ୨ ॥

ଚଉଦିଗ ଦିଶି ଯାଉଛି ଅନ୍ଧାର
ଚରଣ ରେଣୁ କରଛି ଧ୍ୟାନ
ଚକା ନୟନରେ ଚକାଅ ହେ ଥରେ
ମୁହୂର୍ତ୍ତକ ପାଇଁ ତେଜ ମଉନ ॥ ୩ ॥

କାଳ କବଳରୁ ଉଦ୍ଧାର ରଖ ହେ,
ହସ୍ତ ମୋ କଳଙ୍କ କଳା ବଦନ
କହେ ବଇକୁଣ୍ଠ ନମେଣ୍ଟିଲେ ଶିଷ୍ଟ
ଜାଣିବ ନିକଟ ହେଲା ମରଣ ॥ ୪ ॥

**

**

# ମହାବାହୁ

## ବୈକୁଣ୍ଠ ନାଥ ବ୍ରହ୍ମଚାରୀ

(ବିଂଶ ଶତାବ୍ଦୀ)

ମହାବାହୁ ! ଘେନା ହେଉ ଏ ଗଣକ ବାରତା,
ଦିନୁ ଦିନ ଦୁଃଖ-ଗ୍ରସ୍ତ ଦେଲେ ଦୁସ୍ଥ ଅବସ୍ଥା ।
ହେଲି ବାରୁ ମହାପ୍ରଭୁ ! ନୁହଁ ଆଉ ଅଚନ୍ତା,
ମହତ ମହିମା ଜାଗ୍ରି ପାଇଁ କର ବ୍ୟବସ୍ଥା ॥ ୧ ॥

ହୁଅ ସାହା ଚଉବାହା ! କରିଛୁ ଭରସା,
ଗହା ନାହିଁ ଆନ କାହିଁ ହୋଇଛୁ ତ ନିଆଶା ।
ନ ଗ୍ରହିବ ଯେବେ ତେବେ ଉଡ଼ିଯିବ ମୋ ହଂସା,
ନିନ୍ଦା ରଟିବ ସଂସାରେ ତୁମ୍ଭ ନାମେ ସହସା ॥ ୨ ॥

ଟେକ ଉଡ଼ାଅ ପତାକା ପତିତଙ୍କ ପାଇଁକ,
ଆଜ ସେ କୃପା କଟାକ୍ଷ ମୋହ ପ୍ରତି ନାହିଁକ ?
କି କାରଣେ ଅକାରଣ ହେଲ ଏବେ ମୁହିଁକ,
ସଦୟ ନହୁଅ ଦୟାମୟ ନାମ ବହିକ ॥ ୩ ॥

ଛଳନା ଛଳନାମୟ ଛନକା ମୁଁ ହେଲିଣି
ଛଦାପଦ ଫନ୍ଦା ଭବ ଗ୍ରନ୍ଥି ଟାଣ କଲିଣି ।
ଶୁଣ ବା ନଶୁଣ ପ୍ରଭୁ ମୋ ଅନ୍ତର କାହାଣୀ,
ପିଣ୍ଡ ପରାଣ ମୋ ସବୁ ସମରପି ଦେଲିଣି ॥ ୪ ॥

**

**

## ବସିଛ କାହାକୁ ଗୃହିଁ

### ବୈକୁଣ୍ଠ ନାଥ ବ୍ରହ୍ମଚାରୀ

( ବିଂଶ ଶତାବ୍ଦୀ )

ଅକା ହୋଇ ଏକା ବଇଠିରେ ହରି
ବସିଛ କାହାକୁ ଗୃହିଁ ?
ରକ୍ଷାକର ରକ୍ଷାକର ବୋଲି ଦାଣ୍ଡେ
ଦୁଃଖିଆ ଦୁଃଖେ ଡାକଇ, ହେନାଥ
ସୁଦର୍ଶନ ଅସ୍ତ୍ରଆଉଁ ହସ୍ତ, ହେ ନାଥ
ଯେବେ ନଖଣ୍ଡିବ ମୋ ଆରତ, ହେନାଥ
କେହ୍ନେ ହେବ ଜଗତର ତାତ ? ହେ ନାଥ ॥୧॥

ଏ ଢନଲୋକରେ ଦେଖାଇ ଉଚ୍ଚରେ
ପତକା ଦେଇଛ ବାନ୍ଧି,
ସିଂହ ଦ୍ୱାରେ ଡାକ ନବଣ ପାତକୀ
ଫେରେ ଯେବେ କାନ୍ଦିକାନ୍ଦି, ହେ ହରି !
ନୀଳଚକ୍ର ନେତ ଧଅ ଚରି, ହେ ହରି,
କାହାପାଇଁ ଏମହିମା ଜାରି, ହେ ହରି,
ଆଉ ରହିବ କି ପ୍ରଭୁଗିରି ? ହେ ହରି ॥୨॥

ଭକତ ନମନ୍ତେ ଅବତରି ମର୍ତ୍ତ୍ୟେ
ଲଗାଇଛ ନାନାଲୀଳା ।
ଅନୁଗତ ଜନ ଅନୁସରି ପୁଣି
ପାଏ ଯଦି ଅବହେଳା, ହେ ସ୍ୱାମୀ
ନାମ ଭଣାଅ ଅନ୍ତରଯାମୀ, ହେ ସ୍ୱାମୀ,
ନହୋଇବ କି ଏହା ବୋକାମୀ ହେ ସ୍ୱାମୀ,
ଠିକେ ବୁଝ ନକରି ଠକାମୀ ହେ ସ୍ୱାମୀ ॥୩॥

ତୁମ୍ଭେ ଠକପଣେ ବଡ଼ ଧୂର୍ତ୍ତଜଣେ
ଜାଣିଅଛୁ ଆଗୁ ପର
ଗୋପେ କେଉଁ ସେବା ନ ପାଇଲ ଅବା
ଠକଣ ଗଲ ମଥୁରା, ହେ ଖଣ୍ଡ !
ଅଷ୍ଟ ଲମ୍ପଟ ପଣରେ ଶ୍ରେଷ୍ଠ, ହେ ଖଣ୍ଡ,
ମୋତେ ଦେଲେ ଦୁଃଖ ଯେତେକଷ୍ଟ, ହେ ଖଣ୍ଡ
ଇଷ୍ଟବୋଲି ଭାବଛୁ ବୈକୁଣ୍ଠ ! ହେ ଖଣ୍ଡ ॥୪॥

**

**

## କାହିଁକି ବଡ଼ ଠାକୁର

### ବୈକୁଣ୍ଠ ନାଥ ବ୍ରହ୍ମଚାରୀ

(ବିଂଶ ଶତାବ୍ଦୀ)

କାହିଁକି ବଡଠାକୁର, ମୋପାଇଁ ହେଲ ପଥର
ବ୍ୟାକୁଳରେ ଡାକ ଡାକ ଥକଗଲିଣି ଏଥର ॥୦॥

ବଳବନ୍ତ ପ୍ରଭୁବୋଲି ବେଳହୁଁ ଶରଣ ଗଲି ।
ବସିଛ ରହିଛ ଖାଲି ନଦିଅ ପଦେ ଉତ୍ତର ॥୧॥

ବଡ଼ ସାମନ୍ତ ବାପୁର ବସିଛୁ ଭରସା କରି ।
ବପଦେ ହୋଇଣ ଘାରି ନପାରୁ ସହିବ ମାର ॥୨॥

ବଳସ୍କାର ବାହୁଥାଉଁ ବଳାଇଲ ଦୁଃଖ-ସିନ୍ଧୁ ।
ବେଳଯାଏ ଗୃହୁଁ ଗୃହୁଁ ବେଗେ ତାରି ଅବା ମାର ॥୩॥

ବଇକୁଣ୍ଠ ମୂଢ଼ମନ୍ଦ ବନ୍ଦେତୋ ପଦାରବିନ୍ଦ
କଣ୍ଠେକେ ନାହିଁ ଗୋବିନ୍ଦ, ତୁମ୍ଭବିନୁ ଆନମୋର ॥୪॥

**

**

# ମଣିମା ମଣିମା ଗୁହାରି ଶୁଣିମା

## ବୈକୁଣ୍ଠ ନାଥ ବ୍ରହ୍ମଚାରୀ

( ବିଂଶ ଶତାବ୍ଦୀ )

[କୃଷ୍ଣର ଗମନ ଦେଖି ଛନଛନ-ବୃତ୍ତେ]

ମଣିମା ମଣିମା ଗୁହାରି ଶୁଣିମା
ଯେତେ ହୁରି କଲି ବାଳଲେ ।
ବୁଝି ନବୁଝିଲ, ହେଜ ନ ହେଜିଲ
ସବୁ ଶ୍ରମ ହେଲା ବିଫଳ ।
ମଣିମା ଏହା ଥିଲା କି ମୋ କପାଳେ
ଶୁଣି ନଶୁଣିଲ, କାଳପରି ହେଲ
ଘାରିଲ ଖାଲି କଳବଳେ ॥୧॥

ମେଲି ଚକାଆଖି ସବୁ ବ୍ୟଥା ଦେଖି
ନଦେଖିଲ ପରି ବସିଲ ।
ଅନ୍ତର୍ଯାମୀ ନାମ ଭଣାଇ ଆପଣ
ଅନ୍ତର ଜାଣି ନ ଜାଣିଲ ।
ମଣିମା, ଦୁଃଖ ଗାରିମା ନ ଟାଣିଲ ।
ଦୀନଜନ ବନ୍ଧୁ ହୋଇ କୃପାସିନ୍ଧୁ
ଦାଣ୍ଡେ ଦୀନକୁ ଗଡ଼ାଇଲ ॥୨॥

ବନ୍ଧୁ ବାନ୍ଧବ ଲଗିଲେ କି ଖସି
ଚନ୍ଦ୍ର କି କରୁ ଓହ୍ଲାଇଛ ।
ଚରଣ ବ୍ୟଥିତ ହେଲା କିବା ନାଥ
ହତାଶ ହୋଇଣ ବସିଛ ।
ମଣିମା କଥା ମୋ ମରମ କଷୁଛ ।
ନ ମଣି ସରମ ମୋପରି ଅଧମ
ସଙ୍ଗେ ଏ ସ୍ତୁତି ରଚୁଛ ॥୩॥

ଖିଚିଛ କି ତୁମେ ତବ ବନେ ଆନେ
କାଳେ କା ଆଶ୍ରୟ ଲୋଡ଼ିବ ।
ଧରି ତୁମ୍ଭନାମ ଯାଉ ଏ ଜୀବନ
ତୁମ୍ଭ ପ୍ରେମକୁ ନ ଛାଡ଼ିବ ।
ମହିମା, ଦୁଃଖ ପଙ୍କେ ପଦ୍ମେ ଫୁଟିବ ।
କହେ ବଇକୁଣ୍ଠ ହେଉ ଯେତେ କଷ୍ଟ
ତୁମ୍ଭ ପାଶେ ରହି ଗୁଣିବ ॥୪॥

**

**

## କାନ୍ଦି କହେ ଗରବ

### ବୈକୁଣ୍ଠ ନାଥ ବ୍ରହ୍ମଚାରୀ

(ବିଂଶ ଶତାବ୍ଦୀ)

ହରହେ, କାତରେ କାନ୍ଦ କହେ ଗରବ
ଗରୁଡ଼ ପଛେ ପୂର୍ଣ୍ଣି ପର୍ବରେ ଯୋଡ଼ି ପାଣି
କହନ ତାରିବ କି ମାରିବ ॥୧॥

ବନ୍ଧୁ ଦାରୁଣ ପଣ, ହୁଅ ଯେତେ କଷଣ
କେତେ ଦିନ ଧୈର୍ଯ୍ୟ ଧରିବ,
ତୁମ୍ଭଙ୍କୁ ଆଶ୍ରାକରି ଗରିବ ଗଲାପରି
କେଉଁ କାଳେ ତା ଦୁଃଖ ସରିବ ॥୨॥

ଯେବେ କରମ ବାମ ଆହେ ପୁରୁଷୋତ୍ତମ
ତୋ ନାମେ ଦୋଷ କି ନ ହରିତ,
ତୋର ନାମ ମନ୍ତ୍ର ଟଳେ ଯେ ନିରନ୍ତର
ତାହାକୁ କି ଅନ୍ତର କରିବ ? ॥୩॥

ଦୁଃଖୀଜନ ସୋଦର ଆଉଁ ଏ ଜଗତର
ସ୍ବର ଦୁଃଖ ସହୁ କି ଘାରବ,
ଦେଖନ୍ତେ ବସିରହ୍ନ ଦେଲେ ଚକ୍ଷ ପଠାଇ
ହଟାଇ ଭୁରନ୍ତ ଯେ ଫେରବ ॥୩॥

ଭର ଏତେ ଜଣାଣ, ନ ଦେଲେଟି ଶରଣ
ସଦା ନୟନୁ ବାରି ଝରିବ,
ଦ୍ବିର ଧନକୁ ଧନ ତନୁ ହୋଇବ କ୍ଷୀଣ
ତୋ ନାମେ ବଇକୁଣ୍ଠ ମରିବ ॥୪॥
**

**

## ମହିମା ଦୁଃଖ ଶୁଣିବକି

### ବୈକୁଣ୍ଠ ନାଥ ବ୍ରହ୍ମଚାରୀ

[ ଦଇବ ସାରଦେବ-ବୃନ୍ଦେ ]

(ବିଂଶ ଶତାବ୍ଦୀ)

ମହିମା, ଦୁଃଖ ଶୁଣିବକି ନା, ହେ ମହିମା
ଦୁଃଖୀ କାନ୍ଦେ ଦାଣ୍ଡଦୁଆରେ ଅନା, ହେ ମହିମା ॥୦॥

ପତିତ ତାରଣ ବାନା ଉଡ଼ାଇ
ପତିତ ଜନେ ମାରୁଛ ଗଡ଼ାଇ ॥୧॥

ଦୀନଜନବନ୍ଧୁ ନାମ ତୁମର
ଦୟା ପଦ କି ଦେଲଣି ପାଶୋର ॥୨॥

ହୃଦୟକୁ ପଥର କରିବ ଯେବେ
  କିଏ ଡାକ ମୋର ଶୁଣିବ ଭବେ ॥୩॥

ରଖ ବା ନରଖ କରେ ଜଣାଣ
  ବଇକୁଣ୍ଠ ତବ ପାଦେ ଶରଣ ॥୪॥

**

**

## ପଥର ହେଲ କାହିଁକି

### ବୈକୁଣ୍ଠ ନାଥ ବ୍ରହ୍ମଚାରୀ

( ବିଂଶ ଶତାବ୍ଦୀ )

ହେ ପ୍ରଭୁ, ପଥର ହେଲ କାହିଁକି ?
ପଥରେ ଭକତଙ୍କ ଡାକେ କାନରେ ପଡ଼ୁ ନାହିଁକି ? ॥୦॥

ପତିତପାବନ ବୋଲି ପତାକା ପୂର୍ବରୁ ଖୋଲି,
ପରେକି ତା ଗଲ ଭୁଲି ଛପନଭୋଗ ଖାଇକି ॥୧॥

ପରାପର ତୁମ୍ଭ ନାହିଁ ପର ତୁମ୍ଭେ ଅଛ କହି,
ପଣପଣ କରେ ଜଣେ ମୋ ନାମ ଗଣି ନାହିଁକି ? ॥୨॥

ପାଷାଣ ଦେଉଳ ଦ୍ୱାର ପଶେନା କି ପାପୀ ସ୍ୱର,
ପସନ୍ଦ ନ କର କିବା ପରଖ ଦୁଃଖ ଦେଇକି ? ॥୩॥

ପରଶ ପଥର ତୁମ୍ଭେ, ପାତକୀ ମୁଁ ଲୁହା ଯେବେ,
ପ୍ରେମ ପରଶରେ ଏବେ ଦିଅ କଳଙ୍କି ଧୋଇକି ॥୪॥

**

**

# ଜଗନ୍ନାଥ ନାଥ ମୋହର

## ବୈକୁଣ୍ଠ ନାଥ ବ୍ରହ୍ମଚାରୀ

(ବିଂଶ ଶତାବ୍ଦୀ)

ଜଗନ୍ନାଥ ମୋହର
ଜଗତରେ ଜଣେ ମୁହିଁ ତୋହର ॥ ୦ ॥

ତୁମ୍ଭେ ଜଗନ୍ନାଥ କରଲେ ଅନାଥ
ଜଣାଇବ କାହା ଆଗେ ଗୁହାରି,
ସରଯିବ ସୁଖ ଆହେ ପଦ୍ମମୁଖ
ସାର ହେବ ସିନା ନୟନ ବାରି ॥ ୧ ॥

ମୋର ପଞ୍ଚ ପ୍ରାଣ, ଅଟ ତ ଆପଣ
ତୁମ୍ଭ ପାଇଁ ଅଛୁ ଦେହ ଧରି,
ତୁମ୍ଭେ କଲେ ପର ହେବ ଘଟାନ୍ତର
ଜୀବନ ଶରୀରୁ ଜୀବ ବାହାରି ॥ ୨ ॥

ତୁମର ଆଶାରେ, ଏ ମାୟା ସଂସାରେ
ବାର ବାର ଭ୍ରମି ଗଲିଣି ସରି,
ହାଅ ଦରଶନ ପଥଇ ପାବନ
ଆକୁଳେ ଚାହିଁଛୁ ମୁଁ ତକା ପାରି ॥ ୩ ॥

ଯେବେ ମୁହିଁ ଦୋଷୀ ଆହେ ବ୍ରହ୍ମରାଶି,
ଯେତେ ଦଣ୍ଡ ଦେବ ହାଅ ବିସ୍ତରି,
କହେ ବଇକୁଣ୍ଠ ତୁମ୍ଭେ ତ ମୋ ଇଷ୍ଟ
ହୃଷ୍ଟ ଚିତ୍ତେ ରଖ ସେବକ କରି ॥ ୪ ॥

**

**

# ପଥର ଦେଉଳ ଭିତର ଦେବତା

## ବୈକୁଣ୍ଠ ନାଥ ବ୍ରହ୍ମଚାରୀ

(ବିଂଶ ଶତାବ୍ଦୀ)

ପଥର ଦେଉଳ ଭିତର ଦେବତା
ପଥର ହେଲକି ମୋ ପାଇଁ,
ସତରେ କହୁଛି କାତରରେ ଯେବେ
ଉତ୍ତର ନଦେବ ଗୋସାଇଁ
ନାଥ ହେ ଅନାଥ ଯେବେ ମୁଁ ହୋଇବ
ଜନ ସମାଜରେ ଜଗନ୍ନାଥ ନାମ
କେଉଁ ଲଜେ ମୁଖେ ଗାଇବ ॥ ୧ ॥

ପାଷାଣ ପର୍ଯ୍ୟନ୍ତେ କଠିନ ହୃଦୟ
କରି ଯେବେ ତୁମ୍ଭେ ବସିବ,
କଷଣ ଦେଇ ଏ କରକଣ ଦୁଃଖ
ଶତ୍ରୁ ଆସି ମୋତେ ଗ୍ରାସିବ
ନାଥ ହେ ଏହା କି ସୁନ୍ଦର ଦିଶିବ,
ଭକତ ରକ୍ଷଣ ବଦଳରେ ଭକ୍ତ
ମରି ସାରି ସୃଷ୍ଟି ଘୋଷିବ ॥ ୨ ॥

ଅଶରଣ ଜନେ ଶରଣ ଦେବାକୁ
ଉଡ଼ାଇଛ ଧାର୍ଯ୍ୟ ପତାକା,
ବଳାଇ ଯିବ କି ମୋର ଏ ଦୁର୍ଦ୍ଦଶା
ସେ ପାଇଁ ହେଉଛି ଚାଟକା
ନାଥ ହେ, ତନକୁ କଅଣ୍ଟ ତା ବଳ,
ଆପଣ ମୋ ପାଇଁ ନ ଆସନ୍ତୁ ଧାଇଁ
ବସିଥାନ୍ତୁ ହୋଇ ଅଚଳ ॥ ୩ ॥

ଫଟା କପାଳକୁ ଯେବେ ମୋ ବେଳକୁ
ଚକ ଡକ ହେଲ ବୁହଡ,
କେତେ କାଳେ ବଳେ ସଳଖ ହୋଇବ
ତେଢାଇ ଅଭସ୍ଥ ଢଅତ
ନାଥ ହେ, ସେ ବେଳକୁ ସ୍ମୃହିଁ ବସିବ,
କହେ ବଇକୁଣ୍ଠ ଚକ ସହ ଇଷ୍ଟ
ଚକଧର ଉଚେ ରହିବ ॥ ୪ ॥

**

## କମଳା କାନ୍ତକୁ କହେ ଅତି କାତରେ

### ବୈକୁଣ୍ଠ ନାଥ ବ୍ରହ୍ମଚାରୀ

( ବିଂଶ ଶତାବ୍ଦୀ )

କର୍ମହୀନ ଜନ କୋନ୍ଦୁ କରୁଣ ସ୍ୱରେ
କମଳାକାନ୍ତକୁ କହେ ଅତି କାତରେ ।

ସର ଯାଉଛୁ ସଂସାର ସୁଖ ଆଗେ ପଙ୍କ,
ଗତି ନକଲେ ଗରବ ମରିବ ବୁଡ଼ି ।

ଟାପରା ନମଣି ଟିକେ ଟେକ ଅନାଥ,
ଥିଲାଙ୍କରେ ଭୁଟି ଯିବ ସନ୍ତାପ ମୋହ ।

କରୁଣା ବୃକ୍ଷ ବୋଲି ଶ୍ରୁତିରେ ଶୁଣିଥିଲି
ମହାପ୍ରଭୁ ହେ···ମହାପ୍ରଭୁ ହେ
ଫଳାଅ କରୁଣା ଫଳ ମୋ ପାଇଁ ଥରେ
ସେ ରସ ଆସ୍ୱାଦେ କ୍ଲାନ୍ତ ହଟିବ ଦୂରେ ॥୧॥

ଯେତେ ପାତକୀ ଅଛନ୍ତି ଏ ଧରାଧାମେ,
କୋଟି କୋଟିକରେ ଶ୍ରେଷ୍ଠ ଅଟେ ମୁଁ ଜଣେ
ନିସ୍ତାରିବ କି ନା ସତ କୁହନ୍ତ ମୋତେ
ପତିତପାବନ ନାମ ଥିବ ପରତେ ।

ଯେବେ ଅଛି ସେ ପଣ ନୋହୁ କୃପଣ ପଣ
ମହାପ୍ରଭୁ ହେ···ମହାପ୍ରଭୁ ହେ
ଢାଳ ଦିଅ ଢାଳେ କୃପା ସଲିଳ ଶିରେ
ସେବକେ ସାବ୍ୟସ୍ତ କରି ପଦ-ତୀର୍ଥରେ । ।।୨।।

ହେଲାଣି ହୋଇଲେ ହେବ କାହିଁକି ଭଲ,
ଦଣ୍ଡକେ ଦାଣ୍ଡେ ବାଜିବ ଦୁର୍ନାମ ଢୋଲ ।

କାମନା କଳପତରୁ କାହିଁକି ଆଉ
କହିଛୁ କପଟେ, କେତେ ସାଧିବ ଦାଉ ?

ପୁଣ୍ୟ ବା ନର୍କକୁଣ୍ଡେ ପକାଇ ଦିଅ ଖଣ୍ଡେ
ମହାପ୍ରଭୁହେ···ମହାପ୍ରଭୁହେ
ସାରସ୍ୱତ ଶୀଘ୍ର ସାର ତୋ ସ୍ୱଜାତିରେ
ସରିଯାଉ ବଇକୁଣ୍ଠ ମନବାଞ୍ଛାରେ ।।୩।।
**

**

# ପାଶୋର ଦେଲକ ହର

## ବୈକୁଣ୍ଠ ନାଥ ବ୍ରହ୍ମଚାରୀ

(ମଣିମା ଶୁଣିବା ହେଉ ଗରବ ଡାକ-ବୃନ୍ଦେ)

( ବଂଶ ଶତାବ୍ଦୀ )

ପାଶୋର ଦେଲକ ହର, ଗରବ କଥା
ଦବାନଣି ଗାଏ ବସି ତୁମର ଗାଥା, ହେ ହର
ତୁମର ଗାଥା ॥୦॥

ଛାଡ଼ି ସକଳ ଭରସା      ତୁମ୍ଭନାମେ କଲି ଆଶ୍ରା
ନରଖିଲେ ଆନକେହ୍ନ ନାହିଁ ରଖନ୍ତା ॥୧॥

ନୁହେଁ ବୋଲି ଭକତ      ଯେବେ କରବ ଅନାଥ
ଜଗତନାଥ ବୋଲି କେ କରବ ଚିନ୍ତା ତୁମ୍ଭକୁ ॥୨॥

ଆହେ ପତିତପାବନ,      ସବେ ତୁମ୍ଭର ସମାନ
ମୋ ପାଇଁ କି ତୁହ୍ମ ଭିନ୍ନ ଅଛି ବ୍ୟବସ୍ଥା ॥୩॥

ହେଲେ ମୁଁ ପାପୀ ପାମର      ତୁମ୍ଭେ ମୋ କ୍ଷମା ସାଗର
କ୍ଷଣେ ସ୍ନେହିଦେଲେ ଦୁଷ୍ଟ ସୁଷ୍ଟେ ରହନ୍ତା ॥୪॥

ଶୁଣ ନଶୁଣ ଆପଣ      ଜଣାଇବା ମୋ ପ୍ରମାଣ
କେ ଜାଣିବ ବଇକୁଣ୍ଠ ଅନ୍ତର ବ୍ୟଥା ॥୫॥
ହେହର, ଆନ୍ତର ବ୍ୟଥା

**

**

# ତୁମେ କେଡ଼େ ସୁନ୍ଦର

ଶ୍ରୀମତୀ ହରପ୍ରିୟା ଦେବୀ

(ବିଂଶ ଶତାବ୍ଦୀ)

ଜଗନ୍ନାଥ ହେ ତୁମେ କେଡ଼େ ସୁନ୍ଦର
କଳାଧଳା ମୁଖ ଭଗିନୀ ଶୁଭଦ୍ରା
ନୀଳାଚଳେ ଲଗାଇଛ ହୁନ୍ଦର ।।୧।।

ପଣ୍ଡା ପଢ଼ିଆରୀ ଛତିଶା ନିଯୋଗୀ
ଛପନ ପଉଟି ଭୋଗ ହୁଏ ଲାଗି
ରାଜା ଠାରୁ ବଳୀ ମହାରାଜା ତୁମେ
ଖଟୁଛୁ ଯେ ପଦେ ଧନକୁବେର ।।୨।।

ଦାରୁ ବ୍ରହ୍ମ ରୂପେ ଅଟଳ ଅଚଳ
ଆଦ୍ୟ ଅନ୍ତ ନାହିଁ ଅଭିନବ ଖେଳ
କେ ବୁଝିବ ନାଥ ମରମ ତୁମର
ବଡ଼ଙ୍କ ନରମା ନାମ ତୁମର ।।୩।।

ନୟନାଭିରାମ ନବ କଳେବର
ନବ ଯଉବନ ବେଶ ମନୋହର
ପାଟ ଡୋରୀ ବନ୍ଧା ପହଣ୍ଡି ବେଳେକୁ
ଦେଖିବାକୁ ରୁଣ୍ଡ ସାରା ସଂସାର ।।୪।।

**

**

# ଅନାଥର ନାଥ

ଶ୍ରୀମତୀ ହରପ୍ରିୟା ଦେବୀ

(ବିଂଶ ଶତାବ୍ଦୀ)

ଶରଣା ଗତଙ୍କୁ ହରି ନ କଲେ ପାର
ସରିତ ଗଲାଣି ସବୁ ନୟନ ବାରି ॥୦॥
କପର ହେ ଦେବରାଜ
ଉଡ଼ିବ କଉଣି ଧ୍ୱଜ
ଆଶ୍ରିତ ଜନରେ ନାଥ କଲେ ଏପରି ॥୧॥

ଛନ୍ଦା ଚରଣରୁ ତଳେ
ବଂଧା ସେତୁ କାଲେ କାଲେ
ସେ ପୁଣି ହୋଇଲା ସନ୍ଦ ପଥ ଭକାସ ॥୨॥

ଚକା ଡୋଳା ମହାବାହୁ
ବୁଡ଼ିଯାଏ ଗୁହୁଁ ଗୁହୁଁ
ଅନାଥର ନାଥ ନଶୁଣିଲ ଗୁହାରି ॥୩॥

**

**

# ଶୁଣ ମୋର ଆରତୀ

## ଶ୍ରୀମତୀ ହରପ୍ରିୟା ଦେବୀ

(ବିଂଶ ଶତାବ୍ଦୀ)

ଶୁଣ ମୋର ଆରତି ଭାରତୀ ପତି ହେ
ଛୀର ସିନ୍ଧୁ ବିହାରୀ
ଅନାଥ ଜନ ବନ୍ଧୁ ଅଗତି ଗତି ହେ
ନାରାୟଣ ଶ୍ରୀ ହରି ॥୦॥

ପତିତପାବନକୁ ଉଡ଼ାଅ ବାନା
ପୀଡ଼ିତ ମନ ବୁଝି ହର ବେଦନା
ଦୟା ସାଗର ନାଥ ଫେଡ଼ ଦୁରିତ ହେ
ପ୍ରଭୁ କରୁଣାକର ॥୧॥
ନୀଳଗିରି କନ୍ଦର ବାସୀ ଦେବ ହେ
ଚରଣେ ଦିଅ ଦୀନ ଦୁଃଖୀରେ ଠାବ
ଚକା ନୟନ ଚକା ଡୋଳା
ହେ କରୁଣା ଭବ ଭେଳା ବାନ୍ଧାରୀ ॥୨॥

**

❋❋

# ଚକାନୟନକୁ ଭଜ

**ବାଞ୍ଛାନିଧି ଦାସ**

( ୧୮ଂଶ ଶତାବ୍ଦୀ )

ଚକା ନୟନକୁ ଭଜରେ ମନୁଆଁ
ଚକା ନୟନକୁ ଭଜ
ଦକା ଦାଉ ଧକ୍କା ସବୁ ଉଭାଇବ
ସାକ୍ଷୀ ତୁ ଦ୍ୱିଜରାଜ ॥ ଘୋଷା ॥

କଳା ଶ୍ରୀ ମୁଖକୁ ଚକାଇ ରହୁଥା
ମନ କାଳିମାକୁ ତେଜ
କମଳା ସାଇଁ ସେ ନାହିଁକି ଏଠି
ନିଜ ଦେଉଳରେ ଖୋଜ
ପଞ୍ଚ ପ୍ରଦୀପ ତୁ ପ୍ରାଣେ ଜାଳୁଥିଲେ
ନାଚତ ପଦ୍ମଲ ରଜ
ଚକା ନୟନକୁ ଭଜ ॥ ୧ ॥

ସେ ସୁଖ ସରଗ ଦେଖାଣିଆଁ ନୁହେଁ
ଭାବ ଭକତର ବୀଜ
ଟଙ୍କା କଉଡ଼ିରେ କିଣିବାର ନୁହେଁ
ତା' ପ୍ରୀତି ଶରଧା ଚଜ
କିଣିକାଏ ତହୁଁ କୈବଲ୍ୟ ଅସରା
ଯେତେ ଇଚ୍ଛା ମନ ଭୁଞ୍ଜ ॥ ୨ ॥

ମଜ୍ଜିଲେ ମିଳେ ସେ ମଂଜୁଳ ମୋହନ
ତା' ଭାବେ ତୁ ମନ ମଜ୍ଜ
ଦେଖୁ ସେ ଜଗତ ବାଞ୍ଛା କଳ୍ପବଟ
ଜଗତ ନାଥ ତା' ମାଞ୍ଜି
ଚିତା ଚଇତନ ଲୋଡ଼ା ନାହିଁ ଧନ
ହୃଦ ପଦ୍ମେ ତାଙ୍କୁ ସାଜ ॥ ୩ ॥

**

**

## ଭକ୍ତଭରେ ତୋଳ ଦଅ ଚଉକୁ

### ବାଞ୍ଛାନିଧି ଦାସ

(ବିଂଶ ଶତାବ୍ଦୀ)

ଜଗନ୍ନାଥଙ୍କୁ
ଭକ୍ତଭରେ ତୋଳଦଅ ଚଉକୁ
ଭକ୍ତ ଭାବଗ୍ରାହୀ ଚିନ୍ତାମଣି ସେତ
ବିରାଜେ ଜଗତ ହିତକୁ ॥ଘୋଷା ॥

ଫର ଫର ଉଡ଼େ ନୀଳଚକ୍ରେ ଅନା
ପତିତପାବନ ନେତକୁ
ଅନାଥର ନାଥ ଅନ୍ତର୍ଯ୍ୟାମୀ ନାଥେ
ଦଅ ତୋର ମନୋରଥକୁ ॥ ୧ ॥

ଚକାନୟନ ସେ ସବୁଠି ତା ଆଖି
ନ ତେଜେ ଶରଣାଗତକୁ
ଯେ ଦେଖେ ଯେ ଭାବେ ସେ ଭାବେ ସେ ଉଭା
ଆଦର ସବୁର ମତକୁ ॥ ୨ ॥

ଧଳାକଳା ବେଣ୍ଟ ଭାଇ ମଝେ ଅନା
ସୁଭଦ୍ରା ଭଗିନୀ ସାଥିକୁ
ଭାତୃ ଭାବେ ବାନ୍ଧେ ନିଖିଳ ଭୁବନ
ଦରଶାଇ ଦିବ୍ୟ ପଥକୁ ॥ ୩ ॥

ନାହିଁ ଜାତି ବର୍ଣ୍ଣ ଧର୍ମର ବିଗ୍ଭର
ତା' ମହା ପ୍ରସାଦ ଭାତକୁ
ମର୍ତ୍ତ୍ୟ ବଇକୁଣ୍ଠ ତା' ଶ୍ରୀ କ୍ଷେତ୍ର ଧାମ
ଟାଣି ଆଣେ ସାଧୁ ସନ୍ଥକୁ ॥୪॥

ଶବର ରାଜାର ହୃଦୟ ନିଧି ସେ
ଦାରୁ ବ୍ରହ୍ମ ଭବ ହିତକୁ
ରାଜା ଇନ୍ଦ୍ର ଦ୍ୟୁମ୍ନ ଭାବେ ଶ୍ରୀ ମନ୍ଦିରେ
ରଥେ ସେ ଗୁଣ୍ଡିଚ୍ଚା ଯାତକୁ ॥୫॥
**

**

## ବଡ଼ ଦେଉଳରୁ ପହଣ୍ଡି ବିଜେ

### ବାଞ୍ଛାନିଧି ଦାସ

(ପଲ୍ଲୀସ୍ୱର)

(ବିଂଶ ଶତାବ୍ଦୀ)

ବଡ ଦେଉଳରୁ ପହଣ୍ଡି ବିଜେ ଲୋ
କୃପାମୟ ଚକା ଆଖି
ଭକତ ଜଳରେ ଜଡ ସଡ କୋଟି
ନୟନ ରହିଛି ଲଖିଲଲେ
ସିନ୍ଧୁ ଚହଲ ସର
ଯାଏ ଜନ କୋଲାହଲ ଭରଲେ ॥୧॥

ମହୋଦଧି କବା ମାଡ଼ି ଆସୁଛି ଲୋ
ବଡ଼ ଦାଣ୍ଡ ଉଠେ ଭରି
ଡାଳି ମାରଦେଲେ ଆଳି ସ୍ଖଳି ଯିବ
ମୁଣ୍ଡ ମାଳ ଢେଉ ସରଳେ
ବାଜେ ଶଙ୍ଖ କାହାଳୀ
ନାନା ବାଇଦ ପଡ଼େ ଉଛୁଳି ଲୋ ॥୨॥

ଗଜପତି ଛେରା ପହଁରା କରନ୍ତି
ରଥେ ବିଜେ ଚକାଡୋଳା
ଶବରୀ ହାତର ଚଖା ଫଳଖିଆ
ଭକତ-ସଙ୍ଗେ ଭୋଳା ଲୋ
ଯା'ର ସମ ବେଭାର
ରଜା ପରଜା ସଭିଙ୍କ ଠାରେ ଲୋ ॥୩॥

କାଞ୍ଚି-ଅଭିଯାନେ ଉତ୍କଳ ଭୂଇଁରେ
ଗଉରବ ରକ୍ଷୀ ସେନା
ପୁରୁଷ ଉତ୍ତମ ଭକତିରେ ବାଁଧା
କଳାଧଳା ଘୋଡ଼ା ଘେନା ହେ
ତୋଳି ଜୟ ପତାକା
କଲ ଏ ମାଟି ମହତ ରକ୍ଷା ଲୋ ॥୪॥

ବଣର ଶବର ଦୁହିତା ପ୍ରେମରେ
ବ୍ରାହ୍ମଣ ତନୟ ବାଁଧା
ତୋଷ ଲଭେ ଯେହ୍ନୁ ପାଇ ତାଙ୍କ ହାତୁ
ମହା ପରସାଦ ରନ୍ଧା ଲୋ
ଦ୍ୱିଜ ଚଣ୍ଡାଳ ଜ୍ଞାନ
ନାହିଁ ଶ୍ରୀ କ୍ଷେତ୍ରେ ସବୁ ସମାନ ଲୋ ॥୫॥

ସରଳ ହୃଦୟୁ ଦାସିଆ ବାଉର
ହାତରୁ ଶ୍ରୀ ଫଳ ତୋଳି
ଯେନଗଲେ ଯେହ୍ନ ଜାଳ କାଳ ଲାଗି
ଲୋକ ମୁଖେ ରଖି ବୋଲଲେ
ଦୀନ ପତିତ ବଂଧୁ
ଭେଦ ତିମିର ନାଶନ ଇନ୍ଦୁ ଲୋ ॥୬॥

ବ୍ରାହ୍ମଣ ଚଣ୍ଡାଳ ଭେଦ ବିନାଶନ
ସାମ୍ୟ ମୈତ୍ରୀ ଛତ୍ରଧରି
ଯୁଗେ ଯୁଗେ ଯା'ର ଶ୍ରୀ କ୍ଷେତ୍ର ମଣ୍ଡଳୁ
ଧରି ମାଣିକ୍ୟ ପସରା ଲୋ
ଦ୍ୱିଜ ପ୍ରସାଦ ହାତ
ଖାଏ ଚଣ୍ଡାଳ ହାତରୁ ଭାତ ଲୋ ॥୭॥

ବଡଦାଣ୍ଡେ ବଈରଥେ ବିଜେ ନଜେ
ବଡେ ସାନେ ସମଦୃଷ୍ଟି
ଯୁଗଳ ନୟନ କମଳରୁ ହେଉ
ଶୁଭ ମଧୁଧାରା ବୃଷ୍ଟିଲୋ
ସାର ଭକ୍ତ ପୀରତି
ଜାଗୁ ମାନବେ ମାନବ ପ୍ରୀତି ଲୋ ॥୮॥
**

**

# ଚକାଆଖି

## ବାଞ୍ଛାନିଧି ଦାସ

(ବିଂଶ ଶତାବ୍ଦୀ)

ଚକା ଆଖି
ଏକା ହୋଇ ରହିଲ କାହିଁକି ?
ଡକା ପଡ଼ିଅଛି ସାରା ଦୁନିଆ ଗୋଟାକ ପରି
କାନେ ସୁହାଣ ବାଜେ ନାହିଁକି ।।ଘୋଷା।।

ଟେକା ଟେକି ଗୀତ ଶୁଣି ଯାଅନା ଭାସି
ଦକାତର ଦୁନିଆ ସବ ଗଲାଣି ଆସି
ଶଙ୍କା ଆସୁଛି ଲାଗି
ରକ୍ଷା ନ ହଣେ କାହିଁ
ଠକା ଠକି ବେପାର
ଠାକୁରେ ନ ଆଚର
ଠିକ ବେଲ ଏବେ ଗଲା ହୋଇ କି ।।୧।।

ବଡ଼ ଦେଉଳେ ଘୁମାଇ ପଡ଼ନା ଆଉ
ବଡ଼ ବିଷମ ହେଲାଣି ମନେଷ ଦାଉ
ବଢ଼ି ସ୍କୁଲେ ଅନ୍ଧତ
ସଢ଼ି ଗଲାଣି ଷେତ
ରଡ଼ି ଲାଗେଡ଼ ଦୁନିଆ
ଲାଗୁଡ଼ି ବଢ଼ ପଣିଆ
ଗଢ଼ ପୁଣି ଏ ସୁନ୍ଦର ମଣ୍ଡାକ ।। ୨।।

ଖଳ ବଳ ଦଳି ସାଧୁ ପାଳିବା ପାଇଁ
ବେଳ କାଳ ଭଣ୍ଡି କାଳେ ଆସିଛ ଧାଇଁ
ଧରୁ ତୁ କେତେ ରୂପ
ହରୁ ଧରା ସନ୍ତାପ
କୁରୁ ପାଣ୍ଡବ ରଣେ,
ପାର୍ଥ ସାରଥୀ ପଣେ
କଥା ପଦେ ମନେ ପଡେ ନାହିଁକି ॥୪॥

**

**

## ବଡ଼ ଦେଉଳ ସାମନ୍ତ ଚରଣେ

### ବାଞ୍ଛାନିଧି ଦାସ

(ବିଂଶ ଶତାବ୍ଦୀ)

ବଡ଼ ଦେଉଳ ସାମନ୍ତ ଚରଣେ
ବଡ଼ ଗର୍ବ ଯେ ଗୁହାରି ଭଣେ
ବଡ଼ାଇ କହିଲେ ନ ସରେ ତୋର
ବୁଡ଼ାଇ ଦେଇଛୁ ଭେଳାକୁ ମୋର
ବଡ଼ ଚକା ଡୋଳା ଧରି ହେ
ବୁଡ଼ି ମରିବାର ସାର ହେଲା ମୋର
ବଡ଼ ଦର୍ପ ଆଶ୍ରା କରି ହେ ॥୧॥

ବଡ଼ ଲୋକ ନୁହଇ ଲୋକ ଦେଖାକୁ
ବଡ଼ ମାନିଲେ କପାଳ ଲେଖାକୁ
ବଡ଼ ସାଇଁ ନାମ ବହୁ କିପାଇଁ
ବଡ଼ ଦେଉଳରେ ନେତ ଉଡ଼ାଇ
ବଡ଼ ଆଶା ଦେଇ ମନେ ହେ
ବଡ଼ ଦାଣ୍ଡ ଧୂଳି ପରେ ଡାକି ହାକି
ଗଡ଼ାଇ ଦେଉଛ ଜନେ ହେ ॥୨॥

ବଡ଼ ତୋଷାମଦୀ ଲୋକ ଯେତେକେ
ବଡ଼ ଧର୍ମ ବୋଲି କରି କି ଠେକ
ବଡ଼ ଲୋକ ପାଖେ ଉତ୍ତର ନାହିଁ
ବଢ଼ିମା ଘୋଷନ୍ତି ତୋର ସେ ପାଇଁ
ବଡ଼ଭୟେ ଡରିମରି ହେ
ବଡ଼ ଆଦରିଆ ଡକା ଗୁଡ଼ୁଚିନ୍ତି
ବଡ଼ ଠେକା କରି ହେ ॥୩॥

ବଡ଼ କରତା ବୋଲାଉ ଜଗତେ
ବଡ଼ ବଚନ କି ତୋହ ଅଗ୍ରତେ
ବଡ଼ ସବୁ ସିନା ଦୁନିଆ ଜନେ
ବଡ଼ ବୋଲି ନ ବସ୍ତୁରେ ମୁଁ ମନେ
ବଡ଼ ରୋଷ ଆସେ ମନେ ହେ
ବଡ଼ ଆସନରେ ବସି ନାଟ ଦେଖି
ଛଟ ପଟ କରି ଜନେ ହେ ॥୪॥

ବଡ଼ ପ୍ରିୟ ଯେହୁ ତାଙ୍କୁ ତାରିଲୁ
ବଡ଼ ଅପ୍ରିୟ ଯେ ତାଙ୍କୁ ଦଳିଲୁ
ବଡ଼ ଅଧିକାର ଥାଏ ଯାହାର
ବଡ଼ କରଇ ସେ ବଡ଼ ବେଭାର
ବଡ଼ କଥା କସ ହେଲା ହେ
ବଡ଼ ଧନପତି କୁବେର ଯାଦବା
ରତନ ଆଞ୍ଜୁଲା ଦେଲା ହେ ॥୫॥

ବଡ଼ ବଡ଼ ନାମ ଦେବାକୁ ତୋରେ
ବଡ଼ ବ୍ୟଥା ଆସେ ମୋହ ମନରେ
ବଡ଼ ଆପଣାର ମଣେ ଯେ' ଯାକୁ
ବଡ଼ ପର ମଣି ଯେବେ ସେ ତା'କୁ
ବଡ଼ ବଧିର ସାଜଇ ହେ
ବଡ଼ ଅଚମ୍ବିତେ ବୁଡ଼ଇ ମନ ମୋ
ଆଦର ବୁଝି ହଜଇ ହେ ॥୬॥

ବଡ଼ ହୋଇଗଲେ ଏମନ୍ତ ଗର୍ବ
ବଡ଼ ପଣେ ଭଲ କହ କି ଲଭ
ବଡ଼ ଦୁଃଖୀ ଡାକେ ଡେର ଶ୍ରବଣ
ବଡ଼ ଅନ୍ଧା ହେବ ଚକା ନୟନ
ବଡ଼ ସଙ୍କଟରେ ପଡ଼ି ହେ
ବଡ଼ ପାଟି କରି ଡାକଇ ତୋରେ ମୁଁ !
ଅନ୍ତର ଯାଏ ମୋ ସଢ଼ି ହେ ॥୭॥

ବଡ଼ ଆପଣାର ଅଟେ ଯେ ଯା'ର
ବଡ଼ ଦୁଃଖେ ଅଭିମାନ ମୁଖର
ବଡ କଡ଼ା କରି କହେ ଯେସନ
ବଡ଼ ଦଏଁ ମୋହ ଗ୍ରାସ ତେସନ
ବଡ଼ ଦୂର ହୋଇ ଶୁଣ ହେ
ବଡ଼ ଦୁଃଖି ଡାକେ ବାଞ୍ଛା କଳ୍ପତରୁ !
ତା' କଥାକୁ ଦିଅ କାନ ହେ ॥୮॥

**

**

# ଚକା ଆଖି

## ଗୋବର୍ଦ୍ଧନ ମହାନ୍ତି

(ବଂଶ ଶତାବ୍ଦୀ)

[ରାଗ-ଖେମଟା]

ଚକା ଆଖି
ମୋ କଥା ମନେପଡୁ ନାହିଁକି ?
ପତିତପାବନ ବାନା ଉଡ଼େ ଦୂରେ କାହିଁକି ॥ଘୋଷା॥

ଅଗାଧ ଜଳରେ ଗଜ
ଡାକିଲା ହେ ଦେବରାଜ
ପାଞ୍ଚାଳି ବିକଳ ବାଣୀ
କାନ ଡେରିଥିଲ ଶୁଣି
ନାହିଁକି ଶ୍ରୁତି ଆତୁର ମୋ କନ୍ଦନ ପାଇଁକି ॥୧॥

ଶିରେ ଶିଖୀ ପୁଚ୍ଛ ଚୂଡ଼ା
ଗଳେ ଶୋହେ ପୀତଧଡ଼ା
ହୃଦରେ ଦର୍ପଣ ମାଳି
ଲମ୍ବୁଅଛ କେଉଁ କେଉଁ
ମୁଁ ଡାକୁଛି ରଖରଖ କାନେ ଶୁଭୁ ନାହିଁକି ॥୨॥

ଅଘା ବକା କେଶୀ କଂସ
ସମୂଳେ କଲ ବିନାଶ
ରାମରୂପେ ଅବତରି
ଡାରିଲ ଗୌତମ ନାରୀ
ଶେଷେ ଖାଇ ପକାଇଲ ମାଣିକର ଦହିକି ॥୩॥

**

**

# ବିଜେ ଜଗବଂଧୁ

## ଶ୍ରୀ ଗୋକୁଳାନନ୍ଦ ମହାନ୍ତି

(ବିଂଶ ଶତାବ୍ଦୀ)

କେ କହେ ଅଚ୍ଛୁତ ସ୍ଥାନରେ ବାଇମନ
କେ କହେ ଅଚ୍ଛୁତ ସ୍ଥାନ
ଯାହାଲାଗି ଦାଣ୍ଡ ବିଜେ ଜଗବଂଧୁ
ତେଜି ରତ୍ନ ସିଂହାସନରେ ବାଇମନ ।।ଘୋଷା।।

ବଡ଼ ଜାତି ବୋଲି ଯେତେ ପାପକର୍ମ
କଲେ ହେଲେ ଆବୁ ସହୁବ ଧରମ
ଠାକୁରଙ୍କୁ ଆବୁ ତୋକଣା ଗୋଲମ
ସେତ ପତିତପାବନ ରେ ।।୧।।

ତୋ ଦେହେ ବହୁଛି ଯେ ଶୋଣିତ ଧାର
ବହୁ ନାହିଁ କରେ ପିଣ୍ଡରେ ତାହାର ?
ସେକ ଗଜମୃଗ ପଶୁରୁ ଅସାର
ନାହିଁ କି ତା'ର ଜୀବନ ରେ ।।୨।।

ଇନ୍ଦ୍ରଦ୍ୟୁମ୍ନ-ରାଣୀ ପାଟ ମହାଦେଇ
ଗୁଣ୍ଡିଚା ସୁନ୍ଦରୀ ଏ ଯାତ ଭିଆଇ
ଅଚ୍ଛୁତ କଲ୍ୟାଣେ ଦେଖାଇଲେ ଥୋଇ
ରଥରେ ଚକାନୟନ ରେ ।।୩।।

**

**

# ଗୁହିଁାରେ ପତିତଜନ

ଶ୍ରୀ ଗୋକୁଳାନନ୍ଦ ମହାନ୍ତି

( ବିଂଶ ଶତାବ୍ଦୀ )

ଗୁହିଁାରେ ପତିତଜନ ପତିତପାବନଙ୍କୁ
ଓଡ଼ିଆ ଗରବଧନ ଜାତି ସନମାନଙ୍କୁ ॥୦॥

ଆଗେ ଚଳେ ତାଳଧ୍ୱଜ
ଯେଉଁ ଠାକୁର ଅଗ୍ରଜ
ବାଟରେ ଅଭୟ ବର
(ସେ) ଦୀନ ଦୁଃଖୀ ଜନଙ୍କୁ ॥୧॥

ମଝିରେ ଦର୍ପ ଦଳନ
ଯେଉଁ ଭଗିନୀ ରତନ
କହେ ତେଜ ଧନ ଜନ
ତୁଚ୍ଛ ଅଭିମାନଙ୍କୁ ॥୨॥

ପଛେ ନନ୍ଦଘୋଷ ଧୀରେ
ଚଳେ ମତଙ୍ଗ ଗତିରେ
ଯେଉଁଠକା କଂଜଦଳା
ମଦନ ମୋହନଙ୍କୁ ॥୩॥

**

# କଳା ଶ୍ରୀମୁଖ ଜଣାଣ

## ଶ୍ରୀ ନରହରି ଉପାଧ୍ୟାୟ

(ବିଂଶ ଶତାବ୍ଦୀ)

'କ'

କଳ କାଳେ କଳାମୁହାଁ    ବସିଛ ନୀଳ ଶଇଳେ
କମଳାଙ୍କୁ କରଛଡ଼ା    କରି ଭାଇ ଭଗ୍ନୀ ମେଳେ ॥ପଦ॥

କନକ ଆସ୍ଥାନ ମାଡ଼ି    କମରେ କାଛେଣୀ ଛଡ଼ି
କଣ୍ଠେ କୋକନଦ ହାର    କରରେ ଦସ୍ତୁଣା ଦୋଳେ ॥୧॥

କଇବଲ୍ୟ ଦାତା ବୋଲି    ବସିଛୁ ବଜାର ମେଲି
କଣିବାକୁ କଡ଼ା ନାସ୍ତି    କଣିବାଏ ମନ ବଳେ ॥୨॥

କଷଣ ହରତା ହୋଇ    କଷଣ ଫେଡ଼ିଲ ନାହିଁ
କର୍ଣ୍ଣେ ମୁଦିଲ ଗୋସାଇଁ    କାତରେ ଡାକିଲା ବେଳେ ॥୩॥

କାଳେକେ କରିବ ଅଳି    କବା ଅଳି ଅରଦଳି
କଂସା କବାଟ ପକାଇ    କାନଉ ବଡ଼ ଦେଉଳେ ॥୪॥

କଉସ୍ତୁଭ ମଣିଧର    ନରହରି ତୋ କିଙ୍କର
କରିଛୁ ସମ୍ବଳ ପଦ    କମଳକୁ କାଳେ କାଳେ ॥୫॥

'ଖ'

ଖାଣ୍ଡିଆକୁ ଖାଉନ୍ଦ ଚନ୍ଦ୍ର
ଖଞ୍ଜାଖିଆ ଦିନେ ନ ପଡ଼େ ମନେ
ଖାଣ୍ଡି ଉଣ୍ଡି ଉଣ୍ଡି ଗଣ୍ଡି ଝଡ଼ିଲଣି
ଖାଇବାରେ ପେଟ ନ ପୂରେ ଦିନେ ।।ପଦ।।

ଖିଆଲିଆ ଦେଖୁଛୁ ହଟ ଖଟି ଖଟି ହେଲ କମଠ
ଖଲ ହାତେ ଚୁଟି ଦେଇ ପିଟାଉଛୁ
ଖାମଖିଆଲିଆ ଅନ୍ଧ ବନ୍ଧୁନେ ।।୧।।

ଖପା ସତେ ଯେବେ ଗୋସାଇଁ ଖସାଇ ଜନକ କପାଇଁ
ଖେଦ ଉଦଧିରେ ଭାସି ଯାଉଅଛୁ
ଖୁସି ଲାଗୁଛୁକି ଦେଖି ନୟନେ ।।୨।।

ଖାସା ବଡ଼ଲୋକ ବପୁର ଖିଣ୍ଣସାରେ ଭରେ ଉଦର
ଖଟିଖିଆ ନରହରର ଗୁହାରି
ଖୁଞ୍ଚା ମାରିଲେବ ନଗଲେ କାନେ ।।୩।।

'ଗ'

ଗରୁଡ଼ ପଛରେ ରହି ଗରବ ଜଣେ
ଗରୁଡ଼ଧ୍ୱଜ ଛାମୁରେ ଗୁହାରି ଭଣେ ।।ପଦ।।

ଗଞ୍ଜଣା କେତେ ଆଉ ସହିବ ମହାବାହୁ
ଗଡ଼ି ଗ୍ଲଲିଛୁ ଦିନ ଗତ ହେଉଛୁ ଆୟୁ
ଗରହିତ ମାଢ ବଢ଼ ବାଧେ ପସ୍ୱଣେ ।।୧।।

ଗାଣମା ଗଲା କାହିଁ	ମୋ ବେଳକୁ ଗୋସାଇଁ
ଗରଦାତା ସାଜିଲ	ବରଦାତା ବୋଲାଇ
ଗଣବତ ଗ୍ରାହ୍ୟାନାଶି କବା କାରଣେ ॥୨॥

ଗୋପେ ଗୋବରଦ୍ଧନ	ଗିର ଟେକ ସେଦ୍ଦନ
ଗଞ୍ଜି ଇନ୍ଦ୍ର ଗରବ	ଗୌରବ ଅରଜନ
ଗନ୍ତାଧର ରୁଞ୍ଜି ଦେଲ ଗଣ୍ଡିଆ ପଣେ ॥୩॥

ଗିରରୁ ଗୁରୁତର	କବା ମୋ ଦୁଃଖ ଭାର
ଗରଜ ନରହର	ନବେଦ୍ଦ ବାର ବାର
ଗଡ଼ ଘାଲ ଶୋଇଥିବ ଶିଶ୍ୱଚରଣେ । ୪॥

‘ଘ’

ଘରଭଙ୍ଗା ହେ ଜଗନ୍ନାଥ
ଘଟଣା କୁହତ ମିଛ କ ସତ ।
ଘରଣୀକ ଗ୍ରୁଣ୍ଡ଼	ଭାଇ ଭଉଣୀଙ୍କ
ସଙ୍ଗରେ ମିଳାଇ ଦେଇଛ ହାତ ॥ପଦ॥

ଘରେ କଲିଗୋଳ	କରି ଭାଇ ସଙ୍ଗେ
ବିଭୀଷଣ ହେଲା ଶରଣାଗତ
ଘମାଘୋଟ ଯୁଦ୍ଧେ	ସବଂଶ ମରାଇ
ତୁମ ବଳେ ରାଜଭୂଷ ପ୍ରାପତ ॥୧॥

ଘାବରା ସୁଗ୍ରୀବ	ଥୋବରା ପଣରେ
ତୁମ ସଙ୍ଗେ ଆସି ବସିଲା ମିତ
ଘାତ କରି ବାଳି	ବାନରକୁ ମାରି
ତା ନାରୀ ତାରାକୁ ସୁଗ୍ରୀବେ ଦେଇ ॥୨॥

ଘାତକ ବୋଲିବା    ନ କହିବ ତରେ
ସତ ମିଛ କଥା ଜାଣୁଥିବତ
ଘୃଙ୍ଗା ହୋଇ ବଡ଼    ଦେଉଳେ ବସିଛ
ଘରବୁଡ଼ା ନାମ ବଡ଼ ବିଖ୍ୟାତ ।।୩।।

ଘଣ୍ଟ ଗୁଡ଼ୁବାତ    ନକଟ ହେଲଣି
ନରହରି ଧନ ସଞ୍ଚିବତ
ଘସ୍ରନାଥ ସୁତ    ଘୋଷରଙ୍କୁ ତରି
ଘୋଷେ ତବ ନାମ ଅନବରତ ।।୪।।

'ଙ'

ଓଁକାର ବ୍ରହ୍ମଙ୍କୁ ଜପ, ରେ ମନ
ଓଁକାରଲେ ଥରେ ଦୂରେଅପସରି—
ଯିବ ଯେତେ ପାପ ତାପ,ରେ ମନ ।।ପଦ।।
ଉପଶମ ହେବ    ଜରା ବ୍ୟାଧି କ୍ଳେଶ
ଜୀବନର ଅଭିଶାପ
ଊଣା ହେବଜଣା ଅଛୁ ଅନ୍ତକାଳେ
ଶମନ ରାଷ୍ଟର ଧାପ, ରେ ମନ ।।୧।।

ଉତ୍ତାଳ ତରଙ୍ଗ    ଅତି ଡମିବାକୁ
ବସି କଳପ କଳପ
ଉତ୍ତମ ସାଧକେ ତପ ସାଧୁଥାନ୍ତି
କଲପି ବିଶ୍ୱ ସ୍ୱରୂପ, ରେ ମନ ।।୨।।

ଉଦଗ୍ରୀବ ହୋଇ    ଦୃଷ୍ଟି ବସିଛନ୍ତି
ଦୂରେ ଦାରୁ ବ୍ରହ୍ମ ରୂପ
ଉଦାସୀଆ ଦାସ ଉପାଧ୍ୟାୟଭୂପ
ସୁଖ ପାଇବୁ ଅମାପ,ରେ ମନ ।।୩।।

'ଚ'

ଚକାଆଖି, ତୁମେ ଥାଉଁ ହେଲ ଦଶମାଖି ହେ
ଚତୁର୍ବର୍ଗ ଦାତା ପଣକୁ ଆପଣ କପର ପାରବେ ରଖି ହେ ॥ପଦ॥

ଚତୁର୍ବାହୁ ଚରଣକୁ ଆଶ୍ରାକର କାଳକ ରହୁଲ ଟାକ
ଚଉରାଶି ନର୍କ ଯାତନାରୁ ତରିଯିବ ନାମ ମଧୁ ଚାଖି ହେ ॥୧॥

ଚନ୍ଦ୍ରାମଣି ସଦା ଭକତ ଜନର ତୁମେହିଁ ଧରମ ସାକ୍ଷୀ
ଚନ୍ଦ୍ରଗୁପ୍ତ ପାଞ୍ଜି ମେଲାଇ ବସିଛୁ ଭଜିବାକୁ ବେଳ ଦେଖି ହେ ॥୨॥

ଚହଲ ଉଡ଼ାଇ ନୀଳଚକ୍ର ଚୂଳେ ଚୌଦିଗେ ରଖିଛ ଆଖି
ଚନ୍ଦ୍ରାତପ ତଳେ ଖାଇ ଭଗ୍ନିମେଳେ ବସି ଆପେ ମହାସୁଖୀ ହୋ॥୩॥

ଚତୁର୍ଭୁଜ ହୋଇ ଶୁଣିଛୁ ବୈକୁଣ୍ଠେ ଗମିଲା ଭୁଷଣ୍ଡ ପକ୍ଷୀ
ଚରଣାମୃତରେ ମନ ବଳାଇଛୁ ନରହରି ଦୀନ ଦୁଃଖୀ ହେ ॥୪॥

'ଛ'

ଛୁଞ୍ଚି ନୀଳଗିରି ଛୁଞ୍ଚି ଶରଧା ବାଲି
ଛତିଆ ବଟକୁ ସତେ ଯିବକି ଭୁଲି ॥ପଦ॥

ଛୁଞ୍ଚି ଛତିଶା ନିଯୋଗ ଷାଠିଏ ପଉଟି ଭୋଗ
ଛେଚ ରତ୍ନ ସିଂହାସନ ପକାଇ ଖାଲି ॥୧॥

ଛତ୍ରପତି ଉତ୍କଳେଶ ଶ୍ରୀ ଗଜପତି ନରେଶ
ଛେଷ ପହଁରା ନିଯୋଗ କେମନ୍ତେ ଭୁଲି ॥୨॥

ଛନକା ଲଗେ ଛୁଟିକି ଛଇଳରାଜ କାହ୍ନିକି
ଛଳ କଲ କୃଷ୍ଣ ବାରେ ମରମ ଖୋଲି ॥୩॥

ଘୁମୁରେ ମିନତି ଡାକ          ଘୁର ନରହରି ଖାଲି
ଛନ୍ଦ ଚରଣକୁ ଫନ୍ଦା କରିଛୁ ବୋଲି ॥୪॥

‘ଜ’

ଜଗନ୍ନାଥଆରେ ଜଳା ପୋଡ଼ା କରି ମାରୁ
ଝଲାଇ ନ ଦେଇ ଅନାମତ ଖାଲି ଉତ୍କଳ ବିକଳ କରୁ ॥ପଦ॥

ଜନେ ଜାଣନ୍ତି ତୁ ବଡ଼ ଠାକୁର
ଜଗତ ପାଳିବା ଧରମ ତୋର
ଜଡ଼ଭୂତ ହୋଇ ବଡ଼ ଦେଉଳରେ ଆଖି ମିଟିକାଣି ମାରୁ ॥୧॥

ଜପାମାଳି କରି ନାମକୁ ତୋର
ଜଞ୍ଜାଳ ଜମ୍ବାଳେ କାଟୁଛୁ କାଳ
ଜାଣିଲିଣି ଭଲେ ପାଇବି ଶେଷକୁ ଆଜୁ ଖୋଜୁ ଖୋଜୁ ସାରୁ ॥୨॥

ଜଗମୋହନରେ ବସି ଆତୁରେ
ଜଣାଉଛୁ ଦୁଃଖ ଅତି କାତରେ
ଜୁହାରି ଗୁହାରି କରେ ନରହରି ମାନ ମହତ ନ ସରୁ ॥୩॥

‘ଝ’

ଝଣ୍ଟାମାଳିଆ ଠାକୁର
ଝଗଡ଼ା କରିବା ପାଇଁ ଭିଡ଼ିଛୁ କମର ॥ପଦ॥

ଝଗଡ଼ି ହୋଇ ଡାକିଲା ଗଜମୂର୍ଖ
ଭେଦିଲା କର୍ଣ୍ଣ କୁହର
ଝଟିତରେ ପେଶି ଚକ୍ର ସୁଦର୍ଶନ
ଛେଦିଦେଲ ନକ୍ର ଶିର ॥୧॥

ଝିଙ୍ଗାସ ବଚନ ବୋଲି ଶୀରବସ୍ର
କରିଲ ପାଦ ପ୍ରହାର
ଝଟକୁଛି ଦେଖ ବକ୍ଷପରେ ଆଜି
ପଦଚିହ୍ନ ବ୍ରାହ୍ମଣର ॥୨॥

ଝାଉଁଳି ପଡ଼ିଲା ଭକ୍ତ ପ୍ରହ୍ଲାଦ
ପାଇ କଷଣ ଅପାର
ଝିଣ୍ଡାଇଲ ନଖେ ହିରଣ୍ୟ ବପୁକୁ
ନରସିଂହ ରୂପଧର ॥୩॥

ଝଗଡ଼ୁ ନାହିଁ ମୁଁ ବଡ଼ ହେବା ପାଇଁ
ନରହରି ଶ୍ରୀଗୁରୁମୁର
ଝାମ୍ପି ନେବ କାଳଯମ କେତେବେଳେ
ମାତର ସେଥକ ଡର ॥୪॥

## 'ଞ'

(ଆରତ୍ତ ଧ୍ୱଂସନ-ବୃନ୍ଦେ)

ନନ୍ଦଘୋଷେ ନବ ଜଳଧର ରୂପ ଦେଖି ପୂରୁଛି ନୟନ···
ନ ଥିଲ ପରତେ ସତେ ଦିନେ ରଥେ ଅବଲୋକିବ ବାମନ,
ଜଗନ୍ନାଥ ହେ ॥୧॥

ନବରୁ ବାହାରି ଭାଇ ଭଉଣୀଙ୍କ ସଙ୍ଗେ ମହାଆଡ଼ମ୍ବରେ
ନବଦିନ ଯାତ୍ରା ଜନମ ବେଦୀରେ ସାରିବ ମାଉସୀ ଘରେ,
ଜଗନ୍ନାଥ ହେ ॥୨॥

(ପୋଇ) ଅନାହତ ଶଙ୍ଖ ଭେରୀ ମରଦଳ ମୃଦଙ୍ଗ ଘଣ୍ଟ କାହାଳୀ
ନାଗଙ୍କର ମୁଖବାଦ୍ୟ ବେଳେ ବଡ଼ଦାଣ୍ଡ ପଡ଼ୁଛି ଉଛୁଳି ॥୩॥

ନମ୍ର ଗଜପତି ସମ୍ମାର୍ଜ୍ଜନା କରେ କରନ୍ତି ଛେରା ପହଁରା
ନିଖିଳ ଜନତା ଜୟ ଜଗନ୍ନାଥ ନାମ ପ୍ରେମେ ଆତ୍ମହରା ।।୪।।

ନିଶାଣ ଉଡ଼ାଇ ଚାଲିଛନ୍ତି ଦଳେ ଦଳେ ସାଧୁସନ୍ଥ ଜନ
ନିପଟ ଅଧମ ନରହତ ଦୂରେ ରହି କରେ ଦରଶନ ।।୫।।

## 'ଟ'

ଟାଣି ଟାଣି ନେବୁ କେତେ ଦୂରେ
ଟାକ ବସିଅଛୁ ଜଣାଇବ ଯେତେ
ଅଭିଯୋଗ ଶ୍ରୀଚ୍ଛମୁରେ ।।୧।।

ଟାଳଟଳ କର କେତେ କାଳ
ଟାହି କଲାପରି ଧରି ମୋ ଜୀବନ—
ନାଟିକା ଖେଳରୁ ଖେଳ ।।୨।।

ଟିହ୍ୱାଇବ ବସି ଦିନ ରାତି
ଟମକ ପିଟାଇ ବଡ଼ ଦାଣ୍ଡ ସାରା
ବଖାଣିବ ତୁମ୍ଭ କୀର୍ତ୍ତି ।।୩।।

ଟଳମଳ ହୋଇବ ଆସନ
ଟାଣ ଭାଙ୍ଗିଯିବ ଅକାରଣେ ଟେକ—
ପାରିବ ନାହିଁ ବଦନ ।।୪।।

ଟପି ଯାଇ ପାରିବନି ଆଉ
ଟଳିବା ଆଗରୁ ନରହର ଦୁଃଖ
ଝର ଝର ଟାଉ ଟାଉ ।।୫।।

'ଠ'

ଠକୁଆ ଠାକୁର ବୃଟକେ ନୀଳାଚଳ ଧାମରେ
ଠକାଠକି କାରବାର ଲଗାଇଛ କାମରେ ।।ପଦ।।

ଠିକଣା ବେଲକୁ ଭଣ୍ଡି ଦାତାଙ୍କୁ ଧରାଇ ହାଣ୍ଡି
ଠକି ଖାଇବା ଫିକର ସବୁଠୁମ ନାମରେ ।।୧।।

ଠଣ ସୁନ୍ଦର କାଳିଆ କଳପବଟ ମୂଳିଆ
ଠିକାଦାରିଆ ପଣ୍ଡାବ ନିନ୍ଦା ବଦନାମରେ ।।୨।।

ଠକାମି ପଣ ପ୍ରମାଣ ହେଲେ ଯେତେ ବଡ଼ ଜାଣ
ଠୁକ୍କି ଦେବେ ଭକ୍ତଗଣ ଭ୍ରମରେ ବା ପ୍ରେମରେ ।।୩।।

ଠକାର ନଷ୍ଟଜ ବାରେ ଠାବ ମାଗୁଛି ପସ୍ଥରେ
ଠେଲି ନଦଅ ଠାକୁରେ ନରହରି ପାମରେ ।।୪।।

'ଡ'

ଡ଼ାକି ମୁଁ, ନବେଦୁଛି ବାରବାର
ଡରଲକି ଦେଖି ଆହେ ଚକାଆଖି
ମୋ ଗଭସ୍ତ ଦୁଃଖଭାର ।।ପଦ।।

ଡେଉର ଶ୍ରୁତିପଥ ହୋଇଥାଅ ଭକ୍ତ
ଡାକରକୁ ତତପର
ଡେଉର କରବାରୁ ଜାଣୁଛି ମୋ ପ୍ରଭୁ
ମୋ ପାଇଁ ହେଲେ ବଧିର ।।୧।।

ଡିଗିଇଲି କଂସ କାଳୀ ଦଳ ଢୋଳି
ଦେଲ ପଦ୍ମ ଲକ୍ଷେ ଭାର
ଡୁଣ୍ଡୁଭ ଦଳନେ କେଉଁ ଘଣ ଦାନା
ଉଡ଼ାଇବ ଫରଫର ॥୨॥

ଡବ ଡବ ହୋଇ ଗୌରବ ଡିଣ୍ଡିମ
ବାଜୁଛି ସଚରାଚର
ଡୁବବକ କର ନରହରି ତବ
ପଦ ସାରସକୁ ସାର ॥୩॥

'ଢ'

ଢମୁଆ ପଣ ବଡ଼ ଠାକୁର
ଢକ୍‌କା ବଜାଇ କରୁଛ କାହ୍ନର ॥ପଦ॥

ଢଳିଥିଲି ତବ ଚରଣ ତଳେ
ଢାଲ ହେବ ବୋଲି ପିଠିକ କାଳେ ॥୧॥

ଢୋକ ଦେଇ ରଖିଥିଲ ବଞ୍ଚାଇ
ଢେଉ ମୁହଁରେ ଦେଉଛ ଭସାଇ ॥୨॥

ଢିଲା କାରବାର କର କାହିଁକି
ଢଙ୍ଗ ବଦଳିଛି ଯୁଗ ପାଇଁକି ॥୩॥

ଢାଳେ ନରହରି ପଦେ ପ୍ରଣତ
ଢାଳେ ହରବ ଗରବ ଦୁର୍ଗନ୍ଧ ॥୪॥

'ଣ'

ନୀଳଶୈଳ ନିକେତ ନିବାସୀ ପ୍ରଭୋ
ନୀଳକାନ୍ତ ମଣି ପ୍ରଭ ରୂପ ବିଭୋ
ନୀଳସାଗର ନନ୍ଦିନୀ ପ୍ରିୟବର
ନୀଳ କନ୍ଦର ସୁନ୍ଦର କାନ୍ତିଧର ।।୧।।

ନିଃଶ୍ରୟ ଆଶ୍ରୟ ଅଭୟ ଦାୟୀ
ନିର୍ମମୟ ନିଚୟ ତପସ କ୍ଷୟୀ
ନରକାନ୍ତକ ଅନ୍ତକ ଭୟହର
ନୀଳକନ୍ଦର ସୁନ୍ଦର କାନ୍ତିଧର ।।୨।।

ନଶ୍ୱର ସଂସାର ସାଗର ସଶତେ
ନାବ ଚଳାଇ ନେବ ଅନବରତେ
ନିପୁଣ ତବବିନୁ କେ କର୍ଣ୍ଣଧାର
ନୀଳକନ୍ଦର ସୁନ୍ଦର କାନ୍ତିଧର ।।୩।।

ନିଖିଳ ଜନପାବନ ନାମଧନ
ନିରବଧି ନିରାଲମ୍ବ ନିସ୍ୱଜନ
ନରହରି କରଅଛୁ ଜଣୁହାର
ନୀଳକନ୍ଦର ସୁନ୍ଦର କାନ୍ତିଧର ।।୪।।

'ତ'

ତକାଇଛୁ ସନ୍ନିଧାନ, ମହାବାହୁ
ତେର ଧନ କଳା ପୂର୍ଣ୍ଣ ପରଂବ୍ରହ୍ମ ରୂପକୁ କରି ଧିଆନ ।।ପଦ।।

ତରକୁଛୁ ଅଥ ଦେଖି ନାଥ ନାଥ
ଇନ୍ଦ୍ରଜାଲ ଯୁଗ ସ୍ୱଥ
ଚଣ୍ଡକଳା ପୂର୍ଣ୍ଣ ପ୍ରପଞ୍ଚ ସମ୍ଭବ
ସଞ୍ଚାରଇ ମହାଶ୍ରିଥ ।।୧।।

ତନ୍ତ୍ର ଗଣିଲଣି        ଜୀବନେ ବହୁତ
ତୁଣ୍ଡ ଖୋଲୁନାହିଁ କେବେ
ତଥାପି ତଡ଼ିଲେ        ତଣ୍ଟିଆ ଲଗାଇ
କାହାର ହେବି ମୁଁ ଏବେ ॥୨॥

ତରଳବ ହେଲେ        ପାଷାଣ କଷଣ—
ଦେଖି ନ ରେଖ ଜନର
ତୁରତ ଦୁରତ        ନାଶିବ ନରୁବା
ନେବ ଅପଯଶ ଭାର ॥୩॥

ତାମରସ ନେତ୍ର        ଗୁହିଁ ନରହର
କୃପାବାର ବନ୍ଧୁ ଆଣେ
ତୃଷିତ ସୃତକ        ପାଦ୍ଦିକ ଘାତକ
ତୃପ୍ତି ଆଚରବ ଶେଷେ ॥୪॥

'ଥ'

ଥୋବଗପଣ କର
ଥୋଇଛୁ ଯେତେ ଯାହା ହାରଗୁହାରୀ ହେ ॥ପଦ॥

ଅସ୍ତ୍ର କର ପାରୁନ ହେବ କ ଫଳ
ଥାକବ ଅବା ଯିବ ତଳକୁ ତଳ ହେ ॥୧॥

ଥଣ୍ଡା ହେଲା ରକତ ଗଲା ବୟସ
ଥବର ଜନ କଣ ପାରେ ବା କଂସ ॥୨॥

ଥଳକୂଳ ନ ପାଇ ଭବସାଗରେ
ଥକ୍କା ହୋଇ ବସିଛୁ ଭଙ୍ଗା ନାବରେ ॥୩॥

ଥରହର ହେଉଛୁ ଚଲ୍ଲ ସଙ୍ଗତ
ଥ ବର୍ଣ୍ଣେ ନରହର ରଚଇ ଗୀତ ॥୪॥

'ଦ'

ଦଇନା ମୋର ଏତେ, ଦୟାନିଧି ଶ୍ରୀମୁଖରେ
ଦାସ ପଛେ ସବୁ ହସାବୁ କଳଙ୍କ
ନ ଲଗୁ ଦାସ ବତ୍ସଳ ନାମରେ ।।ପଦ।।

ଦନ୍ଦରୀ ନାବରେ ବସାଇ ଭସାଇ
ଦେଇଛ ଅନନ୍ତ ମହାସାଗରେ
ଦକ ଦକ ଚିତ୍ତ ହେଉଛୁ ସତତ
ବୁଝିବକ ଭେଳା ଲଗିବ ତୀରେ ।।୧।।

ଦାରିଦ୍ରିଆ ବନ୍ଧୁ ଭକତ ଜନର
ଡିଣ୍ଡିମ ବାଜୁଛୁ ସଚରାଚରେ
ଦାଉ ସାଧିବାକୁ ହେବ ଆଗଭର
ଆସିବକ କେବେ କଳପନାରେ ।।୨।।

ଦାରିଦ୍ରାଗ୍ନି ଦଗ୍ଧ— ବାମନ ମୂରତି
ନରହରି ସଦା ଚିନ୍ତ ମନରେ
ଦକ୍ଷିଣ ହୋଇବ ଦରଶନ ଦାନେ
ଦଗା ନଥିବ ଅନ୍ତିମ କାଳରେ ।।୩।।

'ଧ'

ଧରାଧରବାସୀ ଆଶାଜରି ବସି ବାଇଗି ପାବଛୁ ତଳେ
ଧିଆନ କରିଛୁ ପଦାରବିନ୍ଦକୁ ଯହିଁ ମକରନ୍ଦ ଗଳେ ।।୧।।

ଧଣ୍ଡା ମାଲିଆ ମୁଁ କିଛୁ ମାଗୁନାହିଁ ମାଗୁଛୁ କରୁଣା କଣେ
ଧରଣୀରେ ଆଉ ଦେଖୁନ କାହାକୁ ତୁମ ପରି ଦାତା ଜଣେ ।।୨।।

ଧାତା ମହେଶ୍ୱର ଯା'ର ଚରଣର କାଳେ ନ ପାଇଲେ ଅନ୍ତ
ଧୀବର ଧୋଇବା କଥା କି ଜଗତେ ରହିଅଛି ଅବାଦିତ ।।୩।।

ଧ୍ୱଜା ଉଡ଼ାଉଛ ବଡ଼ ଦେଉଳରେ ବଡ଼ିମା ଜାହିର କରି
ଧନ୍ଦ ହୋଇ ଯେବେ ମରିବ ଭକତ ଧାରଣା ହେବ କପରି ।।୪।।

ଧର୍ମଭୀରୁ ନରହରି ଏ ଜଗତେ ଜଣେ ଇତର ପରାଣୀ
ଧର୍ମରାଜ ଦାସ ନାଶ ପୀତବାସ ଏତିକି ମାତ୍ର ମାଗୁଣି ।।୫।।

## 'ନ'

(କୀର୍ତ୍ତନ ସ୍ୱର)

ନବଜଳଧର ବରନ ସୁନ୍ଦର ଦାରୁଭୂତ ମହାମେରୁ
ନବ ନବ ବେଶେ          କି ଶୋଭା ବିକାଶେ
ବିଲୋକନେ କେତେ ସୁରୁ
ନଳିନ ନୟନ ସୁଠାମ ଠାଣି
ନ ନେବ କାହାର ମନକୁ ଟାଣି ।।୧।।

ନାଟ ମନ୍ଦିରରେ ବସି ନିରବଧି ଶ୍ରୀପଦେ ରଖି ଧିଆନ
ନିଉଛୁଳି ହୋଇ          ଜଣାଇବି ଯେତେ
ଆବେଦନ ନିବେଦନ
ନିଆଶା ହେବିନି ହେବିନି କେବେ
ନିକର ଗୁହାରି ଶୁଣିବେ ଲବେ ।।୨।।

ନଶ୍ୱର ଏ ଦେହ ଇହଲୋକେ ଅବା ରହିଥିବ କେତେ କାଳ
ନିରାଲମ୍ବ ଜନ          ନିସ୍ତାର କରତା
କରାଇବ ବିକଣ୍ଟାଳ
ନରହରି ତବ ଶରଣାଗତ
ନିଗ୍ରହ ନୋହିବ ନୀଳାଦ୍ରି ନାଥ ।।୩।।

## 'ପ'

ପତିଆର୍ କରିବା ପାଇଁ
ପତାକା ଖଣ୍ଡେ ଦେଇଛ ଉଡ଼ାଇ
ପାତକୀ ଯେତେକ           ସଞ୍ଚିତ ପାତକ
ଉଡ଼ାଇ ଦେବାକୁ ଆସିଛୁ ଧାଇଁ ।।ପଦ।।

ପରିଶ୍ରମ ନ ହେଉ ପଣ୍ଡ
ପରିଜନ ନ ପାଉ ଦଣ୍ଡ
ପରମ କରତା           ଗତି ମୁକ୍ତି ଦାତା
ପକ୍ଷପାତେ ଯିବ ନାହିଁ ପଚାରି ।।୧।।

ପତିତପାବନ ମୂରତି
ପାତ ଜାନୁ ଦେଖିବ ନତି
ପକ୍ଷିରାଜ ପଛେ           ବସି ମନ ସ୍ୱଚ୍ଛେ
ପଖାଳିବ ପାପ ନୟନ ଦୁଇ ।।୨।।

ପରଂବ୍ରହ୍ମ ପରମେଶ୍ୱର
ପଦ ଏକା ସଂସାରେ ସାର
ପରକାଳ ଗତି           ଚନ୍ଦ୍ର ନରହରି
ଶ୍ରୀପଦେ ଦେଇଛୁ ମନ ମଜାଇ ।।୩।।

## 'ଫ'

ଫଳ: କରମକୁ ଧରି, ଫଉଆ ହୋଇଲ ଜୀବନ ଭରି
ଫନ୍ଦା କରିଥିଲ           ଫଦାରବନ୍ଧକୁ
ଫିଙ୍ଗି ଦେଲ ଦୂରେ ଗୋଇଠା ମାରି ।।ପଦ।।

ଫେଡ଼ିଛୁ ବୋଲି କଷଣ ସ୍ଫୁରୁବେ
ଫୁଲଉଛ ଗୂଢ ବଡ଼ ଗରବେ
ଫାଙ୍କିମର୍ଗ କଥା    ଜାଣୁଛୁ ଅନ୍ୟଥା-
ନୋହେ କେବଳ ଫମ୍ପା ବାହ୍ୱାଦୁସ୍ତି ॥୧॥

ଫିଟାଇ କହିବ ଯେବେ ମରମ
ଫିକା ପଡ଼ିଯିବ କଳା ବଦନ
ଫଳାଫଳ ଯାହା    ହେଉ ନରହରି
ଫାଶୀ ପାଇବାକୁ ଯିବନି ଡରି ॥୨॥

ଫେରଫାର ଫନ୍ଦୀ ଜାଣ ସକଳ
ଫରୁରୁଆ ବୁଦ୍ଧି ଗୁଡ଼ ଚଞ୍ଚଳ
ଫେରାଦୀ ହେଉଛୁ    ଫଳ ଲାଭ ଆଶେ
ଫଳନ୍ତା ଗଛକୁ ଫୋପଡ଼ ମାରି ॥୩॥

## ‘ବ’

(ରାଗ—କାମୋଦୀ)

ବିହଙ୍ଗରାଜ ଧ୍ୱଜ    ବିନାଶି ନକ୍ରରାଜ-
ରାଜକୁ ଜଳୁ ଉଦ୍ଧାରିଛ
ବିଷମ ବ୍ୟାଧିଭୟୁ    ବୋବାଇଲା ବାତାୟୁ
ବଡ଼ ଚଞ୍ଚଳେ ବଞ୍ଚାଇଛ ହେ
ବଳିବନ୍ତ
ବଡ଼ିମା ବ୍ରହ୍ମାଣ୍ଡେ ବିଦିତ
ବିପରୀତ ସ୍ୱଭାବ ଏତ
ବାଦ ସାଧିଲା ପରି    ମୋ ସଙ୍ଗେ ନୀଳଗିରି-
ବାସୀ ମୁଁ ଆଜ ବିଡ଼ମ୍ବିତ ହେ ॥୧॥

ବିମୁଖ କବିସୂର୍ଯ୍ୟ     ବଳଦେବଙ୍କ ଧୈର୍ଯ୍ୟ-
ବଳ ଦେବାକୁ ଦଣ୍ଡେ ଟାଳି
ବଧିବାକୁ ହେ ରମା-     ରମଣ ମାଗି କ୍ଷମା
ବ୍ୟାଳ ବୋଳଣ ଦେଲେ ଗାଳି ହେ
ବଳାନୁଜ
ବରଜନ କଳଙ୍କ ଲଜ
ବୋଲିବେ ବିବୁଧ ସମାଜ
ବିଦ୍ରୂପ କରି ଖାଲି     ବାହାବା ନେବ ବୋଲି
ବିସ୍ମର କି ଦେବାଧିରାଜ ହେ ॥୨॥

ବଖାଣିବାକୁ ଦୋଷ     ବଳୁ ନାହିଁ ମାନସ
ବାଦାନୁବାଦେ ହୋଇ ରତ
ବିଚାର ମତ ଗତ     ବଦଳାଇ ତଡ଼ିତ
ବିଧି ବିବେକ ସନମତ ହେ
ବିଶ୍ୱାଧାର
ବିସ୍ତୃତ କୀରତି ଭାସ୍ୱର
ବ୍ୟାଜ ସକଳ ପରିହର
ବରାଭୟ ବିତରି     ବିନତ ନରହରି
ବିପାକ ଅବହେଳେ ହର ହେ ॥୩॥

'ଭ'

ଭରି ଏ ଜୀବନ ତରୀ
ଭାସିଯିବ କେଉଁ ଅଜଣା ରାଇଜେ
ନ ବସିଲେ ମଙ୍ଗ ଧରି ॥ପଦ॥

ଭୁକ୍ତଭୋଗୀ ବୋଲି କହୁଅଛୁ ସିନା
ଭବାବ୍ଧିର ଜଣେ କର୍ଣ୍ଣଧାର ବିନା
ଭଙ୍ଗାନାବ ଖଣ୍ଡି ଚଳାଇ ନେବ କେ
କଟାଇ ଘଣ୍ଟ ଭଉଁରି ॥୧॥

ଭବିଷ୍ୟତ ବଡ଼ ଲାଗେ ଭୟଙ୍କର
ଭଣ୍ଡାଇଲେ ଜାଣ ସରଳ ଜନକର
ଭରସା କରିଛୁ ଭକତ ଭାଗ୍ୟକୁ
ସାଜିବ ନାହିଁ ଭଗାରି ॥୨॥

ଭଗ ମାଗୁନାହିଁ ଭୋଗ ମାଗୁନାହିଁ
ଭରଣ ପୋଷଣ ପେଟ ଖଣ୍ଡେ ପାଇଁ
ଭକ୍ଷକ ସାଜନ୍ତି ଭଦ୍ରବାସୀ ଭଦ୍ରାଖିଇ
ଭଣେ ନରହରି ॥୩॥

'ମ'

ମୁରାରି ତୁ, ମତାଇ ଦେଇଛୁ ମୋତେ
ମନ କହୁଅଛୁ ଘୋଡ଼ା ଚଢ଼ିବାକୁ
ମାନ ଧନ ନାହିଁ ହାତେ । ॥ପଦ॥

ମେରୁ ଚୂଳେ ନେଇ ବସାଇ ଦେଇଛୁ
ଖସାଇ ଦେବୁନି କାଲେ
ମଶାଚକା ପଛେ ଗୋଡ଼ାଇଛୁ ବୋଲି
ରବ ନ ହେଉ ଜଗତେ ॥୧॥

ମଧୁର ମୋହନ ମୁରଲୀ ବଜାଇ
ମୋହିଥିଲୁ ଗୋପ ଗୋଈ
ମନାଇ ପାରିବ ମୋହନ ରାଜାଙ୍କୁ
ମନକୁ ନାହିଁ ପରତେ ॥୨॥

ମନ୍ତ୍ର କରି ଅବା ଯନ୍ତ୍ର ତନ୍ତ୍ର ପରି
ଚଳାଇଛୁ ଇଙ୍ଗିତରେ
ମଟି ଦରିଆରେ ମାରିବୁ ବୁଡ଼ାଇ
ମଙ୍ଗ ଛାଡ଼ିଦେଇ ସତେ ॥୩॥

ମସୀଜୀବୀ ହେବା ମାନସେ ଧାଇଁଛି
ମାନ ମହତ୍ତ୍ୱ ନ ଯାଉ
ମଣିମା ବଂଶଙ୍କେ ଫିଟାଇ କହିଲି
ଯାହା ଥିଲା ମନୋଗତେ ॥୮॥

ମହୋଦଧି ତୀରେ ମର୍ତ୍ତ୍ୟ ବୈକୁଣ୍ଠରେ
ମର୍ଯ୍ୟାଦା ପୁରୁଷୋତ୍ତମ
ମତାଣିଆ ନର— ହରିକୁ ନମନ
ନ କରବ କଦାଚିତେ ॥୯॥

'ଯ'

ଯୁଗମ ସମ୍ଭବ କେତେ ଯଦୁପତି ଜଗନ୍ନାଥେ
ଯମ ଯାତନାରୁ ବଳି ଯାଉଛି ତାଡ଼ନା ଯେତେ ॥ପଦ॥

ଯନ୍ତ୍ରୀ ତୁମେ ଯନ୍ତ୍ର ମୁହିଁ ଯୁକତେ ଅନ୍ୟଥା ନାହିଁ
ଯାନକୁ ନେବ ଚଳାଇ ଯେଣେ ଇଚ୍ଛା ନିଜ ହାତେ ॥୧॥

ଯାଚକ ହୋଇନି କେବେ ଯକ୍ଷରାଜ ବଇଭବେ
ଯଥା ତଥା ଆଦରିଛି ଯେତିକ ଦେଇଛ ମୋତେ ॥୨॥

ଯାପେ ଅସରନ୍ତି କାଳ ଯା ନାମ କରି ସମ୍ବଳ
ଯବନିକା ପାତେ ସାଥେ ଯେମନ୍ତ ଜୀବନ ବ୍ରତେ ॥୩॥

ଯାବତ ଥିବି ଏ ଭବେ ଯଶ ବାଞ୍ଛା ନାହିଁ ଲବେ
ଯନ୍ତ୍ରା ଭିତରୁ ବାହାରି ଯିବ ନରହରି ସତେ ॥୪॥

'ର'

ରଙ୍ଗ କେତନ ଦୋଳେ, ନୀଳ ଚକର ଚୂଳେ
ରହି ଦୂରେ ଦେଖେ ପାପୀ ଚରମ ଡୋଳେ ॥ପଦ॥

ରାଶୀକୃତ ପାତକ    ଅରଜିତ ଯେତେକ
ରଉରବ ନରକରୁ ନିସ୍ତାର ମିଳେ ॥୧॥

ରହି ରହି ମରୁତ    ରଚେ ମଧୁ ସଙ୍ଗୀତ
ରମାଧବ ଗଉରବ ରଟେ ଭୂତଳେ ॥୨॥

ରଙ୍କ ରଖିଛୁ ଆଖି    ବସିଅଛୁ ଅପେକ୍ଷି
ରଜ କଣିକାଏ ପାଇଁ ଚରଣ ତଳେ ॥୩॥

ରଥ ଯାତରା ଦିନ    ରିଷ୍ଟ ହେବ ଖଣ୍ଡନ
ରହି ନରହରି ସେହି ଦିନକୁ ଭାଳେ ॥୪॥

'ଲ'

ଲକ୍ଷ୍ମୀନାନ୍ତା କାନ୍ତା ଆଗେ କହିବ ଦୁଃଖ
ଲୁହ ଲହୁ ଝରାଇ କି ଲଭିବ ସୁଖ ॥ପଦ॥

ଲଣ୍ଡଭଣ୍ଡ କରି କେତେ    ଲଟ ଦେଖୁଥିବ ସତେ
ଲସିସିବ ମେରୁଦଣ୍ଡ    ହେବ ନିରେଖ ॥୧॥

ଲଲାଟ ଅଙ୍କିତ ଗାର    ଲଙ୍ଘିବା ଯେବେ ଦୁସ୍ତର
ଲାଞ୍ଛିତ ହେବ କି ଲାଗି    ପଙ୍କଜ ମୁଖ ॥୨॥

ଲୋମ କୂପେ ମାଳ ମାଳ    ଲୋକ ହୋଇଅଛୁ ଠୁଳ
ଲୋଷ୍ଟ୍ରଚୁର ସଙ୍ଗେ    କଳ ବଳ ପରଖେ ॥୩॥

ଲୋକାନ୍ତରେ ଠେଲିଦିଅ ଲୋକହସା ନ କରାଅ
ଲଘୁ ନରହରି ଲବେ ନୋହୁ ବିମୁଖ ॥୪॥

'ବ'

ବଡ଼ ଦଗା ଦେଲୁଣିରେ ଜଗା
ବଡ଼ ହନ୍ତସନ୍ତ ହେଲିଣି ଏଣିକି
ନାହିଁ ଟିକେ ତୋତେ ଲଗା ॥ପଦ॥

ବିପତ୍ତି ପଡ଼ିଲା ବେଳକୁ କାହିଁ
ବଡ଼ ଦେଉଳରେ ଲୁଚିଲୁ ଯାଇଁ
ବଡ଼ ଦାଣ୍ଡେ ବସି ମୁଣ୍ଡ ଫଟାଉଛୁ
ରହିଲୁ ହୋଇ ଅଲଗା ॥୧॥

ବଳଗଣ୍ଡି ଠାରେ ବସିବ ମାଡ଼
ବଡ଼ ଦେଉଳକୁ ନ ଦେବ ଗୁଡ଼
ବାହୁଡ଼ା ରଥରୁ ଓଟାରି ଆଣିବ
ଅଣ୍ଟାରେ ଲଗାଇ ପଘା ॥୨॥

ବଡ଼ ଭାଇ ତୋର ଅଛୁ ମୁରବି
ବଳିଆ ପାଖରେ ବାଢ଼ିବ ଦାବି
ବିଟାଳିଆ ବୁଦ୍ଧି ବରାବର କରି
ନରହରିଙ୍କ ନ ରଗା ॥୩॥

'ଶ'

ଶୁଣିଲ ନାହିଁ, ଶୋଇ ରହିଲ ଗୋସାଇଁ
ଶରଣାଗତେ ଦରଶ କରାଇଲ କାହିଁ ପାଇଁ ॥ପଦ॥

ଶରଣପଞ୍ଜର ବାନା ନିନ୍ଦାକୁ ଡର ନାହିଁକା
ଶରବ୍ୟ କରିକି ମୋତେ ପତାକା ଦେବ ଉଡ଼ାଇ ॥୧॥

ଶରଣୀ ଦୂର ଦୁର୍ଗମ ଶୃଙ୍ଖଳ ବନ୍ଧ ଚରଣ
ଶଇଶବାବଧି ପଦ ଅନୁସରି ଅଛୁ ଧାଇଁ ॥୨॥

ଶାନ୍ତି ଯେବେ ପାଏ ଭକ୍ତ ଶୋଷ୍ମ ହରିବ କି ନାଥ
ଶରଣ୍ୟ ଶ୍ରୀ ଜଗନ୍ନାଥ ଆଉକ ବୋଲବ କେହୁ ॥୩॥

ଶୁଭଦାୟୀ ଶିଷ୍ଟପଥ ଶୁଧାରିବ ଦୁରୁଗତ
ଶୋକାକୁଳ ନରହରି ଡାକେ ଉହାଇ ଉହାଇ ॥୪॥

'ଷ'

ଷଣଫ଼ଳ ବରଣୀ ଭଦ୍ରେ, ଷାଇକୁ ତୁମର କୁହ ବୁଝାଇ
ଷଣ୍ଢାମର୍ଷ ବକାଚର୍ଯ୍ୟ ଧଣ୍ଡାମାଲ ବୁହା
ମୋ ଗୁହାରି ଶୁଣିଲ ନାହିଁ ॥ପଦ॥

ଷଟ୍‌ତ୍ରିଂଶ ନିଯୋଗ ଖଣ୍ଡା
ଷଡ଼ଅରି ଗରବ ଗଣ୍ଡା
ଷାଠିଏ ପଉଟି ଅନ୍ନ ଧ୍ୱଂସ କରି
ଦେଉଳେ ବସିଛୁ ନିନ୍ଦକ ହୋଇ ॥୧॥

ଷୋଡ଼ଶରୁ କନ୍ଧାଏ ଧରି
ଷୋଳ ସହସ୍ର ଥିଲେ ତାରି
ଷୋଳ କଳା ପୂର୍ଣ୍ଣ ପରଂବ୍ରହ୍ମ ପଦ-
ଧ୍ୟାୟୁ ନରହରି ନ ପାଏ ଯାହି ॥୨॥

'ସ'

ସାରଙ୍ଗଧର ଶ୍ରୀଧର ଶୁଣ ମୋ ଗିର
ସଙ୍ଗାଳି କରିଛୁ ମାନ ଅଭୟ ପଦକୁ ତୋର ॥ପଦ॥

ସତ୍ୟରୂପ ସନାତନ ସତତ କରି ଧିଆନ
ସରିଯିବ ଯେବେ ନିନ୍ଦା ହେବନି ଆଉ କାହାର ॥୧॥

ସିନ୍ଧୁ ସୁତା ପ୍ରାଣବନ୍ଧୁ ସାର୍ଥକ କରୁଣା ସିନ୍ଧୁ
ସିନ୍ଧୁ ଶୁଖିବନି ବନ୍ଧୁ ମାତର ଯେବେ ବାତର ॥୨॥

ସେବା ପୂଜା ଜପତପ ସାଧନା ବା ସଙ୍କଳପ
ସାଧୁ ସୁଧୀ ସମାଗମ ସୁକୃତ ନାହିଁ ମୋହର ॥୩॥

ସଙ୍କଟ କାଳରେ ସଖା ସଦାଗତ ତୁମେ ଏକା
ସମୀପରେ ଦଅ ଦେଖା ନରହରଙ୍କୁ ସତ୍ୱର ॥୪॥

'ହ'

ହଳଆ ପଦ୍ମରେ ତୋ ସାନ ଭାଇକ
ହଳପଟା ଏତେ ମୋତେ କରେ କାହିଁକ ॥ପଦ॥

ହଜାର ହଜାର ଅଛୁ ଉଦାହରଣ
ହାତ ଗଣି ଦୁଇଗୁର ଦେବ ପ୍ରମାଣ
ହରଣକୁ ତାରଛୁ ହାତୀକୁ ଉଦ୍ଧାରଛୁ
ହରଣାକ୍ଷର ଅନ୍ତ ହନ୍ତାଳି ଓଟାରଛୁ
ହରଜନ ଦାସୀଆ ହାତେ ଦେଲ ନଡ଼ିଆ
ହଜୁରଙ୍କର ଏ କଥା ହେତୁ ନାହିଁକ ॥୧॥

ହକ ଦାବ ଅଛୁ ମୁଁ କରବ ଓଜର
ହେଜ ବା ନ ହେଜ ହାଜ ହେବ ନଜର
ହନସ୍ତା ହଇରାଣ ହେଉଛୁ ଅକାରଣ
ହାହାକାରେ ଜୀବନ ଯାପୁଛୁ ଅନୁକ୍ଷଣ
ହୁଡିଲ ନରହରି ନାମକୁ ହେସ୍ତୁ କର
ହାତ ପାଉଥିଲ ଲକ୍ଷ ଦେଲ ନାହିଁକ ॥୨॥

'କ୍ଷ'

କ୍ଷମା ମାଗୁଛୁ ରମାବର
କ୍ଷିତି ତଳେ ମୁଁ ଜଣେ କରମହୀନ ନର ।।ପଦ।।

କ୍ଷତ ଉପରେ ସହୁ କ୍ଷତ
କ୍ଷୁବ୍ଧ ହେବାରୁ ଚିତ୍ତ ଅତି
(ପଡ଼ି) କ୍ଷତ ସ୍ଥାନରେ ଚୂନ ବିଲେପନ ବିଧାନ
କ୍ଷଣ କୋପେ ଉନ୍ମତ୍ତ ହୋଇ ହାରିଲି ଜ୍ଞାନ
କ୍ଷୀଣ ସ୍ୱର ଉଡ଼ୋଲି ଦେଲିଣି ବହୁ ଗାଳି
କ୍ଷମାନିଧି ମୁଁ ଅପରାଧି ପଦେ ନକର ।।୧।।

କ୍ଷଣ ଭଙ୍ଗୁର ଏ ସଂସାର
କ୍ଷଣ କ୍ଷଣକେ ଆନ ତାର
(ମଣ୍ଡି) କ୍ଷୁଦ୍ର ମାନବ ଦେଖି କ୍ଷଣେ ଯିବ ମିଳାଇ
କ୍ଷୀବ ପରାୟେ ହୋଇ ଜନମଟେ ଭ୍ରମଇ
କ୍ଷେମ ଦାତା ଅନଘ କ୍ଷାଳନ କର ଅଘ
କ୍ଷୀଣଧୀ ନରହରି ପଦ କଙ୍କର ତୋର ।।୨।।

**

**

# ତୁମେ ବଡ଼ କପଟି

## ସେଖ୍ ବାକ୍‌କର ମହମ୍ମଦ

(ବିଂଶ ଶତାବ୍ଦୀ)

[ମନ ମୂଷା ହୋ ତୁହ ଗଣ୍ଠାଇ ଖାଇ-ବୁଲେ]

ବଡ଼ ଦାଉଁ ହେ, ତୁମେ ବଡ କପଟି
ବଡ ଦାଉଁ ହେ
କାହାକୁ ହସାଅ କାହାକୁ କନ୍ଦାଅ
କଏ ଦେଲା ଦୟାନିଧି ନାମଟି ॥ଘୋଷା॥

କେ ହୁଏ ଭୂପତି କଏ ଚକ୍ରବର୍ତ୍ତୀ,
ଦାସ ଦାସୀ ପୋଇଲି ଆନ୍ତି ଖଟି
କେ ହୋଇ ଫକୀର ବୁଲେ ବାରଦ୍ୱାର
ଯୋଗୀ ହୋଇ କଏ ମାଗୁଛି ମୁଠି ॥୧॥

କେ ଘିଅ ଖେଚଡ଼ି ଖାଉଛି ହାପୁଡ଼ି
କଏ ଖାଇ କେତେ ଫିଙ୍ଗି ଦଏଟି
ଉପବାସେ କଏ ପେଟକୁ ନପାଏ
କଏ ଖାଉଅଛି ପତର ଖୁଣ୍ଟି ॥୨॥

ପାଟ ମଠା ଧୋତି କଏ ପିନ୍ଧୁ ଆନ୍ତି
କୋଟା ମୋଜାରେ କା' ଲୁଚେ ଗୋଇଠି
କଏ ବା ବିବସ୍ତ୍ର କଏ ଚିରାବସ୍ତ୍ର
କେ ପିନ୍ଧେ ପକାଇ ସତର ଗଣ୍ଠି ॥୩॥

ଭୂଲ ପୁଷ୍ପ ଶଯ୍ୟା କେ କରଇ ମଜା
ଶୋଇ ଶୋଇ ଦିନ ଯାଉଛି ଗୁଲି
ଆଉ ଜଣେ କଏ କଡଗ୍ର ନ ପାଏ
ତା' ଦିନ ଯାଉଛି ଧୂଳିରେ ଲେଟି ॥୪॥

କାହାଘରେ ଜନ ବହୁତ ସନ୍ତାନ
ନାଉ ଦେଖି ଅଣ ନାଉ ଦେଖେଟି
ଆଣ୍ଡୁକୁଡ଼ା ଘରେ ପୁଅଟି ଜନ୍ମିଲେ
ଅନ୍ତୁଡ଼ି ଶାଳରୁ ଚପୁଛି ତଣ୍ଟି ॥୫॥

କହଇ ବାକର ମୁଁ ପାପୀ ପାମର
ପୁଅ ଗୋଟେ ଦେଲ ଝିଅ ପାଞ୍ଚୋଟି
ତାଙ୍କ ପାଇଁ ଖାଦ୍ୟ ନ କଲ ବରାଦ
(ମତେ) ମୋହ ମାୟା ଭବେ ମାରୁଛ ଘାଣ୍ଟି ॥୬॥
**

**

## ନୀଳ ଶଇଳ ନିବାସୀ

### ସେଖ୍ ବାକ୍‌କର ମହମ୍ମଦ

(ବିଂଶ ଶତାବ୍ଦୀ

[ଚଲ ଚଲରେ ପତଙ୍ଗ ମେଘ-ବୃନ୍ଦେ]

ନୀଳ ଶଇଳ ନିବାସୀ ଦେବ ଶ୍ରୀହରି
ଦୂରୁ ଶୁଭେନା ଏ କି ଗରିବ ଗୁହାରି
ବଡ଼ ପାଚେରୀ ଘେରାଇ ବଡ଼ ଦେଉଳ ତୋଳାଇ
ବସିଛ ମଝିରେ ଦାରୁଭୂତ ମୁରାରି ॥ଘୋଷା॥

ଆଁତଙ୍କରେ ପକ୍ଷୀ ଗଜେନ୍ଦ୍ରକ ଡାକିଲା ରକ୍ଷ ହେ ଚତୁର୍ଭୁଜ
ଆଇଣ ଲକ୍ଷେ ଯୋଜନେ ତା' ଡାକ ଶୁଣିଲ କର୍ଣ୍ଣେ
ମୋ ବେଳକୁ କଂପା ହୁଅ ବଧିର ପରି ? ॥୧॥

ଘୋର ବନେ ଡାକିଲା ମୃଗୁଣୀ ଦୂରେ ଆଇ ପାରିଲ ତା'ଶୁଣି
ବରଷା ଥିଲଟି କାହିଁ ପବନ ଆସିଲ ଧାଇଁ
ବ୍ୟାଧ ନାଶି ମୃଗୁଣୀକୁ କରିଲ ପାର ॥୨॥

ସୁଦାମାର ଦୁଃଖକଷ୍ଟ ହାରି ମୋର ଲୋଡ଼ାନାହିଁ ସେହିପରି
ଲୋଡ଼ା ତୋ ରଙ୍ଗପଦ୍ମର ଆହେ ପ୍ରଭୁ ଚକ୍ରଧର
ଜଣାଯାଏ ଶୁଣ ତୁମ୍ଭେ ସୁଦର୍ଶ୍ୱା କର ॥୩॥

ସାଗର ସୋ୍ତ ମୁଖରେ ମୁହିଁ ଭାସି ଯାଉଛି ରଖ ଗୋସାଇଁ
ଆତଙ୍କ ନାଶନ ବାନା ମୋପରେ ନୁହଁ ବିମନା
ନାବିକ ହୋଇଣ କୂଳେ ଲଗାଅ ତରି ॥୪॥

ଦ୍ରୌପଦୀକୁ କୁରୁସଭା ତଳେ ଦୁଶା ବିବସ୍ତ୍ର କରିଲାବେଳେ
ସତୀର ଆତଙ୍କ ଜାଣି କୋଟି ବସ୍ତ୍ର ଦେଲ ଆଣି
କେତେ ବଡ଼ ଲଜ୍ୟାରୁ ଯା'ନେଲ ସୁଧାରି ॥୫॥

ଯେତେ କୀର୍ତ୍ତି ରଖିଛ ଜଗତେ
ହେଜ ହେଜ ବା କହିବ କେତେ
ନ ଦେଖେ ପୋଥି ପୁରାଣ, ବାକର ମିଆଁ ଯବନ
ପ୍ରାଣଯାଉ ମୋର ମା' ଶାରଳା ସୁମରି ॥୬॥

**

**

# ବାରେ ଚକାନୟନ

## ସେଖ୍ ବାକ୍‌କର ମହମ୍ମଦ

(ବିଂଶ ଶତାବ୍ଦୀ)

[କେବ୍ର ସାମନେ ତୋ ଆଓ ଚଲସ୍ଥେ-ବୃଝେ]

ବାରେ ଚକା ନୟନ ଦିଅ ଖୋଲି ହେ
ତୁମକୁ ପରଶ ନେବ ନାହିଁକି ?
ସାରା ଦୁନିଆଁ ଗଢ଼ିଛ ପରମାତ୍ମା
ଏଠି ଏଡ଼େ ଅବିଚାର କାହିଁକି ? ।।ଘୋଷା।।

ବୋହିଯାଏ କାଁର ଘିଅ ମହୁକ୍ଷୀର
ନ ପାଉଛି କିଏ ପେଟକୁ ଆହାର
ଆଉ ଜଣେ କିଏ ବୁଲି ବୁଲି ଧାଇଁ
ତାକୁ କେ କରିଲା ଦାଣ୍ଡର ଫକୀର
ଜଣେ ହାକିମ ଆଉ ଜଣେ ମୂଲିଆ
ଏହା କେ କଲା ହେ ଧଣ୍ଡାମାଲିଆ
ଖେଳ ଲଗାଇଛ ଜଗାକାଳିଆ ?
ନୀଳାଚଳେ ବସି ଆଇଁକି ? ।।

ବଡ଼ଆଶା କରି କହେ ବନ୍ଧଧାରୀ
ଡାକିଲେ ନ ଶୁଣ ଏ ଦୀନ ଗୁହାରି
ଆଉ କିଏ ଅଛି ମୋର ଆପଣାର
କାହା ପାଖେ ଭିକ୍ଷା ମାଗିବ ଭିକାରୀ

ତୁମେ ଧରିଛ ଧରମ ନିକାତ୍ତ
ଶୁଣିବାକୁ ଦୁଃଖି ଜନ ଆର୍ତ୍ତ
ନ ଶୁଣିଲ ମୋର ଆପତ୍ତି
ହୁଏ ଏ ନିଷ୍ଠୁର ମୋହ ପାଇଁକି ॥

ଆରାଧନା କରି ପାଇଲେ ଯାତନା
ଶକ୍ତି ଦିଅ ମୋରେ କରିବି ତା ସେନା
ଜାଣୁ ଜାଣୁ ହରି ପ୍ରାଣୁ ଦେଲେ ମାରି
ତୁମେହିଁ ଶୁଣିବ କନ୍ଦାର ବାଜଣା
ଜଗତ ଠାକୁର ହୋଇଣ
ଭୃତ୍ୟଠାରେ ହେଲେ ପ୍ରଭୁ କୃପଣ
କେଉଁ ଯଶ ଲଭିବ ଯେ ଆପଣ
ଦୁଃଖୀ ମରେ ତୁମ ପଦ ଧ୍ୟାଇଁକି ॥

କାଳ ସମୟରେ ଦୁଃଖୀ ଜନଠାରେ
ନିର୍ଦ୍ଦୟ ନ ହୁଅ ପ୍ରଭୁ ମୋହଠାରେ
କହଇ ବାକର ଆହେ ଚନ୍ଦଧର
ଦେଲ ଯେଉଁ ଦୁଃଖ ସହି ମୁଁ ନପାରେ

ତୁମ୍ଭେ ଶୁଣ ବାରେ ମୋର ଆପତ୍ତି
ତୁମ୍ଭ ଶ୍ରୀ ଚରଣେ ମୋର ବିନତି
ଶେଷେ ମାଗୁଣି ଏ ମୋର ଏତିକି ॥
**

**

# ଅନାଡ଼ଆ ଜଗନ୍ନାଥ

## ସେଖ୍ ବାକ୍‌କର ମହମ୍ମଦ

(ବିଂଶ ଶତାବ୍ଦୀ)

[ଚକାଡୋଳା କର୍ମା-ବୃତ୍ତେ]

ଅନାଢ଼ଆ ଜଗନ୍ନାଥ
ତୋର ଖଣ୍ଡିଆ ହାତରେ ଅନାଢ଼ଆ ଜଗନ୍ନାଥ
ଭାଇ ଭଉଣୀଙ୍କୁ ପାଖରେ ବସାଇ
(ମତେ) ପଇସା ଲୋଭରେ ବିକିଲୁ ଭାତରେ
ଅନାଢ଼ଆ ଜଗନ୍ନାଥ ।। ଘୋଷା ।।

ବସି ନୀଳାଚଳେ ସେ ବଡ଼ ଦେଉଳେ
ବୌଦ୍ଧ ଅବତାର କଳିରେ ଖ୍ୟାତ
ନୀଳଚକ୍ରବାନା କରି ସୁମରଣା
ଉଦ୍ଧାର ହୁଅନ୍ତି କେତେ ପତିତ
ଧନ୍ୟ ସେ କ୍ଷେତ୍ର
ଦରଶନ ମାତ୍ରେ ପାପ ଦୂରିତ ରେ ।।୧।।

ଦୀନବନ୍ଧୁ ବୋଲି ନାମ ଶୁଣିଥିଲି
ଦେଖାଇ ପାରିବ ପୁରାଣ ଶାସ୍ତ୍ର
ମୋର ଦୁଃଖ ଦେଖି ଗଲନି ଚମକି
ଫୁଟି ଯାଇଛି କି ତୋ ଚକାନେତ୍ର
ହେ ରମାକାନ୍ତ
କି ଅବା ବଧିର ତୋ ଶ୍ରୁତିପଥ ରେ ।।୨।।

କା ଦୁଃଖ ହରୁଛ    କାହାକୁ ତାରୁଛ
ମନକୁ ପଚ୍ଛର ହୃଦରେ ଚେତ
ଲକ୍ଷେ ଯୋଜନକୁ    ପଠାଇ ଚକ୍ରକୁ
କୁମ୍ଭୀରକୁ କଲୁ ପରାଣୁ ହତ
ମିଛ କି ସତ
ରକ୍ଷା କଲୁ ପୁଣି ଗଜ ଆରତ ରେ ।।୩।।

ଶୁଣି ଯେତେବେଳେ    କୁରୁସଭା ତଳେ
ଦ୍ରୌପଦୀକୁ ଦୁଶା କଲା ବିବସ୍ତ୍ର
ବାହୁ ଟେକଦେଲ    ତାକୁ ରକ୍ଷାକଲ
ତା' ଡାକ ବାଜନ୍ତେ ତୋ ଶ୍ରୁତପଥ
ଦେଖି ତା ବ୍ୟସ୍ତ
କେ ଯୋଗାଇଥିଲା ଏ କୋଟି ବସ୍ତ୍ର ରେ ।।୪।।

ବନପୋଡ଼ା ବେଳେ    ମୃଗୁଣୀ ବିକଳେ
ଡାକିଲା ରକ୍ଷା କର ହେ ଅଚ୍ୟୁତ
ଚକ୍ର କୂଟେ ମାୟା    ବିସ୍ତାରିଣ କାୟା
ମୃଗୁଣୀକୁ କଲ ବହ୍ନୁ ମୁକତ
ନୁହେଁ ଗୁପତ
ଶ୍ୱାନସନ୍ଧ ମଲା ଦୃଷ୍ଟ ଜଗତ ରେ ।।୫।।

ଆହୁରି ଗୋଟିଏ    ପ୍ରମାଣ ଦେଉଛୁ
ଅଜାମିଳ ପାପୀ ତାର ଅଛତ
କସ ଲଞ୍ଚ ଦେଲା    ମୁକତି ପାଇଲା
ମୋ ବେଳକୁ ତରଲେ ନାହିଁ ଚଞ୍ଚ
ତା ଠାରୁ ମୁଁ ତ
ନୁହେଁ ହୀନସ୍ଥାନ ଜନ ପତିତ ରେ ।।୬।।

ଦନବାଧ ଡାକ    ତଣ୍ଟି ଯାଏ ଶୁଖି
ତେବେ ମୋ ଦୁଃଖ ନହୁଏ ଦୂରତ

ଇଚ୍ଛା ସୁଖେ ଗାଳି ଦେବ ବନମାଳୀ
ଏଣିକି ଗରମ କରି ରକତ
ହୁଅ ଶକତ
ଗାଳି ଶୁଣି ସମ୍ଭାଳି ରହିବତ ରେ ॥୭॥

ଜାଣେ ଖଣ୍ଡି ଖୁଦ ସୁଦାମା ଦରିଦ୍ର
ଲକ୍ଷ ଦେଇଥିଲା ନୁହଁ ଗୁପତ
ସେଇ ଲକ୍ଷ ପାଇ ଖୁଦ ଗଣ୍ଡାଖାଇ
ଦେଇଅଛ ତାକୁ ଅମୂଲ୍ୟ ବିତ୍ତ
ମନରେ ଚିନ୍ତ
ତାହାକୁ ଆଦର ସରି ନାହିଁତ ରେ ॥୮॥

ଶବରୀ ଅଇଁଠା ବ୍ରାହ୍ମଣ ଗୋଇଠା
ଖାଇଛ କି ନାହିଁ କୁହନି ସତ
ନ ବୁଝିଲେ ମନ ଦେଉଛୁ ପ୍ରମାଣ
ଶ୍ରୀ ବକ୍ଷ ବ୍ରାହ୍ମଣ ମାଇଲା ଲାତ
ମାଡ଼ ଆଘାତ
ଖାଇ ହୃଦେ ବହିଅଛ କେମନ୍ତ ରେ ॥୯॥

ଆଣ୍ଟେ ନରପଶୁ ରତ୍ନାକର ଦସ୍ୟୁ
କେତେ ପାପ ତାର କହି ନୁହେଁତ
କସ ଲକ୍ଷ ପାଇ ତାକୁ ସ୍ୱରସ୍ତାଇ
ରାମ ଅବତାରେ କଲ ମୁକତ
ବାଲ୍ମୀକୀ ଖ୍ୟାତ
ସେ ରଚିଥିଲେ ରାମାୟଣ ଗ୍ରନ୍ଥ ରେ ॥୧୦॥

ମନରେ ମୋହର ପଡ଼ିଲା ଆଦର
ଦ୍ୱାପରର କଥା କହି ନାହିଁତ
କଂସର ଭୟରେ ଜନ୍ମି ବନ୍ଦୀ ଘରେ
ଗୋପ ପୁରେ ହୋଇ ନନ୍ଦ ସୁତ
ଗଉଡ଼ ଜାତ
ଖାଇ କରିଅଛ କାର୍ଯ୍ୟ ବିଚିତ୍ର ରେ ॥୧୧॥

କ୍ଷୀର ପାନ ଦେଇ     ପ୍ରାଣ ବଞ୍ଚାଇଲ
ଶେଷକୁ ପୂତନା କଲ ନିହତ
ଭାଙ୍ଗି ଠେକ ବେକା     ଛିଣ୍ଡାଇଲ ଶିକା
ଚୋରି କଲ ସର ଲବଣୀ ଘୃତ
ଖାଇ କେମନ୍ତ
ଗଉଡୁଣୀ କେତେ ମାରନ୍ତ ବେଢ଼ି ରେ ॥୧୨॥

ହେଜି ନାଥ ମନେ     ଯାଇ ରଘୁବନେ
ଅଙ୍ଗୁଳରେ ଧରଥିଲୁ ପର୍ବତ
ବଇଁଶୀ ବଜାଇ     ମନକୁ ମଜାଇ
ଗୋପୀଙ୍କର ନେଲୁ ମାନ ମହତ
ନୁହେଁ କି ସତ
ପ୍ରମାଣ ଦେଉଛୁ ଶ୍ରୀ ଭାଗବତ ରେ ॥୧୩॥

ପୁଣି ଦାନକରେ     ଯମୁନା ଘାଟରେ
ଘାଟ ସାଧୁଥିଲୁ ହୋଇ କୈବର୍ତ୍ତ
ରାଧା ପ୍ରେମେ ବାଇ     ହୋଇ ଭାବଗ୍ରାହୀ
ଯମୁନା ମଝିରେ କଲୁ ଯେ କୃତ୍ୟ
କହୁ ନୁହେଁତ
ନାଗ ଚଢ଼ ଚୋର ଯଶୋଦା ସୁତ ରେ ॥୧୪॥

ଗୋପୀଙ୍କ ପାଲଟା     ବସ୍ତ୍ର ଚୋରି କରି
ଭାଙ୍ଗି ଦେଲୁ ତାଙ୍କ ରବିଙ୍କ ବ୍ରତ
ଜାନୁ ଯଉବନ     ଦେଖିବା ଛଳରେ
ମୋହନୀ ମନ୍ତ୍ରକୁ ଫୁଙ୍କି ବାରୁତ
ଗୋପୀ ସମସ୍ତ
ବସ୍ତ୍ର ମାଗିନେଲେ ଯୋଡ଼ିଣ ହସ୍ତ ରେ ॥୧୫॥

ପଦ୍ମ ଫୁଲ ତୋଳି-     ଦେଲୁ ବନମାଳୀ
କାଳନ୍ଦୀ ହ୍ରଦରେ କଲୁ ଯେ ନୃତ୍ୟ

କାଳି ଶିରେ ଚଢ଼ି          କାଳିଦର୍ପ ଦଳି
ମୁରଲି ବଜାଇ ଗାଇଲୁ ଗୀତ
ମୋହିଲୁ ଚିତ୍ତ
କାଳିନ୍ଦୀ ଜଳକୁ କଲୁ ପବିତ୍ର ରେ ॥୧୬॥

ଦିନେ ରାଧା ପୁରେ          ଚନ୍ଦ୍ରସେଣା ଡରେ
ରାଧା ଘରେ ହେଲୁ ଚାବନା ଭୃଙ୍ଗ
କୁବୁଜା ତାରିଲୁ          କଂସକୁ ମାରିଲୁ
ମାମୁଁ ଉପରୋଧ ନ ରଖିଲୁତ
ଧନ୍ୟ ତୋ କୃତ୍ୟ
ଅନ୍ତ ନାହିଁ ଯେଣୁ ନାମ ଅନନ୍ତ ରେ ॥୧୭॥

ରୁକ୍ମଣୀକୁ ସ୍ନେହ          କରିଅଛୁ ହରି
ନାରୀ ଶ୍ରେଷ୍ଠ ବୋଲି ରଟେ ଜଗତ
ବୃନ୍ଦାବତୀ ସତୀ          ହେ କମଳା ପତି
ନଷ୍ଟ କରିଦେଲୁ ତାର ସତୀତ୍ୱ
ନୁହେଁ କି ସତ
ଯେତେକ ପ୍ରମାଣ ଦେଇ ଗଲିତ ରେ ॥୧୮॥

ଆହୁରି ପ୍ରମାଣ          ଦେଉଛନ୍ତି ପୁରାଣ
ଲେଖିଲେ ବାହୁଲ୍ୟ ହେବ ବହୁତ
ତୋର ଆଦିଅନ୍ତ          ବ୍ରହ୍ମାଙ୍କୁ ଅଜ୍ଞାତ
ମୁଁ ଛାର ମନୁଷ୍ୟ କେତେକ ମାତ୍ର
ହେ ରମାକାନ୍ତ
ମା' ସାରଳା ପାଦେ ରହୁ ମୋ ଚିତ୍ତ ॥୧୯॥

ପଢ଼ି ନାହିଁ ଅଭିଧାନ          ବ୍ୟାକରଣ
ଅମର କୋଷ ଭୂଗୋଳ ସାହିତ୍ୟ
ଗ୍ରନ୍ଥକୁ ଡରଣ          ପାଠ ନ ପଢ଼ି ଣ
ମା' ସାରଳା ପାଦେ ରଖିଲି ଚିତ୍ତ
ଯବନେ ଜାତ
ବାକରକୁ କଂପା କଲି ଏମନ୍ତ ରେ ॥୨୦॥

**

**

# ପ୍ରଭୁ ଦୟାଳୁ ହରି

## ସେଖ୍ ବାକ୍‌ଜର ମହମ୍ମଦ

(ବିଂଶ ଶତାବ୍ଦୀ)

[ସ୍ୱରୁ ଗୁନ୍ଧମାରବ ତାଳେ ମିରବେ ଝଦ-ଝୂଲେ]

ପ୍ରଭୁ ଦୟାଳୁହରି ଦୁଃଖ ଦେଖି ମୋହରି
ତୁମେ ଗଲକ ଡରି ଡରନା
(ମୁଁ) ବଡ଼ ଆଶା କରି ଡାକେ
ଡାକ ଶୁଣନା ॥ ଘୋଷା ॥

ମାଗେନା ମୁଁ ଧନଜନ
ମାଗେନା ମୁଁ ସମ୍ପଦ
ଲୋଡ଼େ ନାହିଁ ଦିଅ ମୋତେ
ଇନ୍ଦ୍ରଙ୍କ ଇନ୍ଦ୍ରପଦ
ଲୋଡ଼ା ତୁମ୍ଭ ପୟର
ଆଶ୍ରା ଦିଅନ୍ତୁ ମୋରେ
ଆଉ ନାହିଁ କାହିଁରେ କାମନା ॥୧॥

କଏ କସ ଦେଲ ପ୍ରଭୁ
ମୁଁ କ ଅବା ନ ଦେଲି
ସେ ଯୋଗେ ହେ ମହାବାହୁ
ତୁମ୍ଭର ମୁଁ ନ ହେଲି
ଯାହା ଇଚ୍ଛା ତୁମ୍ଭର
ତାହା ଦିଅନ୍ତୁ କରି
ଭଜୁଥିବ ଶ୍ରୀହରି ଭଜନା ॥୨॥

ପତିତ ଜନଙ୍କୁ ପ୍ରଭୁ
ଉଦ୍ଧାରିବା ପାଇଁକି
ପତିତପାବନ ବାନା
ବୋଲାଇଛ କାହିଁକି ?
ଏବେ କରନ୍ତୁ ତାହା
ଦାସ ପ୍ରତିକି ସାହା
ହେଉ ସେ ଚଉବାହା କରୁଣା ॥୩॥

ତୁମ୍ଭ ପରିପ୍ରଭୁ ଥାଉଁ
ହେଲେ ମୋରେ କୃପଣ
ହସୁଥିବେ ଦେଖୁଥିବେ
ଏହି ଜଗତଜନ
ମୋହ ପରିସ୍ଥ ଦୁଃଖୀ
କାହିଁ ଅଛକି ଦେଖି
ନୁହଁ ହେ ଚକାଆଖି ବିମନା ॥୪॥

ଗଉରବ କରି କେତେ
ଗାଉଥାନ୍ତି ଭଗାରି
କର୍ଣ୍ଣ ଭରି ସବୁ ଶୁଣେ
ନେଜ୍ ବୁଝାଇ ବାରି
ତୁମ୍ଭେ ରହିଛ ସାକ୍ଷୀ
ମୁଁ ଯେ କହୁଛି ଡାକି
ସେତେବେଳକୁ ଫାଙ୍କି ଦେବନା ॥୫॥

ବିପଦର ଧାଡ଼ି ଯେତେ
ଯେତେ ଆସଇ ମାଡ଼ି
କେତେ ବା କହିବି ହେଜି
ମନରୁ ଯାଏ ହୁଡ଼ି
ଭକ୍ତ ବତ୍ସଲ ଦାତା
ତୁମ୍ଭଙ୍କୁ କେଉଁ କଥା
ଛପି ରହିଛି କି ତା ଅଜଣା ॥୬॥

ମୋର ଶେଷ ସମୟରେ
ଜପିଣ ନାମ ତବ
ଏତ୍କ ଦୟା ରଖିଥିବ
ଗଲ୍‌ବେଳେ ଏ ଜୀବ
ଜିହ୍ୱା ଅଗ୍ରରେ ଜାଣ
ଥିବ ହେ ନାରାୟଣ
ତେବେ ପୁରିବ ମନ କାମନା ।।୮।।

ଶେଷେ ମୋର ଦରଖାସ୍ତ
ଅଟେ ପ୍ରଭୁ ଏଢକ
କର ଯୋଡ଼ି ଜଣାଉଛୁ
ଶ୍ରୀ କମଳା ପତିଙ୍କି
ନୁହେଁ ମଉନ ମୁହାଁ
ଚେଇଁ ଗୁହ୍ନୁଁ ନା କର୍ଥା
ଡାକେ ବାକର ମିଆଁ ରଚନା ।।। ।।

**

**

## ନନ୍ଦ ନନ୍ଦନ ହେ ଜଗା କାଲିଆ

### ଶେଖ୍ ବାକ୍‌ର ମହମ୍ମଦ

(ବିଂଶ ଶତାବ୍ଦୀ)

[ବିଭୁ ଭଙ୍ଗି ଦାଅ ଖେଳ ଚଞ୍ଚଲ-ବୃନ୍ଦେ]

ନନ୍ଦ ନନ୍ଦନ ହେ ଜଗା କାଲିଆ
କଲି ଯୁଗେ ହେଲ ଜଲ ଚଲିଆ
ମୋର୍ ଫିରାଦକ ନାହିଁ ଶୁଭେଁ ହେ
(ପ୍ରଭୁ) ଗୋପାଲୁଜ ଠୁକ୍କ ମେଲିଆ ।। ଘୋଷା ।।

ଆର୍ କେନ୍ତା କଣ ଡାକନ୍ତୁ ହେ ହରି
ସେଇ ଭଲି ଡାକନ୍ତୁ ଶିଖା ଦେ
ଅଶେଷ ଭଲି ହେ ବନମାଲି
ତୋର୍ ନାମ ରହିଛୁ ଜଗତେ
ସକାଲେ ବେଲ୍ ବୁଡ଼େ ଯେତେ ଡାକ୍‌ଲି
ତୋର ମାୟା ନାହିଁ ଜାନି ପାର୍‌ଲି
କପାଲେ ଜଣାଅଛୁ ମୁଁ ଶବ୍‌ଲି
କାନ୍ ନାହିଁ ହେଲୁ କାଲ୍ ଭଲିଆ ॥ ୧ ॥

ବନରେ ହରିନ ଡାକ୍‌ଲା ବେଳେ
କେନ୍ତା କଣ ଡାକ୍ ଶୁନିଲୁ
ହାତୀ ଯେ ଡାକ୍‌ଲା ତା ଡାକ ଶୁଣିଲ
ରଖ୍‌ଲି କୁମ୍ଭୀର କବଳୁ
ପାଞ୍ଚାଲୀ ଡାକ୍‌ଲା କୁରୁ ସଭାରେ
କୋଟି କୋଟି କପଡ଼ା ଦେଲୁ ତାହାରେ
ଦୟାଲୁ ନାହିଁ ବାହୁଲ ମୋ ପରେ
କେଁ ଦୁଃଖା ଅଛୁ ମୋର୍ ଭଲିଆ ॥ ୨ ॥

ମୋର୍ ପରି ଦୁଃଖୀ ହେ କମ୍‌ଲ ଆଖି
ହୃନଆତେ ନାହିଁ ନେ ଦେଖ
ଡାକେଁ ଡାକେଁ ମୋର ହଲକ୍‌ଠା ଶୁଖିଲା
ତୁହ୍ମେ ଯେ ହୋଇଲ ବିମୁଖ
ସବ ବନୋଦିଆ ପ୍ରଭୁ ଶ୍ରୀ ହରି
ଶୁନ୍ ଶୁନ୍ ଏ ଗରିବ ଗୁହାରି
ବଦନ୍ କାଣ୍ଠା ହେଲାଣି ଝୁରି ଝୁରି
ଆଁଖି ଖୁଲି ଦେଖ୍ ମୟୁର ଚୂଲିଆ ॥ ୩ ॥

ଧ୍ରୁବ ପ୍ରହ୍ଲାଦ ବିଷମ ପ୍ରମାଦେ
ଭଲି ଭଲି ବେଶ ରଖିଛୁ
ଇନ୍ଦ୍ରର ଗର୍ବ ଖର୍ବ ଯେ କରି
ଡବରି ହାତେ ପାହାଡ଼ ଧରିଛୁ

କେଜ୍ରା ଭୂଷା ହେଲ ମୋର୍ ବେଲ୍‌କୁ
ଯେତେ ଘବ୍ରାଇ ଡାକୁଁଛେ ତୁମ୍‌କୁ
ଆଉ ଶୁନବକ ମଲବେଲ୍‌କୁ
ବାକ୍‌କର ଡାଁକ ଡାଁକ ହେଲ ହାଲ୍‌ଆ ॥ ୪ ॥

**

**

## ବଡ଼ ହଅଁ କେ କହେ କାହଁକ

### ଶେଖ୍ ବାକ୍‌କର ମହମ୍ମଦ

(ବିଂଶ ଶତାବ୍ଦୀ)

[ଜବ୍ ପ୍ୟାର କ୍ୟାତୋ ଡରନା କ୍ୟା-ବୃତ୍ତେ]

ବଡ଼ ହଅଁ କେ କହେ କାହିଁକ
ବଡ଼ ହଅଁ କେ କହେ କାହଁକ
ବଡ଼ ଯେ କହେ ମୋ ପ୍ରାଣ ଦହେ
ବଡ଼ ଯେ କହେ ମୋ ପ୍ରାଣ ଦହେ
ଖଣ୍ଡରୁ ଅଧିକ ତୁମେ କ
ବଡ଼ ହଅଁ କେ କହେ କାହିଁକ ॥ ଘୋଷା ॥

କପଟ ବହୁ ବାମନ ହୋଇ
ପାତାଳେ ଚ୍ଛପିଲ ବଳକ
ବଳି ସମ୍ପଦ ନେଇ ଗୋବନ୍ଦ
ସଖା ସୁଦାମାକୁ ଦେଲ କ ॥ ୧ ॥

ସୁଗ୍ରୀବେ ମିତ ହେଲ ଅଚ୍ୟୁତ
ଆପଣାର ସ୍ୱାର୍ଥ ପାଇଁକ
କପଟ କର ବାଲୀକୁ ମାର
ରଜା କରଇଲ ସୁଗ୍ରୀବ ॥ ୨ ॥

ବଇ ଲୋଚନ ନେଲ ତାଂ ପ୍ରାଣ
କପଟେ ହୋଇ ତା' ନାଶକ
ବୃନ୍ଦାବତୀର ନେଲୁ ସତୀତ୍ୱ
ଜଳନ୍ଧର ରୂପ ଧରିକ ॥୩॥

କୁଞ୍ଜ ବନରେ ବଂଶୀ ସ୍ୱନରେ
ଷୋଳ ସସ୍ର ଗୋପୀ ମୋହକ
ରଚ କପଟ ସାଧିଲ ଘାଟ
ଝାପର କଲଯା ମାଇଁକ ॥୪॥

ଗୋପୀକା ଗଣ ବସ୍ତ୍ର ହରଣ
ଯାହା ଅପମାନ କଲକ
କୁରୁ ସଭରେ ବିବସ୍ତ୍ର ବେଳେ
ଦ୍ରୌପଦୀକୁ ତାହା ଦେଲକ ॥୫॥

ହେ ମାୟାଧର ମାୟା ତୁମର
ବ୍ରହ୍ମା ଶିବ ନ ପାଆନ୍ତ କ
ମର୍ତ୍ତ୍ୟ ମାନବ କାହୁଁ ଜାଣିବ
ଆଦ୍ୟଅନ୍ତ ଯାର ନାହିଁକ ॥୬॥

କଳି ଯୁଗରେ ନୀଳା ଚଳରେ
ଦାରୁବ୍ରହ୍ମ ରୂପ ଧରିକ
ମୂକ ଦେବତା ନ କହେ କଥା
ଏ ବାକରମିଆଁ ପାଇଁକ ॥୭॥

**

**

# କିଏ ଦେଲା ଦୟାନିଧି ନାମଟି

## ସେଖ୍ ବାକ୍‌କର ମହମ୍ମଦ

(ବିଂଶ ଶତାବ୍ଦୀ)

[ମନ ମୂଷା ହୋ ତୁହ ଗଞ୍ଜାଇ ଖାଇ-ବୃଣେ]

ବଡ ଢଅଁ ହେ, ତୁମେ ବଡ କପଟି
ବଡ ଢଅଁ ହେ
କାହାକୁ ହସାଅ କାହାକୁ କନ୍ଦାଅ
କିଏ ଦେଲା ଦୟାନିଧି ନାମଟି ।।ଘୋଷା।।

କେ ହୁଏ ଭୂପତି କିଏ ଚକ୍ରବର୍ତ୍ତୀ
ଦାସଦାସୀ ପୋଇଲି ଥାନ୍ତି ଖଟି
କେ ହୋଇ ଫକୀର ବୁଲେ ଦ୍ୱାର ଦ୍ୱାର
ଯୋଗୀ ହୋଇ କିଏ ମାଗୁଛି ମୁଠି ।।୧।।

କେ ଖିରି ଖେଚଡ଼ି ଖାଉଛି ହାପୁଡ଼ି
କେତେ ଖାଇ କେତେ ଫିଙ୍ଗି ଦିଏଟି
ଉପବାସେ କିଏ ପେଟକୁ ନପାଏ
କିଏ ଖାଉଅଛି ପତର ଗୁଟି ।।୨।।

ପାଟମଠା ଧୋତି କିଏ ପିନ୍ଧିଥାନ୍ତି
କୋତା ମୋଜାରେ କା ଲୁଚେ ଗୋଇଠି
କିଏ ବା ବିବସ୍ତ୍ର କିଏ ଚିରବସ୍ତ୍ର
କେପିନ୍ଧେ ପକାଇ ସତର ଗଣ୍ଠି ।।୩।।

ତୁଳିପୁଷ୍ପ ଶଯ୍ୟାକେ କରଇ ମଜା
ଶୋଇ ଶୋଇ ଧନ ଯାଉଛୁ ଗୁଳି
ଆଉ ଜଣେ କଏ କଡର୍ ନ ପାଏ
ତା' ଧନ ଯାଉଛୁ ଧୂଳରେ ଲେଟି ।।୪।।

କାହାଘରେ ଜନ ବହୁତ ସନ୍ତାନ
ନାଢ ଦେଖି ଅଣନାଢ ଦେଖେଟି
ଅଣ୍ଟୁକୁଡ଼ା ଘରେ ପୁଅଟି ଜନ୍ମିଲେ
ଅନୁଡ଼୍ ଶାଲରୁ ଚପୁଛୁ ତଣ୍ଟି ।।୫।।

ଜନ୍ମଇ ବାଜର ମୁଁ ପାପୀ ପାମର
ପୁଅ ଗୋଟେ ଦେଲ ଝିଅ ପାଞ୍ଚୋଟି
ତାଙ୍କ ପାଇଁ ଖାଦ୍ୟ ନ କଲ ବରାଦ
ମତେ ମୋହ ମାୟା ଭବେ ମାରୁଛ ଘାଣ୍ଟି ।।୬।।

**

**

## ପୁରୀ ଦେଉଳ ମନ୍ଦିର ଭିତର

### ଶେଖ୍ ବାକ୍‌କର ମହମ୍ମଦ

(ବିଂଶ ଶତାବ୍ଦୀ)

[ସମ୍ବଲପୁରୀ ଭାଷାରେ ଗାଇବ]

ପୁରୀ ଦେଉଲ ମନ୍ଦର୍ ଭିତର
କେନ୍ତା ମଉନେ ବସିଛୁ
ହାଏ ମାପୁର କାଁ ଏଁ ହେଲା ଯେ ମୋର୍
ଗୁହାରଟା ନାହିଁ ଶୁନୁଛେ ।। ଘୋଷା ।।

ସତ୍ୟବ୍ରତ ରଜା କେ ରୂପେ
ଯେନ୍ ଭବେ ପ୍ରାନ ରଖିଲୁ
(ତୁଯେ) ଯେନ୍ ଭବେ ପ୍ରାନ୍ ରଖିଲୁ
ପ୍ରଲୟ ବେଲେ ନାଆର ଘରେ
ବାଞ୍ଛବା ସୁଜ କହ୍ନଲୁ
ଶଙ୍ଖାସୁର୍‌ଠାର ଜାନ୍ ନିକାଲି
ଶଙ୍ଖାସୁର୍‌ଠାର ଜାନ୍ ନିକାଲି
ବ୍ରହ୍ମାଙ୍କୁ ବେଦ ଦେଇଛୁ
ହାଏ ମାପୁର କାଁ ଏଁ ହେଲା ଯେ ମୋର୍
ଗୁହାରଠା ନାହିଁ ଶୁନୁଛେ ॥୧॥

ସତ୍ୟ ଯୁଗେ ବାମନ୍ ରୂପେ
ବଲ୍‌କ ଦାନ ମାଗ୍‌ଲୁ
(ତୁଯେ) ବଲ୍‌କ ଦାନ୍ ମାଗଲୁ
ନାହିଁ ଜାନ ସେ ସତ୍ୟ କଲା
କେନ୍ ଭଲ୍ ତାକେ କରଲୁ
ତିନପାଦ ଜମିନ ମାଗି
ତିନପାଦ ଜମିନ ମାଗି
ବଲ୍‌କ ପାତାଲେ ଚପିଛୁ
ହାଏ ମାପୁର କାଁ ଏଁ ହେଲା ଯେ ମୋର୍
ଗୁହାରଠା ନାହିଁ ଶୁନୁଛେ ॥୨॥

ତ୍ରେତୟା ଯୁଗେ ରାମ ଅବ୍‌ତାରେ
ତାଡ୍‌କାସୁରୀ ମାଏଲ୍
(ତୁଯେ) ତାଡ୍‌କାସୁରୀ ମାଏଲୁ
ଅହଲ୍ୟାନାରୀ ପଷାନୁ ତାରି
ମିଥିଲାର ଧନୁ ଭଙ୍ଗ୍‌ଲୁ
ଆରା ରେକେ ପଶୁ ମରାନ
ତାଁ'ଠା ଦପ ହରିଛୁ
ହାଏ ମାପୁର କାଁ ଏଁ ହେଲାଯେ ମୋର
ଗୁହାରଠା ନାହିଁ ଶୁନୁଛେ ॥୩॥

ତ୍ରେତାର ସତ୍ୟେ ଦଶରଥ ଘରେ
ଦୋଷ ନାହିଁ ବାଲି ମାରିଲୁ
ସୁଗ୍ରୀବରେ ମିତ ବଳିଲୁ ତରୁ
ଏଲ୍ଡା କାଁଣ। ପାଇଁ କରିଲୁ
ରାବଣ ବଂଶ କରି ବିନାଶ
ବିଭିଷଣେ ରାଜା କରିଲୁ
ହାଏ ମାପ୍ରୁର କାଁଏଁ ହେଲୁ ଯେ ମୋର
ଗୁହାରଟା ନାହିଁ ଶୁନୁଛେ ॥୪॥

ଦ୍ୱାପର ଯୁଗେ ଦେବ୍କି ଗର୍ଭେ
ଗୁପ୍ତେ ହେଇଲୁ ଜନ୍ମ
(ତୁଯେ) ଗୁପ୍ତେ ହେଇଲୁ ଜନ୍ମ
କାଁଏଁ ଦେଲି ଯେ ଦୌପଦୀକୁ
ଦେଇଅଛୁ କୋଟିବସ୍ତ୍ର
ପଞ୍ଚ ପାଣ୍ଡବକେ ସଖାହୋଇ
କୌରବ୍ ପରାନ୍ ନେଇଛୁ
ହାସ୍ତୁ ମାପୁର କାଁଏଁ ହେଲ ଯେ ମୋର
ଗୁହାରଟା ନାହିଁ ଶୁନୁଛେ ॥୫॥

ଧନୁ ଯାହାକେ ଡାକଲା ମାମୁଁ
ଯେନ୍ଟା ସେଠାରେ କର୍ଲୁ
(ତୁଯେ) ଯେନ୍ଟା ସେଠାରେ କର୍ଲୁ
ଦେଖୁ ଦେଖୁ ସେ ପଡ଼ଲା ମରି
କେନ୍ ମନ୍ତ୍ରକେ ମାଏଲୁ
ସୁଦାମ୍ ଦେଲା ଖାଜ୍ଲା ଖୁଦ୍
ଖାଏ ଦଉଲତ୍ ଦେଇଛୁ
ହାଏ ମାପୁର କାଁଏ ହେଲଯେ ମୋର
ଗୁହାରଟା ନାହିଁ ଶୁନୁଛେ ॥୬॥

କଳିଯୁଗେ ନୀଳାଚଳେ
କଲ୍କି ଲୀଳା ଆପିଲୁ
(ଭୁଯେ) କଲ୍କି ଲୀଳା ଆପିଲୁ
ଧନ୍ୟ ତୋ ଲୀଳା ହେ ଚକାଡୋଳା
ଷାଠିଏ ପଢ଼ୁଛି ସ୍କୋଟ୍ଲୁ
ବାକର ମିଆଁର ଦୁକ୍ଠା ଦେଖି
କେନ ଗାଁଏ ଲୁକ ରହୁଛୁ
ହାଏ ମା ପୁର କାଁ ଏ ହେଲା ଯେ ମୋର
ଗୁହାଗାଠା ନାହିଁ ଶୁନୁଛେ ॥୭॥

**

**

# ଚାଲ ନୀଳାଚଳ ଦରଶନେ

**ଗୋଲୋକ ଚନ୍ଦ୍ର ମହାନ୍ତି**

(ବିଂଶ ଶତାବ୍ଦୀ)

ଚାଲ ନୀଳାଚଳ ଦରଶନେ……
ନନ୍ଦ ଘୋଷେ ନନ୍ଦ-ନନ୍ଦନ ବିଜେର
ପତିତ ଜନ ଉଦ୍ଧାରଣେ ॥

ଆଗେ ଚାଲେ ରଥ ତାଳଧ୍ୱଜ
ତହିଁ ବିଜେ ବଳଭଦ୍ର ରାଜ
ମଧ୍ୟେ ଚାଲନ୍ତି ସୁଭଦ୍ରା ସୁନ୍ଦରୀ
ବସି ଦେବୀ ରଥ ଯାନେ ॥୧॥

ପଛେ ଚକ୍‌କଣ କାଳିଆ ଜଗା
ଆହା କଳା ଶ୍ରୀମୁଖ କି ଶୋଭା
ଜଳ ଜଳ କାନ୍ତି ଝଟକ ଦିଶେରେ
ତା ସମ କିଏ ଭୁବନେ ॥୨॥

ଧିଡ଼ି ଧିଡ଼ି ଚାଲେ ତିନିରଥ
ଘଣ୍ଟା ମାଦଳ ଝାଁଜି ଝମକ
ପାପୀ, ତାପି, ତପୀ ତରିବା ଆସରେ
ଚାହିଁ ସେ ଚକା ନୟନେ ॥୩॥

**

**

# ସବୁ ତୁମର ଲୀଳା

## ଗୋଲୋକ ଚନ୍ଦ୍ର ମହାନ୍ତି

(ବିଂଶ ଶତାବ୍ଦୀ)

ସବୁ ତୁମର ଲୀଳା, ଚକାଡୋଳା ହେ
ଯାହାତ ଦେଉଛ, ତାହାତ ନେଉଛ, ଜନେ ଜାଣିବାକୁ କରୁଛ ଖେଳା
॥ଘୋଷା॥

ଦାନ ଦେବା ଛଳେ ବଳିକୁ ନାଶିଲ,
ବଳଦାନେ କର୍ଣ୍ଣ ସୁତକୁ ଦେଲ
ଦେଇ ଦେଇ ଶେଷେ ଦାତା ହରିଶ୍ଚନ୍ଦ୍ର,
ମଶାଣି ଦୁଆରେ ପ୍ରେତ ଜଗିଲ ॥୧॥

ଭାରତ ସମରେ ହାତ ପତାଇଲ
ଭୀମସୁତ ନିଜ ସୁତକୁ ଦେଲ
ଅସ୍ଥିଦେଇ ମଲା ଦଧୀଚି ମହର୍ଷି
ଆଉ କେଉଁ ଦାନ ବାକୀ ରହିଲା ॥୨॥

ବଳ୍ମୀକୀ ଧୀବର, ଧୋଇଲା ପଥର
ପରମ ପଦ ସମ୍ପଦ ପାଇଲା
ଅଜ୍ଞାନ ଶବର ପେଷିତା ନାରୀତ
ଛନ୍ଦା ଚରଣରେ ଶରଣ ନେଲା ॥୩॥

କି କଲା ଗରିବ, ହେ ଦୀନ-ବାନ୍ଧବ
ଦୀନ ଜନେ ଊଣା କରୁଣା ହେଲା
ଦୟାନିଧି ନାମ ବହିଛ କିପାଇଁ
ଭାସିଯାଏ ଦୀନଜନର ଭେଲା ॥୪॥

**

**

# ପତିତପାବନ ବାନାକୁ ବନ୍ଦ

## ଗୋଲୋକ ଚନ୍ଦ୍ର ମହାନ୍ତି

(ବିଂଶ ଶତାବ୍ଦୀ)।

ପତିତପାବନ ବାନାକୁ ବନ୍ଦ ନୀଳାଦ୍ରି ଶିଖେ ବଳେ କର ସାଇଁ
ମୁକତି ଧ୍ୱଜାକୁ ବନ୍ଦ ଶିଖରେ ରତ୍ନ ସିଂହାସନେ ବସି ଦମ୍ଭରେ ହେ
ଲକ୍ଷଲକ୍ଷ ପଣସ୍ତ୍ରୀ ହେ
ଦବାନଣି ତୁମ ଚରଣ ସେବାରେ କରୁଛନ୍ତି ନଉକରି ହେ ॥୧॥

ବଡ଼ ସାଆନ୍ତଙ୍କ ବଡ଼ ମହିମା କହିଲେ ନ ସରେ ଗୁଣ ଗାରିମା
ହୃଦ ପଡ଼ୁଅଛୁ ସ୍ୱର ଦଗରେ ସାଗର ସୈକତ ଧୀର ସମୀରେ ହେ
ତୁମରି ମହିମା ଗାନ ହେ
ଚଉଦିଗ ଯାକ ଉଚ୍ଛୁଳି ପଡ଼ୁଛି ତୁମେ ବଡ଼ ମହାଜନ ହେ ॥୨॥

ତୁମପାଇଁ ଖଜା ଖଣ୍ଡ ଶାକର ଛିଣ୍ଣ ମାଲପୁଆ ଲବଣୀ ସର
ଷାଠିଏ ପଉଟି ଅନ୍ନବ୍ୟଞ୍ଜନ ଭୋଗେ ଛଟପଟ ଏ ଦୀନଜନ ହେ
ଜଠ ଉପାସରେ ମରେ ହେ
କଣିକା ମାତର ଦେଲେ କି ତୁମର ଅକ୍ଷୟ ଭଣ୍ଡାର ସରେ ହେ ॥୩॥

ନ ଜାଣି ବୋଲନ୍ତି ବରଜବାଳୀ ଶଠ, ଲମ୍ପଟ, ଧୃଷ୍ଟ, ବନମାଳୀ
ଏଡ଼େ ନିଷ୍ଠୁର ହେଲେ କି ହୋଇବ କା ପାଦେ ପାଷାଣ ତରଳିଯିବ
ଅଂଗୁଳି ଅଗ୍ରରେ ଧରି ହେ
କେଡ଼େ ମହାବଳୀ ଦେଇଥିଲ ତୋଳି ଅଲକ୍ଷେ ମନ୍ଦରଗିରି ହେ ॥୪॥

ଅନଳ, ଅନିଳ, ସଲିଳ ତୁମେ କ୍ଷିତି ତେଜ ବ୍ୟୋମ ଏହି ପରାଣେ
ତୁମବିନା କାହୁଁ ରହିବ ପ୍ରାଣ ହେଅ ବିଶ୍ୱପତି କରୁଣାଧନ ହେ
ଘୁଞ୍ଚି ଯିବ ଏ ଦୁର୍ଗତି ହେ
ଦୀନଜନେ ଦୟା କଲେ ଚଉବାହା କାଳକୁ ରହିବ କୀର୍ତ୍ତି ହେ ॥୫॥

**

**

# ଦେଇଛ ସବୁ ହେ


## ଶ୍ରୀ ବିଦ୍ୟାଧର ସାମନ୍ତରାୟ

(ବିଂଶ ଶତାବ୍ଦୀ)


[ରାଗ-ରାମକେରୀ]

ଦେଇଛ ସବୁ ହେ ଜଗତ—
ନାଥ କିସ ମାଗିବ
ଦିଅ ସବୁଙ୍କି ଶକତି
ଖାଲି କାମେ ଲାଗିବ

ହୃଦ ମୋ ତୁମର ବଗିଚା
ତହିଁ ମାଲୀ ହୋଇବ
ବଦଗୁଣେ ବାଛି ଫୋପାଡ଼ି
ସଦଗୁଣ ରୋଇବ ।

ଭକତି ସୁମନ ତୋଳିକି
ସ୍ନେହ ସୂତେ ଗୁନ୍ଥିବି
ଆକୁଳ ଲୋତକ ଜଳରେ
ଧୋଇ ପଦେ ସମର୍ପିବି ।

ସେବା ବିଳାସରେ ନମକି
ତବ ପଦ ପୂଜିବ
ଅପକାର କେହି କରିଲେ
ଉପକାରେ ଶୁଝିବ ।

ଗର୍ବ ଅହଂକାର ଯେତେକ
ଖୋଜ ଦେବ ମୋଞ୍ଛିବ
ଖଳ ଜନ ପାଶେ ନ ପଶି
ସାଧୁ ସଙ୍ଗ ଲୋଡ଼ିବ

ନ ଜାଣେ କିଛି ମୁଁତୋ/ଦୟା
କଲେ ସବୁ ଜାଣିବ
ନୀରୁଁ କ୍ଷୀର ହଂସ ବାରଇ
ଭେଲୁଁ ଭଲ ଗୁଣିବ ।

ମୋହନ ବାମନ ମୂରତି
ହୃଦ କଂଜେ ଥାପିବ
ମହା ମୋଦେ ଘୋଷି ତୋ ମଧୁ
ନାମ କାଳ ଯାପିବ ।
**

**

## ଚକାଆଖି ବଡ଼ ଠାକୁର

### ଶ୍ରୀ ବିଦ୍ୟାଧର ସଉତରାୟ

(ବିଂଶ ଶତାବ୍ଦୀ)

[ରାଗ-ରାମକେରୀ]

ଚକାଆଖି ବଡ଼ ଠାକୁର
ଛନ୍ଦ ଗୁଣ୍ଡିଲ ନାହିଁ
ଛନ୍ଦରେ ଯଶୋଦା ବାନ୍ଧିଲ ।
ଦାନେ ମନେକ ନାହିଁ ।

ଯମଳ ଯାମଳା ଅର୍ଜୁନ
ତରୁ ଭାଙ୍ଗିଲ ସାଇଁ
କ୍ଷୀର ପିଇଁ ପ୍ରାଣ ଶୋଷିଲ
ମଲ୍ଲ ପୂତନା ମାଇ ।

ମାଟି ଖିଆ ଛଳେ ମାତାକୁ
ଦେଲ ବିଶ୍ୱ ଦେଖାଇ
ରାଧିକା ମାନସ ମୋହିଲ
ପ୍ରେମ ମଧୁ ଚଖାଇ ।

ହୃଷ୍ଟ କରି ଘାଟୁ ଗୋପୀଙ୍କ
ବାସ ନେଲ ଚୋରାଇ
ହୃଷ୍ଟ ହୃଷ୍ଟା କରି ମିଛରେ
ଶେଷେ ଦେଲ ଫେରାଇ ।

ଭକୁଆ କରିଲ ବିରଞ୍ଚି
ଗୋପୁଁ ଚୋରାଉ ଗାଈ
ବାସବ ଗରବ ଗଞ୍ଜିଛ
ଗିରି ଧରି ଗୋସାଇଁ ।

ଶତଦଳ ତୋଳୁଁ ଦଳିଲ
କାଳୀ ମଣ୍ଡଳ ସାଇଁ
କଂସ କେଶୀ ନାଶିବ ସତେକ
ତୁମେ ହେଲ କଂସାଇ

ଛପନ ପଉଟି ଭୋଗ କି
ଖାଇ ପଡ଼ିଛ ଶୋଇ
ଶୁଣୁଛ ଡାକିଲେ ଯେତେ ମୁଁ
ପଦେ ମୁଣ୍ଡ ବାଡ଼େଇ ।

ଗାଢ଼େ ମାଡ ଦେଲେ ଏ ମୂଢ଼
ପଥ ଛାଡ଼ିବ ନାହିଁ
କଷଣ ଭୂଷଣ ମଣିବ
ସଦା ଶ୍ରୀ ପଦ ଧ୍ୟାୟି
**

**

## ତୁମ୍ଭେ ପ୍ରଭୁ ଜଗନ୍ନାଥ

**ଶ୍ରୀ ବିଦ୍ୟାଧର ସଉତରାୟ**

(ବିଂଶ ଶତାବ୍ଦୀ)

[ରାଗ-ପଞ୍ଚମ ବରାଡ଼ି]

ତୁମେ ପ୍ରଭୁ ଜଗନ୍ନାଥ
ଜଗତେ ଏକା ସାରଥି
ତୁମେ ଶିବ ମଧୁମୟ ଭବେ
ତୁମ ବିନେ ଅମଙ୍ଗଳ—
ସଂସାର ଆପଦ ସ୍ଥଳ
ତୁମ ଯେଣ ସୁନ୍ଦର ସରବେ
ହେ-ନାହିଁ ଯହିଁ-ମଣିହରା ଫଣୀ ଜାଣ ସେହି
ତବ ହାସେ ହସେ ଫୁଲ ତେଣୁ ତାର ନାହିଁ ମୂଲ
ମୋଷେ ଅନ୍ତରର ହୁଏ ମସ୍ତା ।

ଧନ୍ୟ ତୋହର ହୃନ୍ଦର—
ସାଗର ରୁଦ୍ର ସୁନ୍ଦର
କାନ୍ତ ଶାନ୍ତ ଅବନୀ ଅମ୍ବର
ତେଜେ ରବି ଢାଏ ଜାଳ—
ଶଶିଯାଏ ସୁଧା ଢାଳି

ଉଷା ସନ୍ଧ୍ୟା ଅତି ମନୋହର
ଏ-ତୋହେ ଖେଳ-ଦେଖି ଦେଖି ଜନ ହୁଏ ଭୋଳ
ଭଳି ନ ପାରେ ମାନବ—
ତୋହ୍ମ ମହମାସ୍ମ ଭାବେ
ଗୁଣ୍ଡେ ଖାଲି ମିଛେ ଆର୍ତ୍ତି ରୋଳ ।

ହେ ଠରେ ସତ୍ୟ ସୁନ୍ଦର ଅମୀସ୍ମ ଶାନ୍ତ ଜର୍ଝର
ମେଲି ଦଅ ଦସ୍ମା ବହ୍ନି ଲଭେ
ତବ ଅମୃତ ସନ୍ତାନ ମୁଡ ବଶ୍ୱ ବାସୀଜନ
ଅବଗାହ୍ମ ତୃପ୍ତି ଲଭ୍ଭ ଭବେ
ସେ-ମୁକ୍ତ ସୁଧା-ଚଖା ଅରୁଦ୍ଧ ବିଷସ୍ମ ବାଧା
ଢନଗଲ କାନ୍ଦି କାନ୍ଦି ମିଛେ ଖାଲି ହୋଇ ଧନ୍ଦ
(ଏବେ) ଆଚରନେ ବଳଲ ଶରଧା ।

**

**

# କ୍ଷେତ୍ର ପୁରୁଷୋତ୍ତମ

## ଶ୍ରୀମତୀ ସୁନ୍ଦରମଣି ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ପବିତ୍ର ଭାରତ-ସରସୀ ବକ୍ଷେ "ଉତ୍କଳଧାମ"
ଢଳଢଳ ନୀଳକମଳ "କ୍ଷେତ୍ର ପୁରୁଷୋତ୍ତମ"

ଯହିଁ ଛଳ ଛଳ ଉଚ୍ଛ୍ୱଳ ମହୋଦଧି-ତରଙ୍ଗେ
ନୀଳଗିରି-ଶିର ପତିଙ୍କ ପଦ ଧଉତ ରଙ୍ଗେ ।

ଶୋଭିତ ଯା'ଠାରେ ସପ୍ତଧମାଳା ପନ୍ଥ କ ପନ୍ଥ
ଯହିଁ ମନ୍ଦାନୀଳେ ଦୋଳଇ ମୁକ୍ତି-ବଇଜୟନ୍ତୀ *

କମଳେ କମଳା ସେବନ୍ତି ବିଭୁ ପଦ ଯୁଗଳେ
ଅମ୍ଳାନ ସୁନ୍ଦର ବଦନେ ହାସ-ପୀୟୂଷ ଗଳେ ।

ସେଇ ପୁଣ୍ୟଧାମେ ବିଦିତ ସାର୍ବ ପୃଥ୍ୱୀନାଥ
ଶ୍ରୀ ଗୁଣ୍ଡିଚ୍ଚ ଯାତ୍ରା ବିଜୟେ ଆଜ ଶ୍ରୀ ଜଗନ୍ନାଥ

ନବ କଳେବର-ଦେବତା ନବ ଲାବଣ୍ୟ ତନୁ
କରନ୍ତି ଗୁଣ୍ଡିଚ୍ଚ ବିଜୟେ ଚଣ୍ଡ ଶୋଭା ଅତନୁ

ପ୍ରଥମେ ବିଜୟ ରୋହିଣୀ ସୁତ ଧବଳ ତନୁ
ସପ୍ତ ଫଣୀ-ମଣି ମୁକୁଟ, ତଡ଼େ ତମସା ମନୁ ।

---

* ମୁକ୍ତି ବୈଜୟନ୍ତୀ—ପତିତପାବନ ବାନା

ଶୁକ୍ଳାମ୍ବର ଧର, ସୁନ୍ଦର ସ୍ୱଚ୍ଛ ସୁମନ ଧା'ସି
ହଳାୟୁଧ ଶୋଭେ ଶ୍ରୀକରେ କୋଟି ତମସା ହାସି

କାଦମ୍ବରୀ ପାନେ ଘୂର୍ମନ୍ତ ସ୍ୱରୁ ନୟନ ଛବି
ନବଘନ କୋଳୁଁ ଉଇଁଛୁ କବା ସୌଭାଗ୍ୟ ରବି ।

ମଧ୍ୟେ ଅଳଅଳ ଭଗିନୀ "ଦେବୀ ସୁଭଦ୍ରା" ବିଜେ
ଦଳା ହରିତ ସୁବସନା, କଳା-କୁଶଳୀ ନିଜେ ।

ନବ ବାସ-ନବଭୂଷଣେ ନବ ଲାବଣ୍ୟବତୀ
କୁଙ୍କୁମ, ସିନ୍ଦୂର ଚନ୍ଦନେ ବନ୍ଦନୀୟା ସୁମତୀ ।

ଲୋହିତ କାଞ୍ଚଳୀ ଆବୃତ ସ୍ୱର୍ଣ୍ଣ ଘନ ବକ୍ଷରେ
ଅଲକ୍ତ-ଚରଣା ଶରଣଗତା ଜନ ଲକ୍ଷ୍ୟରେ

ବିଜୟୀ ବିଶ୍ୱର ମଣ୍ଡନ ବିଭୁ ଜଗତନାଥ
ବିଶ୍ୱ ପାପ-ତାପ ନାଶନ ଲାଗି ସେ ସମରଥ ।

କଳା-କଜ୍ଜ୍ୱ ଦଳା ଅଞ୍ଜନ ନବ ଜୀମୂତ କାନ୍ତ
ଶ୍ୱେତ ଶତଦଳ ସୁନ୍ଦର ଯୁଗ୍ମ ନେତ୍ର ପ୍ରଶାନ୍ତ ।

ମନୋରମ ମଣି ମର୍କତ କରେ କଙ୍କଣ ଶୋଭା
ଶ୍ରୀ ବତ୍ସ ଲାଞ୍ଛନ ସୁନ୍ଦର ହୃଦେ "ପଦକ" ପ୍ରଭା

ନିର୍ମଳ ତୁଳସୀ ମାଳାରେ ଝୁରି ଶ୍ୱେତ-ସୁମନ
ଶିର ଦେଶେ ଦୋଳେ କଣ୍ଠେ ଧନ୍ୟ ମଣେ ନୟନ ।

କନକ-କେତକୀ ଜନଙ୍କ ମନ ନୟନ ହରେ
ପହୁଣ୍ଡ ମଣାଇ ବିନୟୁ ଶୁଭେ "ଶ୍ରୀରାମ ହରେ" ।

"ହରିବୋଲ" ହୁଳହୁଳିରେ କଂପେ ମସ୍ତ ବନୀତା
ଶୋଭା-ଶଶଧର ଆସନ୍ତ ତୁଚ୍ଛ କବି-କବିତା ।

ଘଣ୍ଟା ଘଣ୍ଟି, ଝାଞ୍ଜ, ମୃଦଙ୍ଗ ଭେରୀ ମହୁରୀତାନ
ସହସ୍ର ସିନ୍ଧୁକ ଉଚ୍ଛୁଳେ ଗାଇ ବନ୍ଦନା ଗାନ ।

ଚତୁର୍ଭୁଜେ ରଚେ ସୁଷମା ସ୍ୱର୍ଣ୍ଣ କମ୍ବୁମଣ୍ଡିତ
ବରଭୁଜ ଯୁଗେ କମଳ ଗଦା ଚକ୍ର ଭୂଷିତ ।

ଚକା ନୟନରେ ଅନାଇଁ ଡକା ଦାଅନ୍ତି ପରା
ଆସ ଦୀନ, ଦୁଃଖୀଜନ ହେ, ଯେତେ ରହିଛ ଧରା ।

ଆସ ଆସ ଭକ୍ତପ୍ରବର ମୁଁ ଯେ ଭକତବନ୍ଧୁ
ତୁମର ପାଇଁକି ଉଚ୍ଛୁଳେ ମୋର କରୁଣାସିନ୍ଧୁ ।

ପାପୀ ତାପୀ ଯେତେ ତନୟ ଆସ ସମୀପେ ମୋର
ନିଃଶେଷେ ବୁଡ଼ିବ ଦୁରିତ ମୁଁ ଯେ କ୍ଷମାସାଗର ।

**

**

# ପତିତପାବନ ବାନା ଉଡ଼ାଇ

## ରଘୁନାଥ ଛୋଟରାୟ

(ବିଂଶ ଶତାବ୍ଦୀ)

[ରାଗ-ରସକୁଲ୍ୟା]

ପତିତପାବନ ବାନା ଉଡ଼ାଇ
ଦେଖାନା ଗ୍ରାମା ଗର୍ବ ବଢ଼ାଇ
ତୁମ୍ଭକୁ ବୋଲଇ ଜଗତନାଥ
ଅନାଥ କରିଛୁ ଜଗତ ଲୋକ
ଦୀନବନ୍ଧୁ ଦଇତାରି ହେ
ଡାକ ଡାକ ପଛେ ଥକଗଲା ଦୀନ
ଶୁଣିଲ ନାହିଁ ଗୁହାରି ॥୧॥

ସଂହାରି ରାବଣ ଗର୍ବ ଖରବ
ଭାଙ୍ଗି ଦେଇ ମାନ ନାଶି କୌରବ
ଦାନର ବଢ଼ାଇ ଭାଙ୍ଗିବା ପାଇଁ
ବଳିକୁ ରୁଧିଲ ପାତାଳେ ନେଇ
ଗରବ ଗଂଜନ ହରି ହେ
ନିଜ ବଡ଼ାଇତ ବଜାଇ ରଖିଛ
ଯୁଗେ ଯୁଗେ ଅବତରି ॥୨॥

ଚନ୍ଦ ପେଖି କେବେ ନକ୍ଷେ ବିନାଶି
ରଖିଥିଲ ଗଜ କେ ଅଛୁ ଦେଖି
କୁରୁସଭା ତଳେ ଦ୍ରୌପଦୀ ମାନ
ରଖିଥିଲ ସତେ ହେ ନାରାୟଣ

ସବୁ ସିନା ଶୁଣା କଥା ହେ
ନୀଳାଚଳେ କିପାଁ ମୂକ ପାଲଟିଛ
ନ ଜାଣ ଗରବ ବ୍ୟଥା ॥୩॥

ହୁଅ ଅବା ତୁମେ କାଠ ପାଷାଣ
ଖଣ୍ଡ ବା ନଖଣ୍ଡ ଦାନ କଷଣ
ହୁଅ ଅବା ତୁମେ ମୂକ ବଧିର
ଶୁଣ ବା ନଶୁଣ ଗୁହାରି ମୋର
ଜଡ଼ ସେ ଶ୍ରୀମୁଖ ଚାହିଁ ହେ
ତୁଷ୍ଟ ବା ନତୁଷ୍ଟ ଅଳି କରୁଥିବି
ତୁମବିନା ଗତି ନାହିଁ ॥୪॥

**

**

## କହିବ ପ୍ରଭୁ ହେ

### ରଘୁନାଥ ଛୋଟରାୟ

(ବିଂଶ ଶତାବ୍ଦୀ)

[ପଞ୍ଚର ସନ୍ଧ୍ୟାଗୋ-ବୃନ୍ଦେ]

କହିବ ପ୍ରଭୁ ହେ ମୋ ନୟନ ପଥଗାମୀ
ମନକଥା ଯେତେ ମନରେ ମରିବ
କିପାଁ ବୋଲାଇବ ତୁମେ ଅନ୍ତର୍ଯ୍ୟାମୀ ॥ଘୋଷା॥

ମୁଁ ଜଣେ ଆରତ ଡାକେ ନିରତ
ଢାଳିବା ନେତ୍ର ନାଶିବା ଦୁରିତ
ପତିତେ ଅନାଥ କରି ଜଗନ୍ନାଥ
କିପାଁ ବୋଲାଇବ ଜଗତର ସ୍ୱାମୀ ॥୧॥

ଚାଲିଗଲା ଯେବେ ଦୁଃଖର ଦାଉ
କି ଲାଭ ଆଇ ସେ ଅନନ୍ତ ବାନ୍ଧୁ
ଅନନ୍ତ ନୟନ କିବା ପ୍ରୟୋଜନ
ନ ଦେଖୁଛୁ ଯେବେ ଭକ୍ତ ମରେ ଭ୍ରମି ॥୨॥

ତବ କୃପା ବିନ୍ଦୁ ପାଇବା ଆଗୁଁ
ଦୁଃଖୀ ଯେବେ ନାଶ ଯିବ ଏ ଭବୁଁ
ଦାତା ପଣେ କିଁ ପା ନେତ ଉଡ଼ାଇବ
ବଡ଼ାଇ କରିବ ଏଡ଼େବଡ଼ ନାମୀ ॥୩॥

**

**

## ପ୍ରଭୁ ପୂଜିବ ନିତି ହେ

### ଶ୍ରୀ ରଘୁନାଥ ଛୋଟରାୟ

(ବିଂଶ ଶତାବ୍ଦୀ)

ପ୍ରଭୁ ପୂଜିବ ନିତି ହେ
ମୋ ଆଖିର ଲୁହଧାରେ
ତୁମ୍ଭ ବିନା କିଏ ମୋ ମନ ଜାଣିବ
ସାନ୍ତ୍ୱନା ଦେବ ମୋର କିଏ ସଂସାରେ ॥ଘୋଷା॥

ତୁମ୍ଭେ ପରା ପ୍ରଭୁ ଭକତ ବତ୍ସଳ
ଚିର ସଖା ପରା ତୁମେ ଭକତର
ଏବା ମୋ ଭକତି ଊଣା ବୋଲି ପ୍ରଭୁ
ଦରଶନ ତବ ନ ଦିଅ ବାରେ ॥୧॥

କି ଅର୍ଥ ହେବ କି ପୂଜା ଅରଚନା
କି ଅର୍ଥେ ଯିବକି ମୋ ସେବା ଯାଚନା

ଶୁଣି ଶିବ କହେ କରୁଣା ବାଣଧି
କଣାଏ କରୁଣା ହେଲେ ମୋଠାରେ ॥୨॥

ନ ଦେଲେ ନ ଦଅ ଦରଶନ ତବ
ପରଶ ମାତର କରେ ଅନୁଭବ
କବା ଦବା ବଶି ଗାଉଥିବ ବସି
ତୁମ ନାମ ସୁଧା ହରେ ମୁରାରେ ॥୩॥

ମୁଁ ଯଦ ତୁମର ତୁମେ ଯଦ ମୋର
ମାଗୁନାହିଁ କଛୁ ମାଗୁଣୀ ମାତର
ନୟନ ମୁଦଲେ ଆହେ ଚକାଡୋଳା
ଦେବ ଦରଶନ ମରଣ କାଳେ ॥୪॥
**

**

## ଜୀରତେ ଯା' ନାମ ଜପିଲେ

### ରଘୁନାଥ ଚ୍ଛୋଟରାୟ

(ବିଂଶ ଶତାବ୍ଦୀ)

[କଳା କଳେବର ବହ୍ଲାଇ-ବୃନ୍ଦେ]

ନଦେଖି ଯାହାକୁ ସବୁଠୁ ଏତେ ଭଲ ଲାଗଇ
ନପାଇ ପରଶ ଯାହାର ଶିହରଣ ଜାଗଇ ॥୧॥

ଜୀରତେ ଯା' ନାମ ଜପିଲେ ନୂଆ ନୂଆ ଲାଗଇ
ଜୀରତେ ଯା' ନାମ ଶ୍ରବଣେ ସଦା ସୁଧା ଝରଇ ॥୨॥

ସେଇ ମୋର ଜଗନ୍ନାଥ ସେ ମୋ ଗଣ୍ଠିର ଧନ
ସେଇ ମୋ ନୟନ ପିତୁଳା ସେ ମୋ ହୃଦଚନ୍ଦନ ॥୩॥

ତା'ର ବିନା ଆନ ନାହିଁକେ ମାତା ପିତା ମୋହର
ତା'ର ବିନା ଆନ ନାହିଁକେ ବନ୍ଧୁ ସଖା ସୋଦର ॥୪॥

ଡାକିବା ନଡାକ ବିପଦେ ବେଳ ଜାଣି ସେ ଆସେ
ଖୋଜିଲେ ପାଇବା ବିରଳ ସଦା ଥାଇ ସେ ପାଶେ ॥୫॥

ଗର୍ବୀ ଅହଙ୍କାରୀ ମାନଙ୍କ ଠୁଁ ସଦା ରହେ ସେ ଦୂରେ
ଦୀନ ଦୁଃଖୀଙ୍କର ବଂଧୁସେ ବିଦିତ ଏ ସଂସାରେ ॥୬॥

ପ୍ରେମମୟ ତାର ଏ ସୃଷ୍ଟି ଅଟେ ଚିର ସୁନ୍ଦର
ପ୍ରେମ ଫାଶେ ସଦା ବଂଧା ସେ ପ୍ରେମିକର କିଂକର ॥୭॥

ଯେଉଁ ଭାବେ ଯିଏ ଖୋଜଇ ଯେଉଁ ଭାବେ ଡାକଇ
ସେଇ ଭାବେ ଧରା ଦିଏ ସେ ସେଇ ଭାବେ ମିଳଇ ॥୮॥

ଶତ ଶତଦଳ ରୂପକୁ ତାର ନୋହିବ ସରି
ଶତ ଶତ ଭାନୁ ତେଜରେ ତାର ଯିବ ମଉଳି ॥୯॥

କି ଉପମା ଦେବି ତା'ସାଥେ କାହିଁ ତୋ ପଟାନ୍ତର
କି ଦେଇ ପୂଜିବି ତା' ପାଦ ସାରା ସୃଷ୍ଟି ଯାହାର ॥୧୦॥

**

**

# ଏତେ ଅଳ୍ପ ତୁମଠାରେ

## ରଘୁନାଥ ଜ୍ଯୋତସମ୍ଭ

(ବିଂଶ ଶତାବ୍ଦୀ)

[ଖେଳା ଖଂଜରୀ ଦୁଗା-ଦୁଗେ]

ଧନଜନ ଗୋପଲକ୍ଷ୍ମୀ ଯେତେ ଦେଲେ
ଗରବ ନଦିଅ ମନେ ହେ ପ୍ରଭୁ
ଏତେ ଅଳ୍ପ ତୁମ୍ଭଠାରେ ॥ ଘୋଷା ॥

ସଦା ମଣୁଥିବ ଏ ସବୁ ତୁମର
ମୁଁ ତୁମ ସେବକ ବୋଲି
ଏ ମାୟା ସଂସାର କିଛି ନୁହେଁ କା'ର
ସବୁ ମରୀଚିକା ବାଲି ॥୧॥

ଦୁଃଖରେ କାତର ନକର ହେ ପ୍ରଭୁ
ବିପଦରେ ଧୈର୍ଯ୍ୟ ହରି
ସୁଖରେ ଅଧୀର ନ ହେଉ ମନର
ସଂପଦରେ ଅଭୁହରି ॥ ୨॥

ଯଶ ପଦରୂପ ଯେତେ ଦେଲେ ପ୍ରଭୁ
ନ ଦିଅ ହେ ଅହଂକାର
ଦାନୀ ମାନୀ ବୋଲି ଉଚ୍ଚା କାରଣରେ
ଉନ୍ନତ ନ ହେଉ ଶିର ॥୩॥

ଗର୍ବ ଅହଂକାର ହିଂସା ଦ୍ୱେଷ ଯେତେ
କାଢ଼ି ନିଅ ମୋ ମନରୁ
ରାଜ ବଇଭବ ଅହମିକା ଦେଇ
ରଖନା ତୁମଠୁଁ ଦୂରୁ ॥୪॥

ପର ଦୁଃଖେ ସଦା ଦୁଃଖୀ କର ପ୍ରଭୁ
ପର ହିତେ ଯାଉ ପ୍ରାଣ
ବିଷୟ ବାସନା ମୋ ମନେ ଦଅନା
ଜଗନ୍ନାଥେ ରହୁ ଧ୍ୟାନ ॥୫॥

**

**

# ମନ'ବୋଧ ହେଉନାହିଁ

ଶ୍ରୀମତୀ ବ୍ରହ୍ମୋଶ୍ରୀ ମହାନ୍ତି

(ବିଂଶ ଶତାବ୍ଦୀ)

[ରାଗ-ବଙ୍ଗଳାଶ୍ରୀ]

ଦେଖୁଛୁ ତୁମକୁ ନିରେଖି ଏତେ ମୁଁ
ମନବୋଧ ହେଉ ନାହିଁ
ମନ ହୁଏ ଯେତେ ଚକାଡୋଳା ତୁମେ
ମୋତେ କି ରହୁଛ ଚାହିଁ ॥୧॥

ନୀଳାଚଳେ ଘର ତଥାପି ଲଲାଟ-
ଲିଖନ ଏପରି ମୋର
ପ୍ରବାସରେ ଚାହେଁ ନିତ୍ୟ ଦରଶନ
ଆଶା ନହୁଏ ସଫଳ ॥୨॥

ଦିନ ଯେତେ ଯାଏ ତୁମ ପରିଚୟ
ଜମେ ନିତ ଅଭିନବ
ଅପୂର୍ଣ୍ଣ ଆକାରେ ପୂର୍ଣ୍ଣ ଏତେ ତୁମେ
ଅପୂର୍ବ ମୋ ଅନୁଭବ ॥୩॥

ବ୍ରାହ୍ମ ମୁହୂର୍ତ୍ତରୁ ରାତି ଅଧଯାଏ
ତୁମ ଲାଗି ସେବା ଯେତେ
ଅଭିଳାଷ ବଡ଼ ନିଜ ସ୍ମୃତି ଗୁନ୍ଥି
ରଖନ୍ତି ସେ ସବୁ ସାଥେ ॥୪॥

କେତେବେଳେ ଆଖି-          ଆଢ଼ୁ ଆଳେ ପ୍ରଭୁ
ନ କରନ୍ତୁ ପଦ୍ମମୁଖ
କଳା ନୟନକୁ          ସ୍ନିଗ୍ଧ ରଖୁଥିଲେ
ତା'ଠାରୁ ବଳି କି ସୁଖ ॥୫॥

ନକଟକୁ କେବେ          ଲେଉଟାଇ ନେବ
ଲୁହ ଲୁହ ପ୍ରାଣ ସାଇଁ
ନଜର ବୋଇଲେ          ତୁମେ ସାଥୀ ଏକା
ଆନ ଭରସା ମୋ କାହିଁ ? ?

**

**

## ଜୟ ଜୟ ଜଗନ୍ନାଥ

କ୍ଷୀରୋଦ ଚନ୍ଦ୍ର ପୋଥାଳ

(ବିଂଶ ଶତାବ୍ଦୀ)

ଜୟ ଜୟ ଜଗନ୍ନାଥ ଆରତ ଭଂଜନ
ଶ୍ରୀ ଛାମୁରେ ଆଜି ମୋର ଏଇ ନିବେଦନ
କଣ୍ଠେ କରିବ ଯେମା କାଳୀୟ ଗଂଜନ ॥୧॥

ଶରଧା ବାଲିରେ ମୋତେ ଦିଅ ଖଣ୍ଡେ ଘର
ସେଇଠି ଗଢ଼ିବି ମୋର ସୁନାର ସଂସାର
ବଗଡ଼ା ଅଭଡ଼ା ଖାଇ କଟାଇବି ଦିନ ॥୨॥

ଆଜ୍ଞା ହେଉ ମହାବାହୁ ଆଶ୍ରିତ ଜନକୁ
ଭୁଲିବି ତୁମର ବଡ଼ ସିଂହଦ୍ୱାର ବେଲକୁ
ତୁମ ନାମ ଗାଇ ଗାଇ ଯାଉ ଏ ଜୀବନ ॥୩॥

**

**

# ଏତେ ଦଗାଦିଆ

## କ୍ଷୀରୋଦ ଚନ୍ଦ୍ର ପୋଥାଳ

(ବିଂଶ ଶତାବ୍ଦୀ)

ଏତେ ଦଗାଦିଆ ତୁମେ ଜଗା କଳିଆ
ଜଗତରେ କେହୁ ନାହିଁ ତୁମ ଭଳିଆ ॥୦॥

କଏ ଜ୍ଞାନୀ ମହାଜନ, କଏ ମୂରୁଖ ଅଜ୍ଞାନ
କଏ ରୋଗୀ, କଏ ଭୋଗୀ, କଏ ଚିର ବଇରାଗୀ
ତୁମ ନାମ ଗାଇ କଏ ହୁଏ ହାଲିଆ ॥୧॥

କଏ ସୁଖ ଭୋଗ କରେ, କଏ ଦୁଃଖେ କାନ୍ଦି ମରେ
କଏ ଗାଏ ତୁମ ନାମ, କଏ କରେ ନିନ୍ଦାଗାନ
କାହାକୁ କରିଛ ତୁମ ପଦ ତଳିଆ ॥୨॥

ସାରା ଜଗତରେ ଏଇ ଲୀଳା ଦେଇଛ ଲଗାଇ
ତୁମେତ ଜଗତ ସାଇଁ, ବସିଛ ମଉନ ହୋଇ
ନୀଳାଚଳ ବାସୀ ପ୍ରଭୁ ଚକା ଡୋଳିଆ ॥୩॥

**

**

# କୋଠ ଭୋଗଖିଆ

## କ୍ଷୀରୋଦଚନ୍ଦ୍ର ପୋଥାଳ

(ବିଂଶ ଶତାବ୍ଦୀ)

କୋଠ ଭୋଗଖିଆ ମୋ ଚକା ଆଖିଆ
ଉଠ ହେ ପହଡ଼ ଭାଙ୍ଗି
ପଣ୍ଡା ପଡ଼ିହାରୀ କରନ୍ତି ଗୁହାରି
ହେବାକୁ ଚନ୍ଦନ ଲାଗି ॥୦॥

ତୁଳସୀର ମାଳ ଦମ୍ଭଣାର ଚୂଳ
ଭଲ ଧଣ ଦେବଦାସୀ
ବଡ଼ ସିଂହାରକୁ ବୁଢ଼ା ସିଂହାରୀ ଯେ
ଉଭା ହୋଇଲେଣି ଆସି
ମଣିମା ମଣିମା ଡାକ ପଡ଼ୁଅଛି
ତୁମ୍ଭ ଦରଶନ ଲାଗି ॥୧॥

ନନ୍ଦା ପଥର ହେ ନନ୍ଦକେ ଶୋଇଲ
ଷାଠିଏ ପଉଟି ଖାଇ
ଅନାଥ ଜନଙ୍କ ଡାକ ନ ଶୁଣୁଛ
ଜଗତର ନାଥ ହୋଇ
ଆରତୀ ବେଳ ଯେ ଗଡ଼ି ଯାଉ ଅଛି
ଉଠ ହେ ଛପନ ଭୋଗୀ ॥୨॥

ପତିତପାବନ ବାନା ଉଡ଼ାଉଛ
ପତିତ ଉଦ୍ଧାର ପାଇଁ
ମୁଁ ଜଣେ ପତିତ କାନ୍ଦି କାନ୍ଦି ମରେ
ମୋ ଡାକ କି ଶୁଭୁନାହିଁ
ଏଡ଼େ ବଡ଼ ପଣ ବହି ଅଛ ପ୍ରଭୁ
କୁହ ତେବେ କାହା ଲାଗି ॥୩॥

**

**

# ବାଇ ମନରେ

ନରେନ୍ଦ୍ର ମହାପାତ୍ର

(ବିଂଶ ଶତାବ୍ଦୀ)

ବାଇ ମନରେ, ଚାଲ ଯିବା,
ଶ୍ରୀ ଶମ୍ଭୁ ଦର୍ଶନ, କରି ଆସିବା ॥

ଢଳପୁରର, ସେ ଅଧିପତି,
ମହା ବଳୁଆ, ଭୂଜ ଅଟନ୍ତି,
ସୁମାରି ନାହିଁତ, ସେବକ ସେବା ॥

ଛପନ ଭୋଗ, ଭୋଗି ରାଜନ,
ବଡ଼ ନଅର, ଉଚ୍ଚା ମଥାନ,
ଗମ୍ଭୀରା ଭିତରେ ଯାଇ ଭେଟିବା ॥

ଦୀନ ହୀନର, ଗତି ମୁକତି,
ଶୁଣି ଗୁହାରି, ଦୁଃଖ ହରନ୍ତି,
ଶ୍ରୀ ପଦ ପଙ୍କଜେ, ଜଣା କରିବା ॥

**

**

# ଏତିକି ମୋ ନିବେଦନ

## ନଗେନ୍ଦ୍ର ମହାପାତ୍ର

(ବିଂଶ ଶତାବ୍ଦୀ)

ଏତିକି ମୋ ନିବେଦନ, ହେ ଜଗନ୍ନାଥ,
ଏତିକି ମୋ ନିବେଦନ,
ବିଷୟା ବିଷରେ, ବିଷାଇ ଅସାରେ, ନ ଯାଉ ଏଇ ଜୀବନ ॥

ମୋ ମନ ଭଅଁର, ଥାଉ ନିରନ୍ତର, ପାଦପଦ୍ମ ସନ୍ନିଧାନ,
ଅମଳ ଦଳର, ପାଶେ ଅନିବାର, କରୁ ଶାନ୍ତି ମଧୁ ପାନ ॥

ସଂସାରଟା ସାରା, ମୋହ ମାୟାଭରା, ନାହିଁ ଶାନ୍ତି ଉପାଦାନ,
ଜଞ୍ଜାଳିଆ ହୋଇ, ମଥାତ ଘୁରଇ, ଅଶାନ୍ତିରେ ଯାଏ ଦିନ ॥

ଧାଏଁ ମନ ଯହିଁ, ଢଳେ ସୁଖ ନାହିଁ, ଭରିଛି ତହିଁ କଦନ,
ଶାନ୍ତିର ଆଧାର, ସେ ଶିରୀ ପୟର, ତଳେ ପ୍ରଭୁ ଦିଅ ଥାନ ॥

**

**

# ଚକା ନୟନ

## ନଗେନ୍ଦ୍ର ମହାପାତ୍ର

(ବିଂଶ ଶତାବ୍ଦୀ)

ଚକା ନୟନ, ହେଲି ଚକିତ, ବାଣ ତୁମ ମନ ॥୦॥

ଚଳେ କି ଖେଳ, ଆସିଲ ଭଳି, ଛାଡ଼ି ରତ୍ନ ସିଂହାସନ,
ଯେବେ ଆସିଲ, କଷ୍ଟ ପାଇଲ, ଡୋରରେ ହୋଇ ବନ୍ଧନ ॥

ନାଚୁଛ କ୍ଲାନ୍ତ, ଘୁମର ଛନ୍ଦ, ପଥେ ପୁଣି ପଣା ପାନ,
ବସି ରଥରେ, ଯାଉଛ ଘରେ ଯଜ୍ଞବେଦୀ ଆଦ୍ୟ ଥାନ ॥

ମାଉସୀଘର, ପୋଡ଼ପିଠାର, ଲୋଭ କଲ ବଳବାନ,
ଛପନ ଭୋଗ, କରନ୍ତ ତ୍ୟାଗ, ଚଢ଼ିଲ ରଥେ ବନ୍ଧନ ॥

ପଡ଼ୁଛୁ ଦୂର, ଦେବାକୁ ଡାକ, ପଥକ ଆରତ ଜନ
ରଥ ପଛରେ, ଆଆନ୍ତ ଖରେ, ଲଭିବାକୁ କୃପା ଦାନ ॥

ସତେ ଶୁଣିବ, କୃପା କରିବ, ହେଲକି ଚଞ୍ଚଳ ମନ
ଧାଇଁଛୁ ମୁହିଁ, ଲଭିବା ପାଇଁ, ତୁମ ପଦ ଦରଶନ ॥

**

**

# ଅନାଥର ନାଥ

## ନଗେନ୍ଦ୍ର ମହାପାତ୍ର

(ବିଂଶ ଶତାବ୍ଦୀ)

ଅନାଥର ନାଥ, ତୁମେ ପରା ଜଗନ୍ନାଥ,
ନ ଶୁଣିଲ ଟିକେ, ଡାକ, ହେଲି ମୁଁ ଅନାଥ ॥
ପ୍ରଭୁ ଦୁଃଖହାରୀ,
ଦୁଃଖେ ପଡ଼ି ମୁହିଁ, ଯାଉଛି ସରି ॥

ନିଜେ ବୁଝ ଏବେ, ବେଗି, କି ଦୁଃଖ ଦାରୁଣ,
ଛେଚି କଚି ନେଉଛନ୍ତି, ସେବାୟୁକ୍ତ ଗଣ,
ବାନ୍ଧି ଦଉଡ଼ିରେ,
ପହଣ୍ଡି କରନ୍ତି, ଟାଣି ଦାଣ୍ଡରେ ॥

ଆଲଟ ଚାମର ପାଖେ ପାଖେ ପଡ଼ିଅଛି,
ଅଧର ପଣାତ ବାଟେ, ଖଣ୍ଡିଆ ହେଉଅଛି ॥
ଭୁଲିବାକୁ କ୍ଲେଶ,
ଏ କଥା କି ମିଛ ହେ ରମାଈଶ ॥

ଅନୁଭବ ବିସ୍ମରତ, ମୁହିଁ ନିରନ୍ତର
ସହିବାକୁ କେତେ କଷ୍ଟ, ଦୁଃଖ ଗୁରୁତର ॥
ଏଇତକ ଖାଲି,
ହର ମୋର ଦୁଃଖ, କରୁଛି ଅଳି ॥

**

**

# ଜୀବର ଜୀବନ

## ନଗେନ୍ଦ୍ର ମହାପାତ୍ର

(ବିଂଶ ଶତାବ୍ଦୀ)

ହେ ଚକାନୟନ, ଜୀବର ଜୀବନ,
ଆଖି ଆଜି ବୁଜି ଦେଲକି ?
କରୁଣା ସାଗର, ପାଲଟି ପଥର,
ଜଡ଼ା ହୋଇ ବସି ଗଲକି ? ।।

ନୀଳାଚଳ ନାଥ, ହୋଇଲ ଅଚଳ,
ସୁଧା ଶୂନ୍ୟ ହେଲା, ସେ ପଦ କମଳ,
ବଳଯାର ଭୁଜେ, ନାହିଁ କିବା ବଳ,
ଚକ୍ରଧାର ବନ୍ଦ ହେଲାକି ? ।।

ପ୍ରଭୁ ପଣ ସତେ, ଦେଲକି ପାଶୋରି,
ମଣିଲ ସନ୍ତାନେ, ସାତ ପର ପରି,
ମହିମା ଗୁଣକୁ ନେଲା କିଏ ହରି,
କୃପା ବାରି ଶୁଖି ଗଲାକି ? ।।

ତୁମରି ମନ୍ଦିର, ଦୁଆରେ ମୁଁ ବସି,
ଡାକି ଡାକି ମୋର ଉଡ଼ିଲା ଫକାଶି,
ଦାରୁଣ ଦୁଃଖରେ, ହୋଇଯାଏ କଷି,
ମାରିବା ବାଟଟି କଲକି ? ।।

**

**

# ଅଖିଳ ବ୍ରହ୍ମାଣ୍ଡ କରତା

## ଅଧ୍ୟାପକ ଜୟକୃଷ୍ଣ ମିଶ୍ର

(ବିଂଶ ଶତାବ୍ଦୀ)

ଅଖିଳ ବ୍ରହ୍ମାଣ୍ଡ କରତା ପ୍ରଭୁ ହେ ଜଗତ୍ପତି ଜଗନ୍ନାଥ
ନିଜ ସୃଷ୍ଟି କୃତ ପାଳୁଛ, ଜଗତ କାହିଁକି ହୁଏ ଅନାଥ ?
ମହାବାହୁ ହେ,
ଅମାପ ସେ ମନଗହନର କଥା, ବୁଝିବ କେ ତୁମ ବିନା ?
ସମାନ ମାନରେ ଆନ କେ ? ତୁମେ ହିଁ ତୁମର ତୁଳନା ସିନା
ମହାବାହୁ ହେ ॥୦॥

*　*　*　*

ତଥାପି ବ୍ୟଥାର ଗୁରୁତମ ଭାର ଆତୁର ବିତୁର ମାନଇ କି ?
କଥା କହିବାରେ ତୁମ ଏ ସଂସାରେ ଲଭେ ମୁହଁକାରେ ଡରଇ କି ॥୧॥

ତୁମ ନିୟନ୍ତ୍ରଣ ଶୁଭ ଅନୁକ୍ଷଣ କରେ ବିତରଣ ସମେ ଯେବେ,
ଏତେ ବ୍ୟତିକ୍ରମ କରଇ କରମ- କ୍ଷେତ୍ରେ ମତି ଭ୍ରମ କମ୍ପା ତେବେ ॥୨॥

ଦେବାକୁ ଅଭୟ ଆହେ ଦୟାମୟ ବିରାଜୁଛ ଭୟ-ବିନାଶନ,
ତଥାପି ମନରେ ନ ଭାଳୁଛ ଥରେ, ନିରତେ କାତରେ କାନ୍ଦେ ଜନ ॥୩॥

ଆରତ ପ୍ରାଣର ତର ଅଶ୍ରୁ ନୀର ପାଦେ ହିଁ ତୁମର ତାର ଅର୍ଘ୍ୟ,
ସବୁତ ବିଫଳ, ଶୋକ ମାତ୍ର ଫଳ ଲଭେ ସେ କେବଳ ହେ ଅନଘ ॥୪॥

କେଉଁ ଅଭିଶାପେ ବିଷମ ସନ୍ତାପେ ପଡ଼ି ପୁଣ୍ୟପାପେ ବୁଝେନା ସେ,
ତୁମ ଏ ବିଚାର ବିଚିତ୍ର ପ୍ରକାର, ବୁଝି ଦୋଷ କା'ର ପରକାଶେ ॥୫॥

ସକଳେ ରଞ୍ଜାଇ ନ ଦେଲେ ବୁଝାଇ ସିଂହାସନେ ଥାଇ କିସ ହେବ ?
ହେବ କି କାଳିକ ସକଳ ପାଳକ ପଥନିର୍ଦ୍ଦାରକ ଦେବଦେବ ? ।।୬।।

ତୁମ କର୍ମଫଳ ଭୋଗୁଛ କେବଳ, ନ ହୁଅ ବିଫଳ ଏ ସଂସାରେ ;
ଦୋଷାଦୋଷ ଲାଗି ତୁମେ ଏକା ଭାଗୀ ବୁଝିବାକୁ ଜାଗି ଉଠିବାରେ ।।୭।।

ହେ ଜଗତ ସାଇଁ ଦେବାକୁ ଚେତାଇ ରହିଛୁ ଅନାଇ ଅଚଞ୍ଚଳେ,
ଆହେ ଜଗନ୍ନାଥ ନାମ କର ସାର୍ଥ ନିଜ କର୍ମେ ହାତ ଦେଇ ଭଲେ ।।୮।।

ନିଜ କର୍ମେ ମତି ଦେବାକୁ ଶକତି ନ ଥିଲେ କି ଗତି ତୁମ୍ଭର ହେ ?
ଅଭୟ ଦାୟକ ସକଳ ପାଳକ- ପଦ ଶରଣିକ ଲୁବ ବହେ ।।୯।।

ନ ହୁଅ ଅବଶ, ଯେବେ ତୁମ ଯଶ ତବେ ଅପଯଶ-ଦୋଷ ସରେ,
ଜୟକୃଷ୍ଣ ଭାଷେ,—ପରାଣ ପରଶେ ବ୍ୟଥିତ ପରା ସେ ଜୀଇ ମରେ ।।୧୦।।

**

**

# ଅନ୍ତର୍ଯ୍ୟାମୀ ଜଗନ୍ନାଥ


## ଅଧ୍ୟାପକ ଜୟକୃଷ୍ଣ ମିଶ୍ର

(ବିଂଶ ଶତାବ୍ଦୀ)


ଅନ୍ତର୍ଯ୍ୟାମୀ ଜଗନ୍ନାଥ ମହାପ୍ରଭୁ ଶୁଣ ମୋ ହୃଦୟ କଥା,
ଭାବକୁ ନିକଟ, ଅଭାବକୁ ଦୂର, ତୁମେ ସଂସାରେ ସର୍ବଥା,
ମହାବାହୁ, ଭେଦଭାବ କିମ୍ପା ଏତେ ?
ସରବେ ସୃଷ୍ଟିରେ ସମ ନୁହନ୍ତି କି ତୁମର କରୁଣା ନେତେ ? ।।୧।।

ସୁଖୀ ଦୁଖୀ ଦୋଷୀ ନିର୍ଦ୍ଦୋଷ ଧାର୍ମିକ ଅଧର୍ମୀ ସୁଶ୍ରୀ କୁତ୍ସିତ
ପାପୀ ପୁଣ୍ୟବନ୍ତ ତୁମର ସେ ଭେଦଭାବ ଯେଣୁ ବିରଚିତ,
ମହାବାହୁ, କାହିଁକି ଏ ବିଡ଼ମ୍ବନା ?
ପରମ ସମଦର୍ଶନ ତୁମେ ପରା, କିମ୍ପାଇ ଭେଦ ରଚନା ।।୨।।

ଭାବାଭାବ ସବୁ ପରକାର ସିନା     ତୁମରି ବିଧାନ ଗତି,
ସେ ଯେହ୍ନ କଲଙ୍କ ଲାଗେ ଜୀବେ ଜୀବେ, ନୁହେଁ କି ଏକଥା ସତି,
ମହାବାହୁ, କେ ଜାଣେ କେଉଁ ପରୀକ୍ଷା
କଣବାରେ ତୁମ ଚରମ ଆନନ୍ଦ ?     ବିଚିତ୍ର ତୁମ ଏ ଦୀକ୍ଷା ॥୩॥

ଡାକି ଡାକି କିଏ ଥକିଯାଏ,     କେ ବା ନ ଡାକି ତୁମକୁ ପାଏ,
ଅନାହାରେ ମରେ ବିକଳେ କେ ଜଣେ, ଆନ କେ ଆକଣ୍ଠ ଖାଏ
ମହାବାହୁ, ବିଳାସେ ଯାଏ କା ଦିନ,
ସଙ୍କଟରେ କିଏ ପଡ଼ଇ ସନ୍ତାପେ     ଚିରଦିନ ଦୀନହୀନ ॥୪॥

ଜାତିରେ ଜାତିରେ କେତେ ଯେ ବିଭେଦ, ସମୃଦ୍ଧି ବର୍ଦ୍ଧନ ଲାଗି,
ପ୍ରବଳ ପ୍ରଳୟ ସରଜେ ବା କିଏ     ଲୋଭ ବଶେ ଉଠେ ଜାଗି,
ମହାବାହୁ, କେ ମରଇ ଅତ୍ୟାଚାରେ
ସ୍ୱାର୍ଥ ପ୍ରଣୋଦିତ ପିଶାଚ କବଳେ,—     ଦେଖି ନାହିଁକି ହେ ବାରେ ॥୫॥

ସତ୍ୟର କେତନ ଉଡ଼ାଇ କେ ବୁଲେ     ଅକଳନ ଛଳନାରେ,
କପଟ କୁଟିଳ ଖଳ ସାଧୁତାର ସ୍ୱରୂପେ     ଖେଳେ ସଂସାରେ,
ମହାବାହୁ, ଏତ ତୁମରି ବିଧାନ,
ନ ଦେଖୁଛ ହୃଦେ ହୃଦେ ପଶି କି ହେ     ବିଚିତ୍ର ଏ ଲୀଳାମାନ ॥୬॥

ହେ ସମଦର୍ଶନ ହେ ଅମୃତମୟ     ସମଭାବେ ତୁମ ସୃଷ୍ଟି,
ହସି ଉଠୁ କୋଟି ବ୍ରହ୍ମାଣ୍ଡ ନାଥ ହେ,     ଢାଳି ଦିଅ ସମଦୃଷ୍ଟି
ମହାବାହୁ, ଭାବାଭାବ ଭେଦାଭେଦ
ସବୁ ଲିଭିଯାଉ, ଭାବେ ଜୟକୃଷ୍ଣ     ତୁମ ବିଧାନେ ସ୍ୱଚ୍ଛନ୍ଦ ॥୭॥

**

**

# ଜଗତ ଜୀବନ ହେ

ଅଧ୍ୟାପକ ଜୟକୃଷ୍ଣ ମିଶ୍ର

(ବିଂଶ ଶତାବ୍ଦୀ)

[ବାଧିଲା ଜାଣି କ୍ଷମା-ବୃନ୍ଦେ]

॥ ୧ ॥

ଜଗତ ଜୀବନ ହେ        ଧରିଛ ବିଚିତ୍ର ଏ
ମହିମା ଡୋରି ତୁମ କରେ
କେବଳ ଭକ୍ତଜନେ        ବିଲୋକ ପ୍ରତିକ୍ଷଣେ
ଟାଣୁଛ ତାଙ୍କୁ ଭାବଭରେ ହେ
ସ୍ୱାର୍ଥବଶେ,
ବିଭୋଳ କି ହେ ତୁମେ ପରି ?
ତୁମ ବିଧାନେ ବସୁନ୍ଧରୀ
ଧରିଛି ଅକଳନ        ଜୀବେ ଦେଖ ବନ୍ଧନ,
ବିଶ୍ୱର ଭକ୍ତଜନଧରି ହେ ।

॥ ୨ ॥

ପରିରେଁ ମୁଁ ମାତର,        କର ନାହିଁ ଖାତର
ଇତର ଭାବେ ଅନ୍ୟଜନେ,
ଏ କି ସମ-ଦର୍ଶନ        କହ ବିଶ୍ୱ ଜୀବନ,
ନ ଭାବ ଏହି କଥା କ୍ଷଣେ ହେ
ନିଜ ଲାଗି,
ନିଜ ସ୍ୱାର୍ଥରେ ଯାଅ ଭଜି
ସମତା ମମତା ବରଜି,
ଥୋକେ ପରମପ୍ରିୟ        ଥୋକେ ଅତି ଅପ୍ରିୟ,
ବିଚିତ୍ର ଭାବେ ଅଛ ମଜ୍ଜି ହେ ।

॥ ୩ ॥

ଦେଖ ହେ ଜଗନ୍ନାଥ     ତୁମ ମହିମା ସାର୍ଥ
ହୋଇ ନ ପାରେ ସ୍ୱାର୍ଥ ଭାବେ,
ବଡ଼ ଦେଉଳେ ବସି     ଭୋଗ ଢାଳାସେ ରସି
ହସୁଛ, ସେହି କଥା ଭାବେଁ ହେ,
ବଡ଼ ସେବା,
ହେଉଛି ଖାଲି ତୁମ ଲାଗି,
ମହାସୁଖରେ ତୁମେ ଭାଗୀ,
ଅନ୍ୟ ଜନେ ଡାକଲେ     ନ ଶୁଣ ଡାକ ଥଲେ,
କେବଳ ଭକ୍ତ ଅନୁରାଗୀ ହେ ।

॥ ୪ ॥

ଯଥାର୍ଥ ପ୍ରତିକାର     କରିବାକୁ ଏହାର,
ଅଧିକ ଟାଣ ଡୋର ଆଣି
ତୁମ ଦେହେ ଲଗାଇ     ମନ ମଉଜେ ଗାଇ
ତୁମକୁ ସିଂହାସନୁ ଟାଣି ହେ
ଜଗନ୍ନାଥ,
ଭିଡ଼େ ଭିଡ଼ିଣ ରଥପରେ
ଧିଅନ୍ତି ଉନମାଦ ଭରେ,
କହନ୍ତି,— ହେ ପତିତ-     ପାବନ ଅନୁଚିତ
ବସି ରହିବା ଦେଉଳରେ ହେ

॥ ୫ ॥

କହନ୍ତି,— ଆମ ଡୋର     ଧରେ ଅଧିକ ଜୋର,
ପଣ ଏ ଜନତା ଗହଳେ,
ଆହେ ଅନ୍ତର ଯାମୀ     ସକଳ ପ୍ରାଣଗାମୀ
ହୁଅ ମଙ୍ଗଳ ବିଧାନରେ ହେ
ଜଗନ୍ନାଥ,
ପୂରାଅ ସଭିଙ୍କ ଲାଳସା,
ରସାର ଅଶିବ ଏ ଦଶା
ହର ହେ ପରମେଶ,     ଧର ଉଚିତ ବେଶ,
ଜମ୍ବୁକୃଷ୍ଣର ଏ ଭରସା ହେ ।

**

**

# ଚକା ଚକା ଆଖି

ଅଧ୍ୟାପକ ଜମ୍ବୁକୃଷ୍ଣ ମିଶ୍ର

(ବିଂଶ ଶତାବ୍ଦୀ)

॥ ୧ ॥

ଚକା ଚକା ଆଖି ଖୋଲି ଆପଣ
ଅନ୍ଧା ହୋଇ ରହୁଁ, କବା କାରଣ ?
ଦକା ଚଢ଼େ ଅବା ପଡ଼ିଲ ବଳି ?
ଧକା ଦେଲ ମନେ କେବା କି ଭଳି ହେ ?
ପକାଇ ଦଅ ଦୀନତା
ଅକାରଣ ପ୍ରଭୁ      ଜଗତର ନାଥ
କମ୍ପାଇ ହୃଦୟେ ବ୍ୟଥା ହେ ?

॥ ୨ ।

ପରମପୁରୁଷ ! ସବୁର ଭରସ
ହର ପରମେଶ ! ଦେଇ ଅଭୟ;
ଦରବିନାଶନେ ହୁଅ ତତ୍ପର,
ଦରଧର ପ୍ରଭୁ କମଳାବର ହେ
ମରତେ ବିଜୟଧ୍ୱଜା
ଗରବ୍ୱର ! ତୁମ      ହେଲେ ଅବନତ
କାହାକୁ ହେବ ଏ ଲଜ୍ଜା ହେ ?

।। ୩ ।।

ଜଳାମୁଖେ ତୁମ ନବେଣୀ ମନ
ହଳାହଳ ହୃଦେ ଘୋଟେ କେମନ ?
ବଳାଗ୍ରତ ବବନ୍ଧିତ ଚରଣ !
ବଳାତ୍କାରେ ବ୍ୟାପେ ପ୍ରଳୟ ଘନ ହେ ,
ଖଳାଗ୍ରର ଯାଏ ବଢ଼ି ,
ମଳାବିଳ ମତି          ଅକାଳେ କଳୁଷ —
ଗରଭେ ଯାଉଛୁ ସଢ଼ି ହେ ।

।। ୪ ।।

ଅକଳନ ବଳ ତୁମ ଅବଶ ,
ସକଳ ଦେଖି ନ ଦେଖ ଅବଶ୍ୟ ;
ଅକଳ ତୁମ କି ଯାଏ ଉଭାଇ ?
ନ କଲ କରୁଣା ବ୍ରହ୍ମାଣ୍ଡସାଇଁ ହେ ,
ନକଲ ରୂପ କି ଧର ?
ଜକ ଜକ ଖାଲି          ବାହାରକୁ ସିନା
ଦକ ଭରିଛୁ ଅନ୍ତର ।

।। ୫ ।।

ମାୟାରେ ନଜର କଲେ ମୋହିତ ,
ଆୟାସେ କି ଆଜ ପ୍ରବିଚଳିତ ?
ଦାୟାଦେ ଠଲେ ତ ନଜର ଦୟା ,
କାୟା କି କଠୋରଭାବେ ନଦ'ୟା ହେ ,
ବାୟା ହେଲଣି କି ପ୍ରଭୁ ?
ବ୍ୟାୟାମେ କଜାଙ୍ଗ          ଚଳାଇ ଜାଗ ହେ
ଜନତା ଅଭୟ ଲଭ ।

॥ ୬ ॥

କନ୍ଦବଇଁ କମ୍ପା କରମ ବାମ ?
ସନ୍ଧି ନରପୁର ଅମରଧାମ
ଛନ୍ଦି ବିପରୀତ ତୁମ ଏ ରୀତ ;
ବନ୍ଧୁଅଛ କବା ହୃଦୟେ ଭୀତ ହେ ?
ସନ୍ଧ ନୁହେଁ ନୀରବତା ,
ମନ୍ଥ ହୁଏ ଘାର    କାଳ-ଅନ୍ଧ-ବିଷେ ,
ଦାନ୍ତ ଢଏ ମନୋବ୍ୟଥା ହେ ।

॥ ୭ ॥

ଧରାଦୁଃଖ ଭାର ହ୍ଲାଗ୍ର ଆପଣ ,
ମରାମରେଙ୍କାର ତୁମର ପଣ ;
କରାମତ କେନ୍ଦ୍ରେ ଯାଉଛ ସରି
ଚରାଚରନାଥ ! କନ୍ଧ କପଣ ହେ ?
ପରାପର ଭାବ ତେଜ ,
ପରାତ୍ପର ନାଥ,    ଜୟକୃଷ୍ଣ ଭାଷେ—
ପ୍ରଭୁ , ନିଜଗୁଣ ହେଜ ହେ ।

**

**

# ଏ ଜୀବନ ବଢ଼ଦାଣ୍ଡେ

## ଅଧ୍ୟାପକ ଜୟକୃଷ୍ଣ ମିଶ୍ର

(ବଂଶ ଶୋଭାଢୀ)

ଜଗଜ୍ଜୀବନ ହେ ଏ ଜୀବନ ବଡ଼ଦାଣ୍ଡେ
ଧାଉଁଥାଉ କାଳେ କାଳେ ତୁମ ରଥ
ଦଣ୍ଡେ ନ ଅଟକି ଘଣ୍ଟେ (ମହାବାହୁ) ॥୦॥

ଦେଖୁଥିବ କଳାଶ୍ରୀମୁଖ ତୁମର ଲେଖୁଥିବ ତୁମ ଗୀତ,
ଚକା ସେ ଆଖିରେ ମଜ୍ଜାଇ ମନ ମୋ ହଜି ଯାଉଥିବ ନିତ ॥୧॥

ସମୀପେ ଯାଇ ମୁଁ ଶ୍ରୀଅଙ୍ଗ ପରଶେ ଧନ୍ୟ ହେବାର କାମନା
ପୋଷି ନାହିଁ କ୍ଷଣେ, କିଛୁ ମାଗିବାକୁ କେବେ ନାହିଁ ବାସନା ॥୨॥

ନ ବାଞ୍ଛଇ ଭୋଗ ବିଳାସ ତଳେ ମୁଁ ଇନ୍ଦ୍ର କୁବେର ସମ୍ପଦ,
ନ ଲୋଡ଼ଇ ଜ୍ଞାନ ମରତେ ସମ୍ମାନ ନ ଇଚ୍ଛଇ ମୋକ୍ଷ ପଦ ॥୩॥

ମହାଭାବେ ନିତ ଦାନ ଯାଉ ବିତ ଜନମେ ଜନମେ ମୋର
ପାଦ ପଦ୍ମେ ମଧୁବ୍ରତ ବ୍ରତେ ନ ଇଚ୍ଛଇ ତେଜିବାକୁ ମାୟାଡୋର ॥୪॥

ଧ୍ୟାନେ ଡାକେନି,—ଭବପାରାବାରୁ ଆହେ କୃପା-ଅକୂପାର
ପାରକର ମୋତେ, ମରଣ ଦଣ୍ଡରୁ ନାଥ ହେ ଆସି ଉଦ୍ଧାର ॥୫॥

ଅଜ୍ଞାନେ ଜ୍ଞାନେ ବା ନ ଇଚ୍ଛଇ ତବ ଶ୍ରୀପଦେ ନିବେଶି ମନ
ସୁଧୀ-ଭକ୍ତି ମନ୍ତ୍ର- ଗୁରୁଗଉରବେ ଲଭିବି ପରମ ଧନ ॥୬॥

ତତ୍ତ୍ୱଜ୍ଞାନ ଲଭି ଜୀବନେ ମୁଁ ଯାଇଁ ଜିତିବାକୁ ପଦେ ପଦେ
ନ ଇଚ୍ଛଇ ବାରେ ଆହେ ଜଗନ୍ନାଥ ମୁଁ ପୂର ବିଜୟ ମଦେ ॥୭॥

ନ ହୋଇବ ପ୍ରଭୁ ତୁମ ରୂପ ଗୁଣକୀର୍ତ୍ତିନେ ମୁଁ କୀର୍ତ୍ତିମାନ
ଅନନ୍ତ ଯେ ରୂପ ଗୁଣାବଳୀ କାହୁଁ କହିବି ବା ଅବଧାନ ॥୮॥

ପାଗଳ ହୋଇ ମୁଁ ଡେଇଁ ନାଚୁଥିବ ଧାରଣର ଭାବଭୋଳେ,
ଭଣେ ଜୟକୃଷ୍ଣ,—ଚକାଡୋଳା ହେ ମୁଁ ମିଳାଇବ ବେନି ଡୋଳେ ॥୯॥

**

**

# ନିରନ୍ତେ ନୀରବେ ବନ୍ଦେ

ଡଃ ରମାନାଥ ମହାନ୍ତି

(ବିଂଶ ଶତାବ୍ଦୀ)

ନୀଳ ଶଇଳ ଶିଖର ବିଳାସୀ
କୋଟି ବିଧୁ ଜିଣେ ବଦନ ଶଶୀ
କେ ତୁଳି ପାରିବ ଶ୍ରୀଅଙ୍ଗ କାନ୍ତି
ଇନ୍ଦ୍ର ନୀଳମଣି ତୁଚ୍ଛ ସେ ଅତି
    ଅମଳ କମଳ ଆଖି ଯେ
ଥରେ ବିଲୋକିଲେ ଶୋକ ତାପ ଯାଏ
    ଚିତ୍ତ ରହିଯାଏ ଲାଖି ॥

ଅନନ୍ତ କୋଟି ବ୍ରହ୍ମାଣ୍ଡ ଈଶ୍ୱର
ପାଳକ ତାରକ ସାରା ବିଶ୍ୱର
ଶରଣବତ୍ସଳ କରୁଣାନିଧି
ସମ କୃପାଦାନ ଯାହାର ବିଧି
    ଯା' ବିଶାଳ ବାହୁ ତଳ ଯେ
ଯେତେ ଦୀନ ହୀନ ପତିତ ପାମର
    ସବୁରି ଆଶ୍ରୟ ସ୍ଥଳ ॥

ଚରାଚର ବିଶ୍ୱ ସୃଷ୍ଟି କରତା
ସର୍ବ ଶୁଭମସ୍ତୁ ମଙ୍ଗଳଦାତା
ଗୋପାଳ ଗୋବିନ୍ଦ ଶ୍ରୀବନମାଳୀ
ଗୋକୁଳଚନ୍ଦ୍ରମା ଗୋପସଙ୍ଗାଳୀ ଯେ
    ବୃନ୍ଦାବିପିନ ବିହାରୀ ଯେ
ବିଶ୍ୱମୋହନ ଯା' ମୁରଲୀ ସ୍ୱନ
    ରନ୍ଧ୍ରେ ରନ୍ଧ୍ରେ ଅଛି ପୂରି ॥

ବିଶ୍ୱ ବ୍ରହ୍ମାଣ୍ଡର ଜୀବ-ଜୀବନ
ସବୁରି ପରିତ୍ରାଣ ପରିପୂର୍ଣ
ଲୁପତେ ଗୁପତେ ଆଏ ସେ ପାଶେ
ଆରତେ ଡାକଲେ ତୁରତେ ଆସେ
ଦୂରରେ ଆଉ କେ ସାହା
ଅଛୁ ତାଙ୍କ ବିନା ସେ ଅନନ୍ତ ସ୍ୱନା
ଚଉଦଭୁବନ ନାହା

ନୀଳଶୈଳ ଶିଖରେ ବସନ୍ତି
ରସମୟ ରମ୍ୟ ଦାରୁ ତ୍ରିମୂର୍ତ୍ତି
ହଳୀ ବନମାଳୀ ସଙ୍ଗେ ଭଗିନୀ
ଦୀନ କାଙ୍ଗାଳର ଦେବତା ଧନ ସେ
ପତିତଜନ ତାରଣ ସେ
ମୂକ ମନୋହାରୀ ମୋହନ ମୂରତି
ଉଭା ସ୍ନାନ ସିଂହାସନେ ॥

ଦର୍ଶନେ ହୁଅଇ କଲୁଷ କ୍ଷୟ
ଆଯାଚତେ ମିଳେ ବର ଅଭୟ
ସହଜ ସୁଲଭ ଦର୍ଶନ ଆଜି
ସ୍ନାନ ମଣ୍ଡପେ ଅଛନ୍ତି ବିରାଜି
ଅଶେଷ କରୁଣାମୟ ସେ
କୋଟି କୋଟି ପ୍ରାଣ ଶୀତଳ ହୁଅଇ
ଲଭି ଯା' କୃପା ଅମିୟ ॥

କେଡ଼େ ବଡ଼ ପ୍ରଭୁ ଆଉ ସହାୟ
କେଉଁ କଥାରେ ଅଛୁ ଅବା ଭୟ ?
ଖୋଲି ରହିଅଛି କୃପା ଭଣ୍ଡାର
ଧ୍ୟାନ ବଡ଼ ଏଥି ନାହିଁ ବିସ୍ତର
ସେ ପ୍ରଭୁ ପଦାରବିନ୍ଦ ସେ
ଦୀନ ଅକିଞ୍ଚନ ଅଜ୍ଞାନୀ ଅଧମ
ନୀରବେ ନୀରବେ ବନ୍ଦେ ॥

**

* *

# ଚକା ଆଖି ହୋ

## ଶ୍ରୀମତୀ ତୁଳସୀ ଦାସ

(ବିଂଶ ଶତାବ୍ଦୀ)

ଚକା ଆଖି ହୋ,          ତୁମ୍ଭେ କହୁବ ଆଖି
ସତ କହୁବଟି,          କଏ ନାହ୍ଲୁ ବାଛୁ
   କୃପାନିଧି ନାମ ଦେଲା କାହିଁକି ? ।।ଘୋଷା।।

କୃପା ମାଗୁ ମାଗୁ          ଦିନ ବହିଯାଏ
   ନ ମିଳଇ କୃପା ଜଣିକାଏଟି
ଲୁହ ନ କାନ୍ଦ ମୁଁ          ରକତ କାନ୍ଦଇ
   କରମ ଆଦର ଦୁଃଖ ସହିକି ।।୧।।

ଦୀନ ବନ୍ଧୁ ନାମ          ନିଅଛ ଆପଣ
   ଦୀନ ଭାସି ଯାଏ ଆଅ ଗୁହିଁକି
ମହାପ୍ରଭୁ ବୋଲି          ଦିବସ ରଜନୀ
   ମିଛେ ମିଛେ ମୁହିଁ ମରୁଛୁ ଡାକି ।।୨।।

ଭକତର ଭଗ-          ବାନ ବୋଲି ହରି
   ପଡ଼ୁ ଅଛୁ କୁହ କାହିଁ ପାଇଁକି ?
ଭକତ ସକଳେ          ଭକତି ଆଜ ଯେ
   କଏ ସେ ବାଚିବ କୁହ କାହିଁକି ।।୩।।

ପତିତ ପାବନ-          ବାନା ଉଡ଼ାଇଛ
   ସେ କଥା ପ୍ରଭୁ ହେ ମନେ ନାହିଁକି ?
ପତିତ ବିନାଶ          ହେଲେ ଅପଯଶ
   ରହିବ ଅନାଦି କାଳ ପାଇଁକି ।।୪।।

* *

**

## ବଡ଼ ଠାକୁର ହେ

**ଶ୍ରୀମତୀ ତୁଳସୀ ଦାସ**

(ବିଂଶ ଶତାବ୍ଦୀ)

ବଡ଼ ଠାକୁର ହେ ବଡ଼ ଦେଉଳକୁ
ଆଉ ଯିବି ନାହିଁ
ଧୂପ, ଦୀପ ଦେଇ ଜଳାଞ୍ଜଳି ହୋଇ
ଗୁହାରି ଭଣିବି ନାହିଁ ॥ପଦ॥

କି ଲାଗି ପୂଜିବି କୃଷ୍ଣ
ବଚନ ନ ଶୁଣିଲ ଲୁଷ୍ଣ
ତୁମ ପଶ ପଛୁ ଆଉଁ ଥାଉଁ ମୋର
କଷଣ ସହିଲି ନାହିଁ ॥୧॥

କି ଅପରାଧ ମୁଁ କଲି
ମୋ' ଜୀବନ ଦେଲି ଜାଳି
କି ଲାଗି ମଣିଲ ବଷ ବୃକ୍ଷ ମୋତେ
ବୁଝିତ ପାରିଲ ନାହିଁ ॥୨॥

ଅରକ୍ଷ ରକ୍ଷଣ ବାନା
ଉଡ଼ାଉଛ ମିଛେ ସିନା
ଚକା ନୟନକୁ ଚକାଇ ବସିବା
ଶେଷ ହେଲା ମୋର ସାଇଁ ॥୩॥

**

**

# ଚକାନୟନ

## ଶ୍ରୀମତୀ ତୁଳସୀ ଦାସ

(ବିଂଶ ଶତାବ୍ଦୀ)

ଚକାନୟଁନ, ଚକାନୟଁନ
କର ପଞ୍ଝ ଯୋଡ଼ି ଡାକେ
ଗୁହାରି ଶୁଣ ॥ଘୋଷା ॥

ମୋର ଦୁଃଖ ବେଳୁ ବେଳ
ହେଉଛି ପ୍ରଭୁ ପ୍ରବଳ
କେତେ ପରଖିବ ଆଉ,
କୁହ କୁହ ରାଧିକାମୋହନ ॥୧॥

ଜାଣି ହୋଇଲେ ଅଜଣା
ବାଜିବ ନନ୍ଦା ବାଜଣା
ଖାଉନ୍ଦ ହୋଇ ଭଗାରି-
ହେଲେ ହସିବେ ଜଗତ ଜନ ॥୨॥

ଦଅ ଯେତେ ଦେବ ଦୁଃଖ
ତାହା ମୁଁ ମଣିବି ସୁଖ
କରୁଣା କର (କର) କରୁଣା
ଶ୍ରୀରଙ୍ଗା ଚରଣେ ରହୁ ମନ ॥୩॥

**

**

# ଆଉ କାହାକୁ କହିବ

## ଶ୍ରୀମତୀ ତୁଳସୀ ଦାସ

(ବିଂଶ ଶତାବ୍ଦୀ)

ଆଉ କାହାକୁ କହିବ ମୋ' ଦୁଃଖ ହେ
ତୁମେ ନ ଶୁଣିଲେଟି କଳା ଶ୍ରୀମୁଖ ହେ ।।ଘୋଷା ।।

ଜନମ କରି ଯେବେ
ଭଗାରି ହେବ ତେବେ
କୁହନ୍ତି ବୋଲିବେ ଏ ଜଗତଲୋକ ହେ ।।୧।।

ତୁମେ ମାରିଲେ ମାରିବ
ତୁମେ ତାରିଲେ ତାରିବ
ତୁମ ହାତେ ଛୁରି ପ୍ରଭୁ ତୁମ ହାତେ ବେକ ହେ ।।୨।।

ମାଗୁନି ମୁଁ ଧନ ଜନ
ଗୋପ ଲକ୍ଷ୍ମୀ ବଡ଼ପଣ
ପଦ୍ମପାଦେ ଦିଅ ସ୍ଥାନ, ଲୋଡ଼େନି ମୁଁ ସୁଖ ହେ ।।୩।।

**

**

# ଭବ ଜଳୋଦଧି

**ଶ୍ରୀମତୀ ତୁଳସୀ ଦାସ**

(ବିଂଶ ଶତାବ୍ଦୀ)

ଭବ ଜଳୋଦଧି ଆହେ ବଡ଼ ଠାକୁର
କିଏ ଦେଲା ଜଗନ୍ନାଥ ନାମ ତୋହର ॥ଘୋଷା॥

ଡାକ ଡାକ ଦିନଗଲା ଦିନେ ତୋ' ଦୟା ନୋହିଲା
କାହିଁକି ଏତେ ବଡ଼ିମା ଡୁଚ୍ଛା ଗୃତର ॥୧॥

ସମୁଦ୍ରେ ବରଷୁ ଜଳ ଖୋପାଏ ନ ପାଏ କୂଳ
କନ୍ଦିବୁକି ଆଖି ଲୁହେଁ କି ସାଧ ତୋର ॥୨॥

ଚରଣେ ଶରଣ ଦେଇ କାରଣ କର ହେ ସାଇଁ
ଜୀବନ ବନ୍ଧୁ ମାଗୁଣି ଏତିକି ମୋର ॥୩॥

**

**

# ଜୁହାର ତାହାକୁ

## ଗୌର ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ଷାଠିଏ ପଉଟି ଭୋଗ ନଅଣ୍ଟ ଯାହାକୁ
ସିଏବା ବୁଝିବ କାହୁଁ ଆନର ଭୋକକୁ ॥

ରତ୍ନ ସିଂହାସନ ଲୋଡ଼ା ବସିବାକୁ ଯାର
କେତେ ନଠ ଖଟୁଆନ୍ତି ସେବାରେ ଯାହାର
ଏତେ ସୁଖ ଛଡ଼ି କଏ ଆସେ ନା ତଳକୁ ॥

ବଡ଼ ବଡ଼ ଆଖି ଥିଲେ ଲାଭ କଣ କୁହତ
ଆଖି ଯଦି ନ ଜଗିଲା ଗରିବର ମହତ
ଯିଏବା ହେଉ ସେ ଦୂରୁ ଜୁହାର ତାହାକୁ ॥

**

**

## ଷାଠିଏ ପଉଟି ଖାଇ

### ଗୌର ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ବଡ଼ କପଟିଆ ହେଲଣି କାଳିଆ
ବଡ଼ ଦେଉଳରେ ରନ୍ଧ
ବଡ଼ମାନଙ୍କର ମୁଖ ଦେଖିବାକୁ
ବଡ଼ ଆଖି ଅଛି ବନ୍ଧ ॥

କାହାକୁ ଦେଉଛ ଧନ ଜନ ମାନ
କାହାଠୁଁ ନେଉଛ ପୁଣି
କାହାକୁ ଦେଉଛ କେତେ ଯେ କଷଣ
ପାରୁନ କହୁ ମୁଁ ଜାଣି
ତୁମର ଏ ଖେଳ ଆମ ପାଇଁ କାଳ
ଲାଭ ନାହିଁ ଏତେ କନ୍ଦ ॥

କେତେ ପାପୀ ତୁମେ ମୁକତ କରଛ
ସରଗର ସୁଖ ଦେଇ
ସାଧୁ ଲାଗି ତୁମେ ପାଷାଣ ଦେବତା
ବସି ଥାଅ ମୂକ ହୋଇ
କେତେ ଦିନ ଆଉ ଠକିବ ଠାକୁରେ
ଷାଠିଏ ପଉଟି ଖାଇ ॥

**

**

# ଜଗନ୍ନାଥଙ୍କ

ଅଧ୍ୟାପିକା ମନୋରମା ରଥ ମହାପାତ୍ର

(ବିଂଶ ଶତାବ୍ଦୀ)

ହେ ପ୍ରଭୁ ଜଗନ୍ନାଥ ଲୋଡେ ମୋ ଚିତ୍ତ
ତୁମର ଶୁଭାଶୀଷ କୃପା ସତତ ।

ଲଭିଲେ ଆହେ ନାଥ ଲଭିବ ଶୋକ,
ଚିତ୍ତ ନିର୍ମଳ ହେବ ଉଜ୍ଜ୍ୱଳ ମୁଖ ।

କର୍ମ କରିବା ପାଇଁ ଅତୁଳ ବଳ,
କାହୁଁ ଆସିବ ଧାଇଁ, କେଉଁଣ ଦୂର

ହୋଇବ ନିମିଷକେ, ଭରିବ ଆଶା,
ପ୍ରେରଣା ସ୍ରୋତେ ଭାସି ତୁଟିବ ନିଶା ।

ଆଳସ୍ୟ କେଉଁ ଆଡେ ଯିବ ଉଭେଇ,
ସଦା କର୍ମ ତତ୍ପର, ଶୋଚନା ନାହିଁ ।

ଶରୀର ହେବ ସୁସ୍ଥ ଅମାପ ତେଜ,
କାହୁଁ ଆସିବ ମନେ ବିଶ୍ୱାସ ବୀଜ ।

ଜାଏ ବଦନ କରି ମୁକ୍ତରେ ହସି,
ଫୁଟାଇବ ସହସା ଜାଣେ ମୁଁ ଈଶ

କରିବ ତୁମେ ଏକା ଜଗତ ସ୍ୱାମି,
ତୁମର କୃପା କେବେ ଅନ୍ୟଥା ନୋହି ।

ଆନନ୍ଦ ଗୀତି ନାଥ ଗାଇବ ସଦା
କାହିଁ ଲୁଚିବ ପ୍ରଭୁ ସକଳ ବାଧା ।

ବିପତ୍ତି କେଉଁ ଆଉ ଯିବ ଉଭେଇ,
ଲେଖନୀ ମୂନେ ପ୍ରଭୁ ଆଲୋକ ବାନ୍ଧ ।

ଆଲୋକ ବିତରିବ କରୁଣା-ମୟ,
ଅନ୍ଧକାର ଯେ ପ୍ରଭୁ ନେବ ବିଦାୟ ।

ମରମରୁ ତମସା ହୋଇବ ଦୂର,
ଅନ୍ଧାର ଫେଡ଼ି କାହୁଁ ବିଶ୍ୱାସ ମୂଳ

ଜଳିବ ଦାଉ ଦାଉ ଅନ୍ତର ପୁରେ,
କର୍ମରେ ମତ୍ତ ହେବ ଆବେଗ ଭରେ

ସକଳ ବାସନା ମୋ ଭରିବା ପାଇଁ,
ଧାଇଁବି ଅନୁକ୍ଷଣ ସେ ପଦ ଧ୍ୟାୟୀ ।

ସେ ପଦ ମୂଳେ ଚିତ୍ତ ଥିଲେ ଅଟଳ,
ଝରିବ ସିନା ସଦା ପ୍ରେରଣା ଝର ।

ମରମେ ଭରିଯିବ ଆଶା ପ୍ରତ୍ୟୟ,
ଅନନ୍ତ ଅନ୍ଧକାର ଘୋର ପ୍ରଳୟ ।

ବିଜୁଳି ଘଡ଼ ଘଡ଼ି ହେଉ ପ୍ରଭଞ୍ଜନ,
ନିମିଷେ ଦୂର ହେବ ମାୟା ଅଂଜନ ।

ଅପସରିବ ନେଇ ସତ୍ୟ ସ୍ୱରୂପ,
ନିରେଖି ଅନୁକ୍ଷଣ ଭୁଲିବ ଶୋକ ।

ସୁଖ ସାଗରେ ପ୍ରଭୁ ଭାସିବ ମୁହିଁ
ଦିବ୍ୟ ଜ୍ଞାନ ଆଲୋକ ସୁଦୟା ବନ୍ଧୁ ।

ଦେବ ତୁମେ ପରାଣ ସଖା ହେ ସତେ,
ମିନଢ ବାଟେ ନାଥ ଚରଣ ପ୍ରାନ୍ତେ ।

ଜଗତ ଜନ ଦୁଃଖେ ହେଲ ଅଧିର,
ମୋ ପାଇଁ ଆହେ ପ୍ରଭୁ ନୁହେଁ କଠୋର ।

ମୋ ଚିତ୍ତେ ନିତ୍ୟ ବଳ ଭର ଗୋସାଇଁ,
କର୍ମ କରିବା ପାଇଁ ନିଷ୍ଠ ଧୈର୍ଯ୍ୟ

ଜ୍ଞାନ ଅର୍ଜନେ ଚିତ୍ତ ଅତୃପ୍ତ ଥାଉ,
ସନ୍ତୋଷ ମିଳୁ ନାଥ ଶୋଚନା ଯାଉ ।

ଲେଖନୀ ଚଳୁ ମୋର ନୋହୁ ନିରଶ,
ହୃଦ ବେଦନା ସବୁ କରେ ପ୍ରକାଶ ।

ସତ୍ୟ ବାଣୀ ସ୍ମରଣେ ଚିତ୍ତ ମୋ ଭରୁ,
କାମନା ପୂରୁ ନାଥ, ବିଦ୍ୱେଷ ସରୁ ।

ଅନନ୍ତ ଲୀଳାମୟ କରୁଣା ନିଧି ,
ଦୟା କରିବ ବାରେ ଲଭିବି ସିଦ୍ଧି ।

କରିବା ପାଇଁ କର୍ମ ବଳୁ ମୋ ମନ,
ଚିତ୍ତେ ବିଶ୍ୱାସ ଦିଅ ଚକାନୟନ ।

ଆତ୍ମବିଶ୍ୱାସ ଦିଅ ଦୃଢ଼ ପ୍ରତ୍ୟୟ,
ଆନନ୍ଦ ଧାୟୀ ନାଥ ତୁମଠି ଲୟ ।

ଅନୁକ୍ଷଣ ହେ ଆଉ ପରାଣ ସଖା,
ଘନ ତମସା ମଧ୍ୟେ ପ୍ରଦୀପ ଶିଖା ।

ତୁମରି ସ୍ମିତ ନାଥ ଦେଖାଇ ଦେବ,
ଘୋର ଦୁଃଖରେ ମୁଖେ ବାଣୀ ସ୍ଫୁରିବ ।

ଆଶା ଉତ୍କଳ ମୁଖ ଛାଳିବ ସୁଖ,
ନିରେଖି ଚକା ଡୋଳା ସେ କଂଜମୁଖ

କର୍ମ ସ୍ରୋତରେ ଚିତ୍ତ ନିଯୁକ୍ତ ରଖି
ଆନନ୍ଦ ସାଗରରେ ପଡ଼ିବ ଝାସି ।

ଦିବ୍ୟ ଆନନ୍ଦ ରସେ ହୋଇ ମଗନ,
ସଂସାରକୁ ମଣିବ ଯେହ୍ନେ ସ୍ୱପନ ।

ସରଗ ସୁଖ ଶିର ଆସିବ ଫେରି,
ଭକତ ଥିଲେ ଚିତ୍ତେ ହେ ଚକ୍ରଧାରୀ ।

ଅନ୍ୟଥା ହେବ ନାହିଁ ନର ଜୀବନ,
ଦେବ ଦୁର୍ଲଭ ଜନ୍ମ ହେବ ଶୋଭନ ।

ଭକତ ଲୋଡ଼ା ନାଥ କରୁଣାମୟ
ଭକତ ବଳେ ସିନା କରିବ ଜୟ ।

**

**

## ଦେଖେ ନେତ୍ର ମେଲି

### ଅଧ୍ୟାପକ ମନୋରମା ରଥ ମହାପାତ୍ର

(ବିଂଶ ଶତାବ୍ଦୀ)

ଚକ୍ରଧାରୀ ଚରଣରେ ଚିତ୍ତ ରଖି ମୁହିଁ
ଗାଉଛି ଏ ଗୀତ କ୍ଷମା କର କୃପା ବନ୍ଧୁ ।

ବିଚଳିତ ଚିତ୍ତ ମୋର ଅସ୍ଥିର ସତତ
କୃପା କରିଲେ ଜିଣିବ ତୁମେ ଦୀନନାଥ ।

ଦୀନଜନ ଠାରେ ଦୟା ଦୀନବନ୍ଧୁ ନାମ
ଜନାଦୃତ ଯୁଗେ ଯୁଗେ ପତିତପାବନ ।

ଅନନ୍ତ ଅପାର ପ୍ରଭୁ ତୁମର ମହିମା
ମୂକ ମୁଖେ ବାଣୀ ଦିଅ କଲେ ସେ ସାଧନା ।

ସାଧନା ନିମନ୍ତେ ପ୍ରଭୁ ବଳାଅ ମୋ ମନ
ସାଧନାର ପଥ ପ୍ରଭୁ ଅତୀବ ବିଷମ ।

ସେ ବିଷମ ପଥେ ପାଦ ରଖିଛୁ ଗୋସାଇଁ
ଥର ଥର ଥରେ ଦେହ ଦମ୍ଭ ଆସେ ନାହିଁ ।

କ୍ଷୁରଧାର ପଥେ କେତେ କରିବି ଗମନ
ଆଲୋକ ଦେଖାଅ ପ୍ରଭୁ ଦୃଢ଼ କର ମନ ।

ଚିତ୍ତ ସରସୀରେ ଫୁଟୁ ଭକତି ସୁମନ
ତୁମଠାରେ ଆସ୍ଥା ଆଉ, ସନ୍ଦେହ ମୋଚନ

କରିବ ତୁମେହିଁ ପ୍ରଭୁ କରୁଛୁ ଗୁହାରି
ସନ୍ଧାନର ପଥ ନାଥ ଦେଖେ ନେତ୍ର ମେଲି ।

**

**

# ଦାଅ ହେ ଜଗନ୍ନାଥ

ଅଧ୍ୟାପିକା ମନୋରମା ରଥ ମହାପାତ୍ର

(ବିଂଶ ଶତାବ୍ଦୀ)

ନେତ୍ର ଉତ୍ସବେ ଚକ୍ଷୁ ଦାଅହେ ଚକା ନୟନ
ଅନ୍ଧ ମୁଁ ଆହା ନେହେ ବୋଲିଛୁ ମାୟା ଅଞ୍ଜନ ।

ପାରୁନାହିଁ ଦେଖି ସେ ରୂପ ମୂରତି ନିତ୍ୟ ଅମୃତ
ସୁଧାମୟ ରୂପ ପ୍ରେମର ପ୍ରତୀକ; ସତ୍ୟ ସ୍ୱରୂପ ।

କେବଳ ଦିଶଇ ଅନ୍ଧ ନୟନେ ଅନ୍ଧକାର
ଘୋର ଦୁର୍ଦ୍ଦିନ ରୋଗ ଜରା ଦୁଃଖ ନର୍କ ଦ୍ୱାର ।

ମଣିଷ କେମିତି ଛୁଟୁଛି ବିକଳେ ହଜାଇ ଦିଗ
ମାୟାରେ ୯୫ିକ ରୂପ ଦିଶେ ସତେ ସୁଖ ସୋହାଗ ।

ଏଇ ଘର ଏଇ ସଂସାର ଏଥି ଆସିଛି ମୁହିଁ
ଭୋଗ ମୁଁ କରିବ ଗ୍ରାସିବ ସକଳ ମତ୍ତ ହୋଇ

ଅହମିକା ଭରେ ଗରବରେ ଭୁଲି ମରଣକଥା
ସମ୍ଭୋଗ ଶିର ଲୁଚି ନେବ ଭଲି ଟେକିଲି ମଥା ।

ଶ୍ରବଣେ ବାଜିଲା ମରମ ଭିଜିଲା ଅମୀୟ ବାଣୀ
ଜାଣିଲି ହେ, ପ୍ରଭୁ ହେ ଚକାନୟନ ପଦ୍ମପାଣି ।

ପଦ୍ମ ପତ୍ରରେ ଟଳ ଟଳ ଟଳ ବିନ୍ଦୁ ସମାନ
ସଂସାରେ ଥାଇ ବିଭୁ ପୟରରେ ଢାଳିଲେ ମନ ।

ଆସକ୍ତି ମୋହ ପାଶରେ ନପଡ଼ି ସତ୍ୟ ରୂପ
ନିରେଖି ଦେଖିଲେ ମନ ଗହ୍ୱଲରୁ ଲିଭିବ ଶୋକ ।

ଅନ୍ଧାର ଭରା ଅନ୍ତଃକରଣ ଉଠିବ ଭରି
ଆଲୋକ ଝରଣା ଅମୃତମୟ ପୁଣ୍ୟଶିରି ।

ଆନନ୍ଦମୟ ଆନନ୍ଦଧାରା ଛୁଟିବ ମନେ
ଦିବ୍ୟ ଲୋଚନ ଚକ୍ଷୁ ଦିଅ ହେ ଏଇ ଲଗନେ ।

ଦର୍ଶନାସ୍ପୃନ ଲଭିବ ଜାଣିବ ମିଥ୍ୟା ମାୟା
କଷଟି ପଥରେ କଷିବ ମରମ କର ସୁଦୟା ।

ନେତ୍ର ଉତ୍ସବେ ନେତ୍ର ଦିଅହେ ଜଗନ୍ନାଥ
ଜଗତର ହିତେ ଯାପିବି ଜୀବନ ପୁଣ୍ୟ ପଥ ।

ବାଞ୍ଛା ନେବ ପ୍ରଭୁ ଶକ୍ତି ଦିଅ ହେ ଚକ୍ଷୁ ମୋର
ଆକୁଳ ପରାଣେ ଡାକୁଛି ହେ ପ୍ରଭୁ ଦିବସ ଶେର

ବିଷୟେ ଅନ୍ଧ ଦୃଷ୍ଟି ଦିଅ ହେ ଜଗତନାଥ
ନିବେଶି ଚଉକାଞ୍ଚ ଚରଣେ ପାଳିବି ବ୍ରତ ।

**

**

# ହେ ଚକା ଡୋଳା

ଅଧ୍ୟାପିକା ମନୋରମା ରଥ ମହାପାତ୍ର

(ବିଂଶ ଶତାବ୍ଦୀ)

ଶ୍ରୀ ଜଗନ୍ନାଥ ପଦେ ନମିଲି ପ୍ରଭୁ,
ସେ ନାମ ମୁଖେ ଧରି ଅପାର ଭକ୍ତୁ ।

ଉଚ୍ଛଳିବ ହେ ନାଥ ବକ୍ଷରେ ଚିତ୍ତ,
ରଚନା କରିବାରେ ଚିତ୍ତ ନିଯୁକ୍ତ ।

ଆଉ ଠାକୁର ଆହ୍ଵା ଏତିକ ଆଶା,
ରଖିବ ମରମରେ ମୁଖରେ ଭାଷା

ଦେବ ତୁମେ ଗୋସାଇଁ ହେ ଜଗନ୍ନାଥ
କବି ହେବାକୁ ମୋର ବଳିଛି ଚିତ୍ତ ।

ତୁମ ଚରଣେ ପ୍ରଭୁ ଭକତି ଆଉ,
ଯାହା ଦେଇଛ ପ୍ରଭୁ ଅନ୍ୟଥା ନୋହୁ ।

ହସ୍ତରେ ଲେଖନୀ ମୋ ହେଉ ଚଞ୍ଚଳ,
ଆନନ୍ଦ ବିତରି ମୁଁ ଜୀବ ସକଳ ।

ସେବାରେ ରତ ହେବ କରୁଣା-ମୟୁ
ଜୀବନ ଥିବା ଯାକେ ତୁମଠି ଲୟୁ ।

ମୋ ମୁଖେ ବାଣୀ ଦିଅ ଲେଖନ ଶକ୍ତି,
ତମେ ପାରିଲେ ଦେବ ଜଗତ ପତି ।

ପତିତପାବନ ହେ କରେ ମାଗୁଣି,
ଅଧମା ଜନମ ଖୀ ଯୋଡ଼ି ମୋ ପାଣି ।

ସତ୍ୟ ପ୍ରଗ୍ରରେ ମୋର ଲେଖନୀ ସଦା
ମାନବ ସେବା ପାଇଁ ନପାଉ ବାଧା

ଅନୁକ୍ଷଣ ହେ ପ୍ରଭୁ ଚଳୁ ଲେଖନୀ,
ସାହିତ୍ୟ ସାଧନାରେ ପୂଜିବି ବାଣୀ

ବୀଣାପାଣିଙ୍କ କୃପା ମୋଠାରେ ଥାଉ,
ଲେଖନୀ ମୁନେ ପ୍ରଭୁ ବେଦନା ଯାଉ

ତୁମର ଗୁଣ ନାଥ ପାରଲେ ଗାଇ,
ଭବ ସଂସାରେ ଦୁଃଖ ରହିବ ନାହିଁ ।

ସଫଳ ହୋଇବ ମୋ ନାରୀ ଜନମ,
ରଚନା ଶକ୍ତି ଦିଅ ହେ ଅଭିରାମ ।

ପତିତ ପାବନ ହେ କରୁଣାନଧି
କୃପାସିନ୍ଧୁ କର ହେ ଲଭିବି ସିଦ୍ଧି ।

ଶକତି ଦିଅ ନାଥ କରୁଣା-ନଧି,
ପୁରୁ ମୋ ମନୋରଥ ଲଭେ ମୁଁ ସିଦ୍ଧି ।

ମାନସେ ବକ୍ଷରେ ଯା' ଲେଖିବି ତାହା,
ଶକତି ଦିଅପ୍ରଭୁ ଦେଖିବ ଯାହା ।

ଏତିକି ଶ୍ରୀଚରଣେ ମାଗୁଛି ମୁହିଁ,
ଆନ ବରରେ ମୋର ମାନସ ନାହିଁ

ହେ ପ୍ରଭୁ ମାଗୁନାହିଁ ଧନ ସଂପତ୍ତି
ମାଗୁଛି ଚରଣେ ଦିଅ ଅଚଳ ଭକ୍ତି

ତୁମ ଠାରେ ହେ ନାଥ ଥିଲେ ବିଶ୍ୱାସ,
ମନରୁ କ୍ଲେଶ ସବୁ ହୋଇବ ନାଶ ।

ଯାହା ବିଷୟରେ ଚିନ୍ତା କରିବା ପାଇଁ
ଦମ୍ଭ ମନରେ ଆହା ଆସଇ ନାହିଁ ।

କର୍ମ କରିବା ପାଇଁ ମନର ବଳ,
ନ ପାଇ ପ୍ରଭୁ ହୁଏ ସଦା ବିକଳ ।

ମିଳିବ ଏ ଭରସା ନ ପାଇ ସଖା,
ନିରନ୍ତର ଯନ୍ତ୍ରଣା ଲଲାଟେ ଲେଖା ।

ଅପାରଗ ହେ ପ୍ରଭୁ ପ୍ରବଳ ଇଚ୍ଛା
ହୁଏତ ନାହିଁ ଚିତ୍ତେ ଅଟଳ ବାଞ୍ଛା ।

ପୂରଣ ହେବ କେମନ୍ତେ ହେ ଜଗଦୀଶ
ଦୁର୍ବଳ ଚିତ୍ତେ ପ୍ରଭୁ-ଭର ସାହସ ।

ଭକତି ଶକ୍ତି ଦିଅ ଅଟଳ ଦମ୍ଭ
କରୁଣା ପ୍ରୀତି ଭରେ ସବୁ ସମ୍ଭବ

ହୋଇବ ଏ ଜଗତେ କରୁଣା ସାଇଁ
ମୋ ଚିତ୍ତେ ନିତ୍ୟ ବଳ ଭର ଗୋସାଇଁ ।

ମିନତି କରେ ନାଥ ଯୋଡ଼ି ମୋ କର,
ଲେଖନୀ ଶକ୍ତି କର, କର୍ମ ସଫଳ ।

ଲଭିବା ପାଇଁ ମତି, ଦିଅ ଗୋସାଇଁ,
ସକଳ ଜୀବେ ସ୍ନେହ ଢାଳିବା ପାଇଁ ।

ନିରନ୍ତର ମୋ ଚିତ୍ତ ହେଉ ବ୍ୟାକୁଳ,
ଈର୍ଷା ବିଦ୍ୱେଷ ମନୁ କରହେ ଦୂର ।

ହାରିଲି ବୋଲି ଯେହ୍ନେ ନ ପଡେ ଲାଜ,
ଲଢିବା ପାଇଁ ଟାଣେ ଉଠିବ ସାଜ ।

ପାଦରେ ଦମ୍ଭ ଆହ୍ୱା ଆସଇ ନାହିଁ
ଚିତ୍ତେ ବିଶ୍ୱାସ ଭର ଜଗତ ସାଇଁ ।

ଆପଣାକୁ ଚିହ୍ନିବ ସାଧନା ବଳେ,
ନ ଚିହ୍ନି ଝୁରୁ ଅଛୁ ଆହ୍ୱା ଡକଲେ ।

କସ୍ତୁର ମୃଗସମ ଘୂରୁଛୁ ସିନା,
ସୁରଭି କାହୁଁ ଆସେ ନ ପଡେ ଜଣା ।

ଚିତ୍ତ ମୋହର ପ୍ରଭୁ ହୁଏ ବିକ୍ଷିପ୍ତ,
ଅନନ୍ତ ଲୀଳାମୟ କରାଅ ଶାନ୍ତ ।

ଶାନ୍ତ ସଲିଳ ଢାଳି ଦିବ୍ୟ ଆନନ୍ଦ,
ବରଷ ଆହେ ପ୍ରଭୁ, ତୁଟୁ ଏ ଦ୍ୱନ୍ଦ୍ୱ ।

ଆନନ୍ଦ ଲେଉଡା ଖାଲି କରୁଣା ମୟ,
ଆନନ୍ଦ ସାଗରରେ ସଦା ମୋ ଲୟ ।

କର୍ମ ସାଧନା ବଳେ ସେ ସୁଖ ପାଇ,
ଜଗତ ଜନ ହୃତେ ନସ୍ତୁତ ଧାସ୍ତି ।

ଲେଖନୀ ଚଳାଇବ ନୋହୁ ଝରଣ,
ବରଷି ଦିଅ ପ୍ରଭୁ ଏହି ଆଶିଷ ।

ହେ ଚକାଡୋଳା କରେ ଏହି ପ୍ରାର୍ଥନା
ନସ୍ତୁତ ମୁଖେ ଫୁଟୁ ତୁମ ମହିମା ।

**

**

# ମୋ ଚକା ଆଖିଆ

## ଶଙ୍କର୍ଷଣ ମଂଗରାଜ

(ବିଂଶ ଶତାବ୍ଦୀ)

ମୋ ଚକା ଆଖିଆ
ଝାମ୍ପୁଆ ଚୁଳିଆ
ହେ ମୋ କାଳିଆ ଠାକୁର,
ଭାଇ ଭଉଣୀଙ୍କୁ
ରଥରେ ବସାଇ
ଏପରି କରୁଛ ଉଚ୍ଚୁର
ଏଇକି ବିବେକ ତୁମର ॥୧॥

ଇନ୍ଦ୍ର ଡାକୁଛନ୍ତି
ମଣିମା ମଣିମା
ବ୍ରହ୍ମା କରୁଛନ୍ତି ଗୁହାରି,
ତୁମ ଗଜପତି
ଛାମୁରେ ହାଜର
ନସ୍ଥଳୁ ଲୋତକ ଝରାଇ
ନ ଦିଅ ମିନତି ଏଡ଼ାଇ ॥୨॥

ବଡ଼ଦାଣ୍ଡେ ଆଜି
ଜାଗା ଟିକେ ନାହିଁ
ସୋରିଷ ପଡ଼ିବା ପାଇଁକି
ଏତେ ଭକତଙ୍କ
ଆକୁଳ ମିନତି
କର୍ଣ୍ଣକୁ ତୋ ଶୁଭୁ ନାହିଁକି
ତେବେ ତୋ ବିଳମ୍ବ କାହିଁକି ? ॥୩॥

ଛେଷ୍ଟ କଷ୍ଟ ଖାଇ
ପହଣ୍ଡି କୁ ବଳେ
ନନ୍ଦଘୋଷ ପାଖେ ରହିଛ,
ଗ୍ଧର ଉପରକୁ
ନ ଚଢ଼ି କପାଇଁ
ଏପରି ହତାଶା କରୁଛ
ମନେ ଅବା କସ ପାଞ୍ଚିଛ ॥୪॥

**

**

# କେଉଠି ଦେଖିଛି

**ଶଙ୍କର୍ଷଣ ମଙ୍ଗରାଜ**

(ବିଂଶ ଶତାବ୍ଦୀ)

କେଉଁଠି ଦେଖିଛ ଧନେ କେଉଁ ଜୀବନେ
ପଡ଼ୁଛି ମନେ...
ଏ ନୁହେଁ ସୀତାଙ୍କ ରାମ ଏ ନୁହେଁ ରା[illegible]
ଲକ୍ଷ୍ମୀ ନାରାୟଣ ବାନା ଆକାଶ ଚୁମେ ॥୧॥

ମତ୍ସ୍ୟ କଚ୍ଛପତ ନୁହେଁ ବରାହ ନୃସିଂହ ନୁହେଁ
ବାମନ ବା ଭୃଗୁରାମ ନ କହେ ଜଣେ
ନୁହଇ ବଉଦ୍ଧରୂପ ନୁହେଁ କଲକୀ ସ୍ୱରୂପ
ଭାଇ ଭଉଣୀଙ୍କ ସାଥେ ରହେ ମଉନେ ॥୨॥

ଏକା ଯୀଶୁ ମହମ୍ମଦ ନ ଶୁଭେ ଶୂନ୍ୟ ଶବଦ
ଅଣାକାର ବ୍ରହ୍ମ ନୁହେଁ ଆକାର ବହେ
ନୁହେଁ ଚଣ୍ଡୀ କାଳି ଅବା ଲିଙ୍ଗ ରୂପୀ ବିଶ୍ୱ ଦେବା
ଦୀନବନ୍ଧୁ ନାମ ବହି ଗୁହାରି ଶୁଣେ ॥୩॥

**

**

# ଲୋଡ଼ାନାହିଁ

## ବଂଶୀଧର ମିଶ୍ର

(ବଂଶ ଶତାବ୍ଦୀ)

ଚକାଡୋଳା, ଚକାଆଖି, ଚକାନୟନ,
ସେ ଆଖିକୁ କେଉଁ କଥା ନାହିଁ ଗୋପନ ॥୦॥

ସେ ଆଖିରେ ନାହିଁ ଛନ୍ଦ
ନାହିଁ ଦିନରାତି ଭେଦ
ତା ଆଖିର ପୂଅ କରେନାହିଁ ଶୟନ ॥୧॥

ବସି ଅନ୍ଧାର ଦେଉଳେ
ସବୁ ଦେଖେ ତାର ଡୋଳେ
ଆଲୁଅ ଅନ୍ଧାର ତାର ସବୁ ସମାନ ॥୨॥

କାନ ନାହିଁ ସବୁ ଶୁଣେ
ସମସ୍ତଙ୍କ ଦୁଃଖ ଜାଣେ
ତାର ମନ ହେଲେ ସିଏ କରେ ମୋଚନ ॥୩॥

ତା ଆଖିରେ ଦେଇ ଧୂଳ
କିଏ ଯିବ ତାକୁ ବଳି
ତା ଆଖିରେ ଦେଖେ ସିଏ ଚଉଦ ଭୁବନ ॥୪॥

ଅହ ରହ ଆଏ ଚାହିଁ
ପଲକ ପଡ଼ଇ ନାହିଁ
ଚକା ଚକା ଆଖି ତାର ପତା ବିହୀନ ॥୫॥

ସେ ଆଖିକୁ ଥରେ ଚାହିଁ
ଦୀନ ବଂଶୀ ଯିବ ଶୋଇ
ଲୋଡ଼ା ନାହିଁ ମୋର ଧନ, ଜନ ସମ୍ମାନ ॥୬॥

**

**

# ତୁମେତ ଜଗତନାଥ

**ବଂଶୀଧର ମିଶ୍ର**

(ବିଂଶ ଶତାବ୍ଦୀ)

ଜଗନ୍ନାଥ

ତୁମେ ତ ଜଗତ ନାଥ
ତୁମର ଦୁଆରେ ଆସିଛି ମୁଁ ଡାକେ
ଯୋଡ଼ି ମୋର ଦେନି ହାତ ॥୦॥

ଆସିଅଛୁ ଧାଇଁ         ବହୁଦୂରୁ ମୁହିଁ
ଦୁଃଖ ଜଣାଇବା ପାଇଁ
କର୍ଣ୍ଣ ଡେରିବାରେ        ଶୁଣ ତୁମେ ଥରେ
ଆହେ ବ୍ରହ୍ମାଣ୍ଡ ଗୋସାଇଁ ॥୧॥

ଗହନ ବନରେ           ଡାକିଲା ହରଣୀ
ଜଳରେ ଡାକିଲା ଗଜ,
କୁରୁ ସଭା ତଳେ         ଦ୍ରୌପଦୀ ଡାକିଲା
ନିବାରିଲ ତାର ଲାଜ ॥୨॥

ସାତ ବରଷର           ବାଳକ ଧ୍ରୁବର
ଡାକେ ତୁମେ ଆସିଥିଲ,
ଭକତ ପ୍ରହ୍ଲାଦ          ଭକ୍ତିରେ ଡାକିଲା
ସ୍ତମ୍ଭରୁ ବାହାର ହେଲ ॥୩॥

ଗଜପତି ଡାକେ  ଗଲ ଦୁଇଭାଇ
କଲ କାଞ୍ଚି ଅଭିଯାନ,
ସାକ୍ଷୀ ଦେବା ପାଇଁ  ଡାକିଲା ବ୍ରାହ୍ମଣ
ରଖିଲ ତାହାର ମାନ ।।୪।।

ଯେ ଯେତେ ଡାକଲେ  ସେ ଡାକ ଶୁଣିଲ
ମୋ ଡାକ କମ୍ପା ନ ଶୁଣ
ନ ଶୁଣିବା ଯାଏ  ଡାକୁଥିବ ପାଖେ
ଏଇ ମୋର ଶେଷ ପଣ ।।୫।।

ମାଗୁନାହିଁ ଧନ  ଅଥବା ସମ୍ପଦ
ଏତିକ ମାଗୁଣି ଜାଣ
ତୁମର ସମ୍ମୁଖେ  ଯାଉ ଏ ଜୀବନ
ବଂଶୀ ଲଭୁ ପରିତ୍ରାଣ ।।୬।।

**

**

## ଜଗନ୍ନାଥ ବଂଦନ

### ଶ୍ରୀମତୀ କଳାବତୀ ଦେବୀ

(ବିଂଶ ଶତାବ୍ଦୀ)

ଜଗବଂଧୁ ହେ ଜଗନ୍ନାଥ ବଂଦନ
ବଡ଼ ହଟିଆ ଯଦୁ ନନ୍ଦନ ।।୦।।

ତୋ'ପରି ଖାଉନ୍ଦ ଥାଇ
କି ଲାଭ କହ
ହେ ହରି କି ଲାଭ କହ
ନିରତେ ନୟନୁଁ ଯେବେ ଝରିଲା ଲୁହ
ପ୍ରବଳ ହେଲା ଦୁଃଖ ଆହେ କଳାଶ୍ରୀ ମୁଖ
ସୁଖ ହୋଇଲା ସାତ ସପନ ।।୧।।

ପତିତ ଉଦ୍ଧାର ପାଇଁ ଉଡ଼ାଅ ବାନା
ମୁଁ ଜଣେ ପତିତ ଡାକେ ନ ଶୁଣୁ ସିନା
ବଡ଼ ବୋଲାଅ ଲାଜ ନାହିଁଟି ଦେବରାଜ
କୃପାଳୁ ହୋଇ, ହେଉ କୃପଣ ।।୨।।

ଦୀନବଂଧୁ ବୋଲାଇ ଦୀନକୁ ମାରୁ
ହେ ହରି ଦୀନକୁ ମାରୁ
ଜଗତ ଜନ ହସିବା କଥା ତୁ କରୁ
କହ୍ନା ହେବ କାହାକୁ ପଚ୍ଛର ତୋ ମନକୁ
ମହାପ୍ରଭୁ ରାଧିକା ମୋହନ ।।୩।।

**

**

# ଜଗତ୍‌ଜୀବନ ସ୍ୱାମୀ

## ଶ୍ରୀମତୀ କଳାବତୀ ଦେବୀ

(ବିଂଶ ଶତାବ୍ଦୀ)

ମାନ ଉଦ୍ଧାରଣ ମୋ'ରମା ରମଣ
ଜଗତ ଜୀବନ ସ୍ୱାମୀ
ହେ ଦୁଃଖ ନାଶନ ଗରୁଡ଼ ଆସନ
ସକଳ ମଂଗଳ କାମୀ ॥୧॥

ବଡ଼ ଦେଉଳର ହେ ବଡ଼ ଠାକୁର
ପଥର ଗଲ କି ହୋଇ
ମୁଁ ଜଣେ ପତିତ ଡାକୁଛି ନିରତ
ମୋ' ଡାକ କି ଶୁଭୁ ନାହିଁ ?
ନୀଳ ଚକ୍ରେ ନେତ ବାନ୍ଧି ଅଛ ନାଥ
କାଲିଗି ଦିବସ ଯାମୀ ॥୨॥

ଲକ୍ଷ ଯୋଜନରେ ଆରତ ସ୍ୱରରେ
ଡାକ ଦେଲା ପଶୁ ଗଜ
କୁରୁ ସଭାତଳେ ଦ୍ରୌପଦୀ ଆକୁଳେ
ସ୍ମରିଲା ହେ ଦେବରାଜ
ମୃଗୁଣୀର ସ୍ତୁତି ସୁଦାମା ମିନତି
ଶୁଣିଲ ଅନ୍ତର ଯାମୀ ॥୩॥

**

**

# ଚକାନୟନ ଠକାଉଛ କାହିଁକି ?

## ପ୍ରେମାନନ୍ଦ କର

(ବିଂଶ ଶତାବ୍ଦୀ)

[ରାଗ-ମାଳବ ଗୌଡ଼ା]

ତାଳ-ଆଦିତାଳ

ଚକା ନୟନ ଠକାଉଛ କାହିଁକି
ଡକା ପକାଏ ଟିକେ ଦେଖା ନାହିଁକି ॥୦॥

ମାଗିବି ବୋଲି କିଛୁ ତୁମ ଭଣ୍ଡାରୁ ବାଛୁ
ଜାଣି ହାତ ଦୁଇଟି ଦେଲ କାଟିକି
ଥିଲେ ଅବା ଚରଣ ନେବି ଯାଇ ଶରଣ
ପାଦ-ପଦ୍ମ ଲୁଚାଇ ସେଥିପାଇଁକି ॥୧॥

ଶୁଣିବନି ଗୁହାରି ବୋଲି କି ହେ ଶ୍ରୀହରି
କାହିଁ ଗୁପତ କଲ କର୍ଣ୍ଣ ଦୁଇକି
ନୀଳକନ୍ଦରେ ଲୁଚି କପଟ ଲୀଳା ରଚି
ମାୟାଧର ମାୟା ଲଗାଅ କାହିଁକି ॥୨॥

ତୁମ ରତ୍ନଭଣ୍ଡାର କି ଲୋଡ଼ା ଲକ୍ଷ୍ମୀଧର
ଆଶା, ତୁମ କରୁଣା-ସ୍ନେହ ବାନ୍ଧିକି
ଥାଉ ନଥାଉ କର୍ଣ୍ଣ ଚକ୍ଷୁଃଶ୍ରବା ଆପଣ
ମୋର ଡାକ ନଶୁଣ କାହିଁ ପାଇଁକି ॥୩॥

ବ୍ରହ୍ମା-ଶିବେ ଗୋଚର ନୁହେଁ ତୁମ ପସ୍ତର
କଥା ବଳାଇବ ମନ୍ଦ ତହିଁକି
ତୁମ ଚକାନୟନ କରି ଥରେ ଦର୍ଶନ
ଜୀବ ଯାଉ କାମନା ଏତିକି ॥୪॥

**

**

# ବଡ଼ଦାଣ୍ଡ ବୋଲି ପରା ପଡ଼ୁଛି ହୁରି

## ପ୍ରେମାନନ୍ଦ କର

(ବିଂଶ ଶତାବ୍ଦୀ)

[ ରାଗ-କାମ୍ବୋଜ]

ତାଳ-କାହାରବା

ବଡ଼ଦାଣ୍ଡ ବୋଲି ପରା ପଡ଼ୁଛି ହୁରି···ହରି ହେ
କାହିଁ ବସିଛ ଦାରୁ ହୋଇ ମୁରାରି ॥୧॥

ଘଣ୍ଟା, ଭେରୀ, ମର୍ଦ୍ଦଳ, ଗିନି, ପଖାଜ, ଖୋଳ
ମଣିମା ମଣିମା ଡାକେ ଉଚ୍ଛୁଳେ ବଡ଼ ଦେଉଳ
କରିଛ କହେ ମାନ ଆହେ କମଳାନନ···ହରିହେ
ମଉନେ ବସିଛ ଭକ୍ତ ଅଛନ୍ତି ଘେରି ॥୨॥

କୁରୁକ୍ଷେତ୍ରେ ସାରଥି କାହ୍ନିଯୁଦ୍ଧରେ ରଥ
ଜଉଣପେ ନାଶିଲ ଲଙ୍କାପୁରକୁ ମନ୍ଥି
ନୀଳ କଂଦରେ ଲୁଚି କାହାଡରେ ବରଣ୍ଟି···ହରି ହେ
ନାମ ବୋଲାଇଲ ନୀଳାଦ୍ରି ବିହାରୀ ॥୩॥

ଦାସିଆ ଠାରୁ ହାତେ ଶ୍ରୀଫଳ ନେଲ ରଥେ
ଚରଣ ରେଣୁ ଲାଗି ଅହଲ୍ୟା ତରିଲା ପଥେ
ଆଜହେ ଜଗନ୍ନାଥ କାହିଁ ସେ ଗୋଡ଼ ହାତ
ମୋ ବେଳକୁ ମାଦଲ ବିଶ୍ୱବିହାରୀ ॥୪॥

**

**

# ନଲୋଡ଼େ କିଛୁ

## ପ୍ରେମାନନ୍ଦ କର

(ବିଶଂ ଶତାବ୍ଦୀ)

[ରାଗ-କାମୋଦ]

ତାଳ-ଝିପଟା

ନ ଲୋଡ଼େ କିଛୁ ମୁଁ ଆନ···ଚକାନୟନ
ଦେଖୁଥିବି ତୋର ବାସ ପୀତବାସ
ଗାଉଥିବ ତୋ ଭଜନ ॥୧॥

ଭିକ୍ଷା ମାଗୁଥିବ ଚରଣ ରେଣୁରେ
ଶ୍ରୀପଦରେ ଥିବ ଧ୍ୟାନ
ନିନ୍ଦା-ହାର ଗୁଡ଼ର ଥିଲେ ତୋ ପାଶରେ
କି କରିବ ଜନୁଗଣ ॥୨॥

ରହୁଥିବ ପ୍ରଭୁ ଦୟୁଣା ମାଳରେ
ଏତିକ ମାତର ମନ
ତୋ ଅଂଗରେ ଜଡ଼ି ପଡ଼ନ୍ତୁ ମୁଁ ଝଡ଼ି
ଧାଇଁ ପତିତପାବନ ॥୨॥

ହେ ଜଗା କାଳିଆ ତୋଦୁଆରେ ଠିଆ
ହୋଇଥିବ ନିଶିଦିନ
ଶ୍ରୀନେତ୍ର ପଙ୍କଜ ମଧୁପାନ କରି
ଯାଉ ମୋର ଏ ଜୀବନ ॥୩॥

**

**

# ଜଗତ ଶେଠ

**ସୁଜାତା ମହାନ୍ତି**

(ବିଂଶ ଶତାବ୍ଦୀ)

ନୀଳାଚଳେ କାଳିଆ
ହାଟ ଲଗାଏ ଭକତ ଜନେ    ହାଟିଆ ଚକା ଡୋଳିଆ ।

ବଡ଼ ଦେଉଳେ ପଡ଼େ ଚହଳ
ଲାଗିଛି କେଡ଼େ ଦେଖ ଗହଳ
ବଡ଼ ପଣ୍ଡାଙ୍କ ବଡ଼ ମୁଣ୍ଡଟା    ହେଉଛି ଗୋଳମାଳିଆ ।

ମନରେ ନାହିଁ ଟିକେ ହରଷ
ଗାଦିରେ ବସି ହୋଇ ବିରସ
ବ ଖବର ସେ ପାଇଲେ ନାହିଁ    ଉତ୍ତର ଦେଲା ଭଳିଆ ।

ଯାହାର ଦାଣ୍ଡ ବଡ଼ ଦାଣ୍ଡଟା
ବଡ଼ ଭୋଗ ସେ ବଡ଼ ଭାଣ୍ଡଟା
ବଡ଼ ଦେଉଳ ବଡ଼ ଠାକୁର    ବଡ଼ ପଣ୍ଡା ଯେ ବଳିଆ ।

ଦୂରରୁ ଆସି ଜଗତ ଶେଠ
କରିଛି ବସା ଏମାର ମଠ
ଆଣିଛି ହାତେ ମଣୋହି ପାଇଁ    ଲକ୍ଷେ ଟଙ୍କାର ଥଳିଆ ।

କହୁଛି ବଡ଼ ପଣ୍ଡାଙ୍କୁ ଆଗ
ଲକ୍ଷେ ଟଙ୍କାର କରିବି ଭୋଗ
ଗୋଟିଏ ଦିନେ ହୋଇବ ଭୋଗ    ପୂରିବ ଏକ ବେଳିଆ ।

ପଣ୍ଡାଙ୍କୁ ବାଟ ନଗଲା ଦେଖା
ଭାବି ଭାବି ସେ ହୋଇଲେ ବୋକା
ଲକ୍ଷେ ଟଙ୍କାର ଭୋଗ ହୋଇବ     ଏ ଯୁଗେ କେଉଁ ଭଲିଆ ।

ଟଙ୍କାରେ କାହିଁ କେତେ ଗ୍ୱହଳ
ପନ  ପଣସ ପାଚିଲା ଫଳ
ଦଶ ଟଙ୍କାରେ ପୂରେ ଦେଉଲେ     କି ହେବ ଟଙ୍କା ଅଳିଆ ।

ଶେଷକୁ ପଣ୍ଡା ଭାବିଲେ ମନେ
ଜଗନ୍ନାଥଙ୍କୁ କହିବି କାନେ
ବତାଇ ଦେବେ ମୋତେ ସେ     ବାଟ ସୁନ୍ଦର ବାଙ୍କ ଚୂଳିଆ ।

ବଡ଼ ଠାକୁର ଆଗରେ ଚଢ଼ି
କରିଲେ ପଣ୍ଡା ଅଧିଆ ପଡ଼ି
କି ଭୋଗ କୁହ କରିବି ନାଥ     ଏବେ ମୋ ବୁଦ୍ଧି ଗୋଳିଆ ।

ବଡ଼ପଣକ ତଳେ ପଡ଼ିବ
ଏ ଆଖି କୋଣୁ ଲୁହ ଗଡ଼ିବ
ଛୋହର ଟେକ ତୁ ଏବେ ରଖ ଦେଖି ମୁଁ ହୁଏ ହାଲିଆ ।

ଏମାର ମଠେ ଜଗତ ଶେଠ
ଭାବିଲେ ବସି କି ଲାଗି ମଠ
କରିଲେ ପଣ୍ଡା, କହିଲେ ଡ଼ାକ ଥିଲେ ଯେ ଲୋକ ତଳିଆ ।

ଯାଆରେ ଦେଖ ମାଧିଆ, ରାମ
ହରି, ଗୋପାଳ, ମଧିଆ ଦାମ
କି ଲାଗି ଢେର ଭୋଗ ନ କର ରହିଲେ ପଣ୍ଡା ବଳିଆ ।

ଏତିକି ବେଳେ ପଣ୍ଡା ଆସିଲେ
ନରମେ ଶେଠ ପାଶେ ଭାଷିଲେ
ତୁମ ଗୁହାରି କରିଲି ଶେଠ ଶୁଣିଲେ ଜଗା କାଳିଆ ।

ଶେଠ କହିଲେ ମୋର ମିନତି
ଶୁଣିଲେ ସତେ ଜଗତ ପତି
ଢେର ନ କର କୁହ ପଣ୍ଡାଏ ସେ ମୋର ଜପା ମାଳିଆ ।

କହିଲେ ଜଗତର ଠାକୁର
ଜଗତ ଶେଠ ଭକତ ମୋର
ଲକ୍ଷେ ଟଙ୍କାର ଭୋଗ ପାଇଁ ଯେ ଆଣିଛୁ ଟଙ୍କା ପୁଳିଆ ।

ଶେଠଙ୍କୁ କୁହ ମୋହର ମନ
ପଢ଼ିଲୁ ଖଣ୍ଡେ ଦେବାକୁ ପାନ
ଗୋଟା ପାନରେ ହୋଇବ ଖିଲି ନ ହୋଇ କେଉଁ ଫାଳିଆ ।

ସବୁ ଦିନେ ତ ବଢ଼ିଆ ପାନ
ଖାଉଛୁ ଆଜି ବଳିଛି ମନ
ଭାଇ ଭଉଣୀ ଖାଇବୁ ବସି ଲଗିବ ଭାରି ବଢ଼ିଆ ।

ପାନରେ ଖାଲି ଗୁଆ ଓ ଚୂନ
ସେଥିକରେ ମୋ ପୂରିବ ମନ
ଅଦ୍ଭୁତ ଆଜି କରିଛି ତେଣୁ କ ହେବ ଭୋଗ ଥାଳିଆ ।

ଯେ ଚୂନ ପାନେ ହୋଇବ ଲଗା
ଏ ଚୂନଠାରୁ ସେତ ଅଲଗା
ଗଜମୋତିର ହେବ ସେ ଚୂନ ନ ଥିବ ଟିକେ ମଳିଆ ।

କଥାଟି ଶୁଣି ଶେଠ ଚମକି
ପଣ୍ଡାଙ୍କୁ ଚାହିଁ ରହିଲେ ଅକି
ଛଏକ କଲେ ନୂଆ ଆଦେଶ ମୋତେ ସେ ଘନ କାଳିଆ ।

ଭାବିଥିଲି ମୁଁ ଟଙ୍କାରେ ବଶ
ଜର କଣିବ ତାଙ୍କ ଆଶିଷ
ସିଏ ତ ତାତ ଜଗତ ନାଥ ଯା ଭୁଜ ବଳ ଶାଳିଆ ।

ତାଙ୍କ ମାଗଣ ଟିକିଏ ଚୂନ
ତାକୁ ନଅଣ୍ଟ ମୋ ପରିଧନ
କି ହେବ ଧାନ ଗହମ ଦଳ ନଅରେ ହେଲେ ଅଳିଆ ।

ମାରିଲେ ଆଣି କେତୋଟି ହାତୀ
ମିଳିବ ପୁଣି ଗୋଟିଏ ମୋଢ
କେତେ ମୋଢକୁ ପୋଡ଼ିଲେ ଚୂନ ପୂରିବ ପାନ ଫାଳିଆ ।

ଲକ୍ଷେ ଟଙ୍କାର ଗୋଟିଏ ହାତୀ
କେତେ ଲକ୍ଷର ପୋଡ଼ିଲେ ମୋଢ
ପାନରେ ଚୂନ ଲଗିବ ଜାଣି ନପାରେ ଚକା ଡୋଳିଆ ।

ହା'ର ମାନୁଛୁ ମୋ ବଡ଼ପଣ
ପଶୁଛୁ ତାଙ୍କ ପାଦେ ଶରଣ
ତାରଣ ମୋତେ କରିବେ ସେହୁ ହସିଆ ବନ ମାଳିଆ ।

ପାଦରୁ କାଢ଼ି ପକାଇ ଜୋତା
ଚଟାଣ ପରେ ପିଟିଲେ ମଥା
ଡାକିଲେ ହରି ରଖ ମୁରାରି ତୁ ନାଥ ନୀଳାଚଳିଆ ।

ସାଗର ବିଚ ଯାହାର ପଦେ
ଜୁହାରେ ନିତ ପରମ ମୋଦେ
ଶେଠର ବଡପଣ ୪ । ପାଶେ ରହିବ କେଉଁ ଭଳିଆ ।

ଜୟ ପତିତ ପାବନ ଜୟ
ଜୟ ନୀଳାଦ୍ରି ବିହାରୀ ଜୟ
ଜୟ ଭକତ ମନ ମୋହନ ଜୟ ହେ ଶିଖି ଚୂଳିଆ ।

**

**

## ଉର୍ମି ଓ ଝଡ଼

### ସୁଜାତା ମହାନ୍ତି

(ବିଂଶ ଶତାବ୍ଦୀ)

[ରାଗ ରାମକେରୀ]

ନଲ ଦରିଆର ମଝିରେ ଦିନେ ଜାହାଜଟିଏ
ଆସିଲା ଫରାସୀ ଦେଶରୁ ଯିବ ବାରୁଣା ଯାଏ

କ୍ୟାପଟେନ୍ ବର୍ଟ୍ ସାହେବ ସେହି ଜାହାଜଟିରେ
ଦରିଆର ଶୋଭା ନିରେଖୁଥିଲେ ଆନନ୍ଦ ଭରେ

ବଙ୍ଗୋପ ସାଗର ଜଳକୁ ଦୁଇ ଭାଗରେ କାଟି
ଦକ୍ଷିଣକୁ ଭାସି ଚାଲିଛି ଭରା ଜାହାଜ ଗୋଟି

ଆଗକୁ ପଛକୁ ଅନାଇ ଦୂର ବୀକ୍ଷଣ ଧରି
କ୍ୟାପ୍‌ଟେନ ବର୍ଟ୍ ସାହେବ ସତେ ଉଠିଲେ ଡରି

ଚାହିଁ ଚାହିଁ ସ୍ଥିର ନୟନ କଂପି ଉଠିଲା ବକ୍ଷ ।
ଥରଥର ହାତେ ନିରେଖି ବାରେ କରିଲେ ଲକ୍ଷ୍ୟ

ଉର୍ମି ମାଳା ଏକ ବିରାଟ ଆସେ ଆଗକୁ ଧସି
ନିମିଷକେ ସତେ ଯିବ ସେ ଏହି ଜାହାଜ ଗ୍ରାସି

ଖାଲିତ ଏ ଉର୍ମି ନୁହେଁ ତା ପଛେ ଆସୁଛି ଝଡ଼
ସାଗର ବକ୍ଷରେ ପବନ ସୃଜେ ଜଳ ପାହାଡ଼

ଅଥୟ ଲହରୀ ନାଚୁଛି ପାଣି ଫୁତ୍କାର ଗୁଣ୍ଡି
ଅଳପ ସମୟ ଭିତରେ ସେତ ଆସିବ ମାଡ଼ି ।

କଳାମେଘ ଘୋଟି ଆସୁଛି ଦୂର ଆକାଶୁ ଛୁଟି
ଅଥଳ ସାଗରେ ସମାଧି ନେବ ଜାହାଜ ଗୋଟି ।

ଅଢ ନିକଟରେ ଉର୍ମିଟା ଝଡ଼ ତା'ର ନିକଟେ
ଜାହାଜ କପର ରହିବ ମହାଘୋର ସଙ୍କଟେ

ଖେଳିଗଲା ଏଇ ବାରତା ସାରା ଜାହାଜ ଦେହେ
କାତର ଯାତ୍ରୀଙ୍କ ଅନ୍ତର ଆଖି ପୂରୁଛି ଲୁହେ

ହତାଶାରେ ଭାଙ୍ଗି ପଡ଼ୁଛି ବିଟ୍ ସାହେବ ମନ
ସତର୍କ ଘଣ୍ଟି ସେ ବଜାଇ ଡାକି କହିଲେ ଶୁଣ

ଜୀବନର ଶେଷ ସମୟ ହୋଇ ଆସିଲା ପରି
ବିପଦ ଉପରେ ବିପଦ ଦେଖ ରହିଛି ଘେରି

ଆସୁଅଛି ଉର୍ମି ସାଙ୍ଗକୁ ଏକ ବିରାଟ ଝଡ଼
ବଞ୍ଚିବାକୁ ସର୍ବେ ଉପାୟ ନିଜେ ବାହାର କର

ପାଗଳଙ୍କ ପରି ସାହେବ ଧାଇଁ ଗଲେ ଭିତରେ
ଘେରିଗଲେ ଲୋକ ଆକୁଳେ ତାଙ୍କ ଗୃହ ପାଖରେ

ନାରୀମାନଙ୍କର ବିକଳ ଆଉ ନ ହୁଏ ସହି
ସାହେବଙ୍କ ଆଖି କୋଣରୁ ଲୁହ ଯାଉଛି ବହି

ବାତୁଳ ପରାଏ କିଏ ସେ ଧାଇଁ ବୁଲୁଛି ଖାଲି
ଗୁହୁଁ ଗୁହୁଁ ସିନା ଉର୍ମିଟା ଦେବ ଜାହାଜ ଗିଳି ।

ବିଚଳିତ ମନ ନ ହୋଇ ଜଣେ ଯାତ୍ରୀ ଜାହାଜେ
ବସିଛି ନୀରବ ମନରେ ସତେ କାହାକୁ ଭଜେ ।

ହଠାତ ଦେଖିଲେ ସାହେବ ସେହି ଲୋକଟି ଖେଳେ
ଗୁଣୁ ଗୁଣୁ ଗୀତ ଗାଉଛନ୍ତି କାହିଁ ନ ଚାହିଁ ତଳେ ।

ଆଗରେ ଥୋଇଛନ୍ତି ଗୋଟିଏ ଫଟୋ ମୂରତି ତିନି
ବହିଯାଏ ଆଖି କୋଣରୁ ଲୁହ ବାଧା ନ ମାନି

ଚାଲି ଗଲେ ସେଠ୍ ସାହେବ ଛବି ଦେଖିବା ପାଇଁ
ଦେଖିଲେ ଆହୁରି ପାଖକୁ ସେଠ ଆସୁଛନ୍ତି ଧାଇଁ

ଚକ୍ ଚକ୍ କରେ ଆଖି ତା ନିଆଁ ଗୋଳାର ପର
ପାଣି ଫାଟି ଯାଏ ରକତ ମରଣକୁ ସ୍ମର

ଆଖି ଆଗେ ନାଚି ଉଠିଲା ନିଜ ଶିଶୁର ମୁଖ
ଆଜିଠାରୁ ସରିଗଲାରେ ମୋର ସରବ ସୁଖ

ଫେରି ଆସିଲେ ସେ ଭିତରେ ଥରଥର ପାଦରେ
ଦେଖିଲେ ଲୋକଟି ତଥାପି ବସିଛନ୍ତି ନୀରବରେ

ତିନି ଫଟୋଟିକୁ କହୁଛନ୍ତି କଥା ନିଜ ଭାଷାରେ
ସାହେବ ଭାବିଲେ ଏ ଫଟୋ ନିଶ୍ଚେ ଶିଶୁ ତାହାରେ

ଦେଖିବେ ବୋଲି ସେ ଫଟକୁ ଥରେ ଝୁଙ୍କି ପଡ଼ିଲେ
ଦେଖୁ ଦେଖୁ ତିନି ଫଟକୁ ଠିକେ ପଞ୍ଚି ଆସିଲେ

ତିନି ମୂରତି ସେ ଦେଖିଲେ ଲାଗି ଲାଗି ଅଛନ୍ତି
ଏକ କଳା ଏକ ଧୋବଲା ଏକ ହଳଦୀ କାନ୍ତି

କି ଭୀଷଣ ଏହି ମୂରତି ଯା'ର ଦେହ କାଳିଆ
ଦେହର ଉପର ଆଖିକୁ ଚାହିଁ ଲାଗେ ହାଲିଆ

ଛବି ଆଖିଠାରୁ ଏ ଆଖି ସତେ କି ଭୟଙ୍କର
ଝିଅ ଛବିଠାରୁ ସେ ରୂପ ତାଙ୍କୁ ଲାଗିଲା ଡର

କି କରୁଛ ତୁମେ ଏଠି ହୋ ସାହେବ ଦେଲେ ଡାକ
ଲୋକ କହେ ଏହି ବିପଦୁଁ ରକ୍ଷା ପାଇଁ ମୋ ଡାକ

ଡାକୁଛି ମୁଁ ଜଗନ୍ନାଥଙ୍କୁ ସେହି ରକ୍ଷା କରିବେ
ଏ ମଝି ସାଗରେ ଆମକୁ ସେତ ସହାୟ ହେବେ

ସାହେବ କହିଲେ କିଏ ସେ କେଉଁଠି ତାଙ୍କ ବାସ ?
ଗୁଳା ଓ ବାରୁଦ ଧରିକି ଢମି କରିବେ ନାଶ ?

ପରବତ ପରି ଝଡର ଜାହାଜ ଦେବେ ରଖି
ହସି କହେ ଲୋକ ଏକା ସେ ଏହି ଜାହାଜେ ସାକ୍ଷୀ

ଶରଣ ହୋଇ ମୁଁ ଜଣାଉଅଛି ତାଙ୍କ ପାଦରେ
ଶୁଣିଲେ ନିଶ୍ଚୟ ଉଦ୍ଧରି ଦିବ ବିପଦୁ ବାରେ

ବିସ୍ଫାରିତ ହେଲା ନୟନ ସାହେବ ହେଲେ କାବା
କହିଲେ ଯଦିଏ ବିପଦୁ ଆମେ ଉଦ୍ଧରି ଯିବା

ଆଗ କୋଠରୀରେ ସେତେକ ନିଜ ରଖିଛି ଭରି
ଦେଇଦେବି ଜଗନ୍ନାଥଙ୍କୁ ଏହା ସତ ମୋହରି

ଫଟ ନିକଟରେ ସରବେ ମିଳି ଉଚ୍ଚେ ଡାକିଲେ
ଜଗନ୍ନାଥ ଚରଣତଳେ ଶରଣ ପଶିଗଲେ

ସାହେବ ଧାଇଁଲେ ଉପରେ ଢମି ଦେଖିବା ପାଇଁ
ଦେଖିଲେ ଢମିର ଗତିଟା ଯାଉଛି ସ୍ଥିର ହୋଇ

ଧୀରେ ଧୀରେ ମୁହଁ ବୁଲାଇ ଢମି ଚାଲି ଯାଉଛି
ସାହେବଙ୍କ ମନ ଏଥର ଟିକେ ଖୁସୀ ହେଉଛି

ତଥାପି ଦେଖିଲେ ଝଡର ଗତି ବଢ଼ି ଚାଲିଛି
ପବନ ବେଗରେ ଜାହାଜ ଦୋହଲି ଯାଉଅଛି ।

ଆଖି ଆଗେ ନାଚ ଉଠିଲା ସେହି ଚନ୍ଦପଟ୍ଟି
ରକ୍ଷ ଜଗନ୍ନାଥ ବୋଲି ସେ ଉଚ୍ଚ କରିଲେ ପାଟି

ଏତକ ବେଳରେ ଶୂନ୍ୟରୁ ଏକ ଶବଦ ହେଲା
ମନେ କଲେ ସତେ ଆକାଶ ଏଠି ଛିଡ଼ି ପଡ଼ିଲା

ଦେଖିଲେ ସେ ଉର୍ମି ପର୍ବତ ଝଡ଼ଯାଏ ଦୂରେଇ
ଲହରୀକୁ କାଟି ଜାହାଜ ନିରାପଦେ ଚାଲଇ

ଧାଇଁ ଆସି ବଟ୍ ସାହେବ ସେହି ଯାତ୍ରୀ ପାଖକୁ
କହିଲେ କେ ତୁମେ ମହାତ୍ମା ରକ୍ଷାକଲ ଆମ୍ଭଙ୍କୁ

ଚାଲିଯିବା ଅରେ ଦେଖିବା ସେହି କଳାଠାକୁର
ଜାହାଜର ଗତି ବୁଲିଅ ବେଲ ହୁଏ ଉତ୍ତର

ଧୀରେ ଧୀରେ ଯାଇଁ ଜାହାଜ ଲାଗେ ପୁରୀ ଘାଟରେ
କୋଠରୀ ଜିନିଷ ସହିତ ସେତ ଗଲେ ମନ୍ଦିରେ

ଜଗନ୍ନାଥ ପାଦ ତଳରେ ଥୋଇ ଜିନିଷ ମାନ
ବଟ୍ ସାହେବଙ୍କ ସହିତ ସର୍ବେ ଆନନ୍ଦ ମନ

ତାହାର ଦେହର ବରାଟ ଘଣ୍ଟା ଏବେକ ଅଛି
ଗନ୍ତାଘରେ ରହି ପ୍ରଭୁଙ୍କ ଗୁଣ ସଦା ଗାଉଛି

**

**

# ହୃଦୟ ତୀର୍ଥ

ରାମକୃଷ୍ଣ ପାଢ଼ୀ

(ବିଂଶ ଶତାବ୍ଦୀ)

ହରିହର ପୁର ଗ୍ରାମେ
ଅଶୀ ବରଷର କାଳୀ ବୁଢ଼ୀଟିଏ
ଥିଲା " ରାଧୀନାମୀ ନାମେ ।
ଅତୀତର କେଉଁ ଆଷାଢ଼ ରାତେ
ବୁନଆଦୀ ଜଣେ କୁଳୀନ ପାତେ

ନଅ ବରଷର "ଗେହ୍ଲଣୀ ଯେବେ ସେ
ହୋଇଥିଲା ବଧୂ ତାର
ଛଅ ମାସ ପରେ ଛାଡ଼ି ପତି ତାକୁ
ଗଲେ ଚଳି ଭବ ପାର ।
ବରଷ ସତର ଯାଏ
ବଧୂ ନଣନ୍ଦର କଳହ ବିବାଦେ
କାଳ ଗଲା ପଳ ପ୍ରାୟେ

ସେହି ଦିନଠାରୁ ଆଉ ଦିନକୁଲେ ତାର
କହିବାକୁ କେହି ନାହିଁ ଆପଣାର ।
ଗ୍ରାମର ମଝିରେ ଆପଣା ଡ଼ିହରେ ପଡ଼ିଥାଏ ବୁଢ଼ୀ ଏକା
କଦାପି ତାହାର ଘରଛଡ଼ା କେହି
ନ ଲଭଇ କାହିଁ ଦେଖା ।

ପ୍ରତିଦିନ ଖରାବେଳେ
ଘରେ ତାର ହୁଏ ମହା କଳରବ
ବାଳକ ବାଳିକା ମେଳେ
ଖେଳା, ଖଲୁ, ଗମ, ଭବାନୀ ପାଲୁଣୀ
ବାନା, ହାଡ଼ିଆଣୀ, ଚେମି ଓ କାଲୁଣୀ

ଗପ ଶୁଣିବାକୁ କେତେ ଶିଶୁ ଆସି
ତୋଷାମଦ କରେ ଆଜ
ନିତି ଏହିପରି ଅଟଳ ହସ୍ତମେ
ଉଠେ କୋଳାହଳ ବାଜ ।
ଅଗଣା ପାଖରେ ବାଡ଼
ପୋଇ ଲତା ତା'ର ଆବରିଛି ଦେହ
ଶିଳୁଗଛ ତା'ର ହାଡ ।

ତାହାର ପାଖରେ କୋଳଗଛ ଡାଳେ
କାକୁଡ଼ି କଖାରୁ ଝୁଲେ ମଳେ ମାଳେ
ଅରଅର ବୃନ୍ତ ମୂଳେ ପାଣି ଢାଳି
ନିତି ହୁଏ ବୁଢ଼ୀ ଅକା
ସବୁଜ ଉଦ୍ଭିଦ ସଚେତକ ତାହାର

ଜୀବନର ପ୍ରିୟ ସଖା ।
କେବେହେଁ ଭ୍ରମରେ ଢଳେ ଘର ଛାଡ଼ି
ଭ୍ରମେ ନାହିଁ କାହିଁ ବାରେ
ଆଠୋଟି ପ୍ରହର ଜଗିଥାଏ ବୁଢ଼ୀ
କବାଟ ପକାଇ ଦ୍ୱାରେ
କାଳେ କେତେବେଳେ ପଥ ଖୋଲାପାଇ
ପଶିବ ବାଡ଼ିରେ ବୁଲା ଗୋରୁ ଗାଈ

ଅଥବା ବାଲକେ ଲୁଚିଲୁଚି ଆସି
କାକୁଡ଼ି ଫେରାଇ ନେବେ
ଏହି ଭାବନାରେ ବାବା ନସି ତାର
ନ ହୁଅଇ ନିଦ କେବେ

\+ +

ଆଷାଢ଼ ମାସର ରଥେ
ଗ୍ରାମରୁ ଅନେକ ବାହାରିଲେ ଲୋକ
ପୁରୀକୁ ଯିବାର ପଥେ

ପାଣ୍ଡୁ ପାଣିଘର ବଡ଼ବହୂ ଉମାଶଣୀ
ସୁଧୀନାନୀ ପାଶେ ଆସି କହେ ହସିହସି
"ଆମର ତ ସବୁ ଠିକ୍‌ଠାକ୍ ନାନୀ
କହ ତୁମ ଯିବା କଥା
ସୁଧୀନାନୀ କହେ "ଘର ଛାଡ଼ି ଯିବି"
କେଉଁପରି ହୋଇବ ତା ? ।।

ଉମାଶଣୀ କହେ ନାନୀ
ଆଜୀବନ ଖାଲି ଖଟି ଖଟି କଲି
ମହାପାପ ଆମଦାନୀ
ନ ଜାଣିଲି କିଛି ତୀର୍ଥ ଧର୍ମ
ପ୍ରଭୁର ମହିମା ପୁଣ୍ୟ କର୍ମ

ନୀଳାଚଳ ନାଥ ଚରଣ ସେବାରୁ
ଘର ହେଲା ବଡ଼ ଆଜ
କେତେ ମନେ ଭାବି ଅବଶେଷେ ବୁଢ଼ୀ
ହେଲା ତାଙ୍କ ପାଖରେ ରାଜି ।

ଗୋଧୂଳିରେ ରେଳ ଧରି
ପୁରୀରେ ସେଦିନ ମିଳିବାକୁ ଲୋକେ
ବାହ୍ମାଣଙ୍କୋ ଭିଡ଼ କରି
କମାର, ବାଉରି, ପାଣ, ଦ୍ୱିଜ ତେଲି
ଦେଢ଼ କୋଡ଼ି ନାରୀ ହେଲେ ଠେଲାଠେଲି

ଦୁ'କୋଡ଼ି ନଅଟି ବିବିଧ ପ୍ରକାର
ବୋକରୁ ହୋଇଲା ସଜ
ସାଥୀ ହେଲେ ମୋଟେ ଯୋଡ଼ିଏ ପୁରୁଷ
"ବଳୀ ସାହୁ" ଆଉ "ଭଜ" ।

+ +

ଯଥାକାଳେ ଯେବେ ବିଶାଳ ରଥରେ
ବସିଲେ ଜଗତନାଥ
ପୂତ ହେଲା ମାଟି ଯେନ କୋଟି କୋଟି

ମାନବର ପ୍ରଣିପାତ
ପୁଲକେ ରଥକୁ ଅନାଇ ଅନାଇ
ଉଠିଲେ ସକଳେ ବିଭୁ ଗୁଣ ଗାଇ
"ଜୟଜୟ" ନାଦେ ପୂରିଲା ଗଗନ
ପବନ ଘୋଷିଲା ଖ୍ୟାତି
ଉଚ୍ଛୁଳାଇ ଦୟା ସ୍ରୋତ ।
"ସ୍ୱାଧୀନାଙ୍ଗୀ" ଦେଖେ ସ୍ୱହିଁ-

ପୋଇ କାକୁଡ଼ି ଓ କୋଳିଗଛ ଡାଳ
ରଥରେ ବେଢ଼ିଛି ଯାଇଁ
ତାହାର ପାଖରେ ଘରଟି ତାହାର
ଯୋଡ଼ା କୋଳପରେ ବସ୍ତିକେ ଦୁଆର

ଭାବେ,-ଏ କି କଥା ! ଏହି କି ଦେବତା
ଏହି କି ସେ ଭଗବାନ !
ତା' ହେଲେତ ପ୍ରଭୁ ! ଅଛ ତୁମେ ମୋର
କୁଟୀରେ ବିରାଜମାନ ।

+ +

ସକଳେ ଆସିଲେ ଚାଲି
ସ୍ୱଧୀନାମ୍ନା ଆସି ଦେଖଇ ତା'ନିଜ
ଅଗଣା ବାଡକୁ ଖାଲି
ଅତିପ୍ରିୟ ତା'ର ଫସଲର ଭୂଇଁ
ଚପଳ ନୟନ ବୁଲେ ଛୁଇଁ ଛୁଇଁ
କୁହ "ଦୟାମୟ"-ଏହୁତ ତୁମର
ଆସନ ଏଠାରେ ଅଛି
ଦିଶିଦିଶି ଦେଶେ ଖୋଜଇ କିପାଁ ମୁଁ
ଅନୁମାନେ ରୂପ ରଚି···
ନତ ହେଲା ତା'ର ମଥା-
ଧୀର ପବନରେ ନମିଲେ ସକଳେ
କୋଳି ଡାଳ ପୋଇ ଲତା ।

+ +

ହାୟରେ ଅବୋଧ ଜୀବ
ଗୋଟା ଜଗତର ପଥେ ଘାଟେ ବୁଲି
ବୃଥା ସିନା ଖୋଜ ଶିବ ?
ନାହିଁ ସେ ଧୂପେ ଓ ଝୁଣାର ଗନ୍ଧେ
ବେଦେ ଓ କୋରାଣେ ବାଣୀର ଛନ୍ଦେ
ବୁଦ୍ଧ-ଯୀଶୁର ଦ୍ୱିଧା ଓ ଦ୍ୱନ୍ଦ୍ୱେ
ନାହିଁ କାହିଁ ଜଳେ ସ୍ଥଳେ
ସେ ଯେ ମାନବର ହୃଦୟ ଦେବତା
ରହିଛି ପ୍ରାଣର ତଳେ !

**

**

# ଚକାଡୋଳା ତୁମେ

## ନରସିଂହ ମହାପାତ୍ର

(ବିଂଶ ଶତାବ୍ଦୀ)

ଚକାଡୋଳା ତୁମେ ହେଇଚ କଳକା
ଦୁଃଖୀ ଜନ ଦୁଃଖ ଶୁଣି
କହି ପାରବନି, ଶୁଣି ପାରବନି
ପଥର ହେଇଛ ଜାଣି

ଜାଣେ ବଡ ଭାଇ ଭଉଣୀଙ୍କ ସାଥେ
ରହି ବୋଲଉଛ ବଡ ଏ ଜଗତେ
ଛୁର ହେଲେବ ମୁଁ ଛାଡବ ନାହିଁତ
ତୁମ ଗୁଣ ନେବ ଗୁଣି ॥୧॥

ଠକଛ, ଠକୁଛ, ଠକବ ମୁଁ ଜାଣେ
ଅଲକ୍ଷ ସେ ତୁମ ହସିବାର ଗୁଣେ
ଅଙ୍ଗେ ନାଗଇଲ କଥା ଭୁଲ ନାହିଁ
ଆସନୁ ଆଣିବ ଟାଣି ॥୨॥

ତୁମ ବଡପଣ ତୁମଠେଇଁ ଥାଉ
ସେଥିକୁ ଡର ମୋ ଢଲେ ନାହିଁ ଆଉ
ଯେତେ ବଡ ହୁଅ ଆପଣା ମନକୁ
ତୁମେ ଯେ ଅସଲ ଖୁଣୀ ॥୩॥

**

**

# ଏତେ ବଡ଼ ବଡ଼ ଆଖି

## ନରସିଂହ ମହାପାତ୍ର

(ବିଂଶ ଶତାବ୍ଦୀ)

ଏତେ ବଡ଼ ବଡ଼ ଆଖି ଜରକ
ଦୃହିଁତ କାହାକୁ କୁହ
ଶିଖିଛନେ କାଳିଆ
ମନ୍ଦିରେ ସୁଭଦ୍ରାଚନ୍ଦ୍ର ନାହିଁକ
ନାହିଁକ ରଖିତ ତୁମବଡ଼ଭାଇ ବଳିଆ ।। ଘୋଷା ।।

ଏତେ ପୂଜା ପରବରେ ଥାଅ ତୁମେ ଠାକୁର
କେତେ ଜନ ଠାରୁ କୁହ ନନ୍ତ ପାଅ ଜୁହାର
ଶତେକ ଗୁହାର ଶୁଣି ତୁମେକ
ଜଣଙ୍କ ନାହାର ଦୁଃଖ ହର ଚନ୍ଦ୍ର ଚଳିଆ ।।୧।।

କଥାତ ନାହିଁ ମୁହଁରେ ଦୃହିଁ ସତେ ଜଳକା
ଅଳଭ ହସଟି ଅଛୁ ନାହିଁ ଆଉ ବଳକା
ଶକତ ନାହିଁତ କଛୁ ତୁମର
ନିରମଳ ମନ କିଆଁ କର ମିଛେ ଗୋଳିଆ ।।୨।।

**

**

# ଏତେ ବାଟ ଚାଲି ଚାଲି

**ନରସିଂହ ମହାପାତ୍ର**

(ବିଂଶ ଶତାବ୍ଦୀ)

ଏତେ ବାଟ ଚାଲି ଚାଲି
ତୁମକୁ ଦେଖିବ ବୋଲି
ଆସିଛି ଏ ଶ୍ରୀକ୍ଷେତ୍ର ଦେଶକୁ
ଜୁହାର ଗୁହାର କରି
ମନେ ମୁଁ ଭରସା ଭରି
ଦେଖିବି ମୁଁ ତୁମ ଏଇ ବେଶକୁ ।।ଘୋଷା।।

ଚକାଡୋଳା ଜଗନ୍ନାଥ ପଲକ ନ ପକାଇ
ଭାଇ ଭଉଣୀଙ୍କ ସାଥେ ବସିଥାଅ ଅନାଇ
ସଭିଁଏ ମୋ ଭଳି ଆସି
କହୁଥିବେ ଦୁଃଖ ରାଶି
ଭୁଲୁଥିବେ ଦେଖି ତୁମ ହସକୁ ।।୧।।

ମୁହଁ ଖୋଲି ନ କହିଲେ ଧରିଥିବି ଚରଣ
ଶରଣ ନ ଦେଲେ ତୁମେ ଦିଅ ପଛେ ମରଣ
ସବୁ ଆଶା ଛାଡ଼ିପରା ଧରିଛି ତୁମ ଆସରା
ଯାହା ହେବ ହେଉ ଥାଉ ଶେଷକୁ ।।୨।।

**

**

# ଶଙ୍ଖ କ୍ଷେତ୍ର ବାସୀ

## କବି ଶେଖର ଚିନ୍ତାମଣି ମହାନ୍ତି

(ବିଂଶ ଶତାବ୍ଦୀ)

[ରାଗ-ଶଙ୍କରା ଭରଣ]

ଶଙ୍ଖ କ୍ଷେତ୍ରବାସୀ ପ୍ରଭୁ ଶଙ୍ଖ ଚକ୍ରଧାରୀ
କାନ ଡେରି ଶୁଣୁଅଛ ଜଗତ ଗୁହାରି
ବହି ଜଗନ୍ନାଥ ନାମ
ଆକର୍ଷୁଛ ଜଗତକୁ ଭକ୍ତ ଅନୁଯାମ ॥୧॥

ମହାମନ୍ତ୍ର ମହୋଦଧି ଜପି ରୁଦ୍ର ନାଦେ
ଭକ୍ତିରେ ଦେଉଛି ଧୋଇ ତବ ପୂଣ୍ୟ ପାଦେ
ଯୋଡ଼ି ବହୁ ବୀଚି-ହାତ
ଉଚାରୁଛି ଜୟ ଜୟ ଜୟ ଜଗନ୍ନାଥ ॥୨॥

ଚକା ବଇଠିରେ ବକେ ପ୍ରଭୁ ଚକାଡୋଳା
କି ଶୀତଳ ଦୃଷ୍ଟି ତବ ସ୍ନେହ ମଧୁବୋଳା
କେଡେ ସ୍ନିଗ୍ଧ କୃଷ୍ଣ କାନ୍ତି
ଢାଳୁଛି ଜଗତ ପ୍ରାଣେ ପ୍ରେମ ଶୁଭ ଶାନ୍ତି ॥୩॥

ସେ ଶାନ୍ତି କଣିକା ଲାଗି ଆଜି ମୁଁ ଭିକାରୀ
ବିଶ୍ୱ କୋଲାହଳେ ପ୍ରାଣ ଗଲାଣି ମୋ ଘାରି
ବଡ଼ ଦୁଷ୍ଟ ଏ ସଂସାର
ସଂସାର ନୁହେଁ ଏ କଷ୍ଟେ ଅସାରୁ ଅସାର ॥୪॥

ତୁଟିଲିଣି ନିଜ ଭ୍ରମ ଟଳିଲିଣି ଭବେ
ମଣୁଥିଲି ମହୋତ୍ସବ ଭୀଷଣ ଆହବେ
ଅହୋ କି ଅଦ୍ଭୁତ ଛଳ
କରକା ଭିତରେ ଥିଲା ପ୍ରଚଣ୍ଡ ଅନଳ ।।୫।।

ଏଣିକି ଗ୍ରୁଞ୍ଜଆ ବଡ଼ ଲାଗୁଛି ନିରତେ
ଜନକ ସୂତକ ସତ ହେଉଅଛି ପ୍ରତେ
ପ୍ରାଣ ହେଉଛି ଉଚାଟ
ବାହାର ହିବାକୁ ମାତ୍ର ପାଉନାହିଁ ବାଟ ।।୬।।

ମୁଁ ହିନା କୁପୁତ୍ର କଲୁ ତୁମ୍ଭେତ ସୁପିତା
କିମ୍ପାଇଁ ନିଗ୍ରହ ନାହିଁ ହୃଦୁ ତୀବ୍ର ଚିତା
ପିତୃ ପଦ ତାକୁ ମାନେ
ଅଧିକ ଦୟା ଯେ କରେ ଅକ୍ଷମ ସନ୍ତାନେ ।।୭।।

ତୁମ୍ଭେତ ଜଗତ ପିତା ଏହା ଥିବ ଜାଣି
ପିତୃ ପଣେ ତୁମ୍ଭଙ୍କୁ କେ ସରି ଚନ୍ଦ ପାଣି
ଶୁଣି ମୋ ଆତୁର ବାଣୀ
ଦୋଷଥିଲେ କ୍ଷମାକର କ୍ଷମାପାତ୍ର ଜାଣି ।।୮।।

ଧରୁଅଛ ତୁମ୍ଭଙ୍କୁ ମୁଁ ଯେତିକି ଆକଟି
ତେତିକି ଦୂରକୁ ତୁମ୍ଭେ ଦେଉଅଛ ଘୁଞ୍ଚି
ଅରେ ବିଶ୍ବର ଅନ୍ତରେ ।
ହେଲ କି ସୁନ୍ଦର ଏହା ସୁପିତା ପକ୍ଷରେ ।।୯।।

ଯେତେଥର ତତ୍ତ୍ବଦେବ ବିରକ୍ତି ପ୍ରକାଶି
ତେତେଥର ଆଉଜିବ ସେ ପଦ୍ମରେ ଆସି
ବେଶି କହିବ ବା କିସ ।
ସେ ବିରକ୍ତି ମୋ ଭାଗ୍ୟେକି ମଙ୍ଗଳ ଆଶିଷ ।।୧୦।।

**

**

# ଜଗନ୍ନାଥ ଜଗବଂଧୁ ହେ

## କବି ଶେଖର ଚନ୍ଦ୍ରାମଣି ମହାନ୍ତି

(ବିଂଶ ଶତାବ୍ଦୀ)

[ରାଗ-ରାମକେରୀ]

ଜଗନ୍ନାଥ ଜଗବଂଧୁ ହେ ଦାରୁ ବ୍ରହ୍ମ ପ୍ରତିମା
ବିଖ୍ୟାତ ଜଗତେ ତୁମ୍ଭର ମହାଦାନ ମହିମା

ଯେ ଯାହା ମାଗୁଛି କରୁଛ ତାର ବାଞ୍ଛା ପୂରଣ
ମୋ ଭାଗ୍ୟକୁ ଏକା କିପାଇଁ ହେଲ ଏଡ଼େ କୃପଣ

ମାଗୁଚି ନାହିଁ ମୁଁ ତୁମ୍ଭଙ୍କୁ ଧନଜନ ଗୌରବ
ମାଗୁନାହିଁ ଆୟୁ ପ୍ରାଧାନ୍ୟ କିମ୍ବା ସ୍ୱାସ୍ଥ୍ୟ ବିଭବ

ମାଗୁଅଛି ଖାଲି ଏତିକି ମୋର ଚର୍ମ ନୟନ
ସବୁସ୍ଥାନେ ସଦା ତୁମର ରୂପକରୁ ଦର୍ଶନ

କର୍ଣ୍ଣ ଶୁଣୁ ତୁମ୍ଭ ମହିମା ଘୋଷି ପୁଣ୍ୟ ପୁରାଣ
ନାସା କରୁ ବାସି ତୁଳସୀ ଛଡ଼ାଫୁଲ ଆଘ୍ରାଣ

ତବ ପୁଣ୍ୟପାଦ ସେବାରେ ଲଗୁ ଏ ବେନିହସ୍ତ
ଉଚ୍ଚାରୁ ରସନା ହରି ହେ ତୁମ୍ଭ ନାମ ସତତ

କିସ ଜଣାଇବ ତୁମୁରେ ତୀବ୍ର ମର୍ମ ବେଦନା
କାହମାଡ଼େ ତାହା ସ୍ମରଣେ ଫାଟିଯାଏ ମୂର୍ଚ୍ଛନା

କାନ୍ଦିଲେ ହାଲୁକା ହୁଅନ୍ତା ଦୁଃଖ ଦୁର୍ବଳ ପ୍ରାଣ
ମାତ୍ର ପାଉନାହିଁ କାନ୍ଦିବ ଯୋଗ୍ୟ ନିର୍ଜନ ସ୍ଥାନ ।

ଅକିଞ୍ଚନେ କୃପା ପ୍ରଦାନେ ନୁହ ବିମୁଖ ହରି
ସିନ୍ଧୁ ଏତ ଅଛୁ ବିନ୍ଦୁ ଏ ଦେଲେ ଯିବନି ସରି ।

ପର ନୁହେଁ ପ୍ରଭୁ ମୁଁ ପରା ତୁମ୍ଭ କଣା କିଂକର
ଭୟଙ୍କର ଭବକାରାରୁ ଦେବ ଖରେ ଉଦ୍ଧାର

ଉଡ଼ିଯାଉ ବନ୍ଦୀ ବିହଙ୍ଗ ଖେଳୁ ଆକାଶେ ବୁଲି
ଛିଣ୍ଡାଇ ଦିଅ ତା ପଦୁରୁ ଦୃଢ଼ ବଜ୍ର ଶିକୁଳି ।

ସ୍ୱାଧୀନତା ତାର ବାଞ୍ଛିତ ସେ ଯେ ଚିର ସ୍ୱାଧୀନ
ଦୁଷ୍ଟା ମାୟା ସହବାସରେ ସିନା ହୋଇଛି ହୀନ ॥

**

**

# ଜପମନ ଜଗନ୍ନାଥ

## କବି ଶେଖର ଚନ୍ଦ୍ରମଣି ମହାନ୍ତ

(ବିଂଶ ଶତାବ୍ଦୀ)

ଜପମନ ଜଗନ୍ନାଥ ଚତୁରକ୍ଷର
ସେହି ଏକା ଜଗତର ମୁକ୍ତି ମନ୍ତ୍ର ॥ପଦ॥

ସେହି ଜଳ ସେହି ସ୍ଥଳ ସେହି ବୃକ୍ଷ ସେହି ଫଳ
ସେହି ଶକ୍ତି ସେହି ବଳ ଏ ଜଗତର ॥୧॥

ସେହି ସତ୍ୟ ସେହି ଶୁଭ ସେହି ନିତ୍ୟ ସେହି ଧ୍ରୁବ
ପୁଣି ପ୍ରାଣ ପିଣ୍ଡ ଉଭ ସେ ନିୟଶ୍ୱର ॥୨॥

ଯେତେକ ଦେଖି ଅଦେଖା ସବୁ ସିନା ଏକା ସେହି
ତାଙ୍କ ବିନା ନାହିଁ କେହି ଭବେ ଅପର ॥୩॥

ଏ ସଂସାର ପର ଘର ସମସ୍ତେ ଏଠାରେ ପର
ଜନେ କେ ବ ନୋହୁ ଜନର ଜାଣ ଜନକର ॥୪॥

ଡାକ ରୁ ହୋଇ ଆତୁର ହେ ପ୍ରଭୁ ବଡ଼ ଠାକୁର
ଭବ ଭୟ କର ଦୂର ତାର ସତ୍ୱର ॥୫॥

**

**

## ଜଗନ୍ନାଥ ଜଗୁ ଜୀବନ

### କବି ଶେଖର ଚିନ୍ତାମଣି ମହାନ୍ତି

(ବିଂଶ ଶତାବ୍ଦୀ)

[ରାଗ-ରସକୁଲ୍ୟା]

ପ୍ରଭୁ ଜଗନ୍ନାଥ ଜଗୁ ଜୀବନ
ଭକ୍ତ ହୃଦ-ସର-ପଦ୍ମ ତପନ,
ନୀଳ ମହୀଧର ମର୍କତ ମଣି
ଅପାର ସଂସାର ସିନ୍ଧୁ ତରଣୀ
ଭକତର ଚିର ଅଧୀନ ଯେ
ଭୃତ୍ୟର ମହିମା ପ୍ରଚାରୁଛ ବକ୍ଷେ
ବହୁଣ ଚରଣ ଚିହ୍ନ ଯେ ॥୧॥

ସକଳ ମାନବ ତୁମ୍ଭ ସନ୍ତାନ
ପିତୃନେହେ ତବ ସର୍ବ ସମାନ,
ପ୍ରକୃତ ଏହି ନୀତି ଉଦାର
ଭୋଗରେ ନ ରଖି ଜାତି ବିଚାର

ଏକହେଁ ଶୂଦ୍ର ବ୍ରାହ୍ମଣ ଯେ
ନିର୍ବିକାର ଚିତ୍ତେ ଶ୍ରୀ ମହାପ୍ରସାଦ
କରନ୍ତି ସୁଖେ ଭୋଜନ ଯେ ॥୨॥

ଉତ୍କଳ ଅବନୀ କି ତପକରି
କୃତାର୍ଥ ତୁମ୍ଭଙ୍କୁ ବକ୍ଷରେ ଧରି
ଛଡ଼ାଇ ଆଣିଛି ସ୍ୱର୍ଗ ସଂପଦ
ଲଭିଛି ମର୍ତ୍ତ୍ୟରେ ବୈକୁଣ୍ଠ ପଦ
ଧନ୍ୟତା ପୁଣ୍ୟ ମହିମା ଯେ
ଜଗନ୍ନାଥଙ୍କୁ କରି ରଖିଛି ଯା'
ପ୍ରୀତିର ପୂଜାପ୍ରତିମା ଯେ ॥୩॥

ବେଳା ବାଲିଶେଯେ କରିଛ ବିଜେ
ଖଟିଛି ପଦ୍ମରେ ବାରିଧି ନିଜେ
ନିତି ସନ୍ଧ୍ୟା ପ୍ରାତେ ତ୍ରିଦିବ ବାସୀ
ସ୍ୱର୍ଗଦ୍ୱାର ପଥେ ଓହ୍ଲାଇ ଆସି
ଦେଖନ୍ତି ପୁଣ୍ୟ ଆଳତି ଯେ
ପାଦୋଦକ ସେବି ଶ୍ରୀମୁଖ ନିରେଖି
ଲଭନ୍ତି ମହା ତୃପତି ଯେ ॥୪॥

ଖେଳେ ଭକ୍ତ ତୁଣ୍ଡେ ପ୍ରାର୍ଥନା ବାକ୍ୟ
ଦୁଃଖୀ କଣ୍ଠୁ ଉଠେ ମଣିମା ଡାକ
ଉଛୁଳି ପଡ଼ଇ ବାଦ୍ୟ ସ୍ୱନ
ସାଧକେ କରନ୍ତି ସ୍ତବ କୀର୍ତ୍ତନ ।
ସେ ସ୍ୱରେ ମିଶାଇ ସ୍ୱର ଯେ
ଦୀନ ଚିନ୍ତାମଣି ଦୂରେଥାଇ ଡାକେ
ହେ ପ୍ରଭୁ ଉଦ୍ଧାର କର ଯେ
**॥

**

# ଜଗବନ୍ଧୁ ଜଗନ୍ନାଥ

## କବି ଶେଖର ଚନ୍ଦ୍ରମଣି ମହାନ୍ତି

(ବିଂଶ ଶତାବ୍ଦୀ)

[ ରାଗ-ଶ୍ରେଣୀ ]

ଜଗବନ୍ଧୁ ଜଗନ୍ନାଥ ଜଣାଉଛୁ ଯୋଡ଼ିହାତ
ଭବ-କାରାଗାରୁ ମୁକ୍ତ କର ଏ ଦାସେ
ବନ୍ଧୁ ବନୁ ପଡ଼ି ପଡ଼ି ଗଲାଣି ଶରୀର ଝଡ଼ି
ହେଉଅଛୁ ଆୟୁକ୍ଷୟ ପ୍ରତି ନିଶ୍ୱାସେ
ଦୁଷ୍ଟ ଜରା ସାଧୁଛି ଦାଉ
ତୁମ୍ଭେ ନ ତାରିଲେ କିଏ ତାରିବ ଆଉ ॥୧॥

ଛନ୍ଦିଅଛୁ ଯେଉଁ ବେଡ଼ି କିଏ ତା' ପାରିବ ଫେଡ଼ି
ଶ୍ରୀ ହସ୍ତରେ ତୁମ୍ଭେ ତାହା ନ ଦେଲେ ଭାଙ୍ଗି
ତୁମ୍ଭେ ପ୍ରଭୁ କୃପାମୟ ହରୁଛ ଆତୁର ଭୟ
ଡାକେ ମୁଁ ତୁମ୍ଭଙ୍କୁ ସାରା ଜାମିନୀ ଜାଗି
ଶୁଣ ପ୍ରଭୁ ରଙ୍କ ଗୁହାରି
କର ଏ କିଙ୍କରେ ଭବ ସାଗରୁ ପାରି ॥୨॥

କେଉଁ କାଳୁ ତୁମ୍ଭ ପାଶୁ ଆସି ଏବେ ଏ ପ୍ରବାସୁଁ
ବାହୁଡ଼ି ଯିବାକୁ ଚିତ୍ତ ଉଛନ୍ନ ଅତି
ଛାଡ଼ିପ୍ରଭୁ ପାଦସେବା ସେବକ ହୋଇଣ କେବା
ରହିପାରେ କାହିଁ ହୋଇ ନିଶ୍ଚିନ୍ତ ମତି
ପ୍ରଭୁ ଏକା ପ୍ରାଣ ତାହାର
ପ୍ରଭୁ ପାଦପଦ୍ମ ତାର ହୃଦୟ-ହାର ॥୩॥

ଅନ୍ତର୍ଯ୍ୟାମୀ ନାରାୟଣ    ନ ଜାଣନ୍ତି ଭୃତ୍ୟମନ
ବଞ୍ଛପାରେ କି ସେ ତୁମ୍ଭ ଖଟଣୀ ତେଜି
ଛାଡ଼ି ତୁମ୍ଭ ସହବାସ    ଆର୍ତ୍ତେ ଛାଲେ ଦୀର୍ଘଶ୍ୱାସ
ଝୁରି ଝୁରି ମରେ ହୃଦ ସୈରାଗ୍ୟ ହେଜି
ଚନ୍ଦ୍ରାମଣି ବକଲେ ଖେପେ
ନାଥ ପ୍ରଭୁ ସେବକଙ୍କୁ ପଛର ପାଶେ ॥୪॥

**

**

# ରଥଯାତ୍ରା

## ସଚ୍ଚିଦାନନ୍ଦ ରାଉତରାୟ

(ବିଂଶ ଶତାବ୍ଦୀ)

ଅନେକ କପୋତ ପକ୍ଷୀ ରଂଗ ପରି
ଆଜ ପାଣି କୁହୁଡ଼ିଆ ଖରା
ହଠାତ୍ ସେ ଦେଖାଗଲା ପଶ୍ଚିମ ମୁହାଁଣୁ
ଦୁଇ ଚକା ଡୋଳା
ମୃଦଂଗର ଆଖି ପରି ।
ସବୁ ଶବ୍ଦ ହୋଇଗଲା କ୍ଷଣେ ଶୁନ୍‌ଶାନ ।
ଲକ୍ଷ ଲକ୍ଷ ଲୋକଂଙ୍କର ଜୟଧ୍ୱନି, ହୁଳହୁଳି
ଶଂଖ ବାଦ୍ୟସ୍ୱନ
କ୍ରମେ ସବୁ ଲିଭିଗଲା, ଶବ୍ଦ ଆଉ ଦୃଶ୍ୟ
ଏଠି ବସି ପଞ୍ଚଶେକ କୋଶ ବ୍ୟବଧାନେ
ମୁଁ ଦେଖିଲି ସେଇ ମୂର୍ତ୍ତି, ସେ ଅଦ୍‌ଭୁତ ଆସ୍ୟ
ଦୁଇ ଗୋଟି ଡୋଳା ।
ଦୁଇ କଳା ଚକ୍ଷୁ !
ସେ ଆଖିହିଁ ଦେହ, ତାହା ମନ, ତାହା ଆତ୍ମା
ତାହା ପରଂପରା ।
ତାହା ଏକ ସମୁଦ୍ର-ଝରୋଖା
ଲୌକିକ ଗବାକ୍ଷ ।
ଦୁଇଟି ବ୍ରହ୍ମାଣ୍ଡ ପରି ସେଇ ଦୁଇ ଡୋଳା,
ଯା'ର ଚତୁର୍ଦ୍ଦିଗେ ଘୂରେ ସୂର୍ଯ୍ୟ, ଘୂରେ ଚନ୍ଦ୍ର ତାରା ।
ଗ୍ରହ, ଉପଗ୍ରହ, ବ୍ୟୋମ ବାୟୁ
ଶୂନ୍ୟ, ମହାଶୂନ୍ୟ

ତାହା ଏକ ଶୂନ୍ୟର ଡାକରା ମହାଶୂନ୍ୟ ଆଡ଼େ
(ଯେଣୁ ତାହା ପରଂପରା-ରୂପାଂତର ଧାରା-
ଯାହା ହୋଇ ଚାଲିଥାଏ)
ସେ ଆଖିର ପଲକରେ
ମୁଁ ଦେଖିଲି ଧ୍ୱଂସ ହୋଇଯାଏ ମୋର ସ୍ଥିତି
ଅଣୁ ପରମାଣୁ
ଦେଖେଁ ସ୍ୱୟଂ ମଘବାନ
ଆସି ଆରଂଭଂତି ସ୍ତୁତି ।
ମହେଶ୍ୱର କରଯୋଡ଼ି ଠିଆ
ବ୍ରହ୍ମାଏ ପଢ଼ଂତି ବେଦ ।
କିନ୍ନର କିନ୍ନରୀ ତାଳଂତି ଚାମର ।
କାହିଁଗଲେ ଲୋକମାନେ
କୁଆଡ଼େ ହଜିଗଲା ଏତେ କୋଳାହଳ ?
ତଥାପି ରେଡ଼ିଓ କହେ—
ବଢ଼ି ଚାଲେ ଜନ ସ୍ୱଅ-ସ୍ଫୂର୍ତ୍ତି ବଡ଼ ଦାଂଡ଼
କୋଠା ବାଡ଼ି ଗୃହ ।
ସବୁ ଲୋକ, ଅଜସ୍ର ଅଦ୍ଭୁତ ମୁହଁ
ଆଖି କାନ ହାତ
ଅସଂଖ୍ୟ ଜଣାଣ, ଚାମର ଆଲଟଁ
ନିମିଷକେ ହୋଇଗଲା ଲୀନ
ସେଇ ନେତ୍ର ବଂଦେ ।
ସବୁ ଶୂନ୍ ଶାନ ।
କାଳପାତ୍ର ସ୍ଥାନ
ତିନି ଯୁଗ, ଲକ୍ଷ ଯୋନି, ତିନି ଲୋକ ଏବଂ ଚାରିବେଦ ।
ନିଶ୍ଚିହ୍ନ, ନିଶ୍ଚିହ୍ନ ।
ଛିନ୍ନ ମୋର ସମସ୍ତ ବଂଧନ ।
ମନେ ହୁଏ ମୁଁ ଯେପରି ମୁକ୍ତ
ମନେ ହୁଏ ନିଃସମସ୍ତ ଏକ ଦୂରତ୍ୱରେ
ସେ ଆଖି ଓ ମୁଁ ମୁହାଁମୁହିଁ ।
ଯେଉଁପରି ବ୍ୟାଘ୍ର ଓ ବାଛୋଇ
ପରସ୍ପରେ ରହିଛଂତି ଚାହିଁ ।

ଅପଲକ, ଅନିମେଷ ଦୃଷ୍ଟି
ସେ ଦୃଷ୍ଟି ହିଁ ବଂଚିବାର ଅର୍ଥ, ତାହାସ୍ଥିତ
ତଥାପି ଉଭୟେ
ପରସ୍ପର ରହନ୍ତି ଆଚ୍ଛନ୍ନ ।
କାଳକୁ ଆବୃତ କରି
ଯଥା କାଳସ୍ଥାନ ।

***

**

## ପ୍ରସ୍ତୁତ ଅବକାଶ

### ସଚ୍ଚିଦାନନ୍ଦ ରାଉତରାୟ

(ବିଂଶ ଶତାବ୍ଦୀ)

ଅରୁଣ ସ୍ତଂଭର ପାଶେ ଏବେବି ସେ ସ୍ୱର
ସମୁଦ୍ରର ମୁହାଁମୁହିଁ ହେବା ପାଇଁ ଚାହେଁ
ଛୁଟି ଚାଲେ ସମୁଦ୍ରକୁ
କାରଣ ସମୁଦ୍ର ହିଁ ଉତ୍ସ
ସମସ୍ତ ହିଁ କାରଣ କେବଳ
ମୁଁ ଛଟପଟ କରେ ନିଜ କୋଠରୀରେ
ଉପରକୁ ଚାହେଁ, ଏବଂ ପ୍ରାର୍ଥନା କରେ
ପ୍ରାର୍ଥନାର ଶବଦ୍ ସବୁ ତୀବ୍ରତର ହୁଏ
ଚ଼ବନ ପରିକା
ତା'ପରେ ଜଣାଣ ମୋର ହୁଅଇ ଅବୋଧ୍ୟ
କ୍ରମେ କ୍ରମେ—।।
କୋଠରୀର ଟେର୍କା ଆଉ ରେଲିଂ ଏବଂ ଆସବାବ
କ୍ରମଶଃ ପ୍ରସ୍ତରୀଭୂତ ହେଲା ପରି ଲାଗେ,
ଏବଂ ସେ ସ୍ୱର କାନରେ ବାଜେ

ସମୁଦ୍ର ଅନ୍ତରକୁ ମୋହିଁ
ସମୁଦ୍ରହିଁ ଉତ୍ସ
ସମୁଦ୍ରହିଁ କାରଣ ସବୁର
ଗୋମୂତ୍ର ପରି ସେ ଶବ୍ଦ ସବୁ
ଛନ୍ଦା ଛନ୍ଦ ହୋଇ
ଫେରିବାକୁ କରନ୍ତି ଆରମ୍ଭ
ସମୁଦ୍ର ଆଡ଼କୁ
ମୁକ୍ତ ନୀଳିମାରେ ଗାଧୋଇ ।
ଏଥର ମନେ ହୁଏ ତା' ମୋର ନିଜସ୍ୱ କଥନ
ମୋ'ର ଆକୁଳ ପ୍ରାର୍ଥନା
ସମସ୍ତର ଅନ୍ତର୍ଭୂକ୍ତ
ମାନବୀକରଣ
ମୋର ଉଚ୍ଚାରଣ
ଏବଂ ମୋର ଉତ୍ସର ସନ୍ଧାନ ।

**

**

## ଶ୍ରୀ ଗୁଣ୍ଡିଚା

**ସଚ୍ଚିଦାନନ୍ଦ ରାଉତରାୟ**

(ବିଂଶ ଶତାବ୍ଦୀ)

ଅଦୋ ଯଦ୍ଦାରୁ ସିଂଧୋପାରେ ଅପରୁଷମ୍
ତଦା ଭରସ୍ୱ ଦୁର୍ହଣୋ ତେନଗଚ୍ଛ ପରସ୍ତରମ୍ ।
—ଋକ୍‌ବେଦ ୧୦।୧ ୦ମ ମଂଡଳ

ଅକାଶର ବାଣୀ ଶୁଣିବ କଣ୍ଟୀ
କ୍ଷୀରୋଦ୍ରେ ମେଲିବ ନେଇ କୃଷ୍ଣ ଅଂଗ ଗୋଟି
—ଶାରଳା ଦାସ

ହେ ପ୍ରାର୍ଥନା ! ତୁମେ ଆଜ ହୁଅ ଉଅରୂଢ
ଜନ୍ମ ଯାତ୍ରା କର ମଣିଷର ଚଲାପଥେ
କେଉଁ ଗୁଢ଼ ଗୋଷ୍ଠୀର ଇଚ୍ଛାରୁ
ତୁମେକ ଛୁଟିଛ କହ ବ୍ୟକ୍ତିର ଗୋଷ୍ପଦେ
ନା ଅନାର୍ଯ୍ୟ ଅରଣ୍ୟ ପ୍ରାଂତରୁ ଯୌଥ ପାରବଶ୍ୟ
ନୀଳ ପଥରର କେଉଁ ଅନାହତ ସ୍ଥାଣୁ
ରହସ୍ୟ ଚକ୍ରରୁ
ଆର୍ଯ୍ୟର ଜଂଗମେ
ସମୁଦ୍ର ସଂଗମେ ।
ନୀଳ ନାସ୍ତିକ ଆକାଶ ପ୍ରଦେଶେ
ତୁମେତ ନେଇଛ ରୂପ ଶବ୍ଦମୟ କୋଷେ
ବର୍ଣ୍ଣର ବିକାର ଗ୍ରନ୍ଥି ।
ତା' ଉପରୁ ପୁଣି ଦେହଲୋକେ
ଆସିଛ ଓହ୍ଲାଇ
*¹ ଯୁଗନଙ୍କ ମହାଯୁଦ୍ଧେ ମୃତ ଦେହକାଗ
ଦେହ ଖାତେ
ଜାଗେ ଯହିଁ ଋଣଖୀ ଉପାଟି ପଣ
*² ମୁକ୍ତ ଲକ୍ଷ୍ମୀଂକର
ଆଜ ଏଠି ମଣିଷର ଜୀବନ ପଥରେ
ବର୍ଣ୍ଣ ନୁହେଁ ଶବ୍ଦନୁହେଁ ନୁହେଁବ ଶରୀରେ
ହେ ପ୍ରାର୍ଥନା ! ହେ ବିଶ୍ୱାସ
ଦିଗ୍ବିଜୟ କର
ସାଧାରଣ ଜୀବନର ଉଲୁଧ୍ୱନ ସୁରେ ।
ଆବଶ୍ୟ କଲ୍ପନା ନେଇ ତୁରଂତ ବେଗରେ
ଜ୍ୟୋତ୍ସ୍ନାର ମଂଜରି ପରି ନଗୂଢ଼ ପ୍ରତ୍ୟୟେ ॥
ନାହିଁତ ଟ୍ରାଇବ୍ । ମରିଅଛୁ ସଂଘ
ଲଭିଅଛୁ ସମ୍ପ୍ରିଷ୍ଟ ଦେହର ତତ୍ତ୍ୱ
(ତା'ସଂଗେ) ପତନ ସହଜ
ତେଣୁ ବଜ୍ର ସ୍ୱଚ୍ଛ
ଭୈରବରୁ ନୂତନ ମୈତ୍ରେୟ
ହୁଅ ପରିଣତ

ବିଶିଷ୍ଟ ଏ ମଣିଷ ଜୀବନ
ତାର କ୍ଷେତ୍ର କି ବିଚିତ୍ର
ମୁକ୍ତ ଏ ସମାଜ ।
ଏ ଦୁଇର ବିନିମୟେ
ବିରୋଧେ, ଅନ୍ୱୟେ
ଅଛୁ, ଅଛୁ ଏକ ସାଧାରଣ
ହେ ପ୍ରାର୍ଥନା ମୋର
ହୁଅ ତୁମେ ତହିଁ ଫଳବାନ ।

**

*¹ ତାଂକ ଚର୍ଯ୍ୟାଗୀତର ସାଧକମାନେ ଯୋଗୀ-ଯୋଗିନୀ ମିଳନାବସ୍ଥାକୁ ଯୁଗନଦ୍ଧ ନାମିତ କରିଥିଲେ । ଏହି ଯୌନସଂଗମ ମାଧ୍ୟମରେ ମହାସୁଦ୍ଧ ବା ମହାସୁଖ କିଂବା ଆଧ୍ୟାତ୍ମିକ ଅର୍ଥରେ ନିର୍ବାଣାବସ୍ଥା ଲଭନ୍ତୁଏ ବୋଲି ବର୍ଣ୍ଣିତ ଅଛି ।

*² ଲକ୍ଷ୍ମୀଂକରା-ଉଡ୍ଡୀୟାନର (ଯାହା ହରପ୍ରସାଦ ଶାସ୍ତ୍ରୀ ଓ ଡଃ ଭଟ୍ଟାଚାର୍ଯ୍ୟଂକ ମତରେ ପ୍ରାଚୀନ ଓଡ଼ିଶା) ପ୍ରସିଦ୍ଧ ବଜ୍ରଯାନ ବିଶାରଦ ଇନ୍ଦ୍ରଭୂତିଂକ ଭଉଣୀ ଲକ୍ଷ୍ମୀକଂର ସେ ବଜ୍ରଯାନ ବିଦ୍ୟାରେ ବିଶେଷଜ୍ଞା ଥିଲେ ।

**!

# ନିରମାଖି ପୁଅ ମାଦଳା ବାଉଁ

### ମହାପାତ୍ର ନୀଳମଣି ସାହୁ

(ବିଂଶ ଶତାବ୍ଦୀ)

ତୁମେ କଣ ସେଇ ଯମୁନା କୂଳର
ଗୋପୀମନ ଚୋର, ଗୋକୁଳ ଚନ୍ଦ୍ର ନନ୍ଦବାଳା ?
ତୁମେ କଣ ସେଇ ମୟୂରଚୂଳିଆ ପୀତ ଦୁକୁଳୀୟା
ବନ ଫୁଲମାଳ, ଧୂଳି ଧୂସରିଆ
ମୁରଲୀ ଧରା, ଚକ୍‌କଣ କଳା ?

ତୁମେ କଣ ସେଇ
ଯଶୋଦା ମାୟୀର ଚୋଲବସରିଆ ଲବଣୀ ଖିଆ ?
ଇନ୍ଦ୍ର ବ୍ରହ୍ମାଙ୍କ ଗର୍ବ ହରି
ପୁତନା ଛାଣିର ପରାଣ ପିଆ
ଗୋରୁ ଗୋପାଳଙ୍କ ପରାଣ ଧନ
କାହିଁ ଗଲା ସେଇ ଗଉଡ଼ ପିଲା ?
ବକା ଧେନୁକାର କଲିଜା ଚିରା ?
ତୁମେ କଣ ସେଇ ରସିକ ଶେଖର ପରମ କାରୁଣ
ଶ୍ରୀ ରାଧା ମଧୁର ଅଧର ପିଆ ?

ତୁମେ କଣ ସେଇ ପଦ୍ମ ପଲାଶଲୋଚନ କୃଷ୍ଣ ଦ୍ୱାରକାଧୀଶ ?
ସୁଦାମାର ମିତ, ଖୁଦ ରୁକ୍ମଣୀ କମଳା ଈଶ ?
ବିଦୁର କୁଟୀରେ ଶାଗ ଭଜା ସଙ୍ଗେ ପଖାଳ ଖିଆ
ପାଣ୍ଡବ ସଖା, ଧର୍ମ ରକ୍ଷଣେ
ଯୁଗେ ଯୁଗେ ହୁଅ ଅବତାରିଆ ?

କୁରୁ ସଭାତଳେ କୃଷ୍ଣାର ଲଜ୍ଜ୍ୟା
ନିବାରଣ କଲ ତୁମେ ନା ସତେ ?

ଚଣ୍ଡ ଚଣ୍ଡାଳ ଉଗ୍ରଧନ୍ୱାଟିକୁ
ଅଭୟ ଦେଇଛ ତୁମେ ନା ସତେ ?
ତୁମେ ନା ସତେ ?
ଯୁଧିଷ୍ଠିରର ଧର୍ମ ଯାଗେ
ଅତିଥିଙ୍କ ପାଦ ଧୋଇ ଦେଇଥିଲ
ଆପଣା ହାତେ ?
ଧର୍ମ ଯୁଦ୍ଧେ ଅସ୍ତ୍ର ନ ଧରି
ସାରଥି ହୋଇଲ ପାର୍ଥ ରଥେ ?
ତୁମେ କଣ ସେଇ          ଦଶରଥ ସୁତ
ବିକଚ ରାଜୀବଲୋଚନ ରାମ ?
କଅଁଳ ଶ୍ୟାମଳ          ଛନ ଛନ ଘାସ
ବରନ ତୁମର ଦେହର ଠାମ ।
ପିତାର ସତ୍ୟ          ରକ୍ଷଣେ ତୁମେ
ବକଳ ବସନେ ଗମିଲ ବନ,
ଭରତକୁ ଦେଇ          ରାଜ୍ୟର ଭାର
ଜଟାଧାରୀ ହୋଇ କାଟିଲ ଦିନ ?
ତୁମକୁ ଦେଖିଣ          ଦଣ୍ଡକ ବଣେ
ମୁନି ଋଷିଙ୍କର ଟଳିଲା ମନ
କାମିନୀ ଭାବରେ          ରମଣ ମାଗିଲେ
ତୁମେ ନା ସତେ ସେ ପୁରୁଷୋତ୍ତମ ?
ନୟନାଭିରାମ          ହୃଦୟାଭିରାମ
ଯଜ୍ଞ ପାଳକ ହେ ଅଭିରାମ ?
ଦିବ୍ୟ ପୁରୁଷ          ରମଣ ଲାଳସୀ
ସୂର୍ପଣଖାର କାଟିଲ ନାକ ଓ କାଟିଲ କାନ
ପ୍ରଜାରଞ୍ଜନ ଲାଗି ପୁଣି          ଆହେ ନିଠୁର ଚିତ୍ତ
ସୀତାରେ କରିଲ ବିସର୍ଜନ;
ଜୀବନଟା ସାରା          ବେଦନା ଦଗ୍ଧ
କରି ଆପିଗଲ ସଂସାର ଧର୍ମ !!!
ତୁମେ କଣ ସେଇ କପିଳବାସ୍ତୁ ମାୟାଦେବୀ ସୁତ ଶାକ୍ୟମୁନି
ଜୀବର କଷଣେ ବିଗଳିତ ପ୍ରାଣ, ଶୁଦ୍ଧ ବୁଦ୍ଧ କରୁଣା ଖଣି,
ତୁମେ କଣ ସେଇ ଆଦି ଅନାଦିର ଅସୀମ ସୀମା ?

ଶୂନ୍ୟ ପୁରୁଷ ଅଲେଖବ୍ରହ୍ମ ଅନାଦନା—
ଅଖିଳ ଭୂମା—
ଅଛ ନ' ଅଛର ଚରମ ସୀମା ?
ଆଜ କଲ୍ଲ ଏଇ ଦାରୁଭୂତ ରୂପ ଦେଖିଲ୍ଲ କ୍ଷଣି
ହସ ମାଡ଼ୁଛି କି କାନ୍ଦ ମାଡ଼ୁଛି ମୁଁ ନପାରେ ଜାଣି,
ବୁଝି ପାରୁ ନାହିଁ କି ଭାବ ତୁମକୁ
ଏମିତ କଏ ସେ କାହିଁକି କଲା ?
ଅଥବା କାହାର ଗର୍ଭ ବଦାଶ
ଅସମୟେ ତୋର ଜନ୍ମ ହେଲ୍ଲ ?
ଦେଖିଲ୍ଲ ଦେଲକୁ ହାତ ଗୋଡ଼ ନାହିଁ
ଖଣ୍ଡିଆ ପିଲ୍ଲ ।
ତଥାପି କେମିତ କୋଟି କୋଟି ଆଖି
ଅପଲକ ହୋଇ ଯୁହିଁଛ ଭଲ୍ଲ ?
କଏ ଯେ କାହାର ଗୁହାଶ ଶୁଣିବ
କାହାର କଷ୍ଟଣ ପାଶବ ଫେଇ —
ସେ କଥା ଏହାର ହାତ ଗୋଡ଼ ଦେଖି
ବୁଝା ପଡ଼ୁଅଛି-ହାଇରେ ହାଗ !
ଇଏ ଅବା, କାର କଣବ କଅଣ
ମାଦଳା ଠାକୁର, ମାଦଳା ଭୂତ
ଆପଣାକୁ ଆପେ ରଖି ପାରବାତ
ଏହାର ହୋଇଛ ସାଧ୍ୟାତୀତ
ଏ ପୁଣି କୁଆଡ଼େ ଜଗତନାଥ !
କେଜାଣି ସେ କଥା ମିଛ କି ସତ !
ସାଧୁ ସୁଜନଙ୍କ ସେଇଆ ମତ
କଏ ପୁଣି କହେ କାଳିଆ ଭୂତ—
ପାଦ ନାହିଁ ବୋଲି ବସିଛ ରଥ !
ଏ ଭୂତ ସାଙ୍ଗରେ ଭେଟଣା ହେଲେ—
ଜ୍ଞାନ ହଜିଯିବ ହେବ ଅଚେତ
ଜ୍ଞାନୀ ଭଗତଙ୍କ ସେଇଆ ମତ !
ମତେ ମିଛ ହେଲେ ତୁମକୁ ସତ !
ଏତକ ମାତର ମନେ ମୁଁ ଭାବୁଛି

କାଳିଆରେ ତତେ କି ଯାଦୁ ଜଣା ?
ଆରେ ତୋ ଆଖିରେ ଆଖି ମିଳିଗଲେ
ଆଖିର ପଲକ ନ ପଡ଼େ ଜମା !
ଦେଉଳେ ଆଆନ୍ତି ରଥରେ ଆଆ ରୁ
ମାଦଳାରେ ତୋତେ ଚାହିଁଲ କ୍ଷଣି—
ଅକାରଣେ କୋହେ ଛାତି ଫାଟିଯାଏ
ଆଖିରୁ ବୁହଇ ଅସରା ପାଣି !
ମନ ହୁଏ ତୋତେ କୁଣ୍ଢାଇ ଧରନ୍ତି
ଜୀବନଟା ସାରା ବୁହାନ୍ତି ଲୁହ—
ଦୁଃଖିର ଧନଟି ରଙ୍କ ରତନରେ
ଝରମାଖି ପୁଅ, ମାଦଳା ଦାଉଁ !
ଧରିଲେ ତ ତୋତେ ହାତ ଛାଡ଼ି ନାହିଁ
ମନ ବଳୁନାହିଁ, ପକାଇ ଦେବ—
ଚାରପଟେ ତୋର ତତଳ ଲୁହର
ଅଥଳ ଜଳେ
ଦୁଃଖିଧନ କାଳେ ଯିବୁ ତୁ ଡୁବି ! !

**

**

# ଜଗନ୍ନାଥ

## ଦୁର୍ଗାଚରଣ କୁଅଁର

(ବିଂଶ ଶତାବ୍ଦୀ)

ଜାଣେ ନାହିଁ ତୁମେ ମୋର ଭାଇ ବନ୍ଧୁ ସଖା ବା ସୋଦର
ଶଠ ପ୍ରପଞ୍ଚକ ଅବା କାଳସର୍ପ ଆରତ ଜନର

ତୁମକୁ ଦେଖିଲେ କାହୁଁ ଭଲ ଲାଗେ ଲାଗେ ଆପଣାର
କଳା ଶ୍ରୀମୁଖରେ ଅବା ଠୁଳ ସବୁ ଶୋଭାର ଭଣ୍ଡାର

ବିଶ୍ୱ ବ୍ରହ୍ମାଣ୍ଡର ସବୁ କଳାଯାକ ହୋଇ ଘନୀଭୂତ
ଗଠିଛି କି ଦେହ ତବ, ସେଥିପାଇଁ ତୁମେ ବିଶ୍ୱରୂପ

କୋଟି ସୂର୍ଯ୍ୟ ଗ୍ରହ ତାରା ମ୍ଳାନ ଅବା ସେ ଚକ୍ଷୁ ଗୋଲକେ
ଭୟ ଲାଗେ ସେଥିପାଇଁ ଛିଡ଼ାହେଲେ ତୁମର ସମ୍ମୁଖେ

ଆଶ୍ଚର୍ଯ୍ୟ ସେ ଦୃଷ୍ଟି ତବ ଜଗତର ପରମ ବିସ୍ମୟ
ସବୁ ଗର୍ବ ଅହଂକାର ଲଭେ ତହିଁ ଚରମ ବିଲୟ

ଜ୍ଞାନ ବୁଦ୍ଧି ପରାହତ ସେ ଦୃଷ୍ଟିର ଉଜ୍ଜ୍ୱଳ ଆଲୋକେ
ଶତ ମତ ଶତ ପଥ ଏକ ହୁଏ ସେ ଦୃଷ୍ଟି ଇଙ୍ଗିତେ

ତୁମକୁ ଦେଖାଇ ପୁଣି ଅନ୍ୟରୂପେ ରତ୍ନବେଦୀ ରୂଢ଼
ଉଭାହୁଅ ବଡ଼ଦାଣ୍ଡେ ବୋଲା ହୋଇ ଏ ଧରାର ଧୂଳି

ଭଲଲାଗେ ମଣିଷର ଠେଲାପେଲା ଅଙ୍ଗର ପରଶ
ଦାରୁରେତ ବ୍ରହ୍ମ ତୁମେ ଦାରୁ ପୁଣି ପାଲଟେ ମଣିଷ

ତୁମେ ପୁଣି ଯାଅ ଯୁଦ୍ଧେ ଦୁଇଭାଇ ହୋଇଣ ଅଶ୍ୱଢ
ରଖିବାକୁ ଭକ୍ତ ତବ ଗଜପତି ରାଜାର ମହତ ।

ରହସ୍ୟ ବି କର ତୁମେ ବାଟେ ଦେଖି ସୁନ୍ଦରୀ ତରୁଣୀ
ଦହି ଖାଇ ବନ୍ଧା ହଅ ରତ୍ନମୁଦି ପ୍ରେମୀ ଶିରୋମଣି ।

ତୁମପାଖେଁ ଅଭିଷେକ ନ ହୋଇଲେ ଉତ୍କଳ ରାଜନେ
ଅଭିଷିକ୍ତ ତୁମେ ଯେଣୁ ସର୍ବଜନ ହୃଦ ସିଂହାସନେ

ଶତ୍ରୁ ଆକ୍ରମଣ କାଳେ ରଖିବାକୁ ତୁମରି ସମ୍ମାନ
ଯୁଗେ ଯୁଗେ ଦେଶ ଲୋକେ କରିଛନ୍ତି ନିଜରେ ବିପନ୍ନ ।

ତୁମକୁ ଲୁଚାଇଛନ୍ତି ନେଇ କେଉଁ ପାହାଡ଼ କନ୍ଦରେ
ସୋନପୁରେ କେବେ ଅବା ଚିଲିକାର ନିର୍ଜନ ଦ୍ୱୀପରେ

ଏ ଜାତିର ଅନ୍ତରଙ୍ଗ ଅଛି କିଏ ତୁମ ପରି ଜଣେ
ସବୁ ଅଳି ଅଭିମାନ ସମର୍ପିତ ତୁମରି ଚରଣେ ।

ତୁମର ବି ମୃତ୍ୟୁ ହୁଏ । ହୁଏ ପୁଣି ନବ କଳେବର
ଅଶୌଚ ବିଧି ପାଳନ୍ତି ଦଇତାଏ । ସେ କି ତୁମ ଭାଇବରାଦର

ଦେବ କି ମାନବ ତୁମେ ନୁହେଁ ଜାଣି ହେ ପୁରୁଷୋତ୍ତମ
ତଥାପି କରଇ ନତ ମଥା ମୋର, ଘେନ ହେ ପ୍ରଣାମ

**

***

# ସନ୍ଧ୍ୟା-ବନ୍ଦନା

## ଶ୍ରୀ ନୃପାଳ ଜୀ

(ବିଂଶ ଶତାବ୍ଦୀ)

[ ରାଗ-ରାମକେରୀ ]

ଝଙ୍କାର ଉଠୁଚି ମଧୁର ଚିର ସୁନ୍ଦର ବୀଣା
ଆହେ ଜଗନ୍ନାଥ ! ତୁମର ଆଜ ସନ୍ଧ୍ୟା-ବନ୍ଦନା ।

ଶୁଭ୍ର ଶଙ୍ଖ ବାଜେ ଗମ୍ଭୀରେ ଆଣେ ନବ ଚେତନା
ଗଭୀର ଓଁ କାର ଝଙ୍କାର ତୋଳେ ମଧୁ ମୂର୍ଚ୍ଛନା ।

ବୀଣା ମୁଖରିତ ମନ୍ଦିରେ ଦେଇ ସୁବାସ ଧୂପ
ପୂଜାରୀ କରଇ ଆରତି ଧରି ରତନ ଦୀପ ।

ତୁମରି ଆରତି ବନ୍ଦନାଭରା ଅମିୟ ଗୀତେ
ଆନନ୍ଦ ଜୁଆର ଉଚ୍ଛୁଳି ଉଠେ ତାହାରି ଚିତ୍ତେ ।

ତାରା ଆଲୋକିତ ରଜନୀ କୋଳେ ମଧୁ ଆରତି
ମଧୁ ସମୀରଣ ଗୁଞ୍ଜନ ତୋଳେ ବନ୍ଦନା ଗୀତି ।

ଅଗଣିତ ଭକ୍ତ ମିଳିତ ହୋଇ ନାଟମନ୍ଦିରେ
ତୁମ ଜୟଗାନ କରନ୍ତି ପ୍ରାଣ ପୁଲକ ଭରେ ।

ନୀଳଶୈଳ ଚୂଳେ ଶୋଭୁଚ ଆହେ ନୀଳସୁନ୍ଦର !
ଏ-ବିଶ୍ୱେ ଆଲୋକ ଦେଉଚ କୋଟି କୋଟି ଅନ୍ତର ।

ସେ ଆଲୋକ ପାଇ ଆସିଲେ ଜଣେ ଆଦ୍ୟ ଶଙ୍କର
" ଜଗନ୍ନାଥ ସ୍ୱାମୀ ଗାଇଲେ ରଚି ସ୍ତୁତି ମଧୁର !

ବନ୍ଦିଲେ ତୁମ୍ଭକୁ ଚୈତନ୍ୟ ବଡ଼ ଦେଉଳେ ଆସି
ବିଲୀନ ହୋଇଲେ ଶ୍ରୀଅଙ୍ଗେ ପ୍ରେମସାଗରେ ଭାସି ।

ଲଳିତ ମଧୁର ଭାଷାରେ ରଚି ଗୀତଗୋବିନ୍ଦ
ଜୟଦେବ ନିତ ମନ୍ଦିରେ ଗାଇ ହେଲେ ଆନନ୍ଦ ।

ଜଗନ୍ନାଥ ଦାସ ତୁମର କେତେ ସ୍ତୁତି ବନ୍ଦନା
କଳ୍ପବଟ ମୂଳେ ରଚିଲେ ହୋଇ ହରଷମନା ।

ଜ୍ଞାନ ପ୍ରେମ ଅନ୍ତଃସଲିଳା ଫଲ୍‌ଗୁଧାରାରେ ଭାସି
ନିଗମଆନନ୍ଦ ଆସିଲେ ହେଲେ ଶ୍ରୀକ୍ଷେତ୍ର ବାସୀ

ନୀଳଚକ୍ର ବାନା ଗାଉଛି ସାମ୍ୟ ମୈତ୍ରୀ ଗାନ
ନୀଳସିନ୍ଧୁ ତାଳ ଦେଉଛି ତୋଳି ଗମ୍ଭୀର ତାନ ।

କ୍ଷେତ୍ର ମଧ୍ୟେ ଶ୍ରେଷ୍ଠ ପୁରୁଷୋତ୍ତମ ଜଗତ ନାଥ !
ଧର୍ମ ମଧ୍ୟେ ଶ୍ରେଷ୍ଠ ତୁମର ଧର୍ମ ବିଶ୍ୱବିଖ୍ୟାତ ।

* ଜ୍ଞାନ ପ୍ରେମ ଘନ ବିଗ୍ରହ ତୁମେ ଶ୍ରେଷ୍ଠ ପୁରୁଷ
ଶ୍ରୀଚରଣେ ଲୀନ କର ହେ ପ୍ରଭୁ ନୃପ ମାନସ ।

**

* ଜଗନ୍ନାଥହିଁ ପୂର୍ଣ୍ଣବ୍ରହ୍ମ । ବ୍ରହ୍ମଙ୍କର ସ୍ୱରୂପ ଜ୍ଞାନ ଓ ପ୍ରେମ । ସେଥିପାଇଁ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଋକ୍‌ବେଦର ମହାବାକ୍ୟ " ପ୍ରଜ୍ଞାନଂ ଆନନ୍ଦଂ ବ୍ରହ୍ମ " ଏହି ପୁରୁଷୋତ୍ତମ କ୍ଷେତ୍ରରେ ବିସ୍ତାର କରିବା ପାଇଁ ଉଦ୍ଦେଶ ଦେଇ ଯାଇଛନ୍ତି । ତେଣୁ ବନ୍ଦନାରେ ଶ୍ରୀଜଗନ୍ନାଥଙ୍କୁ ଜ୍ଞାନ ଓ ପ୍ରେମର ଘନୀଭୂତ ବିଗ୍ରହ ଏବଂ ଶ୍ରେଷ୍ଠ ପୁରୁଷ ବୋଲି ସମ୍ବୋଧନ କରାଯାଇଅଛି ।

**

# ଗାଳି ନଦେଲେ


## ଲକ୍ଷ୍ମୀଧର ମହାପାତ୍ର

(ବିଂଶ ଶତାବ୍ଦୀ)


(ଏବେ) ଗାଳି ନ ଦେଲେ କାଳିଆ ଫଳିବ ନାହିଁ
ଢାଳିଲି ଲୋତକ ଯେତେ ଢାଳିଲି ନାହିଁ ॥ପଦ॥

ତ୍ରେତାରେ କାଳିଆ ରାମ ରୂପେ ଆବତରିଲା
ପୀରତି-ବନ୍ଧରେ ସତୀଚିତ୍ତ ଚୋର ହରିଲା
ଧିକ ସେ ରଘୁମଣି
ବୃଥା ଗୁଜ୍ଜବ ଶୁଣି
ତେଜିଲା ସତୀଙ୍କୁ ବନେ ପାଷାଣ ହୋଇ ॥୧॥

ଦ୍ୱାପରେ କାଳିଆ ପୁଣି କୃଷ୍ଣରୂପ ଧରିଲା
ଗୋପରେ ଗୋପଯୁବତୀ-ମନ ମାନ ହରିଲା
ଧିକ ଶ୍ୟାମ ପୀରତି
ତେଜି ଗୋପ ଯୁବତୀ
ଅକ୍ରୂର-କଥାରେ ଗଲା ମଥୁରା ଧାଇଁ ॥୨॥

କମଳା ମାଆ ସେବଇ କାଳିଆର ଚରଣ
ଏଇ କାଳିଆଟି ପୁଣି ଦେଲା ତାକୁ କଷଣ
ବଡଭାଇ କଥାରେ
ତାକୁ ତେଜିଲା ଥରେ
ବୁଲିଲା ବାର ଦୁଆରେ ବାଇଆ ହୋଇ ॥୩॥

ଲଗା ନାହିଁ ତାକୁ ଦଗା ଦେବା ଜଗା ସ୍ୱଭାବ
ଗାଳି ଯେତେ ଦେଲେ ସେ କି ତା' ସ୍ୱଭାବ ଛାଡ଼ିବ
ତାଙ୍କୁ ଦଅ ପୀରତି
ତା'ର ଚରଣେ ମତି
ଟଳିବ ଆସନ ତା'ର ଭକତ ପାଇଁ ॥୪॥

**

**

## ବଡ଼ଦିଅଁ ହୋଇ

### ଲକ୍ଷ୍ମୀଧର ମହାପାତ୍ର

(ବିଂଶ ଶତାବ୍ଦୀ)

ବଡ଼ଦିଅଁ ହୋଇ ବଡ଼ ଦେଉଳରେ
ବସିବା ତୁମର ବୃଥା
ବୁଝିଲ ନା ଯେବେ ବ୍ୟାକୁଳ ପ୍ରାଣର
ବିଷାଦ ବେଦନା ବ୍ୟଥା ॥ପଦ॥

ବିଦିତ ହୋଇଛୁ ବେଦ ପୁରାଣରେ
ତୁମେ କୃପାର ବାରିଧି
ବିନ୍ଦୁ ବିନ୍ଦୁ ବାରି ବିତରି ଦେଲେ କି
ହେବ ପଙ୍କୁ ଅପରାଧୀ
ବିପୁଳ ବିଭବ ବିତରି ଦାନବ
ବିଖ୍ୟାତ ବଳି ଦାତା ॥୧॥

ବିଶ୍ୱବକ୍ଷ କୋଳେ ବିଧୁ ବିହୁନେ କି
ନୀଳନଭ ଶୋଭା ପାଏ
ବିନା ବସନ୍ତର ଆଗମେ କି ପିକ
ଚୂତ ଡାଳେ ଗୀତ ଗାଏ

ବିନା ତୁମ କୃପା ଥାଏ କି ମାନବ
ଜନମର ସାର୍ଥକତା ॥୨॥

ବିଶ୍ୱ ରନ୍ଧ୍ର ଯେବେ ବିଳାପରେ ଖାଲି
ବଢଯାଏ କାଳ ବେଳ
ବଞ୍ଚିବା ତେବେ ବିଧି ଅଭିଶାପ
ସୃଷ୍ଟି ତୁମର ଖେଳ
ବାଉଳ ମାନବ ଦୁଆରେ ତୁମର
କାହିଁ କି ପିଟଇ ମଥା ॥୩॥

ବିଷ ହେଉ ପଛେ ବିଷୟ ବାସନା
ସବୁତ ତୁମର ଦାନ
ବିସ୍ମୃତ କିବା ବିଶ୍ୱ-ମାନବ
କରିବାରେ ବିଷପାନ
ବଞ୍ଚିତ କିପାଁ ହେବ କରୁଣାରୁ
ବୁଝେନି ବିଶ୍ୱକର୍ତ୍ତା ॥୪॥

ବସିବା ତୁମର ସାର୍ଥକ ହେବ
ବିସ୍ତାରି ଦିଅ ବାହୁ
ବିଶ୍ୱ ବକ୍ଷରୁ ଅପସରି ଯାଉ
ବିକଟ ବିଷାଦ ରାହୁ
ବିନତି ଏତିକି ବିଶ୍ୱର ଯେନବ
ବିଚାରି ହେ ବିଶ୍ୱପିତା ॥୫॥

**

**

# ଜଗବନ୍ଧୁ ପର ବନ୍ଧୁ

## ଶ୍ରୀ ଲକ୍ଷ୍ମୀଧର ମହାପାତ୍ର

(ବିଂଶ ଶତାବ୍ଦୀ)

ଜଗବନ୍ଧୁ ପର ବନ୍ଧୁ ନାହିଁ ଜଗତେ ଜଣେ
ଜନ କଲ୍ୟାଣ କାମନା ତାହାର
ଜଗତ ଜନର ଯାତନା ଜାଣେ ॥ପଦ॥

ଜଡ଼ ପଶୁ ସେତ ବସିଅଛୁ ସତ
ବଡ଼ହାଅଁ ବୋଲି କିଏ ନ ମଣେ
ଜପ ତା'ର ପୁଣ ତା'ର ବନ୍ଧୁପଣ
ନମଇ ଜଗତ ତା'ର ଚରଣେ ॥୧॥

ଜଳ ଜଳ ନେତ୍ରେ ଗୃହିଁଛୁ ଜଗତେ
ଜଗତଜନଙ୍କ ମନକୁ ଟାଣେ
ଜାଳି ଦିଏ ଭାବ-ଭକତି ପ୍ରଦୀପ
ଅନୁଗତ ତା'ର ଭକତ ପ୍ରାଣେ

ଜଠର ଜ୍ୱାଳାରେ ଯେ ବନ୍ଧୁ ମହାନ୍ତି
ପଡ଼ିଥିଲା ପେଜ ନଳାର କୋଣେ
ଜଗାଇ ତାହାକୁ ଯାଚି ଦେଲା ଅନ୍ନ
ଯାମିନୀରେ ତା'ର କ୍ଷୁଧା ହରଣେ ॥୩॥

ଜନପଦ ପାଞ୍ଚପାଣ୍ଡବଙ୍କ ପାଇଁ
ମାଗି ଯାଇଥିଲା ସେ କୁରୁରାଣେ
ଜୟ ଧ୍ୱଜା ଧରମର ଉଡ଼ାଇଲା
ସଖା ଅର୍ଜ୍ଜୁନର ସାରଥି ପଣେ

ଜାକ ଖୁଦଭଜା ଦ୍ୱାରକା ଭୁବନେ
ମିଳନ୍ତେ ସୁଦାମା ସନ୍ତରପଣେ
ଜାକୁଡ଼ି ଧଇଲ ଆଦରେ ତାହାକୁ
ବାଲ କାଲ-ସଖା ଭାବ ସ୍ମରଣେ ॥୫॥

ଜଳ ଜଳ ଚାହିଁଥିଲେ ପଣ୍ଡୁ ସୁତେ
କୁରୁ ଦରବାରେ ବସ୍ତ୍ର ହରଣେ
ଜଣାଇ ଦେଲୁତା ବନ୍ଧୁ ପଣିଆକୁ
ସତୀ ଦ୍ରଉପଦୀ ଲଜ୍ଜା ବାରଣେ ॥୬॥

ଜାନକୀ ଉଦ୍ଧାର ପାଇଁ ସେତ ଯେବେ
ବୁଲୁଥିଲ ଘୋର ଦୁର୍ଗମ ବଣେ
ଜଙ୍ଗଲ ବାସୀଙ୍କ ମଙ୍ଗଳ ବାନ୍ଧିଲ
ସଙ୍ଗ ହେଲେ ଆସି ଜଣକୁ ଜଣେ ॥୭॥

ଜାତିରେ ବାଉରି ଦାସିଆ ଗୁହାରି
ଶୁଣିଥିଲ ପରା ତେଉର ଶ୍ରବଣେ
ଜାଳି ଦେଇଥିଲ ପୀରତିର ବତୀ
ହୀନ ସାଲବେଗ ଯବନ ପ୍ରାଣେ ॥୮॥

ଜଞ୍ଜାଳ ଜାଲରେ ଥାଇ ଅବିରତ
ଜଗା ନାମ ହୃଦେ ଯେ ଜପି ଜାଣେ
ଜାତି ବର୍ଣ୍ଣ ଭେଦ ବିଚାର ନରଖି
ବନ୍ଧୁ ବୋଲି ଜଗା ତାହାକୁ ମଣେ ॥୯॥

ଜନକ ଜନନୀ ଜାୟା ସୁହାଗିନୀ
ଜଡ଼ିତ ସରବେ ସ୍ୱାର୍ଥ ସାଧନେ
ଜଗା ଦିଅଁ ଏକା ଆପଣାର ହୋଇ
ଉଦ୍ଧାର କରିବ ବିପଦ କ୍ଷଣେ ॥୧୦॥

ଜଗବନ୍ଧୁ ବନ୍ଧୁ ହେବ ଯେବେ ବନ୍ଧୁ
ବାନ୍ଧଦିଅ ପ୍ରାଣ ତା'ର ଚରଣେ
ଜନ୍ମ ଗୁଣ ସ୍ଥାଣ ଲଙ୍ଘିବ ଜାଣି
ଜିଣିବ ଧରାରେ ଜୀବନ ରଣେ ॥୧୧॥

**

**

## ଜଗା ମୁହଁ ସିନା କାଳିଆ

**ଶ୍ରୀ ଲକ୍ଷ୍ମୀଧର ମହାପାତ୍ର**

(ବିଂଶ ଶତାବ୍ଦୀ)

ଜଗା ମୁହଁ ସିନା କାଳିଆ
ଜଗତେ ସୁନ୍ଦର କେ ତା' ଭଳିଆ ॥ପଦ॥

ତଳିଆ-ଦଳିତ ଜନେ ନ ଦିଶନ୍ତି
ବସିଥାନ୍ତି ଯଦି ହୋଇ ତଳିଆ
ଉପରେ ଥାଇ ସେ ତଳ ଦେଖିବାକୁ
ବସିଅଛି ହୋଇ ନୀଳାଚଳିଆ ॥୧॥

ଆଖି କୋଣେ ଥିଲେ କଣେଇ ଚାହାନ୍ତି
ଲୋକେ କହୁଥାନ୍ତେ ଜଗାକାଳିଆ
ସର୍ବଜନେ ସମଦୃଷ୍ଟି ଦେବ ବୋଲି
ଶୋଭା ପାଏ ବସି ଚକାଡୋଳିଆ ॥୨॥

କର-ପରଶରେ କୋଳକୁ କଅନ୍ତି
ଦେଖି ତା'ର ପ୍ରିୟ ଯେ କପାଳିଆ
ପ୍ରିୟ ଜନତୋଷ ଦୋଷ ନାଶିବାକୁ
ହାତ ତାର ହୋଇଅଛି ଫାଳିଆ ॥୩॥

ଦୂରୁଦଶା ସ୍ୱଚ୍ଛ ଦଳଦଳ ତା'ର
ଗଳା ହୋଇଅଛି ଧଣ୍ଡାମାଳିଆ
ରସିକ ଜନର ମନ ରଂଜିବାକୁ
ବେଶ ସାଜେ ନିତ ଭଲଭଲିଆ ॥୪॥

ଜଳରେ କଳୁଷ-କାଳି ପୋଛିପୋଛି
ମୁହଁ ତା'ର ହୋଇଅଛି କାଳିଆ
କଳୁଷ ନାଶି ସେ କୃପା ବରଷିବ
ହୃଦୟକୁ କର ନିରମଳିଆ

**

**

## ଝହ୍ନାଁରେ ଚଗଲା ମନ

### ଲକ୍ଷ୍ମୀଧର ମହାପାତ୍ର

(ବିଂଶ ଶତାବ୍ଦୀ)

ଝହ୍ନାଁରେ ଚଗଲା ମନ
ସେ ଚକାନୟନକୁ
ଝହ୍ନିଲେ ପାଇବୁ ଯାଇ
ମୁକତି ଆୟନକୁ ॥ଘୋଷା॥

ଝରୁ ଝହ୍ନାଣୀ ତାହାର
ଚହଲାଏ ଚରାଚର
ଝତକପରି ଝହ୍ନିଆ
ସେ ନୟନ ଘନକୁ ॥୧॥

ଚକା ନୟନରେ ପରା
ଚୁମ୍ବକ ରହିଛି ଭରା
ଚଇପଟ ପରି ଝହ୍ନା
ଲୁହା କରି ଧିଆନକୁ ॥୨॥

ସୁତରଦେଖାଉ କେତେ
ସୁର ଦନକ୍କୁ ମରତେ
ସୁହିଁଛୁ କାଳ ଛଞାଣ
ସୁଟି ଦେବ ଗୁମାନକୁ ॥୩॥

ଚପଳ ନ କର ଚଉ
ଚନ୍ଦ୍ରେ ଚପଳା କାନ୍ତ
ଚଳୁ ଚୁମ୍ବକରେ ତାର
ନେବଟାଣି ତା ମନକୁ ॥୪॥

ଚତୁର ପଣକୁ ତେଜ
ସୁହାଁଖାଲ ଆଖିବୁଜ
ଚହଲିବ ଚକା ଆଖି
ଦେବ ସେ ଦରଶନକୁ ॥୫॥

**

**

# ଆମ ବଡ଼ ଠାକୁର

## ପରମା ନନ୍ଦ ଅଧିକାରୀ

(ବିଂଶ ଶତାବ୍ଦୀ)

ବଡ ନଟିଆ ଆମ ଏଇ ବଡ଼ ଠାକୁର
ବଡ ଦେଉଳେ ଗୋସାଇଁ ନୁହେଁ କାହାର ॥୧॥

ନୀଳଚକ୍ରେ ବାନ୍ଧି ନେତ
ବୋଲଏ ସେ ଜଗନ୍ନାଥ
ବଡ଼ଦାଣ୍ଡଁ ହ୍ଲୋଳ କରେ ବାଛ ବସ୍ତ୍ର ॥୨॥

କାଳିଆ ଚକ୍ଷ୍ ବଳା
ଭାବ ବିନୋଦିଆ ଭୋଳା
ମନର ଟେକା ଜାଣଇ ବଡ଼ ସୁନ୍ଦର ॥୩॥

କୋଠ ଭୋଗ ଖିଆ ହର
ଦଗାଦିଆ ଦଇତାପ୍ତି
ସବୁଜାଣି ଅଦେଖା ସେ ରସସାଗର ॥୪॥

ତକା ତୋଳା ଚଉବାହା
କାହାକୁ ନହୁଏ ମାହା
ତା' ଇଚ୍ଛା ଯାକରୁ ତାହା, କରୁଣାକର ॥୫॥

କାହିଁକ ଖାଉନ୍ଦପଣେ
ଶଣିବ ସେହୁ ଆପଣେ
ମୋ କଥା ନହେଲ ଗ୍ରମୁରେ ଦନେ ବସ୍ତ୍ର ॥୬॥

**

**

# ମୋର ତ ଠିକଣା

## ବ୍ରଜମୋହନ ମହାନ୍ତି

(ବିଂଶ ଶତାବ୍ଦୀ)

ପିତା ଭଗବାନ ମୁଁ ବ୍ରଜ ମୋହନ
ସୁଜାତା ଭବନ ଠିକଣା ମୋର
ସୁତ ଜଗନ୍ନାଥ ମୁକାମ ଶ୍ରୀକ୍ଷେତ୍ର
କଏ ତୋର ତାତ କଳା ଠାକୁର ?

ସନତ ସୁବ୍ରତ ତୁହେଁ ମୋର ସୁତ
ଘରଣୀ ମୋରତ ଅଟ୍ଟି ସୁଜାତା
ତୁମର ଘରଣୀ ଲକ୍ଷ୍ମୀ ଠାକୁରାଣୀ
ନାହାନ୍ତି କ ପୁଣି ସୁତ ବା ସୁତା ?

ବରଷକୁ ଏକ ସନ୍ତାନ ଜନକ
ସାଜନ୍ତନ୍ତି ଲୋକ ଆଜର ଯୁଗେ ।
କି ଔଷଧ ଖାଇ ଲକ୍ଷ୍ମୀ ମହାମାୟୀ
ଖାଲି କୋଡ଼ ହୋଇ ରହିଲେ ସଗେ ?

ସନ୍ଧ୍ୟବନ ଖସି ପିବାକୁ ଭରସି
ଆଜର ମାନସୀ ନ ଖୁହେଁ ସୁତ ।
ମୋର ପର ପିତା ଜୀବନଟା ପିତା
ଅଣ୍ଡବର ଚିନ୍ତା ଜାଳେ ମହତ ।

ଦେଖୁଥିବ ତୁମେ କାଖ କୋଡ଼େ ଆମେ
ବସାଇ ସରମେ କାଟୁ ଜୀବନ ।

ବିରଷକୁ ଅରେ        ସେ ନୀଳ କନ୍ଦରେ
    କୁଆଁ ରବ ବାରେ ଶୁଣେ କି କାନ ?

ପିଣ୍ଡ ଦେବାପାଇଁ        ତୁମ କୂଳେ କେନ୍ଦ୍ର
    ସତେ ଲୋଡ଼ା ନାହିଁ ସରଗ ଦ୍ୱାରେ ।
ନରକର ଭୋଗ        ଆମ ପାଇଁ ଯୋଗ
    କରିଲ ସଂଯୋଗ କି ପରକାରେ ?

ଶ୍ରେଷ୍ଠ ପଞ୍ଚାମୃତ        କରି ଜଗନ୍ନାଥ
    ବେଢ଼ାରେ ବହୁତ ଦେବତା ଧରି
ରହିଛ ଅନାଦି        କାଳରୁ ତମାଦି
    ହେଲଣି ବା ଯଦି ଗୁଣ ତୁମରି ।

ତୁମରି ଠିକଣା        ପାଇଁ ବାଟ ଜଣା
    କୁହ ଥିଲେ ଜଣା କଲା ଠାକୁର ।
ଗାଡ଼ି ବା ମଟର        ଅଥବା ସ୍କୁଟର
    ଚଢ଼ି ଏନ୍ଥବାର ଯିବ ମୁକର ।

ଦରିଆର କୂଳେ        ସେ ବଡ଼ ଦେଉଳେ
    ଭକ୍ତ ଜନ ମେଳେ ରହିଛ ଟିକି ?
ଯିବ ମୁହିଁ ସିଧା        ନ ମାନିବ ବାଧା
    ଜନମେ ସରଧା ନପାରେ ରୋକି ।

ବୁଝିଲି ଏଥର        ତୁ ପିତା ତୋହର
    ଏ ସାରା ସଂସାର କଲୁ ସର୍ଜନା ।
ଆମେ ତୋ ସନ୍ତାନ        କୋଟି କୋଟି ଜନ
    ଖୋଲିଛୁ ଲୋଚନ କର ମାର୍ଜନା ।

**

**

# ଚିଠି ଖଣ୍ଡେ ଜଗନ୍ନାଥଙ୍କୁ

## ବ୍ରଜମୋହନ ମହାନ୍ତି

(ବିଂଶ ଶତାବ୍ଦୀ)

ମାନନୀୟ ଜଗତର ନାଥ ଜଗନ୍ନାଥ
ଦୂରୁ ଜଣାଉଛି ମୋର କୋଟି ଦଣ୍ଡବତ ।

ଜଣାଇ ଦେବ ପ୍ରଣାମ ଭାଇ ବଳଦେବେ
ସୁଯୋଗ ହେଲେ ଶ୍ରୀକ୍ଷେତ୍ରେ ଦେଖା ହେବ କେବେ ।
ଭଗିନୀ ସୁଭଦ୍ରା ପଦେ ନତ କରେ ମଥା ।
ଆଶିଷ ଦିଅନ୍ତୁ ସର୍ବ ବେଢ଼ାର ଦେବତା ।
ଚିଠି ପାଇ ଚିଠି ଖଣ୍ଡେ ଦେବ ତ ତୁରତ ।

ସେବା ନୀତି ସେବାୟତ କରନ୍ତି କି ନାହିଁ
ମନ ଖୋଲି ଚିଠି ଦେଲେ ଲେଖିବ ଗୋସାଇଁ ।
ଚଉଷଠି ପଉଟିର ଭୋଗ ମିଠା ଖଟା
ପାଉଛ କି ନାହିଁ ତୁମେ ଏବକାର କୋଟା
ହୋଟେଲ ସାଜୁଛି ହେଲେ ବିବାହ ବା ବ୍ରତ ।

ଗସ୍ତରେ ଯଦିବା କେହି ଆସିଲେ ଓଡ଼ିଶା
ତୁମକୁ ଦେଖିବା ପାଇଁ ମନେ ଧାରେ ଆଶା ।
ଡାକ ବଙ୍ଗଳାରେ ସବୁ ଜମିଯାଏ ଭିଡ଼ ।
କହିବ ଖୋଲେ କି ନାହିଁ ତୁମର ପହୁଡ଼ ।
ମହାପ୍ରସାଦକୁ ତ୍ୟଜି ଖାଇଲେ ମାଂସ ଭାତ ।

ଗୋଡ଼ମିଶା ଅନ୍ନ ଷ୍ଟୋଭ ବନସ୍ପତି ଘିଅ
କେତେଦିନ ଖାଉଥିବ ବସି କଳାହାଣ୍ଡି ।
ପରଅଣ୍ଟା ପାଉଁରୁଟି ବଶଅନ୍ନ ଦୋଶା ।
ଇଟିଲି ସମ୍ବର ପାଇଁ ନାହିଁ କି ଲାଳସା ?
ଜର ଭାଲେ ରମ୍ ଗ୍ରୁଞ୍ଜି ଖାଅନ୍ତ ନବାତ ।

ଅନଶନ ଧର୍ମଘଟ ଆମ ଆଡ଼େ ସ୍କୁଲେ
ପାଠ ପଢ଼ି ଇଚ୍ଛା ନାହିଁ ଘେଟିବାକୁ ବଳେ ।
ଛାତ୍ର ଗୃଷ୍ଟୀ ଆନ୍ଦୋଳନ ଏଠି ଅହରହ ।
ତୁମ ଜମି କିଏ ଚଷୁଛନ୍ତି ଦେବ କୁହ ?
ସବୁ କଥା ବୁଝି ଚଠିଁ ଦେବ ହେ ଭରତ ।

**

**

# ପୁରୀ-ମନ୍ଦିର

## କାଳିନ୍ଦୀ ଚରଣ ପାଣିଗ୍ରାହୀ

(ବିଂଶ-ଶତାବ୍ଦୀ)

କାଷ୍ଠ ପଷାଣ ଗଠିତ ହେ ନିର୍ଜୀବ ମୂରତ
ଏ ଦେଶ ଶୋଣିତେ ଆଜ ଜାଗ୍ରତ ଯେ ବିଶ୍ୱର ଭାରତ,
ମାନବର ଶିଳ୍ପକଳା କଳ୍ପନା ଘଟିତ
ଯୁଗ ଯୁଗ ଧରି ଯାହା ହୋଇଛୁ ଗଠିତ
ମାନବର ହସ୍ତେ ବଦ୍ଧ ରୂପ
ଭାଗ୍ୟେ ତାର କରୁଛ ବିଦ୍ରୂପ
ଅନ୍ତର ଗୁହାରି
ଶୁଣ କି ତାହାରି
ଶୂନ୍ୟ ପ୍ରାଣ
ହେ ପାଷାଣ ।

ନ ଲଭି ସାନ୍ତ୍ୱନା କାହିଁ ଭଗ୍ନପ୍ରାଣ ମାନବ ସନ୍ତାନ
କାଷ୍ଠ ପାଷାଣର ଦେହେ କରଇ ସେ ଦେବତା ନିର୍ମାଣ
କୋମଳ ମଧୁର ଯାହା କରି ଆରାଧନା
ନୋହେ ଯେଣୁ ଉପଶମ ଅନ୍ତର ବେଦନା
ବ୍ୟାକୁଳ ହୃଦୟେ ଲୋଡ଼େ ସେହୁ
ଦୟା କ୍ଷମା ପାଷାଣର ଦେହୁ
ପାଷାଣର ଗାତେ
ମସ୍ତକ ଆଘାତେ
ଅକାରଣ
ଅଶରଣ ।

ହେ ପାଷାଣ ମାଗୁନାହିଁ ଶମିବାକୁ ମୋ ମରମଭର,
କ୍ଷମିବାକୁ ଅପରାଧ ତୁଟିବାକୁ ବ୍ୟର୍ଥତା ଆଶାର
ଲୋଡ଼ୁ ନାହିଁ ଲଭିବାକୁ ତବ ଅନୁଗ୍ରହେ
ଧନ ମାନ ଯଶ ଖ୍ୟାତି ଅଭୟ ହୃଦୟେ
ମୃତ୍ୟୁପରେ ମୁକ୍ତି ନାହିଁ ମାଗେ
ବଇକୁଣ୍ଠ ନାହିଁ ଭଲ ଲାଗେ
ଏ ମର୍ତ୍ତ୍ୟ ଭୁବନ
ମୋ ସ୍ନେହ ସଦନ
ଏ ଧରଣୀ
ସୁଖମଣି

ଜୀବନର ଭାବନାରେ ବହିଯାଏ ମୋର ପ୍ରତି କ୍ଷଣ
ନାହିଁ ବେଳ କରିବାକୁ ମୁକ୍ତି ଅବା ମୃତ୍ୟୁର ଚିନ୍ତନ
ଲଭିଅଛୁ ଯେ ସମ୍ପଦ ଏ ମର ଜୀବନେ
ମିଳଇ ସେ କେବେ କେଉଁ ଅମର ଭୁବନେ ?
ଏ ଜୀବନେ ଲଭିଛୁ ଯେ ନିଧି
ତୁଚ୍ଛ କରି ଦିଏଁ ସ୍ୱର୍ଗ ସିଦ୍ଧି;
ଭୋଗିବାକୁ ତାହା
ବେଳ ନାହିଁ ଆହା
କିବା ଲୋଡ଼ା
ସ୍ୱର୍ଗ ଯୋଡ଼ା

ଏ ଧରାର ସୁଖ ଦୁଃଖ ସ୍ନିଗ୍ଧ ରୁକ୍ଷ ସୁନ୍ଦର କୁତ୍ସିତ
ଅତି ଆଦରର ମୋର, ଏ ଜୀବନ ଅତି ପରିଚିତ
କେତେ ଆଶା କେତେ ମୋର ଆକାଙ୍କ୍ଷାର ଧନ
ତୁଚ୍ଛି ସବୁ ନ ଲୋଡ଼ଇ ସ୍ୱରଗ ଭୁବନ
ଜନନୀର ଅମୃତ ସେନେହ
ଲାଳିତ କରଇ ଏ ଯେ ଦେହ,
ଆଶୀଷ ପିତାର
କଲ୍ୟାଣ ଆଧାର
ଏତେ ପ୍ରାଣ
ଏତେ ଦାନ

ସକଳ ମମତା ତେଜି ନ ଖୋଜଇଁ ମୁକତି ମାରଗ,
ଲୁଅଇ ନାସ୍ତିକ ପଛେ, ନ ଲୋଡ଼ଇ ଅମର ସ୍ୱରଗ
କି ଆନନ୍ଦ ନିହିତ ସେ ସ୍ୱର୍ଗ ପରବାସେ
ଲୁଏ କି ତା ସୁଷମିତ ଶିଶୁର ସୁହାସେ ?
ସେ ସଂଗୀତ ପ୍ରିୟାର ନୂପୁରେ,
ଅଛି କେଉଁ ବଇକୁଣ୍ଠ ପୁରେ ?
ପ୍ରିୟା-ରୂପ-ଶଶୀ
ସେ କେଉଁ ଉର୍ବଶୀ
ପାରେ ଜିଣି
ଗରବିଣୀ

ତଥାପି ନମଇଁ ତୋରେ ହେ ନିର୍ଜୀବ କର୍କଶ ପାଷାଣ
ଘନୀଭୂତ ଏଥି ଯେଣୁ କେତେ ପୁଣ୍ୟ ଶିଳ୍ପୀର ପରାଣ
ଯେ ସୃଜନ ଗଢ଼ିଲା ଏ ପାଷାଣର ଶିର
ଯେ ବିରାଟ କଳ୍ପନାରୁ ଉଦ୍ଭୂତ ଏ ଶିଳ୍ପ
ବିଶ୍ୱପାଇଁ କରିଲା ଦାଦନ
ଅନ୍ତରର ବିପୁଳ ବେଦନ,
ହେବାକୁ ନିର୍ବଂଶ
ଲୋଡ଼ିଲା ଅଯଶ
ବଂଶ ଗର୍ବ
କରି ଖର୍ବ

ତ୍ୟାଗର ମହିମା ଯେଣୁ ଏ ଦେଉଳ ଘୋଷଇ ପବନେ
ତ୍ୟାଗର ଜୟ ପତାକା ଉଡ଼ାଉଛି ଅନନ୍ତ ଗଗନେ,
ବିରାଟ ସେ ଆତ୍ମାଏକ ପାଷାଣେ ନିହିତ,
ଉଦ୍ଦେଶ୍ୟେ ତାହାର ଆଜି ନମ୍ର ମୋର ଚିତ୍ତ
ରକତ ମାଂସର ଯେତେ ହସ୍ତ
ନିର୍ମିଲା ଏ ପ୍ରସ୍ତର ସମସ୍ତ
ତାହାର ସକାଶେ
ଏ ପାଷାଣ ପାଶେ
ନମସ୍କାର
ବାରମ୍ବାର !

ମାନବର ସୃଷ୍ଟି ଏ ଯେ ମାନବର ଅନ୍ତର ଆରବ୍ଧ
ନମଇଁ ମୁଁ ତେଣୁ ଏଥି ଜଣାଏଁ ମୋ ବ୍ୟଥାର ଭାରତୀ,
କାତର ଚିତ୍କାର କେତେ ଅନ୍ତରର ଦୁଃଖ
ଜଡ ଏ ପାଷାଣ ଦେହେ ଭଜିଅଛି ମୂକ
ଆଜି ଏହି ଦେଉଳ ଗହ୍ୱରେ
ଶତ କଣ୍ଠ-ପ୍ରତିଧ୍ୱନି ଅରେ
ମିଶାଇ ତା'ସଗେ
ଏ ମନ୍ଦିର ଅଙ୍ଗେ
କଣ୍ଠସ୍ୱର
ଉଠେ ମୋର !

ଲୁକ୍କାୟିତ ବିଶ୍ୱ ମଧ୍ୟେ ମାନବ ପ୍ରାଣର ଆଶା ଆଧି
ଏ ପାଷାଣ ଜନ୍ମୋହୋଇ ସ୍ତୂପୀକୃତ ଲଭିଛି ସମାଧି,
ବିରହ ବିଧୁରା କେତେ ଯୁବତୀ ଗୁହାରି,
ସନ୍ତାନହୀନାର କେତେ ଶୋକ ଅଶ୍ରୁଧାର,
ହୋଇଅଛି ଏଥି ଘନୀଭୂତ,
ଅନ୍ତରର ବାସନା ଅସ୍ଫୁଟ,
କେତେ ନବଶ୍ରସ୍ତ
ଲୋଡ଼ିଛି ଅଭସ୍ତ
ସଙ୍ଗୋପନେ
ଆଶା ମନେ !

ଶ୍ରେଷ୍ଠ ମାନବ-ଅନ୍ତର କେତେ ଏଥି ଆସିଅଛି ଧାଇଁ,
ଭକତ ପ୍ରେମର କେତେ ରସ ଉତ୍ସ ଦେଇଛି ବୁହାଇ,
ତରଳାଇ ନିର୍ଜୀବ ଏ ପାଷାଣର ଅଙ୍ଗ
ଜୀବନ ରସର କେତେ ଉଠିଛି ତରଙ୍ଗ,
କେତେ ଶତ ଜୀବନ୍ତ ଦେବତା
ବିଶ୍ୱପାଇଁ ପ୍ରକାଶିଛି ବ୍ୟଥା
ଏ ଶିଳା ବିଚିତ୍ର
ହୋଇଛି ପବିତ୍ର
ଲଗି ଯେଣୁ
ପଦ ରେଣୁ !

ଆଦର୍ଶ ଯାହାର ମହାସାମ୍ୟ ନୀତି ନାହିଁ ଭେଦଜ୍ଞାନ ।
ମାନବ ଶିଶୁର ଯହିଁ ନାହିଁ ଜାତି ଦ୍ୱେଷ ଅପମାନ
କବୀର, ନାନକ, ବୁଦ୍ଧ, ଚୈତନ୍ୟ, ଶଙ୍କର
କଲେ ଯହିଁ ସମାବେଶ ସକଳ ଧର୍ମର,
ଲେଖିଲେ ଏ ପାଷାଣର ଗତେ
"ସକଳ ଯେ ସମାନ ଜଗତେ"
ସବୁ ବଡ ସାନ
ହୀନ ଧନବାନ
ନତମୁଣ୍ଡ
ଏଥି ରୁଣ୍ଡ !

ଯେତେ କୋଟି ଯାତ୍ରୀପଦ ପଡ଼ିଛି ଏ ମନ୍ଦିର ଦୁଆରେ,
ଭବିଷ୍ୟତେ ଯେତେ ପୁଣି ଲାଗିବ ଏ ପାଷାଣ ହୃଦୟାରେ
ନ ରହିବ ଇତିହାସ ନ ରହିବ ଚିହ୍ନ
ଏ ପାଷାଣ ଗାତ କାହିଁ ନୋହିବ ବିଦୀର୍ଣ୍ଣ !
କିନ୍ତୁ ସେ ଯେ ବିଶ୍ୱାସ ଭକତି
ତା' ଉଦ୍ଦେଶ୍ୟେ ଜଣାଏଁ ମୁଁ ନତି
ମାନବ ଜୀବନେ
ଅମୂଲ୍ୟ ସେ ଧନେ
ନମସ୍କାର
ବାରମ୍ବାର ।

**

**

# ଚକାନୟନ ଗୃହାଁ ମାଗେ ମାଗୁଣୀରେ

## ସାରଦା ପ୍ରସନ୍ନ ନାୟକ

(ବିଂଶ ଶତାବ୍ଦୀ)

ଆରକ୍ତ ସୁରେ ବାରେ କରେ ମିନତିରେ
ଚକାନୟନ ଗୃହାଁ ମାଗେ ମାଗୁଣୀରେ ॥ ୦ ॥

କଳା କଳା ଦୁଇ ଆଖି ମନ କେତେ ଖୋଜିଲା
ଉଷାକାଳ ରବି ଛବି ମନେ ମନ ହଜିଲା
ଆଖି ନାହିଁ ସାକ୍ଷୀନାହିଁ ସାଥୀ କାହିଁ ଝୁରେ ରେ... ॥ ୧ ॥
ଚକା ନୟନକୁ ଗୃହାଁ ମାଗେ ମାଗୁଣୀରେ

ନ ଦେଲେ ନଦିଅ ପଛେ ଆଖିରେ ମୋ ପରଶ
ସବୁରି ପରାଣୁ ପ୍ରଭୁ ନ କାଢ଼ିଅ ହରଷ
ଶାଳବନ ଗିରି ଶିଖି କେତେ ରଙ୍ଗେ ଭରିରେ... ॥ ୨ ॥
ଚକା ନୟନ ଗୃହାଁ ମାଗେ ମାଗୁଣୀରେ

ସବୁଜ ପତ୍ରରେ ଧୀରେ ହାତ ତୁମେ ରଖିଲେ
ସବୁଜ ପଥରେ ଅରେ ପାଦ ତୁମେ ଥାପିଲେ
ନଈ ନାଳ ଭୋଟା ମାଳ ଫୁଲେ ଫୁଲ ହସେରେ... ॥ ୩ ॥
ଚକା ନୟନ ଗୃହାଁ ମାଗେ ମାଗୁଣୀରେ

ଘର ଛାଡ଼ି ପରଦେଶେ ପରଦେଶୀ ପଥିକ
ନ ଭାବ ଏ ଭବେ ଅଛୁ ଜଣେ ଏକା ନାବିକ
ଭାଙ୍ଗେ ସେହି ଗଢ଼େ ସେହି ମାଳ ଗିରି କନ୍ଦରେ... ॥ ୪ ॥
ଚକାନୟନ ଗୃହାଁ ମାଗେ ମାଗୁଣୀରେ

**

**

# ସଂଜ ସକାଳେ

## ସାରଦା ପ୍ରସନ୍ନ ନାୟକ

(ବିଂଶ-ଶତାବ୍ଦୀ).

ସଂଜ ସକାଳେ ତୁମ ଛବି ଖୋଜେ
ମୋର ଭିଜା ନୟନରେ, ହାୟ
ଜଗତର ନାଥ, ଆହେ ଜଗନ୍ନାଥ
ଆକୁଳ ଅନ୍ତରେ ଝୁରେ···ମୁଁ
ସଂଜ ସକାଳେ···ସଂଜ ସକାଳେ ॥ ୦ ॥

ମାଗୁ ନାହିଁ ଧନ, ମାନ ସନମାନ
ମାଗୁ ନାହିଁ ମୁଁ ଯେ ହୀରା ନୀଳା ମୋତି
ମାଗିଥିଲେ ଯାହା, ଧ୍ରୁବ ପ୍ରହଲ୍ଲାଦ
ମାଗୁଛି ତହିଁରୁ ଅଧ ମତେ କିଛି
କରୁଣା ସାଗର ନ କର ହେ ପର
ମନର ମରାଳ ଝୁରି ମରେ ॥ ୧ ॥
ସଂଜ ସକାଳେ ତୁମ ଛବି ଖୋଜେ ମୋର ଭିଜା ନୟନରେ

ଗିରି ନଦୀ ବନ ବସନ୍ତ ପବନ
ଗଗନ ଜୋଛନା ତାରକା ତପନ
ସୁନୀଳ ସାଗର ଭରା ଉପବନ
ଝରଣାର ଅଙ୍ଗେ କଅଁଳ କଂପନ
ହସାଉଛ ସବୁ କନ୍ଦାଉଛ ମତେ
ପ୍ରଭୁ ହେ କାହିଁକି କୁହ ବାରେ ॥ ୨ ॥
ସଂଜ ସକାଳେ ତୁମ ଛବି ଖୋଜେ ମୋର ଭିଜା ନୟନରେ

**

**

# ନୀଳାଦ୍ରୀ ବିହାରୀ କରୁଛି ଗୁହାରୀ

## ସାରଦା ପ୍ରସନ୍ନ ନାୟକ

(ବିଂଶ ଶତାବ୍ଦୀ)

ନୀଳାଦ୍ରୀ ବିହାରୀ କରୁଛି ଗୁହାରୀ
ଘେନ ମୋର ନିବେଦନ
ଜୀବନ ଜୁଆ···ରେ ଜୀବନ ଜୁଆରେ
ଝୁରି ଝୁରି ଯାଏ ଦିନ ॥ ୦ ॥

ବଧୀର ଧୀବର ଧୋଇଦେଲା ପାଦ
ବାନ୍ଧି ନେଲା ନାବ ପରେ
ଉଠିଲା ଉଚ୍ଛୁଳି ଗଙ୍ଗାର ନୀର
ଗାଇଲା ଗୋଧୂଳି ସୁରେ···
ହସିଲା ମିଥିଲା ବନ ଉପବନ
ଆକୁଳେ କାନ୍ଦେ ମୋ ମନ···
ହାୟ···ଝୁରି ଝୁରି ଯାଏ ଦିନ ॥ ୧ ॥

ବାଜିଲା ମୁରଲୀ ମନ ଉଲ୍ଲସାଇ
ଗୋପରେ ପଡ଼ିଲା ହୁରି
ଧୂଳିକାଇ ତନୁ ଯମୁନାର ତୀରେ
କଦମ୍ବ ପଡ଼ିଲା ଝୁରି
ଆହେ ଚକାଡୋଳା ଗାଏ ତୁମ ଲୀଳା
ମନେ ଭରି ଅଭିମାନ···
ହାୟ···ଝୁରି ଝୁରି ଯାଏ ଦିନ ॥ ୨ ॥
ନୀଳାଦ୍ରୀ ବିହାରୀ······

**

***

## କଳାକଳା କରହଳ

### କୁଳମଣି ମହାରଣା

(ବିଂଶ ଶତାବ୍ଦୀ)

ମହାବାହୁ ! ଏତକ ମାଗର ଅଳ ।
ନିରେଖିବ ସଦା ନୀଳଗିରି ନାଥ
କଳା କଳାକର ହଳ ॥ ଘୋଷା ॥

ହଳଦି ତୁଳସୀ ବାସ ଘ୍ରାସୁଥିବ
ନାସାପୁଟେ ଅନ୍ଦିନଣି ।
ଶୁଣୁଥିବ କାନେ ଆରତୀ ନିସ୍ୱନ
ଘଣ୍ଟା ମରଦଳ କାଂସି ॥ ୧ ॥

ନ ଅଟକିବ ପାଦ ଅଭସ୍ତ ଶ୍ରୀପଦ
ପାଶେ ହୋଇଥିବ ଠିଆ
ନେତ୍ର ଦେଖୁଥିବ ନୀଳାଦ୍ରି ମଣ୍ଡପେ
କଳା, ଧଳା, ହଳଦିଆ ॥ ୨ ॥

କମଳା ବିଳାସ ସେବାରେ ମାନସ
କ୍ଳେଶ ନ ଭଜିବ ଢଳେ
ଚକାଆଖି ଆଖି ଲଖି ରହିଥିବ
ଅକା ଚକ୍ଷେ କାଳେ କାଳେ ॥ ୩ ॥

ବାଇଶି ପାବଚ୍ଛ ଧୂଳି ଅଙ୍ଗେ ବୋଳି
କୈବଲ୍ୟ ଅଙ୍ଗେ ବୋଳିବ
ବୋଲେ କୁଳମଣି ମହା ଯାତ୍ରା ପଥେ
ନାମ ଗାଇ ଗାଇ ଯିବ ॥ ୪ ॥

**

**

# ରଖ ହେ କଳା ଶ୍ରୀମୁଖ

କୁଳମଣି ମହାରଣା

(ବିଂଶ ଶତାବ୍ଦୀ)

ରଜା ହୋଇ ବସିଛୁ ମୋ ଜଗାକାଳିଆ
ହଳଦୀ ମୁଖୀ ସୁମୁଖୀ ଧଳା ବଳିଆ ॥ ଘୋଷା ॥

ମଣିମା ମଣିମା ଡାକ ଗ୍ରାମୁରେ ପଡ଼ିଛୁ ଦେଖ
ବଳିଆର ଭୁଜ ରଖ ରଖ ହେ କଳାଶ୍ରୀମୁଖ !
ତୋପରି ପ୍ରଭୁ ଥାଉ
ଆସେ ବିପଦ ସହୁ ।
କରୁଣା ଭଣ୍ଡାରରୁ
କଣାଏ ଆଜ୍ଞା ହେଉ ।
ଆଉ ଜନ୍ମେ ଅନା ରଜାଡୋଳିଆ ॥ ୧ ॥

ବାଜୁଛି ଶଙ୍ଖ, ମର୍ଦ୍ଦଳ, ଘଣ୍ଟ, ସଂକୀର୍ତ୍ତନ, ଗୋଳ
ହରିବୋଲ, ହୁଳହୁଳି, ଗ୍ରାମୁଗ୍ରାଡ଼ କୋଳାହଳ
କେହୁ ଡାଳେ ଚାମର
ଆଳଟ କାହା କର ।
ରତ୍ନ ମୁକୁଟ ଶିର
ରତ୍ନ ବେଦ ଉପର ।
ନାଚେ ଭକତ ଚିତ୍ତ ଭାବ ଭୋଳିଆ ॥ ୨ ॥

ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ବାମନ ଦେହ,
ପରଶୁରାମ, ଶ୍ରୀରାମ, ବଳରାମ, କୃପାମୟ
ଅବତାରି ମୋହନ
ଶ୍ରୀରାଧା ପ୍ରାଣଧନ ।
କେଶୀ, କଂସ ମର୍ଦ୍ଦନ
ଧାରଣ ଗୋବର୍ଦ୍ଧନ ।
ମୁରଲୀଧର ଶ୍ୟାମ ନୀପ ମୂଳିଆ ॥ ୩ ॥

ପାର୍ଥସାରଥୀ ଶ୍ରୀହରି ଜଗତେ ଗୀତା ପ୍ରଚାରି
ନୀଳମାଧବ ସ୍ୱରୂପ ଅପରୂପ ଗୋପ୍ୟକରି
ଦାରୁ ବ୍ରହ୍ମ ସୁନ୍ଦର
ବିଜେ ନୀଳ କନ୍ଦର ।
ବହୁଧ ଅବତାର
ଜାଣ କେତେ ହୁନ୍ଦର ।
ପତିତପାବନ ନାଶ ପାପ ଅଳିଆ ॥ ୪ ॥

ବାର ମାସେ ତେର ଯାତ ଲୀଳା ଲଗିଛି ଶ୍ରୀକ୍ଷେତ୍ର
ଦାତାପଣେ ଜଗନ୍ନାଥ ନାମ ଜଗତେ ବିଖ୍ୟାତ
ନ ମାଗେ ଗତି ମୁକ୍ତି
ଅବା ଭୂତି, ବିଭୂତି ।
ରଙ୍ଗାଚରଣ ତଳେ
ସଦା ରହୁ ମୋ ମତି ।
ତୋ ନାମ ଗାଉ ଗାଉ ଯାଉ ଭୁଲିଆ ॥ ୫ ॥

**

**

# ଜଗବନ୍ଧୁ ହେ ! ଦୀନବନ୍ଧୁ ହେ ! !

## କୁଳମଣି ମହାରଣା

(ବିଂଶ ଶତାବ୍ଦୀ)

ନୀଳାଦ୍ରିନାଥ ଶ୍ରୀନାଥେ ଅନାଥ ଜଣେ
ଧକ୍‌କା ଖାଇ ଅକାହୋଇ ଗୁହାରି ଭଣେ ।। ଘୋଷା ।।

ଦରିଦ୍ରବାନ୍ଧବ ଦୀନବନ୍ଧୁ ବୋଲାଇ
କାତରେ ଡାକେ ଗରବ ଶୁଣିଲ ନାହିଁ ।
ଟିକିଏ ଚକାଇଲେ
ତର ଯାଆନ୍ତା ଭଲେ
କରୁଣା ଭଣ୍ଡାରରୁ
କଣାଏ ଆଜ୍ଞାହେଲେ ।
ଜଗବନ୍ଧୁ ହେ ! ଦୀନବନ୍ଧୁ ହେ !
କୃପାସିନ୍ଧୁ ମାଗୁନାହିଁ କୃପା ଭରଣେ ।।୧।।

ପତିତପାବନ ବାନା ଉଡ଼େ ଜଗତେ
ପତିତ ଜଣେ ଡାକୁଛୁ ଅତି ଆରତେ ।
ତୋ ବାନା ଧରି ହାତେ
ନ ହଣେ ନେଇ ପଥେ
ଅପବାଦ ବାଜଣା
ବାଜି ଯିବ ଜଗତେ ।
ଜଗବନ୍ଧୁ ହେ ! ............ ଦୀନବନ୍ଧୁ ହେ !
ଲାଗିବ କଳଙ୍କ-ପଙ୍କ ରଙ୍ଗାଚରଣେ ।। ୨ ।।

ସଂସାର ଠାକୁର ବୋଲି ପଡ଼ିଛୁ ହୁଣ
ଦୀନ ଅରକ୍ଷିତ ପଣେ ଭଣେ ଗୁହାଗ ।
ହୃଦକନ୍ଦରେ ରହୁ
ଯାହା ଦେଲୁ ବତାଇ ।
କ୍ଷମାସାଗର ଦାସ—
ଦୋଷ କ୍ଷମିଲୁ ନାହିଁ ।
ଜଗବନ୍ଧୁ ହେ !                ଦୀନବନ୍ଧୁ ହେ
କୁଳମଣି ଅଳ କଲ କୃପା କୃପଣେ ॥ ୩ ॥
**

**

## ନୀଳାଚଳ କଳାଚନ୍ଦ୍ରମା

### କୁଳମଣି ମହାରଣା

(ବିଂଶ ଶତାବ୍ଦୀ)

ନୀଳାଚଳ କଳାଚନ୍ଦ୍ରମା
ହଳାହଳ ଦଳା ଛଳାଇବ କି ?
ଛଳାଇଲ ପର                ଆଁହେ ଗିରିଧାରୀ
ଦରଶନ ଦେଇ ପଳାଇବ କି ॥ ଘୋଷା ॥ ?

ପଳାଇ ଲଭିବ କି ଯଶ
କାଳିଆ କମଳା ବିଳାସ ।
ବିଳାସ କଳୁସ                ବଳାହକ ହାସ
କଳାପ ବିଳାପେ ଜଳାଇବ କି ?

ଜଳାଉଛୁ ଜଞ୍ଜାଳ ଜାଳି
ବଳାଉଛୁ ତାପ ବିଶାଳ ।
ବିଶାଳ କରୁଣା ବାରିଧି ପରିଧି
କଳାନିଧି କଳା ବୋଲାଇବ କି ?

ବୋଲାଇଲେ ହେ ଚକାଡୋଳା
ମିଳାଇବ ଭାବ ବାଉଳା ।
ବାଉଳା ସେ ନାମ ପତିତପାବନ
ଗାଇ କୁଳମଣି ଭୋଳାଇବ କି ?

**

**

# ନୀଳାଦ୍ରି ଗୋସାଇଁ

## ମୁରଲୀଧର ପାଇଟାଳ

(ବିଂଶ ଶତାବ୍ଦୀ)

[ରାଗ-ଶଙ୍କରାଭରଣ]

ଆହେ ପ୍ରଭୁ ଜଗନ୍ନାଥ ନୀଳାଦ୍ରି ଗୋସାଇଁ
ଭଲ ଲୀଳା ଲଗାଇଛ ଶ୍ରୀକ୍ଷେତ୍ରରେ ଥାଇ
        ଭକ୍ତ ଗଣ ସଙ୍ଗେ ନେଇ
ବାରମାସେ ତେରଯାତ୍ରା କରିଲେ ଗୋସାଇଁ ॥୧॥

ଚାରିଧାମ ମଧ୍ୟେ ଶ୍ରେଷ୍ଠ ଶ୍ରୀକ୍ଷେତ୍ର ଅଟଇ
ଏଣୁ କରି ପୁରୀଧାମେ ରହିଲେ ଗୋସାଇଁ
        ବଡ଼ ଦେଉଳେ ଆପଣେ
ବଡ଼ ଭୁଜ, ବଡ଼ ଚକ୍ଷୁ, ବଡ଼ ହାଅଁ ପଣେ ॥୨॥

ଲକ୍ଷେ ଯୋଜନରୁ ଗଜ ଡାକିଲା ତୁମ୍ଭଙ୍କୁ
ଚକ୍ର ପେଷି ନକ୍ର ନାଶି ଉଦ୍ଧାରିଲ ତାଙ୍କୁ
        ଗଜ ବିପଦୁ ତାରିଲେ
ବିପଦ ନାଶନ ଜଗତରେ ବୋଲାଇଲେ ॥୩॥

ବିପଦ ନାଶନ ବାନା ଉଡ଼ାଇ ଜଗତେ
ଘୋର ବିପଦେ ଯେ ତୁମ ପଦ୍ମପାଦେ ଚିନ୍ତେ
        ତାଙ୍କୁ କରନ୍ତି ଉଦ୍ଧାର
ଭକ୍ତର ବିକଳ ଡାକ ଶୁଣି ଚକ୍ରଧର ॥୪॥

ବଡ଼ ସାନ ଭେଦାଭେଦ ତୁମ୍ଭ ପାଶେ ନାହିଁ
ଏକ ନିଷ୍ଠା ଭକ୍ତି ଭାବେ ଯେ ଭକ୍ତ ଡାକଇ
ସେହି ବୈକୁଣ୍ଠ ଗମଇ
ଅନ୍ତିମ କାଳରେ ତୁମ୍ଭ ଦର୍ଶନ ଲଭଇ ॥୫॥

ନିତ ଛପନ ପଉଟି ପ୍ରସାଦ ସେବନ୍ତି
ତୁମ୍ଭପାଶେ କେହି ଭକ୍ତ ଉପାସ ନଥାନ୍ତି
ଅନ୍ନ ଦିଅନ୍ତି ସଭିଙ୍କି
ଅନ୍ନଦାତା ବୋଲି ଜନେ ଡାକନ୍ତି ତୁମ୍ଭଙ୍କୁ ॥୬॥

କେତେ ପାପୀ ତାପୀ ପ୍ରଭୁ କଲେଣି ଉଦ୍ଧାର
କରୁଣାମୟ ମୋ ପ୍ରତି କିଂପାଇଁ ନିଷ୍ଠୁର
କିବା ଦୋଷ କଲି ହରି
ଏ ଭବ ସାଗରୁ ପାରି କର ଚକ୍ରଧାରୀ ॥୭॥

କରନ୍ତୁ କରୁଣା ପ୍ରଭୁ ତ୍ରୈଲୋକ୍ୟ ଗୋସାଇଁ
ଏ ଭବ ସାଗରେ କନ୍ଦାଉଛ କାହିଁପାଇଁ
ନିନ୍ଦା ହୋଇବ ଜଗତେ
ଦୁଃଖୀର ବିକଳ ଡାକ ଶୁଣ ଜଗନ୍ନାଥେ ॥୮॥

ନୀଳଚକ୍ର ଧ୍ୱଜା ତୁମ୍ଭ ହଡ଼େ ଫର ଫର
ଦର୍ଶନ କରିଣ ଭକ୍ତ ହୁଅନ୍ତି ଉଦ୍ଧାର
ତୁମ୍ଭ ମହିମା ଅପାର
କେଉଁ ଅପରାଧ ପ୍ରଭୁ କଲି ଚକ୍ରଧର ॥୯॥

ଏତିକି ବିନତି ପ୍ରଭୁ ଶୁଣ ଲକ୍ଷ୍ମୀସାଇଁ
ଅନ୍ତିମ କାଳେ ସାକ୍ଷାତ ହେବେ ଭବଗ୍ରାହୀ
ଦୋଷ କରନ୍ତୁ ମୋଚନ
ଶ୍ରୀପଦେ ଦୀନ ମୁରଲୀ କରୁଛି ଜଣାଣ ॥୧୦॥

**

**

# ଆହେ ଜଗନ୍ନାଥ

## ମୂରଲୀଧର ପାଇଟାଳ

(ବିଂଶ ଶତାବ୍ଦୀ)

[ ରାଗ ଗୁଣ ସାଗର ବାଣୀ ]

ଆହେ ଜଗନ୍ନାଥ ନୀଳଗିରି ନାଥ ଅନାଥର ନାଥ ହରି
ତୁମ୍ଭ ନାମ ଗୁଣ କରଣ ଗାୟନ ହୋଇଥାନ୍ତି ଭବ ପାରି

ଶ୍ରୀ ନୀଳ କନ୍ଦରେ ରତ୍ନ କନ୍ଦରରେ କରନ୍ତି ସକଳ ଲୀଳା
ଭାବେ ହୋଇ ଭୋଳ ତୁମ୍ଭେ ଆଦମୂଳ ନ ଶୁଝେକ ଚକାଡୋଳା

ବଡ଼ ଦେଉଳରେ ବଡ଼ଦଅଁ ପଣେ ରହିଛନ୍ତି ଚକ୍ରଧାରୀ
ଦେଉଳେ ତୁମ୍ଭର ଅଶେଷ ପ୍ରକାର ପ୍ରତିମୂର୍ତ୍ତି ଅଛି ପୂରି

ଅତି ମନୋହର ବେଢ଼ା ଚଉପାର କଳି ନୁହେଁ ତା ଶୋଭାକୁ
ସ୍ୱୟଂ ବିଶ୍ୱକର୍ମା ଗଢ଼ିଛନ୍ତି ତାକୁ ନାହିଁ ଉପମା ଦେବାକୁ

ସିଂହଦ୍ୱାରେ ସିଂହ ମୁହାଁଣ ଅଛଇ ପୂର୍ବରେ ଅରୁଣ ସ୍ତମ୍ଭ
ସେଠାରେ ଗୁହାରି କଲେ ନରନାରୀ ଶୁଣନ୍ତି ଲକ୍ଷ୍ମୀ ବଲ୍ଲଭ

ଛପନକୋଟି ଜୀବଜନ୍ତୁମାନଙ୍କୁ ଆହାର ଦଅନ୍ତି ହରି
ବଡ଼ ଦାଣ୍ଡ ଧୂଳି ଲିପ୍ତ ଦେହେ ହେଲେ ବୋଲି ପାପ ଯାଏ ଅପସରି

ସତ୍ୟ ଯୁଗରେ ବାମନାବତାରେ ମିଳିଲେ ବଳୀର ଦ୍ୱାରେ
ବଳୀ ବଡ଼ପଣ ଦେଖି ନାରାୟଣ ଚାପିଲେ ପାତାଳପୁରେ

ତ୍ରେତୟା ଯୁଗରେ ରାମ ଅବତାରେ ନାଶିଲ ଦଶାନନକୁ
ଋଷି ମୁନିଗଣ ଯାଗଯଜ୍ଞ କରି ଜପିଲେ ତୁମ୍ଭ ନାମକୁ

ଦ୍ୱାପର ଯୁଗରେ କୃଷ୍ଣ ଅବତାରେ ସଖାହେଲେ ଅର୍ଜୁନର
କୁରୁ ବଂଶ ଧ୍ୱଂସ କଲେ ହୃଷିକେଶ କରଣ ମାୟା ସମର

ଏ କଳି ଯୁଗରେ ବୌଦ୍ଧଅବତାରେ ରହିଲେ ନୀଳାଞ୍ଚଳରେ
ଦୁଷ୍ଟ ଦାନବଙ୍କୁ ସଂହାର ଆପଣ ସାଧୁ ରଖିବେ ମହୀରେ

ତୁମ ଗୁଣକୀର୍ତ୍ତି ଅଟେ ଅକଳନ୍ତ କଳି ନୁହେଁ ତାର ସୀମା
ଭକ୍ତ ଗଣେ କୃପାଦୃଷ୍ଟି ଦିଅ ଦାସ ମୁରଲୀକୁ କର କ୍ଷମା ।

**

**

## ନୀଳଗିରି ନାଥ

### ମୁରଲୀଧର ପାଇଟାଳ

(ବିଂଶ ଶତାବ୍ଦୀ)

[କୃପାସିନ୍ଧୁ ଦୀନବନ୍ଧୁ ଶ୍ରୀଗୁରୁଦେବ-ବୃନ୍ଦେ]

ଆହେ ଜଗନ୍ନାଥ ନୀଳଗିରି ନାଥ
କୃପାକର ବାରେ ଭାବଗ୍ରାହୀ
ତୁମ୍ଭ ବିନା କେହି ଏ ଜଗତେ ନାହିଁ
ରଖିବେ ଦୁଃଖିଙ୍କୁ ସୁଖ ଦେଇ
ଆହେ ଚକାଧାରୀ
ଏ ଭବ ସାଗରୁ କର ପାର ॥୧॥

ତୁମ୍ଭ ଟେକପଣ ବ୍ରହ୍ମାଣ୍ଡେ ଜାଣିଣ
ଡାକନ୍ତ ଭକତେ ନିଶିଦିନ
ତବ ଶ୍ରୀଚରଣ ବନ୍ଦେ ଯେଉଁଜନ
କଳୁଷ ଭାର ହୁଏ ମୋଚନ
ଆହେ ଭକ୍ତ ରକ୍ଷା
ବିପଦ ବେଳକୁ ଦେବେ ଦେଖା ॥୨॥

ଗର୍ବ ଯେଉଁଜନ କରେ ତୁମ୍ଭପାଶେ
ପାଏ ସେହି ଦୁଃଖ ନିର୍ଯ୍ୟାତନା
ଭକ୍ତବତ୍ସଳ ଅଟନ୍ତ ଆଦିମୂଳ
ଜଗତରେ ଉଡ଼େ କୀର୍ତ୍ତିବାନା
ଆହେ ଶ୍ରୀବତ୍ସାଙ୍କ
ଦୟା କରନ୍ତୁ ହେ ଲକ୍ଷ୍ମୀସାଇଁ ॥୩॥

କେତେ ପାପୀତାପୀ ହେଲେଣି ଉଦ୍ଧାର
ତୁମ୍ଭ ଶ୍ରୀଚରଣେ ଚିତ୍ତ ଦେଇ
କିମ୍ପାଇ କରୁଣା ମୋ ବେଳକୁ ଊଣା
କରନ୍ତ ହେ ତ୍ରୈଲୋକ୍ୟ ଗୋସାଇଁ
ଆହେ ଦାମୋଦର
ଦୀନଜନଠରେ କୃପା କର ॥୪॥

ନହେଲେ କରୁଣା ହେବ ବାଟବଣା
ଊଣା କଲେ କୃପା ଦୀନଜନେ
ହେଲେ କଳଙ୍କିତ ତୁମ୍ଭେ ଜଗନ୍ନାଥ
କି ବୋଲି ବୋଲିବେ ଭକ୍ତଜନେ
ଆହେ ବିଶ୍ୱମ୍ଭର
ଏ ପାପ ସଂସାରୁ ପାରିକର ॥୫॥

ଆହେ ଚକାଡ଼ୋଳା ବୁଡ଼ିଲା ମୋ ଭେଳା
ଉଦ୍ଧାରନ୍ତୁ ମୋତେ ଗିରିଧାରୀ
ବିପଦ ସାଗରେ ରହି ନିରନ୍ତରେ
ଦୁଃଖ ଭୋଗୁଅଛୁ କି ପୁରାରି
ଆହେ ହୃଷୀକେଶ
କ୍ଷମାକର ଦୀନଜନ ଦୋଷ ॥୭॥

କେତେ ପାପୀତାପି ଜଗତେ ଉଦ୍ଧାର
ମୁଁ କିବା ଦୋଷ କରିଛି ହରି
ଏ ଘୋର ସଙ୍କଟୁ ଉଦ୍ଧାର କରନ୍ତୁ
ଶରଣ ରକ୍ଷଣ ଚକ୍ରଧାରୀ
ଆହେ ଆର୍ତ୍ତତ୍ରାଣ
ମୂରଲୀକୁ କର ପରିତ୍ରାଣ ॥୮॥
**

**

# ମୋ ଚକାଆଖିଆରେ

**ଘଣ୍ଟାମଣି ଜେନା**

(ବିଂଶ ଶତାବ୍ଦୀ)

[ମୋ କଳାମାଣିକ-ବୃନ୍ଦେ]

ତୋହ୍ପ ଯୋଗୁଁ ଏ ସଂସାର ଚିନା ଆତଯାତ
ସେଥିଲାଗି ତୁ ବୋଲାଉ ଜଗତର ନାଥ
ମୋ ଚକାଆଖିଆରେ ॥୧॥

ତୋତେ ସୁମରଣା କଲେ ପଳାଏ ଦୁଃଖିତ
ମନବାଞ୍ଛା ପୂର୍ଣ୍ଣକରୁ ତୁହିତ ଝୁରତ
ମୋ ଚକାଆଖିଆରେ ॥୨॥

ସାଙ୍ଗରେ ଭାଇଭଉଣୀ ରଖିଛୁ ସମ୍ଭାଳି
ଭାଇ ଭଉଣୀର ସ୍ନେହ କର ଗଳାମାଳ
ମୋ ଚକାଆଖିଆରେ ॥୩॥

ସେନେହ ସରାଗ ବିନା ସଂସାର ଅସାର
କୁଟୁମ୍ବରେ ବାନ୍ଧିଅଛୁ ଏ ସାରା ସଂସାର
ମୋ ଚକାଆଖିଆରେ ॥୪॥

ସମତା ସରଣୀ ଯାହା ଦେଖାଇ ତୁ ସତ
ଜଗତକୁ ଦେଖାଉଛୁ ମମତା ମହତ
ମୋ ଚକାଆଖିଆରେ ॥୫॥

ତୋହ୍ନ ଭଳି ଏଡ଼େ ଆପଣାର ଅଛୁ କିଏ ?
ବୁଝିଲୁ ତା କଥା ତୋତେ ଡାକ ଦେଲା ଯିଏ
ମୋ ଚକାଆଖିଆରେ ।।୬।।

ଏତେ ଆପଣାର ବୋଲି ଗାଳିମନ୍ଦ ଖାଉ
ଏମିତ ଠାକୁର କାହିଁ ଅଛୁକରେ ଆଉ ?
ମୋ ଚକାଆଖିଆରେ ।।୭।।

ଯେ ଯାହାକୁ ଭଲ ପାଏ ଦିଏ ତାକୁ ଗାଳି
ତା' ଗୁଣ ଗାଉମା ଯାଁକ କରି ଜପାମାଳି
ମୋ ଚକାଆଖିଆରେ ।।୮।।

ଯେତେ ଗାଳି ସେତେ ଗେଲ ପାଉଛୁ ସନ୍ଧରେ
ଏମିତ ଦିଅଁ ତ କାହିଁ ନାହିଁତ ମନ୍ଦିରେ
ମୋ ଚକାଆଖିଆରେ ।।୯।।

ସଂସାରେ ଯେତେ ଧରମ ତୋ' ପାଖରେ ଠୁଳ
ସବୁ ଧରମର ତୁହି ଅଟୁ ଆଦି ମୂଳ
ମୋ ଚକାଆଖିଆରେ ।।୧୦।।

ତୁ ଏକା କୁଟୁମ୍ବୀ ଦିଅଁ ସବୁ ପରିବାରେ
ତୋତେ ନ ଚିନ୍ତିଲେ ଚିନ୍ତା ଜର ଖାଲି ଘାରେ
ମୋ ଚକାଆଖିଆରେ ।।୧୧।।

ତୁହି ରାମ, ତୁହି କୃଷ୍ଣ, ତୁହି ବୁଦ୍ଧ, ଜୀନ
ତୁ ଏକା ପାଳନକର୍ତ୍ତା ଏଇ ରାତି ଦିନ
ମୋ ଚକାଆଖିଆରେ ।।୧୨।।

ତୁହି ଏକା ଜନତାର ଅଟ ଜନାର୍ଦ୍ଦନ
ମଣିଷ ତାଗଣେ ତୁହି ନରନାରାୟଣ
ମୋ ଚକାଆଖିଆରେ ।।୧୩।।

ସେଥିଲାଗି ପୁଣି ନାମ ଶ୍ରୀପୁରୁଷୋତ୍ତମ
ଖଣ୍ଡିବାକୁ ସଦାକାଳେ ସଂସାରର ତମ
ମୋ ଚକାଆଖିଆରେ ।।୧୪।।

ପାତକୀ ପାତକ ଖ୍ୟାଳ ହଏ ବରଦାନ
ସେଥିଲାଗି ପଂରନ୍ଧର ପତିତପାବନ
ମୋ ଚକାଆଖିଆରେ ।।୧୫।।

ତେଲିଆ ମୁଣ୍ଡରେ ତେଲ କେ ଆଜି ମାଖଇ
କମିତି କମିତି କଥା ଲାଗୁଚି ନାକଇ
ମୋ ଚକାଆଖିଆରେ ।।୧୬।।

ତୋ' ଆଖିର ଦୃଷ୍ଟି ପଡ଼ୁ ଢାଳିଆ ସେଇଠି
ସମସ୍ତେ ରହନ୍ତୁ ସୁଖ ଶାନ୍ତିରେ ଏଇଠି
ମୋ ଚକାଆଖିଆରେ ।।୧୭।।

ତୋ' ଭଲ ଦଅଁ ଝରଉ କରୁଣାର କଣା
କେହୁ ଆଜି ଅନାଥରେ ନୋହୁ ବାଟବଣା
ମୋ ଚକାଆଖିଆରେ ।।୧୮।।

ପରସ୍ପର ପରିବାରେ ଯେ ବିବାଦ କଳି
ତୁଟା ତୁହ କାଳିଆରେ ଏଇ ମାଗ ଅଳି
ମୋ ଚକାଆଖିଆରେ ।।୧୯।।

ଧନ, ଜନ, ଗୋପଲକ୍ଷ୍ମୀ କିଛୁ ମାଗୁନାହିଁ
ମଲବେଳେ ମୋତେ ଟିକେ ଦେବୁ ତୁ ଅନାଇଁ
ମୋ ଚକାଆଖିଆରେ ।।୨୦।।

ସେତିକି ଦେବୁରେ ମୋତେ ମୁହିଁ ହେବି ଋଣୀ
ତୋ ଚରଣେ ଶ୍ରଦ୍ଧାମଣି ମାଗଇ ମାଗୁଣି
ମୋ ଚକାଆଖିଆରେ ।।୨୧।।

**

**

# ଚକାଡୋଳା ବଡଦାଣ୍ଡେ

## ଉପେନ୍ଦ୍ର ନାଥ ବେହୁର

(ବିଂଶ ଶତାବ୍ଦୀ)

ଚକାଡୋଳା ବଡଦାଣ୍ଡେ କରୁଅଛୁ ଖେଳା ।।ଘୋଷା।।
ଡାକି ଡାକି ଗଲିଣି ଅକ୍ଳ ନ ଶୁଣୁଛ ବାରେ କାହିଁକି ?
ତୁମେ ମହାବାହୁ ନ ଶୁଣିଲେ ଆଉ
ହେବି ମୁ କାହାର ଆହେ ମାସ୍ବାଧର
ତବ ମୁଖ ଦେଖିବାକୁ ସପନ ହେଲ ।।୧।।

କେଉଁ କଥା କଲି ମୁଁ ଊଣା କପାଁ ମୋର ଡାକ ଶୁଣନା
ହେଲକି ପାଷାଣ ଆହେ ନାରାୟଣ
ତବ ନାମ ଧରି ହେବି ବୋଲି ପାରି
ଆଶ୍ରା କରି ତବପାଦେ ଦାନ ନ ଗଲି ।।୨।।

ଶୁଣିଅଛୁ ମୁହିଁ କର୍ଣ୍ଣରେ ଦ୍ରୌପଦୀଙ୍କୁ ରଖିଛ ବାରେ
ବହୁ ବସ୍ତ୍ର ଦେଇ ଲଜ୍ଜା ନିବାରିଲ
ଅର୍ଜ୍ଜୁନର ସଖା ସେଥିପାଇଁ ଏକା
ସାରଥୀ ଯେ ହୋଇଥିଲ ଲଗାଇ ଲୀଳା ।।୩।।

ତୁମେ ମୋର ହେଲ ଭଗାରି
କାହାକୁ କହିବି ମୁରାରି
ରଖ ବା ନରଖ ଆହେ ପଦ୍ମମୁଖ
ଲୋଡ଼ାନାହିଁ ଧନ ମାଗେ ଶ୍ରୀ ଚରଣ
ପାରି ହୋଇ ଯିବା ଲାଗି ଲଗାଅ ଭେଳା ।।୪।।

ସୁଦର୍ଶନ ଧରିଛ କରେ କାହିଁକି କପଟ ମୋ ଠାରେ
ଚକ୍ର ଉହାଡରେ ରଖ ନେଇ ଥରେ
ନ ମାଗଇ କିଛି ଆହେ ନନ୍ଦବଂଶି
ଉପଇନ୍ଦ୍ର ତବ ପଦଧ୍ୟାୟୀ କହିଲି ॥୫॥

**

**

## ଜଗବନ୍ଧୁ କାହିଁକି

### ଉପେନ୍ଦ୍ର ନାଥ ବେହୁରା

(ବିଂଶ ଶତାବ୍ଦୀ)

ଜଗବନ୍ଧୁ କାହିଁକି ହେଲ ଏତେ କପଟୀ
କାମ ନାହିଁ ଧନ୍ଦା ନାହିଁ ବଢ଼ାଇଛ ପେଟଟି ॥ଘୋଷା॥

ବଡ ଦେଉଳରେ ବସି ଭୋଗ ଖାଅ ଦବା ଚସି
ରତ୍ନ ପଲଙ୍କରେ ଶୋଇ ଆଳସ୍ୟ କି ଭାଙ୍ଗୁ ନାହିଁ
ବଡ ବଡ ନେତ୍ର କରି ଗୃହୁଁ ଅଛ ତରାଟି ॥୧॥

ଭାଇ ଭଉଣୀଙ୍କୁ ତୁମେ ସଂଗତେ ଧରି
ଲୀଳା କରୁଅଛ ଭବେ ହେ ଦଇତାରି
ଭଣ୍ଡିବା ହେଲା ସାର ଆହେ କଳା ଠାକୁର
ଲଗାଇଛ ସୁନ୍ଦର ଧନ୍ୟ ମୁଖ ତୁମର
ଅଲଜୁକ ମୁହେଁ ତବ ଲାଜ ନାହିଁଟି ॥୨॥

କାହାର ମନକୁ ପ୍ରଭୁ କରୁଛ ହରଷ
କାହାକୁ ନ ଦିଅ ପଣ କୁଡ଼ିଆ ବାସ
ଲାଞ୍ଚ ଖାଇ ଶିଖିଛ ପର ଘର ଭାଙ୍ଗୁଛ
ମିଛେ କଂପା ବସିଛ ଲଗାଇ ଖଟ ମିଛ
ଲାଞ୍ଚୁଆ ପ୍ରଭୁ ବୋଲି କହୁ ଦେବେଟି ॥୩॥

ସବୁ ଅନ୍ନ ଖେଚଡ଼ିକ ନଅଣ୍ଠ ହେଲ
ଖୁଦଭଜା ଖାଇବାକୁ ମନ ବଳିଲ
ଶବସ୍ତିର ଅଇଁଠା ଲଗିଲ ବଡ ମିଠା
ଗୋପେ ଖାଇ ଗୋଇଠା ଛୁଣ୍ଡାଇ କେତେ ଶିଙ୍ଗା
କେଉଁ କଥା ଊଣା ହୋଇଅଛୁ କହଟି ? ॥୪॥

*⁕

**

# କେତେ ଦଣ୍ଡ ଦେବୁ ଆଉ

## ସୁରେଶଚନ୍ଦ୍ର ମହାରଣା

(ବିଂଶ ଶତାବ୍ଦୀ)

[ଦୀନବନ୍ଧୁ ଏହୁ ଅଳି ଶ୍ରୀ ଗ୍ରୀମୁରେ-ବୃନ୍ଦେ]

ଜଗନ୍ନାଥ ! କେତେ ଦଣ୍ଡ ଦେବୁ ଆଉ
ଲୋତକ ଜଳେ କି ବୁଡ଼ାଇ ମାରିବା ବାକି ଅଛୁ ମହାବାହୁ ? ।।ଘୋଷା।।

ଅଖିଳ ବ୍ରହ୍ମାଣ୍ଡ କରତା ବୋଲାଉ ଆହେ ବଳିଆର ବାହୁ
ଭାଙ୍ଗି ଦେଉ ମୋର ଦଦରା ସଂସାର ଆଖି ଆଗେ ରହୁଁ ରହୁଁ ।।୧।।

ଦୀନବନ୍ଧୁ ନାମେ ପତାକା ଉଡ଼ାଉ ପ୍ରାଣ ନାଶେ କାଳ ରାହୁ
କଳବଳ କରି ଦିନ ସରି ନାହିଁ ଆହୁରି ଭରସି ରହୁଁ ।।୨।।

ପାଶୋରିଲୁ ଗଲା କଥାରେ କାଳିଆ ଅନାଥକୁ ରହୁଁ ନାହୁଁ
ବଡ଼ପଣ ତୋର କିଏ ବୁଝିବରେ ତୋ'ବଡ଼ ତୋ'ଠାରେ ଥାଉ ।।୩।।

ତୋ ଚକା ଆଖିରେ ଦିଶୁ ଅଛେ ଆରେ ମୋ କଷଣ ଦାଉ ଦାଉ
ଶରଧାବାଲିର ଧୂଳିକଣା ଦେହେ ମୋ ଜୀବନ ମିଶି ଯାଉ ।।୪।।

**

**

# ପାଷାଣ ନ ହୁଅ ହରି

## ସୁରେଶଚନ୍ଦ୍ର ମହାରଣା

(ବିଂଶ ଶତାବ୍ଦୀ)

[ଦୀନବନ୍ଧୁ ଦଇତାରି-ବୃତ୍ତେ]

ଆହେ ନୀଳାଦ୍ରି ବିହାରୀ
କମଣ ନାଶ ମୋହରି
ପାଷାଣ ନ ହୁଅ ହରି
ନୀଳାଚଳ ବିଜେ କରି ॥ ଘୋଷା ॥

ତୁମ୍ଭ ବଡ ପଣ ହରି
ଶୁଣେଣିତ ଜୀବନ ଭରି
ଦିନେତ ଜାଣିଲି ନାହିଁ
ଶୁଣ ବୋଲି ମୋ ଗୁହାରି ॥୧॥

ପ୍ରଭୁ ଶ୍ରୀ କ୍ଷେତ୍ରବିହାରୀ
ଦ୍ରୌପଦୀ ଲଜ୍ଜା ନିବାରି
ତୁମେ ପ୍ରଭୁ ହେ କଂସାରୀ
ରାଧିକା ହୃଦୟସ୍ପର୍ଶୀ ॥୨॥

ଆହେ ପ୍ରଭୁ ଅବତାରୀ
ହେ ବିଶ୍ୱରଞ୍ଜନ କାରୀ
ଦରିଦ୍ର ଦୁଃଖ ନିବାରି
ଭବାର୍ଣ୍ଣବୁ କର ପାରି ॥୩॥

ଭକ୍ତ ବାନ୍ଧବ ମୁରାରି
କରୁଣା ଊଣା ନ କରି
ଦିଅ ଦିଅ କୃପାବାରି
କଣ୍ଠତେ ବରଷା କରି ॥୪॥

ଭରସା କୈବଲ୍ୟ କରି
ଏ ଜୀବନ ଯାଉ ସରି
ଗାଏ ସଦା ଜଗନ୍ନାଥ—
ଜଗନ୍ନାଥ ପ୍ରାଣ ଭରି ॥୫॥

**

**

# ପ୍ରଭୁ ତୁମେ ଏକ ବିରୋଧାଭାଷ

ଅଧ୍ୟାପକ ଶ୍ୟାମସୁନ୍ଦର ମିଶ୍ର

(ବିଂଶ ଶତାବ୍ଦୀ)

[ରାଗ-କାମୋଦୀ]

ଦୁଃଖୀଜନର ବନ୍ଧୁ,          ତୁମେକି ଜଗବନ୍ଧୁ,
ମୋ ମନେ ଲାଗୁଛି ସନ୍ଦେହ
ଯାହା କର ପ୍ରଭୁ ର          କାର୍ଯ୍ୟ ଅନ୍ୟଥା କର
ହୁଏକି ନାହିଁ ଏହା କହ ?
କହିଲେ ହୁଏ ଯେବେ ଦୋଷ
କରିଲେ କର ପଛେ ରୋଷ
ବୁଝି ପାରିଲି ନାହିଁ          ତୁମେ ଯେ ଭାବଗ୍ରାହୀ
ବିରାଟ ବିରୋଧ-ଆଭାସ ॥୧॥

ମହାପ୍ରଭୁ ତୁମର          ଅନନ୍ତ ଗୁଣ ବୋଲି
ଭକତେ କରନ୍ତି ବୋବାଳି
କାଠ ପାଷାଣ ଦେହୀ          କିପରି ଯେ ଗମଇ
ମୋ ମନ ନ ପାରେ ବିସ୍ମର
ସାଗର ସମତଳ ତୀରେ
ବସିଛ ସିକତା ପ୍ରାନ୍ତରେ
ନୀଳଶଇଳସ୍ବାମୀ          ବୋଲି ପଡ଼ୁଛ ହରି
କାହିଁକି ମିଛରେ ବିସ୍ମରେ ॥୨॥

ସିଡ଼ାର ପଣ ତୁମ  ଚକା ଚକା ନୟନ
ଚାହିଁଛ ପାରାବାର ତୀରେ
ତଥାପି ଦେଖୁନଛ  ଜଗତଜନ ଦୁଃଖ-
ଜାହାଜ ଭବ ଜଳଧିରେ
ଦେଖି ଦେଖିଲ ନାହିଁ ପର
ଅସଲ ବେଳକୁ ବିସ୍ମର
ଦେଉଛ ଭୁଜ ଡୋଳା  ଦାରିଦ୍ର୍ୟ କଣ ଚିହ୍ନ
ଶରୀର କଷ୍ଟକୁ ବିସ୍ମର ॥୩॥

ତୁମକୁ ଲକ୍ଷ୍ମୀପତି  ବୋଲି ସ୍ତୁତି କରନ୍ତି
ନିର୍ଦ୍ଧନ ଲଭିବା ଆଶାରେ
ବଡ଼ ଦେଉଳ ତଳ  ବୁଭୁକ୍ଷୁ କୋଳାହଳ
ପଡ଼େ କି ଶ୍ରବଣରେ ବାରେ
ପୁରୁଷୋତ୍ତମ ରୂପ ହୋଇ
ସ୍ୱପତ୍ନୀ ପରେ ବଳ ନାହିଁ
ଅରେ ତାଙ୍କ ଇଙ୍ଗିତ  ବିଅନ୍ତି ଯଦି ନାଥ
ଏ ଦଶା ହୁଅନ୍ତା କିମ୍ପାଇଁ ॥୪॥

ଅନ୍ତର୍ଯ୍ୟାମୀ ପୁରୁଷ  ବୋଲି ମଣନ୍ତି ଜନ
ସୃଷ୍ଟିକାର କଥାଏ ମିଳ
ତୁମ ମନ୍ଦିର ଦ୍ୱାରେ  କେତେ ବେପାର ଚାଲେ
ତା'ର ହିସାବ ଯାଅ ଭୁଲି
ସେ ନାମେ ଯେବେ ଶ୍ରଦ୍ଧା ଅଛି
ଦିଅତ ମୋ ଉତ୍ତର ବାଛି
ଶ୍ୟାମସୁନ୍ଦର ମନେ  ତୁମ ପଦ ପ୍ରସୂନେ
କେତେ ଭକତି ରଖିଅଛି ? ॥୫॥

**

**

# ଅନବସର ଜଣାଣ

## ସାରଦାମଣି ମହାପାତ୍ର

(ବିଂଶ-ଶତାବ୍ଦୀ)

ଶ୍ରୀମୁଖ ଲୁଚାଇ କାହିଁ ରହୁଛ ହରି
ଶ୍ରୀମନ୍ଦିର ଦିଶେ ଆଜି କି ହତଶିରୀ ॥ ପଦ ॥

ନୀଳ ରତ୍ନ ସିଂହାସନ ଖାଲି ପକାଇ
ଅନବସର ବାସରେ ରହିଲ ଯାଇ
ଭକତ ଯେ ଅନାଥ ଜାଣ ଜଗନ୍ନାଥ
ପଥର ଘରକୁ କେବେ ଆସିବ ଫେରି ॥ ୧ ॥

ଘଣ୍ଟା କାହାଳୀ ଶୁଭୁନି ମନ୍ଦିରେ ଆଉ
ଶୁଭୁନି ଖୁଣ୍ଟିଆ ଡାକ ହେ ମହାବାହୁ
ଜଗମୋହନ ତୁମ ଜଣାଣ ଅବିରାମ
ମହିମା ମହିମା ଆଉ ପଡ଼ୁନି ଶୁଭି ॥ ୨ ॥

ଗରୁଡ଼ ପଛେ ଚାହିଁଲେ ମୁଖକୁ ଟେକି
କାଳ ଶ୍ରୀମୁଖଟି ଦିଶୁନାହିଁ ଟିକି
ରଙ୍ଗ ଅଧରେ ହସ ଫୁଟୁନି ପୀତବାସ
କଉସ୍ତୁଭ ମଣିପ୍ରଭା ପଡ଼ୁଛି ଝରି ॥ ୩ ॥

ଭକତ ଗଣ ମଙ୍ଗଳ ଆରତି ପାଇଁ
ଧାଇଁ ଧାଇଁ ଆସିବାର ଦେଖୁଛ ନାହିଁ
ତୁମେ ଭକତ ପ୍ରାଣ ମଣୁଛ ନାରାୟଣ
ପିଣ୍ଡ ଆଉ ପରାଣ କେ ନେଲା ଓଟାରି ॥ ୪ ॥

ଭକତରେ ମୁହିଁ ଲେଖା ଅଧମ ଜଣେ
ତଥାପି ବିକଳ ଚିତ୍ତ ଅଦରଶନେ
ଅନ୍ତରଯାମୀ ମୋର ତୁମ୍ଭେ ନ ଆସେ ଗୀର
ରୂପଶିଖ ଭାବ ଯାଏ ଅନ୍ତରେ ଭରି ॥ ୫ ॥

ଭକତ ବତ୍ସଳ ପ୍ରଭୁ ସାରଙ୍ଗଧର
ସାଙ୍ଗ କର ଏ ଲୀଳାକୁ ଏବେ ଏଥର
ବଡ଼ ଦେଉଳେ ଥିଲେ ଦୁଃଖ ଦେବାଧିରାଜେ
ମର୍ତ୍ତ୍ୟ ବଇକୁଣ୍ଠ ପୁଣି ଉଠୁ ମୁଖରି ॥ ୬ ॥

**

**

# ମୁଁ ଜଣେ ବଡ଼ ଦୁଃଖୀ

**ସାରଦାମଣି ମହାପାତ୍ର**

( ବିଂଶ ଶତାବ୍ଦୀ )

ଆହେ ଚକାଆଖି
ବିକଳ ନ ଲଗେକି ମୋ ଦୁଃଖ ଦେଖି ॥ ପଦ ॥

ଦସ୍ୟାପଦ ଦସ୍ୟାମସ୍ତ ହରି
ହୀନ କର୍ମକୁ ନ ଗଲ ସରି
ଦସ୍ୟାଙ୍କୁ ଠାକୁର ବୋଲି ପଡେ ହରି
ବାଛ ବିଚାର କି ଲୋକ ଦେଖି ॥୧॥

ଦୁଃଖ ସିନ୍ଧୁ ହଏ ପଦ୍ମଭବ
ନାହିଁ କି ତହଁ ଶ୍ରୀକରେ ତବ
ଲକ୍ଷେ ଯୋଜନକୁ ଗଜ ଡାକ ବାଜିଲା
ବରାଭୟ ଦେଲ ଭୁଜ ଟେକି ॥୨॥

ମୋ ଆରତ ନକଲେ ଶ୍ରବଣ
ଆର୍ତ୍ତତ୍ରାଣ ବୋଲି କି ପ୍ରମାଣ
ଚକ୍ରରୁ ପତାକା ଉତାର ବନ୍ଧନ
ରହିବ ମୁଁ ହୋଇ ଜନ୍ମସାଖୀ ॥୩॥

ମାରିଲେ ମାର ତାରିଲେ ତାର
କରୁଛି ନାମକୁ ଗଲାହାର
ହରତା କରତା ଜାଣିରଖ ତୁମେ
ସୃଷ୍ଟିରେ ମୁଁ ଜଣେ ବଡ଼ ଦୁଃଖୀ ॥୪॥

**

**

# ନାମଫଳକ ବଦଳା

**ଫତୁରାନନ୍ଦ**

(ବ୍ୟଂଗ ଶତାବ୍ଦୀ)

ନାମ ଫଳକକୁ ବଦଳାଇ ଦିଅ ଜଗନ୍ନାଥ
ପୁରୁଣା ଫଳକ କଢ଼ାଅ ଲଗାଇ ପଣ୍ଡାଙ୍କ ହାତ ।

ନାଥର ଉଆସେ ଆଶ୍ରିତଙ୍କ ଆଏ ଅବାଧ ଗତି
ସମସ୍ତଙ୍କ ପାଇଁ ଜଗତରେ ଏହା ସମାନ ନୀତି ।

ପାର୍ଶୀ, ମୁସଲିମ ୟୁହୁଦୀ, ଖ୍ରୀଷ୍ଟାନ, ଅଛବ ଜାତି
ଏହି ଜଗତକୁ ସର୍ବେ ଆଦର ରହିଅଛନ୍ତି ।

ଦ୍ୱାରୀଏ ଅଛନ୍ତି ସିଂହଦ୍ୱାରେ ଧରି ବେତର ବାଡ଼ି
ଦୁଆର ମୁହଁରୁ ଦିଅନ୍ତି ଏହାଙ୍କୁ ଦୂରେ ଘଉଡ଼ି

ଖବୁତ ନାହାନ୍ତି ତୁମେ ଅଟ ପ୍ରଭୁ ଜଗନ୍ନାଥ
ସମସ୍ତଙ୍କ ପାଇଁ ଟେକିଅଛ ତୁମେ ଅଭୟ ହାତ

ଏମାନଙ୍କୁ ଯେବେ ତୁମ ପାଶେ ଯିବା ହେବ ବାରଣ
ଜଗନ୍ନାଥ ନାମ ଫଳକ ରହିବା କେଉଁ କାରଣ ?

ଯାହାଙ୍କୁ ହେଉଛୁ ଆଜ୍ଞା ତୁମ ପାଶେ ଯିବାକୁ ମାଡ଼ି
ତାଙ୍କ ନାଥ ନାମଫଳକଟି ଲଗୁ ପୁରୁଣା କାଢ଼ି ।

ଫତୁରାନନ୍ଦର ଏହି ନିବେଦନ ହୋଇଲେ ଘେନା
ଦେଉଳେ ଉଡ଼ିବ ପ୍ରଭୁଙ୍କର ତେବେ ଯଥାର୍ଥ ବାନା

**

**

# ମାଗେ ଦୁଇହାତ ଯୋଡକ

## ଗୁରୁକୃଷ୍ଣ ଗୋସ୍ୱାମୀ

(ବଂଶ ଶତାବ୍ଦୀ)

ପ୍ରଭୁ !
ପତିତପାବନ ବୋଲକ
ଏ ନାଆଁ ତୁମକୁ ଯେ ଦେଲା ତୁଚ୍ଛାକୁ
(ତାର) ନଥିଲା ଅକଲ ଟିକେକ ?

ମୋ ପରି ପତିତ ଗଲା ନାହିଁ ତର
ଜଗତ ଜଞ୍ଜାଳେ ହେଉଅଛୁ ଘାର
ତୁମେ ତ ନେଉଛ ଶୁଖିଲ ବାହାବା
(କୁହ) ସରମ ଟିକଏ ନାହିଁକ ?

ଯାବତ ଧନ୍ଦାରେ ଧନ୍ଦାଇ ମାରୁଛ,
ନେହୁରା ହେଲେ ବି ମୁହଁ ନ ଖୋଲୁଛ
କି ଦୋଷ କରିଛୁ, ନ କହ ସେ କଥା
(ମୋତେ) ଭୁଆଁ ବୁଲଉଛ କାହିଁକ ?

ଯେତକ ହେଲାଣି ସେତକରେ ଆଉ
ମୋ ଗୁହାରି ଏବେ ଅରେ ଯେମା ହେଉ
ଚରଣେ ଆଶରା ଦିଅ ଚକାଡୋଳା
(ଆଜ) ମାଗେ ଦୁଇ ହାତ ଯୋଡ଼ିକ ।

**

✳✳

# ଦୀନଜନେ ନାଥ ଦୟା କର

## ଗୁରୁକୃଷ୍ଣ ଗୋସ୍ୱାମୀ

( ବିଂଶ ଶତାବ୍ଦୀ )

ନୀଳାଦ୍ରି ବିହାରୀ ହରି
ଦୀନବନ୍ଧୁ ଦଇତାରୀ
ଦୀନଜନେ ନାଥ ଦୟା କର,
ତୁମର ଶ୍ରୀମୁଖେ ଆଜ
କରୁଛି ମୁଁ ଅରଜ
ଜଗନ୍ନାଥ ହେ ଦୟା କର ।

ଇନ୍ଦ୍ର ଆସନ ମାଗୁ ନାହିଁ
ଇନ୍ଦ୍ର ଭୁବନ ମାଗୁ ନାହିଁ
ମର୍ତ୍ତ୍ୟର ଧନ ମାଗୁ ନାହିଁ
ମର୍ତ୍ତ୍ୟରେ ମାନ ମାଗୁ ନାହିଁ
ଚରଣେ ତୁମର କରୁଛି ଗୁହାରି
ଦୀନଜନେ ନାଥ ଦୟା କର ।

ଚନ୍ଦ୍ରଧାରୀ ହେ କହୁ ନାହିଁ
ଚନ୍ଦ୍ର ଉହାଡ଼େ ରଖ ନେଇ
ସୁଖ ଦିଅ ବୋଲି କହୁ ନାହିଁ
ଦୁଃଖ ଦିଅନା କହୁ ନାହିଁ
କହୁଛି ଏତିକି ମାଗୁଛି ଏତିକି
ଦୀନଜନେ ନାଥ ଦୟା କର ।

✳✳

**

# ଶୁଣିମା ହେଉ ମୋ ଜଣାଣ

ଗବୁକୃଷ୍ଣ ଗୋସ୍ୱାମୀ

(ବିଂଶ ଶତାବ୍ଦୀ)

ଜଗବନ୍ଧୁ ହେ ଜଗଜୀବନ
ଅଧମ ତାରଣ ହେ ଚକାନୟନ
ଶୁଣିମା ହେଉ ମୋ ଜଣାଣ ।

ରାଜବେଶ ନାଥ
ହେଉ ପରାପତ
ବୋଲି କରନାହିଁ ଅଳି
ଗୁହାରି କରୁନ
ମୋହର ଗଲଣି
ସୁଖଠାରୁ ଦୁଃଖ ବଳି
କରୁନ ବେଦନ ଚଢ଼ ପେଷିଣ
କର ମୋ ବିପଦ ବାରଣ ।

ବୈକୁଣ୍ଠେ ନେଇ
ଦିଅ ହେ ବସାଇ
କହୁ କରନାହିଁ ଅଳି
ଗୁହାରି ମୋହର
ଏ ଦୀନରେ କର
ବାଇଶି ପାହାଚ ଧୂଳି ।
ଏଇ ଆଶା ମୋର
ଜୀବନ ମାତର
କରିଦିଅ ପ୍ରଭୁ ପୂରଣ ।

**

**

## ଶୁଣ ଠାକୁର କଳା ଶ୍ରୀମୁଖ


### ଗୁରୁକୃଷ୍ଣ ଗୋସ୍ୱାମୀ

(ବିଂଶ ଶତାବ୍ଦୀ)


ଶୁଣ ଠାକୁର କଳା ଶ୍ରୀମୁଖ
ଦୁଃଖ ଭଂଜନ ନାମକୁ ଧ୍ୱଜ
ଯଦ୍ୱ ନ ଯାଏ ଜାଣିବେ ଦୁଃଖ ।

ନୀଳଚକ୍ରରେ ଉଡାଇ ବାନା
ଜଗତ ପିତା ବୋଲାଅ ସିନା
ନ ମିଳେ ଦାନା, ନ ମିଳେ ଜନା
ଦୁଃଖରେ ପୁଏ ମରନ୍ତି ଦେଖ ।

ବଡ ଦେଉଳେ ବଡ ନିଶ୍ଚିନ୍ତେ
ଛପନ ଭୋଗୀ ଅଛ କେମନ୍ତେ
ହେ ଚକାଡୋଳା ହେଲ କି କାଳ
ଅବା କପଟେ କର ପରଖ ॥

ମନ ହେଉଚ ପାଦରେ ତୋର
ଢଅନ୍ତୁ ପିଟି ମଥାକୁ ମୋର
ହେଲେ ସମ୍ଭାଳି ରହୁଛୁ ଖଳ
ପାଦକୁ ତୋର ଲାଗିବ ଦୁଃଖ ।

**

**

# ଜଗନ୍ନାଥ ହେ

## ଗୁରୁକୃଷ୍ଣ ଗୋସ୍ୱାମୀ

(ବିଂଶ ଶତାବ୍ଦୀ)

ଜଗନ୍ନାଥ ହେ !
ଶ୍ରୀ ଛାମୁରେ ଯାଇଁ ଗୁହାରି ମୁଁ କରି ନାହିଁ
ତା' ବୋଲିକି ଆଜ, ନ କରୁଛ ହେଳ
        ମୋ କଥା ଜଗତ ସାଇଁ ।

ମରଣ ଯା' ହେଲା ପିଆଇଲ ମୋତେ
        ଖୁଆଇଲ ଯା' ଆପଣେ
ତୃଷା ଅବା ବେଶୀ କରିଛ ବୋଲିକି
        କହୁନ ତା' ଆଗେ ଧନେ,
ତୁମେ ଯେଉଁ ପଥେ ଚଳାଇଲ ମୋତେ
        ଚାଲିଛୁ ସୁଧାରି ହୋଇ ।

ଟେକା ଟେକି କରି ତୁମେ ବଡ ବୋଲି
        ଗାଇନାହିଁ ଧନେ ଗୀତ
ଦେଇନାହିଁ ଗାଳି କପଟିଆ ବୋଲି
        ଆଖି ବୁଜି କହେ ସତ
କୋପ ଅବା ତପ ନ କଲେ କି
        ଭବ ପାରି ତୁମେ କର ତାଇଁ ?

**

**

# ଗରୁଡ଼ ପଛରୁ ଯୋଡ଼ୁଛି ହାତ

## ଶ୍ରୀବତ୍ସ ନାୟକ

(ବିଂଶ ଶତାବ୍ଦୀ)

ଜଗବନ୍ଧୁ !          ଶ୍ରୀ ଜଗନ୍ନାଥ !
ଗରୁଡ଼ ପଛରୁ          ଯୋଡ଼ୁଛୁ ହାତ ॥୦॥

ରତ୍ନ ସିଂହାସନେ          ଭଲ ଆସନେ
ବସେ କରିଅଛ ଭଗିନୀ ଭ୍ରାତ,
ଚଉଦ ବ୍ରହ୍ମାଣ୍ଡ          ପାଦତଳେ ରୁଣ୍ଡ,
ପୋଷୁଚ, ପାଳୁଚ, ପ୍ରଦୋଷ ପ୍ରାତଃ ॥୧॥

ମନ ମନ ଦେଇ          ହେ ଜଗତ ସାଇଁ
କାତର ଗୁହାରି କରୁଛୁ ମୁଁ ତ
ବିପଦ-ବାନ୍ଧବ          ଆଉଁ ଆଉଁ ତୁମେ
ଡରୁଛନ୍ତି ମତେ ଶମନ ଦୂତ ॥୨॥

ପୁଣ୍ୟ ନୀଳାଚଳେ          ଶ୍ରୀ ମନ୍ଦିର ଚୂଳେ
ଉଡ଼ୁଛି ପତିତପାବନ କେତ
କାହୁଁ ଆସି ମୁହିଁ          ଯାଉଅଛୁ କାହିଁ
ପତିତ ମୁଁ କାହିଁ କମଳାକାନ୍ତ ? ॥୩॥

କୋଟି କୋଟି ପାପୀ          ତାପୀ ଗଲେ ତରି
କଲା ଶ୍ରୀମୁଖକୁ ସୁନ୍ଦର ନିତ୍ୟ,
କେତେ ପାପ ମୁହିଁ          କରିଅଛି ଭଲ
ପୋଥା କରିଅଛ ଜଗତ ମିତ୍ର ॥୪॥

ଜଗତ କରତା          କଇବଲ୍ୟ ଦାତା

ଦାରେ ସ୍ମହୁଁ ଥାଳି ପଙ୍କଜ ନେତ୍ର

ଦୀନ ଶ୍ରୀବତ୍ସର          ସକଳ କଳୁଷ

କୃପା ବାରିଧିଙ୍କ କଣ୍ଠୁଁତ ମାଗ ॥୫॥

**

**

## ଜଗନ୍ନାଥ ବୋଲାଇ କର

### ଶ୍ରୀବତ୍ସ ନାୟକ

(ବିଂଶ ଶତାବ୍ଦୀ)

ଆଖି ଲୁହେ ଭସାଇ ମୋତେ
କେଉଁ ସୁଖ ଲଭିବ ହରି
ପଦ୍ଧରୁଷ ଅର୍ଜିବ କିବା
ଦୀନଜନେ ନିର୍ଦ୍ଦୟ କରି ? ॥୧॥

ନୀଳାଚଳେ ବସି ହେ ନାଥ
ଟେକି ତୁମ ବିଶାଳ ହାତ
ଦେଉନାହିଁ ଅଭୟ କାହିଁ
ଜଗନ୍ନାଥ ବୋଲାଇ କରି ? ॥୨॥

ଥିଲେ ମୋର ଅପର ଗ୍ରହା
ଲୋଡ଼ନ୍ତି କି ମୁଁ ତୁମ ସାହା
ଆକ୍ରନ୍ଦ କରିଲେ ଛନ୍ଦ
ଅଗ୍ରତେ ମୁଁ ଯିବଟି ମରି ॥୩॥

ଯେତେ ଆଶା ଭରସା ଦେଲ,
ଗୋଟି ଗୋଟି ଛଡ଼ାଇ ନେଲ,
କହ କବା ଆଶରା ଧରି
ଭବସିନ୍ଧୁ ପାରିବି ତରି ? ॥୩॥

ମାଡ଼ି ଆସେ ବତାସୀ ଘୋର
ବୁଡ଼ିବକି ତରଣୀ ମୋର ?
ଆହେ ଚିର କାଣ୍ଡାରୀ ହରି,
ଉଦ୍ଧର ମୁଁ ଯାଉଛି ସରି ॥୪॥

ଶ୍ରୀବତ୍ସ ଯେ ମାରିଲା ନାତ
ହୃଦୟେ ତା ଧରିଲ ନାଥ
ଏ ଶ୍ରୀବତ୍ସ ପିନ୍ଧୁଛ ମାଥ
ଦିଅ ପଦ ପରଶ ଭରି ॥୫॥

**

**

# ତୁମ୍ଭ ସିନା ଏକା ଜାଣୁରେ କାଳିଆ

## ପ୍ରଫୁଲ୍ଲ କର

(ବିଂଶ ଶତାବ୍ଦୀ)

ତୁମ୍ଭ ସିନା ଏକା ଜାଣୁରେ କାଳିଆ
କେଉଁଟି ମୋ ଭଲ କେଉଁଟି ମୋ ଭେଲ
ତୋ ବିନା ଜଗତେ ଆଉକେ ବୁଝିବ
କେଉଁଟି ପ୍ରଳାପ କେଉଁଟି ମୋ ଗେଲ ॥୧॥

କାନ୍ଦଇ ଯେବେ ମୁଁ ଲୋକଙ୍କ ଝଗଇ
କହନ୍ତି ଜଗତେ କରେ ମୁଁ ଛଳନା
ଦୁଃଖ ଯଦି ମୋର ଜଣାଏ କାହାକୁ
କହନ୍ତି ମୁଁ ପୁଣି କରୁଛି ବାହାନା
ତୁମ୍ଭ ସିନା ଏକା ଜାଣୁ ଅନ୍ତର୍ଯ୍ୟାମୀ
କେଉଁଟି ଛଳନା କେଉଁଟି ବେଦନା ॥୨॥

ମାଗିଲେ ନିର୍ମାଲ୍ୟ କଣିକା କୈବଲ୍ୟ
ପରଷିଲେ ମୋତେ ହଳାହଳ ବିଷ
ତୋ' ନାମକୁ ଧରି ପାନ ଯେବେ କଲି
ଭଣ୍ଡ ବୋଲି ମୋତେ ଦେଲେ ଅପଯଶ
ତୁମ୍ଭ ସିନା ଏକ ଜାଣୁ ଜଗନ୍ନାଥ
କେଉଁଟି ପୀୟୂଷ କେଉଁଟି ବା ବିଷ ॥୩॥

**

**

# ଇଏ ଗୋ ମିଛ କଏ ?

## ପ୍ରଫୁଲ୍ଲ କର

(ବିଂଶ ଶତାବ୍ଦୀ)

ଇଏ ଗୋ ମିଛ କଏ ?
ବଡ଼ ଦେଉଳରେ କାଳିଆ ବସିଛନ୍ତି ଜଗନ୍ନାଥ ପରା ଇଏ ॥୦॥

ବାଳଗରଡ଼ାରୁ ମିଳିଥିଲା ଯେବେ ବ୍ରହ୍ମରୂପୀ ଶାଳଗ୍ରାମ
ନାରାୟଣ ବୋଲି ପୂଜିଲେ ତାହାକୁ ଦେଇ ଫୁଲ ଚନ୍ଦନ
ନିମ କାଠ ଖଣ୍ଡେ ଭାସି ଆସିଥିଲା ସେ ପୁଣି ହୋଇଲା ଦାରୁ
ଥାପିଲେ ତାହାରେ ଦେବତା ବୋଲି ଗୋ ଦାରୁ ବ୍ରହ୍ମ ମହାମେରୁ
ଇଏ ଗୋ ମିଛ କଏ ?
ବଡ଼ଦେଉଳରେ କାଳିଆ ବସିଛନ୍ତି ଜଗନ୍ନାଥ ପରା ଇଏ ॥୧॥

ରୂପରେ ଅରୂପ ଅରୂପରେ ରୂପ ଯୋଜନା ହୋଇଲା ତହିଁ
ଉଦରଟି ଗୋଟେ ବାହୁହେଲା ମୋଟେ ଚୋଟେ ସେ ନୟନ ଦୁଇ
ମୁହେଁ କଳା ବୋଲା ଆଖି ରଙ୍ଗ ଧଳା ବର୍ଣ୍ଣିତ ହୋଇଛି ଯୋଡ଼ା
ଗୋଡ଼ ଦୁଇ ନାହିଁ ହାତଥାଇ ପୁଣି ପାପୁଲି ହୋଇଛୁ କଟା
ଇଏ ଗୋ ମିଛ କଏ ?
ବଡ଼ ଦେଉଳରେ କାଳିଆ ବସିଛନ୍ତି ଜଗନ୍ନାଥ ପରା ଇଏ ? ॥୨॥

ଛପନ ପଉଟି ଭୋଗ ପୁଣିକରେ ନବନବ ବ୍ୟଞ୍ଜନ
ପଣ୍ଡା ପଚ୍ଛିଆଙ୍କ ଛାପଦ ସେବାରେ ଖଟୁଥାନ୍ତି ନବଦନ
ପ୍ରଭୁପଣେ ବଡ଼ ନାହିଁ କେ ତା'ଠାରୁ କଳୁଷ ସଂହାର ପାଇଁ
ଦାସ ପଣେ ପୁଣି ନାହିଁ କେ ତା'ସରି ଭକତ ଜନଙ୍କ ପାଇଁ
ଇଏ ଗୋ ମିଛ କଏ ?
ବଡ଼ ଦେଉଳରେ କାଳିଆ ବସିଛନ୍ତି ଜଗନ୍ନାଥ ପରା ଇଏ ॥୩॥

**

**

# ଜଗନ୍ନାଥ ବୋଲି


## ପ୍ରଫୁଲ୍ଲ କର

(ବିଂଶ ଶତାବ୍ଦୀ)


ଜଗନ୍ନାଥ ବୋଲି ନାମ ଗୋଟି ମୁଖେ
ଆଉ ମୁଁ ଧରିବି ନାହିଁ
ଜୀବଥିବା ଯାଏ ଆଉ କେବେ ତୁମ
ଦୁଆର ମାଡ଼ିବି ନାହିଁ ॥୦॥

ଏଡ଼େ ବଡ ପ୍ରଭୁ ବାପ ମୋର ବୋଲି
ଗରବରେ ଜ୍ଞାନ ହରାଇ ବସିଲି
ଅଜ୍ଞାନ ଅବୋଧ ବାଳକର ସମ
ଭଲ ମନ୍ଦ କିଛି ବୁଝି ନ ପାରିଲି

ଭଲବୋଲି ଯାହା ବିଚାର କରିଲି
ମନ୍ଦକୁ ଯଦି ତା' ପାଇଲି ଯାଇ
ସେଥିପାଇଁ କିଆଁ ମୁହିଁ ଏକା ଦାୟୀ
ବାପ ବୋଲି ଦୋଷ ତୁମର କି ନାହିଁ ?

କ୍ଷମାକର ବୋଲି କେତେ ମୁଁ ଡାକିଛି
ବୁହାଇଛି କେତେ ଲୁହ୍ ଧାର ଧାର
କ୍ଷମା ଦେବା କଥା ଦୂରେ ଥାଉ ପୁଣି
ବେଢ଼ି ପରେ ଦେଲ କୋରଡ଼ାମାଡ଼

ଦଣ୍ଡ ଦେବାର କି ଅଧିକାର ଅଛି ?
କ୍ଷମା ଯଦି ତୁମେ ପାରୁନାହଁ ଦେଇ
କ୍ଷମା ସିନ୍ଧୁ ବୋଲି କିଆଁ ହେ ତୁମକୁ
ଡାକୁଥିବ ଖାଲି ହେ ଜଗତ ସାଇଁ ॥୧॥

ମୁଁ ନୁହେଁନି ଏକା ମୋ ପରି ଅନେକ
ତୁମ ଆଶ୍ରା କରି ଅଛନ୍ତି ଖାଲି
ମିଛୁଟାରେ ତୁମ ଡ଼ିଣ୍ଡିମ ବାଜୁଛି
ପତିତଜନଙ୍କୁ ଉଦ୍ଧାରୁଛ ବୋଲି

ନିଜ ମହତକୁ ନାଜେ ଯଦି ଆଉ
ପାରୁନାହିଁ ରଖି ହେ କମଳାସାଇଁ
ପତିତପାବନ ବାନା ଗୋଟି ଏବେ
ଚକ ପରୁ କାଢ଼ି ନିଅ ହେ ଗୋସାଇଁ ॥୩॥

**

**

# ଧନ୍ୟ ତୁମ୍ଭର ଲୀଳା

## ଶ୍ରୀମତୀ ପ୍ରଭାସ ମିଶ୍ର

(ବିଂଶ ଶତାବ୍ଦୀ)

[ରାଗ-ରାମକେରୀ]

ଜଗନ୍ନାଥ ମହାପ୍ରଭୁ ହେ ଧନ୍ୟ ତୁମର ଲୀଳା
ସୁନ୍ଦର ଗୋଲକେ ବିହରି କର ବିଚିତ୍ର ଖେଳା ।।୧।।

ଅନନ୍ତ ଅପାର ଅଗମ୍ୟ ମହାମହିମା ତବ
ଚଉଦିଗେ ଯାହା ଦେଖାଇ ସବୁ ତୁମ ବିଭବ ।।୨।।

ଚନ୍ଦ୍ର ସୂର୍ଯ୍ୟ ଗ୍ରହ ନକ୍ଷତ୍ର ସର୍ବେ ତୁମ୍ଭ କିଙ୍କର
ମୁଉଁ ମୁଉଁ ବୋଲି ମିଛରେ କରେ ମୁଁ ଅହଙ୍କାର ।।୩।।

ବୁଝିବାକୁ ସୃଷ୍ଟି ରହସ୍ୟ କା'ର ଶକତି ଅଛି ?
ବ୍ରହ୍ମା ଇନ୍ଦ୍ର ଅଗ୍ନି ବରୁଣ ଜାଣି ନାହାନ୍ତି କିଛି ।।୪।।

ସତ୍ତ୍ୱ ରଜ ତମ ତ୍ରିଗୁଣ ଖଞ୍ଜି ମାନବ ଦେହେ
ମନକୁ ତାହାର ନଗୃଅ ବାତେ କନ୍ଦୁକ ପ୍ରାୟେ ।।୫।।

ସକଳ ଶରୀରେ ଚେତନା ତୁମେ ଚଳାଅ ପ୍ରାଣୀ
ଯେ' ଭଜେ ଯେପରି ସଦୟ ହୁଅ ହୃଦୟ ଜାଣି ।।୬।।

ଖରା ବର୍ଷା ଶୀତ ବସନ୍ତ ଜୀବ ମଙ୍ଗଳ ପାଇଁ
କରିଛ ବିଧାନ ବିଶ୍ୱର ପ୍ରଭୁ ଜଗତ ସାଇଁ ।।୭।।

ସୁଖ ଦୁଃଖ ହର୍ଷ ବିଷାଦ ବେଳେ ଭୁଞ୍ଜଇ ଜୀବ
ଭକତି ମୁକତି ପାଇଣ ଲଭେ ସଦା ଆନନ୍ଦ ॥୮॥

ବିଶ୍ୱ ରନ୍ଧ୍ରେ ରନ୍ଧ୍ରେ ପ୍ରକାଶେ ତବ ଅଖଣ୍ଡ ଜ୍ୟୋତି
ସ୍ଥାବର ଜଙ୍ଗମ ଅଙ୍ଗରେ ତୁମେ ଜୀବନୀ ଶକ୍ତି ॥୯॥

ଅଲଗା ରହିଛ ଅକ୍ଷର କ୍ଷର ପୁରୁଷଠାରୁ
ପୁରୁଷ ଉତ୍ତମ ବୋଲାଅ ତୁମ୍ଭେ ଜଗତ ଗୁରୁ ॥୧୦॥

ତମୋଗୁଣି ମୁହିଁ ବିଷାଦ ଘୋର ପାତକୀ ଜନ
ସାଷ୍ଟାଙ୍ଗ ପ୍ରଣାମ କରୁଛି ରଖ ପଦ୍ମଲୋଚନ ॥୧୧॥

**

**

## କିଆଁ ଡାକିବି

### ଶ୍ରୀମତୀ ପ୍ରତିଭା ମିଶ୍ର

(ବିଂଶ ଶତାବ୍ଦୀ)

କିଆଁ ଡାକିବି ହେ ତୁମେ ଜଗନ୍ନାଥ ବୋଲି ?
ଜଗଶପ୍ତ ମୁହିଁ ଭଙ୍ଗା ନାବ ନେଇ
ସାଗରେ ଦେଇଛି ମେଲି ॥ଘୋଷା॥

ଜାହିଁ ଝକମକ ବିଜୁଳି ଆଲୋକ
ମୋ ହୃଦେ କାଳିମା ଢାଳି
ଜଗନ୍ତ କପଟ ନାହିଁ ମୋର ଆଣ୍ଟ
ଯିବ ମାଯ୍ୟାମେ ହ୍ୱ ଠେଲି ॥୧॥

କେଉଁଠି ସଜଇ ଖିଣ ବସାଦନ୍ଧ
ତୁମ ଫଳ ଧୂପ ଡାଲି
ମାଗିଲି ମୁଁ ଯେତେ ନ ମିଳିଲା ମୋତେ
ମୁଠାଏ ଶରଧା ବାଲି ॥୨॥

ଦାସିଆ ବାଉରୀ ହାତରୁ ଶ୍ରୀହରି
ଛଡ଼ିଲ ନଡ଼ିଆ କଲି
ଏ ମୂଢ଼ ପାଇଁକି କରୁଣା ନାହିଁକି
ଭଣ୍ଡାର ହୋଇଲା ଖାଲି ॥୩॥

ସୁଦାମା ମାଳୀର ଚହ୍ଲିଲ ଅନ୍ତର
ଆସନ ଗଲା ଦୋହଲି
ବାରମ୍ବାର ଧକ୍କା ଖାଇ ହେଲି ଥକ୍କା
କାନ୍ଦଇ ପରାଣ ଖୋଲି ॥୩॥

**

**

## ଚକାଆଖି ଦେଖ ଲୋ ସଖୀ

**ଶ୍ରୀମତୀ ପ୍ରତିଭା ମିଶ୍ର**

(ବିଂଶ ଶତାବ୍ଦୀ)

ଚକାଆଖି ଦେଖଲେ ସଖୀ
ନରେଖି ଚଉକୁ ନେବେ ପରଖି ॥ ଘୋଷା ॥

ସେହି ପ୍ରଭୁ ଜଗତ ସାଇଁ
ଆଜନ୍ମରେ ଭୁଲିବେ ନାହିଁ
ଅନନ୍ତ ଭକତ ଦେଖିବେ ଯହିଁ
ଯେନବେ ସେବକ ସବୁ ଉପେକ୍ଷି ॥୧॥

ଦୁଖି ରଙ୍କୀ ହେଲେ ସକଳ
ସୃଷ୍ଟିଥିବେ ସେମାନେ ଅଟଳ
ଭୁଞ୍ଜନ୍ତି ଯେ ଯା'ର କରମଫଳ
ସେ ଏକା ମରମେ ପରମ ସାକ୍ଷୀ ॥୨॥

ନ ସମ୍ବନ୍ଧ କା'ର ବଡ଼ାଇ
ପଲକରେ ଦେବେ ଛଡ଼ାଇ
ଧରମ ପଥକୁ ନେବେ କଢ଼ାଇ
କରମେ ତାହାକୁ ପାଖକୁ ଡାକି ॥୩॥

ତେଜି ଭବ ଈଶ୍ୱର ଖେଳ
ଦୋଷ ଅହଙ୍କାର ସକଳ
ଆଶ୍ରା କଲେ ତାଙ୍କ ପଦ ଯୁଗଳ
ସ୍ନେହଭରେ ନେବେ କୋଳକୁ ଟେକି ॥୪॥

**

**

# ବଡ଼ ଦେଉଳ କାହାଣୀ

**ଶ୍ରୀମତୀ ପ୍ରଭସ ମିଶ୍ର**

(ବିଂଶ ଶତାବ୍ଦୀ)

ପ୍ରଭୁ ଶୁଣାଅ ହେ, ବଡ ଦେଉଳ କାହାଣୀ
ଯିବାକୁ ଉଚ୍ଛନ୍ନ   ମନ ଛନ ଛନ
ନ ପାରେ ଆଉ ସମ୍ଭାଳି ॥ଘୋଷା॥

ଅପ୍ରମାଣ ଜନ   ଲଭି ଦରଶନ
ଦେଉଥିବେ ପୁଷ୍ପାଞ୍ଜଳି
ମୋ' କପାଳ ଖୋଟ   ହୁଏ ଛଟ ପଟ
ଘର କଣେ ବସି ବସି ॥୧॥

ଭକତ ସକଳ    ଦେଇ ଫୁଲ ମାଳ
ଜାଳୁଥିବେ ଦୀପାବଳୀ
କି ଦୋଷ କରିଛୁ    ଜାଣିନାହିଁ କିଛୁ
ନ ପଡ଼ିଲା ମୋର ପାଳି ॥୨॥

ହୋଇକେ ଉଷତ    ଭ୍ରମର ସଙ୍ଗୀତ
ଗାଉଥିବେ ଦେଇ ତାଳି
ମୋହ ପାଇଁ ତୋର    ଛୁଣ୍ଡିଲା ଭ୍ରମର
ହେଲାରୁ ମାୟା କଙ୍କାଳୀ ॥୩॥

ଲେନ୍ଥିବେ କେହୁ    ଜାନ୍ଧ କହିଁ କହିଁ
ପାଇବାକୁ ରସାବଳି
ମାଗୁଅଛୁ ମୁହିଁ    ଜଗତର ସାଇଁ
ଅମ୍ବୁଜ ଚରଣ ଧୂଳି ॥୪॥

**

**

# ଆସ ଦେଖିଯିବା ସଙ୍ଗାତ

**ଶ୍ରୀମତୀ ପ୍ରତଭା ମିଶ୍ର**

(ବିଂଶ ଶତାବ୍ଦ)

ଆସ ଦେଖିଯିବା ସଙ୍ଗାତ
ବଡ଼ ଦେଉଳରେ ଜଗନ୍ନାଥ ॥ଘୋଷା॥

ଯାଉଥିବା ବଡ଼ ଦାଣ୍ଡରେ    ବୋଲି ହେବା ଧୂଳି ମୁଣ୍ଡରେ
ଠିଆ ହୋଇ ଦଣ୍ଡେ ସିଂହ ଦୁଆରେ
ନୀଳଚକ୍ରେ ଉଡ଼େ ଦେଖିବା ନେତ ॥୧॥

ଫିଟି ଗଲେ ବଡ଼ କବାଟ    ଜଗୁଆଳ ମାରବେ ଗୁଣ୍ଟ
ବାଇଶି ପାହାଚ କଡ଼ାଇ ବାଟ
ଦୂରରୁ ପ୍ରଭୁଙ୍କୁ ଯୋଡ଼ିବା ହାତ ।।୨।।

ଛକବାର ବୁଲିବା ବେଢ଼ା    କିଣି ନେବା ଦୀପ ଉଖୁଡ଼ା
ବୁଢ଼ା ଝୁଲିଥିବ ଭୋଗ ଅବଢ଼ା
ନାଚୁଥିବେ କେତେ ସାଧୁ ଭକତ ।।୩।।

ଚହଲିଆ ଜଗମୋହନ    ଲାଗିଥିବ ଖୋଳ କୀର୍ତ୍ତନ
ଆନନ୍ଦେ କରିବା ହରି ଦର୍ଶନ
ପାପୀ ଜୀବନରୁ ହେବା ମୁକତ ।।୪।।

**

**

# ଜଗନ୍ନାଥ ଉବାଚ

## ଅଧ୍ୟାପକ ରଘୁନାଥ ପଣ୍ଡା

(ବ୍ୟଂଗ ଶତାବ୍ଦୀ)

ଶୁଣମୋ ସନ୍ତାନ ଗଣ !
ଜଗନ୍ନାଥ କହୁଛୁ ମୁଁ ଗୁଣ୍ଡିଚ୍ଚ ଦାଣ୍ଡରେ
ରତ୍ନସିଂହାସନ ମୋର ତୁମ ହୃଦେ
ନାହିଁ କେଉଁ ପାଷାଣ ମନ୍ଦିରେ ।
ରଥ ମୋର ତୁମ୍ଭେମାନେ କାଷ୍ଠ ବ୍ରହ୍ମ ଯାଏ,
ନୀରସ ତରୁ ନିର୍ମିତ ଯାନଟାରେ
ମୋର କବା ଆସେ ଅବା ଯାଏ ।
ମନ ତୁମ କୋଟି କୋଟି ମୋ ରଥରେ ସାରଥୀ ସଦ୍ଧର
ତୁମର କର୍ମନିଚୟ ନାନାରଙ୍ଗେ ଘୋଟକ ସୁନ୍ଦର ।
'ବ୍ରହ୍ମାଣ୍ଡ କରତା" ବୋଲି ଡାକ ମୋତେ ଭୁଲ କର
ତୁମ୍ଭେମାନେ—ମୁଁ ବା କିସ କରେ ?
ମୋ ଷୋଡ଼ଶ ନୀତି ଚଳେ ତୁମର ହସ୍ତରେ ।
ଦେଇ ଆସି ନାହିଁ ଘଟେ କା'ର ଦ୍ରବ୍ୟ ଅନ୍ନ ମୁହିଁ
କାହାର ଅମୃତ ଗ୍ରାସ ଛଡ଼ାଇତ ଆଣି କେବେ ନାହିଁ ।
କରିନାହିଁ କେବେ କେଉଁ ସନ୍ତାନରେ ପାତର ଅନ୍ତର ।
ଏକେ ଦେଇ ଅମର ବିଭୂତି,
ଆନ ହସ୍ତେ ଦେଇନାହିଁ ଭିକ୍ଷାର ପତର ।
ଯେବେ ମୁହିଁ ଜନମିଲି ଜନ ସାଥେ ଧୂସର ଧରାରେ,
ଥିଲି ମୋର ସୁଖ କିସ ଜୀବନରେ
ବାମନ, ପରଶୁରାମ, ରାମ ଅବତାରେ ?
ସୁଖଭୋଗ ଆପେକ୍ଷିକ ତୁମେ ଯା'ରେ କହ ସୁଖୀମଣ

ପଚାରି ତାହାକୁ ବୁଝି ସେ କହିବ
ଦୁଃଖ ତାର ଅଛି ଅକଳନ ।
ବଢ଼ାଇନି ବଜାରର ଦର ମୁହିଁ ତୁମେତ କରିଛ
ମୋ ନିର୍ଦ୍ଦେଶ–ବିବେକର ତାଡ଼ନାକୁ ମୁହିଁ ବୋଲାଇଛ ।

ମିଶାଇନି ଚାଉଳରେ ଧଳା ଗୋଡ଼ି
ସିମେଣ୍ଟରେ ମଟାଳ ମୃତ୍ତିକା,
ନିଜକୁ ସର୍ବେ ପଚାର କିଏ ତାହା କରିଅଛୁ ଏକା ?
ନୁହଁଇ ଆରତତ୍ରାଣ ନୁହଁଇ ମୁଁ
କେଉଁ କାଳେ ଶରଣପଞ୍ଜର
ଆପଣାର ବଳିଷ୍ଠାର ଭୁଜ ରକ୍ଷାର କବଚ ତବ,
ହସ୍ତପଦ କାହିଁ ଅବା ମୋର ?
ଆତ୍ମାରେ ବିଶ୍ୱାସ କର, ମନେ ହେଉ ଗୀତାର ବଚନ
“କର୍ମରେହିଁ ତୁମ୍ଭ ଅଧିକାର”
ତାହାପରେ ହୋଇପାରେ ଫଳର ଭାଜନ ।
ବିବେକ ନାମରେ ଜଳେ ତୁମ ହୃଦ ମନ୍ଦିରରେ
ଲକ୍ଷେ ଚନ୍ଦ୍ରଉଦିଆ ଦିହୁଡ଼ି
ଆଲୋକ ତା' କଢ଼ାଇବ ବାଟ,
ମୋକ୍ଷ ହେବ ଚାଲ ଯେବେ ସେ ପଥ ନ ଛାଡ଼ି ।
ଏ ସୃଷ୍ଟିରେ ଶୁଭହେବ ସର୍ବଦିନ ସକାଳ ରଜନୀ
ରଥଯାତ୍ରା ମୋ'ର ଅନାହତ ଚାଲିଥିବ ଅହରହ,
ବାପା ମୋର କଥାଦେଇ ଯାଅ,
ମୋ ବଚନ ଭୁଲ ବୁଝିବନି ।

**

**

# ମାଗେ ଶୁଭ ଦର୍ଶନ

ବଂଶୀଧର ଉପାଧ୍ୟାୟ

(ବଂଶ-ଶତାବ୍ଦୀ)

ଜଗମୋହନ ଛଡ଼ିଯିବାକୁ ବଳୁନି ମନ
ନୟନକୁ ଝଲଲାଛି କଳା ବଦନ ॥ପଦ॥

ଗୋଲୋକ ବୋଲି ଯା'ନାମ ଏହି ସେହି ଦିବ୍ୟ ଧାମ
ପଶୁପତି ଆଶେ ଧାଏଁ ଭକତ ଜନ ॥୧॥

ନାରଦାଦି ସୁରମୁନି ସନକାଦି ବ୍ରହ୍ମଜ୍ଞାନୀ
କରଯୋଡ଼ି ଉଭା ବ୍ରହ୍ମା ଭୂତଭାବନ ॥୨॥

ଗରୁଡ଼ ପଛରେ ରହି ଶ୍ରୀମୁଖକୁ ଚାହିଁ ଚାହିଁ
ଯାହି ଯାହି ରହୁଥିବ ଶୁଣ ନଶୁଣ ॥୩॥

ଅଜରମା ବୋଲି ଯେବେ ବଳାଇ ତଡ଼ାଇ ଦେବେ
କାହାର ହେବ ଆଉ ଏ ନରେଖ ଜନ ॥୪॥

କୁବେର ଧନ ସମ୍ପଦ ଅଥବା ମଘବା ପଦ
ନ ମାଗି ମାଗେ ମାତର ଶୁଭ ଦର୍ଶନ ॥୫॥

**

**

# ପଥର କି ହୋଇଲ

## ବଂଶୀଧର ଉପାଧ୍ୟାୟ

(ବିଂଶ ଶତାବ୍ଦୀ)

ପଥର ଦେଉଳଢଅଁ ପଥର କି ହୋଇଲ
କିବା କାରଣରୁ ଅବା କ୍ରୋଧ ଭାବ ବହିଲ ॥ପଦ॥

ଜଗତର ନାଥ ବୋଲି ହରି ପତିତ ଜଗତେ
ଜୟ ଜୟ କରୁଛନ୍ତି କୋଟି କୋଟି ଭକତେ
ଜଣଙ୍କ ପାଇଁ କିମ୍ପାଇ ମୂକ ହୋଇ ରହିଲ ॥୧॥

ଡର ଘୁଞ୍ଚ କହିବି ମୁଁ ତୁମେ ବଡ଼ ମିଛୁଆ
ଟାଣ ପରମାଣ ଦେବି ତୁମେ ମହା ଲାଞ୍ଛୁଆ
ଅଛୁଆ ଦାସିଆ ହାତୁଁ ନଡ଼ିଆଟା ଖାଇଲ ॥୨॥

ଜାଣନାହିଁ ପଢ଼ନାହିଁ ଛୁଆଁ ଛିନ୍ନ ବାରଣ
ତୁମେ କରିଅଛ କାଳେ ପଣ୍ଡିତଙ୍କୁ ତାରଣ
ଶବରୀ ଅଇଁଠା ଖିଆ ଅପଖ୍ୟାତି ପାଇଲ ॥୩॥

ଘନୀଭୂତ ହୋଇବାରୁ ବେଦନା ଯେ ବୁକୁର
ଚେତାଇ ଦେଉଛି ଟିକେ ମନ ପକା ଠାକୁର
ଶୀଶବଛୁ ପଦାଘାତ ଗୁଢ଼ପ ଠ ସହିଲ ॥୪॥

ଜାଣେ ତୁମ ଦରବାରେ ନାହିଁ ବାଛ ବିଚାର
ତେଣୁ ଭରସିଛି ଦିନେ ପାଇବି ସୁବିଚାର
ଗୁହାରିଆ ପଦେ ପ୍ରଭୁ କରିଦେବ ବାହାଲ ॥୫॥

**

**

# ଜଗବନ୍ଧୁ ହେ

## ଧ୍ରୁବଚରଣ ପଣ୍ଡା

ବିଂଶ ଶତାବ୍ଦୀ)

ଜଗବନ୍ଧୁ ହେ ତୁମେ ଜଗତ ସାଇଁ
ଜଣାଇଲି ଯେତେ ଜୀବନର ଦୁଃଖ
ଜଳଜଳ କରି ରହିଲ ଚାହିଁ
ଜଡ଼ା କାନ ତେଣୁ ଶୁଣିଲ ନାହିଁ ।।ଘୋଷା।।

ଜଗତଜୀବନ ଜଗତ ଠାକୁର
ଜଖମ ହେଉଛି ମନଟି ମୋହର
ଜଂଜାଳ ଜାଲରେ ଜଡ଼ିତ ହୋଇ
ଜଟିଳ ଅଟେ ଏ ଭବ ପାରାବାର
ଜଡ଼ତାରେ ଖାଲି ତା'ପଛେ ଧାଇଁ ।।୧।।

ଜନମ ମୋହର ହେଲା ଅକାରଣ
ଜଳପନା କଳପନାରେ ଥାଇ
ଜଠର ଜଳଇ କ୍ଷୁଧାତୃଷା ଘାତେ
ଜବର କରି ସେ ମୋତେ ଧରଇ ।।୨।।

ଜରାବ୍ୟାଧି ଏବେ ଜାହିର କରୁଛି
ଜୀବନ ସପନ ହେଉଛି ଦହି
ଜିତେନ୍ଦ୍ରିୟ ସେ'ତ କରି ନ ହୁଅଇ
ଜୁଲୁମ ଯେତେକ ନ ପାରେ ସହି ।।୩।।

ଜୀବଦଶାରେ ମୁଁ ମୁକୁଳିବି କେମନ୍ତେ
ଜଗନ୍ନାଥ ପଥ ଦିଅ ବତାଇ
ଜଳାଶୟୁ ଭିବ ଜଗତପତି ହେ
ଜାଲପାଦ ପରି ଗମଇ ମୁହିଁ ॥୪॥

ଜଳବିମ୍ବ ପରି ଜୀବନ ନାଟିକା
ଯାମ ଜଳବାୟୁ ନିଏ ଉଡ଼ାଇ
ଜମାଖର୍ଚ୍ଚ ଯେତେ ପଦେ ନିବେଦୁଛି
ଯୋଡ଼ ହସ୍ତେ ଧ୍ରୁବ କୃପା ଇଚ୍ଛଇ ॥୫॥

**

**

# ଏଇ ମରତଭୂମେ

**ହରେକୃଷ୍ଣ ଜେନା**

(ବିଂଶ ଶତାବ୍ଦୀ)

[ରାଗ-ରାମକେରୀ]

ଜଗତଜନଙ୍କ ଦର୍ଶନ ଲାଗି ଆସିଛ ତୁମେ
ମୋର ପ୍ରିୟତମ ଠାକୁର ଏଇ ମରତଭୂମେ ॥୧॥

ଯେତେ ପାପୀତାପୀ ଉଦ୍ଧାର ହେଲେ ନାମକୁ ଜପି
ତୁମରି ନାମ ସ୍ମରଣରେ ଯୁଗଯୁଗ କଳପି ॥୨॥

ପୁରାଣ ପୃଷ୍ଠାରେ ପଢ଼ିଛୁ ସୁଦାମାର କାହାଣୀ
ତା' ଦୁଃଖ ଦୁର୍ଦ୍ଦଶା ଟାଳିଲ ତାଙ୍କ କୃପା ସୁହାଣୀ ॥୩॥

କୁବୁଜାର କୁଜ ଲିଭାଇ ତୁମେ ତୁମରି ହାତେ
ଅହଲ୍ୟା ତାରିଛ ପଥରୁ ପୁଣି ସେ ପଥପ୍ରାନ୍ତେ ॥୪॥

ଧ୍ରୁବ ପଦ ଦେଲ ଧ୍ରୁବଙ୍କୁ ଏଇସାରା ସଂସାରେ
ପ୍ରହ୍ଲାଦ ଆହ୍ଲାଦ ଆଣିଛ ନରସିଂହାବତାରେ ॥୫॥

ଯାଜ୍ଞସେନୀ ଲଜ୍ଜାନିବାରି ରଖିଲ ତା' ମହତ
ତୋ'ଛଡ଼ା ଏପରି ଠାକୁର ଅଛୁ କିଏ କହତ ? ॥୬॥

ତୋ'ଭଳି ଠାକୁର ପାଖରୁ ମିଳୁ ପଦଏ ଆହା
ବିପଦ ଆପଦେ ତୁହିତ ମାତ୍ର କେବଳ ସାହା ॥୭॥

ଏ ଜୀବନ ଯାଉ ଯାହରେ ଯାଉ ତୋତେଇ ନାଥ
ହରେକୃଷ୍ଣ ମାଗେ ମାଗୁଣୀ ରଚି ତୋ' ନାମେ ଗୀତ ॥୮॥

**

**

# ଟାଣି ନିଅ ସଖୀ ରଥର ଦଉଡ଼ି

**ଶ୍ରୀମତୀ ଶାନ୍ତମଞ୍ଜରୀ ପଟ୍ଟନାୟକ**

(ବିଂଶ ଶତାବ୍ଦୀ)

ଟାଣିନିଅ ସଖୀ ରଥର ଦଉଡ଼ି, ଗଡ଼ିଗଲୁ ଧର୍ମଚକ
କୋଟି ଜନମନ ଗୋପନ ଗହନ ଦଳି ଦେଉ ଦୁଃଖ ଶୋକ ॥୧॥

ବଡ଼ଦାଣ୍ଡେ ବଡ଼ଦେଅଁ ଦରଶନେ ବଡ଼ସାନ ସବୁ ଏକ,
ତଉଲିବା ତୁଳାଦଣ୍ଡି ଧର କେହୁ ଗୁଡ଼େ ନାହିଁ ତା' କୁହାଟ ॥୨॥

ଯାନ୍ତ୍ରିକ ଯାନେ ଗର୍ବିତପଣେ ବଡ଼ ବୋଲାଇବା ପଣ
ଖାଟେ ନାହିଁ ସଖୀ ନୀଳଚକ୍ର ତଳେ, ଠାରଇ ସାମ୍ୟ ନିଶାଣ ॥୩॥

ଚକାଡୋଳା ଆଉ ବିଜୟ ରଥରେ ଶୁଣିବେ ବୁଭୁକ୍ଷୁ ଡକା
ତାଳଧ୍ୱଜ ପଛେ ଗୁହାଁରିବେ ଅବା ପଙ୍ଗୁ ବିକଳାଙ୍ଗ କଷା ॥୪॥

ତୋ'ମନ ତା'ମନ ମୋ'ମନ ବେଦନା ବୁଝିବ ଏ ପର୍ବ ଦିନେ,
ଜଗମାଲ୍ଲ ସେବ ଜଗମାଖୀ ହେଲେ ଜରେଙ୍ଖିବା କା କାରଣେ ॥୫॥

ତଥାପି ନବୁଝେ ଅଧୀର ଅନ୍ତର କାହିଁ ପେଟଯାଏ ଲାଗି
ଦାନା କନା, ଗୁଇ ଗୁହାରିବା ପାଇଁ ସ୍ଖଳନ୍ତ ଅଣ୍ଟା ସଳଖି ॥୬॥

କେ କେତେ ପାଇଛୁ କେ କେତେ ନେଇଛୁ କିଏ ବଢ଼ାଇଛୁ ବାଉ
ମାଗି ମାଗି ଯେବେ ଜରଣ ହୋଇଲ ଧନେ ମୋ ନ ବଳେ ଚଉ ॥୭॥

ଲୋଡ଼ା ନାହିଁ ମୋର ଧନ ମାନ ଯଶ ପଉରୁଷ-ଏ ଜଗତେ
'ଜନହିତେ' ଅର୍ଥେ ଯାପିବି ଜୀବନ ଏ କୈବଲ୍ୟ ଦିଅ ହାତେ
ଜଗନ୍ନାଥ ହେ
"ନରଚରଗଂଜନ ଦୂରିତ ନାଶିବ" ଯେସନେ ଯିବ ପରତେ ॥୮॥

**

**

## ମହାବାହୁ ହେ

### ଶ୍ରୀମତୀ ଶାନ୍ତିମଂଜରୀ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

କରମ ଦାଣ୍ଡରେ ବାଟ ଚାଲିବାକୁ
ବଳ ପାଉନାହିଁ ପ୍ରଭୁ ହେ
ଯେତେ ସେ ଅମଙ୍ଗା-ଖେଣ୍ଡା ମାଡ଼ି ମାଡ଼ି
ଥକି ପଡ଼ିଲିଣି ପଦେ ହେ ॥୧॥

ଏ ଜୀବ ପଞ୍ଜୁର ଖେଳଘର ପରି
(ମୁଁକି) ଅଭଙ୍ଗା କଣ୍ଢେଇ ତୁମର ?
ଭାଜିବାକ କେବେ, ହଜିବାକ କେବେ
(ଖାଲି) ଯାତନା ସହିବି ଅପାର ॥୨॥

ସୁଖ ବୋଲି ଯେଉଁ ଜାଲ ବିସ୍ତାରିଛ
ଜାଣିଲି ମାୟା ଆବରଣ
ଚରଣ-ପୟୋଧି ଛାଡ଼ି ଜାଲେ ପଡ଼ି
ଛଟପଟ ମୀନ ପରାଣ ॥୩॥

ଜୀବନ ହାଟରେ ଯାହାମୁଁ ବିକିଲି
ନ ପାଇଲି ତା' ପାଉଣା
ଅସରନ୍ତି କାଲ କେମନ୍ତେ ମୁଁ ଯାପିବି ?
(ଏଣେ) ଶୁଖିଛି ପେଟେ ଓଦାକନା ।

ମେଣ୍ଟି ନାହିଁ ଆଶା, ମେଣ୍ଟି ନ ପିପାସା,
କଣ୍ଟି ଲଗି ତୃଷା ତଣ୍ଟିକ
ଶୂନ୍ୟ ମୋର ଥାଲ ଶୂନ୍ୟ ମୋ ପିଆଲା
ନ ଚାହିଁଲ ଦିନେ ଅଣ୍ଟିକ ॥୫॥

ଉଚାଙ୍ଗ ସ୍ୱରରେ ତୁମ ନାମ ଯେବେ
କରିବ ସଙ୍ଗୀତେ ଆଲାପ
ଏ ମୂଢ଼ ଜଗତ ନ ବୁଝିବ ମୂଲ୍ୟ
ବୋଲିବ ପାଗଳ ପ୍ରଲାପ ॥୬॥

ବେଲ ବୁଡ଼ିଗଲା ବୟସ ଗଡ଼ିଲା,
ହଜିଛି "ସଂସାର ସମ୍ବଳ"
ମହାବାହୁ ମେ ଆଶ୍ରି ଦିନ ନ ସରିଲା
କହ ମୁଁ ହୋଇବି କାହାର ? ॥୭॥

ଏ ଘୋର ଅନ୍ଧାରେ ପଥ ନ ଦିଶଇ
କି ବୁଦ୍ଧି କରିବି ପ୍ରଭୁ ହେ
ତଇଲ ସରିଲା ସଳିତା ଜଳିବ
ଗ୍ରାସିବ ବାର୍ଦ୍ଧକ୍ୟ ରାହୁ ହେ ॥୮॥

ବେଲ ଥାଉଁ ଖେଲ ସାଙ୍ଗ ଚାହିଁ ଜାଲେ
ଆକୁଳ ଅଶ୍ରୁଳ ନୟନା
ଅନ୍ତର୍ଯ୍ୟାମୀ ନାଥ ଅନ୍ତର ବେଦନା
ଘେନା ନ କରଣ ବଞ୍ଚନା
ମହାବାହୁ ହେ
ଆହା ବୋଲିବାକୁ ସାହା ନାହିଁ ମୋର
ଅନ୍ତିମେ ଚରଣେ କାମନା ॥୯॥

**

**

# ଅନାଦି ଅବ୍ୟକ୍ତ

**ଅଗଣି ଚରଣ ମହାପାତ୍ର**

( ବିଂଶ ଶତାବ୍ଦୀ )

[ ରାଗ-କଲହଂସ କେଦାର ]

ଅନାଦି ଅବ୍ୟକ୍ତ ହେ ଶ୍ରୀ ଜଗନ୍ନାଥ ।
ଅଛ ଆରତେ ଆଜ୍ଞା ଡାକଇ ଭୃତ୍ୟ ହେ ।
ଅଖିଳ ଦୁର୍ବିପାକ ମୋଚନ ପାଇଁ ।
ଅନନ୍ତ ଦୟାମୟ ଯେଣୁ ଗୋସାଇଁ ହେ । ।।୧।।

ଆସିଲା ବେଳେ ଘୋଟି ଦଶମ ଦଶା !
ଅଛ କେ ତୁମ୍ଭ ବିନେ ନାହିଁ ଭରସା ହେ ।
ଆଶ୍ରିତ ଜାଣି ଆଗୁଁ ଜଣାଏ ହାଦେ ।
ଆରତ ଭଞ୍ଜନ ତୋ କଞ୍ଜ ଶ୍ରୀପଦେ ହେ । ।।୨।।

ଇଅଁ ଲାଦି ସ୍ନାୟୁର ସରଲେ ନିସ୍ବା
ଇତର ନ ମଣିବୁ ଇନ୍ଦ୍ରିୟ ନାହ୍ନା ହେ ।
ଇତସ୍ତତଃ ଏ ଜୀବ ନ ହୋଇ ଯେହ୍ନେ ।
ଇଛ ଭଜିବ ତବ ରଙ୍ଗ ଚରଣେ ହେ । ।।୩।।

ଇସିତେ କୃପା କଲୁ ହେ ବ୍ରହ୍ମରାଣୀ
ଈଶାନ କରୁଁ ଶିର ପଡ଼ିଲା ଖସି ହେ ।
ଈଶ କ୍ଲେଶ କ ତହୁଁ ମୋ ଦୁଃଖ ହେତ ।
ଈକ୍ଷଣ ନିକ୍ଷେପିଲେ ହୋନ୍ତି କୃତାର୍ଥ ହେ । ।।୪।।

ଉଷାନାଥ ଜନକ ଜନକ ବଚନେ
ଉଦ୍ଧାର କର୍ତ୍ତା ନାହିଁ ତିନ ଭୁବନେ ହେ
ଉତ୍ତମ ବାକ୍ୟ ଏହା ବଦନ୍ତି ବୁଧେ ।
ଉତ୍ସର୍ଗେ ଉତ୍ତମାଙ୍ଗ ତେଣୁ ଶ୍ରୀ ପଦେ ହେ ॥୫॥

ଊର୍ଣ୍ଣନାଭିର ସମ ନକର ଭାମ ।
ଊନ ସେ କୀଟ ଜାତି ନ ତୁଟେ ଭ୍ରମ ହେ
ଊନବଂଶ ଏ କରୁ ଶୂନ ବିନାଶ ।
ଊଣା କରୁଣା ମୋତେ ତଥା ଅନନ୍ତ ହେ ॥୬॥

ଋକ୍ମିଣୀ ପୂର୍ଣ୍ଣ କାମ ଦ୍ୱାରକା ପତି ।
ଋକ୍ଷ କପି ମେଳଆ ରକ୍ଷ ଆରତି ହେ ।
ଋଷି ଜନ ମାନସ ମାନସ ହଂସ ।
ଋଣୀ ତୋ କରୁଣାର ହେଉ ଏ ଦାସ ହେ ॥୭॥

ଋତ ଏ କଥା ଯେବେ ସ୍ମୀତ ସୁତ ।
ଋକ୍ଥ ପ୍ରାପତ ତୋର ହୋଇ ଆଶ୍ରିତ ହେ ।
ଋତ ହେ ଥିବା ଆଉ ତେମନ୍ତ କୃପା
ଋଜୁ ହୃଦୟେ ଆଜ ନ ଦିଶେ କମ୍ପା ହେ ॥୮॥

ଲୂତାକୁ ଲୁହା ସମ କର ବା ଖ୍ୟାତି ।
ଲୁଚିଇ ଅଙ୍ଗ ଏ ମୋ ଗ୍ରୁର ଦୁର୍ଗନ୍ଧ ହେ ।
ଲୁଟିଲ ଅବା କଏ କୃପା ଭଣ୍ଡାର ।
ଲୁବ୍ଧକ ତୋପଦ କ ତେଣୁ ନିଷ୍ଠୁର ହେ ॥୯॥

ଏଣୀ ରକ୍ଷଣେ କାନ ଶୁଲୁତ ତେର ।
ଏବେ କି ସେ କରୁଣା ଗଲଣି ସରି ହେ
ଏତେ ସଙ୍କଟେ ଯେବେ ନ ଶୁଭେ ଡାକ
ଏଥର ଡାକ କି ହେ ପାଷାଣ ମୂକ ହେ ॥୧୦॥

ଐରାବତ ସମ ଏ ଧନ ଯୌବନ
ଐଶ୍ୱର୍ଯ୍ୟାଦ କ୍ଷଣକେ ହୋଇବେ ଲୀନ ହେ ।
ଐରାବତ ଆରୋହୀ ପଦେ କି ସୁଖ ।
ଐଶାନ୍ୟ ପତି ପ୍ରଭୁ ହେଲେ ବିମୁଖ ହେ ॥୧୧॥

ଓଁ କାର ମୂଳ ମନ୍ତ୍ର ହେ ଚକ୍ରଧର ।
ଓଗାଳିବାର ବେଳେ ଯମ ଡଗର ହେ ।
ଓଘ ଅଘ ବିନାଶି ହେବୁ ସପକ୍ଷ ।
ଓଷଧୀଷ-ସୁନ୍ଦର-କଳା ଶ୍ରୀମୁଖ ହେ ॥୧୨॥

ଔଷଧ ଜନେ ହରୁ ସକଳ ବ୍ୟାଧି ।
ଔଦ୍ଧତ୍ୟ ନାଶି ପୂର୍ଣ୍ଣ ଦିଅ ଏ ବୁଦ୍ଧି ହେ
ଔତ୍ସୁକ୍ୟ ଆସୁ ମନେ ଅନବରତେ ।
ଔତ୍ତାନ ପାଦୀ-ମୋକ୍ଷ ? ତୋ ପଦ ପ୍ରାପ୍ତେ ହେ ॥୧୩॥
**

**

## "ଅଚନା ଭଜନ"

### ହୃଷୀକେଶ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

କଳପ ବଟର ତଳ    ଆମ୍ବ ଭକତ ସମ୍ବଳ
ନଟବର ଦରଶନ ମନ ଉଚ୍ଛନ୍ନ
ଜନମ ଜନମ ଆଶ    ନଟବରର ପରଶ
ଆରତ ରତ ଭକତ ନୟନ
କର କର ମନ ଭଜନ
ଭକତ କହଇ ନଟବର ଶରଣ ।।୧।।

ଘରଘର ଘରଘର    ରଥ ଗଡ଼ଇ ପଥର
ପରମ ଜଗତ ଧନ ରଥ ଉପର
ଘନଘନ ଛନଛନ    ଅକପଟ ଅପଘନ
କହଇ ଶରଣ ଅରଥର ଅଧର
ହସହସ ଭକତ ଧନ
ଦଲଦଲ ଭକତ ତ ଆରତ ମନ ।।୨।।

କମଳ ଦଳ ଅଧର    ଧର ଭଜନ ଆସର
ଆଚର ପରମ ମନ ନଟ ଚରଣ
ଦଶରଥର ଆଳସ୍ୟ    ଜନକ ତ ଯଶମସ୍ୟ
କରମ ଧରମ ବଳ ତବ ଜନମ
ଟଳଟଳ ନଟ ଆନନ
ଭକତ ନମଇଁ ଛଳଛଳ ନୟନ ।।୩।।

**

**

## ତୁମେ ପତିତପାବନ

### ହୃଷୀକେଶ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

ଆହେ ଜଗନ୍ନାଥ !
ଦୁଃଖ ମୋର ନାହିଁ କିଛି
କି ଅବା କରିବ ଜଣା
ତୁମକୁ ଜଗତ ନାଥ ॥୦॥

ତୁମେ ପତିତ ପାବନ ପତିତ ତାରଣ ହରି
ତୁମକୁ ସ୍ମରିହେଁ ପତିତ ଏ ନର ଶରୀର ଧରି
କାରଣ ତାରଣ ପ୍ରଭୁ ଦେଖାଅ ତାରଣ ପଥ ॥୧॥

କରମ ରଜ୍ଜୁରେ ବନ୍ଧା ମାନବ ଶରୀର ପାଇ
ଏ ଯାଏଁ କରମ ତୁମ ପାଦେ ସମରପି ନାହିଁ
ମାୟାରେ ପଡ଼ି ଭୁଲିଛି ମୋର ପୁରୁବ ଶପଥ ॥୨॥

ତୁମକୁ କି ଜଣାନାହିଁ କି କାମନା ଅଛି ଧରି
ଲୋଡ଼ା ନାହିଁ ବଇଭବ ତୁମ ନାମେ ହେବି ପାରି
ତୁମେ ପରା ତାତମାତ କ୍ଷମା କରୁଛ ଅନାଥ ॥୩॥

**

**

## ଜଗତର ପ୍ରଭୁ ହେ ଜଗନ୍ନାଥ

### ଓଜନା ଅମରେନ୍ଦ୍ର ପ୍ରତାପ ବାଘସିଂହ

। (ବିଂଶ ଶତାବ୍ଦୀ)

ଜଗତର ପ୍ରଭୁ ହେ ଜଗନ୍ନାଥ
ତୁମକୁ ଡାକେ ମୁଁ ଶରଣାଗତ ॥୧॥

ଆଷାଢ଼ ମାସରେ ରଥ ଯାତରା
ରଥ ପରେ ବିଜେ କରିଛ ପରା ॥୨॥

ଭାଇ ଭଉଣୀଙ୍କୁ ଘେନି ସଙ୍ଗରେ
ଯାତରା କରୁଛ ଗୁଣ୍ଡିଚା ଘରେ ॥୩॥

ତବ ଦରଶନ କରିବା ଆଶେ
ଜନତା ରହିଛି ମନ ଉଲ୍ଲାସେ ॥୪॥

ତବ ଦରଶନେ କଳୁଷ ଦୂର
ପୁଣ୍ୟେ ପୁରି-ଉଠେ ହୃଦୟ ପୂର ॥୫॥

ଅକିଞ୍ଚନ ମୁହିଁ ଏ ଧରାବାସେ
ଧାଇଁ ଆସିଅଛି ଆଶ୍ରୟ ଆଶେ ॥୬

ମାଗୁନାହିଁ ମୁହିଁ ପାର୍ଥିବ ଧନ
ମାଗୁଛି କେବଳ ତୁମ ଦର୍ଶନ ॥୭॥

ତୁମ ଦରଶନେ ଲଭିବ ଶାନ୍ତି
ଏତିକ ମୋହର ଆତ୍ମାର ପ୍ରୀତି ॥୮॥

ରହିଛି ଅବୋଧ ଅମର ମୁହିଁ
ଶ୍ରୀମୁଖକୁ ତବ ରହିଛି ଚାହିଁ ॥୯॥

**

**

# ତୋତେ ଡାକିବି କେତେ ?

**ବଣଭ୍ରାନନ୍ଦ କର**

(ବିଂଶ ଶତାବ୍ଦୀ)

[ରାଗ-ରାମକେରୀ]

ଜଗତ ଠାକୁର ଜଗାରେ ତୋତେ ଡାକିବି କେତେ
ମନ ମୋ କୁରୁଳ ହଉଛି ତୋତେ ଡାକୁଛି ଯେତେ ॥୧॥

ତୋତେ ଡାକଦେଲେ ପଦାଏ ଯାଏ ଦୁଃଖ ଦୁର୍ଦ୍ଦଶା
ସେଥିପାଇଁ ତୁହି ଜଗାରେ ସଭିଙ୍କର ଭରସା ॥୨॥

ତୁହି ଏକା ଗଣ ଠାକୁର ତେଣୁ ପୂଜନ୍ତି ଗଣ
ତୁହି ବ୍ରହ୍ମାଣ୍ଡର କରତା ତୋର ଏ ବଡ଼ ପଣ ॥୩॥

ସ୍ନାହାନ ମଣୋହି ପହଣ୍ଡ଼ି ବେଶ ଭଲକି ଭଳି
ତୋହର ମହିମା ଯେତେକ କଏ ପାରିବ କଳି ? ॥୪॥

ଗାଳି ସହୁ ପୁଣି ନ ସହୁ କା'ର ଗରବ ଟାଣ
ଜାଣ କରୁ ବୋଲି ଆରତୁଁ ନାମ ଆରତତ୍ରାଣ ॥୫॥

କହୁଛି କଥା ମୁଁ ପଦାଏ ତୋତେ ପକାଇ ରଣ
ନବଜା କାହାଣ ଜୀବନେ ନଗଣାର ବଖାଣ ॥୬॥

ସବୁରି ପରାଣୁ ଲକ୍ଷରେ ଯେତେ ଯାତନା ମସି
ଆଶାର ଆନନ୍ଦ ସବୁରି ପ୍ରାଣେ ଯାଉ ପରଶି ॥୭॥

ହୃଦସ୍ଥ ଶଙ୍ଖାଳି ହେଉରେ ତୋର ଭଜନ ଗୀତ
ତୋହରି ଚିନ୍ତା ଚିନ୍ତନରେ ଯାଉ ଜୀବନ ବିତ ॥୮॥

ମାଗୁନାହିଁ ଧନ, ରତନ ତୁମ ପାଖରୁ କିଛି
ମାଗ ଖାଲିଟିକେ ଗୁହିଁଆ ଅଳି କରଇ ବିଚ ॥୯॥

**

**

# ଚକାଡୋଳ ଭଲ୍‌ଲୀଳା


## ସଂଗ୍ରାମ କେଶରୀ ମହାପାତ୍ର


(ବିଂଶ-ଶତାବ୍ଦୀ)

ଚକାଡୋଳା ଭଲ ଲୀଳା ଲଗାଇଦେଲୁ
ଭାବ ବିନୋଦିଆ ସାହା ମହତ ନେଲୁ ॥ ଘୋଷା ॥

ରତ୍ନ ସିଂହାସନେ ବସି
ବଡ଼ଦେଉଳରେ ବସି
ଗରିବର ଗୁହାରିକି ବଧିର ହେଲୁ ॥୧॥

ଷାଠିଏ ପଉଟି ଭୋଗ
ଖାଇ ଧରେ ନାହିଁ ରୋଗ
ନିଦକେ ତୁ ଶୋଇ ସଦା କଷଣ ଦେଲୁ ॥୨॥

ତୋ'ଠାରେ କଣ ଭରସା
ହେଲି ଜଗା ଲୋକ ହସା
ଦାତାପଣ ଜଣାଗଲା ଏତିକି ବେଳୁ ॥୩॥

କହ କଲା ନାରାୟଣ
ସତେ ପତିତ ତାରଣ
ବିପଦ ବାରଣ କିବା ମୋ ସାଥେ ଖେଳୁ ॥୪॥

ଜୀବନେ ନ ହେଲା ନାହିଁ
ମରଣେ ରହିଲି ଗୁହିଁ
ଶରଣେ ଠକିବୁ ନାହିଁ ମୋ ପ୍ରାଣ ନେଲୁ ॥୫॥

**

**

# ଯାହା ଇଚ୍ଛା କର

## ବଂଶୀଧର ମିଶ୍ର (କ)

(ବିଂଶ ଶତାବ୍ଦୀ)

ଦୀନବନ୍ଧୁ କରେ ଖେଳେଣି
ଯାହା ଇଚ୍ଛାକର ତୁ ଚକ୍ରପାଣି ।।ଘୋଷା।।

ଧନମନ ମୋର    ସବୁ ଶ୍ରୀ ପଦ୍ମର
ଅର୍ପଣ କରୁଛୁ ତୋ ମନ ଜାଣି
ଦୟାର ସାଗର    ଆହେ ନଟବର
ମୋ ମନମନ୍ଦିର ମଉଡ଼ମଣି ।।୧।।

ଆହେ ଦୟାମୟ    ଲାଗେ ମତେ ଭୟ
ଦେଖି ତୋର ଚକାନେତ୍ର ଚାହାଣୀ
ସବୁତ ତୋହର    କିଛି ନୁହେଁ ମୋର
କି ଦେଇ ତୋଷିବି କହ ମୁଁ ପୁଣି ।।୨।।

ଜାଣିନ ହିଁ ସ୍ତବ    ନାହିଁ ମୋର ଭାବ
କପଟ ଡାକିବ ମନ୍ତ୍ରରେ ବାଣୀ
ହୋଇବୁ ସଦୟ    ପ୍ରଭୁ ଦେବରାୟ
ଯୋଡ଼ି ଜଣାଉଛୁ ମୋ ବେଣୁପାଣି ।।୩।।

ନୀଳାଚଳ ଧାମେ    ବସିଛୁ ଆରାମେ
ସାଙ୍ଗ ହୋଇ ବଡ଼ଭାଇ ଭଉଣୀ
ପତିତପାବନ    ହେ ମଧୁସୂଦନ
ଘୋଟି ଆସୁଛୁ ତ ଅମାରଜନୀ ।।୪।।

ନ ବହୁବ ଶେଷ    ଆହେ ହୃଷୀକେଶ
ତବ ଶ୍ରୀଚରଣେ ଏତେ ମାଗୁଣି
ଦୀନ ବଂଶୀଧର    ତୋ ସେବା ମାତର
ତା' ଜୀବନେ ହେଉ ଅମୂଲ୍ୟ ମଣି ।।୫।।

**

**

# ଭଜମନ ଚକା ଆଖି

## ଶ୍ରୀମତୀ ପ୍ରମିଳା ନାୟକ

(ବିଂଶ ଶତାବ୍ଦୀ)

ଚକାଡୋଳା-ଚକାଆଖି
ଭଜମନ ଭଜରେ
ମୋର ଗୁରୁ ଅଟୁ ତୁହି
ତୋ ଗୁରୁ ସେ କୃଷ୍ଣରେ ।।ପଦ।।

ସତ୍ୟପଥେ-ଧର୍ମପଥେ
ନତ ତାଙ୍କୁ ହେଜରେ,
ଅସାର ସଂସାରେ ସାର-
ସୁଖ ମନ ଭୁଞ୍ଜରେ
ଦୁଇଦିନ କୁଣିଆ ତୁ
ଏ ସଂସାରେ କୃଷ୍ଣରେ...
ଯିବେ ନାହିଁ ସଙ୍ଗେ କେହି
ମଣ୍ଡ ଯା'ରେ ଭଜରେ ।।୧।।

ଦୁରିତ ନାଶନ ପ୍ରଭୁ ସେ ଗରବ ଗଞ୍ଜରେ,
ସେ ପଦ-ପଙ୍କଜ ଧ୍ୟାୟୀ ବଭୁ ପ୍ରେମେ ମଜ୍ଜରେ,
ଦାରୁଭୂତ ମୁରାରି ସେ ଲୀଳା ତାଙ୍କ ହେଜରେ,
ପତିତ-ପାବନ ନାମେ ବଳୀୟାର ଭଜରେ ।
ଅରୂପ ସେ ରୂପପାଏ
ମନ ସରସୀଜରେ,
ଗୁରୁ-ଶିଷ୍ୟ ପୀରତିରେ
କାଳ ଗାଏ ଲଜରେ ।।୨।।

**

**

## ଧ୍ରୁବକୁ ନକଣ୍ଠ ଅଧ୍ରୁବକୁ ଡର

**ଶ୍ରୀମତୀ ପ୍ରମିଳା ନାୟକ**

(ବିଂଶ ଶତାବ୍ଦୀ)

ତୁମ ନାମେ ପ୍ରଭୁ ! ଉଡ଼ୁଛି ନେତ,
ବୋଲଉଛ ପରା ଜଗତନାଥ···॥ପଦ॥

କି ମନ୍ତ୍ରସକାଳେ ତୁମ ନାମ ଗାଇ
ପାପୀ ହୋଇଯାଏ ପାପ-ମୁକତ,
କଇବଲ୍ୟ ଖାଇ ଭକତ ନାଚଇ
ମୁଣ୍ଡେ ବୋଲାବୋଲି ହୋଇ ତା ହାତ ।

ଷାଠିଏ ପଉଟି ତୁମ ପାଇଁ ଖଞ୍ଜା
ବାରମାସେ ହୁଏ ତେରଟି ଯାତ,
ଗରବ ଗଞ୍ଜନ ଗରବ ବହନ୍ତ
ଚଳାଉଛ ସୁଖେ ସଂସାର-ପୋତ ॥୧॥

ତେବେ କିପାଁ ଜନ୍ମ ଏଇ ସଂସାରେ
ରହିଅଛି ପାପ-ପଙ୍କିଳ ପଥ ।
ମଣିଷର ମୂଲ୍ୟ ପୋକ-ମାଛି ତୁଲ
ନମିଳଇ ପ୍ରଭୁ ! ମୁଠିଏ ଭାତ ।

ହୋଇ କୋଳାକୋଳି ବଡ଼ଦାଣ୍ଡ ଧୂଳି
ତୁମେ ଆମେ ପରା ବସିଛୁମିତ ।
ଏବେ ଆପଣାର ହୋଇ ଭାଦପର
ବିଚାର କର କି ପ୍ରଭୁ ଉଚିତ ॥୨॥

ଭାବକୁ ନିକଟ ଅଭାବକୁ ଦୂର
ମନ-ବୃନ୍ଦାବନେ ରହାସ-ଯାତ,
ପ୍ରେମେ ହୋଇ ବାଇ ସୁଖ ଭୁଞ୍ଜୁଥାଇ
ବୋଲାଏ ଏ ଭବେ ତୁମ ଭକତ ।

ମରଣକୁ କର ଅମୃତ-ସୋପାନ
ଦେଖାଅ ପ୍ରଭୁ ହେ ଆଲୋକ ପଥ,
ପୁଣ୍ୟ-ମହିମାରେ ପୂର ଉଠୁ ପ୍ରାଣ
ଛୁର ସୁଖ-ଦୁଃଖ ସୀମା ଅତୀତ ॥୭॥

**

**

# କଳା ଶିରୀ ମୁଖ ଦେଖରେ

## ପଣ୍ଡିତ ଚନ୍ଦ୍ର ଶେଖର ମିଶ୍ର

(ବିଂଶ ଶତାବ୍ଦୀ)

[ଚମ୍ପୂର "ଙ" ଗୀତ ବୃତ୍ତରେ]

କଳା ଶ୍ରୀ ମୁଖ ଦେଖରେ,
ଲୋଚନ, ପତିତ ଜନସ୍ଙ୍କ ପ୍ରତି କି ସଦୟ
ଗରୁଡ଼ ଖମ୍ବର ପାଖରେ ।।ପଦ।।

କଳୁଷ ଯୁକତ ଦ୍ରବ୍ୟରୁ ବିରତ
ହୋଇଣ ତହିଁରେ ଲଖ ।
ବିପନ୍ନ ମାନବ ପ୍ରତି ଦୟାଭାବ
ଜଷ୍ଟଲେ ତହିଁରୁ ଶିଖରେ ।।୧।।

ସେ ପଙ୍କଜ ଆଖି ଯୁଗଳରେ ଲଖି
ମକରନ୍ଦ ବିନ୍ଦୁ ସୁଖ
ଏକ ଧ୍ୟାନେ ରହି ଦେଖୁଥିଲେ ରୁହି
ନ ଲାଗିବ ଶୋଷ ଭୋକରେ ।।୨।।

ଅପାର ସଂସାର ଗଭୀର ସାଗର-
ଜଳେ ନ ଲଭିବୁ ଦୁଃଖ
ଆନନ୍ଦ ସରିତ ମଧ୍ୟରେ ମଜ୍ଜିତ
ହୋଇଣ ପାଇବୁ ଦୁଃଖ ।।୩।।

ବନ୍ଧୁ ପାଦପଦ୍ମେ ସ୍ବଶବର୍ଗ ସଦ୍ମେ
ମୋହର ମନକୁ ଯୋଖ
ତୋହର ଦୟାବଳେ ଜନ୍ମେଁ ଯିବ ହେଲେ
ଚନ୍ଦ୍ରର ସକଳ ଦୁଃଖରେ ॥୪॥

**

**

## ହେବ ସିନା ବାହାଦୁରୀ

### ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର

(ବିଂଶ ଶତାବ୍ଦୀ)

[ଖେଳ ଖଞ୍ଜଣୀଟ ଦୁଣା-ବୃତ୍ତେ]

ଜଗତ କରତା ହରି
ଅଧମ ତାରଣ ଦୁରିତ ନାଶନ ଦୀନବନ୍ଧୁ ଦଇତାରି
ଜଗନ୍ନାଥ, ଜଗତ କରତା ହରି ॥ ଘୋଷା ॥

ଅଦ୍ଭୁତ କୃତି ଦେଖାଇଛ କ୍ଷିତି
ମଧ୍ୟରେ ସରବ ଜନେ
ଜାହିଁକି ମୋ ପାଇଁ ସିନ୍ଧୁସୁତା ସାଇଁ
ଦୟା ନ ବହୁଛ ମନେ ॥୧॥

ବିପଦ ଗଞ୍ଜନ ଦାରିଦ୍ର୍ୟ ଭଞ୍ଜନ
ସୁଦାମାର, ରମାବର
ଅହଲ୍ୟା ପାଷାଣ ମୂରୁଖ ତାରଣ
ତୁମ୍ଭେ ସର୍ବ ଭୟ ହର ॥୨॥

ନକ୍ରର ଗରସୁଁ ଚକ୍ରପେଣି ଆଶୁ
ରଖିଲ ଗଜକୁ ବଳେ
ବିପଦ ପତିତା ଦ୍ରୁପଦ ଦୁହିତା
ଲଜ୍ଜା ନିବାରିଲ ହେଲେ ।।୩।।

ପତିତ ପାବନ ବାନା ବନ୍ଧିଅଛ
ବନ୍ଧୁ ପତିତଙ୍କୁ ତାରି
ଚନ୍ଦ୍ରପରି ମନ୍ଦା- ପତିତେ ତାରିଲେ
ହେବ ସିମା ବନ୍ଧାଦୁସ୍ଥି ।।୪।।

**

**

# କହିବାକୁ ଲାଜ

**ଶୁଭ ନାରାୟଣ ସ୍ୱାଇଁ**

(ବିଂଶ-ଶତାବ୍ଦୀ)

କହିବାକୁ ଲାଜ ଏ କଥାକୁ ଆଜ
ତୁମକୁ ମୋ ଚକାଡୋଳା,
ତୁମ ନାମ ଧରି ଭବେ ଯାଏ ହାରି,
ବୁଡ଼ି ଯାଉଛି ମୋ ଭେଳା ।।ପଦ।।

ହାତ ନାହିଁ ଦୁଃଖେ ଆଉଁଶି ଦେବାକୁ
ବୋଲଉଛନ୍ତି ଚଉବାହା,
ଗୋଡ ନାହିଁ କୋପେ ଠେଲି ଦେବା ପାଇଁ
ବଡ଼ ଆଚମ୍ବିତ ଆହା ।
କପରି ହୋଇଲି ତବ ପଦଧୂଳି
ଶରଧା ବାଲିରେ ଗୋଲା ।।୧।।

ବଡ଼ ଦାଣ୍ଡେ ପ୍ରଭୁ ବଡ ଦେଉଳରେ
ଭକତ ଜଣାଏ ପ୍ରେମେ,
ଉଡାଉଛ ବାନା ଯୁଗ ଯୁଗ ଧରି
କଳୁଷ ନାଶନ ନାମେ ।
ହେ ବଡ଼ ଠାକୁର କହେ କେବେ କିଆଁ
ନିଜ ମୁହେଁ କଳା ବୋଲା ।।୨।।

**

**

## ଗଢ଼ିଲ ଜୀବନ କମ୍ପା ?

### ଡକ୍ଟର କୁଞ୍ଜବିହାରୀ ଦାଶ

( ବିଂଶ ଶତାବ୍ଦୀ )

ଜଗତର ନାଥ ବୋଲି
ବୋଲିବି ମୁଁ କାହିଁକି ?
ଅନାଥ ମୁଁ ପଥ ପାଶେ
କଣ୍ଠ ଲୁହ ଜଳେ ଭାସେ
ତୁମର କି ମଥା ଘଲେ
ବଥାଏ ମୋ ପାଇଁ କି ? ॥୧॥

ବଡ ଦେଉଳରେ ବାସ
ଖିରୀ ପୁରୀ ପିଠା ଗ୍ରାସ
ରହେ ଦର ଉପବାସ
ତୁମେ ଦେଖ ନାହିଁକି ? ॥୨॥

ତୁମେ ଶୁଣ ସ୍ତୁତି ଗାନ
ମୁଁ ଶୁଣଇ ଅପମାନ
କୃପା କରେ ଏ ଦୁନିଆ
ମୋ ପଣ୍ଡିଲ ଛାଇକି ॥୩॥

ଡାକୁଚି ଚରଣ ଧରି
ମରଣ ନ ଆସେ ଡରି
ଗଢ଼ିଲ ଜୀବନ କଂପା
ଧୂଆଁ ଧୂଳି ଦେଇକି ? ॥୪

**

**

## ଆଲୋକ ଦୀକ୍ଷା

ଡକ୍ଟର କୃଷ୍ଣଚରଣ ବେହେରା

(ବିଂଶ ଶତାବ୍ଦୀ)

ଅନ୍ଧକାରେ
ପଥ ମୁଁ ହାରେଁ
ଦିଅ ଆଲୋକର ଦୀକ୍ଷା
ହେ ମହାଆଲୋକ ଶିଖା ॥

ଧର୍ମର ବେଶ ମୋ ଯାହାର ପଥ
ଅଟକ ଯାଉଛି କର୍ମର ରଥ
ଶତ ଦୋଷ ତ୍ରୁଟି
ମୋର ସୁନା ସୃଷ୍ଟି
ବିଫଳ କରାଏ
ଚୂର୍ଣ୍ଣ ମୋ ମନୋରଥ ॥

ଆଶା ଭରସାର ମହାଦୀପ
ତୁମେ ହେ ଜଗନ୍ନାଥ
ମାଗେଁ ଆଲୋକର ଭିକ୍ଷା
ଦିଅ ଆଲୋକର ଦୀକ୍ଷା
ହେ ମହାଆଲୋକ ଶିଖା ॥

**

**

# ସମର୍ପଣ

## ଡକ୍ଟର କୃଷ୍ଣଚରଣ ବେହେରା

(ବିଂଶ ଶତାବ୍ଦୀ)

ମୁଁ ଯେବେ ଭାବିଲି କିଛୁ
ସେ ହେଲା ତୁମର କଥା
ମୁଁ ଯେବେ ଗାଇଲି କିଛୁ
ସେ ହେଲା ତୁମର ଗାଥା ॥

ମୁଁ ଯାହା ଦେଖିଲି ଚଉପାଶେ ମୋର
ସବୁ ତୁମ ରୂପ ସରସ ମଧର
ଯେ ବୀଣା ଶୁଣିଲି ତହିଁ
ତୁମର ପୁଲକ-ବ୍ୟଥା ॥

ଜାଣ ହେ ଜଗତନାଥ
ତୁମେ ମୋର ଆପଣାର
ହୃଦୟ ପୀରତି ଦେଇ
କିଣିଛ ହୃଦୟ ମୋର,

ଜାଣେନା କେବେ ମୁଁ ଏ ମହାସଂସାରେ
ଲାଗିବି କି ନାହିଁ ତୁମର କାମରେ ।
ତଥାପି ଯା' ଅଛୁ ମୋର
ସଉଁପିଲି ନୋଇଁ ମଥା ॥

**

**

# ଅନାଥର ନାଥ

## ମୁରାରିମୋହନ ଜେନା

(ବିଂଶ ଶତାବ୍ଦୀ)

ଜଗନ୍ନାଥ ଜଗନ୍ନାଥ
ଆହେ ଜଗନ୍ନାଥ
ତୁମେ ସିନା ଏକା ପ୍ରଭୁ
ଅନାଥର ନାଥ ॥ଘୋଷା ॥

ରାଧିକା ମୋହନ ତୁମେ
କଦମ୍ବ ମୂଳିଆ
ତୁମେ ତ ଚକାଆଖିଆ
ଭାବ ବିନୋଦିଆ
ପୂତନାର ପ୍ରାଣଖିଆ
ଆହେ ଲକ୍ଷ୍ମୀକାନ୍ତ ॥୧॥

ଭୁଲା ଶେଯେ ଶୋଇ କିଏ
କେ ମାରୁଛି ମଜା,
କିଏ ଖାଏ ସରପୂଳି
କିଏ ଖାଏ ଖଜା ।
କା' ଭାଗ୍ୟରେ ଭଙ୍ଗା ଥାଳି
ଖାଲି ପେଜ ଭାତ ॥୨॥

ଲୋଡା ନାହିଁ ସନମାନ
ଅବା ଧନ ଜନ
ସବୁ ଦିନେ ଦିଅ ପ୍ରଭୁ
ତୁମ୍ଭ ଦରଶନ
ସେବକରେ ମୁରାରିର
ଜୀବନ କୃତାର୍ଥ ॥୩॥

**

**

# ହେ ନୀଳକନ୍ଦରବାସୀ

## ମୁରଲିମୋହନ ଜେନା

(ବିଂଶ ଶତାବ୍ଦୀ)

[ରାଗ-ଶ୍ରେଣୀ]

ଏ କାଂକାଳ ମାଳ ମାଳ          ଜୀବନେ କାଳକୁ କାଳ
କହୁଛୁ ନ କର ଆଳ କରେ ଅଥସ୍ଥ,
ହେ ନୀଳକନ୍ଦରବାସୀ          ଜଣାଉଛୁ ଦୁଃଖରାଶି
କୃପା-କଟାକ୍ଷରେ ନାଶି କର ହେ ଅସ୍ଥ ।
ତୁମ୍ଭଠାରେ ଏକା ମୋ ଲକ୍ଷ୍ୟ,
ତୁମ୍ଭ ବିନା କିଏ କହ ଦେବ ଅଭୟ ? ॥୧॥

କେତେ କେତେ ପାପୀ ତପୀ          ତୁମ୍ଭ ନାମ ଜପି ଜପି
ମୁକତି ପାଇ ତଥାପି ହେଲେ ଅମର,
ଆମ କପାଳରେ କାହିଁ          କରୁଣାର ବାରି ନାହିଁ ?
ହେ ନୀଳକନ୍ଦରସାଇଁ କହ ଖବର !
କରୁଅଛୁ ଏ ପ୍ରଶ୍ନବାରୀ
ମୁରଲି ତୋ' ପାଦେ ତାର ମାନସ ଆପି ॥୨॥

**

**

# ଭଜ ରେ ଅବୁଝା ମନ

## ମୁରଲୀମୋହନ ଜେନା

(ବିଂଶ ଶତାବ୍ଦୀ)

[ମଣିମା ଶୁଣିମା ହେଉ ଗରବ ଡାକ-ବୃନ୍ଦେ]

ଭଜ ରେ ଅବୁଝା ମନ ଚକା ନୟନ,
ଭଜିଲେ ପାଇବୁ ଧନ ସାର ଅୟନ ।।ପଦ।।
ଯେତେ ଯେତେ ଭୟ ଭ୍ରାନ୍ତ
ଜୀବନେ ଯେତେ ଅଶାନ୍ତ,
ତୁଟିବ ରେ ନିମିଷକେ ସତ୍ୟ ବଚନ ।।୧।।

ପାପ ତାପ ହେବ କ୍ଷୟ,
ହେବୁ ଅମର ଅକ୍ଷୟ;
ଅମରେ ଲେଭିବୁ ପଦ ମିଥ୍ୟା ନ ମଣ ।।୨।।

ଚକା ନୟନ ଗୁହାରୀ
କର ଜୀବନ କାହାଣୀ
ଗାଆଣି କରେ ମୁରଲୀ ସେ ଦୀନଜନ ।।୩।।

**

**

# ଭବ ବାଉଳା ରେ

## ମୁରଲି ମୋହନ ଜେନା

(ବିଂଶ ଶତାବ୍ଦୀ)

[ ମନ କଳ୍ପବୃକ୍ଷରେ ପାଇଲୁ ଧନ ନ ହଜା-ବୁଡ଼େ ]

ଭବ ବାଉଳା ରେ, ଭଜିଲୁ କଥାରେ ମଜ୍ଜ,
ଏ ମର ଗଇଲେ ଅମର ହୋଇବୁ
ଯେନ୍ନ ବଇକୁଣ୍ଠ ରଜ ॥ଘୋଷା॥

ଯେଉଁ କାମ କଲେ ପ୍ରଶଂସିବେ ଭଲେ
ସେହ୍ନ କଥାକୁ ଅରଜ,
ପର ପାଇଁ ଗାତ ନ ଖୋଲୁ ତୋ'ହାତ
ପରନିନ୍ଦା ତୁ ବରଜ ॥୧॥

ଜାଣିଶୁଣି ସବୁ ହୃଦ ଅନୁଭବୁଁ
କଥାରେ କଆଁ ତରଜ ?
ଆସିଛୁ ରେ ଖାଲି ଖାଲି ଯିବୁ ଚାଲି
ଦିନ ଦୁଇ ତୋ ଗରଜ ॥୨॥

ଜଗନ୍ନାଥ ପଦେ ଚିତ୍ତ ଲଗା ମୁଦେ
ନ କର କା'ରେ ହରଜ,
ପିନ୍ଧିବୁ ରେ ଗଲେ ଭକ୍ତିକର୍ମ କଲେ
ଯଶ କୀରତିର ସ୍ରଜ ॥୩॥

ସେହି ହେବ; ତୋର ସୁଖର ସୋଦର
ତାଙ୍କର ଲଗି ତୋ ସଜ,
କହଇ ମୁରାରି ଏତକ ଗୁହାରି
ସେ ଠାବରେ ମନ ଭଜ ॥୪॥
**

**

## ଖାଇ ବସ ବସ

### ମୁରାରି ମୋହନ ଜେନା

(ବିଂଶ ଶତାବ୍ଦୀ)

ଖାଇ ବସ ବସ
ଯୁକ୍ତ ଜଗା କାଳିଆ ଅମୀୟ ରସ ॥ଘୋଷା॥

ଏ ରସକୁ ଚାଖିଲେ;
ଦେହ ସାରା ମାଖିଲେ
ସାର୍ଥକ ହେବ ତୋର ସରା ବୟସ ॥୧॥

ଜଗା ରସେ ମାତିଲେ
ଧରି ସାଙ୍ଗ ସାଥିରେ
ତୁଟିବ ଜୀବନର ଯେତେ କଲୁଷ ॥୨॥

ଏଇ ରସ ଅସଲ
ଭେଲକୁ କରେ ଭଲ,
ଜୀବ ମିଳାଇ ଯାଏ ପରମ ପାଶ ॥୩॥

ଜୀବପରମ ଦୁଇ
ଦୁହେଁ ଦୁହିଁଙ୍କି ଛୁଇଁ
କୈବଲ୍ୟ ପ୍ରାପ୍ତି ମିଥ୍ୟା ନୁହଁଇ ଲେଶ ॥୪॥

ଏମନ୍ତ ରସେ ରସି
ଜୀବନ ଅଙ୍କ କଷି
ଶେଷକାଳେ ସେ ରସ ମୁରୁଛ ଆଶ ।।୪।।
**

**

## ଆରେ ବାଇ ମନ

### ମୁରଳି ମୋହନ ଜେନା

(ବିଂଶ ଶତାବ୍ଦୀ)

ଆରେ ବାଇ ମନ
ବୃଥା ତୋର ଏ ଜୀବନ ଯଉବନ ।।ଘୋଷା।।

ପିତୃ ମାତୃ ମୋହେ ହେଉ ଘାର
ପର ଆପଣାକୁ ତୁ ବିସ୍ମୃତ,
ମୋର ମୋର କହି ଗର୍ବଦମ୍ଭ ବହି
ଅକଥା କରୁଛୁ ଅରଜନ ।।୧।।

ସଂସାରଟା ପରା ଦିନ ଦୁଇ
କରୁଛୁ କେତେ ରେ ତୁ ବଡ଼ାଇ ?
ଢଙ୍ଗିଆ ବଢ଼ିଆ କଥାର ଝଙ୍କା
ବୃଥାରେ ନ କର ସରଜନ ।।୨।।

ଅଳପ ଦିନକୁ ଏତା ବେପାର
ସରିଲେ ଚାଲିବୁ ତୁ ସେପାର
ସେ ପାରକୁ ଯାଇ ମାଝିରେ ତୁ ଧ୍ୟାଇ
ଶ୍ରୀ ଜଗନ୍ନାଥଙ୍କୁ ହେଜ ମନ ।। ।।

ଚେତିଲେ ପାଇବୁ ଚିନ୍ତାମଣି
ଭଲବାଟେ ହୋଇଯିବୁ ଗଣି,
ଭୁଆଁ ତୋ ଭରମେ ନାହିଁ ତୋ ଧରମେ
କପଟକୁ କର ବରଜନ ।।୩।।

ସଂସାର-ସାଗର ଦୁଃଖ ବୀଚି
ନାଚୁଛି ରେ ପାଖେ ଯାହା କିଛି
ଆପେଆପେ ଖସି ଯିବରେ ଉଖସି
ବଇକୁଣ୍ଠ ହେବ ଦରଶନ ।।୪।।

ଭେଦିଲେ ପାଇବୁ ଭେଦ କଥା,
ଖଟାଇ ଦେ ଖାଇ ଟିକେ ମଥା,
ଠିକ ଠିକ ଭେଦ ଅଜ୍ଞାନତା ଛେଦ
ମୁରାରି ଜେନା'ର ନିବେଦନ ।।୫।।

**

**

## ନିରାଶାର ନିଆଁ

### ସୁନ୍ଦର ମୋହନ ଜେନା

(୨୦ଶ ଶତାବ୍ଦୀ)

[ରାଗ— ବଙ୍ଗଳାଶ୍ରୀ]

ନିରାଶାର ନିଆଁ ଜଳେ ଏ ଜୀବନେ
ଆଶା-ଶାନ୍ତି-ବାରି ଡାଳ
ଦୁର୍ବିପାକେ ଉଡ଼ି ଗଲା ଜରା ସଢ଼ି
ଜୀବନେ କାଳକୁ କାଳ ।।୧।।

ଅଲଜୁକ ଜଗା କରୁ ହଗା ନଗା
ବଢ଼େ ତୋର ନନ୍ଦାଖିଅ
ତୁମ୍ଭ ଥାଉଁ ଆଉଁ ବଢ଼େ ଦୁଃଖ ଦାଉ
ଏ ଲ଼ଜ କାହାକୁ ଆଉ ॥୨॥

କର୍ଷା ଲକ୍ଷ ନେଲେ କୃପା ଦେବ ହେଲେ
କଦ ହେ ଲକ୍ଷୁଆ ଠକ
ତୁମ ଧର୍ମ କାହିଁ ମୋ ପାଇଁକ ଇଛ
ପାଲଟିଛ ଧର୍ମବକ ॥୩॥

କଷ୍ଟୁଛ ଆକଟି କାଠଟା ପାଲଟି
କଂପା ମୋ ଖେଦ ନ ଟାଳ
ମୂଷର ଜହ୍ନ'ର କରଛ ଗୁହାର
ମୋ କଷ୍ଟ ଟିକେ ଭାଳ ॥୪॥

**

**

# କାଳିଆ ଠାକୁର

ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର

(ବିଂଶ ଶତାବ୍ଦୀ)

ବଡ ଦେଉଳରେ ବସିଅଛୁ ମୋର
କାଳିଆ ଠାକୁର ପରା,
ଷାଠିଏ ପଉଟି ଭୋଗ ଖଂଜା ତାର
ଦିଏ ନାହିଁ କା'ରେ ଧରା

ଜଗନ୍ତ ଉପରେ ବଜେ ଭରେ ସିଏ
ଫୁଲର ମୁକୁଟ ପିନ୍ଧି
ତା'ର ଚକାଡୋଳା ଅସୁମାର ଚେବେ
ଜଗତକୁ ନିଏ ବାନ୍ଧି

କୋଟି କୋଟି ଭକ୍ତ ନଅ ଦିନ ଆସି
ଜୟାର କରନ୍ତି ପରେ ।
ତା ବଡ଼ ଦେଉଳ ମହକି ଉଠୁଛି
ଲକ୍ଷ ଲକ୍ଷ ଫୁଲ ହାରେ ।

ପଥର ଦେଉଳ ଭିତରେ କାଳିଆ
ବସିଛୁ ପଥର ପରି ।
ଜନ ସମୁଦ୍ରର ଲହଡ଼ି ଆସଇ
ତାର ପଦ ଅନୁସରି ।

ନୀରବ କାଳିଆ ଅଚଳ ଅଟଳ
ସବୁ ଦେଖେ ସବୁ ଶୁଣେ ।
କିଛି କହେ ନାହିଁ ଜଗତରେ କିଏ
କାଳିଆର ଗୁଣ ଜାଣେ ?

**

**

## ଜଗତର ନାଥ, ଅହେ ଜଗନ୍ନାଥ

ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର

(ବିଂଶ ଶତାବ୍ଦୀ)

ଅହେ ଜଗନ୍ନାଥ       ଜଗତର ନାଥ,
 ଥାଉ ଥାଉ ତୁମ ପରି
ଜଗତରେ ଏତେ       ଅନାଥ ଅଛନ୍ତି
 କହ ମୋତେ କେଉଁ ପରି ?

ତୁମେ ଚକାଡୋଳା       ଦେଖନାହିଁ କହେ
 ସଂସାରରେ ଏତେ ଦୁଃଖୀ
ତୁମ ସମ୍ମୁଖରେ       କରମୋଖୀ ଜନ
 ଅଶ୍ରୁ ଯାଏ ନାହିଁ ଶୁଖି
ଚଢ଼ବାଢ଼ା ବୋଲି       ବୋଲଉଛ ତୁମେ ।
 ବୁଡ଼ିବା ଜନକୁ ଦେଖିଲେ
ରକ୍ଷା କର ପରା       ପାରୁନାହିଁ ତୁମେ,
 ତୁମ ଗୃହବାହା ତଳେ ।
ତୁମେ ସର୍ବ ଦ୍ରଷ୍ଟା       ତୁମେ ସର୍ବ ସ୍ରଷ୍ଟା
 ଦେଖି ଶୁଣି ଏତେ ଦୁଃଖ ।

ତୁମ ଆଲୋକରେ       ହସାଇ ପାରୁନ
 ଲୋକର ସଜଳ ମୁଖ ।
ଅହେ ଜଗନ୍ନାଥ       ନ୍ୟାୟଦଣ୍ଡ ତୁମେ
 ବସିଅଛ ଯେବେ ଧରି
ଜଗତରେ ଏତେ       ଅନାଥ ଅଛନ୍ତି
 କହ ମୋତେ କେଉଁ ପରି ?

**

## * ସାରଳା ଦାସ

(ପଞ୍ଚଦଶ ଶତାବ୍ଦୀ)

ସାରଳା ଦାସ ଓଡ଼ିଆ ସାହିତ୍ୟର ଆଦିକବି ରୂପେ ସୁପ୍ରତିଷ୍ଠିତ । ତାହାଙ୍କ ରଚିତ ମହାଭାରତ, ଚଣ୍ଡୀପୁରାଣ, ବିଲଙ୍କାରାମାୟଣ, କହ୍ନାଇ ଓ ମନାଇ ଚଉତିଶା ଓଡ଼ିଆ ସାହିତ୍ୟର ଅକ୍ଷୟ ସମ୍ପଦ । କଟକ ଜିଲ୍ଲାର ଜଙ୍ଘେ୨ ପୁର ବା ଝଙ୍କଡ଼ ବା କନକପୁର ଠାରେ ତାଙ୍କର ଜନ୍ମ । ତାଙ୍କର ପୂର୍ବନାମ ସିଦ୍ଧେଶ୍ୱର ପରିଡା । ସେ ଶୈଶବରୁ ପିତୃମାତୃହୀନ ଥିଲେ ଓ ତାଙ୍କର ଅଗ୍ରଜ ପର୍ଶୁରାମଙ୍କ ଦ୍ୱାରା ଲାଳିତ ପାଳିତ ହୋଇଥିଲେ । ଝଙ୍କଡ଼ର ଅଧିଷ୍ଠାତ୍ରୀ ଦେବୀ ସାରଳା ଠାକୁରାଣୀଙ୍କ କୃପାରୁ ତାଙ୍କର କବିପଣ ଉଦେ ହୋଇଥିବାରୁ କବି ସାରଳାଙ୍କର ଦାସ ବୋଲି ନିଜକୁ ଅଭିହିତ କଲେ ଓ ସାରଳାଦାସ ନାମରେ ନାମିତ ହେଲେ । ଓଡ଼ିଶାର ପ୍ରବଳ ପ୍ରତାପୀ ସୂର୍ଯ୍ୟବଂଶୀରାଜା କପିଳେନ୍ଦ୍ରଦେବଙ୍କ ସେ ସମସାମୟିକ ।

•

## * ମାଧବୀ ଦାସୀ

(ପଞ୍ଚଦଶ ଶତାବ୍ଦୀ)

ପୁରୀ ସଦର ନିକଟବର୍ତ୍ତୀ ବେଣ୍ଟପୁର ଗ୍ରାମରେ ପରମ ବୈଷ୍ଣବୀ ମାଧବୀ ଦାସୀ ଜନ୍ମ ଗ୍ରହଣ କରିଥିଲେ । ଶିଖୀ ମାହାନ୍ତି ଓ ମୁରାରି ମାହାନ୍ତି ତାଙ୍କର ଦୁଇ ଭ୍ରାତା । ମାଧବୀ ଦାସୀ ନିଜର ଭକ୍ତିମତ୍ତା ବଳରେ ଚୈତନ୍ୟ ଦେବଙ୍କର କୃପା ଲାଭ କରି ପାରିଥିଲେ । ଓଡ଼ିଆ, ସଂସ୍କୃତ, ବଙ୍ଗଳା ଓ ବ୍ରଜବୋଲି ଭାଷାରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା ଓ ଏଇ ଚାରୋଟି ଭାଷାରେ ସେ ଚମତ୍କାର ଭକ୍ତି ସଙ୍ଗୀତ ମାନ ରଚନା କରି ଯାଇଛନ୍ତି । ସେ ଜଣେ ଭକ୍ତି ତଦ୍‌ଗତା ବିଦୁଷୀ ରମଣୀ । ସେ ସଂସ୍କୃତରେ "ଶ୍ରୀ ପୁରୁଷୋତ୍ତମ ନାଟକ" ଲେଖିଥିଲେ । ବଙ୍ଗଳା 'ପଦକଳ୍ପତରୁ' ଗ୍ରନ୍ଥରେ ତାଙ୍କର କେତୋଟି ବଙ୍ଗଳା ଗୀତ ସ୍ଥାନ ପାଇଅଛି । ଶ୍ରୀ ଚୈତନ୍ୟ ମାଧବୀଙ୍କୁ ବୈଷ୍ଣବ ଧର୍ମରେ ଦୀକ୍ଷିତ କରିବା ସଙ୍ଗେ ସଙ୍ଗେ ତାଙ୍କୁ ଶ୍ରୀ ରାଧାଙ୍କ ଗଣ ବୋଲି ସ୍ୱୀକାର କରିଥିଲେ ।

### * ବଳରାମ ଦାସ

(ଷୋଡ଼ଶ ଶତାବ୍ଦୀ)

କୃପାସିନ୍ଧୁ ବଳରାମ ଦାସଙ୍କୁ ଉତ୍କଳର ବାଲ୍ମୀକି ବୋଲି କୁହାଯାଏ । ସେ ଜଗମୋହନ ବା ଦାଣ୍ଡୀ ରାମାୟଣ, ବ୍ରହ୍ମାଣ୍ଡ ଭୂଗୋଳ, ଛତିଶି ଗୀତା, ବିପ୍ରଶ୍ରୀସାର ଗୀତା, ଏକ ଅଧ୍ୟାୟ ମହାଭାରତ, ମନୁଗୀତା, ମାଳଶ୍ରୀ, ମୃଗୁଣୀସ୍ତୁତି, ଭାବସମୁଦ୍ର, ବଟ ଅବକାଶ ଲକ୍ଷ୍ମୀ ପୁରାଣ, କମଳଲୋଚନ ଗୀତ, ଶ୍ରୀପଞ୍ଚମୀ ଗୀତ, ସପ୍ତ ବନୋଦ, ଗଣେଶ ବିଭୂତି ପ୍ରଭୃତି ପଦ୍ୟ ଗ୍ରନ୍ଥ, ବହୁଳା ଅଧ୍ୟାୟ ଓ ଜ୍ଞାନ ଚୂଡ଼ାମଣି ନାମକ ଗଦ୍ୟ ଗ୍ରନ୍ଥ ରଚନା କରିଥିଲେ ଓ ଶ୍ରୀମଦ୍ ଭଗବତ୍ ଗୀତାକୁ ପ୍ରାଞ୍ଜଳ ଓଡ଼ିଆରେ ଅନୁବାଦ କରିଥିଲେ । ଓଡ଼ିଶାର ଗଜପତି ପ୍ରତାପରୁଦ୍ର ଦେବଙ୍କ ସେ ସମସାମୟିକ ଓ ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ । ଭାଗବତକାର ଜଗନ୍ନାଥ ଦାସଙ୍କ ଦୀକ୍ଷା ଗୁରୁ । ତାଙ୍କ ପିତାଙ୍କ ନାମ ସୋମନାଥ ମହାପାତ୍ର ଓ ମାତାଙ୍କ ନାମ ପଦ୍ମାବତୀ ।

### * ଜଗନ୍ନାଥ ଦାସ

(ଷୋଡ଼ଶ ଶତାବ୍ଦୀ)

ଜଗନ୍ନାଥ ଦାସ ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ । ପୁରୀଜିଲ୍ଲା କପିଳେଶ୍ୱରପୁର ଶାସନରେ ସେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଭଗବାନ ଓ ମାତାଙ୍କ ନାମ ପଦ୍ମାବତୀ । ଶ୍ରୀ କ୍ଷେତ୍ରରେ ରହଣୀ ସମୟରେ ଶ୍ରୀ ଚୈତନ୍ୟଦେବ ଜଗନ୍ନାଥ ଦାସଙ୍କ ଭକ୍ତି ତାଦ୍‌ଗତ୍ୟ ଚରିତ୍ରରେ ଅତ୍ୟନ୍ତ ମୁଗ୍ଧ ହୋଇ ତାଙ୍କୁ 'ଅତିବଡ଼ୀ' ଉପାଧି ପ୍ରଦାନ କରିଥିଲେ । ଜଗନ୍ନାଥ ଦାସ ରାଜା ପ୍ରତାପରୁଦ୍ରଙ୍କ ଦୀକ୍ଷାଗୁରୁ ଥିଲେ । ତାଙ୍କ ରଚନା ମାନଙ୍କ ମଧ୍ୟରେ ଭାଗବତ, ଗୁପ୍ତ ଭାଗବତ, ଅର୍ଥ କୋଇଲି, ମୃଗୁଣୀସ୍ତୁତି, ତୁଳାଭିଣା, ରାସକ୍ରୀଡା, ଦାରୁବ୍ରହ୍ମ ଗୀତା, ନୀଳାଦ୍ରି ଶତକ, ନିତ୍ୟ ଗୁପ୍ତମାଳା, ଦଧିଖେଳ, ମନଶିକ୍ଷା, ଶ୍ରୀନାମ ଚନ୍ଦ୍ରିକା, ଅନାମୟ କୁଣ୍ଡଳୀ, ଦୃଷ୍ଟିବୋଧ ପ୍ରଭୃତି ପ୍ରଧାନ । "ଅତିବଡ଼ୀ ସମ୍ପ୍ରଦାୟ ବୈଷ୍ଣବ ମାନଙ୍କର ମଠ ଏବେବି ଶ୍ରୀ କ୍ଷେତ୍ରରେ ରହିଛି ।

### * ଅଚ୍ୟୁତାନନ୍ଦ ଦାସ

(ଷୋଡ଼ଶ ଶତାବ୍ଦୀ)

ଅଚ୍ୟୁତାନନ୍ଦ ଦାସ ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ । କଟକ ଜିଲ୍ଲା ତିଳକଣା ଗ୍ରାମରେ ଜନ୍ମ । ପିତାଙ୍କ ନାମ ଦୀନବନ୍ଧୁ ଖୁଣ୍ଟିଆ ଓ ମାତାଙ୍କ ନାମ ପଦ୍ମାବତୀ । ତାଙ୍କର

୨ସ ଛଲକଣା ଗ୍ରାମର ଅଦୂରବର୍ତ୍ତୀ ନେମାଳ ଗ୍ରାମରେ ଦେହ ତ୍ୟାଗ କରିଥିଲେ । ଏବେବି ନେମାଳରେ ଅଚ୍ୟୁତାନନ୍ଦଙ୍କ ଗାଦି ରହିଛି । ତାଙ୍କର ରଚନା ମାନଙ୍କ ମଧ୍ୟରେ ହରିବଂଶ, ଶୂନ୍ୟସଂହିତା, ଶବ୍ଦ ବ୍ରହ୍ମ-ସଂଗୀତା, ଗୋପାଳଙ୍କ ଓଗାଳ, ସପ୍ତ ଭାଗବତ, ବାଖର କୋଇଲି, ବାରମାସ କୋଇଲି, ଭବିଷ୍ୟପୁରାଣ ଓ ଅସଂଖ୍ୟ ମାଳିକା ପ୍ରଭୃତି ପ୍ରଧାନ । ଜଗନ୍ନାଥ ଦାସଙ୍କ ଭାଗବତ ପରି ଅଚ୍ୟୁତାନନ୍ଦଙ୍କ ମାଳିକା ମଧ୍ୟ ଓଡ଼ିଶାର ଘରେ ଘରେ ସୁପରିଚିତ ।

## * ଶ୍ରୀଚନ୍ଦନ

(ଷୋଡ଼ଶ ଶତାବ୍ଦୀ)

କବି ଶ୍ରୀ ଚନ୍ଦନଙ୍କ ସଂପର୍କରେ ବିଶେଷ ବିବରଣୀ ଜଣା ପଡ଼ୁ ନାହିଁ । ଜଗନ୍ନାଥଙ୍କ ଚନ୍ଦନ ଲାଗି ସମୟରେ ତାଙ୍କର ଏ ଗୀତ ଶ୍ରୀ ମନ୍ଦିରରେ ବୋଲା ହୋଇଥାଏ ।

## * ବାଇଧର ଦାସ

(ଷୋଡ଼ଶ ଶତାବ୍ଦୀ)

ଏ କବିଙ୍କର ସବିଶେଷ ପରିଚୟ ମିଳୁନାହିଁ । ପୁନଶ୍ଚ ଏ କବିଙ୍କର ଅନ୍ୟ କୌଣସି କବିତା ବା କାବ୍ୟ ଏ ପର୍ଯ୍ୟନ୍ତ ଲୋକଲୋଚନଙ୍କୁ ଆସି ନାହିଁ ।

## * ଦେବଦୁର୍ଲ୍ଲଭ ଦାସ

(ସପ୍ତଦଶ ଶତାବ୍ଦୀ)

ଦେବଦୁର୍ଲ୍ଲଭ ଦାସଙ୍କ 'ରହସ୍ୟମଞ୍ଜରୀ' ଓଡ଼ିଆ ସାହିତ୍ୟରେ ଏକ ଅନବଦ୍ୟ କାବ୍ୟ । ଭକ୍ତିଭାବନା, ଦାର୍ଶନିକତା ଓ ସଂଗୀତ ମଧୁରିମା ଏ କାବ୍ୟର ଛନ୍ଦେ ଛନ୍ଦେ ପ୍ରତିଫଳିତ । କବି ତାଙ୍କ ରହସ୍ୟମଂଜରୀରେ ଚାରିଭକ୍ତି ମଧ୍ୟରେ ପ୍ରେମଭକ୍ତି ଉପରି ଶ୍ରେଷ୍ଠ ଓ ସେହି ଭକ୍ତି ଯେ କେବଳ ଗୋପୀମାନଙ୍କର ଅଧିକୃତ, ତାହା ଅତି ଚମତ୍କାର ଭାବେ ବର୍ଣ୍ଣନା କରିଛନ୍ତି । ତାହା ହେଲା—

> "ଚାରି ଭକ୍ତି ମଧ୍ୟେ ଅଟେ ପ୍ରେମଭକ୍ତି ସାର
> ସେ ଭକ୍ତି ଅଟଇ କୋଟି ଗୋପିମାନଙ୍କର
> ଗୋପିଙ୍କ ଭଜିଲା ଭକ୍ତି ପ୍ରେମ ଭକ୍ତି ପାଇ
> ଅନ୍ୟ କେଉଁ ଭକ୍ତିରେ ପ୍ରାପତି ମୋତେ ନାହିଁ" ।

* **ଧନଞ୍ଜୟ ଭଞ୍ଜ**

(ସପ୍ତଦଶ ଶତାବ୍ଦୀ)

ତତ୍କାଳୀନ ଘୁମୁସରର ରାଜା ଓ କବିସମ୍ରାଟ ଉପେନ୍ଦ୍ର ଭଂଜଙ୍କ ପିତାମହ । ଉପେନ୍ଦ୍ରଙ୍କ କାବ୍ୟ ସାଧନାର ପ୍ରଧାନ ପୃଷ୍ଠପୋଷକ ଓ ପ୍ରେରଣା ଦାତା । ତାଙ୍କ ରଚନା ମାନଙ୍କ ମଧ୍ୟରେ ଇଚ୍ଛାବତୀ, ରଘୁନାଥ ବିଳାସ, ଚଉପଦୀ ଭୂଷଣ, ଅନଙ୍ଗ ରେଖା, ତ୍ରିପୁର ମୋହିନୀ ଓ ମଦନ ମଞ୍ଜରୀ ପ୍ରଭୃତି ପ୍ରଧାନ ।

* **ଦୀନକୃଷ୍ଣ ଦାସ**

(ସପ୍ତଦଶ ଶତାବ୍ଦୀ)

ବହୁ ମତରେ ପ୍ରତିଷ୍ଠିତ ଯେ ଦୀନକୃଷ୍ଣ ଦାସ ନିଜ ରଚିତ " ଆର୍ତ୍ତିତ୍ରାଣ ଚଉତିଶା " ଜଗନ୍ନାଥଙ୍କ ଗରୁଡ଼ ସ୍ତମ୍ଭ ନିକଟରେ ଗାନ କରି କୁଷ୍ଠରୋଗରୁ ମୁକ୍ତ ହୋଇଥିଲେ । ଧନ୍ୟ ସେ ଭକ୍ତ, ଧନ୍ୟ ସେ ଭଗବାନ । ମହୀମଣ୍ଡଳେ ଏପରି ଠାକୁର କାହିଁ ? ଦୀନକୃଷ୍ଣଙ୍କ ପିତାଙ୍କ ନାମ ମଧୁସୂଦନ । ଓଡ଼ିଶାର ଗଜପତି ଦିବ୍ୟ ସିଂହ ଦେବଙ୍କର ସେ ସମସାମୟିକ । ସେ ବାଲେଶ୍ୱର ଜିଲ୍ଲାର ଜଳେଶ୍ୱରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ସର୍ବଶ୍ରେଷ୍ଠ କାବ୍ୟ "ରସକଲ୍ଲୋଳ" । "ରସ କଲ୍ଲୋଳର" ପଦ ଲାଳିତ୍ୟ ଓଡ଼ିଆ ସାହିତ୍ୟରେ ଅନନ୍ୟ ସାଧାରଣ । ତାଙ୍କର ଅନ୍ୟାନ୍ୟ କୃତିଗୁଡ଼ିକ ହେଲା-ନବଘନ ଚଉତିଶା, ନାମରତ୍ନ ଗୀତା ରସ ବିନୋଦ, ମଧୁମଙ୍ଗଳ, ପ୍ରସ୍ତାବ ସିନ୍ଧୁ, ଗୁଣସାଗର, ଜ୍ଞାନ ସାଗର ନାବକେଳି, ଅଳଙ୍କାର ବୋଲି । ତାଙ୍କର ନାମ ମାଳିକା ଓ କୁମାର ବୋଧନ ଦୁଇଟି ଗ୍ରନ୍ଥ ଏ ପର୍ଯ୍ୟନ୍ତ ଲୋକଲୋଚନକୁ ଆସି ପାରିନାହିଁ ।

* **ସାଲବେଗ**

(ସପ୍ତଦଶ ଶତାବ୍ଦୀ)

ସାଲବେଗଙ୍କ ଜଗନ୍ନାଥ ଜଣାଣ ଓଡ଼ିଆ ସାହିତ୍ୟରେ ସୁପ୍ରତିଷ୍ଠିତ ଓ ସୁପ୍ରସିଦ୍ଧ । ତାଙ୍କର ପିତା ଲାଲବେଗ ମୋଗଲ ପଠାଣ ଓ ମାତା ପୁରୀ ଦାଣ୍ଡ ମୁକୁନ୍ଦ ପୁର ଶାସନର ଜଣେ ବିଧବା ବ୍ରାହ୍ମଣୀ । ସେଥିପାଇଁ ସାଲବେଗ କହନ୍ତି"—ପିତା ମୋ ମୋଗଲ ବେଟା ମାତା ମୋ ବ୍ରାହ୍ମଣୀ । କେବଳ ଓଡ଼ିଆରେ ନୁହେଁ, ବଙ୍ଗଳା, ସଂସ୍କୃତ ଓ ବ୍ରଜବୋଲି ଭାଷାରେ ମଧ୍ୟ ସାଲବେଗ ଅସଂଖ୍ୟ ଭଜନମାନ ରଚନା କରିଛନ୍ତି । ତାଙ୍କ ରଚିତ ଜଗନ୍ନାଥ ଜଣାଣରେ ଏପରି ମାଦକତା ଅଛି, ଯିଏ ଥରେ ଶୁଣିଛି ସେଇଠି ସିଏ ଅଟକ ଯାଇଛି, ଭକ୍ତି

ସବର ଚନ୍ଦ୍ରଯୁତାରେ । ଏବେବି ପୁରୀ ବଲଗଣ୍ଡି ଠାରେ ସାଲବେଗଙ୍କ ସମାଧି ରହିଛି ଏବଂ ପ୍ରତିବର୍ଷ ରଥଯାତ୍ରା ସମୟରେ ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ରଥ ସାଲବେଗଙ୍କୁ କୃପା କରୁଣା ପ୍ରଦାନ କରିବା ପାଇଁ ସେଠାରେ କିଛି ସମୟ ବନ୍ଦ ରହି ଆଆନ୍ତି । କାହାରି କାହାରି ମତରେ ସାଲବେଗଙ୍କ ଭକ୍ତିପ୍ଲୁତ କାତର ଆହ୍ୱାନରେ ଆକୃଷ୍ଟ ହୋଇ ଶ୍ରୀ ଜଗନ୍ନାଥ ମହାପ୍ରଭୁ ତାଙ୍କୁ ସାକ୍ଷାତ ଦର୍ଶନ ଦେବା ଯଗେ ଯଗେ ତାଙ୍କୁ କୃତାର୍ଥ କରିବା ନିମନ୍ତେ ସିଂହଦ୍ୱାରରେ ପତିତପାବନ ମୂର୍ତ୍ତି ଧାରଣ କରି ପ୍ରକଟ ହୋଇଥିଲେ । ଓଡ଼ିଆ ସାହିତ୍ୟର ଆଳାପ ଆଲୋଚନାରେ ସାଲବେଗ ଏକ ଅଭୂତପୂର୍ବ ପ୍ରତିଭା ।

## * ସାରଥି ଭିକ

(ସପ୍ତଦଶ ଶତାବ୍ଦୀ)

ସାରଥି ଭିକଙ୍କ ଜୀବନୀ ତଥା ଅନ୍ୟାନ୍ୟ ଲେଖା ସମ୍ପର୍କରେ ସବିଶେଷ ବିବରଣୀ ଏବେବି ଅଜ୍ଞାତ । ତଥାପି ତାଙ୍କର ଏଇ ଗୋଟିଏ ମାତ୍ର ଭଜନ ପାଇଁ ସେ ସମଗ୍ର ଓଡ଼ିଆ ଭଜନ ସାହିତ୍ୟରେ ବିଶେଷ କରି ଜଗନ୍ନାଥ ଜଣାଣରେ ଚିରକାଳ ଅବିସ୍ମରଣୀୟ ହୋଇ ରହିବେ ।

## ଭିକାରୀ

(ସପ୍ତଦଶ ଶତାବ୍ଦୀ)

ଭିକାରୀଙ୍କ ଜୀବନୀ ତଥା ଅନ୍ୟାନ୍ୟ ଲେଖା ସମ୍ପର୍କରେ ସବିଶେଷ ବିବରଣୀ ଏବେବି ଅଜ୍ଞାତ ।

## ବୈଦ୍ୟନାଥ ଦ୍ୱିଜ

(ସପ୍ତଦଶ ଶତାବ୍ଦୀ)

ବୈଦ୍ୟନାଥ ଦ୍ୱିଜଙ୍କ ଜୀବନୀ ଓ ଅନ୍ୟାନ୍ୟ କୃତି ସମ୍ପର୍କରେ ସବିଶେଷ ବିବରଣୀ ଏବେବି ଅଜ୍ଞାତ ।

## ଦୀନବଂଧୁ ରାଜ ହରିଚନ୍ଦନ

(ସପ୍ତଦଶ ଶତାବ୍ଦୀ)

ଦୀନବଂଧୁ ରାଜ ହରିଚନ୍ଦନ ବହୁ ଭକ୍ତି ଗୀତିକା ଓ ଚଉପଦୀର ରଚୟିତା । ସେ ସମସ୍ତ ସଂଗୃହୀତ ହୋଇ ପ୍ରକାଶିତ ହେଲେ କବିଙ୍କ ପ୍ରତିଭାର ବିଶେଷ ପରିଚୟ ମିଳିପାରନ୍ତା ।

## * ଉପେନ୍ଦ୍ର ଭଂଜ

(ଅଷ୍ଟାଦଶ ଶତାବ୍ଦୀ)

ଓଡ଼ିଆ ରୀତି ଯୁଗର ସର୍ବଶ୍ରେଷ୍ଠ କବି । ପୁରୀ ଗଜପତି ଦିବ୍ୟସିଂହ ଦେବଙ୍କ ଦ୍ୱାରା କବି ସମ୍ରାଟ ଉପାଧିରେ ଭୂଷିତ । ଉପେନ୍ଦ୍ରଙ୍କୁ ସ୍ମରଣ କଲାବେଳେ ତତ୍‌କାଳୀନ ସିଂହାସନ ଲଭ ପାଇଁ ଗଞ୍ଜାମ ଜିଲ୍ଲାର ଘୁମୁସରର ରକ୍ତାକ୍ତ ଇତିହାସ ବାରମ୍ବାର ପ୍ରାଣକୁ ଆନ୍ଦୋଳିତ କରେ । ତଥାପି ଧନଞ୍ଜୟଙ୍କ ପୌତ୍ର ଓ ନୀଳକଣ୍ଠ ଭଂଜଙ୍କ ପୁତ୍ର ସେହି ଘୁମୁସର ରାଜ ପରିବାର ସିଂହାସନର ଉତ୍ତରାଧିକାରୀ ଉପେନ୍ଦ୍ର ଗୋଟିଏ ରାଜ୍ୟର ସିଂହାସନ ପରିବର୍ତ୍ତେ କୋଟି ହୃଦୟର ସିଂହାସନରେ ଅଧିଷ୍ଠିତ ହେବାପାଇଁ ନିଜର ଜୀବନ, ସାହିତ୍ୟ ସାଧନାରେ ଅତିବାହିତ କରି ଯେଉଁ ସିଦ୍ଧି ଲଭ କରିଛନ୍ତି; ତାହା ଅଶ୍ରୁତପୂର୍ବ ଓ ଅଦ୍ଭୁତପୂର୍ବ । ପ୍ରାରମ୍ଭରେ ପିତାମହ ଧନଞ୍ଜୟ ଭଞ୍ଜଙ୍କ ପ୍ରେରଣା ଓ ପରେ ପରେ ଘୁମୁସରର ଅଧିଷ୍ଠାତ୍ରୀଦେବୀ ବ୍ୟାଘ୍ର ଦେବୀଙ୍କ କରୁଣା ତଥା ରାମତାରକ ମନ୍ତ୍ର ସିଦ୍ଧି ତାଙ୍କୁ ଶ୍ରେଷ୍ଠ କବିର ସମ୍ମାନ ଦେଲା । ଉପେନ୍ଦ୍ରଙ୍କ ପ୍ରଥମ ପତ୍ନୀ ନୟାଗଡ଼ ରାଜକୁମାରୀ ଓ ଦ୍ୱିତୀୟ ପତ୍ନୀ ବାଣପୁର ରାଜକୁମାରୀଙ୍କ ଅକାଳ ବିୟୋଗ କବିଙ୍କ ପ୍ରାଣରେ ଦାରୁଣ ଆଘାତ ଦେଇଥିଲେ ହେଁ, ତାଙ୍କର ଉତ୍ତର କାଳରେ ସେ ଘୁମୁସର ତ୍ୟାଗ କରି ନୟାଗଡ଼ରେ ଅବସ୍ଥାନ କଲେ ଓ ଏଇଠାରେହିଁ ତାଙ୍କର ସମସ୍ତ ସମସ୍ତ କାବ୍ୟ କବିତା ଓ ସଙ୍ଗୀତ ରଚନାରେ ନିଜକୁ ନିୟୋଗ କରିଥିଲେ । କଳିତ୍ କର୍ମା ଉପେନ୍ଦ୍ର ଭଂଜ କେବଳ କବି ସମ୍ରାଟ ନଥିଲେ, ସେ ସଙ୍ଗୀତ ସମ୍ରାଟ ମଧ୍ୟ ଥିଲେ । ତାଙ୍କର ଶ୍ରେଷ୍ଠ ରଚନା ମାନଙ୍କ ମଧ୍ୟରେ ଲାବଣ୍ୟବତୀ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ପ୍ରେମ ସୁଧାନିଧି, ରସିକ ହାରାବଳୀ 'ସ' ନିୟମରେ ସୁଭଦ୍ରାପରିଣୟ 'ବ' ନିୟମରେ ବୈଦେହୀଶ ବିଳାସ, 'କ' ନିୟମରେ କଳା କଉତୁକ, ଅବନା ରସତରଙ୍ଗ, ରସପଞ୍ଚକ, ଚୌପଦୀ ଭୂଷଣ, ଚୌପଦୀ ଚନ୍ଦ୍ର ଓ ଗୀତାଭିଧାନ ପ୍ରଭୃତି ପ୍ରଧାନ ।

## * ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା

(ଅଷ୍ଟାଦଶ ଶତାବ୍ଦୀ)

ଏଇ ବୈଷ୍ଣବ କବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ବିଦଗ୍ଧ କବି ଅଭିମନ୍ୟୁ ସାମନ୍ତ ସିଂହାରଙ୍କର ଦୀକ୍ଷାଗୁରୁ ଓ ଶିକ୍ଷାଗୁରୁ । ନୟାଗଡ଼ର ଶରଣକୁଲ ନିକଟବର୍ତ୍ତୀ ଭିକାରୀପଡ଼ାରେ ତାଙ୍କର ଜନ୍ମ । ବୈଷ୍ଣବ ଧର୍ମ ଗ୍ରହଣ କଲା ପରେ ସେ ସାଧୁଚରଣ ଦାସ ନାମରେ ନାମିତ ହେଲେ । ପୁରୀର ଗଜପତି ବୀରକିଶୋର ଦେବ ତାଙ୍କୁ କବିସୂର୍ଯ୍ୟ ବ୍ରହ୍ମା ଉପାଧିରେ

ଭୂଷିତ କରିଥିଲେ । ତାଙ୍କର ଶ୍ରେଷ୍ଠକୃତି ମାନଙ୍କ ମଧ୍ୟରେ-ଯୁଗଳ ରସାମୃତ ଲହରୀ ଯୁଗଳ ରସାମୃତ ଭଉରୀ, ପ୍ରେମଲହରୀ, ରସାମୃତ ଲହରୀ, ନାମ ଚନ୍ଦ୍ରାମଣି, ଚୌର ଚନ୍ଦ୍ରାମଣି, କନ୍ଦର୍ପର ନୀଳମଣି, ଲଳିତଲୋଚନା, ପ୍ରେମ କଳ୍ପଲତା, 'ଦ' କାବ୍ୟରେ ବିଶ୍ୱମ୍ଭର ବିହାର, ପ୍ରେମ ତରଙ୍ଗିଣୀ, ତତ୍ତ୍ୱ ତରଙ୍ଗିଣୀ, କୁଞ୍ଜବିହାର, ମୋହନଲତା, ଲୀଳାମୃତ ସାଗର ପ୍ରଭୃତି ପ୍ରଧାନ । ଗଡ଼ମଧୁପୁରର ରାଜା ଘନଶ୍ୟାମ ନରେନ୍ଦ୍ରଙ୍କ ସହାୟତାରେ ଗଡ଼ମଧୁପୁରରେ ମଠ ସ୍ଥାପନ କରି ସେହି ମଠର ମହନ୍ତ ହୋଇଥିଲେ ଓ ପରେ ପରେ ତାଙ୍କର ପ୍ରିୟ ଓ ପରମ ଶିଷ୍ୟ ଅଭିମନ୍ୟୁ ସାମନ୍ତସିଂହାରଙ୍କ ଜମିଦାରୀ ବାଲିଆ ନିକଟବର୍ତ୍ତୀ ଦୀକ୍ଷିତ ପଡ଼ା ଗ୍ରାମରେ ମଠ ସ୍ଥାପନ କରି ଶେଷ ଜୀବନ ସେଇଠି ଅତିବାହିତ କରିଥିଲେ । ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ସଂସ୍କୃତ ଓ ବଙ୍ଗଳା ଭାଷାରେ ଧୁରୀଣ ପଣ୍ଡିତ ଥିଲେ । ସେ ଉଜ୍ଜ୍ୱଳ ନୀଳମଣି ସଂସ୍କୃତ ଗ୍ରନ୍ଥ ଓ ତାଙ୍କ ରଚିତ ପ୍ରେମ ଚନ୍ଦ୍ରାମଣି ଓଡ଼ିଆ କାବ୍ୟକୁ ବଙ୍ଗଳାରେ ଏବଂ ରୂପଗୋସ୍ୱାମୀକୃତ "ବିଦଗ୍ଧ ମାଧବ" ନାଟକକୁ ବ୍ରଜ-ଲୀଳାମୃତ ନାମରେ ଅନୁବାଦ କରିଥିଲେ । ଏହା ଛଡ଼ା ଶ୍ରେଷ୍ଠ ସଂସ୍କୃତ ଓ ବଙ୍ଗଳା ବୈଷ୍ଣବ ଗ୍ରନ୍ଥକୁ ସେ ମଧ୍ୟ ଓଡ଼ିଆରେ ଅନୁବାଦ କରିଥିଲେ । ଆମ ସାହିତ୍ୟରେ ଜଣେ ଶ୍ରେଷ୍ଠ ଅନୁବାଦକ ରୂପେ ତାଙ୍କର କୃତିତ୍ୱ ମଧ୍ୟ ରହିଛି ।

### * ଗୋବିନ୍ଦ ଭଂଜ

(ଅଷ୍ଟାଦଶ ଶତାବ୍ଦୀ)

ଗୋବିନ୍ଦ ଭଂଜ କେନ୍ଦୁଝର ରାଜବଂଶର ଜଣେ କବି । କାହାର କାହାର ମତରେ ତାଙ୍କର ଅନ୍ୟାନ୍ୟ ରଚନାମାନଙ୍କ ମଧ୍ୟରେ "ଚରଣ ସୁଧାନିଧି ଓ ରାମଗୀତା" ପ୍ରଧାନ ।

### * ଭକ୍ତଚରଣ ଦାସ

(ଅଷ୍ଟାଦଶ ଶତାବ୍ଦୀ)

ଭକ୍ତଚରଣ ଦାସ (ପୂର୍ବନାମ ବୈରାଗୀ ଚରଣ ପଟ୍ଟନାୟକ) ପୁରୀଜିଲ୍ଲା ଅନ୍ତର୍ଗତ ଖୋର୍ଦ୍ଧା ନିକଟସ୍ଥ ସାନପଦରରେ ୧୭୪୩ ମସୀହାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ରଚିତ "ମନବୋଧ ଚଉତିଶା" ଓଡ଼ିଆ ସାହିତ୍ୟରେ ଏକ ଚମତ୍କାରପ୍ରଦ ଓ କାଳଜୟୀ ସୃଷ୍ଟି । ଶଙ୍କରାଚାର୍ଯ୍ୟଙ୍କ "ମୋହ ମୁଦ୍‌ଗର" ସହିତ ଏହାକୁ ତୁଳନା କରି ଯାଇପାରେ । ତାଙ୍କ "କଳା କଲେବର" ଚଉତିଶା ମଧ୍ୟ ଅତ୍ୟନ୍ତ ଲୋକପ୍ରିୟ ଓ ହୃଦୟସ୍ପର୍ଶୀ । ତାଙ୍କର ଅନ୍ୟାନ୍ୟ କୃତି ମାନଙ୍କ ମଧ୍ୟରେ 'ଗୋପମଙ୍ଗଳ' ଓ ମଥୁରାମଙ୍ଗଳ କାବ୍ୟ, ମନଶିକ୍ଷା

ପ୍ରଭୃତ ରଚନା ଓଡ଼ିଆ ସାହିତ୍ୟରେ ଅନବଦ୍ୟ ଓ ଅନନ୍ୟ ସାଧାରଣ ସୃଷ୍ଟି । ସେ ରାଗାନୁଗା ଭକ୍ତିର ପ୍ରଚାରକ ।

## ✳ ଅଭିମନ୍ୟୁ ସାମନ୍ତ ସିଂହାର

(ଅଷ୍ଟାଦଶ ଶତାବ୍ଦୀ)

ପରମ ବୈଷ୍ଣବ ବିଦଗ୍ଧ କବି ଅଭିମନ୍ୟୁ ଶୃଙ୍ଗାର ଭକ୍ତିର ଉପାସକ । ୧୭୫୭ ମସିହାରେ କଟକ ଜିଲ୍ଲା ଯାଜପୁର ସବ୍‌ଡିଭିଜନ ଅନ୍ତର୍ଗତ ଗୋଲକୁଣ୍ଡ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ନିକଟବର୍ତ୍ତୀ ବାଲିଆ ଥିଲା କବିଙ୍କ ଜମିଦାରୀ । ତାଙ୍କ ପିତାଙ୍କ ନାମ ଇନ୍ଦ୍ରଜିତ ସାମନ୍ତ ସିଂହାର ଓ ମାତାଙ୍କ ନାମ ତୁଳସୀ ଦେବୀ । ତାଙ୍କର ପିତା ଇନ୍ଦ୍ରଜିତ ସାମନ୍ତସିଂହାର ଜଣେ ଯୋଦ୍ଧା ଥିଲେ । ଅଭିମନ୍ୟୁ ତାଙ୍କ ସମ୍ପର୍କରେ ଲେଖି ଯାଇଛନ୍ତି—

> "ଇନ୍ଦ୍ରଜିତ ସାମନ୍ତ ନାମ ସତ<br>
> ବାଘ ଗ୍ରୁର ତାଙ୍କୁ ଜେତେକ ମାଣ<br>
> ଯାହାଙ୍କ ଧନୁ ପେଟେ ଲୁହାପାତ<br>
> ଗଜ କମ୍ପୁଥିଲେ ଧରି ଦନ୍ତ<br>
> ଏଡ଼େ ବଳବନ୍ତ<br>
> ବହନ୍ତି ଦୁଇଶ ପଲଆ କୁନ୍ତ ।

ସଦାନନ୍ଦ କବିସୂର୍ଯ୍ୟବ୍ରହ୍ମା ଓରଫ ସାଧୁଚରଣ ଦାସ ଅଭିମନ୍ୟୁଙ୍କ ଦୀକ୍ଷାଗୁରୁ ଶିକ୍ଷାଗୁରୁ ତଥା କାବ୍ୟଗୁରୁ । ତାଙ୍କ କୃତି ମାନଙ୍କ ମଧ୍ୟରେ 'ବାଘଗୀତ' ହୁଁ ଗୀତ" 'ଫୁଲ ବଉଳବେଣୀ' ପ୍ରଭୃତି ସୁନ୍ଦର ସୁନ୍ଦର ଲୋକଗୀତ ଏବଂ କାବ୍ୟ 'ରସବତୀ' 'ସ' ଆଦ୍ୟମରେ ସୁଲକ୍ଷଣା, ପ୍ରେମ' ଚିନ୍ତାମଣି' 'ପ୍ରେମକଳା' ଓ ବିଦଗ୍ଧ ଚିନ୍ତାମଣି' ପ୍ରଧାନ । 'ବିଦଗ୍ଧ ଚିନ୍ତାମଣି' ତାଙ୍କର ସର୍ବଶ୍ରେଷ୍ଠ କୃତି ଓ ବୈଷ୍ଣବ ଦର୍ଶନାସ୍ଥ କାବ୍ୟ ସାହିତ୍ୟରେ ଏକ ଅମଳିନ କୀର୍ତ୍ତିସ୍ତମ୍ଭ । ବିଦଗ୍ଧଚିନ୍ତାମଣିକୁ ଛାଡ଼ି ଓଡ଼ିଆ ବୈଷ୍ଣବ ସାହିତ୍ୟର କଳ୍ପନା କରାଯାଇ ପାରିବ ନାହିଁ । ଏପରି ପଣ୍ଡିତ ଓ ଶାସ୍ତ୍ରଜ୍ଞ କବି ଉପେନ୍ଦ୍ରଙ୍କ ପରେ ଓଡ଼ିଆ ସାହିତ୍ୟରେ ଆଉ କେହି ଜନ୍ମ ଗ୍ରହଣ କରିଛନ୍ତି କି ନାହିଁ ସନ୍ଦେହ । ପଦଲାଳିତ୍ୟ, ଉପମା ଓ ଅର୍ଥ ଗୌରବ ଏହି ତିନୋଟି ଗୁଣ ବିଦଗ୍ଧ ଚିନ୍ତାମଣିରେ ପ୍ରତିଫଳିତ ହୋଇଥିବାରୁ 'ବିଦଗ୍ଧ ଚିନ୍ତାମଣି' ଆମ ନିକଟରେ ଏତିକି ପ୍ରିୟତମ ଓ ନିକଟତମ ହୋଇ ପାରିଛି । ଅଭିମନ୍ୟୁ ଭାରତର ବିଭିନ୍ନ ତୀର୍ଥ ପର୍ଯ୍ୟଟନ କରିଥିଲେ ଓ ଜୀବନର ଅନ୍ତିମ କାଳରେ ପୁନର୍ବାର ବୃନ୍ଦାବନ ଯାଇଥିଲେ ।

ସମସ୍ତ ଆୟୋଜନ କରି, ଅଭିମନ୍ୟୁ ବୃନ୍ଦାବନ ଯାହାଙ୍କୁ ବାହାରିଲା ବେଳେ ବାଲିଆଁ ଗ୍ରାମ ନିକଟସ୍ଥ ହରିପୁରଠାରେ ଶେଷ ନିଶ୍ୱାସ ୧୮୦୮ ଖ୍ରୀଷ୍ଟାବ୍ଦରେ ତ୍ୟାଗ କରିଥିଲେ । କଟକର ମାଜିଷ୍ଟ୍ରେଟ ଆର. ଏନ୍. ସୋର କମିଶନରଙ୍କୁ ଦେଇଥିବା ଏକ ରିପୋର୍ଟରୁ ଜଣାଯାଏ ଯେ, କଟକ ଜିଲ୍ଲାର ଖଣ୍ଡାୟତମାନେ ଦଳବଦ୍ଧ ହୋଇ ଇଂରେଜ ଶାସନ ବିରୁଦ୍ଧରେ ଯୋଜନାବଦ୍ଧ ଆନ୍ଦୋଳନ ଚଳାଇଥିଲେ ଓ ସରକାରଙ୍କୁ ରାଜସ୍ୱ ଦେବା ବନ୍ଦ କରି ଦେଇଥିଲେ । ଏହି ଆନ୍ଦୋଳନରେ ନେତୃତ୍ୱ ନେଇଥିଲେ ୧୮୫୭ ମସିହାରେ ବିଦଗ୍ଧ କବି ଅଭିମନ୍ୟୁଙ୍କ ପୁତ୍ର ରାମକୃଷ୍ଣ ସାମନ୍ତସିଂହାର । ବ୍ରିଟିଶ ସରକାରଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ର ଓ ଯୋଜନାବଦ୍ଧ ଆନ୍ଦୋଳନ ଯୋଗୁଁ ରାମକୃଷ୍ଣ ପାଞ୍ଚବର୍ଷ କାଳ ସଶ୍ରମ କାରାଦଣ୍ଡରେ ଦଣ୍ଡିତ ହୋଇଥିଲେ ଏବଂ ତାଙ୍କ ବାଲିଆ ଗ୍ରାମ ଖାନତଲାସ କରାଯାଇ ନିଆଁ ଲଗାଇ ଦିଆଯାଇ ଥିବା କେତେକ ଅସ୍ତ୍ର ଶସ୍ତ୍ର ଓ ନଳୀ ବନ୍ଧୁକ ଜବତ କରାଯାଇଥିଲା ଓ ତାଙ୍କର ସମସ୍ତ ସମ୍ପତ୍ତି ସରକାର ବାଜ୍ୟାପ୍ତ କରି ନେଇଥିଲେ । ୧୮୫୭ର ଆନ୍ଦୋଳନ ଅବସାନ ପରେ ମହାରାଣୀ ଭିକ୍ଟୋରିଆଙ୍କ ଏକ ଆଦେଶନାମା ବଳରେ ରାଜଦ୍ରୋହୀ ମାନଙ୍କୁ କ୍ଷମା ଦିଆଯାଇଥିଲା । ତତପରବର୍ଷ ୧୮୫୮ରେ ରାମକୃଷ୍ଣ କାରାମୁକ୍ତ ହୋଇଥିଲେହେଁ, ତାଙ୍କୁ ତାଙ୍କର ସମ୍ପତ୍ତି ଫେରି ପାଇବାକୁ ଏକ ବର୍ଷ ଲାଗି ଯାଇଥିଲା ।

## ✳ ବନମାଳୀ ଦାସ

(ଅଷ୍ଟାଦଶ ଶତାବ୍ଦୀ)

କବି ବନମାଳୀ ଦାସ ଓଡ଼ିଶାର ଗଜପତି ବୀରକିଶୋର ଦେବଙ୍କ ସମକାଳୀନ ଥିଲେ ଏବଂ କଥିତ ଅଛି ତାଙ୍କ ରଚିତ କେତେକ ସଂଗୀତ ସେ ଗଜପତି ବୀରକିଶୋର ଦେବଙ୍କ ନାମରେ ଭଣିତା କରିଥିବାରୁ ରାଜା ତାଙ୍କୁ ୨୨ ବାଟି ଭୂ ସମ୍ପତ୍ତି ପ୍ରଦାନ କରିଥିଲେ । କିଛି ଦିନ ସାଂସାରିକ ଜୀବନ ଯାପନ କଲାପରେ କବି ସନ୍ୟାସୀ ହୋଇ ଯାଇଥିଲେ । ତାଙ୍କ ଜୀବନର ଦୀର୍ଘକାଳ ଶ୍ରୀକ୍ଷେତ୍ରରେ ଅତିବାହିତ ହୋଇଥିଲା ଓ ବୃନ୍ଦାବନରେ ସେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ । ଭକ୍ତି ସଂଗୀତ ଲେଖକ ହିସାବରେ ବନମାଳୀଙ୍କ କୃତିତ୍ୱ ଅସାଧାରଣ । ତାଙ୍କର କୁଳସଂଜ୍ଞା ପଟ୍ଟନାୟକ ଥିଲା ଓ ବୈଷ୍ଣବ ଧର୍ମ ଗ୍ରହଣ ପରେ ସେ ଦାସ ରୂପେ ପରିଚିତ ହେଲେ ଓ ପରେ "ବଳ୍ଳଭାନନ୍ଦ" ନାମ ଗ୍ରହଣ କରିଥିଲେ । ସେ "ଗୁପ୍ତ ଇଚ୍ଛାବତୀ" ନାମକ ଏକ କ୍ଷୁଦ୍ର କାବ୍ୟ ରଚନା କରିଥିଲେ । ସେ ଶୁଦ୍ଧାଭକ୍ତି ମାର୍ଗର ଉପାସକ । ତାଙ୍କର ଅସଂଖ୍ୟ ଚଉପଦୀ ଜଣାଣ ଭଜନ, ଓଡ଼ିଆ ସଂଗୀତ ସାହିତ୍ୟକୁ ବହୁ ଭାବରେ ଋଦ୍ଧିମନ୍ତ ଓ ଋଦ୍ଧିମନ୍ତ କରିଛି ତଥା ଭାରତୀୟ ସଙ୍ଗୀତ କ୍ଷେତ୍ରରେ ଓଡ଼ିଶୀ ସଙ୍ଗୀତକୁ ସମ୍ପୂର୍ଣ୍ଣ ମର୍ଯ୍ୟାଦା ଦେବାରେ ଯେଉଁମାନେ ବିଶିଷ୍ଟ ଆସନ ଗ୍ରହଣ କରିଛନ୍ତି; ସେମାନଙ୍କ ମଧ୍ୟରେ ବନମାଳୀ ଅନ୍ୟତମ ।

* ନିତ୍ୟାନନ୍ଦ ଦାସ

(ଅଷ୍ଟାଦଶ ଶତାବ୍ଦୀ)

"ପତିତ ଜନଙ୍କୁ ଉଦ୍ଧାରିବା ପାଇଁ ଉଡାଉଅଛ ପତାକା" ଜଣାଣର କବି ନିତ୍ୟାନନ୍ଦ ଦାସ ଓଡ଼ିଶାର ଘରେ ଘରେ ପରିଚିତ । ବର୍ତ୍ତମାନର ଜୀବିତ ବୟୋବୃଦ୍ଧ ଶ୍ରେଷ୍ଠ ସଙ୍ଗୀତଜ୍ଞ ବାଣୀକଣ୍ଠ ନିମାଇଁ ଚରଣ ହରିଚନ୍ଦନ ଏ ସଙ୍ଗୀତକୁ ଯେପରି ଗାନ କରନ୍ତି; ତାହା ଯେ କୌଣସି ଶ୍ରୋତା ଯେତେବେଳେ ଓ ଯେଉଁଠି ଶୁଣିଛି, ସେ ସେଇ ସଙ୍ଗୀତ ଓ ସଙ୍ଗୀତ ଗାନରେ ତନ୍ମୟ ହୋଇଛି ଓ ନିଜକୁ ସମ୍ପୂର୍ଣ୍ଣ ଭୁଲି ଯାଇଛି । କବି ନିତ୍ୟାନନ୍ଦଙ୍କ ଜଗନ୍ନାଥ ପ୍ରୀତିର ପଟାନ୍ତର ନାହିଁ ।

* ଚଣ୍ଡୀ ଦାସ

(ଅଷ୍ଟାଦଶ ଶତାବ୍ଦୀ)

ଚଣ୍ଡୀଦାସଙ୍କ ଜଣାଣଗୁଡ଼ିକ ଅତ୍ୟନ୍ତ ଲୋକପ୍ରିୟ । ତାଙ୍କ ସମ୍ପର୍କରେ ବିଶେଷ ବିବରଣୀ ଏ ପର୍ଯ୍ୟନ୍ତ ଅଜ୍ଞାତ ।

* ବିଶ୍ୱନାଥ ଖୁଣ୍ଟିଆ

(ଅଷ୍ଟାଦଶ ଶତାବ୍ଦୀ)

କବି ବିଶ୍ୱନାଥ ଖୁଣ୍ଟିଆଙ୍କ ରଚିତ "ବିଚିତ୍ର ରାମାୟଣ" ବା "ବିଶି ରାମାୟଣ" ଓଡ଼ିଶାର ଘରେ ଘରେ ସୁପରିଚିତ । ଓଡ଼ିଶାର ଯେଉଁ ଯେଉଁ ସ୍ଥାନ ମାନଙ୍କରେ ରାମଲୀଳା ଦଳମାନ ଅଛି, ସେଇମାନଙ୍କ ଦ୍ୱାରାହିଁ ରାମଲୀଳା ପ୍ରଦର୍ଶନ ବେଳେ ବିଶ୍ୱନାଥ ଖୁଣ୍ଟିଆଙ୍କ 'ବିଚିତ୍ର ରାମାୟଣ'ର ସଙ୍ଗୀତମାନ ବାରମ୍ବାର ଗୀତ ହୋଇଥାଏ । କବି ପୁରୀନିବାସୀ ଓ ଓଡ଼ିଶାର ଗଜପତି ଦ୍ୱିତୀୟ ଦିବ୍ୟସିଂହ ଦେବଙ୍କ ସମସାମୟିକ । ରାମାୟଣର ସମସ୍ତ କଥା ଓ କାହାଣୀକୁ ଏପରି ସଙ୍ଗୀତ ମାଧ୍ୟମରେ ସରସ, ସୁନ୍ଦର ଲୋକପ୍ରିୟ କରାଇବାରେ ବିଶ୍ୱନାଥ ଖୁଣ୍ଟିଆ ହିଁ ସର୍ବଶ୍ରେଷ୍ଠ ଶିଳ୍ପୀ । ଏଇ ଦୃଷ୍ଟିରୁ ଶ୍ରୀଖୁଣ୍ଟିଆ ଜନଗଣର କବି ।

* ବିକ୍ରମ ନରେନ୍ଦ୍ର

(ଅଷ୍ଟାଦଶ ଶତାବ୍ଦୀ)

ବିକ୍ରମ ନରେନ୍ଦ୍ର ବିଶ୍ୱନାଥ ଖୁଣ୍ଟିଆଙ୍କ ସମସାମୟିକ । ରାମାୟଣ କଥାବସ୍ତୁକୁ ଭିତ୍ତି କରି ତାଙ୍କ ରଚିତ ସଙ୍ଗୀତ ମାନ ମଧ୍ୟ ବିଶେଷ ଲୋକପ୍ରିୟ । ରାମଲୀଳା ଦଳମାନଙ୍କ ଦ୍ୱାରା ତାଙ୍କ ରଚିତ ରାମାୟଣ ସଙ୍ଗୀତ ମାନ ଗୀତ ଓ ଆଦୃତ ହୋଇଥାଏ ।

*** ହୃଦାନନ୍ଦ ଦାସ**

(ଅଷ୍ଟାଦଶ ଶତାବ୍ଦୀ)

କବିଙ୍କ ସମ୍ପର୍କରେ ସବିଶେଷ ବିବରଣୀ ଏବେବି ଅଜ୍ଞାତ । ତାଙ୍କ ରଚିତ **ଭଜନ ଯୋଗୁହିଁ** ସେ ଓଡ଼ିଆ ସାହିତ୍ୟରେ ସୁପରିଚିତ ।

*** ଚଲ୍ଲଭ ଦାସ**

(ଅଷ୍ଟାଦଶ ଶତାବ୍ଦୀ)

କବିଙ୍କ ସମ୍ପର୍କରେ ସବିଶେଷ ବିବରଣୀ ଏବେବି ଅଜ୍ଞାତ ।

*** ବୀରକିଶୋର ଦେବ**

(ଅଷ୍ଟାଦଶ ଶତାବ୍ଦୀ)

ସେ ନିଜେ ଜଣେ କବି ଓ ସମସାମୟିକ ଅନ୍ୟାନ୍ୟ କବିମାନଙ୍କର ଉତ୍ସାହ ଦାତା । କବି ବନମାଳୀ ତାଙ୍କ ନାମରେ ତାଙ୍କ ରଚିତ ସଙ୍ଗୀତ ମାନ ଭଣିତା କରିଥିବାରୁ ସେ କବିଙ୍କୁ ୨୨ ବାଟି ଭୂସମ୍ପତ୍ତି ଦାନ କରିଥିଲେ । ତାଙ୍କ ନାମରେ କବି ବନମାଳୀ ଗୀତ ଭଣିତ କରିଥିଲେ ମଧ୍ୟ, ତାଙ୍କର ନିଜସ୍ୱ କବି ପ୍ରତିଭା ଥିଲା । ତଦୀୟ ପ୍ରତିଭାରେ ସେ ଓଡ଼ିଆ ସାହିତ୍ୟରେ ଜଣେ ଗୀତିକାର ରୂପେ ସୁପରିଚିତ ।

*** ସାନନ୍ଦ ଦ୍ୱିଜ**

(ଅଷ୍ଟାଦଶ ଶତାବ୍ଦୀ)

ସାନନ୍ଦ ଦ୍ୱିଜଙ୍କ ରଚିତ ଜଗନ୍ନାଥଙ୍କ ଜଣାଣ ଅତ୍ୟନ୍ତ ହୃଦୟସ୍ପର୍ଶୀ । ତାଙ୍କ ସମ୍ପର୍କରେ ବିଶେଷ ବିବରଣୀ ଏବେବି ଅଜ୍ଞାତ ।

*** ଭରତ ଦାସ**

(ଅଷ୍ଟାଦଶ ଶତାବ୍ଦୀ)

ତାଙ୍କର କେତୋଟି ଜଗନ୍ନାଥ ଭଜନ/ଜଣାଣରେ କବି ଆମ ସାହିତ୍ୟରେ ସୁପରିଚିତ ଓ ସୁପ୍ରତିଷ୍ଠିତ ।

*** କବି କଳ୍ପଲତା ଜେମା**

(ଅଷ୍ଟାଦଶ ଶତାବ୍ଦୀ)

କବି କଳ୍ପଲତା ଜେମା ତାଙ୍କର ମାତ୍ର ଗୋଟିଏ ଜଗନ୍ନାଥଙ୍କ ଜଣାଣ "ଜଗବନ୍ଧୁ ନାଥଙ୍କୁ ଯେ ମୂର୍ଚ୍ଛି ନୁହଇଁ" ପାଇଁ ଆମ ଜଣାଣ ସାହିତ୍ୟରେ ପ୍ରସିଦ୍ଧି ଲାଭ କରିଛନ୍ତି ।

*** ବଳଭଦ୍ର, ରାମଚନ୍ଦ୍ର, ରାମ**

(ଅଷ୍ଟାଦଶ ଶତାବ୍ଦୀ)

ଅଷ୍ଟାଦଶ ଶତାବ୍ଦୀର ଏହି ତିନିଜଣ କବି ବଳଭଦ୍ର, ରାମଚନ୍ଦ୍ର, ରାମଙ୍କର ସବିଶେଷ ବିବରଣୀ ଏବେବି ଅଜ୍ଞାତ । ଏ ହେଲେ ମଧ୍ୟ ଏ କବି ତ୍ରୟ ନିଜ ନିଜ ଭଜନ/ଜଣାଣରେ ଜଗନ୍ନାଥଙ୍କ ପ୍ରତି ସେମାନଙ୍କ ଭକ୍ତିମତ୍ତାର ପରାକାଷ୍ଠା ପ୍ରଦାନ କରିଛନ୍ତି ।

*** ହରେକୃଷ୍ଣ ସିଂହ ଯୁବରାଜ**

ଅଷ୍ଟାଦଶ ଶତାବ୍ଦୀ

କବିଙ୍କର ଯେଉଁ ଗୋଟିଏ ଭଜନ "ଜଗବନ୍ଧୁ ରଥାଙ୍ଗ ପାଣି, ରତ୍ନ ସିଂହାସନ ମଉଡ଼ମଣି" ଏହି ସଙ୍କଳନରେ ସଂଗୃହୀତ, ତାହାହିଁ କବିଙ୍କ ଜଗନ୍ନାଥ ପ୍ରୀଣତାର ଶ୍ରେଷ୍ଠ ପରିଚୟ ପ୍ରଦାନ କରେ ।

*** ରାମକୃଷ୍ଣ ପଟ୍ଟନାୟକ କବିଚନ୍ଦ୍ର**

(ଅଷ୍ଟାଦଶ ଶତାବ୍ଦୀ)

ରାମକୃଷ୍ଣ ପଟ୍ଟନାୟକ କବିଚନ୍ଦ୍ରଙ୍କ ସଂଗୀତାବଳୀ ଏବେବି ଅପ୍ରକାଶିତ । ତଥାପି ତାଙ୍କ ରଚିତ ଏଇ ଗୋଟିଏ ସଂଗୀତରେ ସେ ଯେ କିପରି ଜଣେ ଶକ୍ତିଶାଳୀ କବି, ତାହା ସ୍ପଷ୍ଟ ଅନୁମେୟ । ବ୍ରଜବାସୀ ବାବାଜି ବୈଷ୍ଣବ ଚରଣ ଦାସ ଓରଫ ବେଣୁଧର ପଟ୍ଟନାୟକ କବି ରାମକୃଷ୍ଣ ପଟ୍ଟନାୟକ କବିଚନ୍ଦ୍ରଙ୍କ ଭଜନ, ଜଣାଣ ଗୁଡ଼ିକ ସଂଗ୍ରହର ଆଦ୍ୟ ଉଦ୍ୟମ କରିଥିଲେ ; କିନ୍ତୁ ବାବାଜି ବୈଷ୍ଣବ ଚରଣ ଦାସଙ୍କ ଦେହାନ୍ତ ଯୋଗୁ ସେ ଆଉ ଲୋକ ଲୋଚନକୁ ଆସି ପାରିଲା ନାହିଁ ।

## * ଆର୍ତ୍ତଦାସ

(ଅଷ୍ଟାଦଶ ଶତାବ୍ଦୀ)

ପୁରୀଜିଲ୍ଲା ଅନ୍ତର୍ଗତ ନିମାପଡ଼ା ଥାନାର ପତ୍ତା ଗୁଆଡଗିରେ ଜନ୍ମ । ସେଇଠାରେ ଥିବା ଏକ ଡିହକୁ ଏପର୍ଯ୍ୟନ୍ତ ସେଇ ଅଞ୍ଚଳର ଲୋକେ ଆର୍ତ୍ତିଦାସ ଡିହ ବୋଲି କହନ୍ତି । ସେ କେତେକ ସମୟ କୃଷିକାର୍ଯ୍ୟ ରୂପେ ଜୀବନ ଅତିବାହିତ କରିଥିଲେ । ଭଗବାନଙ୍କ ଅଶେଷ କରୁଣା ତାଙ୍କ ପଛେ ପଛେ ରହିଥିଲା । କଥିତ ଅଛି ତାଙ୍କର ଭଗବତ ଭକ୍ତି ଯୋଗୁଁ ସେ ପ୍ରଚଣ୍ଡ ଖରାରେ କୃଷିକ୍ଷେତ୍ରରେ କାମ କରୁଥିଲା ବେଳେ କୃଷିକ୍ଷେତ୍ରର ସେହି ସେହି ସ୍ଥାନ ଗୁଡ଼ିକ ମେଘ ଛାଇଁ ଛାଇ ହୋଇ ଯାଉଥିଲା । ସେ ଗୃହସ୍ଥ ଜୀବନ ଯାପନ କରୁଥିଲେ ମଧ୍ୟ, ଯୌବନରେ ଗୃହତ୍ୟାଗୀ ହେଲେ । ସେତେବେଳକୁ ସେ ବାକ୍‌ସିଦ୍ଧ ହୋଇ ସାରିଲେଣି । ତେଣୁ ସେ ଯେତେବେଳେ ଯାହାକୁ ଯାହା କହୁଥିଲେ ବା ଆଜ୍ଞା ଦେଉଥିଲେ ତାହା ଅକ୍ଷରେ ଅକ୍ଷରେ ଫଳୁଥିଲା । ସେ ଜଣେ ସିଦ୍ଧ ଯୋଗୀ ଓ ଦାଣ୍ଡଧୂଆ ସମ୍ପ୍ରଦାୟର ପ୍ରବର୍ତ୍ତକ ଓ ତତ୍କାଳୀନ ବୈଷ୍ଣବ ଧର୍ମର ପୂର୍ଣ୍ଣ ସମର୍ଥକ ଥିଲେ । ମହାପୁରୁଷ ବାଇଦାସ ତାଙ୍କ ପ୍ରତିଷ୍ଠିତ ପୁରୀର ପ୍ରସିଦ୍ଧ ବେଲୁପଡ଼ା ମଠର ଉତ୍ତରାଧିକାରୀ ରୂପେ ଆର୍ତ୍ତିଦାସଙ୍କୁ ଗ୍ରହଣ କରିଥିଲେ ଓ ପରବର୍ତ୍ତୀ କାଳରେ ଆର୍ତ୍ତିଦାସ ଏଇ ମଠର ମହନ୍ତ ହୋଇଥିଲେ । ସିଦ୍ଧ ପୁରୁଷ ଆର୍ତ୍ତିଦାସ ଓଡ଼ିଶାର ବିଭିନ୍ନ ସ୍ଥାନ ପର୍ଯ୍ୟଟନ କାଳରେ ଏକରୁ ଅଧିକ ଗାଦି ପ୍ରତିଷ୍ଠା କରି ଯାଇଛନ୍ତି ଓ "ଗାଦିବହି" ଶବ୍ଦଟି ଆର୍ତ୍ତିଦାସଙ୍କ ଦ୍ୱାରା ଓଡ଼ିଶାରେ ପ୍ରଚଳିତ । କବି ତାଙ୍କର ସମସ୍ତ ଜଣାଣ, ଭଜନରେ, ତାଙ୍କର ସ୍ୱାଭିମାନ ଓ ସ୍ୱାତନ୍ତ୍ର୍ୟ ପ୍ରତି ଛନ୍ଦେ ଛନ୍ଦେ ଫୁଟାଇଛନ୍ତି ।

## * କାର୍ତ୍ତିକ, * ଗୋପାଳ, * ଦାମୋଦର ଦ୍ୱିଜ
## * ନୃସିଂହ ଗଜପତି, * ପଦ୍ମନାଭ ପଟ୍ଟନାୟକ,
## * ରାମକୃଷ୍ଣ, * ରାଧାନାଥ, * ରସାନନ୍ଦ ଓ ସ୍ୱପ୍ନାନନ୍ଦ

(ଅଷ୍ଟାଦଶ ଶତାବ୍ଦୀ)

ଉପର ବର୍ଣ୍ଣିତ କବିମାନଙ୍କ ସମ୍ପର୍କରେ ସବିଶେଷ ବିବରଣୀ ଅଜ୍ଞାତ । ଏହି କବିମାନଙ୍କର ଯେଉଁ ଯେଉଁ ଜଗନ୍ନାଥ ଜଣାଣ/ଭଜନଗୁଡ଼ିକ ସଂଗୃହୀତ ହୋଇଛି, ସେହି ସେହି ଜଣାଣ/ ଭଜନ ମାଧ୍ୟମରେ ହିଁ ସେମାନେ ସେମାନଙ୍କର ପ୍ରତିଭାକୁ ଆମ ଆଗରେ ପ୍ରତିଷ୍ଠିତ କରି ଯାଇଛନ୍ତି ।

## * କବିସୂର୍ଯ୍ୟ ବଳଦେବ ରଥ

## (ଊନବିଂଶ ଶତାବ୍ଦୀ)

୧୭୮୯-୧୮୪୫

ଓଡ଼ିଆ ସାହିତ୍ୟରେ କବିସୂର୍ଯ୍ୟ ବଳଦେବ ରଥ ଏକ ପ୍ରତିଭାଶାଳୀ କବି । ତାଙ୍କ ରଚିତ "କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ" ଓଡ଼ିଆ ସାହିତ୍ୟରେ ଯେତିକି ଆଦୃତ, ସେତିକି ହିଁ ଚର୍ଚ୍ଚିତ । ଏହାଛଡ଼ା କବିସୂର୍ଯ୍ୟ ଅସଂଖ୍ୟ ଅସଂଖ୍ୟ ଜଣାଣ, ଚଉତିଶା ଚଉପଦୀର ସ୍ରଷ୍ଟା ଭାବେ ଖ୍ୟାତି ଲାଭ କରିଛନ୍ତି । ତାଙ୍କର ଅନ୍ୟାନ୍ୟ ରଚନାମାନଙ୍କ ମଧ୍ୟରେ "ଜଗଦମ୍ବା ମାଳଶ୍ରୀ" "ହାସ୍ୟ କଲ୍ଲୋଳ" ରତ୍ନାକର ଚମ୍ପୂ ଓ ଅସମ୍ପୂର୍ଣ୍ଣ କାଳ୍ପନିକ କାବ୍ୟ ଚନ୍ଦ୍ରକଳା ପ୍ରଭୃତି ପ୍ରଧାନ । ଏହି ପ୍ରଖ୍ୟାତନାମା କବି ୧୭୮୯ ମସିହା ମାଘମାସ ଶ୍ରୀପଞ୍ଚମୀ ଦିନ ରଥ ସାମନ୍ତ ବଂଶରେ ବଡ଼ଖେମଣ୍ଡିରେ ଜନ୍ମଗ୍ରହଣ କରିଥିଲେ । ଏମାନଙ୍କ ପୂର୍ବପୁରୁଷ ମଣିପୁର ଅଞ୍ଚଳରୁ ଆସି ଓଡ଼ିଶାର ଗଞ୍ଜାମ ଜିଲ୍ଲାରେ ବସବାସ କରୁଥିଲେ ।

ବଳଦେବ ଶୈଶବରୁ ମାତୃହରା ଥିଲେ । ବଳଦେବଙ୍କ ପିତା ଉଜ୍ଜ୍ୱଳ ରଥ ଜଣେ ଓ ସୁଗାୟକ ଧୂରୀଣ ସଂସ୍କୃତ ପଣ୍ଡିତ । ପିତା ଉଜ୍ଜ୍ୱଳ ରଥଙ୍କ ସଂସ୍କୃତ ଜ୍ଞାନ ବଳଦେବଙ୍କୁ ବିଶେଷ ପ୍ରେରଣା ସୃଷ୍ଟି କରିଥିଲା । ପରବର୍ତ୍ତୀ କାଳରେ ବଳଦେବ ସଂସ୍କୃତ ସାହିତ୍ୟରେ ବିଶେଷ ପାରଦର୍ଶିତା ଲାଭ କରିପାରିଥିଲେ । ଜଳନ୍ତର ରାଜା ତାଙ୍କୁ କବିସୂର୍ଯ୍ୟ ଉପାଧିରେ ଭୂଷିତ କରିଥିଲେ ଓ ତାଙ୍କର ଏହି ଉପାଧିକୁ ପୁରୀର ଗଜପତି ମୁକୁନ୍ଦଦେବ ସ୍ୱୀକୃତି ପ୍ରଦାନ କରିଥିଲେ । କବିସୂର୍ଯ୍ୟ ନିଜ ଜୀବଦ୍ଦଶାରେ ଆଠଗଡ଼, ଜଳନ୍ତର, ଖଲ୍ଲିକୋଟ, ପାରଳାଖେମଣ୍ଡି ତଥା ପୁରୀ ପ୍ରଭୃତି ରାଜାମାନଙ୍କର ପୃଷ୍ଠପୋଷକତା ଲାଭ କରିବାକୁ ସମର୍ଥ ହୋଇଥିଲେ ଓ ବିଭିନ୍ନ ରାଜାଙ୍କ ନାଁରେ ନିଜ ରଚିତ ସଂଗୀତ ମାନ ମଧ୍ୟ ଭଣିତା କରିଥିଲେ । କଥିତ ଅଛି ଠାକୁରାଣୀଙ୍କ କୃପା କରୁଣାରେ ତାଙ୍କ କବି ପ୍ରତିଭା ଚରମ ବିକାଶ ଲାଭ କରିଥିଲା । କବିବର ରାଧାନାଥ ତାଙ୍କ ଚିଲିକା କାବ୍ୟରେ କବିସୂର୍ଯ୍ୟଙ୍କ ଅମରକୃତି ଓ ପ୍ରତିଭା ପ୍ରତି ସମ୍ମାନ ପ୍ରଦର୍ଶନ କରି କହିଛନ୍ତି—

"ଧନ୍ୟ ରଥେ ତୁମ୍ଭ ଜନ୍ମ ଶୁଭକ୍ଷଣେ
ମୃତ୍ୟୁଞ୍ଜୟ ତୁମ୍ଭେ ଉତ୍କଳ ଭୁବନେ
ତୁମ ମାଟି ଦେହ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ"

## * ଯଦୁମଣି ମହାପାତ୍ର

(ଊନବିଂଶ ଶତାବ୍ଦୀ)

୧୭୯୫-୧୮୬୬

ହାସ୍ୟରସିକ ତଥା ଆଶୁକବି ଯଦୁମଣି ମହାପାତ୍ର "ଉତ୍କଳ ଘଣ୍ଟ" ରୂପେ ସୁପରିଚିତ । କେବଳ ଓଡ଼ିଆରେ ନୁହେଁ, ସଂସ୍କୃତ ସାହିତ୍ୟରେ ମଧ୍ୟ ତାଙ୍କର ବିଶେଷ ପାରଦର୍ଶିତା ଥିଲା । ସେ ଗଞ୍ଜାମ ଜିଲ୍ଲାର ଆଠଗଡ଼ରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ ନୟାଗଡ଼ ସାମନ୍ତଙ୍କ ପୃଷ୍ଠପୋଷକତା ଲାଭ କରି ନୟାଗଡ଼ ଇଟାମାଟିରେ ବସବାସ କରିଥିଲେ । ଦାରିଦ୍ର୍ୟ ତାଙ୍କର ଚିର ସହଚର ଥିଲା ତଥାପି ଶେଷ ନିଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ତାଙ୍କର ସାହିତ୍ୟ ସାଧନା ଅକ୍ଷୁର୍ଣ୍ଣ ଓ ଅତୁଟ ରହିଥିଲା । ସେ ଜାତି ଓ ବୃତ୍ତିରେ ଥିଲେ ବନ୍ଦୀଣୀ ଓ ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟର ଅପୂର୍ବ ଚନ୍ଦାଣୀ ହେଲେ । ତାଙ୍କ ରଚିତ "ଯଦୁମଣି ରହସ୍ୟ" ଓଡ଼ିଶାର ଘରେ ଘରେ ସୁପରିଚିତ । ତାଙ୍କର ହାସ୍ୟ ପରିହାସ ଓ ବ୍ୟଙ୍ଗ ରଚନା ପାଇଁ କେହି କେହି ତାଙ୍କୁ ଓଡ଼ିଶାର 'ବୀରବଲ' ବୋଲି କହିଥାଆନ୍ତି । ଏହାଛଡ଼ା ତାଙ୍କର ବହୁ ଚଉପଦୀ ଓ ଭକ୍ତିସଙ୍ଗୀତ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛି । ତାଙ୍କର ବିଶିଷ୍ଟ କୃତିମାନଙ୍କ ମଧ୍ୟରେ "ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର" ଓ ରାଘବ ବିଳାସ ପ୍ରଧାନ ।

## * ଗୋପାଳକୃଷ୍ଣ ପଟ୍ଟନାୟକ

(ଊନବିଂଶ ଶତାବ୍ଦୀ)

୧୭୮୫-୧୮୬୨

ରାଜ ପରିବାରରେ ପାଞ୍ଜିଆ କାମ କରି ଆସୁଥିବା ଏକ ପରିବାରରେ ଗୋପାଳକୃଷ୍ଣ ପଟ୍ଟନାୟକ ଗଞ୍ଜାମ ଜିଲ୍ଲାର ପାରଳାଖେମୁଣ୍ଡିରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ-ନାମ ବନବାସୀ ପଟ୍ଟନାୟକ ଓ ମାତାଙ୍କ ନାମ ଲଳିତାଦେବୀ । ବହୁ ଶାସ୍ତ୍ର ଦର୍ଶିତା ଓ ପାଣ୍ଡିତ୍ୟ ଗୋପାଳକୃଷ୍ଣଙ୍କର ନ ଥିଲେ ମଧ୍ୟ, ସେ ଯେଉଁ ସରଳ, ସହଜ ଓ ସାବଲୀଳ ଭାଷାରେ ସଙ୍ଗୀତ ମାନ ରଚନା କରିଛନ୍ତି, ତାହା ଓଡ଼ିଆ ଦକ୍ଷିଣୀ ପିଲା, ଆଖଡ଼ା ପିଲା କିମ୍ବା ଗୋଟିପୁଅଙ୍କ ପାଖରେ ଅଦ୍ୟାବଧି ଅମୂଲ୍ୟସମ୍ପଦ ହୋଇରହିଛି । ଗୋପାଳକୃଷ୍ଣଙ୍କର ପୂର୍ବପୁରୁଷମାନେ କଟକଜିଲ୍ଲା ଯାଜପୁର ସବ୍‌ଡିଭିଜନ କଂସାକବାଟି ଗ୍ରାମରୁ ଯାଇ ପରବର୍ତ୍ତୀକାଳରେ ପାରଳାଖେମୁଣ୍ଡିରେ ବସବାସ କରିଥିଲେ । ବିଶେଷତଃ ତାଙ୍କ ରଚନା ମାଧୁର୍ଯ୍ୟ ଯୋଗୁଁ ତାଙ୍କୁ "କବି କଳହଂସ" କୁହାଯାଇଥାଏ । ଜୀବନର ସମସ୍ତ ଦୁଃଖ ଯନ୍ତ୍ରଣାକୁ ସେ ରାଧାକୃଷ୍ଣଙ୍କ ପୂଜା ଆରାଧନାରେ ଭୁଲିଥିଲେ । ସେଥିପାଇଁ

ଶେଷ ନିଶ୍ୱାସ ତ୍ୟାଗ କରିବାର ଅବ୍ୟବହିତ ପୂର୍ବରୁ କବି ଉଦାତ୍ତ ଘୋଷଣା କରି କହିଥିଲେ—

"ଜୀବ ଯିବାକୁ ହୋଇଲା ସଜ
ରାଧା ଗୋବିନ୍ଦ ଭଜ"

## * ଗୌରଚରଣ ଅଧିକାରୀ

(ଊନବିଂଶ ଶତାବ୍ଦୀ)

୧୮୧୪-୧୮୯୦

ଭକ୍ତକବି ଗୌରଚରଣ ଅଧିକାରୀ ଭାଦ୍ରମାସ ରାଧାଷ୍ଟମୀ ଦିନ ପୁରୀଜିଲ୍ଲା ଖୋର୍ଦ୍ଧା ସବଡିଭିଜନ ଅନ୍ତର୍ଗତ ଲେହଙ୍ଗ ଗ୍ରାମରେ ୧୮୧୪ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କନାମ ମୁକୁନ୍ଦ ମିଶ୍ର । ପିତାଙ୍କର ଅସ୍ୱଚ୍ଛଳ ଅସୁସ୍ଥ ଯୋଗୁଁ ପରିବାର ଭରଣ-ପୋଷଣପାଇଁ ଘୋର ସଙ୍କଟ ଦେଖାଦେବାରୁ ଗୌରଚରଣ ଗୋଟିଏ ପାଠଶାଳା ଚାଟଶାଳୀ ସ୍ଥାପନ କରି ପରିବାରର ଭରଣପୋଷଣ କରୁଥିଲେ । ପରବର୍ତ୍ତୀ କାଳରେ ତାଙ୍କର ଦୀକ୍ଷାଗୁରୁ ସଦାନନ୍ଦ ବ୍ରହ୍ମଚାରୀ ରଣପୁର ସନ୍ନିକଟସ୍ଥ ପୁରୁଣାବସ୍ତ ଗ୍ରାମରେ ସ୍ଥାପନ କରିଥିବା ନିଜ ମଠର ଅଧିକାରୀ ପଦ ଗୌରଚରଣଙ୍କୁ ପ୍ରଦାନ କଲା ଉତ୍ତାରୁ, ସେହିଦିନଠାରୁ ସେ କୁଳସଂଜ୍ଞା 'ମିଶ୍ର" ପରିବର୍ତ୍ତେ ଗୌରଚରଣ ଅଧିକାରୀ ରୂପେ ନାମିତ ହେଲେ ଓ ତାଙ୍କ ପରିବାରର ଭରଣ ପୋଷଣର ବିଶେଷ କିଛି କଷ୍ଟ ରହିଲା ନାହିଁ । ପୁରୁଣାବସ୍ତ ମଠର ଅଧିକାରୀ ହେବା ପରେ ପରେ ତାଙ୍କର ମନପ୍ରାଣ କୃଷ୍ଣଲୀଳା ରଚନାରେ ବ୍ୟାକୁଳ ହୋଇ ଉଠିଲା । ବିଶେଷ କରି କୃଷ୍ଣଙ୍କ ସମ୍ପର୍କରେ ସେ ବଙ୍ଗଳା ଓଡ଼ିଆ ମିଶା ସଙ୍କୀର୍ତ୍ତନମାନ ଗୀତାକାରରେ ଲେଖି କୀର୍ତ୍ତନିଆ ମାନଙ୍କୁ ଦେଉଥିଲେ ଓ କୀର୍ତ୍ତନିଆମାନେ ତାଙ୍କରଚିତ ସଙ୍କୀର୍ତ୍ତନମାନ ବିଭିନ୍ନ ଅଞ୍ଚଳରେ ଗାନ କରିବା ଫଳରେ ତାଙ୍କର ଖ୍ୟାତି ଚତୁର୍ଦ୍ଦିଗରେ ବ୍ୟାପ୍ତ ହେଲା । ଗୌରଚରଣ କେବଳ ଜଣେ କବି ନ ଥିଲେ । ସେ ମଧ୍ୟ ସମସ୍ତଙ୍କୁ 'ଦୀକ୍ଷା' ପ୍ରଦାନ କରି "ଦୀକ୍ଷାଗୁରୁ ନାମରେ" ବିଦିତ ହୋଇଥିଲେ । ବିଶେଷ କରି ସେ ଓଡ଼ିଆ ମିଶା ବଙ୍ଗଳା ଓ ବ୍ରଜବୋଲି ଭାଷାରେ ଅସଂଖ୍ୟ ଅସଂଖ୍ୟ ସଙ୍ଗୀତମାନ ରଚନା କରିଛନ୍ତି । ତାଙ୍କର କୃତିମାନଙ୍କ ମଧ୍ୟରେ "ଗୌରଚରଣ ଗୀତାବଳୀ" ଗୌରହରି ଭଜନ ଶତକ" କୃଷ୍ଣଲୀଳା, ଆଠରସ, ପଶାଖେଳ, ଚମତ୍କାର ଚନ୍ଦ୍ରିକା, ଶରଦ ରାସ, ଅଦ୍ୱୈତ ମଙ୍ଗଳ, ପ୍ରଭୃତି ପ୍ରଧାନ । ଓଡ଼ିଆ ସାହିତ୍ୟକୁ ସର୍ବଜନବୋଧ ଭାଷାରେ ସଙ୍ଗୀତରଚନା ଗୌରଚରଣଙ୍କ ଶ୍ରେଷ୍ଠଦାନ । ଗୌରଚରଣ ଶୁଦ୍ଧା ଭକ୍ତି ମାର୍ଗର ପଥିକ ଓ ଉପାସକ । ୧୮୯୦ ମାର୍ଗଶିର ମାସ କୃଷ୍ଣ ଏକାଦଶୀ ଦିନ ସେ ଇହଲୀଳା ସାଙ୍ଗ କରିଥିଲେ ।

## * ବାଙ୍କ ଦାସ

(ଊନବିଂଶ ଶତାବ୍ଦୀ)

ପୁରୀ ଜିଲ୍ଲାର ତତ୍କାଳୀନ ପାଲାଗାଆଣ ରୂପେ ବିଶେଷ ପ୍ରସିଦ୍ଧିଲାଭ କରିଥିଲେ । ପାଲା ଗାଆଣ ଛଡ଼ା ଆଶୁ କବିତା ରଚନାରେ ମଧ୍ୟ ସେ ବିଶେଷ ପାରଦର୍ଶିତା ଲାଭ କରିଥିଲେ । ତାଙ୍କ ରଚିତ ବହୁ ସଙ୍ଗୀତ ଲୋକମୁଖରେ ଗୀତ ହେଉଅଛି ।

## * ରଘୁନାଥ ଦ୍ବିଜ

(ଊନବିଂଶ ଶତାବ୍ଦୀ)

ତାଙ୍କର ସବିଶେଷ ବିବରଣୀ ଏବେବି ଅଜ୍ଞାତ ।

## * ଗୋପୀନାଥ

(ଊନବିଂଶ ଶତାବ୍ଦୀ)

ତାଙ୍କର ସବିଶେଷ ବିବରଣୀ ଏବେବି ଅଜ୍ଞାତ ।

## ଚନ୍ଦନ ହଜୁରୀ

(ଊନବିଂଶ ଶତାବ୍ଦୀ)

ଓଡ଼ିଶାରେ ଗୋଟିଏ କିମ୍ବଦନ୍ତୀ ଏବେବି ପ୍ରଚଳିତ ।

"ନଈରେ ବାଲିଆ ଚହଟିଲା
କଜଳ ସିନ୍ଦୂର ନାଆ ଲୋ ରାଣ୍ଡ
ପୁଣି ବୁଖିଆ ନେଉଟିଲା"

ଏଇ ବୁଖିଆ ହିଁ ହେଉଛନ୍ତି ସୁନାମଧନ୍ୟ ବୁଖି ଖୁଣ୍ଟିଆ ବା ଚନ୍ଦନ ହଜୁରୀ । କାର୍ତ୍ତିକ ମାସ ଏକାଦଶୀ ଦିନ ପୁରୀ ହରଚଣ୍ଡୀ ସାହିରେ ୧୮୨୭ ଖ୍ରୀଷ୍ଟାବ୍ଦରେ ଭୀମସେନ ହଜୁରୀଙ୍କ ଘରେ ପୁଅଟିଏ ଜନ୍ମ ହୋଇଥିଲା । ସେତେବେଳକୁ ବୁଖି ଖୁଣ୍ଟିଆଙ୍କ ପିତା ଭୀମସେନ ହଜୁରୀ ଜଗନ୍ନାଥଙ୍କ ଚନ୍ଦନ ସେବାରେ ବ୍ୟସ୍ତ ଥିବାରୁ ଜଗନ୍ନାଥଙ୍କୁ ଲୁହଗାଧୁଆ ହୋଇ କହିଥିଲେ "ମୋ ଚନ୍ଦନ ତୋତେ ଲାଗିଲା"—ସେଇ ଦିନଠୁ ପୁଅର ନାଁ ଚନ୍ଦନ ରହିଲା, ଡାକ ନାଁ ବୁଖି ବା ବୁଖି ଖୁଣ୍ଟିଆ । ପ୍ରବାଦ ରହିଛି ପରବର୍ତ୍ତୀକାଳରେ ଚନ୍ଦନ ହଜୁରୀ ଓରଫ ବୁଖି ଖୁଣ୍ଟିଆ ସିପାହୀ ବିଦ୍ରୋହର ଅନ୍ୟତମ ନେତାଥିଲେ ଓ ଝାନ୍ସୀରାଣୀ

ଲକ୍ଷ୍ମୀବାଈଙ୍କର ପ୍ରଧାନ ସେନାପତି ଓ ଧର୍ମ ଭାଇ ଥିଲେ । ତାଙ୍କର ଶେଷ ଜୀବନେ ସେ ନିଜର ଜନ୍ମମାଟି ପୁରୀରେ ଅତିବାହିତ କରି ଜଗନ୍ନାଥଙ୍କ ସେବାରେ ଜୀବନ ଅର୍ପଣ କରିଥିଲେ । ସେ ବିପ୍ଳବୀ ଯେପରି, ସେପରି ମଧ୍ୟ ଜଣେ କବି । ତାଙ୍କ ଗ୍ରନ୍ଥିବନ୍ଧରେ ଲିଖିତ "ଲକ୍ଷ୍ମୀବାଈ" ପାଣ୍ଡୁଲିପି ରହିଛି । ତାହା ପ୍ରକାଶ ପାଇଲେ ତାଙ୍କ କବି ପ୍ରତିଭା ଆହୁରି ଉଜ୍ଜ୍ୱଳ ହେବ ।

### * ଦିବ୍ୟ ସିଂହ ଦେବ ମହାରାଜା

(ଊନବିଂଶ ଶତାବ୍ଦୀ)

କଳାପାଣି ଯିବା ପୂର୍ବରୁ ଗଜପତି ଦିବ୍ୟସିଂହ ଦେବ ମହାରାଜାଙ୍କୁ ବ୍ରିଟିଶ୍ ସରକାର କଟକରେ ବନ୍ଦୀ କରିଥିଲେ । ଗଜପତି ମହାରାଜାଙ୍କ ପ୍ରାଣରେ ସେତେବେଳେ ଯେଉଁ ଦୁଃଖଦାୟକ ଦୁଃସମୟ ଆସିଥିଲା, ତାହାର ଭାବାନ୍ତର୍ଦ୍ଧି ଜଗନ୍ନାଥଙ୍କ ଚରଣରେ ଅତି କାତର ଓ କରୁଣ କଣ୍ଠରେ ମହାରାଜା ତାଙ୍କର ଏଇ ଜଣାଣ ମାଧ୍ୟମରେ ନିବେଦନ କରିଛନ୍ତି । ଏ ଜଣାଣଟି ଯେତିକି ହୃଦୟସ୍ପର୍ଶୀ, ସେତିକି ହୃଦୟ ବିଦାରକ ।

### * ଭଗୀରଥି ଦେବ

(ଊନବିଂଶ ଶତାବ୍ଦୀ)

ତାଙ୍କ ସମ୍ପର୍କରେ ସବିଶେଷ ବିବରଣୀ ଏବେବି ଅଜ୍ଞାତ ।

### * ଗୌରଚନ୍ଦ୍ର ନରପତି

(ଊନବିଂଶ ଶତାବ୍ଦୀ)

ତାଙ୍କ ସମ୍ପର୍କରେ ସବିଶେଷ ବିବରଣୀ ଏବେବି ଅଜ୍ଞାତ ।

### * ତ୍ରିଲୋଚନ ପଟ୍ଟଯୋଷୀ

(ଊନବିଂଶ ଶତାବ୍ଦୀ)

ପୁରୀଜିଲ୍ଲା ରଣପୁରସ୍ଥ ରମାବଲ ଶାସନରେ ଜନ୍ମ ଗ୍ରହଣ କରିଥିଲେ । ବହୁ ଚଉପଦୀ, ଜଣାଣ, ଭଜନ ଓ ଗୀତିନାଟ୍ୟର ପ୍ରଣେତା । ଏହାଛଡ଼ା ସେ ଜଣେ ବିଶିଷ୍ଟ ପାଲା ଗାୟକ ଥିଲେ ।

*** ପଦନ ଦାସ**

(ଊନବିଂଶ ଶତାବ୍ଦୀ)

ଏହାଙ୍କ ସମ୍ପର୍କରେ ସବିଶେଷ ବିବରଣୀ ଅଜ୍ଞାତ ।

*** ମାନଗୋବିନ୍ଦ ହୋତା**

(ଊନବିଂଶ ଶତାବ୍ଦୀ)

ସଙ୍ଗୀତ ଅଷ୍ଟକାଳ, ଅସଂଖ୍ୟ ଚଉତିଶା, ଚଉପଦୀ ଭକ୍ତି କବିତାର ଲେଖକ ରୂପେ ସୁପରିଚିତ ଓ ସୁପ୍ରତିଷ୍ଠିତ ।

*** ବାଇମୁର୍ଣ୍ଣ ଓ ପରମାନନ୍ଦ**

(ଊନବିଂଶ ଶତାବ୍ଦୀ)

ଏମାନଙ୍କ ସମ୍ପର୍କରେ ସବିଶେଷ ବିବରଣୀ ଅଜ୍ଞାତ ।

*** ସୋମନାଥ ସିଂହ ମର୍ଦ୍ଦରାଜ**

(ଊନବିଂଶ ଶତାବ୍ଦୀ)

୧୮୧୪-୧୮୫୩

ସୋମନାଥ ସିଂହ ମର୍ଦ୍ଦରାଜ ଓ ସୋମନାଥ ସିଂହ ଜଗଦେବ ଏକ ବ୍ୟକ୍ତି । ଏହି ସଂକଳନରେ ସୋମନାଥ ସିଂହ ମର୍ଦ୍ଦରାଜଙ୍କ ନାମରେ ଗୋଟିଏ ଜଗନ୍ନାଥ ଜଣାଣ ଓ ସୋମନାଥ ସିଂହ ଜଗଦେବଙ୍କ ନାମରେ ତିନୋଟି ଜଗନ୍ନାଥ ଜଣାଣ ସଂଗୃହୀତହୋଇଛି । ଏହି ସୋମନାଥ ସିଂହ ମର୍ଦ୍ଦରାଜା ବା ଜଗଦେବ ଅନୁଗୁଳର ଶେଷ ନରପତି । ବ୍ରିଟିଶ ସରକାରଙ୍କ ଦ୍ୱାରା ବନ୍ଦୀ ହୋଇ ସେ ହଜାରିବାଗ୍ ବନ୍ଦୀଶାଳାରେ ରାଜବନ୍ଦୀ ଭାବେ ରହିଥିଲେ ଓ ସେହି ଜେଲରେ ହିଁ ସେ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ । ତାଙ୍କର ବହୁ ଚଉତିଶା ଓ ଭକ୍ତିକବିତା ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛି ।

*** କାହ୍ନୁଚରଣ ଓ କମଳଲୋଚନ**

(ଊନବିଂଶ ଶତାବ୍ଦୀ)

ଏମାନଙ୍କ ସମ୍ପର୍କରେ ସବିଶେଷ ବିବରଣୀ ଅଜ୍ଞାତ ।

## * ଅଦକନ୍ଦ ଦାସ

(ଊନବିଂଶ ଶତାବ୍ଦୀ)

ଏହାଙ୍କ ସମ୍ପର୍କରେ ସବିଶେଷ ବିବରଣୀ ଅଜ୍ଞାତ ।

## * ଦାମୋଦର ପଟ୍ଟନାୟକ

(ଊନବିଂଶ ଶତାବ୍ଦୀ)

୧୮୬୩-୧୯୧୫

ଢେଙ୍କାନାଳରେ ଜନ୍ମ । ନରସିଂହ ପୁରରେ ବହୁବର୍ଷ ଧରି ଦେଓ୍ୱାନ ଥିଲେ । ତାଙ୍କ ସଂଗୃହୀତ "ସଙ୍ଗୀତ ସାଗର" ଓଡ଼ିଆ ସଙ୍ଗୀତ ସାହିତ୍ୟକୁ ଏକ ଅନବଦ୍ୟ ଅବଦାନ । ସେ ବିଶେଷ ଭାବେ ଭକ୍ତିମୂଳକ ଓ ଜାତୀୟତାବାଦୀ ସଙ୍ଗୀତ ରଚନାରେ ଜଣେ ସୁନାମଧନ୍ୟ ଲେଖକ । ତାଙ୍କ ରଚିତ "କପିଳାସ କ୍ଷେତ୍ର" କାବ୍ୟ, ଜୀବ ପରମ ପ୍ରୀତି, ଜୀବନ ଚମ୍ପା (ସଙ୍ଗୀତ ସମାହାର) ଓ ଶିଶୁ ରଚନା "ଭଲପିଲା" ଓଡ଼ିଆ ସାହିତ୍ୟରେ ଅବିସ୍ମରଣୀୟ ସୃଷ୍ଟି ।

## * ହାଡ଼ି ଦାସ

(ଊନବିଂଶ ଶତାବ୍ଦୀ)

ଜଣେ ସ୍ୱାଧୀନଚେତା ଆଶୁକବି । କଟକ ଜିଲ୍ଲା ଅନ୍ତର୍ଗତ ଛତିଆ ନିକଟବର୍ତ୍ତୀ ଚମ୍ପାପୁର ଗ୍ରାମରେ କମାର ସମ୍ପ୍ରଦାୟରେ ଜନ୍ମଗ୍ରହଣ କରିଥିଲେ ଓ ତାଙ୍କ ସଙ୍ଗୀତମାନଙ୍କରେ 'ହାଡ଼ିଆ ପାମର" "ହାଡ଼ିଆ କମାର" ପ୍ରକାଶ କରିଥିଲେ ମଧ୍ୟ ସେ ଯେ ଭଗବତ୍ ଶକ୍ତିର ଅଶେଷ କୃପା-କରୁଣା ଲାଭ କରିପାରିଥିଲେ, ତାହାହିଁ ଅଲୌକିକ ଘଟଣା । ତାଙ୍କର ପିତାଙ୍କ ନାମ ଡେମେଇ ଓଝା ଓ ମାତାଙ୍କ ନାମ ସେବତୀ, କଥିତ ଅଛି ମନ୍ତ୍ରରାମ ନାମଧେୟ ଦଣ୍ଡିମା ସାଧୁଙ୍କଠାରୁ ଦୀକ୍ଷା ଗ୍ରହଣ କଲା ଉତ୍ତାରୁ ହାଡ଼ୁ ଓଝା ପରିବର୍ତ୍ତେ ଲୋକକୁ ହାଡ଼ି ଦାସ ନାମରେ ନାମିତ କଲେ ଓ ପରବର୍ତ୍ତୀ କାଳରେ ସେ ଚମ୍ପାପୁରରୁ ଆସି ଛତିଆଠାରେ ବସବାସ କରି ଶେଷ ଜୀବନ ସେଇଠି ଅତିବାହିତ କରିଥିଲେ । ସେଠାରେ ତାଙ୍କ ପ୍ରତିଷ୍ଠିତ ଗାଦି ଯାହାକି ଅଧୁନା "ଛତିଆ ବଟ" ନାମରେ ଖ୍ୟାତ । ସେ ଜ୍ଞାନମିଶ୍ରା ଭକ୍ତିର ଉପାସକ ଓ ତାଙ୍କର ଶେଷ ଜୀବନ ଜଗନ୍ନାଥଙ୍କ ଚରଣରେହିଁ ଅର୍ପିତ ହୋଇଥିଲା ।

ତାଙ୍କର ଅସଂଖ୍ୟ ଜଣାଣ, ଚଉତିଶା, ଭଜନ, ମାଳିକା, ରଥଯାତ୍ରା ଗୀତ ଓଡ଼ିଆ ସାହିତ୍ୟରେ ତାଙ୍କୁ ଏକ ସ୍ୱତନ୍ତ୍ର ଆସନର ଅଧିକାରୀ କରିଛି । ତାଙ୍କର

ଲେଖାମାନଙ୍କ ମଧ୍ୟରେ ଶଙ୍ଖନାଭି, ନୀଳମାଧବ ଗୀତା, ଅନନ୍ତ ଗୁପ୍ତ ଟୀକା, କ୍ଷେତ୍ର-ମାହାତ୍ମ୍ୟ, ଭାବନାବଳି, ମୃତ୍ୟୁସମ,ଲକ୍ଷ୍ମୀଧର ବିଳାସ ପ୍ରଧାନ । ତାଙ୍କର ଜୀବନ ଦୁଃଖ ଦୈନ୍ୟ ଓ ଦୁର୍ବିପାକରେ କଟିଥିଲେ ମଧ୍ୟ ଶେଷଜୀବନ ପର୍ଯ୍ୟନ୍ତ ତାଙ୍କ ସାହିତ୍ୟ ସାଧନା ଅକ୍ଷୁର୍ଣ୍ଣ ରହିଥିଲା । ଅଚ୍ୟୁତାନନ୍ଦଙ୍କ ମାଳିକା ଭଳି ହାଡ଼ିଦାସଙ୍କ ମାଳିକା ମଧ୍ୟ ଲୋକମୁଖରେ ପ୍ରଚଳିତ ଓ ପ୍ରସିଦ୍ଧ ।

*** ଭଗବାନ * ବାମଦେବ ଦାସ * ବିହାରୀ**

(ଊନବିଂଶ ଶତାବ୍ଦୀ)

ଏମାନଙ୍କ ସମ୍ପର୍କରେ ସବିଶେଷ ବିବରଣୀ ଏବେବି ଅଜ୍ଞାତ ।

*** ଶ୍ରୀମତୀ କୁଞ୍ଜଲତା**

(ଊନବିଂଶ ଶତାବ୍ଦୀ)

ଏହାଙ୍କ ରଚିତ "ଚୈତନ୍ୟ ବନ୍ଦନା" ଓଡ଼ିଆ ସାହିତ୍ୟରେ ସୁପରିଚିତ । କାହାରି କାହାରି ମତରେ ଯେ "ଚୈତନ୍ୟ ବନ୍ଦନା" ଲେଖିବାରେ ଭକ୍ତଚରଣ ଦାସଙ୍କ "ମଥୁରାମଙ୍ଗଳ ପ୍ରଭାବରେ ବିଶେଷ ପ୍ରଭାବିତ । ସେ ବହୁ ଭକ୍ତିକବିତା ଓ ଜଣାଣର ରଚୟିତ୍ରୀ ।

**ବୈଷ୍ଣବପାଣି**

(ବିଂଶ ଶତାବ୍ଦୀ)

୧୮୮୨-୧୯୫୬

ଲୋକ ନାଟ୍ୟର ଜନକ ଓ ଗଣକବି ଭାବେ ଓଡ଼ିଶାରେ ସୁପରିଚିତ ଓ ସୁପ୍ରତିଷ୍ଠିତ । ଶତାଧିକ ଗୀତିନାଟ୍ୟ, ଗୀତାଭିନୟ, ସୁଆଙ୍ଗ, ଲୀଳା ଓ ସହସ୍ରାଧିକ ଜଣାଣ ଓ ସଙ୍ଗୀତର ଲେଖକ ।

ଏହି ଯୋଗଜନ୍ମା ଗଣକବି କଟକ ଜିଲ୍ଲା ଅନ୍ତର୍ଗତ ମାହାଙ୍ଗା ଥାନାର କୋଠପଦା ଗ୍ରାମରେ ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ ୧୮୮୨ ମସିହା କୁମାର ପୂର୍ଣ୍ଣିମା ଦିନ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ସୁଦର୍ଶନ ପାଣି ଓ ମାତାଙ୍କ ନାମ ଗୁନ୍ଦ ଦେବୀ । ବୈଷ୍ଣବ ପାଣିଙ୍କ ପୂର୍ବନାମ ଶତଘ୍ନ । ବାଲ୍ୟାବସ୍ଥାରେ ଏହି ଶତଘ୍ନ ମରଣାନ୍ତକ ରୋଗରେ ପୀଡ଼ିତ ହେବାରୁ ତାଙ୍କର ପିତାମାତା ତାଙ୍କ ବଞ୍ଚିବାର ଆଉ ଆଶା ଭରସା ନ ରଖି ତାଙ୍କୁ

ଜଗନ୍ନାଥଙ୍କ ବଡ଼ଛତା ତଳେ ବୈଷ୍ଣବ କରିଦେଲେ । ସେହିଦିନ ଠାରୁ ଶତ୍ରୁଘ୍ନ ନାମ ପରିବର୍ତ୍ତେ ସେ ବୈଷ୍ଣବ ନାମରେ ନାମିତ ହେଲେ । ତାଙ୍କ ପରିବାରର ପ୍ରବଳ ଦାରିଦ୍ର୍ୟତା ହେତୁ ବୈଷ୍ଣବ ପାଣି କୈଶୋର ଅବସ୍ଥାରୁହିଁ କୋଠପଦା ମଠର ମହନ୍ତଙ୍କ ଅଧୀନରେ ଫୁଲତୋଳା / ଫୁଲଗୁନ୍ଥା କାମରେ ପ୍ରଥମେ ନିଯୁକ୍ତ ହେଲେ ଓ ତା'ପରେ ଗୋରୁ ଜଗି ନିଜ ପରିବାରର ଗୁଜୁରାଣ ମେଣ୍ଟାଇବାରେ ସାହାଯ୍ୟ କଲେ । କୋଠପଦା ମଠର ମହନ୍ତ ନିଜେ ଜଣେ ନାଟ୍ୟ ସଙ୍ଗୀତ ପ୍ରିୟ ଥିବାରୁ ନିଜ ଗ୍ରାମରେ ଗୋଟିଏ ଯାତ୍ରାଦଳ ଗଢ଼ି, ଯାତ୍ରା ଅଭିନୟାଦି କରାଉଥିଲେ । ମହନ୍ତ ସେତେବେଳେ ବୈଷ୍ଣବ ପାଣିଙ୍କର ସଙ୍ଗୀତ ଓ ଯାତ୍ରା ପ୍ରତି ଆଗ୍ରହ ଦେଖି ଡେରାବିଶିର ଶିବରାମ ସିଂହଙ୍କ ଦାୟିତ୍ୱରେ ତାଙ୍କୁ ସଙ୍ଗୀତ ଓ ନୃତ୍ୟଗୀତାଦି ଶିଖାଇବାର ବ୍ୟବସ୍ଥା କରାଇଦେଲେ । ସେହି ଦିନଠାରୁ ବୈଷ୍ଣବ ପାଣିଙ୍କ ଜୀବନରେ ଏକ ନୂତନ ଅଧ୍ୟାୟ ସୃଷ୍ଟି ହେଲା । ତଥାପି ଘୋର ଅଭାବ ଅନାଟନ ମଧ୍ୟରେ ତାଙ୍କର ଜୀବନ ବିତୁଥାଏ । ଜୀବନରି ଗୁଜୁରାଣ ମେଣ୍ଟାଇବା ପାଇଁ ସେ ନିଜ ଗ୍ରାମର ମଧ୍ୟ ଇଂରାଜୀ ବିଦ୍ୟାଳୟ ଛାତ୍ରାବାସରେ ମାସିକ ଅଢ଼େଇ ଟଙ୍କା ଦରମାରେ ପେଷେଣିଆ ପିଲା ରୂପେ ବାହାଲ ହେଲେ । ଏହି ସମୟରେ ପାଠପଢ଼ା ପ୍ରତି କ୍ରମଶଃ ତାଙ୍କର ଆଗ୍ରହ ବଢ଼ିବାରୁ ସେ ଷଷ୍ଠ ଶ୍ରେଣୀରେ ପଠପଢ଼ା ପର୍ଯ୍ୟନ୍ତ ଏହି ପେପେଇ ଘରର ଚନ୍ଦ୍ରାମୁଣ୍ଡି ଆଲୁଅରେ ପାଠ ପଢ଼ି ପାରିଥିଲେ । ତାପ'ରେ ତାଙ୍କ ପାଠରେ ଡୋର ବନ୍ଧା ହେଲା । ତା'ପରେ ମାତ୍ର ମାସିକ ୪ ଟଙ୍କା ବେତନରେ ନୃତାଙ୍ଗରେ ଘରେଇ ମାଷ୍ଟ୍ରିଗିରି କରି କଷ୍ଟଦିନ ଜୀବନ ବିତେଇଲେ । ସେତେବେଳକୁ ସେ ସଙ୍ଗୀତ ଓ ବାଦ୍ୟ ଯନ୍ତ୍ର ଶିକ୍ଷାରେ ପାରଙ୍ଗମ ହୋଇ ସାରିଲେଣି ।

୧୯ ବର୍ଷ ବୟସରେ ବିବାହ କରିଥିଲେ ମଧ୍ୟ ପରବର୍ତ୍ତୀ କାଳରେ ସେ ତାଙ୍କର ବିବାହିତ ଧର୍ମପତ୍ନୀଙ୍କୁ ତ୍ୟାଗ କରି ହରି ବା ହୀରାମଣି ନାମ୍ନୀ ଏକ ରଜକକନ୍ୟାକୁ ବିବାହ କରିଥିଲେ । ତତ୍କାଳୀନ ସମାଜରେ ବ୍ରାହ୍ମଣ ସହିତ ଏକ ରଜକକନ୍ୟାର ଏହି ଅସବର୍ଣ୍ଣ ବିବାହ ଏକ ତୁମୁଳ ଆନ୍ଦୋଳନ ସୃଷ୍ଟି କରିଥିଲା । ଶେଷରେ ବୈଷ୍ଣବ ପାଣି ଏକ ଘରକିଆ ହୋଇ ସମାଜରୁ ବାଛନ୍ଦ ହେଲେ । ତଥାପି ଏ ପରିସ୍ଥିତିରେ ସ୍ୱାଧୀନଚେତା ବୈଷ୍ଣବଙ୍କର ଭ୍ରୂକ୍ଷେପ ନାହିଁ—ସମାଜର ନାସିକା କୁଞ୍ଚନକୁ ଅତି ଦୃଢ଼ତାର ସହିତ ମୁକାବିଲା କରି ଚାଲିଲେ ।

ତା'ପରେ ଜୀବନ ନିର୍ବାହ ପାଇଁ ପାଲାଗାୟକ ଭାବେ ସେରଗଡ଼ଜାତ ଓ ମୋଗଲବନ୍ଦୀମାନଙ୍କରେ ପାଲାଗାୟନ କରି ଦିନକୁଦିନ ଲୋକପ୍ରିୟ ହୋଇଉଠିଲେ । କିଛିଦିନ ପରେ ପାଲାଗାୟନ ଛାଡ଼ି ଯାତ୍ରାଦଳର ଓସ୍ତାଦି ଆରମ୍ଭ କଲେ ଓ ପରବର୍ତ୍ତୀ କାଳରେ ନିଜର ଗୋଟିଏ ଯାତ୍ରାଦଳ ଗଢ଼ି ନିଜ ହାତେ ଅସଂଖ୍ୟ ସୁଆଙ୍ଗ, ଫାର୍ସ, ଗୀତାଭିନୟ, ଗୀତନାଟ୍ୟ ମାନ ଗୋଟିକ ପରେ ଗୋଟିଏ ଅଭିନୟ କରେଇଚାଲିଲେ ଓ

କଲିକତାର ବିଭିନ୍ନ ସ୍ଥାନରେ ଯାତ୍ରା ପରିବେଷଣ କରି ଯଥେଷ୍ଟ ଖ୍ୟାତି ଅର୍ଜନ କରିଥିଲେ ଓ ଓଡ଼ିଆ ଯାତ୍ରା ଅଭିନୟ ସମ୍ପୂର୍ଣ୍ଣ ବିପ୍ଳବ ଭିଆଇ ଓଡ଼ିଆଯାତ୍ରାକୁ ଅଧିକରୁ ଅଧିକ ଜନପ୍ରିୟ କରାଇବାରେ ଦିନକୁ ଦିନ ଜନଗଣଙ୍କର ପ୍ରିୟ ପରିଚିତ ହୋଇଉଠିଲେ ।

ବିଶେଷ କରି ଓଡ଼ିଆ ଯାତ୍ରାମାନଙ୍କର ପାଞ୍ଚପାଞ୍ଚମୁଖୀ ସରଳ ତରଳ ଓ ସାବଲୀଳ ଭାଷା ପ୍ରୟୋଗରେ ବୈଷ୍ଣବ ପାଣିଙ୍କ ଅନବଦ୍ୟ ଅବଦାନ ସମ୍ପୂର୍ଣ୍ଣ ନୂତନ ଓ ଏକକ କହିଲେ ଚଳେ । ଏଇ ଦୃଷ୍ଟିରୁ ସେ ତାଙ୍କର ସମସାମୟିକ ଯାତ୍ରା, ଲୀଳା ଓ ସୁଆଙ୍ଗ ଲେଖକଙ୍କଠାରୁ ସ୍ୱତନ୍ତ୍ର ଆସନରେ ଅଧିକାରୀ । ସେଥିପାଇଁ ପ୍ରଥିତ ଯଶା କବି ଡକ୍ଟର ମାୟାଧର ମାନସିଂହ ତାଙ୍କ History of literature ପୁସ୍ତକରେ କହିଛନ୍ତି—"Among the Persons who have modernised and revolutionalised the Yatra in Orissa, the most celebrated name is that of the lata Baishnaba Pani who started his career as a boy dancer on the stage of the mahanta of Kothapada + + + The gift he has made to the mass culture of Orissa is of in estimable value and is indeed deathless"

ବୈଷ୍ଣବ ପାଣି କେବଳ ଯେ ଜଣେ ଯାତ୍ରା ଓସ୍ତାଦ ଥିଲେ, ତାହା ନୁହେଁ । ସେ ମଧ୍ୟ ଜଣେ ଉଚ୍ଚଦରର ଅଭିନେତା, ଗାୟକ, ବାଦକ, କବି ତଥା ଆଶୁକବି ଓ ସର୍ବୋପରି ହାସ୍ୟରସିକ ଥିଲେ । ବୈଷ୍ଣବ ପାଣି ତାଙ୍କ ସମୟର ସାମାଜିକ ପରିବେଷ୍ଟନୀରେ ଯେତିକି ଘୃଣିତ ହୋଇଥିଲେ, ତାଙ୍କର ଦେହାନ୍ତ ପରେ ପରେ ସେ ଓଡିଶାର ସଂସ୍କୃତିରେ ଏକ ସର୍ବୋତ୍ତମ ସାଂସ୍କୃତିକ ପୁରୁଷ ଭାବେ ତାଙ୍କର ଆସନ ପାତି ସାରିଲେଣି । ରେଡ଼ିଓ ଓ ଟେଲିଭିଜନରେ ତାଙ୍କ ଗୀତିନାଟ୍ୟର ବାରମ୍ବାର ପ୍ରଚାର ଓ ସହର ବଜାରରୁ ଆରମ୍ଭ କରି ଗାଁ ଗୋହିରି ମାନଙ୍କରେ ତାଙ୍କର ଗୀତିନାଟ୍ୟର ସୌଖୀନ ଦଳମାନଙ୍କ ଦ୍ୱାରା ବାରମ୍ବାର ଅଭିନୟ, ବୈଷ୍ଣବ ପାଣିଙ୍କ ରଚନାରାଜିର ଲୋକପ୍ରିୟତା ଓ ତାଙ୍କ "ଗଣକବି'ର ସାର୍ଥକତା ସମାଜରେ ସ୍ୱୀକୃତି ଲାଭ କରି ସାରିଲାଣି । ବୈଷ୍ଣବପାଣି ଆଜି ଏକ ଅନୁଷ୍ଠାନରେ ପରିଣତ ହୋଇ ଗଲେଣି । ତାଙ୍କର ଅସଂଖ୍ୟ ଅସଂଖ୍ୟ ଗୀତାଭିନୟ,ଗୀତିନାଟ୍ୟ, ଜଣାଣ, ଭଜନ, ସଙ୍ଗୀତ ଏ ସମାଜରେ ଅସ୍ଥିମଜ୍ଜାଗତ ହୋଇସାରିଲାଣି । ବିଶେଷକରି ତାଙ୍କ ରଚିତ "ଆତ୍ମ ଜୀବନୀ ଚରିତ" ଆମ ସାହିତ୍ୟର ଆଲାପ ଆଲୋଚନାରେ ଏକ ଅଶ୍ରୁତପୂର୍ବ ଓ ଅଭୂତପୂର୍ବ ଅବଦାନ । ଏହି ଆତ୍ମଜୀବନୀରେ କବି ବୈଷ୍ଣବପାଣି ନିଜର ଜୀବନକୁ ଯେପରି ଡାକ୍ତରଙ୍କ ଭଳି ଶବ ବ୍ୟବଚ୍ଛେଦ କରି ନିଜର କୁପଥଗାମୀ ଜୀବନର ଗତିପଥକୁ ଖୁଣ୍ଟି ନାଣ୍ଟି ବର୍ଣ୍ଣନା କରିଛନ୍ତି, ତାହାହିଁ ତାଙ୍କର ସ୍ପଷ୍ଟୋକ୍ତି ଓ ଦମ୍ଭୋକ୍ତିର ପୂର୍ଣ୍ଣ ପରିଚୟ ପ୍ରଦାନ କରିଥାଏ । ଏ ଭଳି ଆତ୍ମ ଜୀବନୀ ଚରିତ ଏ

ଯାବତ୍ ଓଡ଼ିଆ ସାହିତ୍ୟରେ ଦେଖା କି ଲେଖାଯାଇନ ଓ ଭବିଷ୍ୟତରେ ଏ ଭଳି ଜୀବନୀ ଯେ ଆଉ କାହାଦ୍ୱାରା ଲେଖା ହୋଇପାରିବ ; ଏ ବିଶ୍ୱାସ ମଧ୍ୟ ଆସୁନାହିଁ । କାହିଁକନା ସମସ୍ତେତ ନିଜର କୁକର୍ମକୁ ଘୋଡ଼ାଇ ନିଜର ସତ୍‌କୀର୍ତ୍ତି ସୁକର୍ମମାନ ଖୁଣ୍ଟି ନାଣ୍ଟି ବିସ୍ତୃତ ବର୍ଣ୍ଣନା କରିଥାନ୍ତେ କିନ୍ତୁ ସେଇ ହେଉଛନ୍ତି ଏକମାତ୍ର ବୈଷ୍ଣବ ପାଣି ଯିଏକି ଜୀବନର ସମସ୍ତ କୁକର୍ମକୁ ଆମ ଆଗରେ/ଏ ସମାଜରେ ନିସଙ୍କୋଚରେ, ନିର୍ଭୟରେ ଗୋଟିଗୋଟି କରି ବର୍ଣ୍ଣନା କରି ଯାଇଛନ୍ତି । ସେଥିପାଇଁ ପ୍ରତିଷ୍ଠିତ ସମାଲୋଚକ ଓ ଔପନ୍ୟାସିକ ସୁରେନ୍ଦ୍ର ମହାନ୍ତି କହନ୍ତି—"ବୈଷ୍ଣବପାଣିଙ୍କ ଜୀବନ ଅତିବାହିତ ହୋଇଥିଲା କର୍ଦ୍ଦମ ପଙ୍କ ମଧ୍ୟରେ, କିନ୍ତୁ ତାଙ୍କ କବିତ୍ୱର ପଙ୍କଜ ଆମ୍ଭମାନଙ୍କର ରସ ଚେତନାକୁ ଆଜି ସୁଦ୍ଧା ସୁରଭିତ କରି ରଖିଅଛି । ତାଙ୍କ ସ୍ପର୍ଶରେ ପୁଣି ପଙ୍କ ସୁଦ୍ଧା ଗୋଲା ଚନ୍ଦନରେ ପରିଣତ ହୋଇଅଛି ।"

ଆନନ୍ଦର କଥା ଏ ମଧ୍ୟରେ ବୈଷ୍ଣବ ପାଣିଙ୍କ ଗ୍ରନ୍ଥାବଳୀ ପ୍ରଥମ ଖଣ୍ଡ ଓ ଦ୍ୱିତୀୟ ଖଣ୍ଡରେ ପ୍ରକାଶିତହୋଇଛି । ପ୍ରଥମ ଖଣ୍ଡରେ ୧୧ଟି ଓ ଦ୍ୱିତୀୟ ଖଣ୍ଡରେ ୧୪ଟି ଗୀତନାଟ୍ୟ ଗୀତାଭିନୟ, ଓ ସୁଆଙ୍ଗ ସଂଗୃହୀତ ଓ ସନ୍ନିବେଶିତ ହୋଇଛି । ଏହାଛଡ଼ା ପାଣିକବିଙ୍କ ଲିଖିତ ୧୦୯ ଗୀତାଭିନୟ, ଗୀତନାଟ୍ୟ, ସୁଆଙ୍ଗ, ୧୧ଟି ଫାର୍ସ, ୬୫ଟି ସଙ୍ଗୀତ ଉପନ୍ୟାସ, କାହାଣୀ ଓ ଅନ୍ୟାନ୍ୟ ପୁସ୍ତକ ତାଲିକା ପ୍ରଦାନ କରାଯାଇଛି । ସେ ସମସ୍ତ ଲେଖା ଓ ଅନ୍ୟାନ୍ୟ ଅସଂଖ୍ୟ ଅସଂଖ୍ୟ ଅପ୍ରକାଶିତ ଓ ଅସଂଗୃହୀତ ଲେଖା ଗ୍ରନ୍ଥାବଳୀ ଆକାରରେ ଲୋକଲୋଚନକୁ ଆସି ପାରିଲେ, ପାଣିକବିଙ୍କ କାଳଜୟୀ ପ୍ରତିଭା ଆହୁରି ଆହୁରି ଆମକୁ ସ୍ପଷ୍ଟ ଓ ଦୃଶ୍ୟ ହୋଇପାରନ୍ତା ।

ଏ ସମସ୍ତ ପ୍ରତିଭା ସତ୍ତ୍ୱେ ପାଣିକବିଙ୍କ ଜୀବନର ସମସ୍ତ ଉତ୍ତରକାଳ ଓ ଶେଷକାଳ ଦୁଃଖ ଦୈନ୍ୟ, ଅଭାବ ଅନାଟନରେ କଟିଗଲା । ସେଥିପାଇଁ ସେ ତାଙ୍କରି କଥାରେ ଲୁହ ଗାଧୁଆ ହୋଇ ଲେଖିଛନ୍ତି—

"ଶତ ଶତ ଗ୍ରନ୍ଥ ତୋହରି ଉତ୍କଳ ଭାଷାରେ କରି ତିଆରି
ଅଭାବ ଅଭାବ ସଦା ଭାବି ଭାବି ଜୀବନ ଯାଏ ବାହାରି
ମହାପ୍ରଭୁ ହେ
ବିରୂପା କୂଳରେ ବସି ବସି ଆସି ବିରୂପ ହେଲିଣି ମୁହିଁ
ଦାନା କନା ତୁଚ୍ଛ ସକଳ ଦେଇଛ ନ ଦେଖନ୍ତି ଏହା କେହି

× × ×

ପାଣିର ଗୃହିଣୀ ପାଣିରେ ଭାସୁଚି ବାଣି ସେବା କରି କରି
ପାଣୋରି ନ ଦିଅ କଣୋଇ-ବଲ୍ଲଭ ଆହେ ନୀଳାଦ୍ରି ବିହାରୀ"

ପୁନଶ୍ଚ ମୋ ଜାଣିବାରେ ଏହି କଟକ ସହରରେ କବି ନଜର ଗୋଟିଏ ଗୋଟିଏ ଗୀତିନାଟ୍ୟ/ଗୀତାଭିନୟଙ୍କୁ ଅଭାବ ଅନାଟନରେ ପଡ଼ି ମାତ୍ର ପାଞ୍ଚ/ଦଶ ଟଙ୍କାରେ ସମସ୍ତ ସତ୍ତ୍ୱକୁ ବିକି କରିଛନ୍ତି ।

୧୯୫୭ ମସିହାରେ କଟକ ବଡ଼ ଡାକ୍ତରଖାନାରେ କବିଙ୍କ ଦେହାନ୍ତ ଅତୀବ ମର୍ମନ୍ତୁଦ । ପୁଣି ଆଶ୍ଚର୍ଯ୍ୟ ଓ କ୍ଷୋଭର କଥା ଯେ ଏଇଭଳି ଏକ ଦୁର୍ଦ୍ଧର୍ଷ ସାଂସ୍କୃତିକ ପୁରୁଷର ଶବ ଶୋଭାଯାତ୍ରା ଓ ସତ୍କାରରେ ମୋତେ ମିଶାଇ ଆଉ ୪/୫ ଜଣ ଶବବାହକ ଥିଲେ । ଖାନ୍‌ନଗର ଶ୍ମଶାନରେ ତାଙ୍କର ଶେଷ ଚିତା ଜଳାଇ ଅମର ଆତ୍ମା ପ୍ରତି ଅଶ୍ରୁଳ ନମସ୍କାର ନିବେଦନ କରି ଫେରି ଆସିଲାବେଳେ କେବଳ ମନକୁ ମନ ପଗ୍ଋର ବୁଲୁଥାଏ—"ସାଂସ୍କୃତିକ ପୁରୁଷର ଶେଷ ସମ୍ମାନ କଣ ଏଇଆ ???"

*** ବେଣୁଧର**

(ବିଂଶ ଶତାବ୍ଦୀ)

୧୮୯୮-୧୯୭୧

ବେଣୁଧରଙ୍କ ଜନ୍ମ ପୁରୀ ଜିଲ୍ଲା ଅନ୍ତର୍ଗତ ରଣପୁରରେ । ତାଙ୍କ ପରିବାର ବର୍ଗଙ୍କ ସମ୍ପର୍କରେ ସମ୍ପୂର୍ଣ୍ଣ ପରିଚୟ ଏବେବି ଅଜ୍ଞାତ । ତାଙ୍କର ପିତାମାତା ଅତ୍ୟନ୍ତ ଧର୍ମପ୍ରାଣ ଥିବାରୁ ତାଙ୍କର ଧାର୍ମିକ ପ୍ରଭାବ ପରବର୍ତ୍ତୀ କାଳରେ ବେଣୁଧରଙ୍କ ଜୀବନକୁ ବିଶେଷ ପ୍ରଭାବିତ କରିଥିଲା ଓ କୈଶୋରାବସ୍ଥାରୁ ବେଣୁଧରଙ୍କ ମନପ୍ରାଣ ରାଧାକୃଷ୍ଣଙ୍କ ଭକ୍ତିରେ ତନ୍ମୟ ହୋଇ ଉଠିଥିଲା । ଯେତେବେଳେ ବେଣୁଧରଙ୍କୁ ୨୯ ବର୍ଷ, ସେ ସେତେବେଳେ ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲେ ଓ ସେହି ଦିନଠାରୁ ସେ ତାଙ୍କର ନାମକୁ ବୈଷ୍ଣବ ଚରଣ ଦାସ ନାମରେ ନାମିତ କଲେ । ବେଣୁଧରଙ୍କ କୃତ "ବେଣୁଧର ଗ୍ରନ୍ଥାବଳୀ" ଓଡ଼ିଆ ବୈଷ୍ଣବ ସାହିତ୍ୟ ଇତିହାସରେ ଏକ ଅମୂଲ୍ୟ ଗ୍ରନ୍ଥ । ଏଥିରେ ଶତାଧିକ ସଙ୍ଗୀତ ମାଧ୍ୟମରେ ରାଧାକୃଷ୍ଣ ପ୍ରେମଲୀଳା ତଥା ବୈଷ୍ଣବ ଧର୍ମର ଯେଉଁ ବାଣୀ ପ୍ରଚାର କରାଯାଇଛି, ତାହା ଧର୍ମ ସାହିତ୍ୟ ଦୃଷ୍ଟିରୁ ଅତ୍ୟନ୍ତ ଉପାଦେୟ । ସଖୀ ଭାବରେ କୃଷ୍ଣ ପ୍ରାପ୍ତି କବିଙ୍କର ଜୀବନ ଦର୍ଶନ ରୂପେ ଜଳ ଜଳ ଫୁଟି ଉଠିଛି । "ସ୍ୱାଭିଷ୍ଟ ଲାଳସା"ରେ କବି ଏହି ଦର୍ଶନର ଉଦ୍‌ଘୋଷଣ କରି କହିଛନ୍ତି—

"ନିକୁଞ୍ଜକୁ ଅଭିସାର କଲାବେଳେ
କିଶୋରୀ ମୁକୁଟ ମଣି,
ସିଇ ଦେବେ ସତେ ଦୁଃଖୀ ବେଣୁଧର
ଧରିବ ଫୁଲ ବଞ୍ଚଣୀ" ।

ପୁଣି କୃଷ୍ଣ ପ୍ରେମରେ ମଜ୍ଜି ଯିବାର ସାରବତ୍ତା କେଉଁଠି ଓ କାହିଁକି କୃଷ୍ଣ ପ୍ରେମରେ ମଜ୍ଜିବାକୁ ହେବ, ତା'ର ମଧ୍ୟ ପ୍ରାମାଣିକ ତଥ୍ୟ ପ୍ରତିପାଦନ କରି କବି କହିଛନ୍ତି—

"ମୂଢ଼ ମନ ଦୃଢ଼ କରି ଗୂଢ଼ ମହାମନ୍ତ୍ର ଘୋଷ
କୁଢ଼ କୁଢ଼ ପାପ ତୋର ରୁଢ଼ ଫରି ହେବ ନାଶ

ଚେତନା କୃଷ୍ଣ କଥାରେ
ପଡ଼ନା ପାପ ପନ୍ଥାରେ
ହୁଡ଼ନା ନାମ ବୃଥାରେ
ଛିଡ଼ ମାୟା ମୋହ ଫାଶ ।"

କବିଚନ୍ଦ୍ର ବେଣୁଧର ପଟ୍ଟନାୟକଙ୍କରୁ ବ୍ରଜବାସୀ ବାବାଜି ବୈଷ୍ଣବ ଚରଣ ଦାସରେ ନାମାନ୍ତର ହେଲେ ମଧ୍ୟ ଜୀବନର ଶେଷ ନିଶ୍ୱାସ ତ୍ୟାଗ କଲା ପର୍ଯ୍ୟନ୍ତ ଗଭୀର ତତ୍ତ୍ୱ ସମ୍ବଳିତ ବୈଷ୍ଣବ ସାହିତ୍ୟ ସୃଷ୍ଟିରେ ନିଜର ଗଭୀର ମନୋନିବେଶ କରିଥିଲେ । ସେଥିପାଇଁ ପଦ୍ମଶ୍ରୀ ଡକ୍ଟର ଲକ୍ଷ୍ମୀନାରାୟଣ ସାହୁ ଯଥାର୍ଥରେ କହିଛନ୍ତି—"ବେଣୁଧର ବର୍ତ୍ତମାନ ବାବାଜି ବୈଷ୍ଣବ ଚରଣ ଦାସ ନାମରେ ପରିଚିତ । ବୈଷ୍ଣବ ଧର୍ମର ଦୀକ୍ଷା ଗ୍ରହଣ କରିବାର ପୂର୍ବରୁ ତାଙ୍କ ହାତରେ ଯେଉଁ ବେଣୁ ଥିଲା, ସେହି ବେଣୁ ସନ୍ୟାସୀ ହେବା ପରେ ତାଙ୍କ ହାତରୁ ଖସି ଯାଇନାହିଁ । ସେ ତାଙ୍କର ସେ ବେଣୁକୁ ବୈଷ୍ଣବଙ୍କର ଚରଣ ତଳେ ଆପଣାକୁ ଦାସ ପରି ଆଜି ପର୍ଯ୍ୟନ୍ତ ବଜାଉଛନ୍ତି ।" ବାସ୍ତବିକ୍ ଏ ଉକ୍ତି ବେଣୁଧର ଓ ପରବର୍ତ୍ତୀ ଜୀବନର ବୈଷ୍ଣବ ଚରଣଙ୍କ ଠାରେ ଅକ୍ଷରେ ଅକ୍ଷରେ ସତ୍ୟ ।

କବିଙ୍କର ସଂସ୍କୃତ ସାହିତ୍ୟରେ ଗଭୀର ପ୍ରବେଶ ଥିଲା । ସେ ସଂସ୍କୃତରେ ସମସ୍ତ ବୈଷ୍ଣବ ଗ୍ରନ୍ଥ ଅଧ୍ୟୟନ କରିଥିଲେ । କେବଳ ବୈଷ୍ଣବ ଗ୍ରନ୍ଥ ଛଡ଼ା ଅନ୍ୟାନ୍ୟ ଗ୍ରନ୍ଥ ଗୁଡ଼ିକୁ ମଧ୍ୟ ସେ ପୁଙ୍ଖାନୁପୁଙ୍ଖ ଚର୍ଚ୍ଚା କରୁଥିଲେ । ତାଙ୍କ ଅନୁବାଦିତ ଜୟଦେବଙ୍କ "ଗୀତ ଗୋବିନ୍ଦ" ରୂପ ଗୋସ୍ୱାମୀଙ୍କ ବିଦଗ୍ଧ ମାଧବ ଏବଂ ଏହାଛଡ଼ା ସଂସ୍କୃତ 'ଗୀତା ମାହାତ୍ମ୍ୟ, ତୁଳସୀ ସେବା, ଅମୂଲ୍ୟଧନ, ତୁଳସୀ ଗୀତା, ଭଗବତ୍ ଗୀତା ଭକ୍ତ ରତ୍ନ ଗୀତାର ଅନୁବାଦ ପ୍ରଭୃତି ତାଙ୍କ ସଂସ୍କୃତ ଜ୍ଞାନର ବିଶେଷ ପରିଚୟ ପ୍ରଦାନ କରେ । ବିଶେଷ କରି ତାଙ୍କର ଗୀତଗୋବିନ୍ଦ ଓ ବିଦଗ୍ଧ ମାଧବର ଅନୁବାଦ ଅତ୍ୟନ୍ତ ହୃଦୟସ୍ପର୍ଶୀ । ଅନୁବାଦ ଛଡ଼ା ସେ ମଧ୍ୟ କେତେକ ସଙ୍ଗୀତ ଶ୍ଳୋକ ମଧ୍ୟ ସଂସ୍କୃତରେ ରଚନା କରି ସଂସ୍କୃତ ଜ୍ଞାନର ପରାକାଷ୍ଠା ପ୍ରଦାନ କରିଛନ୍ତି ।

ରାସଲୀଳାର ଆଦ୍ୟକର୍ତ୍ତା ଭାବରେ ବେଣୁଧର ଓରଫ ବୈଷ୍ଣବ ଚରଣ ଦାସ ଆମ ସାହିତ୍ୟ ଓ ସଂସ୍କୃତିରେ ଅତୀବ ସମ୍ମାନିତ । କେବଳ ମାତ୍ର ରାଧାକୃଷ୍ଣଙ୍କ ଜୀବନର ସମସ୍ତ

କଥାବସ୍ତୁକୁ ସମ୍ବଳ କରି ସେ ଯେଉଁ ରାସଲୀଳାମାନ ରଚନା କରିଛନ୍ତି, ତାହା ଯେ କେଡ଼େ ପ୍ରାଣସ୍ପର୍ଶୀ, କେବଳ ରାସଲୀଳା ପଢ଼ିଥିବା ଓ ଦେଖିଥିବା ବ୍ୟକ୍ତିମାନେ ହିଁ କହି ପାରିବେ । ଏହି ପର୍ଯ୍ୟାୟରେ କବିଙ୍କ "ମାନଭଂଜନ" ପୌଗଣ୍ଡ ଲୀଳା, ବ୍ରଜବର୍ଜନ, ନିକୁଞ୍ଜ ବିହାର, ମଥୁରା ଯାତ୍ରା, ରାଧାବିନୋଦ, ମିଳନ ମାଧୁରୀ,ରାସଲୀଳା,ନିକୁଞ୍ଜ ମିଳନ, ବିରହମାନ, ରାଧାପ୍ରେମଲୀଳା, ଦୋଳଲୀଳା, ଜନ୍ମଲୀଳା, ଗୋବର୍ଦ୍ଧନ ଲୀଳା, ଦିଲଙ୍କ ଭଂଜନ ବସନ୍ତ ଲୀଳା, ଗୋଷ୍ଠଯାତ୍ରା, ସତ୍ୟାପରୀକ୍ଷା ପ୍ରଭୃତି ରାସଲୀଳା ଗୁଡ଼ିକ ଏ ଦେଶର ମନ ପ୍ରାଣରେ ଅପୂର୍ବ ଉନ୍ମାଦନା ସୃଷ୍ଟି କରିଛି । ଖୋଲା ମଞ୍ଚରେ ରାସଲୀଳା ପରିବେଷଣ କରିବାରେ କବି ବୈଷ୍ଣବ ଚରଣଙ୍କ ଏ ପଦକ୍ଷେପ ପ୍ରଥମ କହିଲେ ଚଳେ ।

କବି ବୈଷ୍ଣବ ଧର୍ମର ଧାରଣାରେ ନିଜକୁ ଅଚଳ ଅଟଳ ରଖି ଧର୍ମାନୁମୋଦିତ ଭାବରେ ସମସ୍ତ କାବ୍ୟ କବିତା ରଚନା କରିଥିଲେ ମଧ୍ୟ କେତେକ ସ୍ଥଳରେ ତାଙ୍କର ଆତ୍ମା ସଂସ୍କାର ପ୍ରେମୀ ହୋଇ ଉଠିଛି । ତାଙ୍କ ସୃଷ୍ଟ ଏକ କ୍ଷୁଦ୍ର ପୁସ୍ତିକା "ମହନ୍ତଭାଇ" ଏପରି ସ୍ଥଳେ ବିଶେଷ ଭାବେ ଦ୍ରଷ୍ଟବ୍ୟ । ଦୃଷ୍ଟାନ୍ତ ଛଳରେ କେତୋଟି ପଂକ୍ତିର ଉଦ୍ଧାର ଏଠାରେ କରାଯାଉଛି—

"ଗଞ୍ଜାଇ ଚିଲମ ଭାତି, ମଠରୁ ଉଠାଇ ଦିଅ ଝଟତି
ମହନ୍ତ ଭାଇ, ଶ୍ରୀନାମ ମାଦକେ ମାତି
ପଣାଖେଲ ବେଶ୍ୟାନାଟ, ଏଣିକି ମଠେ ନ ହେଉ ପ୍ରକଟ
ମହନ୍ତଭାଇ, ଦାଣ୍ଡକୁ ଏ ନିନ୍ଦା ହାଟ ।
+ + +

ଚନ୍ଦକ ସହକ ମୁଞ୍ଜ, ପରହର ଯୁଇ ଫୁଲିଆ ଲାଞ୍ଜ
ମହନ୍ତଭାଇ, ଆଉ ଅକାରି ନ ସଞ୍ଚ
ସୁଖ ଅବା ଦୁଃଖ ପାଅ, ମୋତେ ପଚେ କାହାରେ ନ ମିଶାଅ
ମହନ୍ତଭାଇ, କହିଲି ତୁମରି ଶ୍ରେୟ
+ + +

ବିଶେଷକରି ତାଙ୍କ ରଚିତ "ଉପଦେଶାମୃତ, ବାଇଆ ମନ ସାଧସଙ୍ଗ, ମନଶିକ୍ଷା, ମୋ ଭାଇରେ" ପୁସ୍ତକମାନ ତାଙ୍କ ସ୍ୱାଧୀନ ଚିନ୍ତା ଓ ସଂସ୍କାରପ୍ରିୟତାର ଉଚ୍ଚାର ପରିଚୟ ପ୍ରଦାନ କରିଥାଏ ।

କବି ନିଜର ଜୀବନକାଳ ମଧ୍ୟରେ ବହୁ ପ୍ରାଚୀନ ଲୁପ୍ତ କବିଙ୍କର ଲେଖାମାନ ସଂଗ୍ରହ କରିଛନ୍ତି । ସେ ସମସ୍ତ ଲୋକଲୋଚନକୁ ଆସିଥିଲେ, ପ୍ରାଚୀନ ଓଡ଼ିଆ ସାହିତ୍ୟର

ବିଶାଳତା ଓ ବୈଶିଷ୍ଟ୍ୟତା ଉତ୍ତମରୂପେ ଉପଲବ୍ଧି କରିହୁଅନ୍ତା । କବିଙ୍କର ଶେଷ ଓ ଶ୍ରେଷ୍ଠ କୃତି ହେଉଛି "ଗୋପାଳକୃଷ୍ଣ ପଦ୍ୟାବଳୀ"ଗ୍ରନ୍ଥ ସଙ୍କଳନ ଓ ସମ୍ପାଦନା । ପୂର୍ବରୁ ଯେଉଁ ଗୋପାଳକୃଷ୍ଣ ପଦ୍ୟାବଳୀ ଆମ ଆଗରେ ପରିଚିତ ଥିଲା, ତା' ତୁଳନାରେ ବେଣୁଧର ଓରଫ ବୈଷ୍ଣବଚରଣଙ୍କ ସମ୍ପାଦିତ ଏବେର ଗୋପାଳକୃଷ୍ଣ ପଦ୍ୟାବଳୀର ପରିସର ପ୍ରାୟ ଦ୍ୱିଗୁଣ ଅଧିକ । ଏଥି ଯୋଗୁଁ ଗୋପାଳକୃଷ୍ଣ ସର୍ବତୋଭାବେ ଆମ ଆଗରେ ପରିଚିତ ହୋଇ ପାରିଛନ୍ତି । ଏହାଛଡ଼ା ମୋ ଜାଣିବାରେ ଓ ଦେଖିବାରେ କବି ରାମକୃଷ୍ଣ, କବିସୂର୍ଯ୍ୟ, ଦୀନକୃଷ୍ଣ, ବନମାଳୀ ଓ ଭକ୍ତଚରଣ ପ୍ରଭୃତି କବିମାନଙ୍କର ୧୦୦୦ରୁ ଅଧିକ ସଙ୍ଗୀତମାନ ସଂଗ୍ରହ କରିଥିଲେ ଓ ତନ୍ମଧ୍ୟରୁ କେତେକ ସଙ୍ଗୀତ କଟକର କେତେକ ପ୍ରକାଶକଙ୍କୁ ମଧ୍ୟ ପ୍ରକାଶ ପାଇଁ ପ୍ରଦାନ କରିଛନ୍ତି ଓ ସେ ସମସ୍ତ ପ୍ରକାଶ ପାଇଲେ ଆମ ସାହିତ୍ୟର ଅଶେଷ ଉନ୍ନତି ସାଧିତ ହେବ । କେବଳ ଓଡ଼ିଆ କାବ୍ୟ କବିତା ନୁହେଁ, ଅସଂଖ୍ୟ ପରିମାଣରେ ସେ ମୂଲ୍ୟବାନ ସଂସ୍କୃତ ଓ ବଙ୍ଗଳା କାବ୍ୟମାନ ମଧ୍ୟ ସଂଗ୍ରହ କରି ରଖିଥିଲେ, ଯାହାକି ଏବେର କୌଣସି ବିରାଟ ଗ୍ରନ୍ଥାଗାରରେ ଖୋଜି ପାଇବା ଅସମ୍ଭବ ।

କବି ବୈଷ୍ଣବଚରଣ ଅସଂଖ୍ୟ ଚଉତିଶା ଓ କୋଇଲି ସୃଷ୍ଟି କରି ଯାଇଛନ୍ତି । ଏଇ ଚଉତିଶା ଓ କୋଇଲି ସୃଷ୍ଟିରେ,ତାଙ୍କର ସ୍ୱତନ୍ତ୍ର ସମ୍ମାନ ଏ ସାହିତ୍ୟ ଇତିହାସରେ ରହିଛି ; ଯେହେତୁ ଏ ପର୍ଯ୍ୟନ୍ତ କୌଣସି ପ୍ରାଚୀନ କବି ଏତେ ସଂଖ୍ୟକ ଚଉତିଶା ବା କୋଇଲି ସାହିତ୍ୟ ସୃଷ୍ଟି କରି ପାରି ନାହାନ୍ତି । ତାଙ୍କର ସମଗ୍ର ଚଉତିଶା "ବୈଷ୍ଣବ ପଦ୍ୟାବଳୀ, ଚଉତିଶା ୧ମ ଓ ୨ୟ" ଖଣ୍ଡରେ ପ୍ରକାଶିତ । ଓଡ଼ିଆ ସାହିତ୍ୟର ଅନ୍ୟତମ ପ୍ରାଚୀନ ପନ୍ଥୀ କବି ବିଚ୍ଛନ୍ଦ ଚରଣ ପଟ୍ଟନାୟକ କବିଙ୍କ ସମ୍ପର୍କରେ ମତବ୍ୟକ୍ତ କରି କହିଛନ୍ତି— "ଉତ୍କଳର କୌଣସି ପ୍ରାଚୀନ କବି ମଧ୍ୟ ଏତେ ସଂଖ୍ୟକ ଚଉତିଶା ଲେଖି ଜାତୀୟ ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରି ପାରିନାହାନ୍ତି । ପୂଜ୍ୟପାଦଙ୍କ ରଚନା ଶୈଳୀ ଅତୀବ ଜନପ୍ରିୟ ଓ ଉତ୍କଳୀୟ ପରମ୍ପରା ଉପରେ ସୁପ୍ରତିଷ୍ଠିତ । ତାଙ୍କ ରଚନାମାନଙ୍କ ଅନବଦ୍ୟ ପଂକ୍ତି ଅତ୍ୟନ୍ତ ହୃଦୟସ୍ପର୍ଶୀ । ଏହାର କାରଣ ସେ ନିଜ ଭକ୍ତି ପରିପ୍ଳାବିତ ହୃଦୟ ଏ ପଂକ୍ତିମାନଙ୍କରେ ଦେଇଅଛନ୍ତି ।"

\+ \+ \+

ଜୀବନର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ କବି ଅତ୍ୟନ୍ତ ନିର୍ଭୀକ ଥିଲେ । ଏହି ନିର୍ଭୀକତା ଯୋଗୁଁହିଁ ରଣପୁର ରଜାଙ୍କର ରାସ ମଣ୍ଡଳୀକୁ "କୋଳଅ ଖେଚୁଡ଼ି" କହି ରଜାନୁଗ୍ରହରୁ ବଞ୍ଚିତ ହୋଇ ରଣପୁର ତ୍ୟାଗ କରିଥିଲେ ଓ ପରବର୍ତ୍ତୀ ଜୀବନରେ କଟକ ସହରର ଭଗତପୁର ଠାରେ ଦୀନବନ୍ଧୁ ଜେନାଙ୍କ ଟେଢ଼ିଶାଳରେ ଜୀବନର ଦୀର୍ଘ ସମୟ ଅତିବାହିତ କରିଥିଲେ ଓ ଏଇ ଭଗତପୁରରେ ଭଗତପୁରର ପିଲାମାନଙ୍କୁ ନେଇ ରାସଦଳ ଗଢ଼ିଲେ ଓ ଗୋଟିଏ ପରେ ଗୋଟିଏ ନିଜ ରଚିତ ରାସଲୀଳା ବିଶେଷ କରି

ଭଗବତପୁର ଓ କମଳପୁରରେ ପରିବେଷଣ କରି ଅତୀବ ଖ୍ୟାତି ଅର୍ଜନ କରିଥିଲେ । ତା'ପରେ ଜୀବନର ଶେଷ ସମୟକୁ ସେ ଟାଙ୍ଗୀର କୋଟସାହିଠାରେ ରାଧା ଗୋବିନ୍ଦ ମଠ ପ୍ରତିଷ୍ଠା କରି ସେଠାରେ ବସବାସ କରୁଥିଲେ । ଏହିପରି ଜଣେ ମହାନ୍ କବି ଓ ପରମ ବୈଷ୍ଣବଙ୍କର ୧୯୭୧ ମସିହା ମାର୍ଚ୍ଚ ୧୧ ତାରିଖରେ ପରଲୋକ ପ୍ରାପ୍ତି ହେଲା ।

## * ଗୋପାଳଚନ୍ଦ୍ର ପ୍ରହରାଜ

(ବିଂଶ ଶତାବ୍ଦୀ)

୧୮୭୪-୧୯୪୫

କଟକ ଜିଲ୍ଲା ଅନ୍ତର୍ଗତ ସିଦ୍ଧେଶ୍ୱରପୁର ଗ୍ରାମରେ ଏକ ଶାସନୀ ବ୍ରାହ୍ମଣ ପରିବାରରେ ୧୮୭୪ ମସିହା ସେପ୍ଟେମ୍ବର ୨୭ ତାରିଖରେ ଗୋପାଳଚନ୍ଦ୍ର ପ୍ରହରାଜ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ନରସିଂହ ପ୍ରହରାଜ ଓ ମାତାଙ୍କ ନାମ ନେତ୍ରମଣି ଦେବୀ । ତାଙ୍କ ମାତା ବହୁ ସନ୍ତାନବତୀ ଥିବାରୁ ସେ ପିଲାବେଳୁ ତାଙ୍କ ବଡ଼ବାପା ଓ ବଡ଼ମା'ଙ୍କ ଦ୍ୱାରା ଲାଳିତ ପାଳିତ ହୋଇଥିଲେ ।

୧୮୯୧ ମସିହାରେ ଗୋପାଳଚନ୍ଦ୍ର ପ୍ରହରାଜ ଓଡ଼ିଶାରେ ତୃତୀୟ ସ୍ଥାନ ଅଧିକାର କରି ଏଣ୍ଟ୍ରାନ୍‌ସ ପାଶ କରିବା ଫଳରେ ମାସିକ ୧୦ ଟଙ୍କା ବୃତ୍ତି ଲାଭ କରିଥିଲେ । ୧୮୯୮ ମସିହାରେ ରେଭେନ୍‌ସା କଲେଜରୁ ବି. ଏ. ଓ ପରେ ପରେ ବି. ଏଲ୍. ପାଶ କରିଥିଲେ ।

ଓକିଲାତି ପାଶ୍ କଲା ପରେ ସେ କଟକରେ ତାଙ୍କର ଓକିଲାତି ବ୍ୟବସାୟ ଆରମ୍ଭ କରିଥିଲେ । ଜଣେ ବଡ଼ ଓକିଲ ତଥା ସରକାରୀ ଓକିଲ ହିସାବରେ ତାଙ୍କର ମଧ୍ୟ ବିଶେଷ ଖ୍ୟାତି ଥିଲା । ଓକିଲାତି ବ୍ୟବସାୟ କରିବା ସାଙ୍ଗକୁ ମଧ୍ୟ ସେ ସାହିତ୍ୟ ସେବାରେ ମଧ୍ୟ ନିଜକୁ ସମ୍ପୂର୍ଣ୍ଣ ରୂପେ ନିୟୋଜିତ କରିଥିଲେ ।

ସାଧାରଣତଃ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ନାମୋଚ୍ଚାରଣ କଲାବେଳେ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷର'' କଥା ଓ କାହାଣୀ ଆମ ଆଖିଆଗରେ ନାଚି ଉଠିଥାଏ । ପ୍ରହରାଜ କହିଲେ ଓଡ଼ିଆ ଭାଷାକୋଷ ଓ ଭାଷାକୋଷ କହିଲେ ହିଁ ପ୍ରହରାଜଙ୍କୁ ବୁଝାଇଥାଏ । ଭାଷାକୋଷର ପ୍ରକାଶନ ଏ ସଂକଳନରେ ପ୍ରହରାଜଙ୍କ ସାରସ୍ୱତ ନିଷ୍ଠା ଓ ଅଧ୍ୟବସାୟ ଅନନ୍ୟ ସାଧାରଣ ଓ ଅପ୍ରତିଦ୍ୱନ୍ଦ୍ୱୀ । ଓଡ଼ିଆ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଏଭଳି ଏକ ମର୍ଯ୍ୟାଦାବନ୍ତ ଜାତୀୟ ପ୍ରକାଶନ କରି ଗୋପାଳଚନ୍ଦ୍ର ପ୍ରହରାଜ ନିଜକୁ ଧନ୍ୟ କରିବା

ସଙ୍ଗେ ସଙ୍ଗେ ସମଗ୍ର ଓଡ଼ିଆ ଜାତିକୁ ଧନ୍ୟ କରିଛନ୍ତି । ସେ ଭାଷାକୋଷର ସଂକଳନ କାର୍ଯ୍ୟ ପାଇଁ ଓଡ଼ିଶାର ବିଭିନ୍ନ ଜିଲ୍ଲାର ସଦର ମଫସଲମା ତଥା ପଲ୍ଲୀ ଅଞ୍ଚଳ ମାନଙ୍କରେ ଦୀର୍ଘ ୧ବର୍ଷ ଧରି ଭ୍ରମଣ କରି ବହୁ ଆଞ୍ଚଳିକ ଶବ୍ଦମାନ ସଂଗ୍ରହ କରି ଭାଷା କୋଷରେ ସନ୍ନିବେଶିତ କରିଛନ୍ତି । ଏହି ମର୍ଯ୍ୟାଦାବନ୍ତ ୭ ଖଣ୍ଡି ଭାଷା କୋଷର ସଂକଳନପାଇଁ ତାଙ୍କୁ ଦୀର୍ଘ ୧୭ ବର୍ଷ କାଳ କଠୋର ପରିଶ୍ରମ କରିବାକୁ ପଡ଼ିଥିଲା ଓ ଏହାର ମୁଦ୍ରଣ ପାଇଁ ଦୀର୍ଘ ୧୦ବର୍ଷ ବ୍ୟୟିତ ହୋଇଥିଲା । ତେଣୁ ଭାଷାକୋଷର ସମୁଦାୟ ସଂକଳନ ଓ ମୁଦ୍ରଣ କାର୍ଯ୍ୟରେ ଦୀର୍ଘ ୨୭ବର୍ଷ ସମୟ (୧୯୧୩ ମସୀହାରୁ ୧୯୪୦ ମସୀହା ପର୍ଯ୍ୟନ୍ତ) ଅତିବାହିତ ହୋଇଥିଲା ଏବଂ ତତ୍କାଳୀନ ଅଟକଳ ଅନୁଯାୟୀ ଦୁଇଲକ୍ଷ ଟଙ୍କା କେବଳ ମୁଦ୍ରଣ ନିମିତ୍ତ ଖର୍ଚ୍ଚ ହୋଇଥିଲା । ମୟୂରଭଞ୍ଜର ଦାନଶୀଳରାଜା ପ୍ରତାପଚନ୍ଦ୍ର ଭଞ୍ଜ ଦେଓ ତାଙ୍କର ସ୍ୱର୍ଗତ ଭ୍ରାତା ପୂର୍ଣ୍ଣଚନ୍ଦ୍ରଙ୍କ ସ୍ମୃତି ଉଦ୍ଦେଶ୍ୟରେ ତାଙ୍କର ନାମାନୁସାରେ ଏହି ଭାଷାକୋଷର ପ୍ରକାଶନ ପାଇଁ ୧୩ ହଜାର ଟଙ୍କା ଦାନ କରିଥିଲେ ଓ ତଦନୁଯାୟୀ ଏହି ଭାଷା କୋଷର ନାମ ରଖାଯାଇଥିଲା "ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ" ତା' ପରେ ପରେ ବିଭିନ୍ନ ସ୍ଥାନରୁ ବିଭିନ୍ନ ବଦାନ୍ୟ ବ୍ୟକ୍ତିଙ୍କଠାରୁ ସ୍ୱର୍ଗତ ପ୍ରହରାଜ ନିଜ ଉଦ୍ୟମରେ ଭାଷାକୋଷର ପ୍ରକାଶନ ପାଇଁ ଅର୍ଥ ସଂଗ୍ରହ କରିଥିଲେ ।

ଏହି ଭାଷ କୋଷର ସଂଗ୍ରହ ଓ ପ୍ରକାଶନରେ ପ୍ରହରାଜ କାହିଁକି ବ୍ରତୀ ହୋଇଥିଲେ, ସେ ସମ୍ପର୍କରେ ସେ ନିଜର ମନ୍ତବ୍ୟ ପ୍ରଦାନ କରି କହିଛନ୍ତି—

"ଓଡ଼ିଶାରେ ପୂର୍ଣ୍ଣାଙ୍ଗ ଅଭିଧାନ ନ ଥିବାରୁ ଅନେକ ସମୟରେ ଏକ ପ୍ରଦେଶବାସୀ ଓଡ଼ିଆଁ ଅନ୍ୟ ପ୍ରଦେଶବାସୀ ଓଡ଼ିଆଙ୍କ ମଧ୍ୟରେ ପ୍ରଚଳିତ ଶବ୍ଦମାନ ବୁଝି ପାରନ୍ତି ନାହିଁ ଏବଂ ଓଡ଼ିଆ ଗ୍ରନ୍ଥ ମାନଙ୍କରେ ଯେଉଁ ସବୁ ଶବ୍ଦ ପ୍ରଦତ୍ତ ହୋଇଅଛି ଏବଂ ବର୍ତ୍ତମାନ ସମୟରେ ଯେଉଁ ଶବ୍ଦ ମାନଙ୍କର ପ୍ରଚଳନ ନାହିଁ, ସେ ଗୁଡ଼ିକର ପ୍ରକୃତ ଅର୍ଥ ଓଡ଼ିଆ ଭାଷାର ପଣ୍ଡିତମାନେ ସୁଦ୍ଧା ବୁଝି ପାରିବା ଭଳି କୌଣସି ସୁଗମ ଅଭିଜ୍ଞାନ ଗ୍ରନ୍ଥ ନାହିଁ । ଏହି କାରଣରୁ ଏପରି ଏକ ଭାଷା କୋଷ ଲେଖିବା ଦରକାର ଥିଲା ।

ଓଡ଼ିଆ ଭାଷା ଆନ୍ଦୋଳନ କାଳରେ ଓଡ଼ିଆ ସାହିତ୍ୟର ନିଜସ୍ୱ ଓ ସ୍ୱାତନ୍ତ୍ର୍ୟ ପ୍ରତିପାଦନରେ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଭୂମିକା ମଧ୍ୟ ଗଭୀର ଭାବେ ସ୍ମରଣୀୟ । ଓଡ଼ିଶାର ସର୍ବ ବୃହତ ଓ ସର୍ବ ପ୍ରାଚୀନ ଆନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜର ତାଙ୍କର ମୁଖ୍ୟ କର୍ମକର୍ତ୍ତା ରହଣୀ ସମୟରେ ଉତ୍କଳ ସାହିତ୍ୟର ବିଭିନ୍ନ ଦୃଷ୍ଟିକୋଣରୁ ଆଲୋଚନାରେ ନୂତନ ଦିଗନ୍ତ ସୃଷ୍ଟି ହୋଇ ପାରିଥିଲା । ଓଡ଼ିଆ ସାହିତ୍ୟରେ ପ୍ରହରାଜଙ୍କ ଗଦ୍ୟ ଶୈଳୀ ସ୍ୱତନ୍ତ୍ର ଆସନର ଅଧିକାରୀ । କଥା ସମ୍ରାଟ ଫକୀର ମୋହନଙ୍କର ଗଦ୍ୟ ଶୈଳୀର ଶ୍ରେଷ୍ଠ ଓ ଯୋଗ୍ୟ ଦାୟାଦ ଭାବେ ହିଁ ପ୍ରହରାଜଙ୍କୁ ଗ୍ରହଣ

କରାଯାଇଥାଏ । ଗଦ୍ୟ ସାହିତ୍ୟରେ ମୁଖ୍ୟତଃ ସେ ଜଣେ ଶ୍ରେଷ୍ଠ ରମ୍ୟରଚନାକାର ଓ ବ୍ୟଙ୍ଗକାର । "ଦୁର୍ମୁଖ ଶର୍ମା" ଛଦ୍ମ ନାମରେ ସେ ବହୁ ବ୍ୟଙ୍ଗ ଲେଖାମାନ ସେତେବେଳେ ଲେଖିଥିଲେ । ମାତୃବିୟୋଗ ତାଙ୍କର ପ୍ରଥମ କବିତା ପୁସ୍ତକ । ତାଙ୍କ ସଙ୍କଳିତ ବାଇଦାସଙ୍କ ଭଜନ (ଯେଉଁଥିରେକି ତାଙ୍କର ଏଗାର ଗୋଟି ଓ ପୀତାମ୍ବରୀ ଦେବୀଙ୍କର ୨୦ଟି ଜଣାଣ ଭଜନ ସନ୍ନିବେଶିତ) ତଥା ତାଙ୍କର "ଧୋରେ ବାୟା ଧୋ" ବିଶେଷ ଜନପ୍ରିୟତା ଲାଭ କରିଥିଲା । ତାଙ୍କର ଚିଠି ଚମାଲି, ସ୍ୱପ୍ନରେ ରାଜଯୋଗ ଓ କନ୍ୟାଦେଖା, ନାଇଗଣ ଶିକା ପାଠକର ଚିତ୍ତକୁ ବିଶେଷ ଭାବେ ଆକର୍ଷିତ କରିଥିଲା । ତାଙ୍କର ଅସମ୍ପୂର୍ଣ୍ଣ "ଆତ୍ମଚରିତ" ଓଡ଼ିଆ ସାହିତ୍ୟର ଏକ ଅମୂଲ୍ୟ ସମ୍ପଦ ।

ତାଙ୍କ ରଚିତ ଉତ୍କଳ କାହାଣୀ (ଗଳ୍ପ) ସ୍ୱର୍ଗୀୟ ଫକୀରମୋହନ (ସମାଲୋଚନା) ଦୁଇଖଣ୍ଡି ଓଡ଼ିଆ ପୁସ୍ତକ (ସମାଲୋଚନା) ଉତ୍କଳ ସାହିତ୍ୟର ଆଧୁନିକ ଗତି (ସମାଲୋଚନା) ବିଶୁଙ୍କଭାଷା (ସମାଲୋଚନା), ମହାତ୍ମା ଚନ୍ଦ୍ରଶେଖର (ଜୀବନୀ) "ଆମ ଘରର ହାଲଚାଲ,ଦୁନିଆର ହାଲଚାଲ", ନନାଙ୍କ ବସ୍ତାନି, 'ନାଇମାହାନ୍ତି ପାଞ୍ଜି' ବାଇନାନଙ୍କ ଚୁଟକୁଳି, 'ଦୁନିଆ ଯିବ ଏ' ମିଆଁ ସାହେବଙ୍କ ରୋଜନାମଚା, ଭାଗବତ ଟୁଙ୍ଗିରେ ସନ୍ଧ୍ୟା ପ୍ରଭୃତି ରମ୍ୟରଚନା ଓଡ଼ିଆ ସାହିତ୍ୟକୁ ତାଙ୍କର ଅପୂର୍ବ ଓ ଅନବଦ୍ୟ ଅବଦାନ । ରମ୍ୟ ରଚନା ମାଧ୍ୟମରେ ତାଙ୍କର ଶାଣିତ ବ୍ୟଙ୍ଗ ବିଦ୍ରୁପ ଶୈଳୀର ପରିପ୍ରକାଶ, ସମାଜକୁ ନୂତନ ଚିନ୍ତା ଓ ଚେତନା ପ୍ରଦାନ କରିବାରେ ବିଶେଷ ଭାବେ ସଫଳ କାମ ହୋଇଥିଲା । ଏଇଭଳି ଏକ ସାହିତ୍ୟ ପ୍ରାଣ କର୍ମମୟ ଜୀବନର ୧୯୪୫ ମସିହାରେ ଏକ ମର୍ମନ୍ତୁଦ ଓ ଅକାଳ ବିୟୋଗ ସଂଘଟିତ ହୋଇଥିଲା ।

ବର୍ତ୍ତମାନର ଆଲାପ ଆଲୋଚନାରେ ପ୍ରହରାଜଙ୍କ ଗ୍ରନ୍ଥାବଳୀ ପ୍ରକାଶନ ତଥା ଭାଷାକୋଷର ସୁଲଭ ପୁନଃ ପ୍ରକାଶନ କରାଯିବା ଆମର ଜାତୀୟ ଚିନ୍ତା ଓ ଜାତୀୟ କର୍ତ୍ତବ୍ୟ ହେବା ଏକାନ୍ତ ବାଞ୍ଛନୀୟ ।

## * ଭିକାରୀ ଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

୧୮୭୭-୧୯୭୨

ନାଟ୍ୟକାର ଭିକାରୀଚରଣ ପଟ୍ଟନାୟକ କଟକ ଜିଲ୍ଲାର କେନ୍ଦ୍ରାପଡ଼ା ସବ୍‌ଡିଭିଜନସ୍ଥ ଚଉଁପୁର ନିକଟସ୍ଥ ହୁରା ସାହି ଗ୍ରାମରେ ୧୮୭୭ ମସିହା ଡିସେମ୍ବର ୨୮ ତାରିଖ ଦିନ

ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ସାଧୁଚରଣ ମହାନ୍ତି ଓ ମାତାଙ୍କ ନାମ ପିତେଇ ଦେବୀ । ଭିକାରୀଚରଣଙ୍କ ମାମୁଁ ଜଗନ୍ନାଥ ପଟ୍ଟନାୟକ ତାଙ୍କର ଏକମାତ୍ର ପୁତ୍ର ସନ୍ତାନର ଦେହାନ୍ତ ପରେ ଭିକାରୀଚରଣଙ୍କୁ ପୋଷ୍ୟ ପୁତ୍ରରୂପେ ଗ୍ରହଣ କରିଥିଲେ । ପିତା ଜଗନ୍ନାଥ ପଟ୍ଟନାୟକ ଓ ମାତା ରତ୍ନମଣିଙ୍କ ନିକଟରେ ଭିକାରୀଚରଣଙ୍କ ପରବର୍ତ୍ତୀ ଜୀବନ ଗଢ଼ି ଉଠିଲା । ଜଗନ୍ନାଥ ପଟ୍ଟନାୟକ ତତ୍କାଳୀନ ରାଜ୍ୟ ଶାସନ ଅମଳରେ ମୟୂରଭଞ୍ଜ ରାଜାଙ୍କର ରାଜ କର୍ମଚାରୀ ଥିଲେ । ସେଇଠାରେ ପିତାଙ୍କ ପାଖରେ ରହି ଭିକାରୀ ଚରଣଙ୍କୁ ଅଧ୍ୟୟନ କରିବାକୁ ପଡ଼ିଥିଲା । ତାଙ୍କର ଉତ୍ତର ଜୀବନରେ ରେଭେନ୍‌ସା କଲେଜରୁ ବି. ଏ. ଓ କଲିକତାରୁ ବି. ଏଲ୍‌. ପାଶ୍ କଲା ପରେ ୧୯୦୬ ମସିହାରେ କଟକରେ ଓକିଲାତି ଆରମ୍ଭ କଲେ । ପ୍ରଥମେ ସେ ସ୍ୱନାମଧନ୍ୟ ଓକିଲ ଓ ସାହିତ୍ୟିକ ରାମଶଙ୍କର ରାୟଙ୍କର ଜୁନିଅର ଭାବରେ ଓକିଲାତି ବ୍ୟବସାୟ ଆରମ୍ଭ କଲେ । ତା'ପରେ ସେ ନିଜେ ଏକକ ଭାବେ ଏହି ଓକିଲାତି ବ୍ୟବସାୟରେ ମନୋନିବେଶ କଲେ । ଏଇ ଓକିଲାତି ସମୟରେ ତାଙ୍କର କୁଟୀର ଶିଳ୍ପ ପ୍ରତିଷ୍ଠାପାଇଁ ପ୍ରବଳ ଆଗ୍ରହ ଜନ୍ମିଥିଲା ।

ସ୍କୁଲ ଜୀବନରୁ ହିଁ ଭିକାରୀଚରଣଙ୍କ ସାହିତ୍ୟ ଜୀବନ ଆରମ୍ଭ ହୋଇଥିଲା । କଲେଜରେ ପଢ଼ିଲା ବେଳେ ତାଙ୍କର ଏହି ସାହିତ୍ୟ ପ୍ରତିଭା ବିଶେଷ ଭାବେ ବିକଶିତ ହୋଇଥିଲା । କଲେଜରେ ପଢ଼ିଲା ବେଳେ ହିଁ ସେ ତାଙ୍କର ପ୍ରଥମ ନାଟକ "କଟକ ବିଜୟ" ଲେଖିଥିଲେ । ତାଙ୍କର ସମ ସାମୟିକ ପଲ୍ଲୀକବି ନନ୍ଦକିଶୋର ବଳ ଭିକାରୀ ଚରଣଙ୍କର ଏହି "କଟକ ବିଜୟ"ର ପାଣ୍ଡୁଲିପି ଭକ୍ତକବି ମଧୁସୂଦନ ରାଓଙ୍କୁ ଦେଖାଇ ଥିଲେ । ଭକ୍ତକବି, ଭିକାରୀ ଚରଣଙ୍କ ଏଭଳି ସାହିତ୍ୟ କୃତିରେ ବିଶେଷ ପ୍ରୀତ ହୋଇ ମୟୂରଭଞ୍ଜର ରାଜା ରାମଚନ୍ଦ୍ର ଭଂଜଙ୍କୁ ଏହାର ମୁଦ୍ରଣ ପାଇଁ ଅର୍ଥ ସାହାଯ୍ୟ ମାଗିଥିଲେ । ମୟୂରଭଞ୍ଜ ରାଜାଙ୍କ ଆର୍ଥିକ ସାହାଯ୍ୟରେ ଏ ପୁସ୍ତକଟି ମୁଦ୍ରିତ ହୋଇ ପାରିଥିଲା । ୧୯୦୧ ମସିହାରେ "କଟକ ବିଜୟ" ନାଟକର ପ୍ରକାଶନ ପରେ ଭିକାରୀ ଚରଣ ଅତ୍ୟନ୍ତ ଉତ୍ସାହିତ ହେଲେ ଓ ସାହିତ୍ୟ ସୃଷ୍ଟି ତଥା ନାଟକ ରଚନାରେ ନିଜକୁ ପୁରା-ପୁରି ଉତ୍ସର୍ଗ କଲେ । ଏହା ଫଳରେ ୧୯୧୫ ମସିହାରେ ନାଟକ ସଂସାର ଚକ୍ର, ନନ୍ଦକେଶ୍ୱରୀ, ରତ୍ନମାଳା ଓ ୧୯୧୭ରେ ସୁଶୀଳା, ୧୯୨୧ରେ ଗୀତ ଲହରୀ (ଭଜନ ଜଣାଣ) ୧୯୨୪ରେ ଯୌତୁକ (ପ୍ରହସନ) ' ୯୨୫ରେ ନାଟକ ରାଜା ପୁରୁଷୋତ୍ତମଦେବ, ୧୯୨୫ରେ ଅଦ୍ଭୁତ ଆଦର୍ଶ (ପ୍ରହସନ), ୧୯ ୨ରେ ନିରୁପମା ନାଟକ ୧୯୬୦ରେ କର୍ମ କ୍ଷେତ୍ର" ନାଟକ ପ୍ରକାଶିତ ହେଲା ଓ ଭିକାରୀ ଚରଣ ସାହିତ୍ୟ ଜଗତରେ ନାଟ୍ୟକାର ରୂପେ ସମ୍ମାନିତ ଓ ପ୍ରଶଂସିତ ହେଲେ । ତାଙ୍କ ରଚିତ 'ସୁଶୀଳା' ନାଟକ ବହୁଦିନ ଧରି ଓଡ଼ିଆ ଏମ୍‌. ଏ. ଶ୍ରେଣୀର ପାଠ୍ୟ ପୁସ୍ତକ ରୂପେ ଗୃହୀତ ହୋଇଥିଲା ।

ବର୍ତ୍ତମାନ ଓଡ଼ିଆର ସର୍ବ ବୃହତ ଓ ସର୍ବ ପ୍ରାଚୀନ ଉତ୍କଳ ସାହିତ୍ୟ ସମାଜ ପ୍ରକୋଷ୍ଠ ଶ୍ରୀରାମଚନ୍ଦ୍ର ଭବନ ତଥା ତତ୍ ସଂଲଗ୍ନ ଉତ୍କଳଗୌରବ ମଧୁସୂଦନ ପାଠାଗାର ପ୍ରତିଷ୍ଠାରେ ଭିକାରିଚରଣଙ୍କ ଅଦମ୍ୟ ଉଦ୍ୟମ ନିହିତ ଓ ସେ ଏହି ଉତ୍କଳ ସାହିତ୍ୟ ସମାଜର କେତେ ବର୍ଷ ଧରି "ଉପ-ସଭାପତି" ଦାୟିତ୍ୱ ଗ୍ରହଣ କରିଥିଲେ ।

ସାହିତ୍ୟିକ ଓ ନାଟ୍ୟକାର ଭିକାରି ଚରଣ ମଧ୍ୟ ଜଣେ ଶ୍ରେଷ୍ଠ ସମାଜ ସେବୀ ଓ ଦୂର ଦ୍ରଷ୍ଟା ଥିଲେ । ଓଡ଼ିଶାର ଐତିହ୍ୟ ଓ ପରମ୍ପରା ତାଙ୍କୁ ବିଶେଷ ଭାବେ ଉଦ୍‌ବୁଦ୍ଧ କରିଥିଲା ଓ ତାଙ୍କର ଦୃଢ଼ ମତ ଥିଲା ଯେ ଆର୍ଥିକ ଦୁରବସ୍ଥା ଗ୍ରସ୍ତ ବିଚ୍ଛିନ୍ନ ଉତ୍କଳକୁ ସ୍ୱଚ୍ଛଳ ଓ ସ୍ୱାବଲମ୍ବୀ କରିବାକୁ ହେଲେ କୁଟୀର ଶିଳ୍ପର ପ୍ରତିଷ୍ଠା ହିଁ ଏକମାତ୍ର ପନ୍ଥା । ଏହି ମାର୍ଗର ଉଦ୍‌ଗାତା ହିସାବରେ ସେ ୧୯୧୬ ମସିହାରେ ତାଙ୍କର ଟାଉନ ହଲ ରୋଡ଼ସ୍ଥିତ ଗୃହରେ ପୁଅର ଇଣ୍ଡଷ୍ଟ୍ରି କଟେଜ ନାମରେ ଗୋଟିଏ ଶିଳ୍ପ ଶିକ୍ଷାକେନ୍ଦ୍ର ସ୍ଥାପନ କଲେ । ଏହି ଶିଳ୍ପ ଶିକ୍ଷା କେନ୍ଦ୍ର ଜରିଆରେ ସେ ଏଣ୍ଡିପୋକ ଚାଷ ଓ ଅଭଙ୍ଗା କଣ୍ଢେଇ ପ୍ରସ୍ତୁତରେ ବ୍ୟାପକ ଆୟୋଜନ କରାଇ ବିଶେଷ ଖ୍ୟାତି ଲାଭ କରିଥିଲେ । ସେତେବେଳେ ସାଧାରଣ ଲୋକେ ଅଭଙ୍ଗା କଣ୍ଢେଇ କହିଲେ ଭିକାରି ଚରଣ ଓ ଭିକାରି ଚରଣ କହିଲେ ଅଭଙ୍ଗା କଣ୍ଢେଇ ବୁଝୁଥିଲେ ।

ସେ ୧୯୨୮ମସିହାରେ ରାୟ ସାହେବ ଓ ୧୯୩୭ ମସିହାରେ ସେ ରାୟ ବାହାଦୁର ୧୯୪୭ ମସିହାରେ କାଇଜର ଆଇ ହିନ୍ଦ ଉପାଧିରେ ଭୂଷିତ ହୋଇଥିଲେ । ୧୯୫ ମସିହାରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସେ "ଡକ୍ଟରେଟ ଉପାଧି ଲାଭ କରିଥିଲେ ।

ଭିକାରଚରଣ ତାଙ୍କ କର୍ମତତ୍ପର କର୍ମମୟ ଜୀବନରେ ବିଭିନ୍ନ ଅନୁଷ୍ଠାନର କର୍ମକର୍ତ୍ତା ପଦବୀରେ ଥାଇ ତାଙ୍କର ଯୋଗ୍ୟତା ପ୍ରତିପାଦିତ କରିଥିଲେ । କଟକ ପ୍ରିଣ୍ଟିଂ କମ୍ପାନୀର ସମ୍ପାଦକ, ଉତ୍କଳଦୀପିକା ପତ୍ରିକାର ସମ୍ପାଦକ, ଭିକ୍ଟୋରିଆ ଗୋଶାଳାର ସଭାପତି, ଆୟୁର୍ବେଦ ସ୍କୁଲର ସମ୍ପାଦକ, ଉତ୍କଳ ଗୌରବ ପାଠାଗାରର ସମ୍ପାଦକ, ମଧୁସୂଦନ ମାତୃମଙ୍ଗଳ ଓ ଶିଶୁ କଲ୍ୟାଣ ସମିତିର ସଭାପତି ଓ କୋ ଅପରେଟିଭ୍ ବ୍ୟାଙ୍କର ଉପ-ସଭାପତି ରୂପେ ନିଜର ସମ୍ପୂର୍ଣ୍ଣ ଦାୟିତ୍ୱ ତୁଲାଇ ପ୍ରଶଂସିତ ହୋଇଥିଲେ ।

ଏଥିସଙ୍ଗକୁ ପଦେ ପଦେ ତାଙ୍କ ହାସ୍ୟରସ ସୃଷ୍ଟି ସ୍ମରଣରେ ଆଣିବା କଥା । କବି ଭିକାରିଚରଣଙ୍କ "କରଣ ସାଆନ୍ତ ତିନି" ଓ ସାଆନ୍ତିଆ ବାହା" ବିଶେଷ, ଉଲ୍ଲେଖ ଯୋଗ୍ୟ । ଏହିଭଳି ଜଣେ କବି, ନାଟ୍ୟକାର, ସମାଜସେବୀ, ଶିଳ୍ପୋଦ୍ୟୋମୀଙ୍କର ୧୯୬୨ ମସିହାରେ ଜୀବନ ଲୀଳା ସାଙ୍ଗ ହେଲା ।

## * ବିଚ୍ଛନ୍ଦଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

୧୯୦୧-୧୯୭୧

କବି ବିଚ୍ଛନ୍ଦଚରଣ ପଟ୍ଟନାୟକ ୧୯୦୧ ଜାନୁଆରୀ ୨୦ ତାରିଖରେ ପୁରୀ ଜିଲ୍ଲାର ଖୋର୍ଦ୍ଧା ସବ୍‌ଡିଭିଜନ ଅନ୍ତର୍ଗତ ଗାଆଁଲା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଗୋଲୋକ କୃଷ୍ଣ ପଟ୍ଟନାୟକ ଓ ମାତାଙ୍କ ନାମ ରାଧାଦେବୀ । କବି ତାଙ୍କ ପିତାମାତାଙ୍କର ଦ୍ୱିତୀୟ ସନ୍ତାନ । କବି ୭/୮ ବର୍ଷ ବୟସ ପର୍ଯ୍ୟନ୍ତ ସିଧା ସଳଖ ଚାଲିପାରୁ ନଥିଲେ । ତେଣୁ ତାଙ୍କର ଗୋଡ଼ ଦୁଇଟିକୁ ବାଲିଗାଡ଼ରେ ଭର୍ତ୍ତି କରାଇ ସଳଖ କରାଇବାରେ ଚେଷ୍ଟା କରାଯାଇଥିଲା ଓ କେତେକ ପରିମାଣରେ ତାହା ମଧ୍ୟ ସଫଳ କାମ ହୋଇଥିଲା । ଏ ବିକଳାଙ୍ଗ ଅଙ୍ଗରେ ସେ ଶିକ୍ଷା ଓ ସାହିତ୍ୟ ପ୍ରତି ଗଭୀର ମନୋନିବେଶ କରିଥିଲେ । ୧୯୨୦ ମସିହାରେ ମାଟ୍ରିକ୍ୟୁଲେସନ, ୧୯୨୭ ମସିହାରେ ବିଏ ପାସ୍ କରିଥିଲେ । ୧୯୪୧ ମସିହାରେ ବି. ଏଲ. ପାସ୍ କରି କିଛି ଦିନ ଓକିଲାତି ବ୍ୟବସାୟ ମଧ୍ୟ କରିଥିଲେ । ୧୯୩୮ ମସିହାରେ ପୁରୀ ଜିଲ୍ଲାର ନେହମଣି ଦେବୀଙ୍କୁ ସେ ବିବାହ କରିଥିଲେ । ୧୯୪୨ ମସିହାରେ ସେ ଓକିଲାତି ବ୍ୟବସାୟ ତ୍ୟାଗ କରି ଓଡ଼ିଶା ସରକାରଙ୍କ ଆଡ଼ିସିନାଲ ଟ୍ରାନସଲେଟର ରୂପେ ନିଯୁକ୍ତ ହେଲେ ଓ ତା'ପରେ ଓଡ଼ିଶା ସରକାରଙ୍କ ଲୋକ ସଂପର୍କ ବିଭାଗରେ ରାଇଟର ଟ୍ରାନ୍‌ସଲେଟର ଓ ପ୍ରଡକ୍‌ସନ ଅଫିସର ରୂପେ ନିଯୁକ୍ତ ହୋଇଥିଲେ ଓ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କରିବା ପରେ ଓଡ଼ିଆ ସାହିତ୍ୟ ଏକାଡେମୀର ରିସର୍ଚ୍ଚ ଆସିଷ୍ଟାଣ୍ଟ ରୂପେ ନିଯୁକ୍ତି ପାଇ କାର୍ଯ୍ୟ କରୁଥିଲେ ।

ଓଡ଼ିଆ ସାହିତ୍ୟର ଗବେଷଣା ଓ ସୃଷ୍ଟିରେ ବିଶେଷ ଅନୁରାଗ ଛଡ଼ା, ଇଂରାଜୀ ସାହିତ୍ୟ ଚର୍ଚ୍ଚା ଓ ଲେଖାରେ ତାଙ୍କର ବିଶେଷ ଆଗ୍ରହ ଥିଲା । ସେ ସ୍କୁଲରେ ଅଧ୍ୟୟନ କରୁଥିବା ସମୟରେ ତାଙ୍କ ଇଂରାଜୀ ଲେଖାର ଶୈଳୀ ତତ୍‌କାଳୀନ ବହୁ ଗୁରୁଜନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା ଓ ନିଜେ ବି.ଏ ଶ୍ରେଣୀର ଛାତ୍ର ଥିବା ସମୟରେ ଜଣେ ବି. ଏ. ଅନର୍ସ ଛାତ୍ରର ଇଂରାଜୀ ଗୃହ ଶିକ୍ଷକ ରୂପେ ନିଯୁକ୍ତ ହୋଇଥିଲେ । ପୁଣି ତାଙ୍କ ଇଂରାଜୀ ଲେଖାର ଦକ୍ଷତା ଯୋଗୁଁ ସେ ୧୯୩୧ ମସିହାରେ "ପ୍ରାଚୀ" ଇଂରାଜୀ ପତ୍ରିକାର ସମ୍ପାଦକ ଓ ୧୯୩୪ ମସିହାରେ ଇଂରାଜୀ "ବୈତରଣୀ" ଏବଂ ଓଡ଼ିଆ ଏକାଡେମୀ ଜର୍ଣ୍ଣାଲ'ର ସହ ସମ୍ପାଦକ ହୋଇଥିଲେ । ନିଜ ଇଂରାଜୀ "ପ୍ରାଚୀ" ପତ୍ରିକାର ସମ୍ପାଦକ ଥିଲା ବେଳେ ବହୁ ପ୍ରାଚୀନ କବିଙ୍କର ଚମତ୍କାର କବିତାଗୁଡ଼ିକ ଇଂରାଜୀରେ ଅନୁବାଦ କରି ଅନ୍ୟ ଭାଷାଭାଷୀଙ୍କ ଆଗରେ ଏ ଦେଶର ଗୌରବମୟ

ଓ ସାହିତ୍ୟ ପରମ୍ପରାକୁ ଜଣାଇବାକୁ ଚେଷ୍ଟା କରିଥିଲେ । ପ୍ରାଚୀ ସମିତି ତ୍ୟାଗ କଲା ପରେ ତାଙ୍କର ପର ଜୀବନରେ ସେ ଉପେନ୍ଦ୍ରଭଞ୍ଜଙ୍କ ଲେଖାର ଚମତ୍କାର ଅନୁବାଦ କରି ଏକ ପୁସ୍ତକ "Upendra bhanja Souvenir" ନାମରେ ପ୍ରକାଶ କରିଛନ୍ତି ଓ କବିସୂର୍ଯ୍ୟଙ୍କ କେତେକ କବିତା ଅନୁବାଦ କରି "Glimpses in to Kavisurya ମଧ୍ୟ ପ୍ରସ୍ତୁତ କରିଛନ୍ତି । ଏହାଛଡ଼ା Kalinga, Kabi samrat, Kalinga Bharati ତାଙ୍କର ଅନ୍ୟ ଏକ ଇଂରାଜୀ ଅବଦାନ ।

"ଶଶୀରେଖା ଓ ଚନ୍ଦ୍ରରେଖା ମଧୁଚନ୍ଦ୍ର" ତାଙ୍କଦ୍ୱାରା ସୁସମ୍ପାଦିତ । ପ୍ରାଚୀନ କବି ଗୌରଚରଣ ଅଧିକାରୀଙ୍କ ସମସ୍ତ କବିତାଗୁଡ଼ିକ ଏକତ୍ର କରି ସେ ତାଙ୍କର ସମ୍ପାଦକତ୍ୱରେ "ଗୌରଚରଣ ପଦ୍ୟାବଳୀ" ପ୍ରକାଶ କରିଛନ୍ତି । ଭକ୍ତକବି ଦୀନକୃଷ୍ଣଙ୍କ ବହୁ ସୁଲଳିତ କବିତା ରାଜି ତାଙ୍କର ଉଦ୍ୟମରେ ଆଜି ଆମ ଆଗରେ ପ୍ରତିଭାତ ହୋଇଛି ।

ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଭାଷାକୋଷର ସହଯୋଗୀ କର୍ମୀ ହିସାବରେ ୧୯୩୪ରେ କବି ପଟ୍ଟନାୟକ ନିଜକୁ ନିୟୋଜିତ କରି ଭାଷାକୋଷ କାର୍ଯ୍ୟରେ ପ୍ରହରାଜ ମହାଶୟଙ୍କୁ ବିଶେଷ ସାହାଯ୍ୟ କରିଥିଲେ ।

୧୯୩୨ ମସିହାରୁ ୧୯୪୪ ମସିହା ପର୍ଯ୍ୟନ୍ତ ଦୀର୍ଘ ବାର ବର୍ଷ ଧରି ସେ ଓଡ଼ିଶାର ବୃହତ୍ ସାହିତ୍ୟ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜର ସହକାରୀ ସମ୍ପାଦକ ଓ ସମ୍ପାଦକ ରହିଥିଲେ ।

ସେ ୧୯୪୩ ମସିହାରେ "ଉତ୍କଳ ଗ୍ରନ୍ଥ ସାହିତ୍ୟ ସମାଜ" ଓ ୧୯୦୫ ମସିହାରେ "କଳିଙ୍ଗ ଭାରତୀ" ସାହିତ୍ୟ ଅନୁଷ୍ଠାନ ପ୍ରତିଷ୍ଠା କରିଥିଲେ । ଏହି 'କଳିଙ୍ଗଭାରତୀ' ସାହିତ୍ୟ ଅନୁଷ୍ଠାନ ଜରିଆରେ ତାଙ୍କର "ଭଞ୍ଜଜୟନ୍ତୀ"ର ପ୍ରତିଷ୍ଠା ଓ ପ୍ରଚାର ଆମ ସାହିତ୍ୟର ଆଳାପ ଆଲୋଚନାରେ ଏକ ନୂତନ ଦିଗନ୍ତ ସୃଷ୍ଟି କରିଛି ।

ତାଙ୍କର ଅନ୍ୟାନ୍ୟ କୃତି ମାନଙ୍କ ମଧ୍ୟରେ 'କବିତା କୁମୁଦ ଶତପତ୍ର, ଆଦ୍ୟଅର୍ଘ୍ୟ, କବିସମ୍ରାଟ ସ୍ମରଣିକା, ଶ୍ରୀ ଶ୍ରୀ ଜଗନ୍ନାଥ ଜଣାଣ ଭଜନ, ଭାବନାଭାବନା, ଓଡ଼ିଆ-ସାହିତ୍ୟର ଇତିହାସ, ପ୍ରଭୃତି ପ୍ରଧାନ । ତାଙ୍କର 'ବନସ୍ତ ପତ୍ରିକା'ର ଓଡ଼ିଆ ଅନୁବାଦ ଓ ନବାକ୍ଷରୀ ବୃତ୍ତରେ "ବିଚ୍ଛିନ୍ନକୃତ ତୁଳସୀ ରାମାୟଣ" ଏ ପର୍ଯ୍ୟନ୍ତ ଅପ୍ରକାଶିତ ଅବସ୍ଥାରେ ରହିଛି । ୧୯୬୮ ମସିହା ଜାନୁଆରୀ ୧୪ ତାରିଖରେ ତାଙ୍କର ଏହିପରି ଏକ କର୍ମମୟ ଜୀବନର ଅବସାନ ଘଟିଲା ।

✳ ଲୋକନାଥ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

୧୮୯୭-୧୯୭୫

ପୁରୀ ସହରର ମାର୍କଣ୍ଡେଶ୍ୱର ସାହିରେ ଏହି ଖ୍ୟାତନାମା ଗୀତିକାର ୧୮୯୭ ମସିହାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଦାମୋଦର ପଟ୍ଟନାୟକ ଓ ମାତାଙ୍କ ନାମ ଶୋଭା ଦେବୀ । ୧୯୨୩ ରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଦର୍ଶନଶାସ୍ତ୍ରରେ କଲିକତା ବିଶ୍ୱବିଦ୍ୟାଳୟରୁ ସେ ଏମ. ଏ. ପାଶ୍ କରିବା ଯୋଗୁଁ ସାର୍ ଆଶୁତୋଷ ସ୍ୱର୍ଣ୍ଣପଦକ ପ୍ରାପ୍ତ ହୋଇଥିଲେ । ୧୯୨୩ ମସିହାରେ କଲିକତାର ଫେରି କଲେଜ ଓ ୧୯୨୫ ମସୀହାରେ କୁଚବିହାରର ମହାରାଜା କଲେଜରେ ଦର୍ଶନର ଅଧ୍ୟାପକ ହୋଇଥିଲେ । ୧୯୨୭ ମସିହାରେ ଘରେଇ ଭାବେ ପରୀକ୍ଷା ଦେଇ ସେ ଆଇନ୍ ପାଶ୍ କରିଥିଲେ । ତା'ପରେ ପୁରୀରେ ଓକିଲାତି ବ୍ୟବସାୟ ଆରମ୍ଭ କରି ଖ୍ୟାତନାମା ଓକିଲ ଭାବେ ନିଜକୁ ପରବର୍ତ୍ତୀ କାଳରେ ପ୍ରତିଷ୍ଠା କରି ପାରିଥିଲେ । ୧୯୩୦ରୁ ୧୯୬୪ ପର୍ଯ୍ୟନ୍ତ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ସଭ୍ୟ ଓ ଆଇନ୍ ପରୀକ୍ଷକ ଥିଲେ । ଗଦାଧର ହାଇସ୍କୁଲ, ସତ୍ୟବାଦୀ ହାଇସ୍କୁଲ, ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟର ପରିଚାଳନା କମିଟି ସଭ୍ୟ, ଉପସଭାପତି ଓ ଶେଷରେ ସଭାପତି ହୋଇଥିଲେ ।

୧୯୭୨ ମସିହାରେ ପୁରୀର ଗଜପତି ଶ୍ରୀ ବୀରକିଶୋରଦେବ ତାଙ୍କୁ "ବିଦ୍ୟାରତ୍ନ ଉପାଧିରେ ଭୂଷିତ କରିଥିଲେ । ସେ ପ୍ରାୟ ୩ ହଜାରରୁ ଉର୍ଦ୍ଧ୍ୱ ଓଡ଼ିଶୀ, ଚମ୍ପୂ, ଛାନ୍ଦ, ପଲ୍ଲୀଗୀତ, ଜାତୀୟ ସଙ୍ଗୀତ, ଭଜନ, କୀର୍ତ୍ତନ, ଜଣାଣ, ପର୍ବଗୀତ, ଶିଶୁସଙ୍ଗୀତ, ଯୋଜନା ସଙ୍ଗୀତ ପ୍ରଭୃତି ଲେଖିଥିଲେ ଓ ତାଙ୍କ ରଚିତ ସଙ୍ଗୀତମାନ ବେତାରକେନ୍ଦ୍ର ମାଧ୍ୟମରେ ପ୍ରଚାରିତ ହୋଇ ଅତ୍ୟନ୍ତ ଜନପ୍ରିୟ ହୋଇ ପାରିଥିଲା । "ସଙ୍ଗୀତ ଚନ୍ଦ୍ରିକା ନାମରେ ଏକ ଗ୍ରନ୍ଥ ସେ ସଂକଳନ କରିଥିଲେ । କଟକ ବେତାରକେନ୍ଦ୍ରର ପରାମର୍ଶଦାତା ବୋର୍ଡରେ ତାଙ୍କୁ ଜଣେ ବିଶିଷ୍ଟ ସଭ୍ୟ ଭାବେ ଗ୍ରହଣ କରାଯାଇଥିଲା । ପ୍ରାଚୀନ ଛାନ୍ଦ ଶୈଳୀରେ ସେ "ଛାନ୍ଦ ରାମାୟଣ" ରଚନା କରିଥିଲେ । ଓଡ଼ିଆ ସାହିତ୍ୟ ତଥା ଓଡ଼ିଆ ସଙ୍ଗୀତ ସାହିତ୍ୟକୁ ତାଙ୍କର ଦାନ ଅପରିସୀମ ଓ ଅତୁଳନୀୟ । ଏଇଭଳି ଜଣେ ବିଶିଷ୍ଟ ଶିକ୍ଷାବିତ୍, ବିଶିଷ୍ଟ ଆଇନଜୀବି, ବିଶିଷ୍ଟ ଗୀତିକାର ଓ ସାହିତ୍ୟିକ ୧୯୭୫ ମସିହାରେ ଇହଲୀଳା ସମ୍ବରଣ କରିଥିଲେ । ତାଙ୍କର ସମସ୍ତ ଲେଖା ସଂଗ୍ରହ କରାଯାଇ ଗ୍ରନ୍ଥାବଳୀ ପ୍ରକାଶନର ଉଦ୍ୟମ କରିବା ଆମର ସର୍ବାଦୌ କର୍ତ୍ତବ୍ୟ ।

## * କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

୧୮୯୮ରୁ ୧୯୭୮

କିଛି ବର୍ଷ ତଳେ କବିଚନ୍ଦ୍ର କାଳୀଚରଣ ବଡ଼ମ୍ବାରେ କି ବାଙ୍କୀରେ ଜନ୍ମ ଗ୍ରହଣ କରିଥିଲେ ସେ ସମ୍ପର୍କରେ ବାଦାନୁବାଦର ଗୁଞ୍ଜରଣ ଉଠିଥିଲା । କିନ୍ତୁ ଏ ସମ୍ପର୍କରେ ଏତିକି କୁହାଯାଇ ପାରେ ଯେ କାଳୀଚରଣ ଜନ୍ମ ବଡ଼ମ୍ବାରେ; କିନ୍ତୁ ତାଙ୍କର ପୈତୃକ ଭିଟାମାଟି କଟକ ଜିଲ୍ଲାର ବାଙ୍କୀର ଖମାରଙ୍ଗ ଗ୍ରାମରେ । ପରବର୍ତ୍ତୀ କାଳରେ ତାଙ୍କର ପିତାମହ ନମାଇଚରଣ ପଟ୍ଟନାୟକ ବଡ଼ମ୍ବାର ଜଣେ ରାଜକର୍ମଚାରୀ ଥିବାରୁ ବଡ଼ମ୍ବାରେ ସ୍ଥାୟୀ ଭାବେ ବସବାସ କରିଥିଲେ । ଏହି ସୂତ୍ରରେ ୧୮୯୭ ମସିହା ଡିସେମ୍ବର ମାସ ୨୩ ତାରିଖ ବଉଳ ଅମାବାସ୍ୟା ଗୁରୁବାର ଦିନ କାଳୀଚରଣ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଦୁର୍ଗାଚରଣ ପଟ୍ଟନାନାୟକ ଓ ମାତାଙ୍କ ନାମ ରାଧାମାଳୀ ଦେବୀ । ଜନ୍ମ ସମୟରେ କାଳୀଚରଣଙ୍କ ଆଖି ଖୋଲି ନଥିଲା ତାଙ୍କର ପିତାମାତା ଉଭୟେ ଦେବୀ ଭକ୍ତ ଥିବାରୁ ଦେବୀଙ୍କ ନିକଟରେ କାଳୀଚରଣଙ୍କୁ ସମର୍ପଣ କରି ତାଙ୍କର ଆଖି ଖୋଲି ଯିବାକୁ ଦେବୀଙ୍କ କରୁଣା ଓ ଆଶୀର୍ବାଦ ଭିକ୍ଷା କରିଥିଲେ । ଦେବୀଙ୍କ କୃପା କରୁଣା ଲାଭ କରି ପରବର୍ତ୍ତୀକାଳରେ କାଳୀଚରଣଙ୍କ ଆଖି ଫିଟିଥିଲା ।

କଥିତ ଅଛି ଯେଉଁମାନେ କୁଆଡ଼ ଅମାବାସ୍ୟାରେ ଜନ୍ମ ନିଅନ୍ତି, ସେମାନେ ଭାଗ୍ୟବାନ ନୁହନ୍ତି । ଅନ୍ଧାର କାଳରେ ଜନ୍ମ ନେଇଥିବାରୁ, ତାଙ୍କ ଜୀବନ ଅନ୍ଧାରିରେ ବିତେ ଅର୍ଥାତ୍ ଭାଗ୍ୟହୀନ ହୁଅନ୍ତି କିନ୍ତୁ ସବୁଠାରୁ ଆଶ୍ଚର୍ଯ୍ୟର କଥା ଦେବୀଙ୍କ କୃପା କରୁଣାରେ କାଳୀଚରଣ ଏହାର ପ୍ରଚଣ୍ଡ ବ୍ୟତିକ୍ରମ ଥିଲେ । ସେ ଅନ୍ଧାର ଅମାବାସ୍ୟରେ ଜନ୍ମ ନେଇଥିଲେ ସତ, କିନ୍ତୁ ସେ ତାଙ୍କ କୃତୀ କରଣୀରେ ଓଡ଼ିଆ ସାହିତ୍ୟ ସଂସ୍କୃତିକୁ ରୁଦ୍ଧିମନ୍ତ, ରୂଚିମନ୍ତ ଓ ଆଲୋକିତ କରିଛନ୍ତି ।

କାଳୀଚରଣଙ୍କୁ ମାତ୍ର ଯେତେବେଳେ ନ' ବର୍ଷ କି ଦଶ ବର୍ଷ, ସେତେବେଳେ ସେ ତାଙ୍କ ଆରାଧ୍ୟ ଦେବୀଙ୍କୁ ଲକ୍ଷ୍ୟ କରି ଲେଖିଥିଲେ —

ଦେବୀ ଗୋ, ପରମାନନ୍ଦଦାୟିନୀ
ପଦ୍ମ ଗନ୍ଧ-ପ୍ରସୂନ ମାଳିନୀ
ମା' ଶ୍ମଶାନ ବିଳାସିନୀ
କର ଦୀନେ ଦୟା, ସିଂହ ବାହିନୀ
ହର, ହୃଦୟ-ପର ଗୃହିଣୀ ॥

ଏହି ସଙ୍ଗୀତ ରଚନାର ଭିତ୍ତିଭୂମିହିଁ ତାଙ୍କୁ ଭବିଷ୍ୟତ ଜୀବନରେ ସାହିତ୍ୟ ସଙ୍ଗୀତର ବିଶିଷ୍ଟ ସ୍ରଷ୍ଟା ରୂପେ ପରିଚିତ କରାଇ ପାରିଥିଲା ।

ତାଙ୍କର ପିତାମହ ନିମାଇଁଚରଣ ପଟ୍ଟନାୟକଙ୍କର ଓଡ଼ିଆ ଓ ସଂସ୍କୃତ ସାହିତ୍ୟର ବିଭିନ୍ନ ଚର୍ଚ୍ଚା, ପିତା ଦୁର୍ଗାଚରଣ ଓ ମାତା ରାଧାମାଳୀ ଦେବୀଙ୍କ ସାହିତ୍ୟ ଓ ବିଶେଷ ଭାବେ ଘରେ ସଙ୍ଗୀତ ଚର୍ଚ୍ଚା ଓ ସଙ୍ଗୀତ ଆସର କାଳୀଚରଣଙ୍କୁ ସେହି ଦିଗରେ ବିଶେଷ-ଭାବେ ଅନୁପ୍ରାଣିତ କରିଥିଲା । ପାରିବାରିକ ପରମ୍ପରା ଓ ପରିବେଶ ତାଙ୍କ ଉତ୍ତର ଜୀବନକୁ ଗଢ଼ି ତୋଳିବାରେ ବିଶେଷ ସହାୟତା କରିଥିଲା ଓ ଏହାଛଡ଼ା ତାଙ୍କର ପିତା ଓ ପିତାମହ ତତ୍କାଳୀନ ବିଭିନ୍ନ ଗଡ଼ଜାତର ବିଶିଷ୍ଟ ରାଜ କର୍ମଚାରୀ ଥିବାରୁ ବିଭିନ୍ନ ରାଜ୍ୟ ପରିଭ୍ରମଣରେ ବିଭିନ୍ନ ରାଜ ପରିବାରଙ୍କ ସମ୍ପର୍କରେ କାଳୀଚରଣ ଆସିଥିଲେ । ତତ୍କାଳୀନ ଗଡଜାତର ରାଜା ଓ ରାଜପରିବାରମାନଙ୍କର ସଙ୍ଗୀତ ଓ ସାହିତ୍ୟର ବିଶେଷ ପୃଷ୍ଠପୋଷକତା ଯୋଗୁଁ ସେହି ରାଜଦରବାରଙ୍କ ଆନୁକୂଲ୍ୟରେ ବର୍ଷର ପ୍ରାୟ ଅଧିକାଂଶ ସମୟରେ ସାହିତ୍ୟଚର୍ଚ୍ଚା ଓ ସଙ୍ଗୀତ ଆସର ମାନ ଅନୁଷ୍ଠିତ ହେଉଥିଲା । କାଳୀଚରଣ ଏହି ସାହିତ୍ୟଚର୍ଚ୍ଚା ଓ ସଙ୍ଗୀତ ଆସରରେ ଯୋଗ ଦେବାକୁ ବିଶେଷ ସୁଯୋଗ ଓ ସୁବିଧା ପାଇଥିବାରୁ ସେ ନିଜେ ବିଭିନ୍ନ ଧରଣର ସଙ୍ଗୀତ ରଚନା କରିବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ସୁଲଳିତ କଣ୍ଠରେ ସଙ୍ଗୀତ ଗାନ କରି ଲାଗିଲେ ଓ ସମସ୍ତଙ୍କର ପ୍ରିୟପାତ୍ର ହୋଇ ଉଠିଲେ ।

କିଶୋର ଅବସ୍ଥାରେ ସେ 'କାଞ୍ଚିକାବେରୀ' ନାଟକ (ଯେଉଁଥିରେକି ତାଙ୍କର ପିତା ଦୁର୍ଗାଚରଣ ପଟ୍ଟନାୟକ ଅଭିନୟ କରୁଥିଲେ) ଦେଖିଲା ପରେ ନିଜେ ନାଟକ ରଚନା କରିବା ଓ ନାଟକମାନ ଅଭିନୀତ କରାଇବାରେ ମନୋନିବେଶ କଲେ । ଏହି ପରିପ୍ରେକ୍ଷୀରେ ସେ କେତେକ ସାଙ୍ଗ ସାଥୀଙ୍କୁ ଧରି ଜଗମୋହନ ଲାଲାଙ୍କ "ବାବାଜି ନାଟକ" ନିଜ ଜନ୍ମପୀଠରେ ନିଜେ ନିର୍ଦ୍ଦେଶନା ଦେଇ ଅଭିନୟ କରାଇଲେ ଓ ସମସ୍ତଙ୍କ ଦ୍ୱାରା ପ୍ରଶଂସିତ ହେଲେ । ନାଟକ ଲେଖା, ଦେଖା ଓ ନିର୍ଦ୍ଦେଶନା ପ୍ରତି ଏହି ସମୟରେ ତାଙ୍କ ମନ ଦିଗୁଣ ଉତ୍ସାହରେ ମାତି ଉଠିଲା ।

ସଙ୍ଗୀତ ସାହିତ୍ୟ ପ୍ରତି ତାଙ୍କ ମନ ସଦା ସର୍ବଦା ବ୍ୟସ୍ତ ବ୍ୟାକୁଳ ଥିଲେ ମଧ୍ୟ, ସେ ନିଜେ ପାଠ ପଢ଼ାରେ କେବେ ହେଳା କରି ନ ଥିଲେ । ଜଣେ ମେଧାବୀ ଛାତ୍ର ଥିବାରୁ ମାଟ୍ରିକ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପାସ କରିଥିଲେ ଓ ରେଭେନ୍ସା କଲେଜରେ ବି ଏ. ଶ୍ରେଣୀର ଛାତ୍ର ଥିଲାବେଳେ ତାଙ୍କର ପିତୃ ବିୟୋଗ ହେବାରୁ ସେଠାକରେ ତାଙ୍କର ପାଠପଢ଼ା ଛିଡ଼ ହୋଇଥିଲା ଓ ପରିବାରର ଗୁଜରାଣ ମେଣ୍ଟାଇବା

ପାଇଁ ସେ ଓଡ଼ିଶାର ବିଭିନ୍ନ ଗଡ଼ଜାତ ରାଜାଙ୍କ ଅଧୀନରେ ଚାକିରି କରିବାକୁ ବାଧ୍ୟ ହୋଇଥିଲେ ।

କାଳୀଚରଣ ଯେତେବେଳେ ଖୋର୍ଦ୍ଧା ସ୍କୁଲରେ ପଢ଼ୁଥିଲେ 'ଉଦୁଉଦୁମା' ନାମରେ ତାଙ୍କର ପ୍ରଥମ କବିତା ପ୍ରକାଶିତ ହୁଏ ଓ ତା' ପରେ ପରେ ତାଙ୍କ ରଚିତ ପ୍ରଥମ କବିତା ପୁସ୍ତକ 'କଳା ହାଣ୍ଡିଆ ମେଘ' ପ୍ରକାଶିତ ହୋଇଥିଲା । ତା ପରେ ଭକ୍ତି ସଙ୍ଗୀତ ପୁସ୍ତକ "ଚରଣ ମାଳା" ପ୍ରକାଶ ପାଇଲା । ଏହି ପୁସ୍ତକ ପଢ଼ି ଉତ୍କଳ ଗୌରବ ମଧୁସୂଦନ ତାଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ । ସେହି ସମୟରେ 'ବାସ୍ୟାଧନ' ନାମକ ଏକ କବିତା ପୁସ୍ତକ ଯୋଗିନୀ ମାଆ ଶିରୋନାମାରେ ଏକ ଉପନ୍ୟାସ ଓ ବହୁ ଜଣାଣ, ଭଜନ, ସଙ୍ଗୀତ ମାନ ପ୍ରକାଶ କରିଥିଲେ । ଯେତେବେଳେ ତାଙ୍କର ଧ୍ରୁବ ନାଟକ ପ୍ରକାଶ ପାଏ, ସେତେବେଳେ ତାଙ୍କର ବୟସ ମାତ୍ର କୋଡ଼ିଏ କି ଏକୋଇଶ ହେବ ।

ପୁରୀର ଗଜପତି ରାମଚନ୍ଦ୍ର ଦେବଙ୍କ ସେ ସଭା କବି ଓ ସଭା ଗାୟକ ଥିଲେ । ତାଙ୍କର ଅସାଧାରଣ ସାହିତ୍ୟ ସଙ୍ଗୀତ ଜ୍ଞାନ ଓ ସାଧନା ଯୋଗୁଁ ୧୯୨୭ ମସିହା ସୁନିଆଁ ଦିନ ସେ କାଳୀଚରଣଙ୍କୁ 'କବିଚନ୍ଦ୍ର' ଉପାଧିରେ ଭୂଷିତ କରିଥିଲେ । ସେଇଦିନ ଠାରୁ ସେ ସମଗ୍ର ଦେଶବାସୀଙ୍କ ନିକଟରେ 'କବିଚନ୍ଦ୍ର' ଏ ନାମରେ ପରିଚିତ ହେଲେ । ୧୯୪୧ ମସିହାରେ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ତାଙ୍କୁ 'ନାଟ୍ୟାଚାର୍ଯ୍ୟ' ଉପାଧି ପ୍ରଦାନ କରାଯାଇଥିଲା । କେନ୍ଦ୍ର ସଙ୍ଗୀତ ନାଟକ ଏକାଡେମୀ ତାଙ୍କୁ ଏକାଡେମୀର 'ଫେଲୋ ସଦସ୍ୟ' ରୂପେ ୧୯୬୯ ମସିହାରେ ମନୋନୀତ କରିଥିଲେ । ଭାରତ ସରକାର ୧୯୭୪ ମସିହାରେ ତାଙ୍କୁ 'ପଦ୍ମଶ୍ରୀ' ଉପାଧିରେ ଭୂଷିତ କରିଥିଲେ ହେଁ, ସେ ତାହା ପ୍ରତ୍ୟାଖ୍ୟାନ କରିଥିଲେ । ତା' ପରବର୍ଷ ଅର୍ଥାତ୍ ୧୯୭୫ ମସିହାରେ ସମ୍ବଲପୁର ବିଶ୍ୱ-ବିଦ୍ୟାଳୟ ତାଙ୍କୁ 'ଡକ୍ଟରେଟ୍' ଉପାଧିରେ ଭୂଷିତ କରିଥିଲେ ।

ସଙ୍ଗୀତ ଓ ସାହିତ୍ୟର ସୃଷ୍ଟି ତଥା ସାଧନାରେ ତାଙ୍କ ଚାକିରି ଜୀବନ ପଦେପଦେ ବାଧା ଦିଆଇବାରୁ, ସେ ଚାକିରୀରୁ ଅବ୍ୟାହତି ନେଇ ଶ୍ରୀଧାରମଣ ରାସୋତ୍ସବ ନାମକ ଏକ ରାସଦଳ ଗଠନ କରିଥିଲେ ଓ ରାସଦଳ କିଛି ଦିନପରେ ଭାଙ୍ଗିଯିବାରୁ ଆଉ ଗୋଟିଏ ରାସଦଳ ଗଠନ କରି, ସେହି ରାସଦଳ ଜରିଆରେ କଟକ ଓ କଟକ ବାହାରେ ବହୁ ଥର ଲୀଳାମାନ ଅଭିନୟ କରାଇଥିଲେ । ପରବର୍ତ୍ତୀ ପର୍ଯ୍ୟାୟରେ କାଳୀଚରଣ ସାକ୍ଷୀ ଗୋପାଳ ନାଟ୍ୟସଙ୍ଘ ଗଠନ କଲେ । ସେତିକିବେଳକୁ ମୋହନ ସୁନ୍ଦର ଦେବ ଗୋସ୍ୱାମୀ ଗୋବିନ୍ଦଚନ୍ଦ୍ର ଶୂରଦେବ, ମହେଶ ଚନ୍ଦ୍ର ପଟ୍ଟନାୟକ ଓ ବାବାଜୀ ବୈଷ୍ଣବ ଚରଣ ଦାସଙ୍କ ରାସଲୀଳା ମାନ କଟକ ଓ କଟକ ବାହାରେ ବିଖ୍ୟାତ ହୋଇ ସାରିଲାଣି । ତେଣୁ କାଳୀଚରଣଙ୍କୁ ରାସଲୀଳା ପ୍ରଦର୍ଶନରେ ସେମାନଙ୍କର ପ୍ରତିଯୋଗୀ ଭାବେ ସମ୍ମୁଖୀନ

ହେବାକୁ ପଡ଼ିଲା । ଏ ସଙ୍ଗେ ମଧ୍ୟ କାଳୀଚରଣ ପାଠୋପଯୋଗୀ ଭାଷା, ଗଦ୍ୟପଦ୍ୟ ମିଶ୍ରିତ ଲୀଳାମାନ ଅଭିନୟ କରାଇବାରେ ସ୍ୱକୀୟତା ପ୍ରଦର୍ଶନ କରି ପାରିଥିଲେ । ତାଙ୍କ ରଚିତ ରାସଲୀଳାମାନଙ୍କ ମଧ୍ୟରେ ପ୍ରୀତି ସୁଧାକର, ବିଦ୍ୟାବଳୀ କୌତୁକ ଚିନ୍ତାମଣି, ବନବିହାର କିଶୋର ଚନ୍ଦ୍ରାନନ ଚମ୍ପୂ, ଶ୍ରୀଗୀତଗୋବିନ୍ଦ, ଲକ୍ଷ୍ମୀ, ଆଖିର ଦେଖା, ପ୍ରଭୃତି ପ୍ରଧାନ । ୧୯୩୯ ମସିହା'ରେ ଓଡ଼ିଶା ଥିଏଟର୍ସ ନାମରେ ଏକ ନାଟ୍ୟ ଅନୁଷ୍ଠାନ ଗଠନ କଲେ ଓ ଆଜିର ଜନତା ରଙ୍ଗମଞ୍ଚ ଯେଉଁ ବାଙ୍କାବଜାରରେ ଅଛି,ସେହି ସ୍ଥାନରେ ଓଡ଼ିଶା ଥିଏଟର୍ସ ମଞ୍ଚରେ ତାଙ୍କ ରଚିତ ସାମାଜିକ, ଐତିହାସିକ,ପୌରାଣିକ ବହୁ ନାଟକ ମାନ ଅଭିନୀତ କରାଇଥିଲେ । 'ଏହି ଓଡ଼ିଶା ଥିଏଟର୍ସ' ରଙ୍ଗମଞ୍ଚରେ ତାଙ୍କର ପ୍ରଥମ ସାମାଜିକ ନାଟକ 'ଗାର୍ଲ ସ୍କୁଲ୍' ଅଭିନୀତ ହୁଏ ଓ ତତ୍କାଳୀନ ପରିବେଶରେ ଓଡ଼ିଶା ଥିଏଟର୍ସ' ପରିବେଶିତ ନାଟକ ମାନ ଓଡ଼ିଶାରେ ଏକ ଶୃଙ୍ଖଳିକର ଅଧ୍ୟାୟ ସୃଷ୍ଟି କରିଥିଲା ଓ ନାଟ୍ୟକଳା ତଥା ନାଟକ ପରିବେଶରେ ଯେ କି କଳାର ଚମତ୍କାରିତା ଅଛି, ତାହା ଦର୍ଶକମାନେ ଅଙ୍ଗେ ଅଙ୍ଗେ ଅନୁଭବ କରିବାକୁ ଲାଗିଲେ । ଏହାହିଁ କାଳୀଚରଣଙ୍କ ଚରମ ସାର୍ଥକତା । ଦୀର୍ଘ ୧୦ ବର୍ଷ କାଳ ଏହି ଓଡ଼ିଶା ଥିଏଟର୍ସ (୧୯୩୯ରୁ ୧୯୪୯ ମସିହା ପର୍ଯ୍ୟନ୍ତ) ଓଡ଼ିଶା ରଙ୍ଗମଞ୍ଚ ଜଗତରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲା ।

୧୯୪୯ ମସିହାରେ ଓଡ଼ିଶା ଥିଏଟର୍ସ, ଭାଙ୍ଗିଯିବା ପରେ ସେ ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତକୁ ସର୍ବଭାରତୀୟ ସ୍ତରରେ ପ୍ରତିଷ୍ଠା କରିବା ପାଇଁ ପ୍ରଚଣ୍ଡ ଉଦ୍ୟମ ଆରମ୍ଭ କରି-ଥିଲେ । ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତ ସମ୍ପର୍କରେ ଗବେଷଣାତ୍ମକ ପ୍ରବନ୍ଧମାନ ଲେଖି ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତର ପ୍ରାଚୀନତା ତଥା ମୌଳିକତା ପ୍ରତି ପଦେପଦେ ପ୍ରତିପାଦନ କରି ଭାରତ ଜାତୀୟ, ଆନ୍ତର୍ଜାତିକ କ୍ଷେତ୍ରରେ ମଧ୍ୟ ତାକୁ ପ୍ରତିଷ୍ଠିତ କଲେ ଓ ଭାରତର ବିଭିନ୍ନ ସ୍ଥାନରେ ଓଡ଼ିଶୀ ନୃତ୍ୟ ଓ ସଙ୍ଗୀତର ନିଜ ତତ୍ତ୍ୱାବଧାନରେ ଆଲୋଚନାଚକ୍ର ମାନ ଅନୁଷ୍ଠିତ କରାଇ ଓଡ଼ିଶୀ ସଙ୍ଗୀତ ଓ ନୃତ୍ୟକୁ ବହୁଳ ଭାବେ ସ୍ୱୀକୃତ ଓ ପ୍ରସାରିତ କରାଇଲେ । କାଳୀଚରଣଙ୍କ ଏହି ସମସ୍ତ ଅଦମ୍ୟ ଉଦ୍ୟମ ଫଳରେ ଓଡ଼ିଶୀ ନୃତ୍ୟ ଶାସ୍ତ୍ରୀୟ ନୃତ୍ୟ ଭାବରେ କେନ୍ଦ୍ର ସଙ୍ଗୀତ ନାଟକ ଏକାଡ଼େମୀ ଦ୍ୱାରା ସ୍ୱୀକୃତ ଓ ସମ୍ମାନିତ ହେଲା । ଏହାହିଁ କାଳୀଚରଣଙ୍କର ଏ ଜାତିକୁ ଚରମ ଓ ପରମ ଅବଦାନ । କାଳୀଚରଣ ଗୁରୁ ଓ ଗୁରୁଶ୍ରୀ ଦେବପ୍ରସାଦ ଦାସ ଓ ଇନ୍ଦ୍ରାଣୀ ରହମାନ ସାରା ପୃଥିବୀରେ ଓଡ଼ିଶୀ ନୃତ୍ୟ ପ୍ରଦର୍ଶନ କରି ଏ ଜାତିର ଜାତୀୟ ପରଂପରାରେ ଗୌରବମୟ ଇତିହାସ ସୃଷ୍ଟି କରିଛନ୍ତି ।

ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ସେ ତାଙ୍କର ଅମ୍ଳାନ ସ୍ୱାକ୍ଷର ଦେଇ ଯାଇଛନ୍ତି । ଜଣେ ଗୀତିକାର ଭାବରେ ସେ ମଧ୍ୟ ଏ ସାହିତ୍ୟରେ ସୁପ୍ରତିଷ୍ଠିତ ଓ କଟକ ବେତାର କେନ୍ଦ୍ରରୁ ତାଙ୍କର ସଙ୍ଗୀତ ବହୁଳ ଭାବେ ପ୍ରଚାରିତ । ତାଙ୍କର ସମସ୍ତ ସଙ୍ଗୀତ । କବିଚନ୍ଦ୍ର ଗୀତାବଳୀ'ରେ ସଂରକ୍ଷିତ ଓ ସୁରକ୍ଷିତ ହୋଇଛି ।

କାଳୀଚରଣ ଜଣେ ସଫଳ ଅଭିନେତା, ନିର୍ଦ୍ଦେଶକ, ନୃତ୍ୟଗୁରୁ ଓ ସଙ୍ଗୀତ ଗୁରୁ ମଧ୍ୟ । ଓଡ଼ିଆ ଚଳଚ୍ଚିତ୍ରରେ ମଧ୍ୟ ସେ ଉତ୍ତର ଜୀବନରେ ଅଭିନୟ କରି ଜଣେ କୁଶଳୀ ଅଭିନେତା ଭାବେ ନିଜକୁ ମଧ୍ୟ ପ୍ରତିଷ୍ଠା କରିପାରିଥିଲେ । ପୁନଶ୍ଚ ଓଡ଼ିଆ ଚଳଚ୍ଚିତ୍ର କ୍ଷେତ୍ରରେ ତାଙ୍କ ରଚିତ ଓ ନିର୍ଦ୍ଦେଶିତ ଲଳିତା (୧୯୪୮) ଓ ନାରୀ (୧୯୬୨) ତାଙ୍କର ନାଟ୍ୟ ଲେଖନୀ ଓ ନିପୁଣତାର ଚରମ ଓ ପରମ ଅବଦାନ କହିଲେ ଚଳେ ।

୧୯୫୩-୫୪ ମସିହାର କଥା । ଯେଉଁମାନେ ତାଙ୍କର ହାତଗଢ଼ା ମଣିଷ, ସେମାନେ ତାଙ୍କ ବିରୁଦ୍ଧରେ ନାନା ପ୍ରକାର କୁତ୍ସା'ରଟନା କରିବାରେ ଶତମୁଖ ହୋଇ ଉଠିଲେ । କଟକରୁ ସେହି ସମୟରେ ପ୍ରକାଶ ପାଉଥିବା 'ଢେଙ୍କାନଳଗ୍ରନ୍ଥ' ସାହିତ୍ୟ ସମାଲୋଚନା ପତ୍ରିକା କାଳୀଚରଣଙ୍କୁ ସମର୍ଥନ କରି ତାଙ୍କ ଶତ୍ରୁପକ୍ଷଙ୍କ ବିରୁଦ୍ଧରେ ଲେଖାମାନ ବାରମ୍ବାର ଲେଖିବା ଫଳରେ ଶତ୍ରୁପକ୍ଷର ବ୍ୟୁହ ଭୁଷୁଡ଼ି ପଡ଼ିଲା ଓ କାଳୀଚରଣ ଆଶ୍ୱସ୍ତ ହେଲେ । ଯଦି ସେତେବେଳେ 'ଢେଙ୍କାନଳଗ୍ରନ୍ଥ' ପତ୍ରିକା କାଳୀଚରଣଙ୍କୁ ସମର୍ଥନ କରି ଦୃଢ଼ ସ୍ୱର ଉତ୍ତୋଳନ କରି ନଥାନ୍ତା, ତାହାହେଲେ ତାଙ୍କର ଶତ୍ରୁପକ୍ଷ କାଳୀଚରଣଙ୍କୁ ଯେ କି ଅବସ୍ଥାରେ ପକାଇ ଥାଆନ୍ତେ, ତାହା ଆଜି କଳ୍ପନାର ବାହାରେ । ଯେଉଁ ବନ୍ଧୁମାନେ ସେତେବେଳକାର ଅବସ୍ଥା ଅନୁଧ୍ୟାନ କରିଛନ୍ତି, ସେଇମାନେ ଏ ଉକ୍ତିକୁ ଆଜି ମର୍ମେ ମର୍ମେ ଅନୁଭବ କରିବେ । ସେହି ୧୯୫୪ ମସିହାରେ ସେ "ସୁରଲେଖା" ରେକର୍ଡ଼ିଂ କମ୍ପାନୀ ଆରମ୍ଭ କରି ଓଡ଼ିଶାର ବିଖ୍ୟାତ ସଙ୍ଗୀତ ଶିଳ୍ପୀମାନଙ୍କ ଜରିଆରେ ପ୍ରାୟ ୨୦ଟି ଚମତ୍କାର ସଙ୍ଗୀତର ରେକର୍ଡ଼ ପ୍ରସ୍ତୁତ କରିପାରିଥିଲେ ।

କାଳୀଚରଣ ନିଜ ଜୀବନକୁ ଓଡ଼ିଆ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଯେପରି ଉତ୍ସର୍ଗ କରିଥିଲେ, ତାହାହିଁ ଆମ ଉତ୍ତରପୁରୁଷଙ୍କ ଏକାନ୍ତ ଅନୁସରଣୀୟ ଓ ଅନୁକରଣୀୟ । କଟକ ଜଗନ୍ନାଥ ବଲ୍ଲଭ ଘରେ ତାଙ୍କର ସାହିତ୍ୟ ସାଧନା, ଯେଉଁମାନେ ଦେଖିଛନ୍ତି; ସେଇମାନେ ହିଁ ତାର ମୂକ ସାକ୍ଷୀ ।ସଙ୍ଗୀତଜ୍ଞ ହିସାବରେ ତାଙ୍କର ଯେଉଁ କୃତିତ୍ୱ ତାହା ତାଙ୍କର ଓଡ଼ିଶୀ ସଙ୍ଗୀତ ଗୁରୁ ଶ୍ରୀ ବାସୁଦେବ ମହାପାତ୍ର ଓ ହିନ୍ଦୁସ୍ଥାନୀ ଶାସ୍ତ୍ରୀୟ ସଙ୍ଗୀତ ଗୁରୁ ବନଓ୍ୱାରୀ ମିଶ୍ରଙ୍କ ଚରମ ଆଶୀର୍ବାଦ ଯୋଗୁଁ ହିଁ ଘଟିଥିଲା ।

ଏହା ଛଡ଼ା ସେ ଯେଉଁ ଦୁଷ୍ପ୍ରାପ୍ୟ ପୁସ୍ତକ ପୋଥିମାନ ସଂଗ୍ରହ କରି ରଖିଥିଲେ, ତାହା ମଧ୍ୟ ଏ ଜାତିର ସର୍ବଶ୍ରେଷ୍ଠ ସମ୍ପଦ । ଏହିଭଳି ଏକ କାଳଜୟୀ କଳା ପ୍ରାଣ ଜୀବନ ଆମଠାରୁ ୧୯୭୮ ମସିହା ଜୁଲାଇ ଚଉଦ ତାରିଖ ଦିବା ୧୦।୪୫ ମିନିଟ୍‌ରେ ବିଦାୟ ନେଲା । ସେ ପ୍ରଭୁ ଜଗନ୍ନାଥଙ୍କର ଶ୍ରେଷ୍ଠ ସମ୍ମାନ ସ୍ୱମର ଜଣେଗ

"(ଚଉଷଠି ଖଟଣି") ଅଧିକାର ଲାଭ କରିଥିବାରୁ ତାଙ୍କ ଶବରେ ଜଗନ୍ନାଥଙ୍କ ପାର୍ଶ୍ୱରୁ ନିଆଁ ଆସି ସ୍ପର୍ଶ ହେବା ପରେ ପୁରୀରେ ହିଁ ତାଙ୍କ ଶବ ସତ୍କାର କରାଯାଇଥିଲା ।

ତାଙ୍କର ମର ଦେହ ସିନା ଭୁଲିଗଲା, କିନ୍ତୁ ଏ ଜାତିର ଅସ୍ଥି ଘର ବଜ୍ର ଦାଣ୍ଡରେ ତାଙ୍କର ପଦଚିହ୍ନ ଯୁଗଯୁଗ ଲାଗି ଏ ଜାତିକୁ ପ୍ରେରଣାପୁଷ୍ଟ କରି ଆସୁଥିବ ।

ତାଙ୍କ ରଚିତ ପୁସ୍ତକାବଳୀ ଏ ଜାତିକୁ ଓ ଏ ସାହିତ୍ୟକୁ ଯେପରି ଗର୍ବସ୍ଥାନ ଓ ମର୍ଯ୍ୟାଦା ଦେଇଛି, ତାହା ଅବର୍ଣ୍ଣନୀୟ । ସେ ଗୁଡ଼ିକ ହେଲା—**ଶିଶୁ ସାହିତ୍ୟ**—କଳାହାଣ୍ଡିଆ ମେଘ, ବଉଳବେଣୀ, ବାଘ୍ୟାଧନଟି, ପ୍ରଥମପାଠ, ଆମପାଠ, କଥାଖଣ୍ଡ, ସରସ ସାହିତ୍ୟ, ଶିଶୁସାହିତ୍ୟ, ଶିଶୁଖେଳା ଗୀତ, ପିଲାଙ୍କ କର୍ମ ଅଗୀତ, ଠକ୍କର ବାପା, ନେପୋଲିୟନ, କେତୋଟି କଥା, ଆମ ସାହିତ୍ୟ, ବାଲବୋଧକ ।

**କ୍ଷୁଦ୍ର ଉପନ୍ୟାସ**—କନକକମଳା, ଯୋଗିନୀ ମାଆ ।

**ସମ୍ପାଦନା**—କବିସୂର୍ଯ୍ୟ ଗୀତାବଳୀ, ବାବାଜୀ ନାଟକ, ଚଳନ୍ତିକା (କ୍ଷୁଦ୍ର ଅଭିଧାନ) ।

**ଗଳ୍ପ ସଂଗ୍ରହ**—ବନଫୁଲ ।

**କବିତା ସଂଗ୍ରହ**—ଚନ୍ଦ୍ରିକା, ଫୁଲରେଣୁ ।

**ବ୍ୟଙ୍ଗ କବିତା**—ହାଲଫେସନ, ଚରଣଚୁଟିଆ ଭ୍ରମ ।

**ସଙ୍ଗୀତ ପୁସ୍ତକ**—ସଙ୍ଗୀତ ସାର, ଗୀତମଞ୍ଜରୀ, କବିଚନ୍ଦ୍ର ଗୀତାବଳୀ, ହାର୍ମୋନିୟମ ଶିକ୍ଷା, ପିଲାଙ୍କ ସଙ୍ଗୀତ ଶିକ୍ଷା, ଓଡ଼ିଶୀ ସଙ୍ଗୀତର ରୂପରେଖ, ଋକ୍ତ ଝଙ୍କାର ବରଣ ତାଳ, ମେଳରାଗ, ଲକ୍ଷଣ ଗୀତ, ସପ୍ତସ୍ୱର, ସୁରଲେଖା ଓ ସିନେମା ସଙ୍ଗୀତ ।

**କାବ୍ୟ ନାଟିକା**—ଅନଙ୍ଗ

**ସଙ୍ଗୀତ ନାଟକ**—ସାକ୍ଷୀଗୋପାଳ, ମାନିନୀ, ଗୀତଗୋବିନ୍ଦ, ରାଧିକା, ଚନ୍ଦ୍ରିକା, ମାଣିକା, ପଞ୍ଚପୁଷ୍ପ, ଦେହିପଦ ପଲ୍ଲବ ମୁଦାରଂ ।

**ଏକାଙ୍କିକା**—ସପ୍ତପର୍ଣ୍ଣୀ, ଯୁଗପୁରୁଷ, ଜୀବନ ଦର୍ପଣ, ଦୋଷ କୋଉଠି, ପଞ୍ଚରଙ୍ଗ, ଷଡ଼ରସ ।

**ନାଟକ ପୁସ୍ତକ**—ଧ୍ରୁବ, ହରିଶ୍ଚନ୍ଦ୍ର, ଶକୁନ୍ତଳା, ମୃଗତୃଷ୍ଣା, ଲକ୍ଷ୍ମୀ, ଆଖିର ଦେଖା, ପ୍ରତିଶୋଧ, ଗାର୍ଲ ସ୍କୁଲ, ଆହୁତି, ଚୁମ୍ବନ, ଭୂତ, ପରିବର୍ତ୍ତନ, ଜୟଦେବ, ହରଣଗୁଳ, ଅନ୍ତବର୍ତ୍ତୀ ଜଗନ୍ନାଥ ଦାସ, ଅଭିଯାନ, ଚଣ୍ଡୀ, ବେକାର, ଦଶଭୂଜା, ରକ୍ତମାଟି, ବନମାଟି, ବନମାଳା, ଫଟାଭୂଇଁ, ରକ୍ତ ମନ୍ଦାର, ସାରଳା ଦାସ, କମଳା, ସାବ ଖଣ୍ଡ ସଂଧାନ, ମାଳତୀ, ଯୁଗେ ଯୁଗେ ଉତ୍କଳ ।

**ଆତ୍ମଜୀବନୀ**—କୁମ୍ଭାର ଚକ (ଏହି 'କୁମ୍ଭାର ଚକ' ପୁସ୍ତକ ପାଇଁ କାଳୀଚରଣ କେନ୍ଦ୍ର ସାହିତ୍ୟ ଏକାଡେମୀରୁ ପୁରସ୍କୃତ)

**ଆଲୋଚନା**—ରମ୍ଭ ପ୍ରବେଶ, ଶ୍ରୀ ଗୀତ ଗୋବିନ୍ଦ, ଅଭିନୟ ଦର୍ପଣ, ପ୍ରବନ୍ଧ, ସ୍ୱଗତଜ, ଓଡ଼ିଆ ସଙ୍ଗୀତ, ଓଡ଼ିଆ ନୃତ୍ୟ ଓ ମଞ୍ଚଧାର ।

**ଅନୁବାଦ** –ଭୁଖାଁ (ହିନ୍ଦି) ଯୁଗ ଯୋଗୀ (ହିନ୍ଦି)

## * ଶ୍ରୀ ଉଦୟନାଥ ଷଡ଼ଙ୍ଗୀ

(ବିଂଶ ଶତାବ୍ଦୀ)

୧୯୦୫—

କଟକ ଜିଲ୍ଲା-ଜଗତସିଂହପୁରସ୍ଥ ସିପି ଗ୍ରାମରେ ଶ୍ରୀ ଉଦୟନାଥ ଷଡ଼ଙ୍ଗୀ ୧୯୦୫ ମସିହା ଫାଲ୍ଗୁନ ଦଶମୀ ଦିନ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଭିକାରୀ ଷଡ଼ଙ୍ଗୀ ଓ ମାତାଙ୍କ ନାମ ପାଣୋଶ୍ୱରୀ ଦେବୀ । ସିପି ଗ୍ରାମର ନିମ୍ନପ୍ରାଥମିକ ବିଦ୍ୟାଳୟରୁ ଶିକ୍ଷା ଶେଷ କଲା ଉତ୍ତାରୁ "ନିମ୍ନ ପ୍ରାଥମିକ ବୃତ୍ତି ପାଇ ୧୯୧୮ ମସିହାରେ ଜଗତ୍ସିଂହପୁର ଅଲକା-ମାଇନର ସ୍କୁଲରେ ଶିକ୍ଷାଲାଭ କରିଥିଲେ । ଗୁରୁତର ଜ୍ୱରବାଧକା ଓ ତା' ସାଙ୍ଗକୁ ୧୯୨୧ ମସିହାରେ ମହାତ୍ମାଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନ, ତାଙ୍କୁ ସେତେବେଳେ ଶିକ୍ଷାଲାଭରୁ ବଞ୍ଚିତ କଲା । ସେ ତତ୍‌କାଳୀନ ସ୍କୁଲ୍ ପାଠ ପଢ଼ା ଛାଡ଼ି ସ୍ୱର୍ଗୀୟ ଗୋପବନ୍ଧୁ ଚୌଧୁରୀ ଓ ପ୍ରାଣକୃଷ୍ଣ ପଢ଼ିହାରୀଙ୍କ ପ୍ରତିଷ୍ଠିତ ଅଲକାଶ୍ରମ ଆଦର୍ଶରେ ନିଜକୁ ବିଶେଷ ଅନୁପ୍ରାଣିତ କରି, ଆଶ୍ରମ ପରିଚାଳିତ ପାଠପଢ଼ା, ସୂତାକଟା, ଲୁଗାବୁଣା ପ୍ରଭୃତିରେ ମନୋନିବେଶ କଲେ ଓ ଗାଁ ଗାଁ ବୁଲି ଗାନ୍ଧିଜୀଙ୍କର ସ୍ୱାଧୀନତା ବାର୍ତ୍ତା ପ୍ରଚାର କଲେ । ତାପରେ ୧୯୨୫ ମସିହାରେ ସତ୍ୟବାଦୀ ବନ ବିଦ୍ୟାଳୟରେ ନାମ ଲେଖାଇ ପୁଣି ପାଠପଢ଼ା ଆରମ୍ଭ କଲେ । କିନ୍ତୁ ୧୯୨୭ ମସିହାରେ ସତ୍ୟବାଦୀ ବନ ବିଦ୍ୟାଳୟ ବନ୍ଦ ହୋଇଯିବାରୁ ତତ୍‌କାଳୀନ ଭିକ୍‌ଟୋରିଆ ସ୍କୁଲ ବର୍ତ୍ତମାନର ଭକ୍ତ ମଧୁ ବିଦ୍ୟାପୀଠରେ ନାମଲେଖାଇ

ସେହି ବର୍ଷ ମାଟ୍ରିକ ପରୀକ୍ଷା ଦେଲେ ସତ କିନ୍ତୁ ପରୀକ୍ଷାରେ କୃତକାର୍ଯ୍ୟ ହୋଇପାରିଲେ ନାହିଁ ଓ ସେଇଠାରେହିଁ ତାଙ୍କ ପାଠପଢ଼ାର ତୋରଣ ବନ୍ଧା ହେଲା । ଜୀବନ ନିର୍ବାହ ଚିନ୍ତା ବେଳକୁବେଳ ଘନେଇଉଠିଲା । ତେଣୁ ସେ ବିଶ୍ୱନାଥ କରଙ୍କ "ଉତ୍କଳ ସାହିତ୍ୟ" ପ୍ରେସରେ ପ୍ରଥମେ ଗ୍ରନ୍ଥକର୍ତ୍ତା ଜୀବନ ଆରମ୍ଭ କଲେ । ତା'ପରେ ସାହିତ୍ୟ ପ୍ରେସର ଗ୍ରନ୍ଥକର୍ତ୍ତା ଛାଡ଼ି ୧୯୪୦ ମସିହାରେ ଦଉ ପ୍ରେସର ମ୍ୟାନେଜର ରୂପେ ଅବସ୍ଥାପିତ ହେଲେ ଓ ତା'ପରେ ଜଣେ ସାମ୍ବାଦିକ ହିସାବରେ ଓଡ଼ିଶାର ପ୍ରତିଷ୍ଠିତ ଦୈନିକ ସମ୍ବାଦପତ୍ର ସମାଜରେ ଯୋଗ ଦେଲେ । ଶ୍ରୀ ରାଧାନାଥ ରଥ ଓ ପଣ୍ଡିତ ଲିଙ୍ଗରାଜ ମିଶ୍ର ଜେଲ ଯିବାରୁ ତାଙ୍କୁ କିଛି ସମୟ ପାଇଁ ସମାଜରେ ସମ୍ପାଦକ ଦାୟିତ୍ୱ ତୁଲାଇବାକୁ ପଡ଼ିଥିଲା । ୧୯୪୨ ମସିହାରେ ସମାଜର ସମ୍ପାଦକୀୟ ସ୍ତମ୍ଭରେ ତତ୍କାଳୀନ ସରକାରଙ୍କ ପ୍ରତି ତୀବ୍ର ସମାଲୋଚନା କରିବାରୁ ତାଙ୍କୁ ମାସେ ଦଶଦିନ ଜେଲ ଦଣ୍ଡ ଭୋଗିବାକୁ ପଡ଼ିଥିଲା । ସେ ଅଦ୍ୟାବଧି ସମାଜର ବାର୍ତ୍ତା ସମ୍ପାଦକ ରୂପେ ଦାୟିତ୍ୱ ତୁଲାଉଛନ୍ତି ।

ଏତ ଗଲା ତାଙ୍କ ସାମ୍ବାଦିକ ଜୀବନ । ତାଙ୍କର ଏହି ସାମ୍ବାଦିକ ଜୀବନ ସହିତ ତାଙ୍କ ସାହିତ୍ୟ ଜୀବନ ମଧ୍ୟ ଓତଃପ୍ରୋତ ଭାବେ ଜଡ଼ିତ । ଶିଶୁ ସାହିତ୍ୟ ରଚନାରେ ସେ ସିଦ୍ଧହସ୍ତ ଓ ଜଣେ ଶିଶୁ ସାହିତ୍ୟିକ ହିସାବରେ ସେ ଏ ଦେଶରେ ପ୍ରତିଷ୍ଠିତ ଓ ସମ୍ମାନିତ । ସଂପ୍ରତି ସେ ଜଗତସିଂହପୁର ସାହିତ୍ୟ ସଂସଦ, ନଣିମାଣିକ ତଥା ଉତ୍କଳ ସାହିତ୍ୟ ସମାଜର ସଭାପତି । ପ୍ରଥମେ ସେ ସାହିତ୍ୟିକ ଓ ପରେ ସାମ୍ବାଦିକ । ୧୯୧୮ ମସିହାରେ ସ୍ୱର୍ଗତ ଚନ୍ଦ୍ରମଣି ଆଚାର୍ଯ୍ୟଙ୍କ ସମ୍ପାଦିତ "ପଞ୍ଚାମୃତ"ରେ ତାଙ୍କ ଲେଖା ପ୍ରଥମେ ପ୍ରକାଶ ପାଇଥିଲା ।

ଅଲକାଶ୍ରମରେ ଅବସ୍ଥାନ ସମୟରେ ତାଙ୍କର ଦୀର୍ଘ କବିତା "ଅଲକା" ପୁସ୍ତିକାରରେ ପ୍ରକାଶ ପାଇଥିଲା । ସତ୍ୟବାଦୀ ବନବିଦ୍ୟାଳୟରେ ପଢ଼ୁଥିଲାବେଳେ "ବାଣୀ" ପତ୍ରିକା ଓ ଭିକ୍ଟୋରିଆ ହାଇସ୍କୁଲରେ ପଢ଼ୁଥିଲା ବେଳେ ବିଦ୍ୟାଳୟର ମୁଖପତ୍ର "ମଧୁବାଣୀ"ର ଯଥାକ୍ରମେ ସମ୍ପାଦନା ଦାୟିତ୍ୱ ତୁଲାଇଥିଲେ । ଅତନୁ ଓ ଷଡ଼ାନନ ଶର୍ମା ଛଦ୍ମନାମରେ ସେ ତାଙ୍କର ବହୁ ଲେଖା ପ୍ରକାଶ କରିଛନ୍ତି । ତାଙ୍କର ଶିଶୁ ସାହିତ୍ୟ, ଗଳ୍ପ, ଅନୁବାଦ, ହାସ୍ୟରସ ଲେଖା ଓ ଇତିହାସ ଲେଖା ମଧ୍ୟରେ ଓଡ଼ିଶାର ଇତିହାସ କଥା, ଭାରତର ଇତିହାସ କଥା, ସିନ୍ଦବାଦ, ଆଲିବାବା, ବିଚିତ୍ର ଜୀବଜନ୍ତୁ, ବଣ ଜଙ୍ଗଲର ଜୀବଜନ୍ତୁ, ଈଶପ କଥା, ଚକାଚକା ଭଉଁରୀ, ସପନ ଦେଇଜ, ପରୀ ଦେଇଜ, ମିଟର ମନ କଥା, ଝୁଙ୍କୁ ମୁଷି ଜହ୍ନମାମୁଁ, କୁରୁକୁରୁ (୧୯୬୨ ମସିହାରେ ଭାରତ ସରକାରଙ୍କ ଶିଶୁ ସାହିତ୍ୟ ସମିତି ଦ୍ୱାରା ଏହି କୁରୁ କୁରୁ ପୁସ୍ତକ ପୁରସ୍କୃତ); ଜୀବଜନ୍ତୁଙ୍କ, କଇଁଛଙ୍କ, ପିଲଙ୍କ ବୁଦ୍ଧଦେବ, ଜାଣିବା କଥା, ଅପ୍ସ ଗ୍ରହ ଉପଗ୍ରହ, ବିଚିତ୍ର ମାନବ, ଆଦିବାସୀ କଥା, ଜାତକ ଗଳ୍ପ, ଜାତକ କଥା, ବୌଦ୍ଧ ଜାତକ, ଦାମ୍ପତ୍ୟ

କଳାହ ଚୈବ, ବାହୁଡ଼ି ମହାସଭା, ହରଗଉରଙ୍କ ଘର ବାହୁଡ଼ା, କୁଳୁର ମୂଳକ ବୁଲ, ଆରବ୍ୟ କାହାଣୀ, ଟମକକାଙ୍କ କୁଟୀର, ମୁଦ୍‌ଗର ମୋହ, ଉପନିଷଦ ଗଳ୍ପ ପ୍ରଭୃତି ପ୍ରଧାନ । ଏହାଛଡ଼ା ଭଞ୍ଜଙ୍କ ବୈଦେହୀଶ ବିଳାସର ମଧ୍ୟ ସେ ସଫଳ ଟୀକାକାର । ଜୀବନର ଏ ବୃଦ୍ଧ ବୟସରେ ମଧ୍ୟ, ତାଙ୍କ ସାହିତ୍ୟ ସାଧନା ଅବ୍ୟାହତ ରହିଛି । ମଣିଷ ହିସାବରେ ସେ ସ୍ନେହୀ ଓ ବନ୍ଧୁ ବତ୍ସଳ ।

## * ଶ୍ରୀ ରାଧାମୋହନ ଗଡ଼ନାୟକ

(ବିଂଶ ଶତାବ୍ଦୀ)
୧୯୧୧—

ଦୁର୍ମୁଖ କବିତାର ସେହି ଉଦାତ୍ତ ଉଦ୍‌ଘୋଷଣ, ଏବେ ବି ପ୍ରାଣକୁ ଆନ୍ଦୋଳିତ ଓ ଉଦ୍‌ବେଳିତ କରେ । ସେ କବିତା ହେଲା—

କଥାରେ ମୋହର ଆହତ ମନର ଶ୍ୱାସ,
ଭାଷାରେ ମୋହର ଶୋଣିତ ଅରୁଣ ବ୍ୟଥା
ସ୍ୱରରେ ମୋହର ବଙ୍କିମ ଉପହାସ
ମୁଁ କହଇ ଆଜି ଅପ୍ରିୟ ସତକଥା"
ସ୍ତୁତିବାକ୍ ହେବ କେଉଁପରି ଆଜି
କହ ଆଜି କେଉଁ ଛଳେ ?
ଦୁର୍ମୁଖ ମୁହିଁ । ରୁଷ ମୁଁ ଧରାତଳେ"

ଏଇ କବିତାର କବି ରାଧାମୋହନ ଗଡ଼ନାୟକ । ସେ ବାସ୍ତବରେ ଓଡ଼ିଆ ସାହିତ୍ୟରେ ଦୁର୍ମୁଖ । ତାଙ୍କ ଭଳି 'ଦୁର୍ମୁଖ' ଓଡ଼ିଆ ସାହିତ୍ୟରେ କିପରି 'ଦୁର୍ମୁଖ' ତାଙ୍କ ସମ୍ପର୍କରେ ସେ ଥରେ ଆସିଛି, ସେ ଜୀବନରେ ଥିବା ଯାଏ ଭୁଲି ପାରିବ ନାହିଁ । ଏହାହିଁ ଗଡ଼ନାୟକଙ୍କର ପରିଚୟ ଓ ଏହି "ପରିଚୟରେ"ହିଁ ଗଡ଼ନାୟକ ଓଡ଼ିଆ ସାହିତ୍ୟରେ ଅପ୍ରତିଦ୍ୱନ୍ଦ୍ୱୀ ଅବିସ୍ମରଣୀୟ ବ୍ୟକ୍ତି ଓ ବ୍ୟକ୍ତିତ୍ୱ । ପୁନଶ୍ଚ ଏହିଭଳି ବ୍ୟକ୍ତି ଓ ବ୍ୟକ୍ତିତ୍ୱ ଆମ ସାହିତ୍ୟରେ ଯେତିକି ପ୍ରୀତିପ୍ରଦ ସେତିକି ଗ୍ଳାନିପ୍ରଦ ମଧ୍ୟ । ପ୍ରୀତିପ୍ରଦ ଏଇଥିପାଇଁ ସେ ସମସ୍ତଙ୍କ ପକ୍ଷରେ ଜଣେ ଅମ୍ଳାନ ଭଳି ପ୍ରିୟ ଓ ପରିଚିତ । ଯେ ଥରେ ତାଙ୍କର କବିତା ପଢ଼ିଛି, ସେହି କବିତାର ପ୍ରୀତିରେ ତଥା ତାଙ୍କ ମାନବିକତାର ମତ ଓ ସ୍ୱରରେ ବାରମ୍ବାର ପାଗଳ ହୋଇଛି—ତାଙ୍କ କବିତାକୁ କଣ୍ଠସ୍ଥ କରି ସେହି ପାଗଳାମିରେ ପ୍ରଳାପ କରିଛି । ଗ୍ଳାନିପ୍ରଦ ଏଇଥିପାଇଁ ସେ ଯେତେବେଳେ ଅମ୍ଳାନ ହୋଇ

ପଛକେ, ସାହିତ୍ୟ କ୍ଷେତ୍ରରେ ଯେତେ ବଡ଼ ବନ୍ଧୁ ହେଉ ପଛକେ, ସାହିତ୍ୟକ୍ଷେତ୍ରରେ ଯେତେ ପ୍ରତିଷ୍ଠାବାନ୍ ହେଉ ପଛକେ, ଯେଉଁଠି ତାର ସୃଷ୍ଟିରେ ତଥା ଆତ୍ମର ବିଷୟରେ ତ୍ରୁଟି ରହିଛି, ତାହାର ସମ୍ମୁଖରେ ତାଙ୍କୁ କଟୂକ୍ତି ସମାଲୋଚନା କରିବାରେ ଶତମୁଖ ହୋଇଉଠିଛନ୍ତି । ଏ ଭଳି ଏକ ଚରିତ୍ର ଓଡ଼ିଆ ସାହିତ୍ୟରେ ଅନନ୍ୟ ସାଧାରଣ ଓ ଅଭୂତ ପୂର୍ବ ।

ସେଥିପାଇଁ ଏ ଯୁଗର ଅନ୍ୟତମ ଶ୍ରେଷ୍ଠ ଔପନ୍ୟାସିକ କବି ଗଡ଼ନାୟକଙ୍କର ଅନ୍ତରଙ୍ଗ ବନ୍ଧୁ ଲକ୍ଷ୍ମୀଧର ନାୟକ ତାଙ୍କ କବିତାରେ ଗଡ଼ନାୟକଙ୍କ ସମ୍ପର୍କରେ କହିଛନ୍ତି—

ପରିଚିତ ପ୍ରାୟ ପ୍ରତିଟି ଲୋକର
ଶ୍ରେଷ୍ଠବନ୍ଧୁ ଭେଦ ନାହିଁ
ଆନ୍ତରିକ ସେ ଅତି ସାଧାରଣ—
ମଣିଷର ଭଲ ପାଇଁ
ନିସ୍ୱାର୍ଥରେ ସବୁଠି ମନ୍ତ୍ର,
ବିଷମ ପଥରେ ଦୃପ୍ତ ଶପଥ;
ବିରୋଧରେ ପୁଣି ବନ୍ଧୁତାରେ ସେ
ଅତୁଳ ଅଦ୍ୱିତୀୟ;
ମାନ୍ ଦିଏ ଯେଣୁ ମର୍ଯ୍ୟାଦା ଖୋଜେ
ଅପ୍ରିୟତାରେ ପ୍ରିୟ ।
ଯହିଁ ଯାଏ ସେଠି ସୃଷ୍ଟି କରେ ସେ
କଥାର ତୁମୁଳ ଝଡ଼,
ପରସ୍ପରରେ ଯୋଗସୂତ୍ରର
ଏକ ମାର୍ମିକ ସ୍ୱର ।
ଦୁର୍ମୁଖତାର ଏକ ସମ୍ବାଦ
ମୁହାଁମୁହିଁ ଠିକ୍ କରେ ପ୍ରତିବାଦ
ସେ ନୁହେଁ କାହାର, ପ୍ରତ୍ୟେକ ତାର
କଳ୍ପନାସ୍ୱିତ ଛବି,
ନୁଖୁରିବାଲ ଓ ଧଳା ଖଦଡ଼ର
ବିଦଗ୍ଧ ଏକ କବି ।"

ଏହି ପ୍ରୀତିପଦ ଓ ଖ୍ୟାତିପ୍ରଦ ବରେଣ୍ୟାସ୍ପଦ ବ୍ୟକ୍ତି ଜନ୍ମ ନେଇଥିଲେ ଢେଙ୍କାନାଳ ଜିଲ୍ଲା ଅନୁଗୁଳ ସବଡିଭିଜନସ୍ଥ ଲିଙ୍ଗରା ନଈକୂଳ କଲଣ୍ଡାପାଲ ଗ୍ରାମରେ ୧୯୧୧ ମସିହା ଅଗଷ୍ଟ ୨୫ ତାରିଖରେ । ତାଙ୍କ ପିତାଙ୍କ ନାମ ମହାଦେବ ଗଡ଼ନାୟକ ଓ ମାତାଙ୍କ ନାମ ଗୋଲକମଣି ଦେଈ । ମହାଦେବଙ୍କ ଚାରିପୁତ୍ର ଓ ତିନି କନ୍ୟା ମଧ୍ୟରୁ ସେ ଚତୁର୍ଥ ସନ୍ତାନ । ପିତା ମହାଦେବ ଗଡ଼ନାୟକ ସେହି ଗ୍ରାମର ସରବରାକାର । ତତ୍କାଳୀନ ଏହି ଗଡ଼ନାୟକ ପରିବାର "ବାଘସିଂହ" ବଂଶର ଉତ୍ତର ପୁରୁଷ ଥିଲେ ବୋଲି ଗଡ଼ନାୟକଙ୍କ 'କଲଣ୍ଡାପାଳ' କବିତା ତାର ସ୍ମୃତିଚାରଣ କରେ ଏହିପରି ଭାବରେ ।

ଭଗତ ବାଶୁଆ ସିଂହ
ଜଗନ୍ନାଥ ବାଘସିଂହ
 ଆମରି ବଂଶର ଥିଲେ ଲଲାଟ ଇନ୍ଦୁ
ବାଘ ମାରୁଥିଲେ ବଣେ,
ଅରି ହାଣୁଥିଲେ ରଣେ,
ତାକୁ ରଖିଥିଲେ ପ୍ରତି ରକତ ବିନ୍ଦୁ;
ପାଗବନ୍ଧା ଘୋଡ଼ା ମହଲେ
ଟେକ ନାଆଁ ରଖିଥିଲେ ରାଜନଅରେ ।

କବି ଗଡ଼ନାୟକଙ୍କ ଧମନୀରେ ସେହି ଶିକାର ଓ ଯୁଦ୍ଧପ୍ରିୟ କ୍ଷତ୍ରିୟ ବଂଶର ଶୋଣିତ ପ୍ରବାହିତ ହୋଇ, ସାହିତ୍ୟ କ୍ଷେତ୍ରରେ କ୍ଷତ୍ରିୟୋଚିତ ସ୍ପର୍ଦ୍ଧା ଓ ସ୍ୱଚ୍ଛୋନ୍ନତିର ଧାରା ଅବ୍ୟାହତ ରଖି ଆସିଛୁ । ତତ୍କାଳୀନ କଲଣ୍ଡାପାଳରେ କୌଣସି ପ୍ରାଇମେରୀ ସ୍କୁଲ ନ ଥିବାରୁ କଲଣ୍ଡାପାଳ ନିକଟବର୍ତ୍ତୀ ଲିଙ୍ଗରା ନଦୀର ଉତ୍ତର ପାର୍ଶ୍ୱସ୍ଥିତ ଅଗ୍ରହାଟ ନିମ୍ନ ପ୍ରାଥମିକ ସ୍କୁଲରେ ସେ ବିଦ୍ୟା ଆରମ୍ଭ କଲେ । ୧୯୧୯ରେ ସେଠାରୁ ପାଠପଢ଼ା ଶେଷ କରି ଗଡ଼ସନ୍ତ୍ରୀ ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ନାମ ଲେଖାଇଲେ । ୧୯୨୧ ମସିହାରେ ଅନୁଗୁଳ ସବ୍‌ଡିଭିଜନରେ ଉ: ପ୍ରା: ପରୀକ୍ଷାରେ ପ୍ରଥମ ବୃତ୍ତି ଲାଭ କରି ଅନୁଗୁଳ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଯୋଗଦେଲେ । ଏହି ସମୟକୁ ପାଠପଢ଼ା ସାଙ୍ଗକୁ କବିତା ଲେଖା ମଧ୍ୟ ଖୁବ୍ ଚାଲିଯାଏ । ୧୯୨୪ ମସିହାରେ ତାଳଚେରରୁ ପ୍ରକାଶିତ "ଗଡ଼ଜାତ ବାସିନୀ" ସାପ୍ତାହିକ ପତ୍ରିକାରେ ତାଙ୍କ କବିତା "ମୁଁ କି କେବେ ପାଠପଢ଼ିନ" ପ୍ରଥମେ ପ୍ରକାଶିତ ହୁଏ । କିଶୋର ରାଧାମୋହନଙ୍କର ସେ କବିତା ତାଙ୍କ ପ୍ରାଣର ଅଗ୍ନିସ୍ଫୁରଣ କହିଲେ ଚଳେ । ସେ କବିତାରେ କବି ନିଜ କଥାହିଁ ସ୍ପଷ୍ଟ କରି ଯେଉଁ ଆଶା ଓ ଆଶାବାଦୀର ସ୍ୱର ଝଙ୍କୃତ କରିଛନ୍ତି, ତାହାହିଁ ତାଙ୍କ ପରବର୍ତ୍ତୀ କବି ଜୀବନର ମୂଳଭିତ୍ତି କହିଲେ ଚଳେ । ତେଣୁ ସେ କହିଛନ୍ତି—

ଯେ ଜାତିର ପୁଅ କଥାକେ କଥାକେ
ଦେଲା ରେ ନେଲା ରେ ମଥା,
ଅମ୍ବରଚୁମ୍ବୀ କଣ୍ଠେ ଗାଇଲା
ସଙ୍ଗୀତ ରକ୍ତତତ୍ତା
ସେହି ରକତ ତ ମୋ ଦେହେ ବହୁଛି
ହେଉ ପଛେ ଯେତେ କ୍ଷୀଣ,
ସେହି ଜାତି କୋଳେ ଜନମ ମୋର ସେ
ମୁଁ କି କେବେ ହୀନସ୍ଥାନ ?

ଏହି ସମୟରେ କବିଙ୍କର ମୌଳିକ କବିତା ସେତେବେଳର ସହକାର, ଉତ୍କଳ ସାହିତ୍ୟ, ନବଯୁଗ ଓ ପଞ୍ଚାମୃତରେ ପ୍ରକାଶ ଲାଭ କରୁଥିଲା । ତାଙ୍କର ମୌଳିକ କବିତା ସାଙ୍ଗକୁ ଇଂରାଜୀ କବିତାର ଅନୁବାଦ ଗୁଡ଼ିକ ମଧ୍ୟ ୧୯୨୫ରୁ ୧୯୩୦ ପର୍ଯ୍ୟନ୍ତ ଧାରାବାହିକ ଭାବେ ତତ୍କାଳୀନ "ସହକାର" ଓ 'ଉତ୍କଳ ସାହିତ୍ୟରେ' ପ୍ରକାଶ ପାଇଥିଲା ।

ସେତେବେଳେ ଏହି ଆଗନ୍ତୁକଙ୍କ କବି ପ୍ରତିଭା, ଓଡ଼ିଆ ସାହିତ୍ୟରେ ଧୀରେ ଧୀରେ ପ୍ରତିଭାତ ହୋଇଉଠିଲା ଓ ସାହିତ୍ୟପିପାସୁ ପାଠକ/ପାଠିକାଙ୍କର ନିକଟରେ ଗଡ଼ନାୟକଙ୍କ କବି ନାମ ସୁଦୃଢ଼ ଆସନ ପାରି ବସିଲା ।

୧୯୨୭ ମସିହାରେ ଅନୁଗୁଳ ମଧ୍ୟଇଂରାଜୀ ବିଦ୍ୟାଳୟ,ଉଚ୍ଚଇଂରାଜୀ ବିଦ୍ୟାଳୟରେ ପରିଣତ ହେବାରୁ ଗଡ଼ନାୟକ ଅନୁଗୁଳ ଉଚ୍ଚଇଂରାଜୀ ବିଦ୍ୟାଳୟରେ ମାଟ୍ରିକ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନ କଲେ । ଗଡ଼ନାୟକ ଛାତ୍ରାବସ୍ଥାରୁ ଅର୍ଥାତ୍ ୧୯୨୭ ଓ ୧୯୨୮ ମସିହାରେ ଯଥାକ୍ରମେ ଦେଶସେବୀ ଓ ସାହିତ୍ୟିକ ଲକ୍ଷ୍ମୀନାରାୟଣ ସାହୁ ଓ ପଣ୍ଡିତ ଚନ୍ଦ୍ରଶେଖର ମିଶ୍ରଙ୍କ ବ୍ୟକ୍ତିଗତ ସମ୍ପର୍କରେ ଆସନ୍ତି । ଉଭୟେ ଶ୍ରୀଯୁକ୍ତ ସାହୁ ଓ ମିଶ୍ର ଗଡ଼ନାୟକଙ୍କ କବିତା ରଚନା ଶୈଳୀରେ ଅଭିଭୂତ ହୋଇ ତାଙ୍କୁ ଏହି ସାହିତ୍ୟ ସାଧନାରେ ରତ ହେବା ପାଇଁ ବିଶେଷ ପ୍ରେରଣା ପ୍ରଦାନ କରନ୍ତି । ଛାତ୍ରାବସ୍ଥାରୁ ଏହି ଉଲ୍ଲେଖନୀୟ ପ୍ରେରଣା ଗଡ଼ନାୟକଙ୍କ ଉପର କବି ଜୀବନରେ ବିଶେଷ ଫଳପ୍ରଦ ହୋଇଥିଲା । ନିଜେ ଗଡ଼ନାୟକ ଏକଥା ତାଙ୍କ କବିତା ପୁସ୍ତକ 'ଶାମୁକାର ସ୍ୱପ୍ନ' ଶ୍ରୀଯୁକ୍ତ ଚନ୍ଦ୍ରଶେଖର ମିଶ୍ରଙ୍କ ନାମରେ ଉତ୍ସର୍ଗ କରି କହିଛନ୍ତି—

"ଶାମୁକାର ବକ୍ଷ ପୁଟେ ଖୋଜ ତୁମେ
ମୁକ୍ତାର ସମ୍ଭାର,
"ଶାମୁକାର ସ୍ୱପ୍ନ" ତେଣୁ ତବ କରେ
ଦେଲି ଉପହାର" ।

ବେଳକୁ ବେଳ ଦେଶପ୍ରୀତି ଓ ସାହିତ୍ୟପ୍ରୀତିରେ ତାଙ୍କର ମନ ଆନ୍ଦୋଳିତ ହୋଇ ଉଠିବାରୁ, ପାଠପଢ଼ାରେ ଆଉ ମନୋନିବେଶ କରି ପା'ରିଲେ ନାହିଁ କି ଶ୍ରେଣୀ ପରୀକ୍ଷାରେ ଉଚ୍ଚ ସ୍ଥାନ ରଖିବାକୁ ସମର୍ଥ ହେଲେ ନାହିଁ । ଏପରି ଏକ ପରିସ୍ଥିତି ଉପୁଜିଲା, ଯାହା ଫଳରେ କି ସେ ଅନୁଗୁଳ ହାଇସ୍କୁଲ ତ୍ୟାଗ କରି ଦେବଗଡ଼ ହାଇସ୍କୁଲରେ ପଢ଼ିଲେ । ସେଠାରେ ପ୍ରାୟ ଦୁଇମାସ ଅଧ୍ୟୟନ କଲାପରେ ପୁରାପୁରି ପାଠପଢ଼ା ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ସୈନିକ ପାଲଟିଲେ । ନିଜେ ଏଇ ସ୍ୱାଧୀନତା ସଂଗ୍ରାମରେ ଯେ କାହିଁକି ସୈନିକ ହେଲେ, ତା'ର ପ୍ରତିଫଳନ, ତାଙ୍କର ପରବର୍ତ୍ତୀ କବିତାରେ ରୂପାୟିତ ହୋଇଅଛି ।

ବିଦେଶୀର ଫାଶେ ମନ୍ତ୍ରାକ୍ରାନ୍ତା
ଥିଲା ଯେବେ ମୋର ଜନ୍ମଭୂଇଁ,
ମୁକ୍ତି ସମର ଅଭିଯାନ ପଥେ
ଛୁଟି ଯାଇଥିଲି ତରୁଣ ମୁହିଁ ।
କେତେ ସଂଗ୍ରାମୀ କେତେ ଶହୀଦର
ରକ୍ତେ ଉଠିଲା ମନ୍ତ୍ରନାଦ
"ଇନ୍‌କିଲାବ ଜିନ୍ଦାବାଦ୍" ।
ସ୍ମରଣ ପଟ୍ଟେ ତୋଳିଥିଲି ମୋର
କ୍ରାନ୍ତି ଗାଥା,
"ଜାଗ ଜାଗ ମୋର ମାଟିର ମାତା"

କବିତା ମାଧ୍ୟମରେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରଚାର ତାଙ୍କ ସାହିତ୍ୟ ସାଧନାର ଏକ ବଳିଷ୍ଠ ବିପ୍ଳବ ରୂପେ ରୂପ ପରିଗ୍ରହ କଲା ।

୧୯୩୦ ମସିହାରେ ସେ ନିଜଗ୍ରାମର ଶ୍ରୀ ହୃଷୀକେଶ ରାଉତଙ୍କ କନ୍ୟା ଚକୋରୀ ଦେବୀଙ୍କୁ ବିବାହ କଲେ । ବିବାହର ୪ ବର୍ଷ ପରେ ଅର୍ଥାତ୍ ୧୯୩୪ ମସିହାରେ ମାଟ୍ରିକ୍ୟୁଲେଶନ ପରୀକ୍ଷା ଦେଲେ କିନ୍ତୁ ପରୀକ୍ଷାରେ ପାଶ କରି ପାରିଲେ ନାହିଁ । ତା' ପରେ ସେ ଅନୁଗୁଳର ରେକର୍ଡ ଅଫିସରେ କପିଷ୍ଟର କାର୍ଯ୍ୟରେ ନିଯୁକ୍ତ ହେଲେ କିନ୍ତୁ ତାଙ୍କର ସ୍ୱାଧୀନ ମନ ଏହି ଚାକିରୀରେ ବାନ୍ଧି ହେବାକୁ ଚାହିଁଲା ନାହିଁ । ସେ ସେଥିରୁ କିଛିଦିନ ପରେ ଅବ୍ୟାହତି ନେଲେ ।

୧୯୩୮ ମସିହାରେ ଓଡ଼ିଶାରେ ଗଡ଼ଜାତ ଆନ୍ଦୋଳନ । ଢେଙ୍କାନାଳ ଓ ତାଳଚେରର ପ୍ରାୟ ୭୦ ହଜାର ଲୋକ ନିଜ ନିଜ ରାଜ୍ୟ ଛାଡ଼ି ଅନୁଗୁଳର, କୋଶାଳା

କମସଳ, ନଡଡ଼ା, ଗୃଙ୍ଗୁଡ଼ିଆ ସନ୍ତର ବନ୍ଧ, ପାଣିଓଲା ଓ ଗୁଡ଼ାପଙ୍କ ପ୍ରଭୃତି କ୍ୟାମ୍ପ ମାନଙ୍କରେ ଆଶ୍ରୟ ନେଇଥିଲେ । ସେ କ୍ୟାମ୍ପ ମାନଙ୍କୁ ହଜାରହ କ୍ୟାମ୍ପ କୁହାଯାଉଥିଲା । ଲୋକ ମାନଙ୍କର ଉଦ୍‌ବୋଧନ ପାଇଁ କବି ଗଡ଼ନାୟକଙ୍କର "ଶିବିର ସଙ୍ଗୀତ" ସେହି ସେହି ଶିବିର ମାନଙ୍କରେ ଗୀତ ହେଉଥିଲା ।

"ରାଇଜ ଛାଡ଼ି ସେ ପଳାଇ ଆସିଛୁ ଆମେ
ଭୀରୁ ବୋଲି ଯିନା ଭାବୁଥିବ ତୁମେ ମାନେ
ନୋହୁ ଆମେ ପ୍ରାଣରଙ୍କ
ଆମେରେ ଏଇଠି ବଜାଇବୁ ଆମ୍ଭେ
ମଣିଷର ଜୟଶଙ୍ଖ ।

ଏହାର କିଛି ଦିନପରେ ବାରିପଦା ପୋଲିସ୍ ବିଭାଗର ସୁପରିଂଟେଣ୍ଡେଣ୍ଟ ଶ୍ରୀ ରାମଚନ୍ଦ୍ର ଦାସ (ସେ କି ପରବର୍ତ୍ତୀ କାଳରେ ଓଡ଼ିଶା ପୋଲିସ ବିଭାଗର ଆଇ. ଜି ହେଲେ) ତାଙ୍କର ଘରେ ତାଙ୍କର ପୁତ୍ରମାନଙ୍କୁ ପଢ଼ାଇବା ପାଇଁ ଗୃହ ଶିକ୍ଷକ ହୋଇ ରହିଲେ । ତାଙ୍କର ଏହି ବାରିପଦା ରହଣି ତାଙ୍କ ସାହିତ୍ୟ ସାଧନାର ପଥକୁ ଆହୁରି ପୁଷ୍ଟିଳ କରି ଲାଗିଲା । ଏଇଠାରେ ସେ ଇଂରାଜୀ, ହିନ୍ଦି ବଙ୍ଗଳା ଓ ଓଡ଼ିଆ ସାହିତ୍ୟର ବହୁବିଧ ପୁସ୍ତକମାନ ଅଧ୍ୟୟନ କରି ବହୁ ଜ୍ଞାନର ଅଧିକାରୀ ହୋଇପାରିଥିଲେ । ଓଡ଼ିଶାର ଅନ୍ୟତମ କୃତୀ ସନ୍ତାନ ବାରିପଦା ନିବାସୀ ଗବେଷକ ପରମାନନ୍ଦ ଆଚାର୍ଯ୍ୟଙ୍କ ଗଭୀର ସମ୍ପର୍କରେ ଏଇଠି ଗଡ଼ନାୟକ ଆସିଥିଲେ । ବାରିପଦା ପୁସ୍ତକାଗାର ଓ ପରମାନନ୍ଦ ଆଚାର୍ଯ୍ୟଙ୍କ ନିଜ ପ୍ରତିଷ୍ଠିତ ପୁସ୍ତକାଗାରରେ ତାଙ୍କର ଅଧିକାଂଶ ସମୟ ଅତିବାହିତ ହୋଇଥିଲା । ସେଇ ବାରିପଦାରେ ସେତେବେଳେ ଡକ୍ଟର ସଦାଶିବ ମିଶ୍ର, ଡକ୍ଟର କାଳିନ୍ଦୀ ଚରଣ ପାଣିଗ୍ରାହୀ, କବି ମହେଶ୍ୱର ନାୟକଙ୍କ ସମ୍ପର୍କରେ ମଧ୍ୟ ଆସିଥିଲେ । ଏହି ବାରିପଦା ରହଣି କାଳ, କବି ଗଡ଼ନାୟକଙ୍କୁ ସାହିତ୍ୟ ସାଧନାରେ ସିଦ୍ଧି ଲାଭ କରିବାପାଇଁ ସମସ୍ତ ପ୍ରକାର ଖୋରାକ ଯୋଗାଇଥିଲା । ଶ୍ରୀ ସାରଙ୍ଗଧର ଦାସ, ନବକୃଷ୍ଣ ଚୌଧୁରୀ ଓ ମାଳତୀ ଚୌଧୁରୀ ପ୍ରଭୃତି ଅନୁଗୁଳରେ କଂଗ୍ରେସ କାର୍ଯ୍ୟ କରୁଥିବାବେଳେ ଗଡ଼ନାୟକ ସେମାନଙ୍କର ସାଙ୍ଗରେ ଯୋଗ ଦେଇଥିଲେ ।

୧୯୪୬ ମସିହାରେ ଅନୁଗୁଳ ଯୋଗାଣ ବିଭାଗର ନନ୍ ଅଫିସିଆଲ ସେକ୍ରେଟେରୀ ଓ ଅନୁଗୁଳ ବ୍ରାଞ୍ଚ ଭାରତ ଇଣ୍ଡଷ୍ଟ୍ରିଆଲ ବ୍ୟାଙ୍କର ମ୍ୟାନେଜର ହେଲେ । ୧୯୪୭ ମସିହାରେ ଘରେଇ ଭାବରେ ମାଟ୍ରିକ ପରୀକ୍ଷା ଦେଇ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ତା'ପରେ ତାଙ୍କର ଉଚ୍ଚ ଶିକ୍ଷା ଲାଭ ପାଇଁ ପ୍ରବଳ ବାସନା ଜାଗି ଉଠିଲା—ତେଣୁ ଅନୁଗୁଳ ଯୋଗାଣ ବିଭାଗ ଓ ବ୍ୟାଙ୍କ ଦାୟିତ୍ୱରୁ ଇସ୍ତଫା ଦେଇ

ତତ୍କାଳୀନ କଟକ ଖ୍ରୀଷ୍ଟିଆନ କଲେଜରେ ଆଇ. ଏ. ଶ୍ରେଣୀରେ ନାମ ଲେଖାଇଲେ । କିନ୍ତୁ ବିଧିର ବିଧାନ ବିଚିତ୍ର । ଉଚ୍ଚ ଶିକ୍ଷା ଲାଭ କରି ରାଜନୀତି କରିବା ଓ ଓକିଲ ହେବାର ସ୍ୱପ୍ନ ତାଙ୍କର ଧୂଳିସାତ୍ ହେଲା—ଭଗବାନ ଗ୍ରହିଲେ ନାହିଁ । ଆଇ.ଏ ପରୀକ୍ଷା ନ ଦେଇ ସେ ପାଠ ପଢ଼ାରୁ, ଚିରଦିନ ପାଇଁ ବିଦାୟ ନେଲେ । ଉଚ୍ଚ ଡିଗ୍ରୀ ସିନା ସେ ହାସଲ କରିବାରୁ ବଞ୍ଚିତ ହେଲେ, କିନ୍ତୁ ସାହିତ୍ୟରେ ସେ ଯେଉଁ ଡିଗ୍ରୀ ହାସଲ କରି ବସିଲେ, ତାହା ଅନ୍ୟ କାହାରି ଭାଗ୍ୟରେ ସମ୍ଭବ ହେଲା ନାହିଁ । ସେ ସାହିତ୍ୟ ସାଧନାରେ ରତ ହେଲେ । ସାହିତ୍ୟ ସାଧନର ତାଙ୍କର ଚରମ ସିଦ୍ଧି ତାଙ୍କ ସାହିତ୍ୟିକ ଜୀବନର ଅନବଦ୍ୟ ପରିପ୍ରକାଶ । ଏଭଳି ସାହିତ୍ୟ ସିଦ୍ଧିର ସାର୍ଥକତା, କେବଳହିଁ ତାଙ୍କର ପାଖରେ ଚିର ବର୍ତ୍ତିମାନ ଓ ବିଦ୍ୟମାନ ମଧ୍ୟ । ସେଥିପାଇଁ ଡକ୍ଟର ମାୟାଧର ମାନସିଂହ ତାଙ୍କ ପ୍ରଣୀତ History of Oriya literatureରେ କହିଛନ୍ତି—Though no degree holder Gadnayak is surprisingly erudite in Sanskrit, Oriya and Bengali. He is well acquiainted also with English "+ + + He is now considered the greatest matericist in Oriya literature" ପୁନଶ୍ଚ ନୂଆ ଦିଲ୍ଲୀରୁ ପ୍ରକାଶିତ Caravan ମାସିକ ପତ୍ରିକାର ୧୯୬୦ ସେପ୍ଟେମ୍ବର ସଂଖ୍ୟାରେ ଗଡ଼ନାୟକଙ୍କ ସମ୍ପର୍କରେ କୁହାଯାଇଛି "Radhamohan Gadanayak is one of the leading living Oriya Poets. His poetry makes a new mile stone in the development of the Oriya lyric and, in both its imotional Content and naturalness + + + + His Poetry is marked by originality, imagination, breadth of vision and depth of thoughts. He is the poet of the soil"

୧୯୫୭ ମସିହାରେ ମଣିକାଞ୍ଚନର ସଂଯୋଗ । ଉଭୟେ କବି ମାନସିଂହ ଓ ଗଡ଼ନାୟକ ଶିକ୍ଷା ବିଭାଗରେ ପ୍ରୌଢ଼ ଶିକ୍ଷା ଅଫିସର ଓ ପ୍ରଡ଼ିଉସର ଅଫିସର ଭାବରେ ଯଥାକ୍ରମେ ଯୋଗ ଦେଲେ । ଏକା ବିଭାଗରେ ଉଭୟଙ୍କର ରହଣୀ । ପୁଣି ମାନସିଂହ ଗଡ଼ନାୟକଙ୍କର ଉପରିସ୍ଥ କର୍ମଚାରୀ । ପୁଣି ଉଭୟଙ୍କର ଯୋଗାଯୋଗରେ ଓଡ଼ିଆ ସାହିତ୍ୟରେ ଏକ ନୂତନ ଅଧ୍ୟାୟ ସୃଷ୍ଟି ହେଲା । ପ୍ରୌଢ଼ ଶିକ୍ଷା ବିଭାଗରୁ ସେତେବେଳେ ଗଡ଼ନାୟକଙ୍କ ସଂକଳନରେ ଯେଉଁ ଗ୍ରନ୍ଥମାନ ପ୍ରକାଶ ପାଇଲା ତାହା ଏବେବି ଅବିସ୍ମରଣୀୟ ଓ ଅପ୍ରତିଦ୍ୱନ୍ଦ୍ୱୀ । ବିଶେଷ କରି ଜାତିର ପିତା ଗାନ୍ଧୀ ଓ ଗୋପବନ୍ଧୁଙ୍କ ସମ୍ପର୍କରେ କବିତା ସଂକଳନ ଓ ପଲ୍ଲୀ କବିତା ସଂକଳନ ଓଡ଼ିଆ ସାହିତ୍ୟ ଇତିହାସରେ ନବଦିଗନ୍ତ ସୃଷ୍ଟି କଲା । ଏହି ଚାକିରି ରହଣୀର କିଛିଦିନ ପରେ ଉଭୟେ ଏହି ଚାକିରିରୁ ଅବ୍ୟାହତି

ନେଲେ । ଡକ୍ଟର ମାନସିଂହ ତାଙ୍କ ପ୍ରଣୀତ "ଶିକ୍ଷାବର୍ତ୍ତର ଗାଥା"ରେ ତାର ଇତିବୃତ୍ତ ଯେପରି ଆଲେଖ୍ୟନ କରିଛନ୍ତି, ତାହା ଯେତିକି ମର୍ମନ୍ତୁଦ ସେତିକି ଅଶ୍ରୁସିକ୍ତ ଓ ଗଡ଼ନାୟକ ମଧ୍ୟ ତାଙ୍କ କବିତା "କଳଙ୍କିତ ମୁହିଁ କଳାକାର" ? ବନ୍ଦନା ଲାଗି ଜଳୁଚି ଦୀପାଳୀ-ଜଳୁଛୁ କାହିଁ" ଏବଂ "ସତ୍ୟ ଓ ଶକ୍ତି"ରେ ପୁଙ୍ଖାନୁପୁଙ୍ଖ ଭାବେ ବର୍ଣ୍ଣନା କରିଛନ୍ତି । ସେହି ଘଟଣାର ସାମାନ୍ୟତମ ଇଙ୍ଗିତ ଦେଲେ କଥାଟା ଆହୁରି ସ୍ପଷ୍ଟ ହେବ, ଯାହାକି ଗଡ଼ନାୟକଙ୍କ କବିତାରେ ରୂପ ନେଇଛି—

ବାଣୀ ତୀର୍ଥର ଉପାସକ ମୁହିଁ
        କାବ୍ୟ ସୃଷ୍ଟି ଧର୍ମଧାରୀ
ଜନଶିକ୍ଷାର ଲେଖା ପାଇଁ ହେଲି
        ଉତ୍ପାଦନର କର୍ମଚାରୀ
କଳର ଭିତରେ କରି ପାରିଲିନି
ଧଳାକୁ କଳା କି କଳାକୁ ଧଳା
ରଚି ପାରିଲିନି ଚତୁର ଗୃହୁଳି ଗୃହ୍ୟର କଳା ।
ବଣି ମୂଳକର ମୁହିଁ ବାଘସିଂ ବଂଶଧର
ସର୍କସେ ଯାଇ ବଣି ହେଲି ନାହିଁ
ହୋଇ ପାରିଲିନି ଅନୁଚର ।
କଳା ସୃଷ୍ଟିର ଉପଯୋଗ କରି
ବରି ନେଲି ମୋର କଳାର କାଳ ।
ଆହତ ବୁକୁରେ ଫେରିଲି ମୋ ପଥେ
କାଳିମା ଯେମିତି ମୋ ପୁରସ୍କାର
        ଚମତ୍କାର...
ଘଟଣା ଭିତରେ କିଏ ସେ ପଶୁଚି
ରଚନା ହୋଇଛି ଦୁର୍ନିବାର ।"

ଉଭୟେ ପ୍ରୌଢ଼ ଶିକ୍ଷାରୁ କାହିଁକି ବିଦାୟ ନେଲେ—ସେ ଘଟଣାର ସତ୍ୟତା ଭିତରେ କେହି ପଶିଲେ ନାହିଁ । ସେମାନଙ୍କ ବିରୁଦ୍ଧରେ ଯେଉଁ ନେପଥ୍ୟ-ଚକ୍ରାନ୍ତ ଚାଲିଥିଲା, ତାହା ଦେଶର ବହୁ ଚେତନଶୀଳ ବ୍ୟକ୍ତିଙ୍କୁ ଉତ୍ତମ ରୂପେ ଜଣା ।

କେନ୍ଦ୍ର ସରକାରଙ୍କ ଆନୁକୂଲ୍ୟରେ ପ୍ରାଦେଶିକ ଶିକ୍ଷା ଓ ସାଂସ୍କୃତିକ ବିଭାଗରେ ଭାରତୀୟ ସ୍ୱାଧୀନତା ସଂଗ୍ରାମର ସୈନିକ ମାନଙ୍କର ପରିଚୟ ପୁସ୍ତକ (Who is who) ଲେଖା ପାଇଁ '୧୯୬୮'ରେ ଗଡ଼ନାୟକ ଏହି କାର୍ଯ୍ୟ ପାଇଁ ସାଂସ୍କୃତିକ ବ୍ୟାପାର ବିଭାଗରୁ

ନିଯୁକ୍ତି ପାଇଲେ । ସମଗ୍ର ଓଡ଼ିଶା ପରିଭ୍ରମଣ କରି, ଗଡ଼ନାୟକ ଯେଉଁ ଗ୍ରନ୍ଥ ସଙ୍କଳନ କଲେ, ତାହା ଇତିହାସର ସାମଗ୍ରୀ । ଓଡ଼ିଶା ସାହିତ୍ୟ ଏକାଡେମୀର ମାସିକ ସାହିତ୍ୟପତ୍ର "ନୂତନ ଭୂମିକା"ର ସମ୍ପାଦନା ଦାୟିତ୍ୱ ନେବା ପରେ ସେ Who is Who ରୁ ଅବ୍ୟାହତି ନେଇ ଏକାଡେମୀରେ ଯୋଗ ଦେଲେ । କିନ୍ତୁ ଦୁର୍ଭାଗ୍ୟ "ନୂତନ ଭୂମିକା" ମାସିକ ପତ୍ରିକାର ପ୍ରକାଶନ ବ୍ୟବସ୍ଥା ସ୍ଥଗିତ ରଖାଗଲା । ଏହିପରି ଘନଘଟା ମଧ୍ୟରେ ତାଙ୍କର ଜୀବନ ଅତିବାହିତ ହୋଇଥିଲେ ମଧ୍ୟ, ତାଙ୍କ ସାହିତ୍ୟ ସାଧନା ଓ ସୃଷ୍ଟି ସେହିପରି ଅକ୍ଷୁର୍ଣ୍ଣ ରହିଛି । ସେଥିରୁ ତାଙ୍କୁ ଅବ୍ୟାହତି ଦେବ କିଏ ?

ତାଙ୍କର ପ୍ରଥମ ପ୍ରକାଶିତ କାବ୍ୟ ନାଟିକା ହେଲା 'କାଳିଦାସ' । ତାଙ୍କର ଅନ୍ୟାନ୍ୟ ପ୍ରକାଶିତ ଗ୍ରନ୍ଥ ମାନଙ୍କ ମଧ୍ୟରେ ବିପ୍ଳବୀ ରାଧାନାଥ, କାବ୍ୟନାୟିକା, ଉତ୍କଳିକା, ସ୍ମରଣିକା, ମୌସୁମୀ, ମେଘଦୂତ (ଅନୁବାଦ) ପଶୁ ପକ୍ଷୀର କାବ୍ୟ, ଧୂସର ଭୂମିକା, ଶାମୁକାର ସ୍ୱପ୍ନ, କୈଶୋରିକା. ଦୁଇଟି ତାହାର ଡେଣା, ହିମାଚଳ, କୁମାର ସମ୍ଭବ, (ଅନୁବାଦ) ସୋରବ ଓ ରୋସ୍ତମ (ଅନୁବାଦ) ଦୀପଶିଖା, ବନରାଜ ନୀଳା ପ୍ରଭୃତି ପ୍ରଧାନ । ୧୯୬୮ ମସିହାରେ ଉପରଲିଖିତ ମୌଳିକ ଓ ଅନୁବାଦିତ ଗ୍ରନ୍ଥ ଗୁଡ଼ିକ ସମାହାରରେ ଗଡ଼ନାୟକ ଗ୍ରନ୍ଥାବଳୀର ପ୍ରଥମ ଭାଗ ପ୍ରକାଶ ପାଇଛି । "ସୂର୍ଯ୍ୟ ଓ ଅନ୍ଧକାର" କବିତା ଗ୍ରନ୍ଥ ପାଇଁ ୧୯୭୫ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀରୁ ସେ ପୁରସ୍କୃତ ହୋଇଛନ୍ତି । ବଡ଼ମଜା ଏତିକି, ଏ ପୁରସ୍କାର ତାଙ୍କୁ ବହୁ ଆଗରୁ ମିଳିବାର ଥିଲା ।

୧୯୪୨ ମସିହାରେ ଗଡ଼ନାୟକଙ୍କ ସମ୍ପାଦନରେ 'କୁନ୍ତଳା କୁମାରୀ' ସ୍ମରଣିକା ଗ୍ରନ୍ଥ ପ୍ରକାଶ ପାଏ । ତେଣୁ ସ୍ମରଣିକା ଗ୍ରନ୍ଥର ପ୍ରଥମ ସମ୍ପାଦକ ରୂପକ ସମ୍ମାନର ସେ କେବଳ ଅଧିକାରୀ ।

ଗଡ଼ନାୟକଙ୍କ 'ଉତ୍କଳିକା' 'ସ୍ମରଣିକା' କୈଶୋରିକା 'ଶାମୁକାର ସ୍ୱପ୍ନ' ବହୁ ବର୍ଷ ଧରି ସ୍କୁଲ ଓ କଲେଜର ପାଠ୍ୟ ପୁସ୍ତକ ରୂପେ ନିର୍ବାଚିତ ହୋଇଥିଲା । ୧୯୫୫ ମସିହାରେ ତାଙ୍କର "ଏକତନ୍ତ୍ର" ସାହିତ୍ୟ ପତ୍ରିକା ସମ୍ପାଦନ, ତାଙ୍କ ସାହିତ୍ୟିକ ଚିନ୍ତାଚିନ୍ତନ ଓ ସଫଳ ସମ୍ପାଦନର ଅମ୍ଳାନ ସ୍ୱାକ୍ଷର ।

ଅଗ୍ନିମିତ୍ର ଓ ଉପଗୁପ୍ତ ଛଦ୍ମନାମରେ ସେ ବହୁ କବିତା ରଚନା କରିଛନ୍ତି । ଯାହାକି ନବୀନ, ସହକାର,ଝଙ୍କାର, ଉତ୍କଳ ସାହିତ୍ୟ ଓ ମୁକୁରରେ ପ୍ରକାଶ ପାଇ ଆସିଛି । କବିତା ଛଡ଼ା ତାଙ୍କର ଓଡ଼ିଆ ସାହିତ୍ୟ ସମ୍ପର୍କରେ ଗବେଷଣାତ୍ମକ ପ୍ରବନ୍ଧ ରଚନା ତାଙ୍କ ବହୁ ଶାସ୍ତ୍ରଦର୍ଶିତାର ପ୍ରଚୁର ପ୍ରମାଣ ପ୍ରଦାନ କରିଥାଏ । ତାଙ୍କ ରଚିତ ପ୍ରବନ୍ଧ

ତୁଳସୀ ସ୍ତବକ ଓ ରାଧାନାଥ ଓଡ଼ିଆ ସାହିତ୍ୟରେ ଶ୍ଳେଷ, ଓଡ଼ିଆ ଛନ୍ଦ, ଓଡ଼ିଆ ସାହିତ୍ୟରେ ଅପୂର୍ବ ସୃଷ୍ଟି ।

୧୯୬୧ ମସିହାରେ "ଅସ୍ଥି ପୃଥ୍ୱୀ" କବିତା ଦିଲ୍ଲୀ ଆକାଶବାଣୀ କେନ୍ଦ୍ରରୁ ଜାନୁଆରୀ '୬ ଉପଲକ୍ଷେ ପରିବେଷଣ କରିଥିଲେ । ସେ ଦିଲ୍ଲୀର ଭାରତୀୟ କେନ୍ଦ୍ର ସାହିତ୍ୟ ଏକାଡେମୀର ପାଞ୍ଚବର୍ଷ ପାଇଁ ସଭ୍ୟ ଥିଲେ ଓ ତାର ପରାମର୍ଶ ଦାତା କମିଟିର ମଧ୍ୟ ସଦସ୍ୟ ଥିଲେ । ସମ୍ପ୍ରତି ସେ ଓଡ଼ିଆ ସାହିତ୍ୟ ଏକାଡେମୀର ଜଣେ ସଭ୍ୟ । ଅନୁଗୁଳ ସାହିତ୍ୟ ପରିଷଦର ସେ ସଭାପତି । ସେ ୧୯୬୭ରୁ ୧୯୭୦ ପର୍ଯ୍ୟନ୍ତ ଉତ୍କଳ ସାହିତ୍ୟ ସମାଜର ସଭାପତି । ଗାନ୍ଧୀ ସ୍ମୃତି ସମିତିର ସଭାପତି ଓ ଓଡ଼ିଆ ଏନ୍‌ସାଇକ୍ଲୋପେଡ଼ିଆ ସବ୍‌କମିଟିରେ ସଦସ୍ୟ ଥିଲେ । ଏହାଛଡ଼ା ବିଭିନ୍ନ ସ୍କୁଲ ଓ କଲେଜ ଗଭର୍ଣ୍ଣିଂ ବଡ଼ିର ସେ ସଭ୍ୟ କିମ୍ବା ସଭାପତି ରୂପେ ଏ ଅବଧି ରହି ଆସିଛନ୍ତି ।

ତାଙ୍କର ବହୁ ଲେଖା ଏ ପର୍ଯ୍ୟନ୍ତ ଅପ୍ରକାଶିତ ରହିଛି । ସେ ଗୁଡ଼ିକ ହେଲା— ମାଳତୀ ନଦୀର ଢେଉ (କାବ୍ୟ), ଦାରୁ ଦେବତା (କାବ୍ୟ), ମହାପ୍ରସ୍ଥାନର ଶେଷ ସର୍ଗ (କାବ୍ୟ), ପାଣ୍ଡୁ (କାବ୍ୟ ନାଟିକା), କୁହୁଡ଼ିର ଇତିକଥା (ଗୀତିକଥା ଖଦଡ଼ ଓ ଅନ୍ୟାନ୍ୟ କବିତା (ଗୀତିକଥା), ଗାର୍ଗୀ ଗାଥା (କାବ୍ୟ), କଏ ଆମ ସଙ୍ଗସାଥୀ (ଶିଶୁ କବିତା), ଆମ ଗାଁ (ଶିଶୁ କବିତା), ବାଇଆର ଗୀତ (ସଙ୍ଗୀତ), ନୂତନ ଦ୍ରୌପଦୀ (ଆଧୁନିକ କାବ୍ୟ) ଆଉ ଜଣେ (ଗୀତିକାବ୍ୟ), ଅନଗୁଳ ଗାଥା (କାବ୍ୟ), ଅଧ୍ୟାପକଙ୍କ ସାହିତ୍ୟ ଚର୍ଚ୍ଚା (ସମାଲୋଚନା) ଓଡ଼ିଆ କାବ୍ୟ କବିତାର ଇତିହାସ (ସମାଲୋଚନା) ପ୍ରଭୃତି ପ୍ରଧାନ । ଏ ସମସ୍ତ ଅପ୍ରକାଶିତ ଲେଖାମାନ ପ୍ରକାଶିତ ହେଲେ ଗଠନାତ୍ମକ ସାହିତ୍ୟ ସୃଷ୍ଟିର ଦିଗନ୍ତ ଆମ ପାଖରେ ଆହୁରି ପ୍ରସାରିତ ଓ ବିସ୍ତାରିତ ହୋଇ ଉଠିବ । ଗୀତଗୋବିନ୍ଦ, କାଦମ୍ବରୀ, ଓମାର-ଖୈୟାମ୍‌ଙ୍କ ରୁବାଇୟାତ, ଦେଶ ବିଦେଶର ପ୍ରେମ କବିତା, ସେକ୍‌ସପିୟରଙ୍କ ସନେଟ ପ୍ରଭୃତି ଅନୁବାଦ ଗ୍ରନ୍ଥ ଗୁଡ଼ିକ ଏବେ ପ୍ରକାଶିତ ହେଉଅଛି ।

ମଣିଷ ହିସାବରେ ମଣିଷର ଦୁଃଖ ଦୈନ୍ୟ ପାଇଁ ତାଙ୍କର ସମବେଦନା ସର୍ବଦା ସ୍ମରଣୀୟ । ଏଭଳି ଜଣେ ଦେଶପ୍ରେମୀ ଶ୍ରେଷ୍ଠ ମାନବବାଦୀ କବି ଓଡ଼ିଆ ସାହିତ୍ୟରେ ବିରଳ କହିଲେ ଚଳେ । ସେଥିପାଇଁ ଗୋଦାବରୀଶ ମହାପାତ୍ର ତାଙ୍କ ସମ୍ପର୍କରେ କବି ସମ୍ଭାଷଣରେ 'ନିଆଁଖୁଣ୍ଟା'ରେ ଲେଖିଥିଲେ—

"କାହିଁ ଲୁଚିଅଛ ଦେଶପ୍ରେମୀ ଗଠନାତ୍ମକ ହେ
ଅନୁଗୁଳ ଘୋର ଜଙ୍ଗଲେ
କବିତାରେ ଦିଅ ସଂଗ୍ରାମୀ ଶରଣାଗତ ହେ
ଦଳିତ ମଣିଷ ସଙ୍ଗରେ······

ଗଡ଼ନାୟକଙ୍କର ସବୁ ଥାଇ ପୁଣି କିଛି ନାହିଁ ସମଗ୍ର ଜୀବନରେ ସେ ଯେପରି ଅଭିଶପ୍ତ । କିନ୍ତୁ ତାଙ୍କର ଅଭିଶପ୍ତ ଆତ୍ମାର ଆତ୍ମପ୍ରକାଶ ଓଡ଼ିଆ ସାହିତ୍ୟକୁ ଯେ କି ଶ୍ରୀ ଚିନ୍ତାମଣି, ଉର୍ଦ୍ଧ୍ୱସର କରିଛି,ତାହାହିଁ ତାଙ୍କ କବି ଜୀବନର ଚରମ ସାର୍ଥକତା । ସେ ନିଜ ସ୍ୱାର୍ଥରେ କେବେ ଲିପ୍ତ ନୁହନ୍ତି— ପରାର୍ଥ ପାଇଁ ତାଙ୍କ ଜୀବନର ସମସ୍ତ ସମୟ ଅତିବାହିତ ହୋଇଛି । ତାଙ୍କର ପରାର୍ଥ ପରାୟଣତା ଯୁଗେଯୁଗେ ଏ ମାଟି ମଣିଷର ସମ୍ବଳ ହୋଇ ରହିବ । ସେ କବିତା ରାଜ୍ୟରେ ଯେତିକି ପୂଜ୍ୟ, ପରାର୍ଥ ପାଇଁ ମଧ୍ୟ ସେତିକି ପୂଜ୍ୟ । ତାଙ୍କପାଇଁ ଯେତିକି ପୂଜ୍ୟ ପୂଜା ହେବାର କଥା, ତାହା ଏ ଅବଧି ହୋଇପାରିନାହିଁ । ଯାହା ବା ହୋଇଛି ତାହା ସମୁଦ୍ରକୁ ଶଙ୍ଖେ । ତାଙ୍କ ପୂଜ୍ୟ ପୂଜାର ବ୍ୟାପକ ଆୟୋଜନ ଓ ସମ୍ଭାଷଣ ଏ ଜାତିର ଜାତୀୟ କର୍ତ୍ତବ୍ୟ ହେଉ । ପୁଣି ତାଙ୍କର ଶାଣିତ ଶୋଣିତ ସ୍ୱାକ୍ଷରର ଅଭିବ୍ୟକ୍ତି ଏଇଠି ସ୍ମରଣରେ ଆସେ । ତାହାହେଲା—

ମୁଁ ଯେ ସମର ପଥର ଯାତ୍ରୀ
ମୋର କରେ ଏଇ ଖର ଶାୟକ
ମୁଁ କି ହୋଇଥିବି ରାଧାମୋହନ
ଆଉ ହେବ ନାହିଁ ଗଡ଼ନାୟକ"

କିଏ କହିଲା ସେ ଗଡନାୟକ ନୁହନ୍ତି ? ଓଡ଼ିଆ କବିତା ରାଜ୍ୟର ତାଙ୍କର ଗଡ଼ନାୟକତ୍ୱ ଯାବତ୍ ଚନ୍ଦ୍ରାର୍କେ ବିସ୍ମୃତ ହେବାର ନୁହେଁ ।

### * ଶ୍ରୀ ଶ୍ୟାମସୁନ୍ଦର ଦାସ

(ବିଂଶ ଶତାବ୍ଦୀ)
୧୯୧୦—

୧୯୧୦ ଖ୍ରୀଷ୍ଟାବ୍ଦରେ କିଶୋର କବି ଶ୍ୟାମସୁନ୍ଦର ଦାସଙ୍କ ଜନ୍ମ । ତାଙ୍କର ଜନ୍ମ ସ୍ଥାନ କଟକ ସହର ଜଗନ୍ନାଥ ବଲ୍ଲଭରେ । ତାଙ୍କ ପିତାଙ୍କ ନାମ ରାମଚନ୍ଦ୍ର ଦାସ ଓ ମାତାଙ୍କ ନାମ ନେହମଣି ଦେବୀ । ତାଙ୍କୁ ଯେତେବେଳେ ୧୦ ବର୍ଷ ବୟସ ସେ ସେତିକବେଳୁ ଗୀତ, ସଙ୍ଗୀତ ରଚନା ଆରମ୍ଭ କଲେଣି । ତତ୍କାଳୀନ ଜୟପୁରର ମହାରାଜା ସାହିତ୍ୟ ସମ୍ରାଟ ବିକ୍ରମ ଦେବ ବର୍ମା ଡି. ଲିଟ ତାଙ୍କ କବିତା ରଚନାରେ ମୁଗ୍ଧ ହୋଇ ତାଙ୍କୁ ୧୯୧୪ ମସିହାରେ "କିଶୋର କବି" ଉପାଧି ପ୍ରଦାନ କରିଥିଲେ । ୧୯୦୫ ମସିହାରେ ମୟୂରଭଞ୍ଜର ତତ୍କାଳୀନ ରାଜାସାହେବ ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେବ ତାଙ୍କୁ "ଗାୟକ କବି କଳାକାର" ଉପାଧି ପ୍ରଦାନ କରିଥିଲେ । ଜଣେ ପ୍ରାଚୀନ କଳାକାର ଭାବେ ୧୯୬୫ ମସିହାରେ ତାଙ୍କୁ ମଞ୍ଜୁଶ୍ରୀ ଉପାଧି ପ୍ରଦାନ କରାଯାଇଥିଲା ।

୧୯୪୦ ମସିହାଠାରୁ ବହୁ ବ୍ୟବସାୟୀ ଓ ସୌଖୀନ ଥିଏଟର ମାନଙ୍କର ପ୍ରାୟ ୫୦୦ଟି ମଞ୍ଚସ୍ଥ ନାଟକରେ ସଙ୍ଗୀତ ରଚନା, ସ୍ୱର ଯୋଜନା ଓ ସଙ୍ଗୀତ ପରିଚାଳନା କରି ଆସୁଛନ୍ତି । ୧୯୪୧ ମସିହାରେ ନବୋତ୍କଳ ଲକ୍ଷ୍ମୀ ଥିଏଟାର୍ସ ଓ ୧୯୪୬ରେ ଉତ୍କଳ ମିନର୍ଭା ନାଟ୍ୟସଂସ୍ଥାର ପ୍ରତିଷ୍ଠା କରି ଏହାର ପରିଚାଳନା ଦାୟିତ୍ୱ ନିଜେ ଗ୍ରହଣ କରିଥିଲେ । ପୁନଶ୍ଚ '୧୯୪୬ ମସିହାରେ ଓଡ଼ିଶା ସରକାରଙ୍କ ପବ୍ଲିସିଟି ବିଭାଗରେ ଡି. ପି. ଓ ଚାକିରିରେ ଯୋଗଦାନ । ତା'ପରେ ଚାକିରିଠୁ ଅବ୍ୟାହତି ନେଇ ସମ୍ପୂର୍ଣ୍ଣ ଭାବେ ନିଜକୁ ସାହିତ୍ୟ ଓ ସଙ୍ଗୀତ ସାଧନା ତଥା ଚର୍ଚ୍ଚାରେ ନିୟୋଜିତ କଲେ । ୧୯୬୦ ମସିହାରେ ପ୍ରଗତି କଳା ମନ୍ଦିରର ଅଧକ୍ଷ ଓ ୧୯୭୫ରେ ଉତ୍କଳ ନାଟ୍ୟ ସଙ୍ଘର ସଭାପତି ଦାୟିତ୍ୱ ଗ୍ରହଣ କରିଥିଲେ । ସେ ମୁଖ୍ୟତଃ ଜଣେ କବି, ଗୀତିକାର ନାଟ୍ୟକାର, ସଙ୍ଗୀତଜ୍ଞ ଓ ସଙ୍ଗୀତ ଶିକ୍ଷକ ତଥା ନିର୍ଦ୍ଦେଶକ ମଧ୍ୟ । ସେ ଏ ଯାବତ୍ ୧୯ଟି ନାଟକ, ୩୬ଟି ନୃତ୍ୟ ନାଟିକା, ୨୨ଟି ରାମଲୀଳା ନାଟକ, ୭ଟି ଶିଶୁ ପାଠ୍ୟପୁସ୍ତକ, ୨ଟି ପ୍ରୌଢ଼ ଶିକ୍ଷା ପୁସ୍ତକ, ୩ଟି ଗଳ୍ପ ପୁସ୍ତକ, ୩ଟି ଗୀତିନାଟ୍ୟ ଗୋଟିଏ ସ୍କୁଲ ପାଠ୍ୟପୁସ୍ତକ, ଖଣ୍ଡିଏ ଉପନ୍ୟାସ, ୧୬ଟି ବିଭିନ୍ନ ବିଭାଗର ପୁସ୍ତକ ଲେଖିଛନ୍ତି । ଏ ସମସ୍ତ ପ୍ରକାଶିତ ହୋଇପାରିଲେ, କିଶୋର କବିଙ୍କ ସାହିତ୍ୟିକ କୃତି ଓ କୀର୍ତ୍ତି ଆମ ପାଖରେ ଆହୁରି ଉଜ୍ଜ୍ୱଳ ଉଠନ୍ତା । ତାଙ୍କ ଗ୍ରନ୍ଥାବଳୀ ପ୍ରକାଶନ ଆମର ଜାତୀୟ କର୍ତ୍ତବ୍ୟ ହେଉ ।

## * ଶ୍ରୀ ବୈକୁଣ୍ଠ ନାଥ ବ୍ରହ୍ମଚାରୀ

(୨୦ଂଶ ଶତାବ୍ଦୀ)

୧୯୧୩—

୧୯୧୩ ମସିହାରେ କଟକ ଜିଲ୍ଲାର ଟାଙ୍ଗୀ ଥାନାର ଶମ୍ଭୁନାଥପୁରରେ ପିତାମାତାଙ୍କର ଏକ ମାତ୍ର ସନ୍ତାନ ରୂପେ ଶ୍ରୀ ଧୂର୍ଭ୍ର ବିଟକୃଷ୍ଣ କର (ପରବର୍ତ୍ତୀ ନାମ ବୈକୁଣ୍ଠ ନାଥ ବ୍ରହ୍ମଚାରୀ) ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଜମିଦାର ଶ୍ରୀ ଧୂର୍ଭ୍ର ଚୈତନ୍ୟ କର ଓ ମାତାଙ୍କ ନାମ ସୁଭଦ୍ରା ଦେବୀ । ତାଙ୍କ ଜନ୍ମର ମାସ ନ ପୂରୁଣୁ ଅର୍ଥାତ୍ ତାଙ୍କୁ ଯେତେବେଳେ ୨୧ ଦିନ, ସେତେବେଳେ ତାଙ୍କର ମାତୃ ବିୟୋଗ ଘଟିଲା ଓ ତାଙ୍କୁ ଯେତେବେଳେ ୫ ବର୍ଷ ସେତେବେଳେ ତାଙ୍କ ପିତାଙ୍କର ପରଲୋକ ହେଲା ।

ପିତାମାତାଙ୍କ ବିୟୋଗ ପରେ ପରେ ସେ କଟକ ଜିଲ୍ଲା କୁଆଁପାଳ ନିକଟସ୍ଥ ଜଗନ୍ନାଥପୁର ଗ୍ରାମରେ ତାଙ୍କର ମାମୁଁ ଦୀନବନ୍ଧୁ ଷଡ଼ଙ୍ଗୀଙ୍କ ପାଖରେ ରହିଲେ । ମାମୁଁ

ଘରେ ରହି ବଟକୃଷ୍ଣ ମାଇନର ପଢ଼ୁଥିଲାବେଳେ ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନ ତାଙ୍କୁ ଆକର୍ଷଣ କଲା । ସେ ସେତେବେଳେ ଗାନ୍ଧିଜୀଙ୍କ ଆଦର୍ଶରେ ବିଶେଷ ଭାବେ ଅନୁପ୍ରାଣିତ ହୋଇ ଗାନ୍ଧୀଙ୍କ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ଗୃହଆଡ଼େ ପ୍ରଚାର କରି ଲାଗିଲେ । ଶ୍ରୀ ସୁରେନ୍ଦ୍ରନାଥ ପଟ୍ଟନାୟକ, ଶ୍ରୀ ଆତ୍ମାନନ୍ଦ ବେହେରା ଓ ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି ପ୍ରଭୃତି କର୍ମୀମାନେ ସେତେବେଳେ ସ୍ୱାଧୀନତା ସଂଗ୍ରାମର ବାର୍ତ୍ତା ପ୍ରଚାରରେ ତାଙ୍କର ସହକର୍ମୀ ଥିଲେ । ଏତିକିବେଳକୁ ହିଁ ବଟକୃଷ୍ଣଙ୍କର ପାଠପଢ଼ାର ସମାପ୍ତି ଘଟିଥିଲା ଓ ଅନ୍ୟ ପକ୍ଷରେ ରାଜନୈତିକ ଜୀବନର ନୀତିନିଷ୍ଠା ଓ କର୍ମନିଷ୍ଠାର ଅଭାବ ଦେଖି ରାଜନୀତି ପ୍ରତି ତାଙ୍କର ବିତୃଷ୍ଣା ଜନ୍ମିଲା । ତେଣୁ ରାଜନୀତି ଛାଡ଼ିଲେ । ତା'ପରେ ତାଙ୍କର ମନ ଏକ ଅଲୌକିକ ଅନୁସନ୍ଧାନରେ ମାତି ଉଠିଲା । ସେ କଟକକୁ ଫେରି ଆସିଲେ । ନିଜ ଗାଁଆର ସମସ୍ତ ଜମିବାଡ଼ି ଓ ଜମିଦାରୀ ନିଜ କୁଳଦେବତାଙ୍କ ନାଁରେ ଉତ୍ସର୍ଗ କରି ନିଜର ଜଣେ ଆତ୍ମୀୟ କୁଟୁମ୍ବଙ୍କୁ ତା'ର ମାଲଫତଦାର କଲେ ଓ ସେହି ଆତ୍ମୀୟ କୁଟୁମ୍ବଙ୍କ ନାଁରେ ସରକାରୀ ଦଲିଲ୍ କରି ତା'ର ରେଜିଷ୍ଟ୍ରିଭୁକ୍ତ ନଥିପତ୍ର ତାଙ୍କ ପାଖକୁ ଡାକରେ ପଠାଇ ଦେଲେ ଓ ତାଙ୍କ ଜମିଦାରୀରୁ ପୂର୍ବରୁ ସଂଗ୍ରହ କରିଥିବା ମାତ୍ର ଦୁଇହଜାର ଟଙ୍କା ହାତରେ ଧରି କାହାକୁ କିଛି ନ ଜଣାଇ କଟକ ଛାଡ଼ି ସମଗ୍ର ଦକ୍ଷିଣ ଭାରତ ପରିଭ୍ରମଣରେ ବାହାରିଲେ । ଦକ୍ଷିଣ ଭାରତର ବିଭିନ୍ନ ସାଧୁସନ୍ଥଙ୍କ ସମ୍ପର୍କରେ ଆସିଲେ କିନ୍ତୁ କାହାରିଠାରୁ ସେ ଖୋଜୁଥିବା/ଲୋଡ଼ୁଥିବା ତତ୍ତ୍ୱ ନପାଇ ତତ୍କାଳୀନ ପୂର୍ବବଙ୍ଗ ଓ ବର୍ତ୍ତମାନର ବାଂଲା ଦେଶର ରଙ୍ଗପୁର ରେଳଷ୍ଟେସନଠାରେ ପ ଭ୍ରମଣରେ ଆସି ପହଞ୍ଚିଲେ । ପାଖରେ ତାଙ୍କର ଯାହା ଶେଷ ସଞ୍ଚିତ ପଇସା କଉଡ଼ି ଥିଲା, ସେଇଠି ଶେଷ ହେଲା । ତଥାପି ବଟକୃଷ୍ଣଙ୍କ ମନରେ ଦୁଃଖ ନାହିଁ । ଅଟଳ ମନା ବଟକୃଷ୍ଣ ସେଇଠି ଶପଥ ନେଲେ ଆଉ ଜୀବନରେ ପଇସା ଛୁଇଁବ ନାହିଁ । ସତକୁ ସତ ସେ ଆଉ ପଇସା କଉଡ଼ି ଛୁଇଁଲେ ନାହିଁ ଓ ସେହିଦିନଠାରୁ ତାଙ୍କର ଅର୍ଥ ଲାଳସାର ପରିସମାପ୍ତି ଘଟିଲା । ଯାହାର ପ୍ରାଣ ଯେଉଁଥିପାଇଁ ବ୍ୟସ୍ତ ବ୍ୟାକୁଳ, ଭଗବାନହିଁ ସେଇପଥରେ ତାକୁ ପଥିକ କରି ଆଆନ୍ତି । ଏହି ବିଧିର ବିଧାନ ବଟକୃଷ୍ଣଙ୍କ ଜୀବନରେ ଅକ୍ଷରେ ଅକ୍ଷରେ ଫଳିଥିଲା । କେତେଦିନ କେତେରାତି ଦୁଃଖ ଦୁର୍ବିପାକରେ ଭୋକ ଉପାସରେ ସେହି ରଙ୍ଗପୁର ରେଳଷ୍ଟେସନରେ ଜୀବନ ଅତିବାହିତ କଲାପରେ ସେଠାରେ ଜଣେ ନିଃସନ୍ତାନ ବଙ୍ଗାଳୀ ଦମ୍ପତି ଯତୀଶଚନ୍ଦ୍ର ଦେବଗୁପ୍ତ ଓ ବ୍ରଜବାଳୀ ଦାସୀ ତାଙ୍କୁ ସନ୍ତାନ ରୂପେ ଗ୍ରହଣ କଲେ ଓ ସେହିଦିନଠାରୁ ବଟକୃଷ୍ଣ ତାଙ୍କର ଏହି ପାଳକ ପିତା ମାତାଙ୍କ ନିକଟରେ ରହିଲେ । ତାଙ୍କର ଏହି ପାଳକ ପିତା ମାତା ନିରଞ୍ଜନ ବ୍ରହ୍ମଚାରୀଙ୍କ ଶିଷ୍ୟ/ଶିଷ୍ୟା ଥିବାରୁ ସେଇ ସୂତ୍ରରେ ଯୁବକ ବଟକୃଷ୍ଣ ବ୍ରହ୍ମପୁତ୍ର ନଦୀକୂଳ ଯୋଗମାୟା ପୀଠ ଆଶ୍ରମର ଏହି ନିରଞ୍ଜନ ବ୍ରହ୍ମଚାରୀଙ୍କୁ ନିଜର ଦୀକ୍ଷାଗୁରୁ ରୂପେ

ଗ୍ରହଣ କଲେ ଓ ତାଙ୍କର ଆଜ୍ଞା ଓ ଆଦେଶରେ ନିଜର କଳ୍ପିତ ସାଧନା କରି ଲାଗିଲେ । ଏହି ସମୟରେ ତାଙ୍କର ଗୁରୁଦତ୍ତ ନାମ ହେଲା ବୈକୁଣ୍ଠନାଥ ବ୍ରହ୍ମଚାରୀ । ବଟକୃଷ୍ଣ ପରବର୍ତ୍ତୀ ସେ ବୈକୁଣ୍ଠନାଥ ନାମରେ ପରିଚିତ ହେଲେ । କିଛି ବର୍ଷ ଅତିକ୍ରାନ୍ତ ପରେ ସେ ଯେତେବେଳେ ଗୁରୁ ନିରଞ୍ଜନଙ୍କଠାରୁ ସନ୍ନ୍ୟାସୀ ହେବା ପାଇଁ ଅନୁମତି ଭିକ୍ଷା କଲେ, ଗୁରୁ ତାଙ୍କୁ ସେତେବେଳେ କହିଲେ ମୁଁ ତୁମକୁ କି ସନ୍ନ୍ୟାସ ବ୍ରତ ଦେବି ? ତୁମେତ ସ୍ୱୟଂ ବୈକୁଣ୍ଠନାଥ । ତୁମ ସାଧନାର ସିଦ୍ଧି ଅପୂର୍ବ ଓ ଅଲୌକିକ । ତଥାପି ଗୁରୁ ତାଙ୍କୁ ଏତିକିମାତ୍ର ଆଦେଶ ଦେଇଥିଲେ ଯେ ତୁମେ ଜଲୌକାର ମଣିନାଗ ଗୁମ୍ଫାକୁ ଏଠାରୁ ଫେରିଯାଅ ଓ ସେଇଠାରେ ତୁମର ଲୀଳା ଖେଳା ଆରମ୍ଭ କର ।

ଗୁରୁଙ୍କ ଆଦିଷ୍ଟ ହୋଇ ସେ ତାଙ୍କର ପାଳକ ପିତା ମାତାଙ୍କ ଆଶୀଷ ଓ ଆଶୀର୍ବାଦ ବହନ କରି ୧୯୩୩ ମସିହାରେ ଜଲୌଭାର ମଣିନାଗ ଗୁମ୍ଫାରେ ପହଞ୍ଚିଲେ । ଜନଶୂନ୍ୟ ଜଙ୍ଗଲ ପରିପୂର୍ଣ୍ଣ ଏହି ଜଲୈକା ବା କଲାଗିରିରେ ବୈକୁଣ୍ଠନାଥ ବହୁ ପଥଶ୍ରାନ୍ତ ପରେ ଯେଉଁ ଦିନ ପହଞ୍ଚିଲେ, ସେଇଦିନ ଏକ ବିଚିତ୍ର ଘଟଣାରେ ତାଙ୍କୁ ସମ୍ମୁଖୀନ ହେବାକୁ ପଡ଼ିଥିଲା । ସେଇ ଗୁମ୍ଫାରେ ପୂର୍ବରୁ ରହୁଥିବା ହଠାତ୍ ଏକ ଯୋଗିନୀ କାଳିବୁଢ଼ୀ ସନ୍ନ୍ୟାସିନୀ ବେଶରେ ବୈକୁଣ୍ଠନାଥଙ୍କ ପାଖରେ ଉଭା ହୋଇ କହିଲେ ବାବା, ତମେ କିଏ, ତମେ ଏଠାକୁ କାହିଁକି ଆସିଛ ତମକୁ ଏଠିକି କିଏ ପଠାଇଲା ??? ପୂର୍ବରୁତ ଯିଏ ଯେତେ ସାଧୁ ସନ୍ନ୍ୟାସୀ ଏଠାରେ ରହିବାକୁ ଆସିଛନ୍ତି, ମାତ୍ର ଗୋଟିଏ ରାତି ରହଣୀରେ ତାଙ୍କର ଜୀବନ ଦୀପ ଏଇଠି ଲିଭିଛି । ଏମିତି କେତେ ଆସିଛନ୍ତି ଓ ଜୀବନ ଦୀପ ଲିଭେଇ ଯାଇଛନ୍ତି । ଏ ଏକ ଭୟଙ୍କର ଓ ସଙ୍କୁଳ ସ୍ଥାନ । ତମେ ଏଠି ରହିବାର ଚିନ୍ତା ନ କର, ଏ ସ୍ଥାନ ଛାଡ଼ି ଚାଲିଯାଅ—ମୋ କଥା ମାନ-ଏଠିକି ଯିଏ ଆସିଛନ୍ତି, ତାଙ୍କ ଜୀବନ ଯାଇଛି—ତମେ ତମର ଜୀବନ ଦୀପ ଲିଭେଇବ କିଆଁ ? ଯିଏ ରାତିରେ ଏଇ ଗୁମ୍ଫାରେ ରହିଛନ୍ତି ସକାଳେ ଏଇ ପାହାଡ଼ ତଳ ରସିକ ନଗର ଗାଁଆର ଲୋକମାନେ ତା'ର ଶବ ସତ୍କାର କରିଛନ୍ତି । ତେଣୁ ତମେ ତମର ମୂଲ୍ୟବାନ ଜୀବନ ରକ୍ଷା କରିବାକୁ ଅନ୍ୟ କେଉଁଠି ଆଶ୍ରୟ ନିଅ ବାବା, ଏଠି ରହି ତୁମର ସୁନ୍ଦର ଜୀବନ ମୃତ୍ୟୁ ମୁଖରେ ପକାଇବ କିଆଁ ? ବୈକୁଣ୍ଠନାଥ ସବୁକଥା ଶୁଣି ସାରି କେବଳ ଉତ୍ତର ଦେଲେ —ମୋର ଜୀବନ ଯାଉ କି ରହୁ, ମୁଁ ଏ ସ୍ଥାନ ଛାଡ଼ି କେଉଁଆଡ଼େ ଯାଇପାରିବି ନାହିଁ । ମୋ ଗୁରୁଙ୍କର ଆଦେଶ, ମୋତେ ଏକାଠି ରହିବାକୁ ପଡ଼ିବ । ତମର ଏ କଥା ଶୁଣିବାକୁ ମୁଁ ପ୍ରସ୍ତୁତ ନୁହେଁ । ମୋର ମରଣକୁ ଡର ନାହିଁ । ସତରେ କଣ ମୋର ମୃତ୍ୟୁ ହେବ ? ଏ କଥା ଅସମ୍ଭବ । ଏହିକଥା ଶୁଣି କାଳୀବୁଢ଼ୀ ତା' ମନକଥା ଖୋଲି କହିଲା—ଦ ଦା:,ରୁ ଆସିବା ପର୍ଯ୍ୟନ୍ତ ଏ ପୀଠ ମୁଁ ଜଗି ରହିଥିଲି । ତୋ'ପାଇଁ ଏଠି କାହାରିକୁ ପୁରାଇ ଦେଉ ନ ଥିଲି । ମୁହିଁ ଯୋଗିନୀ ଘୋର ଭୟଙ୍କର ରୂପରେ ସମସ୍ତଙ୍କୁ ଭୟଭୀତ କରାଇ ରାତିରେ

ଏଇ ହାତରେ ସେମାନଙ୍କର ଗଳାଟିପି ମାରୁଛୁ । ମୋତେ ମଧ୍ୟ ତୋ ଭଳି ଆଦେଶ ଥିଲା । ତୁ ଏଠିକି ଆସିଗଲେ, ମୁଁ ମୋର ଜୀବନଦୀପ ଲିଭାଇବି । ସେହି ଦିନଠାରୁ କାଳୀବୁଢ଼ୀ ଯୋଗିନୀ ବାଧକା ପଡ଼ିଲା ଓ ୧୫ ଦିନ ପରେ ତାର ଦେହାନ୍ତ ହେଲା । ବୈକୁଣ୍ଠନାଥ ନିଜେ ତାଙ୍କର ଶବ ସତ୍କାର କଲେ । ଏହି ଘଟଣା ବେଳକୁ ବେଳ ଗୁରିଆଡ଼େ ଲୋକମୁଖରେ ଯେତିକି ପ୍ରଚ୍ଛୁର ହେବାକୁ ଲାଗିଲା, ବୈକୁଣ୍ଠନାଥଙ୍କ ଉପରେ ସେହି ପରିମାଣରେ ବିଶ୍ୱାସ ଜନ୍ମି ଉଠିଲା ।

ଦୀର୍ଘ ୭ ବର୍ଷ ଧରି ବୈକୁଣ୍ଠନାଥ ସେହି ଗୁମ୍ଫାରେ ବସବାସ କଲେ । ଏହି ସମୟ ମଧ୍ୟରେ ବାହାର ଦୁନିଆ ସହିତ ତାଙ୍କର କୌଣସି ଯୋଗାଯୋଗ ନଥିଲା । ମଣିନାଗ ଗୁମ୍ଫା ନିକଟସ୍ଥ ରସିକନଗର ଗ୍ରାମର ଅଧିକାରୀ ପରମାର୍ଥିକ କୃପାସିନ୍ଧୁ, ବୈକୁଣ୍ଠନାଥଙ୍କ ଏହି ରହଣି କାଳ ମଧ୍ୟରେ ତାଙ୍କର ସମସ୍ତ ଖାଦ୍ୟବ୍ୟବସ୍ଥାଦିର ଦାୟିତ୍ୱ ଆପଣା ସ୍ୱଇଁ ବହନ କରିଥିଲେ ।

ପ୍ରଥମେ ବୈକୁଣ୍ଠନାଥ ମଣିନାଗ ଗୁମ୍ଫାରୁ ବାହାରି କେନ୍ଦ୍ରାପଡ଼ାସ୍ଥ ନୃସିଂହଟିକିରି ମଠକୁ ଗଲେ । ସେଠାର ଲୋକେ, ବୈକୁଣ୍ଠନାଥଙ୍କୁ ସେହି ମଠରେ ରହିବାକୁ ବାରମ୍ବାର ନିବେଦନ କଲେ । କିନ୍ତୁ ବୈକୁଣ୍ଠନାଥ ସେହି ମଠରେ ରହିବାକୁ ମନା କରି ବାସ୍ନା ବାବାଙ୍କୁ ସମସ୍ତ ଦାୟିତ୍ୱ ନେବା ପାଇଁ ଚଠି ଦ୍ୱାରା ଡକାଇଲେ । ବୈକୁଣ୍ଠନାଥଙ୍କ ସହୃଦୟ ଅନୁରୋଧରେ ବାସ୍ନାବାବା ନୃସିଂହଟିକିରି ମଠକୁ ଆସିଲେ ଓ ବାସ୍ନାବାବାଙ୍କ ନାଁରେ ମଠ ରେଜିଷ୍ଟ୍ରି କରାଗଲା । କଥିତ ଅଛି ବାସ୍ନାବାବା ସଂକୀର୍ତ୍ତନ ପ୍ରେମୀ ତାଙ୍କ ଗୁରୁ ରାମଦାସଙ୍କ ମାର୍ବଲ ମୂର୍ତ୍ତି ନୃସିଂହ ଟିକିରି ମଠରେ ସ୍ଥାପନ କଲାବେଳେ, ବୈକୁଣ୍ଠନାଥ ବ୍ରହ୍ମଚାରୀ ଏ ମୂର୍ତ୍ତି ପ୍ରତିଷ୍ଠା ବେଳେ ନ ଆସିଲେ, ତାଙ୍କ ଗୁରୁଙ୍କ ମୂର୍ତ୍ତି ପ୍ରତିଷ୍ଠା ହୋଇପାରିବ ନାହିଁ ବୋଲି ମତାମତ ଦେବାରୁ ବାସ୍ନାଙ୍କ ବହୁ ଗୁରୁ ଭାଇ ଏ କଥାରେ ଗୁରୁତର ଭାବେ ପ୍ରତିବାଦ କରିବା ସତ୍ତ୍ୱେ, ବାସ୍ନାଙ୍କ ଅନୁରୋଧ କ୍ରମେ ବୈକୁଣ୍ଠନାଥ ନୃସିଂହ ଟିକିରି ମଠରେ ପହଞ୍ଚିଲା ପରେ ଗୁରୁ ରାମଦାସଙ୍କ ମାର୍ବଲ ମୂର୍ତ୍ତି ପ୍ରତିଷ୍ଠା ହୋଇଥିଲା । ଏଥିରେ ବ୍ରହ୍ମଚାରୀଙ୍କ ଆଧ୍ୟାତ୍ମିକ ମହତ୍ତ୍ୱ କେତେ, ତାହା ସହଜରେ ଅନୁମେୟ । ସେ ବିଷୟରେ ଏଠାରେ ଅଧିକ ଆଲୋଚନା ନିଷ୍ପ୍ରୟୋଜନ ।

ବୈକୁଣ୍ଠନାଥ ୧୯୬୩ ମସିହାରେ 'ସତ୍ୟ ସେବା ମଣ୍ଡଳ' ନାମରେ ଏକ ଅନୁଷ୍ଠାନ ପ୍ରତିଷ୍ଠା କଲେ । କେବଳ ଓଡ଼ିଶାରେ ନୁହେଁ, ଓଡ଼ିଶା ବାହାରେ ମଧ୍ୟ ଏହି 'ସତ୍ୟ ସେବା ମଣ୍ଡଳ'ର ଶାଖାମାନ ଦିନକୁ ଦିନ ବଢ଼ି ଚାଲିଛି । ତାଙ୍କ ପ୍ରତିଷ୍ଠିତ ଏହି ସତ୍ୟ ସେବା ମଣ୍ଡଳର ସମଗ୍ର ଜଗତକୁ ବାଣୀ ବା ସନ୍ଦେଶ ହେଲା— ମଣିଷର ସବୁଠାରୁ ବଡ଼ ଧର୍ମ ଓ ଗୋଟିଏ ଧର୍ମ ହେଲା ମାନବ ଧର୍ମ । ପ୍ରତ୍ୟେକ ମଣିଷ ସତ୍ୟର

ଅନୁସରଣ ଓ ଅହିଂସା ପାଳନ କଲେ ତା'ର ଜୀବନ ଧାରଣ ସର୍ବତୋଭାବେ ଏ ସଂସାରରେ ସାର୍ଥକ ହୋଇପାରିବ ।

ଏହି ଭାବଧାରାରେ ବୈକୁଣ୍ଠନାଥଙ୍କ ରଚିତ ବହୁ ଭଜନ/ଜଣାଣ ଲୋକ ମୁଖରେ ଝଙ୍କୃତ ଓ ପ୍ରଚାରିତ । ଏ ଯାବତ୍ ବୈକୁଣ୍ଠନାଥଙ୍କ ପଦ୍ୟ ସଙ୍କଳନ ଭାବେ ଭଜନ ଶତକ (ପ୍ରଥମ ଓ ଦ୍ୱିତୀୟ), ଓଢ଼ଣୀ ଓ ପଲ୍ଲୀ, ମାନସ କଥା, ଯୁଗଧର୍ମ, ହିତକଥା, ସରଳଗୀତାମୃତ ଲହରୀ, ସରଳ ଗୀତଗୋବିନ୍ଦ, ଗ୍ରନ୍ଥ ସୁଧାସିନ୍ଧୁ, ଓ ଗଦ୍ୟ ସଙ୍କଳନ ଭାବେ ରାସତତ୍ତ୍ୱ, ଗୀତା ବକ୍ତୃତା ପ୍ରକାଶ ପାଇଛି । ଏହାଛଡ଼ା ତାଙ୍କର କେତେକ ପଦ୍ୟ, ସଙ୍ଗୀତ ଭଜନ ଓ ଜଣାଣକୁ ଏକତ୍ର କରି ତାଙ୍କର ଗୁରୁ ଭାଇମାନେ ବୈକୁଣ୍ଠ ରଚନାବଳୀ ନାମରେ ଏକ ଗ୍ରନ୍ଥ ମଧ୍ୟ ପ୍ରକାଶ କରିଛନ୍ତି । ତାଙ୍କର ନିର୍ଦ୍ଦେଶନାରେ ୧୯୬୭ ମସିହା ନଭେମ୍ବର ମାସରୁ ପ୍ରଥମେ ଷାଣ୍ମାସିକ ଓ ବର୍ତ୍ତମାନ ତ୍ରୈମାସିକ ଭାବେ ଧର୍ମପତ୍ରିକା "ଜଳୌକା ବାଣୀ" ପ୍ରକାଶିତ ହୋଇଆସୁଛି ।

ବାବା ବୈକୁଣ୍ଠନାଥଙ୍କ ବହୁ ଜଣାଣ ଭଜନ କଟକ ବେତାର କେନ୍ଦ୍ରରେ ବହୁଳ ଭାବରେ ଏ ଯାବତ୍ ମଧ୍ୟ ବଶିଷ୍ଟ ସଙ୍ଗୀତ ଶିଳ୍ପୀଙ୍କ ଦ୍ୱାରା ପ୍ରଚାରିତ ହୋଇଆସୁଛି । ବୈକୁଣ୍ଠ ନାଥ କେବଳ ଜଣେ ଲେଖକ ନୁହନ୍ତି ସେ ମଧ୍ୟ ଜଣେ ଉଚ୍ଚଦରର ସଙ୍ଗୀତଜ୍ଞ ଓ ବଂଶୀ ତଥା ବେହେଲା ବାଦନରେ ଧୁରୀଣ ।

ବୈକୁଣ୍ଠନାଥଙ୍କ ଜଳୌକାର ମଣିନାଗ ଗୁମ୍ଫା ଆଜି ଏକ ପବିତ୍ର ଋଷି ଆଶ୍ରମ । ମଣିଷ ଜୀବନର ଜଞ୍ଜାଳଜାଳ ଦୂର କରିବାରେ ଏ ଆଶ୍ରମର ପବିତ୍ର ରେଣୁ ପ୍ରତ୍ୟେକଙ୍କର ଆଜି ଧ୍ୟେୟ ଓ ଶ୍ରେୟ ହୋଇ ଉଠିଛି । ସେହି ପବିତ୍ର ଅଧ୍ୟାତ୍ମିକ ମଣିମୟ ମଣିନାଗ ଗୁମ୍ଫାର ଆଧ୍ୟାତ୍ମିକ ସିଂହ ବୈକୁଣ୍ଠନାଥଙ୍କ ଆଧ୍ୟାତ୍ମିକ ଗର୍ଜନ ଏବେବି ପ୍ରତ୍ୟେକ ପ୍ରାଣକୁ ପ୍ରତିଧ୍ୱନିତ କରୁଛି ପବିତ୍ର ଓ ପୁଷ୍କଳ ହେବାରେ । ବାସ୍ତବରେ ବୈକୁଣ୍ଠନାଥଙ୍କ ବାଣୀ ପାପତାପ କ୍ଲିଷ୍ଟ ଏ ମର୍ତ୍ତ୍ୟ ମାନବର ଅମଳ ମନ୍ଦାକିନୀ । ସେଥିପାଇଁ ବୈକୁଣ୍ଠନାଥ ଉଦାତ୍ତ କଣ୍ଠରେ ସମଗ୍ର ମାନବ ସମାଜକୁ କହିଛନ୍ତି—

"ଧର୍ମ ଭାବ କେବେ ନୁହେଁ ଭେଦଭାବ
ମଣିଷେ ମଣିଷେ ଦ୍ୱନ୍ଦ୍ୱ,
ହିନ୍ଦୁ-ବୌଦ୍ଧ-ଜୈନ ଖ୍ରୀଷ୍ଟ ଇସ୍‌ଲାମ
ନାମ ଭିତରେ ଆବଦ୍ଧ ।
ସତ୍ୟର ଶରଣ ସତ୍ୟର ସନ୍ଧାନ
ସନାତନ ଧର୍ମ ନୀତି,

ସତ୍ୟପଥ ଛାଡ଼ି ଆନ ପଥ ଗଢ଼ି
ଧରମର ନାହିଁ ସ୍ଥିତ ।

+ + +

ନିଜ ଦୋଷ ଯେହୁ ବସ୍ତୁର ନକଣ
ଦରଶାଏ ଆନ ଦୋଷ
ଅଧମ ଅଜ୍ଞାନ ମଣିବ ତାହାଙ୍କୁ
ଜାଣିବ ସେ ଅମଣିଷ ।

ପଞ୍ଚସଖାର ଅନ୍ୟତମ ସଖା ଅଚ୍ୟୁତାନନ୍ଦ ତାଙ୍କର ପଦ୍ମକଳ୍ପ, ଶିବକଳ୍ପ, ଶୂନ୍ୟ ସଂହିତାରେ କଳୌକାର ମଣିନାଗ ଗୁମ୍ଫା ସମ୍ପର୍କରେ ଯେଉଁ ଅତୀତ ଓ ଭବିଷ୍ୟତ ବାଣୀର କଥା ଉଲ୍ଲେଖ କରିଛନ୍ତି, ତାହା ମଧ୍ୟ ଏ ପ୍ରସଙ୍ଗରେ ବିଶେଷ ଉଲ୍ଲେଖନୀୟ ।

## * ଶ୍ରୀମତୀ ହରପ୍ରିୟା ଦେବୀ

(ବିଂଶ ଶତାବ୍ଦୀ)
୧୯୧୫—

କଟକ ଜିଲ୍ଲା ଜଗତ୍‌ସିଂହପୁର ସବ୍‌ଡିଭିଜନସ୍ଥ ନଶଲେ ଗ୍ରାମରେ ଶ୍ରୀମତୀ ହରପ୍ରିୟା ଦେବୀ ୧୯୧୫ ମସିହା ଜୁଲାଇ ୧ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଶ୍ରୀ ବୃନ୍ଦାବନ ଚନ୍ଦ୍ର କାନୁନ୍‌ଗୋ ଓ ମାତାଙ୍କ ନାମ ଶ୍ରୀମତୀ ଆଦରମଣି ଦେବୀ । ତତ୍କାଳୀନ ପରିବେଶରେ ସେ କଟକ ରେଭେନ୍‌ସା ବାଳିକା ବିଦ୍ୟାଳୟରେ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢ଼ିଥିଲେ । ୧୯୨୯ ମସିହାରେ ବିଶିଷ୍ଟ ଓକିଲ ଶ୍ରୀ ବିଶେଶ୍ୱର ମହାନ୍ତିଙ୍କୁ ସେ ବିବାହ କରିଥିଲେ । ଏହି ବିବାହ ପରେ ପରେ ଶ୍ରୀମତୀ ହରପ୍ରିୟା ଘରୋଇ ଭାବେ ମାଷ୍ଟର ରଖି ସଂସ୍କୃତ ଓ ଇଂରାଜୀ ସାହିତ୍ୟରେ ପାରଦର୍ଶିତା ଲାଭ କରିଥିଲେ ।

ମୁଖ୍ୟତଃ ସେ କବି ଭାବରେ ଆମ ସାହିତ୍ୟରେ ବିଶେଷ ଭାବେ ପରିଚିତା । ତାଙ୍କର ପ୍ରଥମ କବିତା "ଅଶ୍ରୁ" ତତ୍କାଳୀନ ବିଶିଷ୍ଟ ସାହିତ୍ୟ ପତ୍ରିକା 'ସହକାର'ରେ ପ୍ରକାଶ ପାଇଥିଲା । ଝଙ୍କାର, ନବଭାରତ, ସୌରଭ ଓ ଜମ୍ବୁଦ୍ୱୀପ ପ୍ରଭୃତିରେ ତାଙ୍କର କବିତା ଓ ଗଳ୍ପମାନ ମଧ୍ୟ ପ୍ରକାଶ ପାଇଛି । ଏ ପର୍ଯ୍ୟନ୍ତ ତାଙ୍କର ତିନୋଟି ସଙ୍ଗୀତ ଓ କବିତାଗ୍ରନ୍ଥ ପ୍ରକାଶିତ । ସେ ଗୁଡ଼ିକ ହେଲା 'ଶାରଦା' (ଗୀତିକବିତା),

'ଜାଗରଣୀ' (ଜାତୀୟ କବିତା), ''କୃଷ୍ଣ (ସଙ୍ଗୀତ) । ଏହାଛଡ଼ା 'କୁମାରସମ୍ଭବ' ମେଘଦୂତ" ''ଋତୁସଂହାର" ''ପୁଷ୍ପବନ ବିଳାସ" ଓ ''ଗୀତା"ର ପଦ୍ୟାନୁବାଦ କରିଛନ୍ତି । ତନ୍ମଧ୍ୟରୁ କେବଳ 'ଗୀତା'ର ପଦାନୁବାଦ ପ୍ରକାଶିତ ହୋଇଛି ।

ଏ ଅବଧି ତାଙ୍କର ୫୦୦ ପର୍ଯ୍ୟନ୍ତ ଭଜନ, ଜଣାଣ, ଆଧୁନିକ ସଙ୍ଗୀତ, ଐତିହାସିକ କାବ୍ୟ 'ମଳୟ କୁମାରୀ', ଗୀତିନାଟ୍ୟ ''ବିଶ୍ୱାମିତ୍ର ଓ ମେନକା", ରାଜସ୍ଥାନର ଇତିହାସ ଉପରେ ଆଧାରିତ ''ସହସ୍ର ମନ୍ଦିର" ଅପ୍ରକାଶିତ ଅବସ୍ଥାରେ ରହିଛି । ତେଣୁ ତାଙ୍କର ଗ୍ରନ୍ଥାବଳୀ ପ୍ରକାଶନ ପାଇଁ ଜନେ କବି ବ୍ୟାପକ ଉଦ୍ୟମ ଆରମ୍ଭ କରିଛନ୍ତି ।

୧୯୫୬ ମସିହାରେ କଟକ ବେତାର କେନ୍ଦ୍ରର ଜଣେ ବିଶିଷ୍ଟ ଗୀତିକାର ଓ ଶିଳ୍ପୀ ଭାବରେ ସେ ବିଶେଷ ପରିଚିତ । ସାହିତ୍ୟ ତଥା ପୌରାଣିକ ନାରୀ ଚରିତ୍ର ଉପରେ ସେ ବେତାର କେନ୍ଦ୍ରରେ ବହୁ ବାର ଆଲୋଚନା ତଥା କବିତା ଆବୃତ୍ତି କରିଛନ୍ତି । ସେ ଉତ୍କଳ ସାହିତ୍ୟ ସମାଜର ଆଜୀବନ ସଭ୍ୟ । ଓଡ଼ିଶାର ପ୍ରସିଦ୍ଧ ସଙ୍ଗୀତଜ୍ଞ ବାଳକୃଷ୍ଣ ଦାସ କବି ହରିପ୍ରିୟାଙ୍କ ରଚିତ ଜଣାଶୁଣା ସଂଗୀତ ''ବାସି ମୋ ହୋଇଲା ଫୁଲ ଶେଯ" ''ବଜର ଗରଜଇ ଗଗନେ'', ମାନିନୀରେ ମାନ ତେଜ ଏଣିକି" ପ୍ରଭୃତି ଓ ଭିକାରୀ ଚରଣ ବଲ,, ଅର୍ଜ୍ଜୁନଚରଣ ସାମଲ, ଶୁକଦେବ ପଣ୍ଡା, ଶ୍ରୀମତୀ ବୀଣାଦେବୀ, ଶ୍ରୀମତୀ ପଦ୍ମାଳୟା ରାଉତରାୟ୍ ପ୍ରମୁଖ ଖ୍ୟାତନାମା ସଙ୍ଗୀତଜ୍ଞମାନେ କବିଙ୍କର ବହୁ ଜଣାଣ, ଭଜନ, ଓଡ଼ିଶୀ ବେତାର କେନ୍ଦ୍ରରେ ଅତି ଚମତ୍କାର ଭାବେ ପରିବେଷଣ କରିଛନ୍ତି ।

୦ କବି ହରିପ୍ରିୟାଙ୍କର ସାହିତ୍ୟିକ ପ୍ରତିଭାକୁ ଅଭିନନ୍ଦିତ କରି ୧୯୭୬ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀ ତାଙ୍କୁ ସମ୍ମାନ ସୂଚକ ପ୍ରମାଣ ପତ୍ର ପ୍ରଦାନ କରିଥିଲେ ।

ଅଜର ଏ ୭୯ ବର୍ଷ ବୟସରେ ମଧ୍ୟ କବି ସାହିତ୍ୟ ସାଧନାରେ ରତ । ଚଳନ୍ତି ସମସ୍ୟା ଉପରେ ତାଙ୍କର ଲେଖାମାନ ଲେଖି ଚାଲିଥାନ୍ତି ।

## * ଶ୍ରୀ ବାଞ୍ଛାନିଧି ଦାସ

(ବିଂଶ ଶତାବ୍ଦୀ)

୧୯୨୩—

ଶ୍ରୀ ବାଞ୍ଛାନିଧି ଦାସ କଟକ ଜିଲ୍ଲା ସବଡିଭିଜନସ୍ଥ ବାଉଁଶ୍ରୀଆ ଗ୍ରାମରେ ୧୯୨୩ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ମାୟାଧର ଦାସ ଓ ମାତାଙ୍କ ନାମ ଉର୍ଣ୍ଣି ଦେବୀ । ସେ ଛାତ୍ର ଜୀବନରୁ କବିତା ଲେଖାରେ ଆଗ୍ରହୀ । ହାଇସ୍କୁଲରେ ପଢୁଥିବା ବେଳେ ଭାରତଛାଡ଼ ଆନ୍ଦୋଳନରେ ଯୋଗଦେଇ କାରାବରଣ କରିଥିଲେ ।

ଜେଲ ରହଣୀ କାଳରେ ସେ ଆଚାର୍ଯ୍ୟ ହରିହରଙ୍କ ନିବିଡ଼ ସମ୍ପର୍କରେ ଆସିଥିଲେ ଓ ଆଚାର୍ଯ୍ୟଙ୍କ ପ୍ରେରଣା ଫଳରେ ଜାତୀୟ ତଥା ଆଧ୍ୟାତ୍ମିକ ଭାବଧାରାର ବହୁ କବିତା ଓ ସଙ୍ଗୀତମାନ ରଚନା କରିଥିଲେ ।

ସେ କିଛିଦିନ ସହକାରୀ ଲୋକସମ୍ପର୍କ ଅଫିସର ଭାବେ ଚାକିରି କଲାପରେ ସେ ଚାକିରିରୁ ଅବ୍ୟାହତି ନେଇ ମୌଳିକ ବିଦ୍ୟାଳୟରେ ଶିକ୍ଷକତା କରିଥିଲେ । ତା'ପରେ ଶିକ୍ଷକତା ତ୍ୟାଗ କରି ସାମ୍ବାଦିକତାକୁ ଜୀବନର ଜୀବିକା ରୂପେ ଗ୍ରହଣ କରିନେଲେ । ଓଡ଼ିଶାର ପ୍ରତିଷ୍ଠିତ ସମ୍ବାଦପତ୍ର "ସମାଜ"ର ଅନ୍ୟତମ ସହକାରୀ ସମ୍ପାଦକ ରୂପେ ବହୁ ବର୍ଷଧରି କାର୍ଯ୍ୟ କରି ଆସୁଛନ୍ତି ।

ଜଣେ କବି ଓ ସଙ୍ଗୀତଜ୍ଞ ଭାବେ କବି ଶ୍ରୀ ଦାସ ଏ ଦେଶରେ ସୁପରିଚିତ ଓ ସୁପ୍ରତିଷ୍ଠିତ । ସେ ଉତ୍କଳ ସାହିତ୍ୟ ସମାଜ'ର କିଛିଦିନ ସହକାରୀ-ସମ୍ପାଦକ ଥିଲେ । ତାଙ୍କ ପ୍ରକାଶିତ କାବ୍ୟ ଓ କବିତା ପୁସ୍ତକ ମାନଙ୍କ ମଧ୍ୟରେ ଜୟଭେରୀ ବାଳପ୍ରଭାତ, ପଲ୍ଲୀକବି, ପ୍ରାୟଶ୍ଚିତକାର, ଇଂଗିତାକ, ଭକ୍ତ ଅର୍ଘ୍ୟ, କବିର ସ୍ୱପ୍ନ, ବିପ୍ଳବୀ ବାଣୀ, ଶ୍ରୀରାଧା ଗୋପାଳ ଗୀତା, ଅମ ବଡ଼ ଦେଉଳ, ଆମ କୋଣାର୍କ ସଞ୍ଜୀବନୀ, ପ୍ରଭୃତି ପ୍ରଧାନ । ତାଙ୍କ ରଚିତ ଜାତୀୟ ସଙ୍ଗୀତ "ଏଇ ପତାକା ତଳେ" କବିତାଟି ଓଡ଼ିଶାର ପୁରପଲ୍ଲୀରେ ବିଶେଷ ଆଦୃତ ଓ ପ୍ରଚ୍ଛରିତ । ଶ୍ରୀଦାସ ଓଡ଼ିଶାର 'ଚାରଣ କବି' ରୂପେ ମଧ୍ୟ ପ୍ରସିଦ୍ଧି ଲାଭ କରିଛନ୍ତି ।

## * ଶ୍ରୀ ଗୋବର୍ଦ୍ଧନ ମହାନ୍ତି

(ବିଂଶ ଶତାବ୍ଦୀ)
୧୯୧୦—

ଶ୍ରୀ ଗୋବର୍ଦ୍ଧନ ମହାନ୍ତି କଟକ ଜିଲ୍ଲା ଯାଜପୁର ସବ୍‌ଡିଭିଜନସ୍ଥ କପିଳେଶ୍ୱର ଗ୍ରାମରେ ୧୯୧୦ ମସିହା ଜାନୁୟାରୀ ୩ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ବଂଶୀଧର ମହାନ୍ତି ଓ ମାତାଙ୍କ ନାମ ଶାରଦା ଦେଈ । ବିଶିଷ୍ଟ ଲେଖକ ଓ ସଙ୍ଗୀତଜ୍ଞ ଶ୍ରୀ ଗୋକୁଳାନନ୍ଦ ମହାନ୍ତି ତାଙ୍କର ଅଗ୍ରଜ ।

ଛାତ୍ରାବସ୍ଥାରୁ ଗୋବର୍ଦ୍ଧନ ନାଟ ସଙ୍ଗୀତ ଦିଗରେ ମନୋନିବେଶ କରିଥିଲେ ଏବଂ ସ୍କୁଲର ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ମାନଙ୍କରେ ସଙ୍ଗୀତ ଗାଇ ପ୍ରଶଂସା ଭାଜନ ହୋଇ ପାରିଥିଲେ । ତାଙ୍କର ପାଠପଢ଼ା ଶେଷ ପରେ, ତାଙ୍କର ସଙ୍ଗୀତ ଶିକ୍ଷା ଓ ସଙ୍ଗୀତ ଚର୍ଚ୍ଚା ପ୍ରବଳତର ହୋଇ ଉଠିଲା । ସେ ସେତେବେଳକାର ବହୁ ସ୍ୱନାମଧନ୍ୟ ସଙ୍ଗୀତ

ଗୁରୁମାନଙ୍କଠାରୁ ସଙ୍ଗୀତ ଶିକ୍ଷା କରି ଶାସ୍ତ୍ରୀୟ ସଙ୍ଗୀତରେ ବିଶେଷ ପାରଦର୍ଶିତା ଲାଭ କରିଥିଲେ । ପ୍ରଥମ ପୃଥିବୀ ମହାଯୁଦ୍ଧ ସମୟରେ ମୁକୁର ପତ୍ରିକାର ସମ୍ପାଦକ ସ୍ୱନାମଧନ୍ୟ ବ୍ରଜସୁନ୍ଦର ଦାସଙ୍କ ବ୍ୟବସ୍ଥାପକତାରେ ଓଡ଼ିଶା ସରକାରଙ୍କର ଯେଉଁ ସଙ୍ଗୀତ ପ୍ରଚାର ଅଫିସ ସ୍ଥାପନା କରାଯାଇଥିଲା, ସେତିକବେଳେ ସଙ୍ଗୀତଜ୍ଞ ଗୋବର୍ଦ୍ଧନ "ଜରମାନୀ ଆସେ ଧାଇଁ, ଡରୁ ତୁ କାହିଁ ପାଇଁ, ମୋ ଘରେ କସ ନାହିଁ ବାସ୍ନାଣୀ" ଶ୍ରୀ ରାମଚନ୍ଦ୍ର ଭବନରେ ଅନୁଷ୍ଠିତ ଯୁଦ୍ଧ ସଙ୍ଗୀତ ଆସରରେ ଗାଇ ସରକାରଙ୍କଠାରୁ ପ୍ରଥମ ପୁରସ୍କାର ବାବଦକୁ ୨୫ ଟଙ୍କା ପାଇଥିଲେ ।

ତାପରେ ଯାଜପୁରସ୍ଥ ଓସ୍ତାଲରେ ଥିବା କୁରାଁସରେ ଦୁର୍ଗାମଣି ଥିଏଟର ପାର୍ଟି ନାମରେ ଗୋଟିଏ ଥିଏଟର ପାର୍ଟି ଗଢ଼ି ବହୁ ସୁନାମ ଅର୍ଜନ କରିଥିଲେ । ସେତେବେଳେ ଓଡ଼ିଶା ସରକାରଙ୍କ ଅଧୀନରେ ଦଳିତ ଜାତିସଙ୍ଘ ଅଫିସରେ ଫିଲ୍ଡ଼ ଅଫିସର ହିସାବରେ ଚାକିରି ପାଇ ଅଫିସ ତରଫରୁ "ଅଞ୍ଜଳି, ଝରଣା, ଧୂପ, ମର୍ମର" ଇତ୍ୟାଦି ବହି ପ୍ରକାଶ କରିଥିଲେ ।

୧୯୫୭।୫୮ ମସିହାରେ ସେ ଶିଶୁମାନଙ୍କ ପାଇଁ 'ଆଇମା" ନାମକ ଖଣ୍ଡିଏ ପୁସ୍ତକ ପ୍ରକାଶ କରିଥିଲେ ଏବଂ ତାହା ସର୍ବୋତ୍କୃଷ୍ଟ ବିବେଚିତ ହୋଇ ସରକାରଙ୍କ ତରଫରୁ ପ୍ରଥମ ପୁରସ୍କାର ସ୍ୱରୂପ ୫୦୦ ଟଙ୍କା ପାଇଥିଲେ ।

ଓଡ଼ିଶା ସରକାରଙ୍କ ପ୍ରଚାର ବିଭାଗରେ ସେ ସହକାରୀ ଲୋକ ସମ୍ପର୍କ ଅଫିସର ଭାବରେ ନିଯୁକ୍ତ ପାଇ, ସେହି ବିଭାଗରେ ୧୯୫୩ ଠାରୁ ୧୯୫୮ ପର୍ଯ୍ୟନ୍ତ ୫ ବର୍ଷ କାର୍ଯ୍ୟ କରିବା ପରେ, ଆଉ ସରକାରୀ ଚାକିରିରେ ରହିବାକୁ ଭଲ ନ ଲଗିବାରୁ ସେଥିରୁ ଇସ୍ତଫା ଦେଇଥିଲେ ଓ ତା'ପରେ ଓଡ଼ିଶାର ସୁପ୍ରସିଦ୍ଧ କବି ଡକ୍ଟର ମାୟାଧର ମାନସିଂହଙ୍କ ମୁଖ୍ୟ ସମ୍ପାଦନାରେ ପ୍ରକାଶ ପାଇଥିବା "ଜ୍ଞାନକୋଷ"ରେ ୧୨ ବର୍ଷ କାଳ "ପ୍ରୁଫ-ରିଡ଼ର ହିସାବରେ କାର୍ଯ୍ୟ କରି ୧୯୭୨ ମସିହାରେ ସେହି ଜ୍ଞାନ କୋଷ କାର୍ଯ୍ୟାଳୟ ଚାକିରିରୁ ଅବସର ଗ୍ରହଣ କରିଥିଲେ ।

ନିଜର ପିତା ବଂଶୀଧର ମହାନ୍ତି ଓ ଅଗ୍ରଜ ଗୋକୁଳାନନ୍ଦ ମହାନ୍ତିଙ୍କର ପଦାଙ୍କ ଅନୁସରଣ କରି ଏ ଯାବତ୍ ପ୍ରାୟ ୧୦୦୦ରୁ ଉର୍ଦ୍ଧ୍ୱ, ବିଭିନ୍ନ ଧରଣର ସଙ୍ଗୀତମାନ ରଚନା କରିଛନ୍ତି । ସବୁଠାରୁ "ପଲ୍ଲୀ ସଙ୍ଗୀତ" ରଚନାରେ ସେ ତାଙ୍କର ପୂର୍ଣ୍ଣ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି । ବେତାର କେନ୍ଦ୍ରର ସେ ଜଣେ ପ୍ରତିଷ୍ଠିତ ଗୀତିକାର । ଆଜିର ଏ ପଚପନ୍ଦ ବୟସରେ ମଧ୍ୟ ସେ ସଙ୍ଗୀତ, ସାହିତ୍ୟ ସାଧନାରୁ ବିରତ ହୋଇନାହାନ୍ତି । ତାଙ୍କର ସମସ୍ତ ଅପ୍ରକାଶିତ ରଚନା ପ୍ରକାଶ ପାଇ ପାରିଲେ, ଏ ଦେଶ ତାଙ୍କର ସମ୍ୟକ ପ୍ରତିଭାର ପରିଚୟ ପାଇପାରନ୍ତି ।

## * ଗୋକୁଳାନନ୍ଦ ମହାନ୍ତି

(ବିଂଶ ଶତାବ୍ଦୀ)

୧୯୦୬-୧୯୭୪—

ଏବେବି ରେକର୍ଡ଼ ସଙ୍ଗୀତ "ଆସ କିଏସେ ଯିବରେ ଆଜ ରଜାଘର ଖାନା ଖଣ୍ଡଖଣ୍ଡ ବସା ଦହି ଖଣ୍ଡ, ଖଣ୍ଡ ଛେନା" "ହଳ ଓ ଷଣ୍ଢ ବରତାଲ", "କିଏ ଶୁଣିବ ହୋ ଆମେ ପାଠପଢ଼ି ହେଲୁ ନାଶ", "ଭାରତ ଜନନୀ ନମସ୍ତେ" ପ୍ରତ୍ୟେକ ପ୍ରାଣରେ ଅପୂର୍ବ ପୁଲକ ସୃଷ୍ଟି କରିଥାଏ । ଏହି ସଙ୍ଗୀତ ଗୁଡ଼ିକର ସଙ୍ଗୀତଜ୍ଞ ହେଲେ ଗୋକୁଳାନନ୍ଦ ମହାନ୍ତି । ସେ କେବଳ ଖାଲି ସଙ୍ଗୀତଜ୍ଞ ନୁହନ୍ତି, ଏକ ବହୁମୁଖୀ ପ୍ରତିଭା । ସେ ଏକାଧାରରେ ଜଣେ କବି, ଗୀତିକାର, ନାଟ୍ୟକାର, ଗାଳ୍ପିକ, ଔପନ୍ୟାସିକ, ଅଭିନେତା, ସମାଜସଂସ୍କାରକ ଓ ସର୍ବୋପରି ଜଣେ ଦେଶପ୍ରେମୀ ଦେଶ ସେବକ ।

ଏଇଭଳି ଏକ ପ୍ରତିଭାବନ୍ତ ବ୍ୟକ୍ତିତ୍ୱ କଟକ ଜିଲ୍ଲା ବିରଜାଧାମ ଯାଜପୁର ସବ୍‌ଡିଭିଜନସ୍ଥ କପିଳେଶ୍ୱର ଗ୍ରାମରେ ୧୯୦୬ ମସିହା ଅଗଷ୍ଟ ୧୮ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ବଂଶୀଧର ମହାନ୍ତି ଓ ମାତାଙ୍କ ନାମ ଶାରଦା ଦେଇ । ତାଙ୍କର ପିତା ବଂଶୀଧର ଜଣେ ବିଶିଷ୍ଟ ସଙ୍ଗୀତଜ୍ଞ ଓ ସାହିତ୍ୟିକ ଥିଲେ । ପିତାଙ୍କ ସାହିତ୍ୟିକ ଜୀବନ ପ୍ରଭାବରେ ଗୋକୁଳାନନ୍ଦ ବିଶେଷ ଭାବେ ପ୍ରଭାବିତ ହୋଇ ଥିଲେ । ଏହାଛଡ଼ା ଗୋକୁଳାନନ୍ଦଙ୍କ ଅନୁଜ ଗୋବର୍ଦ୍ଧନ ମଧ୍ୟ ବିଶିଷ୍ଟ ସଙ୍ଗୀତଜ୍ଞ ଓ ସାହିତ୍ୟିକ । ସ୍ଥୂଳତଃ ଦେଖିଲେ ତାଙ୍କର ପରିବାରଟି ଏକ ସାଂସ୍କୃତିକ ଓ ସାହିତ୍ୟିକ ପରିବାର ।

ସେ ରାଜ୍ୟସରକାରଙ୍କ ବିଭିନ୍ନ ବିଭାଗରେ ଚାକିରି କରିଥିଲେ ମଧ୍ୟ, ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସାହିତ୍ୟ ସାଧନାରେ ମଗ୍ନ ରହିଥିଲେ । ତାଙ୍କର ଅପୂର୍ବ ଓ ଅନବଦ୍ୟ କଣ୍ଠସ୍ୱର, ରଚନାଶୈଳୀ ତାଙ୍କୁ ଏ ଦେଶରେ ବିଶେଷ ଭାବେ ସମ୍ମାନିତ କରିଛି । ପଞ୍ଚାୟତି ରାଜ, ସମବାୟ, ଗଣତନ୍ତ୍ର, ପଞ୍ଚବାର୍ଷିକ ଯୋଜନା, ସ୍ୱଳ୍ପସଂଚୟ କାର୍ଯ୍ୟକ୍ରମ ପ୍ରଭୃତି ବିଷୟରେ ତାଙ୍କର ପ୍ରଚାର ଧର୍ମୀ ରଚନାମାନ ଏ ସମାଜରେ ନୂତନ ଆଭିମୁଖ୍ୟ ସୃଷ୍ଟି କରିଛି । ତାଙ୍କ ରଚିତ "ଚନ୍ଦ୍ରାବତୀ" ଶୀର୍ଷକ ଯୋଜନା ବିଷୟକ ରଚନା ଭାରତ ସରକାରଙ୍କ ଆୟୋଜିତ ଏକ ପ୍ରତିଯୋଗିତାରେ ପୁରସ୍କୃତ ହୋଇଥିଲା । ଓଡ଼ିଆ ଜାତିର ଅତୀତ ଐତିହାସକୁ ସ୍ମରଣ କରାଇବାକୁ ଯାଇ, ସେ ଉଦାତ୍ତ କଣ୍ଠରେ ସେଦିନ ଯାହା ଗାଇ ଉଠିଥିଲେ, ତାହା ଏବେବି ବିଶେଷ ପ୍ରଣିଧାନ ଯୋଗ୍ୟ ।
ସେଇ ଗୀତଟି ହେଲା—

"ଯେ ଜାତି ବୋଇତ ଭସାଇ
ସାତ ସମୁଦ୍ରର ତେର ନଈରେ
ପର ଦେଶୁ ଧନ-ଦୌଲତ ଘରେ
ଆଣୁଥିଲେ ଦିନେ ବୋହିରେ... ।"

ପୁନଶ୍ଚ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ସ୍ୱାଧୀନତା ଦିବସର ଅଧିରାତ୍ରିରେ ସେ ଯେଉଁ ପ୍ରସିଦ୍ଧ ସଂଗୀତ "ଜୟ ଭାରତମୟୀ ପାପୀ ସୁଖ ଦାୟିନୀ ଶ୍ୟାମଳ ତଳ ସଦାନନ୍ଦ" ରଚନା କରି ଗାନ କରିଥିଲେ । ତାହାହିଁ ପ୍ରତ୍ୟେକ ପ୍ରାଣରେ ଏକ ଅପୂର୍ବ ଶିହରଣ ସୃଷ୍ଟି କରିଥିଲା ।

ଗୋକୁଳାନନ୍ଦଙ୍କ ନାଟକ "ଭାଗ୍ୟଡୋର, କଳାପଥର, ଦ୍ରୌପଦୀ, ହିଂସକ" ତାଙ୍କ ନାଟ୍ୟ ପ୍ରତିଭାର ପୂର୍ଣ୍ଣ ପରିଚୟ ପ୍ରଦାନ କରିଥାଏ । ଏହାଛଡ଼ା ସେ ଅନେକ ଅନେକ ଲୀଳା, ପାଲା, ଦାସକାଠିଆ, କୀର୍ତ୍ତନ ଆଦି ରଚନା କରିଥିଲେ । 'ପଣ୍ଡିତ ମୋତିଲାଲ'ଙ୍କ ଜୀବନ ରଚନା କରି ତତ୍କାଳୀନ ଭାରତର ସ୍ୱାଧୀନତା ଆନ୍ଦୋଳନ ଓ ରାଜନୈତିକ ପରିବେଶ ଓ ପରିସ୍ଥିତି ସଂପର୍କରେ ସମ୍ୟକ ପରିଚୟ ପ୍ରଦାନ କରିଛନ୍ତି । ତାଙ୍କ ରଚିତ ପ୍ରାୟ ସମସ୍ତ ନାଟକ, ଲୀଳା, ପାଲା ଯାଜପୁରରେ ବାରବାର ଅଭିନୀତ ଓ ପରିବେଷିତ ହୋଇଛି ।

ଏହିପରି ଏକ ଦୁର୍ଦ୍ଧର୍ଷ କଳାକାର, କବି, ନାଟ୍ୟକାର, ସମାଜ ସଂସ୍କାରକ ସ୍ୱାଧୀନ-ଚେତା ଗୋକୁଳାନନ୍ଦ ମାତ୍ର ୫୮ ବର୍ଷ ବୟସରେ ୧୯୬୦ ମସିହା ମେ ମାସ ୧୪ ତାରିଖରେ ଜୀବନର ଇହଲୀଳା ସମ୍ବରଣ କଲେ । ତାଙ୍କର ସମସ୍ତ ରଚନା 'ଗ୍ରନ୍ଥାବଳୀ' ଆକାରରେ ପ୍ରକାଶ ପାଇବାହିଁ, ତାଙ୍କ ସ୍ମୃତିର ଶ୍ରେଷ୍ଠ ସ୍ମାରକୀ ହେବ ।

## * ଶ୍ରୀ ନରହରି ଉପାଧ୍ୟାୟ

(ବିଂଶ ଶତାବ୍ଦୀ)

*

କଟକ ଜିଲ୍ଲା ଆଳିଥାନା ଅନ୍ତର୍ଗତ ରାଜ କନିକା ନିକଟବର୍ତ୍ତୀ ଜାଗୁଲାଇ ପଡ଼ା ଗ୍ରାମରେ '୫।୪।'୧୨୧ ରେ ଜନ୍ମ । ପିତାଙ୍କ ନାମ ଭିକାରୀ ଉପାଧ୍ୟାୟ ମାତା-କ୍ଷେତ୍ରମଣି ଦେବୀ । ୧୯୫୬ ମସିହାରେ ରେଭେନ୍‌ସା ମହାବିଦ୍ୟାଳୟରୁ ସ୍ନାତକ ହେବା ପରେ ଓଡ଼ିଶା ସରକାରଙ୍କ ଅର୍ଥ ବିଭାଗରେ ଉଚ୍ଚ ସରକାରୀ ପଦବୀରେ ନିଯୁକ୍ତ । ସେ ଏକା-ଧାରରେ କବି, କଳାକାର, ନାଟ୍ୟକାର, ପ୍ରାବନ୍ଧିକ ଓ ସମାଲୋଚକ । ସମଗ୍ର ରାମାୟଣକୁ

ଗୀତିନାଟ୍ୟ ରୂପଦାନ ତାଙ୍କର ସର୍ବଶ୍ରେଷ୍ଠ ଅମରକୃତି ଓ ତାଙ୍କ ପ୍ରକାଶିତ ସାତଖଣ୍ଡି "ରାମ ସଙ୍ଗୀତ ସମାହାର" ରାମ ସାହିତ୍ୟର ଏକ ଅପୂର୍ବ ଓ ଅନବଦ୍ୟ ସୃଷ୍ଟି । ତାଙ୍କର "ଶ୍ୱେତକେଳି" ଗୀତିନାଟ୍ୟ ଏଯାବତ୍ ଅପ୍ରକାଶିତ ରହିଛି । ସେ ସମ୍ପ୍ରତି କାଳୀ କଳମ ଓ ସାମନ୍ତ ସିଂହାର ସାହିତ୍ୟ ସଂସଦ ସାହିତ୍ୟ ଅନୁଷ୍ଠାନର ଉପ ସଭାପତି ।

## * ସେକ୍ ବାକ୍‌କର ମହମ୍ମଦ

(ବିଂଶ ଶତାବ୍ଦୀ)

୧୯୨୭-୧୯୮—

କଟକ ଜିଲ୍ଲାର ଟାଙ୍ଗୀ ଚୌଦ୍ୱାର ପଞ୍ଚାୟତ ସମିତି ଅନ୍ତର୍ଗତ ଡାଲିଯୋଡ଼ା ବ୍ରହ୍ମପୁର ଗ୍ରାମରେ ଓଡ଼ିଆ ସାହିତ୍ୟର ଅନ୍ୟତମ ସ୍ମରଣ କବି ତଥା ଦ୍ୱିତୀୟ ସାଲବେଗ ଭକ୍ତ କବି ସେକ୍ ବାକ୍‌କର ମହମ୍ମଦ ୧୯୨୭ ମସିହାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଗଫର ମହମ୍ମଦ ଓ ମାତାଙ୍କ ନାମ ଛକଆ ବିବି । ୧୯୫୪ ମସିହାରେ ସେ ଧାନମଣ୍ଡଳ ସିଙ୍ଗଡ଼ା ଗ୍ରାମର ସ୍ୱାସିସ୍ତା ବିବିଙ୍କୁ ବିବାହ କରିଥିଲେ ।

କବିଙ୍କର ବାଲ୍ୟ ଜୀବନଠୁଁ ଆରମ୍ଭ କରି ତାଙ୍କର ସମଗ୍ର ଜୀବନକାଳ ଅତି ଦୁଃଖ ଦୈନ୍ୟରେ ଅତିବାହିତ ହୋଇଥିଲା । ତଥାପି ଏ ଦୁଃଖ ଦୈନ୍ୟର ଦାରୁଣ କଷାଘାତ ତାଙ୍କୁ ତାଙ୍କ ସାହିତ୍ୟ ରଚନାରୁ ନିବୃତ୍ତ କରାଇପାରି ନଥିଲା । ସେ ଶେଷ ଜୀବନ ପର୍ଯ୍ୟନ୍ତ ସଙ୍ଗୀତମାନ ରଚନା କରି, ତାକୁ ଛୋଟ ଛୋଟ ପୁସ୍ତିକା ଆକାରରେ ପ୍ରକାଶ କରାଇ, ନିଜେ ସେଇ ପ୍ରକାଶିତ ପୁସ୍ତିକା ସନ୍ନିବେଶିତ ସଙ୍ଗୀତ ଗୁଡ଼ିକ କଟକ ସହର ବଜାର, ଗାଁମାନ ବୁଲି ବୁଲି ଗୀତ ଗାଇ ସେହି ବିକ୍ରି ବଟା ଧନରେ ନିଜର ନିତିଦିନିଆ ଗୁଜୁରାଣ ମେଣ୍ଟାଉ ଥିଲେ ।

ତାଙ୍କ ପିତା ସେକ୍ ଗଫର ମହମ୍ମଦ ଜଣେ ବିଶ୍ୱସ୍ତ ବ୍ୟକ୍ତି ହୋଇଥିବାରୁ ବ୍ରହ୍ମପୁର ଗ୍ରାମର ତୁଳସୀପୁର ମଠରେ ପିଆଦା ଚାକିରି କରୁଥିଲେ । ସେତେବେଳେ ତାଙ୍କର ମାସିକ ବେତନ ଥିଲା ୧୫ ଶୌଣୀ ଧାନ୍ ଓ ଦୁଇଟି ଟଙ୍କା । ଏଇ ଦରମାରେ କି ପରିବାରର ଗୁଜୁରାଣ ମେଣ୍ଟିବ ? ତଥାପି ବହୁ କଷ୍ଟରେ ବାକ୍‌କରଙ୍କ ପିତା ଗଫର ପରିବାର ଭରଣ ପୋଷଣ କରୁଥିଲେ ।

କବି ବାକ୍‌କର ପିଲା ଦିନରୁ ନିରୋଳାରେ ରହିବାକୁ ଭଲ ପାଉଥିଲେ । ସେଉଁଦିନ ତୁଳସୀପୁର ମଠର ଆମ୍ବତୋଟା ଜଗିବାପାଇଁ ତାଙ୍କ ବାପାଙ୍କର ପାଳି ପଡ଼େ, ସେ ଦିନ ସେ ବାପାଙ୍କ ସାଙ୍ଗରେ ଯାଆନ୍ତି ଓ ଆମ୍ବ ଗଛ ଛାଇରେ ବସି ଛୋଟ ଛୋଟ କବିତାମାନ ଲେଖନ୍ତି । ପିତାଙ୍କ ମୃତ୍ୟୁ ପରେ କବି ବାକ୍‌କର ସେହି ତୁଳସୀପୁର ମଠର

ପିଆଦା କାମରେ ନିଯୁକ୍ତ ହେଲେ । କିଛିଦିନ ପିଆଦା କାର୍ଯ୍ୟ କଲାପରେ, ତାଙ୍କର ଯେତେବେଳେ ଉଦ୍ଦାମ ଯୌବନ, ଯେତେବେଳେ ମାତ୍ର ୨୨ ବର୍ଷ ବୟସରେ ଦୁରାରୋଗ କୁଷ୍ଠ ରୋଗରେ ଆକ୍ରାନ୍ତ ହେଲେ । ଆଉ କି ମଠର ପିଆଦା ଚାକିରି ରହେ ? ପିଆଦା ଚାକିରିରୁ ତାଙ୍କୁ ବାହାର କରି ଦିଆଗଲା । ଏକେତ ବିବାହିତ, ପୁଣି କୁଷ୍ଠ ରୋଗରେ ଆକ୍ରାନ୍ତ ଓ ଶେଷରେ ଚାକିରିରୁ ଚ୍ୟୁତ···ଏ ପରିସ୍ଥିତିରେ କବିଙ୍କ ମନ ଜୀବନ ପ୍ରତି ବିକ୍ଷେଇ ଉଠିଲା···ଦିନକୁ ଦିନ ଚିନ୍ତା କମିତି ଜୀବନକୁ ଉଞ୍ଚେଇଁ ଦେବେ ? ସ୍ୱାମୀଙ୍କର ଏ ଗତିବିଧିକୁ ପତିପରାୟଣା ସ୍ତ୍ରୀସିନ୍ଧୁ ବାରମ୍ବାର ଲକ୍ଷ୍ୟ କରୁଥାଆନ୍ତି । କାହାକୁ କହିବେ ? ନିଜର ଭାଗ୍ୟକୁ ଆଦରି ପଡ଼ିବା ଛଡ଼ା ଆଉ କି ଉପାୟ ଅଛି ?

ହଠାତ୍ ଏକ ଇଦ୍ ପର୍ବରେ ଧୂମଧାମ ଚାଲିଥିଲା ବେଳେ ସେ ନିଜ ପିଲାମାନଙ୍କର ଲୁଗାପଟା କରିପାରି ନ ଥିବାର ଦୁଃଖ ଆଉ ନ ଦେଖିବାକୁ ଗୁରୁବାଟିଆ ରେଲଷ୍ଟେସନ ଆଡ଼େ ଆତ୍ମହତ୍ୟା ପାଇଁ ମୁହାଁଇଲେ । ଦୁଃଖିନୀ ସହଧର୍ମିଣୀ ସ୍ତ୍ରୀସିନ୍ଧୁ ମଧ୍ୟ କବିଙ୍କ ପଛେ ପଛେ ଛୁଟିଲେ, ତାଙ୍କୁ ଏ ଆତ୍ମହତ୍ୟାରୁ ନିବର୍ତ୍ତାଇବା ପାଇଁ···, କିନ୍ତୁ ସ୍ୱାମୀ ତାଙ୍କ କଥା ନ ମାନିବାରୁ ସେହି ଗୁରବାଟିଆ ଗ୍ରାମର ଶ୍ରୀନିବାସ ମିଶ୍ର ନାମକ ଜଣେ ମାଷ୍ଟରଙ୍କୁ ନେହୁରା ହେବାରେ ତାଙ୍କର ସାହାଯ୍ୟରେ ତାଙ୍କ ସ୍ୱାମୀଙ୍କ ଜୀବନ ରକ୍ଷା କରି ପାରିଥିଲେ ।

ତା'ପରେ କବି ସ୍ତ୍ରୀଙ୍କ ପରାମର୍ଶ କ୍ରମେ କୁଷ୍ଠ ରୋଗରୁ ମୁକ୍ତ ହେବାପାଇଁ ମା' ଶାରଳାଙ୍କ ନିକଟରେ ଅଧିଆ ପଡ଼ିଲେ । ତାଙ୍କ ନିରାଶ ପ୍ରାଣରେ ଆଶାର ସଞ୍ଚାର ହେଲା । ମା ଶାରଳାଙ୍କ କୃପା କରୁଣା ଲାଭ କରି କୁଷ୍ଠ ରୋଗରୁ ମୁକ୍ତ ହେଲେ ଓ କବି ହେବାର ପ୍ରେରଣା ମଧ୍ୟ ଲାଭ କଲେ । ସେହି ଦିନଠାରୁ ସେ ଯେତେକ ହିନ୍ଦୁ ଦେବଦେବୀ ସମସ୍ତଙ୍କର ପରମ ଭକ୍ତ ହୋଇଉଠିଲେ । ଆଉ କୌଣସି ଚାକିରିରେ ମନ ନଦେଇ କେବଳ ଗଣି ଗଣି ଶ୍ରେଷ୍ଠ ଶ୍ରେଷ୍ଠ ପୁସ୍ତିକାମାନ ଲେଖିଲେ ଓ ତାହାହିଁ ତାଙ୍କର ଭରଣ ପୋଷଣର ଶେଷ ସମ୍ବଳ ହେଲା ।

କବିଙ୍କର ପାଞ୍ଚଟି ଝିଅ ଓ ଗୋଟିଏ ପୁଅ । କବି ତାଙ୍କ ଜୀବଦ୍ଦଶାରେ ବଡ଼ ଝିଅର ମାତ୍ର ବିବାହର ବ୍ୟବସ୍ଥା କରିଛନ୍ତି । ଏଡ଼େବଡ଼ କୁଟୁମ୍ବଟି ଚାରିପଇସିଆ ବହି ବିକ୍ରୀରେ ଚଳିବେ ? ଦିନୁଦିନେ କେତେ ବା ପଇସା ସେଥିରୁ ରୋଜଗାର ହେବ ? ଯାହାହେଉ ବହି ବିକ୍ରୀପାଇଁ ଗୀତ ଗାଇବା ତାଙ୍କର ପୁରାପୁରି ବେଉସା ହୋଇ ଉଠିଲା । ତା ସାଙ୍ଗକୁ ଦୁଇଓଳା ପେଟପୁରା ଖାଇବାକୁ ଦାନା ମିଳିଲା ନାହିଁ··· ଦେହ ବା କେତେ ସମ୍ଭାଳିବ ? ୧୯୭୭ ମସିହାରେ ଏଥିଯୋଗୁଁ କଲିକ୍ (ପେଟମରା)

ରୋଗର ଶୀକାର ହେଲେ । ପେଟମରା ରୋଗ ଶେଷକୁ ଅପରେଶନ କରାଗଲା । ଡାକ୍ତର ଆଉ ଗୀତ ନ ବୋଲିବାକୁ କଡ଼ାକଡ଼ି ଭାବେ ବାରଣ କଲେ । କିନ୍ତୁ ଶୂନ୍ୟ ହସ୍ତରେ ଘର ସଂସାର କିପରି ଚଳିବ ? ପରିବାରର ଭରଣ ପୋଷଣ ପାଇଁ ପୁଣି ଗୀତ ଗାଇ ବନ୍ଧୁ ବନ୍ଧୀ କରି ଚାଲିଲେ । ଠିକ୍ ବର୍ଷକ ପରେ ୧୯୭୮ ମସିହାରେ ପେଟମରା ରୋଗ ପୁଣି ପ୍ରବଳତର ହୋଇଉଠିଲା । ପୁଣି ମେଡ଼ିକାଲରେ ଅପରେସନ କରାଗଲା । ଏଥରକ କିନ୍ତୁ ଘା' ଆଉ ଶୁଖିଲା ନାହିଁ । ପେଟ ପୁରାପୁରି ସେପ୍‌ଟିକ ହୋଇଗଲା । ତାଙ୍କୁ ଜୀବନରେ ବଞ୍ଚାଇବା ପାଇଁ ଡାକ୍ତରମାନେ ପ୍ରାଣମୂର୍ଚ୍ଛା ଉଦ୍ୟମ କଲେ ଓ ବ୍ୟକ୍ତିଗତ ଭାବେ ଅର୍ଥ ସାହାଯ୍ୟ କଲେ । କିନ୍ତୁ କାଳର କୁଟୀଳ ଗତି । କବି ବାକ୍‌କର ଆଉ ଭଲ ହେବେ କିଣ ? ୧୯୭୮ ଜୁଲାଇ ୧୪ ତାରିଖ ଦିନ ଅପରାହ୍ଣ ୭ଟାରେ ସମସ୍ତ ବନ୍ଧୁବାନ୍ଧବ, ସ୍ତ୍ରୀ, ପୁତ୍ର ଓ କନ୍ୟାମାନଙ୍କୁ ଶୋକସାଗରରେ ଭସାଇ ଚିରଦିନ ପାଇଁ ବିଦାୟ ନେଲେ । କଟକ କଦମରସୁଲରେ କବିଙ୍କୁ କବର ଦିଆଗଲା ।

କବିଙ୍କର ବ୍ୟକ୍ତିଗତ ଜୀବନ ଥିଲା ସବୁଠାରୁ ମହତ୍ତ୍ୱପୂର୍ଣ୍ଣ । ସେ ହିଂସା କିଣ ଜାଣି ନଥିଲେ । ତାଙ୍କର କାହା ସାଙ୍ଗରେ ମନାନ୍ତର ନଥିଲା । କବି ନିଜ ଜୀବଦ୍ଦଶାରେ ପ୍ରାୟ ୧୦୦୦ ପର୍ଯ୍ୟନ୍ତ ବିଭିନ୍ନ ଚଳନ୍ତୀ ସମସ୍ୟା, ଜଣାଣ, ଭଜନ, ସଙ୍ଗୀତର ପୁସ୍ତିକାମାନ ରଚନା କରିଛନ୍ତି । ତାଙ୍କର ସମସ୍ତ ପୁସ୍ତିକାମାନ ସଂଗ୍ରହ କରାଯାଇ ତାଙ୍କର ଗ୍ରନ୍ଥାବଳୀ ପ୍ରକାଶ କରିବା ଓ ତାଙ୍କର ଦୁଃସ୍ଥ ପରିବାରଙ୍କୁ ସାହାଯ୍ୟ କରିବା ଆମର ଜାତୀୟ କର୍ତ୍ତବ୍ୟ ।

ଏବେବି ତାଙ୍କର ସ୍ତ୍ରୀ ଓ ପରିବାର ସ୍ଥାନୀୟ ଜଙ୍ଗଲ ମାନଙ୍କରୁ ପିଚ୍ଛ ଆଣି, ତାକୁ ପଟିଆ ବୁଣି ଦୁଇଦିନେ ଥରେ ଅଧେ ଖାଉଛନ୍ତି । ନଚେତ୍ ଉପବାସରେ କାଳ କାଟୁଛନ୍ତି । ଏ ଦେଶରେ କବି ହୋଇ ଜନ୍ମ ହେବା କିଣ ଅଭିଶାପ ? ଏ କଥାର ଉତ୍ତର ଦେବ କିଏ ? ଦେଶବାସୀ ବିଚାର କରନ୍ତୁ ।

## * ଶ୍ରୀ ଗୋଲେକଚନ୍ଦ୍ର ମହାନ୍ତି

(ବିଂଶ ଶତାବ୍ଦୀ)

୧୯୧୫—

କଟକ ସହର ଅନ୍ତର୍ଗତ ଖାନ୍‌ନଗର ଗ୍ରାମରେ ୧୯୧୫ ମସିହାରେ ଶ୍ରୀ ଗୋଲକ ଚନ୍ଦ୍ର ମହାନ୍ତିଙ୍କର ଜନ୍ମ । ତାଙ୍କ ପିତାଙ୍କ ନାମ ନିତ୍ୟାନନ୍ଦ ମହାନ୍ତି ଓ ମାତାଙ୍କ ନାମ ସେ ମୁଖ୍ୟତଃ ଜଣେ କବି, ନାଟ୍ୟକାର ଓ ସଂଗୀତଜ୍ଞ । ପ୍ରଥମ ଜୀବନରୁହିଁ

ସାହିତ୍ୟ, ସଙ୍ଗୀତ ଓ ନାଟ୍ୟକଳା ପ୍ରତି ବିଶେଷ ଆକୃଷ୍ଟ ହୁଅନ୍ତି । ତାଙ୍କ ଅଗ୍ରଜ ବିଶିଷ୍ଟ ସଙ୍ଗୀତଜ୍ଞ ଚତୁର୍ଭୁଜ ମହାନ୍ତିଙ୍କର ପ୍ରେରଣା ହିଁ ତାଙ୍କ ସଙ୍ଗୀତଜ୍ଞ ଓ ସାହିତ୍ୟିକ ଜୀବନକୁ ବିଶେଷଭାବେ ପ୍ରଭାବିତ କରିଛି । '୧୯୭୦ ମସିହାରେ ସରକାରୀ ଚାକିରୀ ମୁଖ୍ୟ ସହକାରୀ ପଦରୁ ଅବସର ଗ୍ରହଣ କଲାବେଳେ ସେ ନିଜକୁ ସମ୍ପୂର୍ଣ୍ଣ ଭାବେ ସାହିତ୍ୟ ଓ ସମାଜ ସେବାରେ ନିୟୋଗ କରିଛନ୍ତି । ସେ ଏଯାବତ୍ ସମୁଦାୟ କୋଡ଼ିଏ ଖଣ୍ଡ ନାଟକ, ନାଟିକା, ସଙ୍ଗୀତରୂପକ ରଚନା କରିଛନ୍ତି । ତନ୍ମଧ୍ୟରୁ ଜେନାକବି, ଯୁଗାବତାରୀ, ଜୟ ଗୁରୁ କବିଚନ୍ଦ୍ର, ବକୁଳବନର ସୁଧା ପ୍ରଭୃତି ପ୍ରକାଶିତ । ଏହାଛଡ଼ା ତାଙ୍କ ରଚିତ କୃଷ୍ଣଲୀଳା ଓ ରାମଲୀଳା ବିଷୟବସ୍ତୁ ଉପରେ ରଚିତ କେତେଗୋଟି ଲୀଳାନାଟକ ବିଶେଷ ଜନପ୍ରିୟ ଓ ଉପଭୋଗ୍ୟ । ସେ ସମ୍ପ୍ରତି ଉତ୍କଳ ନାଟ୍ୟ ସଂଘର କୋଷାଧ୍ୟକ୍ଷ ଓ କଟକ ରାମଲୀଳା ପ୍ରଚାର ସମିତିର ଉପ-ସଭାପତି ଅଛନ୍ତି ।

## * ଶ୍ରୀ ବିଦ୍ୟାଧର ରାଉତରାୟ

(ବିଂଶ ଶତାବ୍ଦୀ)
୧୯୧୬—

୧୯୧୬ ସେପ୍ଟେମ୍ବର ୧୬ ତାରିଖ ଇନ୍ଦ୍ରପୂର୍ଣ୍ଣିମା ଦିନ କଟକ ଜିଲ୍ଲା ବୈତରଣୀ-କୂଳ ପଲ୍ଲୀଶ୍ରୀ ସମୋଚ୍ଛିନୀ କୋଳରେ ଜନ୍ମଗ୍ରହଣ କରିଥିଲେ । ସେ ତାଙ୍କ ପିତାମାତାଙ୍କ ୧୧ଶ ସନ୍ତାନ ତଥା ପଞ୍ଚମ ପୁତ୍ର । ତାଙ୍କ ପିତାଙ୍କ ନାମ ଜମିଦାର ଭଜୁ ରାଉତରାୟ ଓ ମାତାଙ୍କ ନାମ ସୁଭଦ୍ରା ଦେବୀ ।

୧୯୩୦ ମସିହାରେ ସେ ଲବଣ ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ୧୯୩୫ ମସିହାରେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ହେଁ ବୈମାତ୍ରେୟ ଭ୍ରାତାମାନଙ୍କର ଉଦାସୀନତା ଓ ବୈରିଭାବ ଯୋଗୁଁ ଉଚ୍ଚ ଶିକ୍ଷାରୁ ବଞ୍ଚିତ ହୋଇଥିଲେ । ସେ ମୁଖ୍ୟତଃ ଜଣେ କବି । ୧୯୭୬ ମସିହାରେ ସରକାରୀ ଚାକିରୀରୁ ଅବ୍ୟାହତି ନେଇ ସାହିତ୍ୟ ସେବାରେ ନିଜକୁ ସମ୍ପୂର୍ଣ୍ଣ ଭାବେ ଉତ୍ସର୍ଗ କରିଛନ୍ତି । ଗଦ୍ୟ ଓ କବିତା ସ୍ୱ ପ୍ରକାର ପ୍ରାୟ ୮୦ ଖଣ୍ଡ ଯାଏ ପାଣ୍ଡୁଲିପି ଏ ପର୍ଯ୍ୟନ୍ତ ତାଙ୍କର ଅପ୍ରକାଶିତ ଅବସ୍ଥାରେ ରହିଛି । ତାଙ୍କର ସାହିତ୍ୟ କୃତି ଯୋଗୁଁ ଗତ ୩ ବର୍ଷଧରି ସାଂସ୍କୃତିକ ବ୍ୟାପାର ବିଭାଗ ତାଙ୍କୁ ଆର୍ଥିକ ସାହାଯ୍ୟ ପ୍ରଦାନ କରିଛନ୍ତି । ୧୯୭୬ ମସିହାରେ ସେ ତାଙ୍କର ଜନ୍ମିତ ବାସସ୍ଥାନ ତ୍ୟାଗ କରି କେନ୍ଦୁଝର ଗଡ଼ଠାରେ 'ବିଦୁର କୁଟୀର' ନିର୍ମାଣ କରି ସେହିଠାରେ ପରିବାର ସହ ବସବାସ କରୁଛନ୍ତି । ସମ୍ପ୍ରତି ସେ କେନ୍ଦୁଝର ମିଳାମି ସାହିତ୍ୟ ସଂସଦର ଉପ-ସଭାପତି ଅଛନ୍ତି ।

## * ଶ୍ରୀମତୀ ସୁନ୍ଦରମଣି ପଟ୍ଟନାୟକ

(ବିଂଶ ଶତାବ୍ଦୀ)

୧୯୨୨—

ଶ୍ରୀମତୀ ସୁନ୍ଦରମଣି ପଟ୍ଟନାୟକ ପୁରୀ ଜିଲ୍ଲା ଅନ୍ତର୍ଗତ ବାଲିପାଟଣା ଗ୍ରାମରେ ୧୯୨୨ ମସିହା ମେ' ମାସ ବିଂଶ ତାରିଖରେ ଉତ୍କଳ ପ୍ରସିଦ୍ଧ ପଞ୍ଚସଖା ଶିଶୁ ଅନନ୍ତଙ୍କ ବଂଶରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଜଗନ୍ନାଥ ଶିଶୁ ଗୋସ୍ୱାମୀ ଓ ମାତାଙ୍କ ନାମ ଚନ୍ଦ୍ରମଣି ଦେବୀ ।

୧୯୪୧ ଜୁଲାଇ ୭ ତାରିଖରେ ପୁରୀଜିଲ୍ଲା ଅନ୍ତର୍ଗତ ଅଣଶଳ ଗ୍ରାମର ସାମନ୍ତ ସୁରେଶଚନ୍ଦ୍ର ପଟ୍ଟନାୟକଙ୍କୁ ବିବାହ କରିଥିଲେ ।

ସେ ଜଣେ ମୁଖ୍ୟତଃ କବି, କାବ୍ୟକାର ଓ ସମାଜ ସେବୀ । ତାଙ୍କର ଐତିହାସିକ କାବ୍ୟ "ପଦ୍ମାବତୀ" ଲେଖା ଯୋଗୁଁ ପୁରୀ ଗଜପତି ରାଜ ଦରବାରରୁ "କାବ୍ୟ ଭାରତୀ" ଉପାଧି ଓ ଶାଢ଼ୀ ପାଇଥିଲେ ଏବଂ ଚୀନ ଭାରତ ଯୁଦ୍ଧ ସମୟରେ ସେହି ପୃଷ୍ଠଭୂମିରେ କବିତା ରଚନା କରି ଦିଲ୍ଲୀ ଦରବାରରୁ ସମ୍ମାନିତା ହୋଇଥିଲେ । ତାଙ୍କର ପ୍ରକାଶିତ ପୁସ୍ତକମାନଙ୍କ ମଧ୍ୟରେ କଣୋଣୀ ଚନ୍ଦ୍ରାନନ୍ଦ ଚମ୍ପୂ, ପଦ୍ମାବତୀ (ଐତିହାସିକ କାବ୍ୟ) ସୁଭଦ୍ରା ପରିଣୟ (ଛାନ୍ଦ କାବ୍ୟ), କୋଣାର୍କ (କବିତା), ପଲ୍ଲୀଶ୍ରୀ (କବିତା), ସ୍ୱର୍ଣ୍ଣରେଣୁ (କବିତା), ଯୁଦ୍ଧ ବାଣୀ (କବିତା ଓ ତାଙ୍କର ଏହି କବିତା ପୁସ୍ତକ ବିଭିନ୍ନ ଭାଷାରେ ଅନୁଦିତ), ରକ୍ତ କରବୀ (ଏକାଙ୍କିକା) ପ୍ରଭୃତି ପ୍ରଧାନ ଏହାଛଡ଼ା ତାଙ୍କର ପ୍ରାୟ ୬୦ଟି ପର୍ଯ୍ୟନ୍ତ ପାଣ୍ଡୁଲିପି ଅପ୍ରକାଶିତ ଅବସ୍ଥାରେ ରହିଛି । ବିଶେଷ କରି ସେ ସଂସ୍କୃତ ଜଗନ୍ନାଥ ବଲ୍ଲଭ ନାଟକ ଓ ଶ୍ରୀ ଶ୍ରୀ ଅନୁକୂଳ ଚନ୍ଦ୍ରଙ୍କ ନାରୀରନୀତି ବଙ୍ଗଳା ପୁସ୍ତକକୁ ଓଡ଼ିଆରେ ସାର୍ଥକ ଅନୁବାଦ କରିଛନ୍ତି । ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକା ମାନଙ୍କରେ ତାଙ୍କର ଲେଖା ଦୀର୍ଘ ବହୁ ବର୍ଷ ଧରି ପ୍ରକାଶ ପାଇ ଆସୁଛି ।

ଜଣେ ଶ୍ରେଷ୍ଠ ଓ ଆଦର୍ଶ ସ୍ଥାନୀୟା ସମାଜ ସେବିକା ହିସାବରେ ଶ୍ରୀମତୀ ସୁନ୍ଦରମଣି ପଟ୍ଟନାୟକ ଆମ ଦେଶରେ ସୁପରିଚିତ । ସେ ପୁରୀନାରୀ ସେବା ସଂଘର ଆଜୀବନ ସଭ୍ୟା । ପୁରୀ ନୀଳାଚଳ ମହିଳା ଶିଳ୍ପ ସମବାୟ ସମିତିର ସଂପାଦିକା ଏବଂ ସଂଗଠିକା, ପୁରୀ ନୀଳାଚଳ ନାରୀ ଶିକ୍ଷାଶ୍ରମର ଅବୈତନିକା ଶିକ୍ଷୟିତ୍ରୀ, ପୁରୀ ନିଖିଳୋତ୍କଳ ମହିଳା ପରିଷଦର ସଂପାଦିକା ଓ ଭୁବନେଶ୍ୱର ମହିଳା ମହାଶକ୍ତି ସଂଘର ସଭାନେତ୍ରୀ ।

କଟକ ବେତାର କେନ୍ଦ୍ରର ସେ ଜଣେ ସୁପରିଚିତ ନାଟ୍ୟଶିଳ୍ପୀ ଓ କେତେକ ବର୍ଷ ଧରି ସେ ଅଲ ଇଣ୍ଡିଆ ରେଡ଼ିଓ କଟକର ରୁରାଲ ଆଡ଼୍‌ଭାଇଜର କମିଟିର ମେମ୍ବର ଥିଲେ ।

## * ଶ୍ରୀ ରଘୁନାଥ ଶ୍ରୋତ୍ରିୟ

(ବିଂଶ ଶତାବ୍ଦୀ)
୧୯୧୮—

ପୁରୀ ଜିଲ୍ଲାର ନରଶଗଡ଼ରେ ୧୯୧୮ ମସିହା ଡିସେମ୍ବର ୧୭ ତାରିଖରେ ଶ୍ରୀ ରଘୁନାଥ ଶ୍ରୋତ୍ରିୟଙ୍କ ଜନ୍ମ । ତାଙ୍କର ପିତାଙ୍କ ନାମ ପଦ୍ମଚରଣ ଶ୍ରୋତ୍ରିୟ ଓ ମାତାଙ୍କ ନାମ ଶଙ୍ଖୀ ଦେବୀ ।

ତାଙ୍କ ପିତା ମାତା ଉଭୟେ ଭଗବତ୍ ପ୍ରାଣୈକ ହୋଇଥିବାରୁ ତାଙ୍କର ବିଲକ୍ଷ୍ଯ ପ୍ରଭାବ ପୁତ୍ର ରଘୁନାଥଙ୍କ ଉପରେ ପଡ଼ିଥିଲା । ସେଇ ପିତାମାତା ଉଭୟଙ୍କ ସୁକୃତରୁ ରଘୁନାଥଙ୍କ ମନପ୍ରାଣ ସାହିତ୍ୟ, ସଂସ୍କୃତି ଓ ଧର୍ମ ଆଡ଼କୁ ଢଳିଥିଲା ।

ଶ୍ରୀ ଶ୍ରୋତ୍ରିୟ ଗତ ନବକଳେବର ବର୍ଷ ଉପଲକ୍ଷେ ଜଗନ୍ନାଥଙ୍କ ସମ୍ପର୍କରେ ଯେଉଁ ଜଣାଣ, ଭଜନ ଲେଖି ପୁସ୍ତକାକାରରେ ଛପାଇ ବନ୍ଧୁ ବାନ୍ଧବ ଓ ସାହିତ୍ୟିକ ଗୁରୁଜନମାନଙ୍କ ପାଖକୁ ପଠାଇଥିଲେ । ସେତେବେଳେ ସେଇ ପୁସ୍ତକରୁ ଖଣ୍ଡିଏ ପଠାଇଥିଲେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକଙ୍କ ପାଖକୁ । କାଳୀବାବୁ ସେ ପୁସ୍ତକ ପଢ଼ିଲା ପରେ ଶ୍ରୀ ଶ୍ରୋତ୍ରିୟଙ୍କ ପାଖକୁ ନିଜ ଅଭିମତ ଉଲ୍ଲେଖ କରି ଯେଉଁ ପତ୍ର ଦେଇଥିଲେ ତାହା ହେଲା—

"ବାପାରେ,

ବଡ଼ ଡେରି ହେଉଛି, ଉତ୍ତର ଦେବାକୁ । ଅଭିମାନ କରିବୁ ନାହିଁ । ମୁଁ ନିତାନ୍ତ ଅସୁସ୍ଥ । ତଥାପି ତୋତେ ପାଶୋରି ନାହିଁ । ଜାଣି ନ ଥିଲି ତୁ ଜଣେ କବି ବୋଲି । ସତରେ ଠାକୁରଙ୍କ ଶ୍ରୀଚରଣରେ ସମର୍ପିତ ତୋ ଗୀତ ଗୁଡ଼ିକ ସରସ, ସରଳ, ସୁନ୍ଦର, ଭାବାର୍ଥକ ହୋଇଛି । ସେଇ ଜଗନ୍ନାଥଙ୍କ କରୁଣା ବିନା । ତୁ କଣ କେବେ କଟକ ଆସୁନାହୁଁ ବହୁବର୍ଷ ହେଲା ତୋତେ ଦେଖି ନାହିଁ । ଟିକେ ଦେଖିବାକୁ ବଡ଼ ମନ ହେଉଛି । ଚିଠି ଦେବୁ । ତୁ ଓ ବୋହୂ କେମିତି ଅଛ ? ଜଗନ୍ନାଥ ସୁଖୀ କରନ୍ତୁ ?

ଶୁଭାର୍ଥୀ
ମଉସା

କବିଚନ୍ଦ୍ରଙ୍କ ଉପରଲିଖିତ ଅଭିମତରୁ ସ୍ପଷ୍ଟ ଜଗନ୍ନାଥଙ୍କ ସମ୍ପର୍କରେ ରଘୁନାଥଙ୍କ ଲିଖିତ ଜଣାଣ ଗୁଡ଼ିକ ସୁନ୍ଦର ଓ ସରଳ । ସେ ଏହିପରି ଭାବରେ ଜଗନ୍ନାଥଙ୍କ ସମ୍ପର୍କରେ ଆହୁରି ବହୁ ଜଣାଣ, ଭଜନ ଲେଖିଛନ୍ତି । ସେ ସମସ୍ତ ଲୋକଲୋଚନକୁ ଆସିପାରିଲେ କବି ଶ୍ରୋତ୍ରିୟଙ୍କ ପ୍ରତିଭାକୁ ଆମେ ଆହୁରି ଆହୁରି ଚିହ୍ନିବାକୁ ସକ୍ଷମ ହୋଇପାରନ୍ତୁ ।

## * ଶ୍ରୀମତୀ ବ୍ରହ୍ମୋତ୍ରୀ ମହାନ୍ତି

(ବିଂଶ ଶତାବ୍ଦୀ)
୧୯୩୪ —

ଶ୍ରୀମତୀ ବ୍ରହ୍ମୋତ୍ରୀ ମହାନ୍ତି ୧୯୩୪ ମସିହା ଜନ୍ମାଷ୍ଟମୀ ତିଥିରେ ପୁରୀ ମାର୍କଣ୍ଡେଶ୍ୱର ସାହିରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ କୃଷ୍ଣମୋହନ ମହାନ୍ତି ଓ ମାତାଙ୍କ ନାମ ମୋତିମାଳୀ ଦେବୀ । ସେ ଦିଲ୍ଲୀରୁ ମାଟ୍ରିକ୍ୟୁଲେସନ ପାଶ୍ କରିବା ପରେ ପରେ ଓଡ଼ିଶାର ବଶିଷ୍ଟ ଗାଳ୍ପିକ ବିଜୟକୃଷ୍ଣ ମହାନ୍ତିଙ୍କୁ ୧୯୫୨ ମସିହାରେ ବିବାହ କରିଥିଲେ ।

ଶ୍ରୀମତୀ ମହାନ୍ତି ମୁଖ୍ୟତଃ ଜଣେ କବି । ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ଧାରାବାହିକ ଭାବେ ତାଙ୍କର କବିତାମାନ ପ୍ରକାଶ ପାଇଥାଏ । ବିଷୁବ ମିଳନ ପକ୍ଷରୁ ସେ ତାଙ୍କର କବି ପ୍ରତିଭା ପାଇଁ ପୁରସ୍କୃତ ହୋଇଛନ୍ତି । 'ଅବତରଣ' ନାମରେ । ତାଙ୍କର ଏ ଯାବତ୍ ଏକମାତ୍ର କବିତା ଗ୍ରନ୍ଥ ପ୍ରକାଶ ପାଇଛି । କବିତା ଛଡ଼ା ସେ ମଧ୍ୟ ବହୁ ଜଣାଣ, ଭଜନ ଲେଖିଛନ୍ତି । ତାଙ୍କର ବହୁ ଅପ୍ରକାଶିତ ଲେଖା ପ୍ରକାଶ ଅପେକ୍ଷାରେ ରହିଛି ।

## * ଶ୍ରୀବେଦଚନ୍ଦ୍ର ପୋଥାଳ

(ବିଂଶ ଶତାବ୍ଦୀ)
୧୯୪୦—

କଟକ ଜିଲ୍ଲା ସାଲେପୁର ଥାନା ଅନ୍ତର୍ଗତ କର୍ଣ୍ଣିନ୍ଦ୍ର କୋଇଲ ପଞ୍ଚାୟତସ୍ଥ ଗୋପପୁର ଗ୍ରାମରେ ୧୯୩୩ ମସିହାରେ ଶ୍ରୀବେଦଚନ୍ଦ୍ର ପୋଥାଳଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ଯଦୁମଣି ପୋଥାଳ ଓ ମାତାଙ୍କ ନାମ କହ୍ଲା ଦେଇ ।

ଶ୍ରୀ ପୋଥାଳ ମୁଖ୍ୟତଃ ଜଣେ ଶିଶୁ ସାହିତ୍ୟିକ, କବି ଓ ସଙ୍ଗୀତଜ୍ଞ ତଥା ଗୀତିକାର ଭାବେ ସୁପରିଚିତ । ତାଙ୍କୁ ଯେତେବେଳେ ୧୩ ବର୍ଷ ସେହି ସମୟରୁ ତାଙ୍କର ଶିଶୁ ସାହିତ୍ୟ ଲେଖା ଆରମ୍ଭ ଓ ସେହି ସମୟରୁ ବିଭିନ୍ନ ପତ୍ର ପ୍ରତ୍ରିକାରେ ଶିଶୁ ଉପଯୋଗୀ ଲେଖା ପ୍ରକାଶିତ । ତାଙ୍କର ୧୯୭୦ରେ ପ୍ରଥମ ଶିଶୁ କବିତା ପୁସ୍ତକ "ଗାଁ ମାଟି ମୋର ହସେରେ", ୧୯୭୧ରେ ଦ୍ୱିତୀୟ ପୁସ୍ତକ "ଅକଲ ମକଲ ଟକଲ ଟିଆଁ, ୧୯୭୪ରେ ତୃତୀୟ ପୁସ୍ତକ "ହସ ପସରା", ୧୯୭୭ରେ ଚତୁର୍ଥ ପୁସ୍ତକ

"ସତ କଥାରୁ ସାତଟି" (ଗଳ୍ପ) ପୁସ୍ତକ ପ୍ରକାଶିତ । "ଗାଁଆ ମାଟି ମୋର ହସେରେ" ପୁସ୍ତକ ପାଇଁ ସେ ୧୯୬୩ ମସିହାରେ ଶ୍ରେଷ୍ଠ ଶିଶୁସାହିତ୍ୟିକ ଭାବେ ରାଜ୍ୟ ସରକାରଙ୍କ ଦ୍ୱାରା ପୁରସ୍କୃତ ।

୧୯୬୫ ମସିହାରେ ଦୈନିକ ସମ୍ବାଦପତ୍ର "ମାତୃଭୂମି"ର ଜନୈକ କର୍ମଚାରୀ ଭାବେ ନିଯୁକ୍ତ ଓ ୧୯୭୬ରୁ ମାତୃଭୂମିରୁ ଅବ୍ୟାହତି ନେଇ "ଶିଶୁ ସାଥୀ" ନାମକ ଏକ ମାସିକ ଶିଶୁ ଗଳ୍ପ ସଂକଳନ ଆରମ୍ଭ କରିଛନ୍ତି । ୧୯୬୯ ମସିହାରୁ କଟକ ଆକାଶ ବାଣୀର ଗୀତିକାର ଭାବେ ସ୍ୱୀକୃତି ଲାଭ । ୧୯୭୮ ମସିହାରେ ଶିଶୁ ସାହିତ୍ୟିକ ଭାବେ ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ ପୁରସ୍କାର ଓ ପ୍ରଶଂସାପତ୍ର ପାଇଥିଲେ । ୧୯୭୨ ମସିହାରେ ମୁରାରି ଜେନାଙ୍କ ବଳିଷ୍ଠ ଉଦ୍ୟମରେ ତାଙ୍କର ସଙ୍ଗୀତ ପୁସ୍ତକ "ବେତାର ସଙ୍ଗୀତ" ପ୍ରକାଶିତ ଓ ବହୁଳ ଭାବରେ ପ୍ରଚାରିତ ହୋଇଥିଲା । ସେ ସଂପ୍ରତି ଶିଶୁ କିଶୋର ସାଂସ୍କୃତିକ ଅନୁଷ୍ଠାନ ଉଦୟ କ୍ଲବର ସଭାପତି ଓ "ବ୍ଲୁବର୍ଡ଼ ଚିଲ୍ଡ୍ରେନ୍ସ୍ କ୍ଲବ"ର ଉପଦେଷ୍ଟା ଅଛନ୍ତି ।

## * ଶ୍ରୀ ନଗେନ୍ଦ୍ର ମହାପାତ୍ର

(ବିଂଶ ଶତାବ୍ଦୀ)
୧୯୨୪—

ଶ୍ରୀ ନଗେନ୍ଦ୍ର ମହାପାତ୍ର ୧୯୨୪ ମସିହା ଡିସେମ୍ବର ୧୨ ତାରିଖରେ କଟକ ଜିଲ୍ଲା ବାଙ୍କୀସ୍ଥ କରଡ଼ି ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ମାଧବ ମହାପାତ୍ର ଓ ମାତାଙ୍କ ନାମ ଚମ୍ପା ଦେବୀ । ମାଟ୍ରିକୁଲେସନ ପାସ୍ ପରେ ଚିକିତ୍ସା ବିଦ୍ୟାରେ ଟ୍ରେନିଂ ନେଇ ମେଡ଼ିକାଲ ଟେକ୍ନିସିଆନ ଭାବେ ଅବସ୍ଥାପିତ । ସେ ମୁଖ୍ୟତଃ ଜଣେ ଗୀତିକାର, ନାଟ୍ୟକାର, ଗୀତିନାଟ୍ୟ ଲେଖକ । ତାଙ୍କର ବହୁ ସଙ୍ଗୀତ ଓ ସଂଗୀତ ରୂପକ କଟକ ଆକାଶବାଣୀ ଓ ଦୂରଦର୍ଶନ କେନ୍ଦ୍ରରୁ ପ୍ରଚାରିତ । ଜଣେ ରେଡ଼ିଓ ଗୀତିକାର ହିସାବରେ ସେ ଆମ ଦେଶରେ ସୁପରିଚିତ ଓ ସୁପ୍ରତିଷ୍ଠିତ ।

## * ଅଧ୍ୟାପକ ଶ୍ରୀ ଜୟକୃଷ୍ଣ ମିଶ୍ର

(ବିଂଶ ଶତାବ୍ଦୀ)
୧୯୧୩—

ଶ୍ରୀ ଜୟକୃଷ୍ଣ ମିଶ୍ର କଟକ ଜିଲ୍ଲା ତିଗିରିଆସ୍ଥ ଗୋପୀନାଥପୁର ଶାସନରେ ୧୯୧୩ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ପଣ୍ଡିତ ବଳଭଦ୍ର ମିଶ୍ର ଓ

ମାତାଙ୍କ ନାମ ଗୌରୀ ଦେବୀ । ଏମ୍. ଏ. ପାଶ୍ ପରେ ୧୯୪୫ରୁ ୧୯୫୮ ରେଭେନ୍‌ସା କଲେଜ, ୧୯୫୮ରୁ ୧୯୬୩ ସାମନ୍ତଚନ୍ଦ୍ରଶେଖର କଲେଜ ପୁରୀ, ୧୯୬୩ରୁ ୧୮୬୫ ରେଭେନ୍‌ସା କଲେଜରେ ଓଡ଼ିଆ ଅଧ୍ୟାପକ ଭାବେ ଅବସ୍ଥାପିତ ହୋଇଥିଲେ । ୧୯୬୫ରୁ ୧୯୬୮ ପର୍ଯ୍ୟନ୍ତ ବଲାଙ୍ଗୀର, କଳାହାଣ୍ଡି, କୋରାପୁଟ ପାଇଁ ସ୍କୁଲ ବିଭାଗ ପରିଦର୍ଶକ ଭାବେ ନିଯୁକ୍ତ ହୋଇଥିଲେ । ୧୯୬୮ ମସିହାର ଶେଷଭାଗକୁ ସେ ସାଂସ୍କୃତିକ ବ୍ୟାପାର ବିଭାଗର ଉପ-ନିର୍ଦ୍ଦେଶକ ଭାବେ ଦାୟିତ୍ୱ ଗ୍ରହଣ କରିଥିଲେ । ତା'ପରେ ୧୯୬୯ ଠାରୁ ୧୯୭୪ ପର୍ଯ୍ୟନ୍ତ ବଡ଼ାମ୍ବା କଲେଜର ଅଧ୍ୟକ୍ଷ ହୋଇଥିଲେ । ୧୯୭୭ ମସିହାଠାରୁ ୟୁ ଜି ସି.ର ପ୍ରଫେସର ଭାବେ ନିଯୁକ୍ତି ଲାଭ କରିଛନ୍ତି । ସେ ମୁଖ୍ୟତଃ ଜଣେ ସୁ ବକ୍ତା, ସୁ କବି ଓ ସୁ ସମାଲୋଚକ । ତାଙ୍କ ପ୍ରକାଶିତ ସାହିତ୍ୟ କୃତି ମାନଙ୍କ ମଧ୍ୟରେ, ସିଂହନାଦ, ଅଂଶୁମା, ସପ୍ତଶଯ୍ୟା, ଚର୍ଚ୍ଚିକା, କପିଳାସ ମାଲ୍ୟଗିରି, ସୁବର୍ଣ୍ଣ ମେରୁ, ମନୋରମା, ନିର୍ଦ୍ଦେଶିକା ପ୍ରଭୃତି କବିତା ସଂଗ୍ରହ, ୯ ଖଣ୍ଡି ଓଡ଼ିଆ କାବ୍ୟ, ଉପେନ୍ଦ୍ରଭଞ୍ଜ ସମୀକ୍ଷା, କବିସୂର୍ଯ୍ୟ ସମୀକ୍ଷା, ୬ଟି ସମାଲୋଚନା ଗ୍ରନ୍ଥ ପ୍ରଧାନ । ଅପ୍ରକାଶିତ ଦୁଇହଜାର ସଂସ୍କୃତ ଶ୍ଳୋକ ସନ୍ନିବେଶିତ ମାତୃ ମୁକ୍ତ ମୁକ୍ତାବଳୀ ମହାକାବ୍ୟ ତାଙ୍କ କବି ପ୍ରତିଭାର ଅନବଦ୍ୟ ଅବଦାନ । ଏହି ମାତୃମୁକ୍ତ ମୁକ୍ତାବଳୀ ସଂସ୍କୃତ ମହାକାବ୍ୟ ଲେଖିବାରେ ତାଙ୍କୁ ଦୀର୍ଘ ସମୟ ଲାଗିଛି । ଏଇ ସଂସ୍କୃତ ମହାକାବ୍ୟଟି ଲୋକ ଲୋଚନକୁ ଆସି ପାରିଲେ, କବିଙ୍କର ପ୍ରତିଭା ଯେ କାଳଜୟୀ, ତାହା ନିଶ୍ଚିତ ଭାବେ ସ୍ମରଣୀୟ ହୋଇ ଉଠିବ । କେବଳ ଓଡ଼ିଆ, ସଂସ୍କୃତ ନୁହେଁ ତାଙ୍କର ମଧ୍ୟ ଇଂରାଜୀ ସାହିତ୍ୟରେ ଅଗାଧ ଅବଗାହନ ଅଛି । ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, କବିସୂର୍ଯ୍ୟ ଓ ଅଭିମନ୍ୟୁ ସାମନ୍ତସିଂହାରଙ୍କ ପ୍ରାଣ ସ୍ପର୍ଶୀ କବିତା/ସଙ୍ଗୀତ ପଂକ୍ତି ମାନଙ୍କର ସେ ଯେପରି ଚମତ୍କାର ଇଂରାଜୀ ଅନୁବାଦ କରିଛନ୍ତି; ତାହା ଅନନ୍ୟ ସାଧାରଣ ଓ ଅପ୍ରତିଦ୍ୱନ୍ଦ୍ୱୀ ।

## * ଡକ୍ଟର ରମାନାଥ ମହାନ୍ତି

(ବିଂଶ ଶତାବ୍ଦୀ)
୧୯୧୬—

କଟକ ଜିଲ୍ଲା ଅସୁରେଶ୍ୱର ଅନ୍ତର୍ଗତ ପାଙ୍କପୁର ଗ୍ରାମରେ ଶ୍ରୀ ରମାନାଥ ମହାନ୍ତି ୧୯୧୬ ମସିହା ସେପ୍ଟେମ୍ବର ୧ ତାରିଖ ଦିନ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୬ ବୈଦ୍ୟନାଥ ମହାନ୍ତି ଓ ମାତାଙ୍କ ନାମ ଶ୍ରୀମତୀ ଶଶୀସୁନ୍ଦରୀ ଦେବୀ । ପାଟଣା ବିଶ୍ୱବିଦ୍ୟାଳୟରୁ ଗଣିତରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଏମ୍. ଏସ୍. ସି. ପାଶ୍ କରିବା ପରେ ଗଣିତ ଅଧ୍ୟାପକ ଭାବେ ରେଭେନ୍‌ସା କଲେଜରେ ୧୯୩୬ ମସିହାରେ ନିଯୁକ୍ତି ପାଇଥିଲେ । ତତ୍ ପରବର୍ତ୍ତୀ ଅର୍ଥାତ୍ ୧୯୩୭ ମସିହାରେ ସେ ଦେବାନ ବାହାଦୁର

ଲକ୍ଷ୍ମୀଧର ମହାନ୍ତିଙ୍କ କନ୍ୟା ନିର୍ମଳା ମହାନ୍ତିଙ୍କୁ ବିବାହ କରିଥିଲେ । ୧୯୪୬ରୁ ୧୯୫୧ ମସିହା ପର୍ଯ୍ୟନ୍ତ ସେ ରେଭେନ୍‌ସା କଲେଜରେ ଗଣିତ ବିଭାଗର ରିଡର ହେଲେ । ୧୯୫୨ରୁ ୧୯୬୬ ପର୍ଯ୍ୟନ୍ତ ଗଣିତ ବିଭାଗର ମୁଖ୍ୟ ଅଧ୍ୟାପକ ତଥା ପ୍ରଫେସର ହୋଇଥିଲେ ।

୧୯୪୭ ମସିହା ଜାନୁଆରୀ ମାସରେ ଗଣିତରେ ଉଚ୍ଚ ଶିକ୍ଷା ପାଇଁ ବିଲାତ ଯାତ୍ରା କଲେ ଓ ଲଣ୍ଡନ ବିଶ୍ୱବିଦ୍ୟାଳୟରୁ ୧୯୪୮ ମସିହାରେ ଗଣିତରେ ପି. ଏଚ୍. ଡି. ଉପାଧି ଲାଭ କରି କଟକକୁ ପ୍ରତ୍ୟାବର୍ତ୍ତନ କଲେ ଓ ପୁଣି ରେଭେନ୍‌ସା କଲେଜରେ ଗଣିତ ବିଭାଗର ରିଡ଼ର ଭାବେ ଅବସ୍ଥାପିତ ହେଲେ । ୧୯୬୬ରୁ ୧୯୬୮ ମାର୍ଚ୍ଚ ପର୍ଯ୍ୟନ୍ତ ରେଭେନ୍‌ସା କଲେଜର ଅଧ୍ୟକ୍ଷ ପଦରେ ନିଯୁକ୍ତ ହେଲେ । ସେହି ୧୯୬୮ ମସିହାରେ ଛଅମାସ ପାଇଁ ଶିକ୍ଷା ବିଭାଗର ଡିରେକ୍ଟର ହେଲେ । ତା'ପରେ ସରକାରୀ କାର୍ଯ୍ୟରୁ ଅବସର ନେଲେ । ୧୯୬୮ ସେପ୍‌ଟେମ୍ବରରୁ ୧୯୭୧ ଜୁଲାଇ ପର୍ଯ୍ୟନ୍ତ ୟୁ.ଜି.ସି. ପ୍ରଫେସର ହେଲେ । ସେହି ୧୯୭୧ ମସିହାରେ ଦୁଇମାସ ପାଇଁ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳପତି ରୂପେ ନିଯୁକ୍ତ ହେଲେ । ପୁନଶ୍ଚ ୧୯୭୧ ନଭେମ୍ବରରୁ ୧୯୭୪ ଅଗଷ୍ଟ ପର୍ଯ୍ୟନ୍ତ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ ।

ଉତ୍କଳ ବିଶ୍ୱବିଦ୍ୟାଳୟ କୁଳପତି ପଦରୁ ଅବ୍ୟାହତି ନେଲା ପରେ ପୁଣି ଦୁଇବର୍ଷ ପର୍ଯ୍ୟନ୍ତ ୟୁ. ଜି. ସି. ପ୍ରଫେସର ହୋଇଥିଲେ । ୧୯୭୬ ମସିହାରୁ ୟୁ. ଜି. ସି. ପ୍ରଫେସର ପଦରୁ ଅବ୍ୟାହତି ନେଇ ସଂପ୍ରତି ସେ ତାଙ୍କ ନିଜ ରାଣୀହାଟସ୍ଥ ବାସଭବନରେ ଅବସ୍ଥାନ କରୁଛନ୍ତି ।

ଡକ୍‌ଟର ମହାନ୍ତି କହନ୍ତି ଯେ ଗଣିତ ଭଳି ଗୋଟିଏ ନୀରସ ବିଷୟକୁ ବାରମ୍ବାର ପଢ଼ାଇ ବା ଚର୍ଚ୍ଚା କରି ଜୀବନ ପୁରାପୁରି ନୀରସ ହୋଇ ପଡ଼ିଲା ବେଳେ, ତାକୁ ଟିକେ ସରସ କରିବା ପାଇଁ ସେ ସାହିତ୍ୟର ପଠନ, ଆଲୋଚନା ଓ ଚର୍ଚ୍ଚା ତଥା ଲେଖାଲେଖି କରିବାରେ କିଛି ସମୟ ବିତାଇଥାନ୍ତି । ବିଶେଷ କରି ପିଲାଦିନରୁ ଯୁବାବସ୍ଥାରୁହିଁ ସାହିତ୍ୟ ପ୍ରତି ତାଙ୍କର ଗଭୀର ମମତା ଓ ଅନୁରକ୍ତି ଥିଲା । ଓଡ଼ିଆରେ ତାଙ୍କର କେତେକ କବିତା / ଜଣାଣ/ଭଜନ ମାନ ସହକାର, ରେଭେନ୍‌ସାଭିଆନ, ହରିସଂକୀର୍ତ୍ତନ, ଜୟ ଜଗନ୍ନାଥ ପ୍ରଭୃତି ପତ୍ରିକା ମାନଙ୍କରେ ପ୍ରକାଶ ପାଇଛି । ଏହାଛଡ଼ା ଗଣିତ ସଂପର୍କୀୟ ବହୁ ଗବେଷଣାତ୍ମକ ଲେଖା ଭାରତ ଓ ଭାରତ ବାହାର ପତ୍ରିକା ମାନଙ୍କରେ ମଧ୍ୟ ପ୍ରକାଶ ପାଇଁ ତାଙ୍କୁ ଉଚ୍ଚ ସମ୍ମାନର ଅଧିକାରୀ କରିଛି ।

ତାଙ୍କର ବୁଢ଼ା ବାପା ବାଙ୍କନିଧି ମହାନ୍ତି (ଯାହାଙ୍କୁହିଁ ରାଧାରମଣ ଦେବ ସ୍ୱପ୍ନରେ ମନ୍ତ୍ର ପ୍ରଦାନ କରିଥିଲେ) ଙ୍କର ଧାର୍ମିକ ନୀତିନିଷ୍ଠା ଓ ବୈଷ୍ଣବୀୟ ଚିନ୍ତାଧାରା ତଥା

ଅଜା ରାଧାରମଣ ଦାସଙ୍କର ଗମ୍ଭୀର ସାହିତ୍ୟ ଓ ସଂସ୍କୃତ ଜ୍ଞାନ ଯୁବକ ରମାନାଥଙ୍କୁ ଓଡ଼ିଆ ସାହିତ୍ୟ, ସଂସ୍କୃତି, ଧର୍ମରେ ଅବଗାହନ କରିବାକୁ ବିଶେଷ ପ୍ରେରଣା ପୁଷ୍ଟି କରିଥିଲା ।

## * ତୁଳସୀ ଦାସ

(ବିଂଶ ଶତାବ୍ଦୀ)
୧୯୩୯—

କଟକ ଜିଲ୍ଲାସ୍ଥ କୁଜଙ୍ଗର ଅଧିକାରୀ ସାହିରେ ୧୯୩୯ ମସିହାରେ ତୁଳସୀ ଦାସଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ଅଧିକାରୀ ସଚ୍ଚିଦାନନ୍ଦ ଦାସ ଓ ମାତାଙ୍କ ନାମ ସୁରେଖା ଦେବୀ । ସେ ସଂସ୍କୃତ ଓ ହିନ୍ଦିରେ ଉଚ୍ଚ ଡିଗ୍ରୀ ପ୍ରାପ୍ତ । ସେ ସଂପ୍ରତି ଉତ୍କଳ ସାହିତ୍ୟ ସମାଜର ଆଜୀବନ ସଭ୍ୟା ଓ କୁଜଙ୍ଗ କଳାଶ୍ରୀ ସାହିତ୍ୟ ସଂସଦର ପ୍ରତିଷ୍ଠାତ୍ରୀ । ପ୍ରଜାତନ୍ତ୍ର ପ୍ରଚାର ସମିତି ଆୟୋଜିତ "ବିଷୁବ ମିଳନ"ରେ ସେ ତାଙ୍କର ଲେଖା ପାଇଁ ପୁରସ୍କୃତ ହୋଇଛନ୍ତି । ୧୯୭୬ ମସିହା ଜାନୁୟାରୀ ମାସରେ ନୂଆ ଦିଲ୍ଲୀରେ ଅନୁଷ୍ଠିତ ସର୍ବ ଭାରତୀୟ କବି ସମ୍ମିଳନୀରେ ସେ ପ୍ରଥମ ନାରୀ ଲେଖିକା ହିସାବରେ ଓଡ଼ିଶାରୁ ପ୍ରତିନିଧିତ୍ୱ କରିଥିଲେ । ଆଡ୍‌ଭୋକେଟ ଚୌଧୁରୀ ପ୍ରଫୁଲ୍ଲ କୁମାର ଦାସଙ୍କୁ ସେ ବିବାହ କରିଥିଲେ । ତାଙ୍କର ସ୍ୱାମୀ ଆଡ୍‌ଭୋକେଟ ଦାସ ମଧ୍ୟ ଜଣେ ସାହିତ୍ୟିକ । ତାଙ୍କର ପ୍ରକାଶିତ ସାହିତ୍ୟ କୃତି ମାନଙ୍କ ମଧ୍ୟରେ ଅର୍ଘ୍ୟ (କବିତା), ତୀର୍ଥ ସଲିଳା (କବିତା), ଆଦ୍ୟରଶ୍ମି (କବିତା) ଝଡ଼ର ଝଙ୍କାର (କବିତା) କୁନି (କବିତା), (ପିଲାଙ୍କ କବିତା) ସ୍ମୃତି ଶୃଙ୍ଖଳ (କବିତା) ଠିଆ ପୁଚି ନାରଙ୍ଗ (କବିତା) ଝୁଲରେ ହାତୀ ଝୁଲ (କବିତା) ସ୍ୱର୍ଗ ଗରଳ (ଉପନ୍ୟାସ) ପଦ୍ମପାନ (ଉପନ୍ୟାସ) ଭିଟାମାଟି (ନାଟକ), ଛଅପୋଇ (ନାଟିକା) ପ୍ରଭୃତି ପ୍ରଧାନ ।

## * ଗୌର ପଟ୍ଟନାୟକ

(ବିଂଶ ଶତାବ୍ଦୀ)
୧୯୪୪—

ଗଞ୍ଜାମ ଜିଲ୍ଲାର ଶେରଗଡ଼ ଠାରେ ୧ । ୧ । ୧୯୪୪ରେ ଗୌର ପଟ୍ଟନାୟକଙ୍କର ଜନ୍ମ । ତାଙ୍କ ପିତାଙ୍କ ନାମ ଦିବାକର ପଟ୍ଟନାୟକ ଓ ମାତାଙ୍କ ନାମ ହିରଣ୍ମୟୀ ଦେବୀ । ସେ ମୁଖ୍ୟତଃ କବି, ଗାଳ୍ପିକ ଓ ଗୀତିକାର, ତାଙ୍କର ଆଭାସ ଗଳ୍ପ ଓ ସାଙ୍କେତିକ ଗଳ୍ପ

ଗୁଡ଼ିକ ବିଶେଷ ଭାବେ ସ୍ମରଣୀୟ । ତାଙ୍କର ବହୁ ଗଳ୍ପ, କବିତା ଓ ଗୀତିକା ବେତାର ମାଧ୍ୟମରେ ପ୍ରସାରିତ ।

ଅମର ପ୍ରେମ, ସୁବର୍ଣ୍ଣ ସୀତା, ସ୍ୱପ୍ନ, ମୋହ, ମାଣିକ, ମଥୁରା ବିଜୟ, ଅଲିଭା ଦାଗ, ଜଗନ୍ନାଥ ମେଳା, ଅପରିଚିତା, ଏକ ରଜନୀ ଗଂଧା ଓଡ଼ିଆ ଚଳଚ୍ଚିତ୍ର ମାନଙ୍କର ଗୀତିକାର । ତାଙ୍କର ପ୍ରକାଶିତ ରଚନା ଗୁଡ଼ିକ ହେଲା — ଅମାବାସ୍ୟା (ଗଳ୍ପ ସଂକଳନ) ବିଶ୍ଳେଷଣ (ଗଳ୍ପ ସଂକଳନ) ଏବଂ (ଗଳ୍ପ ସଂକଳନ), ଅନୁତାପ (ନାଟକ, ଗୀତିକା (ସଂଗୀତ) । ସଂପ୍ରତି ସେ ଉତ୍କଳ ସାହିତ୍ୟ ସମାଜର କାର୍ଯ୍ୟକାରୀ ସଭ୍ୟ ।

### * ଅଧ୍ୟାପିକା ଶ୍ରୀମତୀ ମନୋରମା ରଥ (ମହାପାତ୍ର)

(ବିଂଶ ଶତାବ୍ଦୀ

୧୯୩୪—

କଟକ ଜିଲ୍ଲା ଆଠଗଡ଼ରେ ଶ୍ରୀମତୀ ମନୋରମା ରଥ (ମହାପାତ୍ର) ୧୯୩୪ ମସିହା ଜୁନ୍ ୧୦ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଶ୍ରୀ ରାଧାନାଥ ରଥ (ସଂପାଦକ ସମାଜ) ଓ ମାତାଙ୍କ ନାମ ଶ୍ରୀମତୀ ସାବିତ୍ରୀ ରଥ ।

୧୯୫୦ ମସିହାରେ ଶ୍ରୀ ପଦ୍ମାରବିନ୍ଦ ମହାପାତ୍ର ଆଇ. ଏଫ. ଏସ୍ଙ୍କୁ ବିବାହ କରନ୍ତି । ସେ ଅର୍ଥନୀତିରେ ଏମ. ଏ ଓ ସଂପ୍ରତି ରେଭେନ୍ସା କଲେଜରେ ଅର୍ଥନୀତି ବିଭାଗର ଅଧ୍ୟାପିକା । ସେ କ୍ରମାଗତ ଭାବେ ୧୯୫୪ ମସିହାରୁ ପ୍ରବନ୍ଧ, ଗଳ୍ପ, କବିତା, ରମ୍ୟ ରଚନା ନାଟକ ରଚନା କରି ଆସୁଛନ୍ତି । ତାଙ୍କର ପ୍ରକାଶିତ ଗ୍ରନ୍ଥ ଗୁଡ଼ିକ ହେଲା—୧୯୭୦ରେ ଜୁଆର ଯେଉଁଠି ଉଠେ (କବିତା), ୧୯୭୩ରେ ଏ ପୃଥିବୀ ଶରଶଯ୍ୟା (ଗଳ୍ପ), ୧୯୭୭ରେ ବିରାଡ଼ି ମାନଙ୍କର ଅନଶନ (ଶିଶୁ ଗଳ୍ପ), ରତ୍ନଦୀପ) (ଅନୁବାଦ ଶିଶୁ ସାହିତ୍ୟ) । ୧୯୫୮ରେ ପ୍ରଜାତନ୍ତ୍ର ନାରୀ ଜଗତ, ୧୯୭'ରେ ରବିବାର ପ୍ରଜାତନ୍ତ୍ର, ୧୯୬୭ ମସିହାରେ ଝଂକାର ପକ୍ଷରୁ ତାଙ୍କର ଲେଖା ପାଇଁ ପୁରସ୍କୃତ ହୋଇଥିଲେ । ଜଣେ ସୁବକ୍ତା ଭାବରେ ଶ୍ରୀମତୀ ମହାପାତ୍ର ସୁଖ୍ୟାତି ଅର୍ଜ୍ଜନ କରିଛନ୍ତି । ସଂପ୍ରତି ସେ ଉତ୍କଳ ସାହିତ୍ୟ ସମାଜର କାର୍ଯ୍ୟକାରୀ ସଭ୍ୟ ।

## * ଶ୍ରୀ ଶଙ୍କର୍ଷଣ ମଙ୍ଗରାଜ

(ବିଂଶ ଶତାବ୍ଦୀ)
୧୯୪୩—

ପୁରୀ ଜିଲ୍ଲା ଟାଙ୍ଗି ଥାନା ଅନ୍ତର୍ଗତ ଚିଲିକା କୂଳବର୍ତ୍ତୀ ତରପି ଗ୍ରାମରେ ୧୯୪୩ ମସିହା ମଇମାସ ୧୭ ତାରିଖରେ ଶ୍ରୀ ଶଙ୍କର୍ଷଣ ମଙ୍ଗରାଜ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଶ୍ରୀ ନଟବର ମଙ୍ଗରାଜ ଓ ମାତାଙ୍କ ନାମ ୬ ଚନ୍ଦ୍ରମଣି ଦେବୀ । ଓଡ଼ିଆ ଭାଷା ସାହିତ୍ୟରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଏମ୍. ଏ. ଓ ବି. ଇଡ୍. ଏବଂ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ ସାମ୍ବାଦିକତାରେ Bachelor of journalism ପାସ୍ କରିଛନ୍ତି । ସେ ବର୍ତ୍ତମାନ ବେତାର କେନ୍ଦ୍ରର ଏକ କର୍ମଚାରୀ ଭାବେ ବିବିଧ ଭାରତୀ କଟକରେ ଅବସ୍ଥାପିତ ଉତ୍କଳ ସାହିତ୍ୟ ସମାଜ, ଉତ୍କଳ ନାଟ୍ୟସଂଘ, ଓଡ଼ିଆ ଯୁବ ଲେଖକ ସମ୍ମେଳନର ସେ ଆଜୀବନ ସଦସ୍ୟ । ମାସିକ "ଦିବ୍ୟ ସନ୍ଦେଶ" ପତ୍ରିକାର ପରିଚାଳନା ସମ୍ପାଦକ । ଏହାଛଡ଼ା ସେ ଆକାଶବାଣୀର ନାଟକ ଲେଖକ, ଗୀତିକାର ଏବଂ ସାହିତ୍ୟ ସମାଲୋଚକ । ବିଶେଷ କରି ବିବିଧ ଭାରତୀ କଟକର ଲୋକପ୍ରିୟ କାର୍ଯ୍ୟକ୍ରମ "ରସଧାରା"ର ନିୟମିତ ଲେଖକ ଓ ପରିବେଷକ । ଏହାଛଡ଼ା ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ଗଳ୍ପ, କବିତା ଆଲୋଚନାର ନିୟମିତ ଲେଖକ । ତାଙ୍କର ପ୍ରକାଶିତ କବିତା ଗ୍ରନ୍ଥ ହେଲା—

(୧) ହାଡ଼ ହାତ ଓ ହୃଦୟର ସାହିତ୍ୟ ।
(୨) ଲିରିକ୍ ବାଗ୍ରାର ଏପିକ୍ ଓଡ଼ିଆର
(୩) ପାଞ୍ଚଣର ପରଓ୍ୱାନା
(୪) ଶହୀଦ ପ୍ରଦୀପମାର୍ଗ

ଏବେ ବି ତାଙ୍କ ରଚିତ ଆଲୋଚନା ଗ୍ରନ୍ଥ କବି ଗୋପାଳକୃଷ୍ଣଙ୍କ ପ୍ରତିଭା ଓ ନାଟକ ଫାଶୀ ପ୍ରକାଶ ଆପେକ୍ଷାରେ ।

## * ଶ୍ରୀ ବଂଶୀଧର ମିଶ୍ର

(ବିଂଶ ଶତାବ୍ଦୀ)
୧୯୩୧—

୧୯୩୧ ମସିହା ଜୁନ ୨୦ ତାରିଖରେ କଟକ ଜିଲ୍ଲା ପାଟକୁରା ଥାନା କଲଦିଆ ଶାସନସ୍ଥ ପଡ଼ାନଈ ଗ୍ରାମରେ ଶ୍ରୀ ବଂଶୀଧର ମିଶ୍ରଙ୍କ ଜନ୍ମ । ତାଙ୍କ ପିତାଙ୍କ

ନାମ ପଣ୍ଡିତ ସୋମନାଥ ମିଶ୍ର ଓ ମାତାଙ୍କ ନାମ କ୍ଷେତ୍ରମଣି ଦେବୀ । ବାଲ୍ୟକାଳରୁ ସେ କୁଜଙ୍ଗସ୍ଥ ସନ୍ତରା ଗ୍ରାମରେ ସ୍ଥାୟୀ ଭାବରେ ବସବାସ କରୁଥିଲେ । ସେ ବର୍ତ୍ତମାନ କଟକର ରେଭେନ୍ୟୁ କମିଶନର ଅଫିସରେ ଜଣେ କର୍ମଚାରୀ ଭାବେ ଅବସ୍ଥାପିତ ।' ତାଙ୍କର ରଚନାମାନଙ୍କ ମଧ୍ୟରେ 'ସରଗରଣୀ' ଶ୍ରଦ୍ଧାଞ୍ଜଳି, ଗାଦମହାତ୍ମ୍ୟ, 'ଉତ୍ତାରକା ପଥେ' କବିତା ପୁସ୍ତକମାନ ପ୍ରକାଶ ପାଇଛି ।

## * କଳାବତୀ ଦେବୀ

(ବିଂଶ ଶତାବ୍ଦୀ)
୧୯୪୦—

କଳାବତୀ ୧୯୪୦ ମସିହାରେ କଟକ ଜିଲ୍ଲାର ଏରସମା ନିକଟବର୍ତ୍ତୀ ସାଗ୍‌ବରିଆରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ବୀରକିଶୋର ସାମନ୍ତରାୟ ଓ ମାତାଙ୍କ ନାମ ହେମନ୍ତ କୁମାରୀ ଦେବୀ । ୧୯୫୭ ମସିହାରେ ଔପନ୍ୟାସିକ ପରମାନନ୍ଦ ଅଧିକାରୀଙ୍କ ସହ ତାଙ୍କର ବିବାହ ହୁଏ । ଏ ଯାବତ୍ ତାଙ୍କର ଦୁଇଖଣ୍ଡି ପୁସ୍ତକ ପ୍ରକାଶ ପାଇଛି ଓ ଅନ୍ୟାନ୍ୟ ବହୁ ଲେଖା ପାଣ୍ଡୁଲିପି ଅବସ୍ଥାରେ ରହିଛି । ତାଙ୍କର ପ୍ରକାଶିତ ଦୁଇଟି ପୁସ୍ତକ ହେଲ—ସୁନା ପିଲଙ୍କ ସୁଆଦିଆ ଗଳ୍ପ ଓ ଗଳ୍ପ ଲୁହେଁ ଅମୃତ ।

## * ଶ୍ରୀ ପ୍ରେମାନନ୍ଦ କର

(ବିଂଶ ଶତାବ୍ଦୀ)
୧୯୪୭—

୧୯୪୭ ମସିହା ଚୈତ୍ର ପୂର୍ଣ୍ଣିମୀରେ ଶ୍ରୀ ପ୍ରେମାନନ୍ଦ କର କଟକ ଜିଲ୍ଲା ଅନ୍ତର୍ଗତ ମାହାଙ୍ଗା ଥାନା ଗୃଣ୍ଠୀ ପାଳରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ୰ ନୀଳକଣ୍ଠ କର ଓ ମାତାଙ୍କ ନାମ ଉମା ଦେବୀ । ଆଠ ବର୍ଷ ବୟସରେ ପିତାଙ୍କର ଦେହାବସାନ ହୋଇଥିଲା । ବହୁ ଘାତ ପ୍ରତିଘାତ ସତ୍ତ୍ୱେ ଭାଇମାନଙ୍କ ଦ୍ୱାରା ସେ ଲାଳିତ ପାଳିତ । ବିଜ୍ଞାନରେ ବିଶ୍ୱବିଦ୍ୟାଳୟ ଡିଗ୍ରୀ ଲାଭ ଏବଂ ସାଧାରଣ ପ୍ରଶାସନରେ ଉପାଧି ଲାଭ କରି ସମ୍ପ୍ରତି ଓଡ଼ିଆ ଏମ୍. ଏ. ଛାତ୍ର ଓ ଜଣେ ସଙ୍ଗୀତ ଶିଳ୍ପୀ । ସଙ୍ଗୀତର ଉତ୍ତରୋତ୍ତର ସାଧନା ପାଇଁ ସେ ନ୍ୟାସନାଲ ମ୍ୟୁଜିକ୍ ଆସୋସିଏସନରେ ଛାତ୍ର ରୂପେ ଅଦ୍ୟାବଧି ସଙ୍ଗୀତ ଶିକ୍ଷାରତ ଏବଂ ଓଡ଼ିଶାର ବିଶିଷ୍ଟ ସଙ୍ଗୀତଜ୍ଞ ଶ୍ରୀ ପର୍ଶୁରାମେଶ୍ୱର ଜେନା ତାଙ୍କ ସଙ୍ଗୀତ ସାଧନାର ଗୁରୁ । ପୂର୍ବରୁ ପ୍ରକାଶ ପାଉଥିବା ଧଉଳି ସାହିତ୍ୟ ପତ୍ରିକାର

ସେ ପରିକଳ୍ପନା ସମ୍ପାଦକ ତଥା ପ୍ରକାଶକ । ତାଙ୍କର ଅନେକ ଗୀତ,ସନେଟ୍, ଆଧୁନିକ କବିତାମାନ ପ୍ରଜାତନ୍ତ୍ର, କଳିଙ୍ଗ,ଅବିନ ପତ୍ର ବନଜ୍ୟୋତ୍ସ୍ନା, ମୀନାବଜାର କଣିଥ ସୂର୍ଯ୍ୟ, ହେ ମରଣ ଜୟୀରେ ପ୍ରକାଶିତ । ସେ ଏ ଅବଧି ବହୁ ସଙ୍ଗୀତ/ଜଣାଣ/ଭଜନର ରଚୟିତା । ତାଙ୍କର ସମସ୍ତ ଲେଖା ଏ ପର୍ଯ୍ୟନ୍ତ ଅପ୍ରକାଶିତ ଅବସ୍ଥାରେ ରହିଛି । ଦୁଇଟି ଆଧୁନିକ କବିତା ଗ୍ରନ୍ଥ "ପଶ୍ଚାଦ୍ଧ ଓ ଅନେକ କଦମ୍ବ" ପ୍ରକାଶ ଅପେକ୍ଷାରେ । ବର୍ତ୍ତମାନ ସେ କଟକ ବଡ଼ାବାସୀରେ ତାଙ୍କର ଜ୍ୟେଷ୍ଠଭ୍ରାତା ଶ୍ରୀ ରବୀନ୍ଦ୍ରନାଥ କରଙ୍କ ସହ ଅବସ୍ଥାନ କରୁଛନ୍ତି ।

## * ସୁଜାତା ମହାନ୍ତି

(ବିଂଶ ଶତାବ୍ଦୀ)

୧୯୪୭—

କଟକ ଜିଲ୍ଲା ଯାଜପୁର ସବ୍‌ଡିଭିଜନ ନିକଟବର୍ତ୍ତୀ କୃଷ୍ଣାଳି ଗ୍ରାମରେ ୧୯୪୭ ମସିହାରେ ସୁଜାତା ମହାନ୍ତି ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ବନମାଳୀ ପଟ୍ଟନାୟକ ଓ ମାତାଙ୍କ ନାମ ଶୈଳବାଳା ପଟ୍ଟନାୟକ । ସେ ଷଷ୍ଠ ଶ୍ରେଣୀରେ ପାଠ ପଢ଼ୁଥିଲା ବେଳେ ତାଙ୍କର ପ୍ରଥମ କବିତା "କୁଆଁ ର ପୁନେଇ" ସ୍କୁଲ ପତ୍ରିକାରେ ପ୍ରକାଶିତ ହୋଇଥିଲା । ତା'ପରେ ଏକାଦଶ ଶ୍ରେଣୀ ଯାଏ ପଢ଼ିବା ପର୍ଯ୍ୟନ୍ତ ତାଙ୍କର କବିତା ପ୍ରଜାତନ୍ତ୍ର, କଲ୍ୟାଣୀ, ଜନତା, ପ୍ରଭୃତିରେ ପ୍ରକାଶ ପାଇଥିଲା । ୧୯୬୩ ମସିହାରେ ସେ ସାହିତ୍ୟିକ ବ୍ରଜମୋହନ ମହାନ୍ତିଙ୍କୁ ବିବାହ କଲେ । ଏହା ପରେ ପରେ ତାଙ୍କର ପ୍ରଥମ କବିତା ପୁସ୍ତକ "କନକ ଦୁର୍ଗା" ଓ ଦ୍ୱିତୀୟ କବିତା ପୁସ୍ତକ "ଧରା ସ୍ୱର୍ଗ" ସୌଦାମିନି ମହାନ୍ତି ନାମରେ ପ୍ରକାଶ ପାଇଥିଲା । ଆଜି ପର୍ଯ୍ୟନ୍ତ ସେ ଧାରାବାହିକ ଭାବରେ ବହୁ ଲେଖା ଯଥା ଜଗନ୍ନାଥ ଚରିତ, କେଶବତୀ କନ୍ୟା ଏବଂ ଅନ୍ୟାନ୍ୟ ବହୁ ଶିଶୁ କବିତା, ଆଧୁନିକ କବିତା ଓ ସଙ୍ଗୀତ ରଚନା କରିଛନ୍ତି । ତାଙ୍କର ଏ ସମସ୍ତ କବିତା ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇଛି । ଏତଦ୍ ବ୍ୟତୀତ ଭଗବାନଙ୍କର ଚବିଶ ଅବତାର, କବି ମଧୁସୂଦନ ଓ ଗୁଣିକେ ଗୁଣିବେ ଇତ୍ୟାଦି ବହୁ ପ୍ରବନ୍ଧ ମଧ୍ୟ ସେ ରଚନା କରିଛନ୍ତି । ଆଶୁ କବିତା ରଚନାରେ ସେ ମଧ୍ୟ ସିଦ୍ଧହସ୍ତ ।

## * ଶ୍ରୀ ରାମକୃଷ୍ଣ ପାଢ଼ୀ

(ବିଂଶ ଶତାବ୍ଦୀ)

୧୮୯୮—୧୯୫୧

କଟକ ଜିଲ୍ଲା ଯାଜପୁର ସବ୍‌ଡିଭିଜନସ୍ଥ ସିଦ୍ଧେଶ୍ୱର ଗ୍ରାମରେ ରାମକୃଷ୍ଣ ପାଢ଼ୀ ୧୮୯୮ ମସିହାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଶ୍ରୀ କଣାକର ପାଢ଼ୀ

ତାଙ୍କ ପରିବାରର ଅବସ୍ଥା ସ୍ୱଚ୍ଛଳ ନ ଥିଲା । ତେଣୁ ଅଭାବ ଅନାଟନରେ ତାଙ୍କୁ ଜୀବନ ଅତିବାହିତ କରିବାକୁ ପଡ଼ିଥିଲା । ତଥାପି ଏହି ଘୋର ଦାରିଦ୍ର୍ୟ ମଧ୍ୟରେ ହିଁ ରାମକୃଷ୍ଣ ପ୍ରାଥମିକ ଶିକ୍ଷା ଲାଭ ପରେ ରାମବାଗ ମାଇନର ସ୍କୁଲରେ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ପଢ଼ିଥିଲେ । ଘରେ ରହି ଆଉ ଅଧିକ ପାଠ ପଢ଼ିବାର ସୁଯୋଗରୁ ବଞ୍ଚିତ ହେବେ ବୋଲି ନିଶ୍ଚିତ ଜାଣି ପାରିଲା ପରଠାରୁ, ସେ ତାଙ୍କ ସିଦ୍ଧେଶ୍ୱର ଗ୍ରାମର ପୀଠ ଦେବୀ ସିଦ୍ଧିଦାତ୍ରୀଙ୍କ ଆଶୀର୍ବାଦ ବହନ କରି ତାଙ୍କ ଉଚ୍ଚତର ଶିକ୍ଷା ଲାଭ କରିବା ପାଇଁ ଘର ଛାଡ଼ି କଲିକତା ଗଲେ । ଉଚ୍ଚ ଶିକ୍ଷା ପାଇବାର କି କଠୋର ପ୍ରଚେଷ୍ଟା, କି ଅସୀମ ଧୈର୍ଯ୍ୟ । ପାଖରେ ଧନ ନାହିଁ କିନ୍ତୁ ପାଠ ପଢ଼ିବା ପାଇଁ ଖୁବ୍ ଝୁଙ୍କ...ଖୁବ୍ ମନ । କଥା ଅଛି ଦୃଢ଼ ମନା ହେଲେ ସବୁକଥା ଆପେ ଆପେ ଫଳବତୀ ହୋଇଥାଏ । ରାମକୃଷ୍ଣ ଆର୍ଥିକ ଦିଗରୁ ବହୁ ଅଭାବ ଅସୁବିଧାର ସମ୍ମୁଖୀନ ହେଲେ--ତଥାପି ପାଠ ପଢ଼ିବା ପାଇଁ ତାଙ୍କର ମନବଳ ସେହିପରି ଅତୁଟ । ଏପରି କି ସେ ନିଜର ପାଠପଢ଼ା ପାଇଁ କଲିକତାରେ ଯେତେଇଆ କାମ କରି, ସେହି ଉପାର୍ଜନରେ ବି: ଏ: ପାଶ୍ କଲେ ଓ ସଂସ୍କୃତରେ କାବ୍ୟ ବ୍ୟାକରଣ ତୀର୍ଥ ଉପାଧି ଲାଭ କରିଥିଲେ ।

ଯେତେବେଳେ ସେ କଲିକତା କଲେଜର ଛାତ୍ର, ସେତେବେଳେ ରବୀନ୍ଦ୍ରନାଥଙ୍କ କବିତା ତାଙ୍କୁ ବିଶେଷ ଭାବେ ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ କରିଥିଲା । ତେଣୁ ସେ ପ୍ରଥମେ ବଙ୍ଗଳା ଭାଷାରେ କବିତା ଲେଖା ଆରମ୍ଭ କଲେ । ସେତେବେଳେ ବଙ୍ଗଳାର ଯୁବ ଲେଖକ ଧୀରେନ୍ଦ୍ର ଲାଲ ଧର, 'ସ୍ମରଣି' 'ବିଶ୍ୱଦୂତ'ର ସମ୍ପାଦକ ଧୀରେନ୍ଦ୍ର ସୁନ୍ଦର ଚଟ୍ଟୋପାଧ୍ୟାୟ ତାଙ୍କର କଲେଜ ବନ୍ଧୁ । ସେଇ ଦୁଇବନ୍ଧୁ ରାମକୃଷ୍ଣଙ୍କ କବିତା ରଚନାରେ ବିଶେଷ ପରିଚୟ ପାଇ ତାଙ୍କୁ ଏ କ୍ଷେତ୍ରରେ ଅଗ୍ରସର ହେବା ପାଇଁ ବାରମ୍ବାର ପ୍ରେରଣା ଦେଇ ଆସୁଥିଲେ । ବଙ୍ଗଳା ସାପ୍ତାହିକ ପତ୍ରିକା 'ଅବତାର'ର ସମ୍ପାଦକ ଅମୂଲ୍ୟସେନ ଶ୍ରୀ ପାତ୍ରୀଙ୍କୁ ମଧ୍ୟ କବିତା ରଚନା କ୍ଷେତ୍ରରେ ବିଶେଷ ଭାବରେ ଉତ୍ସାହ ପ୍ରଦାନ କରିଥିଲେ ଓ ତାଙ୍କ ସମ୍ପାଦିତ ପତ୍ରିକାରେ ଶ୍ରୀ ପାତ୍ରୀଙ୍କ ରଚିତ ବହୁ ବଙ୍ଗଳା କବିତା ପ୍ରକାଶ କରିଥିଲେ । ଏହା ପରେ ପରେ 'ନାୟକ' 'ସଂକଳ୍ପ' 'ବାତାୟନ' ନବଶକ୍ତି, ପାଞ୍ଚଜନ୍ୟ ପ୍ରଭୃତି ସାପ୍ତାହିକ, 'ପ୍ରବର୍ତ୍ତକ' ପାକ୍ଷିକ 'ସ୍ମରଣୀ' 'ବିଦ୍ୟୁତ୍' 'ଅଞ୍ଜଳି' 'ଅର୍ଚ୍ଚନା' 'କୁରୁକ୍ଷେତ୍ର' 'ଫାଲଗୁନୀ' 'ଧୂର୍ଜଟି' 'ଦେଶବନ୍ଧୁ' ପ୍ରଭୃତି ମାସିକ ବଙ୍ଗଳା ପତ୍ରିକାମାନଙ୍କରେ ବଙ୍ଗଳା ଭାଷାରେ ଲିଖିତ ତାଙ୍କର ବହୁ ବଙ୍ଗଳା କବିତା ଧାରାବାହିକ ଭାବେ ପ୍ରକାଶ ପାଉଥିଲା । ପୁନଶ୍ଚ ବଙ୍ଗଳାର ବିଶିଷ୍ଟ ସାହିତ୍ୟ ପତ୍ରିକା 'ବସୁମତୀ' 'ବିଚିତ୍ର', 'ପଞ୍ଚପୁଷ୍ପ' 'ବଙ୍ଗଲକ୍ଷ୍ମୀ' ପ୍ରଭୃତିରେ ତାଙ୍କର ଲେଖା ପ୍ରକାଶ ପାଇଲା ପରଠାରେ ସେ ବଙ୍ଗ ସାହିତ୍ୟରେ ଜଣେ ପ୍ରତିଷ୍ଠିତ କବି ଭାବେ ପରିଚିତ ହେଲେ ।

ତତ୍କାଳୀନ ବଙ୍ଗଳାର ପ୍ରକାଶିତ ଶିଶୁ ସାହିତ୍ୟ ପତ୍ରିକା 'ଖୋକାଖୁକୁ' 'ମାସପୟେଲ' 'ଶିଶୁସାଥୀ' 'ନବଅଂଲେକ' 'ସାଙ୍କ' 'ପାପିୟା' ପ୍ରଭୃତି ମାନଙ୍କରେ ସେ ଶିଶୁ ଉପଯୋଗୀ ଗଳ୍ପ, କବିତା, ପ୍ରବନ୍ଧ ଓ ସ୍ୱହସ୍ତାଙ୍କିତ ଚିତ୍ରମାନ ପ୍ରକାଶ କରି ଅତୀବ ଖ୍ୟାତି ଅର୍ଜନ କରିଥିଲେ । ସେହି ସମୟରେ ମଧ୍ୟ ସେ ରାମକୃଷ୍ଣ ଦେବ ଶର୍ମା ନାମରେ ତାଙ୍କର କେତେଖଣ୍ଡି ବଙ୍ଗଳା କବିତା ପୁସ୍ତକ ପ୍ରକାଶ ପାଇଥିଲା । କେବଳ ବଙ୍ଗଳା ଭାଷା କି ଓଡ଼ିଆ ଭାଷା ନୁହେଁ, ସତରଟି ଭାଷାରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ଓ ସେ ସେହି ସତରଟି ଭାଷାରେ ମଧ୍ୟ କବିତା ଲେଖି ପାରୁଥିଲେ । ସେ ଜଣେ ଉଚ୍ଚକୋଟୀର ଆଶୁ କବି ଥିଲେ ଓ ଯେ କୌଣସି ବିଷୟବସ୍ତୁ ଉପରେ ସେ ହଠାତ୍ କବିତା ରଚନା କରି ନିଜର ପ୍ରଚଣ୍ଡ ପ୍ରତିଭାର ପରିଚୟ ପ୍ରଦାନ କରିଥିଲେ । ବିଶେଷ କରି ୧୯୩୩ ମସିହାରେ ବିଭିନ୍ନ ଭାଷାରେ ଭାରତର ବିଭିନ୍ନ ପତ୍ରିକାରେ କବିତା/ଲେଖାମାନ ପ୍ରକାଶ ପାଇଲା ପରେ ସେ ଜଣେ ଉଚ୍ଚକୋଟୀର ଲେଖକ ଭାବେ ସମ୍ମାନ ଅର୍ଜନ କଲେ । କଲିକତାରେ ସେତେବେଳେ ରହୁଥିବା ନବକିଶୋର ମିଶ୍ର ଡାକ୍ତର ବଳଭଦ୍ର ରଥ, ଓ କବି ସଚ୍ଚିଦାନନ୍ଦ ରାଉତରାୟ ପ୍ରଭୃତି ଶ୍ରୀ ପାଢ଼ୀଙ୍କୁ ଓଡ଼ିଆ ଭାଷାରେ କବିତା ଲେଖିବାକୁ ବିଶେଷ ଅନୁରୋଧ କରିବା ସଙ୍ଗେ ସଙ୍ଗେ ଗଭୀରଭାବେ ଉତ୍ସାହିତ କରିଥିଲେ । ଏହାଫଳରେ ସେତେବେଳେ ପ୍ରକାଶ ପାଇଥିବା "ଉତ୍କଳ ସାହିତ୍ୟ" ସହକାର, ପଲ୍ଲୀମଙ୍ଗଳ, ଯୁଗବାଣୀ, ନବୀନ ପ୍ରଭୃତି ପତ୍ରିକାରେ ବହୁ ଓଡ଼ିଆ କବିତା ପ୍ରକାଶ କରିଥିଲେ । ତତ୍କାଳୀନ ତାଙ୍କ ରଚିତ ପ୍ରକାଶିତ ଓଡ଼ିଆ କବିତା "ମାଟି ଓ ଗନ୍ଧ" "ବିନା" "ହୃଦୟ ତୀର୍ଥ" "ଧରଣୀ ଛାଡ଼ିବି ଯେବେ" ପ୍ରଭୃତି କବିତା ଉତ୍କଳ ସାହିତ୍ୟରେ ଏକ ଆଲୋଡ଼ନ ସୃଷ୍ଟି କରିଥିଲା । ୧୯୩୫ରୁ ୧୯୩୬ ବେଳକୁ ତାଙ୍କର ଉତ୍ସାହ ଦାତା ବନ୍ଧୁମାନେ କଲିକତା ଛାଡ଼ି ନିଜ ଜନ୍ମ ମାଟିକୁ ଫେରି ଆସିବାରୁ ତାଙ୍କର ଓଡ଼ିଆ କବିତା ଲେଖାରେ ଉତ୍ସାହ ଓ ସ୍ପୃହା କ୍ରମଶଃ କମି ଆସିଲା । ପୁନଶ୍ଚ ୧୯୩୭ ମସିହାରେ ପିତାଙ୍କ ଦେହାନ୍ତ ହେବାରୁ ସେ କଲିକତା ଛାଡ଼ି ନିଜ ଭିଟା ମାଟି ସିଦ୍ଧେଶ୍ୱର ପୁରକୁ ଫେରି ଆସି ସେଇଠି ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ବସବାସ କରି ରହିଲେ ଓ ସଂସାର ଜଞ୍ଜାଳରେ ବେଳକୁ ବେଳ ଘାଣ୍ଟି ହେବାକୁ ଲଗିବାରୁ ସାହିତ୍ୟ ସାଧନାର ଜୁଆରରେ ବର୍ଷେ ଦୁଇବର୍ଷ ପର୍ଯ୍ୟନ୍ତ ଭଟ୍ଟା ପଡ଼ିଗଲା । ୧୯୪୧ ମସିହାରେ ପୁଣି ନୂତନ ଉତ୍ସାହ ଓ ଉନ୍ମାଦନାରେ ସେ କବିତା ଲେଖାଲେଖି ପ୍ରତି ମନୋନିବେଶ କଲେ । ଯାହା ଫଳରେ କି ସେହି ବର୍ଷ ତାଙ୍କର ଅମର ଲେଖନୀରୁ "ସୁବର୍ଣ୍ଣ ଲେଖା" କବିତା ପୁସ୍ତକ ପ୍ରକାଶ କଲେ ଓ ବହୁ ବର୍ଷ ଧରି ଏହି 'ସୁବର୍ଣ୍ଣଲେଖା' କବିତାଗ୍ରନ୍ଥ ମାଟ୍ରିକୁଲେସନ ଶ୍ରେଣୀର ପାଠ୍ୟପୁସ୍ତକ ରହି ଆସିଥିଲା । ତାଙ୍କ ରଚିତ "ଅବଧୂତ ଗୀତା" ମଧ୍ୟ ଏ କ୍ଷେତ୍ରରେ ସ୍ମରଣୀୟ ।

ଶ୍ରୀ ପାଢ଼ୀ ରାମବାଗ, ବରଜା ଓ ପ.ଜପୁର ହାଇସ୍କୁଲ ମାନଙ୍କରେ ଶିକ୍ଷକତା ଙ୍କର ଜୀବନର ଶେଷମୁହୂର୍ତ୍ତ ପର୍ଯ୍ୟନ୍ତ ସେହି ଶିକ୍ଷକ ଜୀବନରୁ ଅର୍ଜିତ ଧନରେ ନିଜ ସଂସାରର ଭରଣ ପୋଷଣ କରୁଥିଲେ । ହଠାତ୍ ରୋଗଗ୍ରସ୍ତ ହେବା ଫଳରେ ୧୯୫୧ ମସିହାରେ ତାଙ୍କର ଅକାଳ ବିୟୋଗ ଘଟିଲା ।

ଚରମ ଦୁଃଖ ଦୈନ୍ୟ ଓ ନିର୍ଯ୍ୟାତନାରେ ତାଙ୍କର କବି ପ୍ରାଣ ହାହାକାର କରି ଉଠିଥିଲେ ମଧ୍ୟ, ସେ ସାହିତ୍ୟ ସାଧନା ମଧ୍ୟରେ ଚିରକାଳ ଦୁଃଖକୁ ସୁଖ ମଣି ଆସିଛନ୍ତି । ସେଥିପାଇଁ ସେ ଉଦାତ୍ତ କଣ୍ଠରେ ତାଙ୍କ କବିତାରେ ଘୋଷଣା କରିଛନ୍ତି—

"ବ୍ୟର୍ଥ ନୁହେଁ କବି ଜନ୍ମ ଦରିଦ୍ର ଉତ୍କଳେ
କୋଟିକରୁ ଗୋଟିକର ପ୍ରାଣ ସ୍ପର୍ଶେ ଯଦି—
ସ୍ୱର୍ଗସୁଖ ବ୍ୟାଥାଭରା ଜୀବନରେ ମିଳେ
ଚନ୍ଦ୍ରବାକ ସୁଖ ଯଥା ଲୁବ୍‌ଧକର କରେ ।

ପରିଶେଷରେ ଏତିକି କୁହାଯାଇ ପାରେ ଯେ, ବର୍ଣ୍ଣନାର ବୈଚିତ୍ର୍ୟ, ଛନ୍ଦର ଲାଳିତ୍ୟ, ଉପଧାମିଳନର ଚମତ୍କାରିତା ତାଙ୍କ କବିତାର ଛନ୍ଦେ ଛନ୍ଦେ ପ୍ରକଟିତ ଓ ପ୍ରସ୍ଫୁଟିତ ହୋଇ ଉଠିଛି । ଏପରି ଏକ ପ୍ରଚଣ୍ଡ ପ୍ରତିଭାବନ୍ତ କବିଙ୍କର ଆଲୋଚନା ଆମର ଧ୍ୟେୟ ଓ ଶ୍ରେୟ ହେବା ଉଚିତ ।

୦

**✻ ଶ୍ରୀ ନରସିଂହ ମହାପାତ୍ର**
(ବିଂଶ ଶତାବ୍ଦୀ)
୧୯୨୭—

ବାଲେଶ୍ୱର ଜିଲ୍ଲା ଭଦ୍ରଖ ଥାନା ଅନ୍ତର୍ଗତ କେରଣ୍ଡ ଗ୍ରାମରେ ୧୯୨୭ ମସିହାରେ ନରସିଂହ ମହାପାତ୍ରଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ଅର୍ଜୁନ ଚରଣ ମହାପାତ୍ର ଓ ମାତାଙ୍କ ନାମ ହରିଂହମା ମହାପାତ୍ର । ସେ ମୁଖ୍ୟତଃ ଜଣେ ଗୀତିକାର ଓ ନାଟ୍ୟକାର ଭାବେ ପ୍ରସିଦ୍ଧି ଲାଭ କରିଛନ୍ତି । ବିଶେଷ ଭାବେ ତାଙ୍କ ରଚିତ ସଂଗୀତ ଗୁଡ଼ିକ ବେତାର ଓ ଚଳଚ୍ଚିତ୍ରରେ ବହୁଳ ଭାବେ ପ୍ରଚାରିତ । ତାଙ୍କର ପ୍ରକାଶିତ ନାଟକ ମାନଙ୍କ ମଧ୍ୟରେ ଗୋପାଳ କୃଷ୍ଣ, ବନ୍ଧନ ଓ ହାଉଁଲେଣୀ ଗୋଟିଏ ଗୋଟିଏ ଅନବଦ୍ୟ ସୃଷ୍ଟି । ବେତାର ନାଟିକା/ରୂପକ ଲେଖିବାରେ ସେ ସିଦ୍ଧହସ୍ତ ।

## * ଚନ୍ଦ୍ରାମଣି ମହାନ୍ତି

(ବିଂଶ ଶତାବ୍ଦୀ)

୧୮୬୭—୧୯୪୩

ସହକାର ୨୩ ଭାଗ ଦ୍ୱାଦଶ ସଂଖ୍ୟାରେ ଚନ୍ଦ୍ରାମଣିଙ୍କ ସମ୍ପର୍କରେ ପ୍ରକାଶ ପାଇଥିଲା – "କବିଶେଖର ଚନ୍ଦ୍ରାମଣିଙ୍କର ତିରୋଧାନ ଦ୍ୱାରା ଓଡ଼ିଆ ସାହିତ୍ୟ ଜଣେ ଏକନିଷ୍ଠ ସାଧକ, ଭାବୁକ ଓ କବିଙ୍କୁ ହରାଇଛି । ଶେଷକାଳ ପର୍ଯ୍ୟନ୍ତ ନିଜର ଲେଖନୀକୁ ହିଁ ସେ ଜୀବନର ବ୍ରତରୂପେ ଗ୍ରହଣ କରି ଦରିଦ୍ର ଓଡ଼ିଆ ସାହିତ୍ୟକୁ ବହୁ ଗଳ୍ପ, ଉପନ୍ୟାସ କାବ୍ୟକବିତା ଦ୍ୱାରା ସମୃଦ୍ଧ କରିଯାଇଅଛନ୍ତି । ତାଙ୍କର ପାଣ୍ଡିତ୍ୟ ଓ ଭାଷା ବିଭବ ଦ୍ୱାରା ଓଡ଼ିଆ ସାହିତ୍ୟ ଉପକୃତ । ଜଗତରେ କବି ମନୀଷୀବୃନ୍ଦ ମୃତ୍ୟୁପରେ ନିଜ ଗୁଣରେହିଁ ବଞ୍ଚିରହନ୍ତି । କିନ୍ତୁ ମୃତ୍ୟୁ ପୂର୍ବରୁ ସେମାନଙ୍କୁ ବହୁ ଦୁଃଖ ଯନ୍ତ୍ରଣା ମଧ୍ୟରେ କାଳାତିପାତ କରିବାକୁ ହୋଇଥାଏ । କବି ଚନ୍ଦ୍ରାମଣି ଏହି ନିୟମରୁ ବହିର୍ଭୂତ ନ ଥିଲେ । ତାହାର ଭିତରେ ରହି ସାହିତ୍ୟ ସେବାରେ ମନପ୍ରାଣ ଢାଳି ଦେଇଥିଲେ । ଶାରୀରିକ ରୁଗ୍ଣତା ତାହାଙ୍କର ମାନସିକ ସ୍ୱାସ୍ଥ୍ୟହାନି ଘଟାଇବାରେ ସମର୍ଥ ହୋଇନାହିଁ । ଦୈହିକ ଦୁଃଖ ଗ୍ଲାନିକୁ ଭୁଲି କଳ୍ପନା-ବିଳାସୀ କବି ଚିତ୍ତ ସବୁବେଳେ ସୃଷ୍ଟିର ସମ୍ମୁଖୀନ ଥିଲା । ତାହାର ଫଳ ସ୍ୱରୂପ ବିରାଟ "ଚନ୍ଦ୍ରାମଣି-ଗ୍ରନ୍ଥାବଳୀ" ଆଜି ଆମ୍ଭେମାନେ ଦେଖିବାକୁ ପାଇଅଛୁ । ସେ କୌଣସି କାର୍ଯ୍ୟ ଅପୂର୍ଣ୍ଣ ରଖିଯାଇ ନାହାନ୍ତି । କିନ୍ତୁ ତାଙ୍କ ସ୍ମୃତିରକ୍ଷା ପାଇଁ ଦେଶ ଓ ଜାତିର ବହୁତ କରିବାକୁ ଅଛି । ଉତ୍କଳରେ ପୂଜ୍ୟପୂଜାର ବ୍ୟତିକ୍ରମ ନ ହେଉ ।"

ଏହି ହେଲା କବି ଶେଖର ଚନ୍ଦ୍ରାମଣିଙ୍କ ପ୍ରତି ତତ୍କାଳୀନ ସହକାରର ଅର୍ଘ୍ୟ ଓ ଅର୍ଚ୍ଚନା । ଜୀବନର ସମସ୍ତ କାଳ ତାଙ୍କର ଦୁଃଖ ଦୈନ୍ୟରେ ଅତିବାହିତ ହୋଇଥିଲେ ମଧ୍ୟ, ସାହିତ୍ୟର ସାଧନା ଓ ସୃଷ୍ଟିରେ ସେ ଯେଉଁ ନିଷ୍ଠା ଓ ଆନ୍ତରିକତା ପ୍ରଦର୍ଶନ କରି ଯାଇଛନ୍ତି; ତାହା ଯୁଗେଯୁଗେ ଓଡ଼ିଆ ସାହିତ୍ୟର ଉତ୍ତର ପୁରୁଷଙ୍କୁ ନିଶ୍ଚୟ ଯେ ପ୍ରେରଣା ପ୍ରଦାନ କରି ଆସୁଥିବ, ଏଥିରେ ଦ୍ୱିମତ ନାହିଁ ।

ବାଲେଶ୍ୱର ଜିଲ୍ଲା ଭଦ୍ରଖ ସବଡ଼ିଭିଜନସ୍ଥ କୁଲମୁଲାଇ ଗ୍ରାମରେ ୧୮୬୭ ମସିହା ମାର୍ଚ୍ଚ ୧୭ ତାରିଖରେ ଚନ୍ଦ୍ରାମଣି ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ମଦନମୋହନ ମହାନ୍ତି ଓ ମାତାଙ୍କ ନାମ ନେତ୍ରମଣି । ତାଙ୍କର ପିତା ମୁକ୍ତାର ଥିଲେ । ଅସମୟରେ ତାଙ୍କର ପିତାଙ୍କର ବିୟୋଗ ହେବାରୁ ଚନ୍ଦ୍ରାମଣି ଉଚ୍ଚ ଶିକ୍ଷାରେ ଅଗ୍ରସର ହୋଇ ପାରିଲେ ନାହିଁ । ଦିନକୁ ଦିନ ପରିବାରରେ ଦରିଦ୍ର ଓ ଅନାଟନ ମାଡ଼ି ଆସିଲା ।

ଏପରିକି ଅଧିକାଂଶ ସମସ୍ତ ପରିବାର ବର୍ଗଙ୍କୁ ଉପବାସରେ ଜୀବନ ବିତାଇବାକୁ ପଡ଼ିଲା । ତଥାପି ଚନ୍ଦ୍ରାମଣିଙ୍କ ଅସୀମ ଧୈର୍ଯ୍ୟ । ଉପବାସରେ ରହି ମଧ୍ୟ ସେ ପାଠ ପଢ଼ିବାପାଇଁ ବିଦ୍ୟାଳୟକୁ ଯାଉଥିଲେ ଓ ବନ୍ଧୁମାନଙ୍କଠାରୁ ପୁସ୍ତକ ମାଗି ପାଠ ପଢ଼ୁଥିଲେ । ଚନ୍ଦ୍ରାମଣିଙ୍କ ସମ୍ପର୍କରେ କୁହାଯାଇଛି ଯେ "ବିଧବା ମା' ହାଣ୍ଡି ଚୁଲି ପାଖରେ ବସି ପାଠ ପଢ଼ିବା ସଙ୍ଗେସଙ୍ଗେ ଅକାଳ ବୈଧବ୍ୟରେ ଭାଙ୍ଗି ପଡ଼ିଥିବା ମା'ଙ୍କ ଆଖିରୁ ସେ ଲୁହ ପୋଛି ଦେଉଥିଲେ"—ସେ ମାତୃମୁଖେ ହାସ୍ୟ ରେଖା ଫୁଟାଇ "ସେହି ପିଲା ଏକା ପୁଅ ମଧ୍ୟେ ଲେଖା'ର ଅନୁରୂପ ହୋଇ ପାରିଥିଲେ ।"

ପିଲାଦିନୁ ଚନ୍ଦ୍ରାମଣି ଭାରି ଅଧ୍ୟୟନ ପ୍ରିୟଥିଲେ । ଏପରିକି ବାଉଁଶକାଠି କଲମ ଲାଉପତ୍ର ରସ ଓ ଧାନ ତୁଷୁଆଁ ହାଣ୍ଡି କଳାରେ ତିଆରି କାଳିରେ ସେ ତାଙ୍କର ଲେଖା ଲେଖି କରୁଥିଲେ ଓ ସେହି କିଶୋର ବୟସରୁ ସେ ତାଳପତ୍ର ପୋଥିମାନ ପଢ଼ୁଥିଲେ ।

ଚନ୍ଦ୍ରାମଣିଙ୍କୁ ୧୬ ବର୍ଷ ବେଳେ ସେ ଭର୍ଣ୍ଣାକୁଲର୍ ପାଶ୍ କଲେ । ତାଙ୍କର ଏହି ପାଠ ପଢ଼ିବା ପାଇଁ ତାଙ୍କର ବିଧବା ମାତା ସେତେବେଳକୁ ବହୁ ଋଣ କରି ସାରିଲେଣି । ତେଣୁ ତାଙ୍କ ପାଠପଢ଼ା ପାଇଁ ମା'ଙ୍କୁ ଋଣ କରିବାକୁ ମନା କରିବା ସଙ୍ଗେସଙ୍ଗେ ସେହି ଭଦ୍ରଖର ଫ୍ରେଜର ବାଳିକା ସ୍କୁଲରେ ଅସ୍ଥାୟୀ ହେଡ଼ପଣ୍ଡିତ ରୂପେ ଚାକିରି କଲେ । ମାତ୍ର ରୋଗଗ୍ରସ୍ତ ହେବାଫଳରେ ଶେଷରେ ଚାକିରି ଛାଡ଼ିଲେ ।

ଚନ୍ଦ୍ରାମଣି ପିତା ମା'ଙ୍କୁ ଋଣମୁକ୍ତ କରିବାକୁ ଚାକିରିରେ ଭର୍ତ୍ତି ହୋଇଥିଲେ କିନ୍ତୁ ତାଙ୍କୁ ଭାଗ୍ୟଦେବୀ ଅନୁକୂଳ ହେଲେ ନାହିଁ । ସେ ଘୋର ଦୁର୍ଦ୍ଦିନରେ ଜୀବନ ଅତିବାହିତ କଲେ । ଏମିତି କେତେ ଦିନ ଗଲାପରେ ତାଙ୍କୁ ହରିଶଙ୍କରପୁର ଖାସ-ମାହାଲ ଅପର ପ୍ରାଇମେରୀ ସ୍କୁଲରେ ଶିକ୍ଷକ ଚାକିରି ମିଳିଲା । ତାର କିଛି ଦିନପରେ ଏହି ସ୍କୁଲ କୁମାର ପୁରକୁ ସ୍ଥାନାନ୍ତରିତ ହୋଇଥିଲା । ଏଇଠାରେହିଁ ଚନ୍ଦ୍ରାମଣିଙ୍କ ଶିକ୍ଷକ ଜୀବନର ଦୀର୍ଘ ୨୦ ବର୍ଷ ଅତିବାହିତ ହୋଇଥିଲା । ଏହି ବିଦ୍ୟାଳୟହିଁ ଚନ୍ଦ୍ରାମଣିଙ୍କ ସାରସ୍ୱତ ସାଧନାର ଆଦ୍ୟପୀଠ । ଏଇଠାରେ ହିଁ ତାଙ୍କ ସାହିତ୍ୟିକ ଜୀବନ ଆରମ୍ଭ ହୋଇଥିଲା ।

ସାହିତ୍ୟିକ ଜୀବନ ସାଙ୍ଗକୁ ମଧ୍ୟ ତାଙ୍କ ଶିକ୍ଷକ ଜୀବନ ଏ କ୍ଷେତ୍ରରେ ଏକାନ୍ତ ସ୍ମରଣୀୟ । କଥିତ ଅଛି ଚନ୍ଦ୍ରାମଣିଙ୍କ ବେତ ଯାହା ପିଠିରେ ବାଜିଛି, ସେ ପରବର୍ତ୍ତୀ କାଳରେ ଧନାତ୍ମଧନ୍ୟ ମଣିଷ ହୋଇ ପାରିଛି । ଜଣେ ଉତ୍ତମ ଓ ଆଦର୍ଶ ଶିକ୍ଷକ ଭାବେ ଚନ୍ଦ୍ରାମଣି ନିଜକୁ ପ୍ରତିଷ୍ଠା କରି ପାରିଥିଲେ ଓ ତତ୍କାଳୀନ ଶିକ୍ଷା ବିଭାଗର ଉଚ୍ଚ କର୍ମ-

କର୍ତ୍ତାଙ୍କର ଅତୀବ ପ୍ରିୟ ଭାଜନ ହୋଇପାରିଥିଲେ । ବହୁ ରାତି ଉଜାଗର ରହି ପଠନ ଓ ଲିଖନ କରିବା ଫଳରେ ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଲା । ତଥାପି ଚନ୍ଦ୍ରାମଣି ଅଟଳ ମହାମେରୁ । ଭଗ୍ନ ସ୍ୱାସ୍ଥ୍ୟ ତାଙ୍କୁ ତାଙ୍କ ସାଧନାରୁ ବିରତ କରିପାରିଲା ନାହିଁ । ଅଭାବ, ଅନାଟନରେ ସେ ଅହରହ ସଙ୍କୁଳ ହେଉଥିଲେ ମଧ୍ୟ ନିଜର ଅସୀମ ଧୈର୍ଯ୍ୟ ବଳରେ ସେ ସମସ୍ତର ଦୃଢ଼ଭାବେ ମୁକାବିଲା କରିଥିଲେ ।

କୁମାରପୁର ସ୍କୁଲରେ ଶିକ୍ଷକତା କରୁଥିବା ସମୟରେ ଶିକ୍ଷକ ହିସାବରେ ସେ ଅଶେଷ ଖ୍ୟାତି ଅର୍ଜନ କରିବା ସଙ୍ଗେ ସଙ୍ଗେ କୁମାରପୁର ବାସୀଙ୍କ ଅତି ପ୍ରିୟପାତ୍ର ହୋଇପାରିଥିଲେ । ଏପରି ଦିନେ ସମୟ ଆସିଲା, ଯେଉଁଦିନ ତାଙ୍କୁ କୁମାରପୁର ତ୍ୟାଗ କରି ମାତ୍ର ତିରିଶ ଟଙ୍କା ବେତନରେ "ଗଂଜାମ ଓଡ଼ିଆ ହିତ ବାଦିନୀ" ପତ୍ରିକାର ସମ୍ପାଦକ ରୂପେ ଗଂଜାମକୁ ଯିବାକୁ ପଡ଼ିଲା । ସେ ଦିନର ତାଙ୍କ ବିଦାୟକାଳୀନ ଦୃଶ୍ୟ ଅତୀବ ଲୁହସିକ୍ତ ଓ ହୃଦୟ ବିଦାରକ । ଏ ସମ୍ବନ୍ଧରେ ଚନ୍ଦ୍ରାମଣି ତାଙ୍କ ଆତ୍ମ ଜୀବନରେ ଲେଖିଛନ୍ତି—"ମୋର ଗଂଜାମ ଯିବା ସ୍ଥିରଆଡ଼େ ରାଷ୍ଟ୍ର ହୋଇଗଲା । କେତେଲୋକ ଭୟ ଦେଖାଇ କହିଲେ—ଗଞ୍ଜା ବରହମପୁର, ତେଲେଙ୍ଗା ମୁଲକ, ତାହା ସମୁଦ୍ର ଦାଢ଼ରେ । ପ୍ରତିବର୍ଷ ସମୁଦ୍ର ମାଡ଼ି ଆସି ଗାଁ ଗଣ୍ଡା ବାଲିଧରି ଯାଏ ପୋତି ପକାଏ, ଲୋକେ ଏ ଅଞ୍ଚଳରୁ ପଳାଇ ଆସନ୍ତି । ସେ ସ୍ଥାନ ନିରାପଦ ନୁହେଁ । ପୁଣି କେତେକ କହିଲେ—"ବ୍ରହ୍ମପୁର ଯାଇ ଗୋଦାବରୀ ଆଡ଼େ । ସେଇଠାରେ ଦଣ୍ଡକାରଣ୍ୟ—ଭାରି ଜଙ୍ଗଲ । ବାଘ ଭାଲୁ ବସ୍ତିର । ସେଟା ବଡ଼ ଭୟଙ୍କର ଜାଗା"—

ଚନ୍ଦ୍ରାମଣିଙ୍କର ଏହି ଉକ୍ତିରୁ ସ୍ପଷ୍ଟ ପ୍ରତୀୟମାନ ଯେ ତାଙ୍କପ୍ରତି କୁମାରପୁର ବାସୀଙ୍କ କିପରି ଅଖଣ୍ଡ ଶ୍ରଦ୍ଧା ଓ ମମତା ଥିଲା । ପୁଣି କଥିତ ଅଛି କୁମାରପୁରର ବହୁ ଗଣ୍ୟମାନ୍ୟ ବ୍ୟକ୍ତି ଚନ୍ଦ୍ରାମଣିଙ୍କୁ କୁମାରପୁର ସ୍କୁଲ୍ ଛାଡ଼ି ବ୍ରହ୍ମପୁର ନ ଯିବାକୁ ବାରମ୍ବାର ପ୍ରବର୍ତ୍ତାଇ ଥିଲେ ଏବଂ ଏପରିକି ସେମାନେ ନିଜର ଯବାବ ଦେଇ କହୁଥିଲେ—"ଆମ୍ଭେମାନେ ଚାନ୍ଦାକରି ତୁମ୍ଭଙ୍କୁ ମାସରେ ତିରିଶ ଟଙ୍କା ଦେବୁ, ତୁମେ ଯାଅ ନାହିଁ"—ସେତେବେଳେ ଚନ୍ଦ୍ରାମଣି ତାଙ୍କୁ ଉତ୍ତର ଦେଉଥାଆନ୍ତି—"ମୁଁ ନିଯୁକ୍ତ ପତ୍ର ପାଇ ସାରିଛି, ନ ଯିବାର ଉପାୟ ନାହିଁ"—ମୁଁ ଛଅମାସ ଛୁଟିରେ ସେଠାକୁ ଯାଉଛି । ଅସୁବିଧା ହେଲେ ପୁଣି ଫେରି ଆସିପାରେ । କିନ୍ତୁ ଚନ୍ଦ୍ରାମଣିଙ୍କ ପକ୍ଷରେ ପରବର୍ତ୍ତୀ ଜୀବନରେ ସାମ୍ବାଦିକତା କ୍ଷେତ୍ରରୁ ଫେରି ଆସିବା ନୋହିଲା ।

ସବୁ ଯୁଗରେ ସବୁସ୍ଥାନରେ ପରଶ୍ରୀ କାତର ଓ ଇର୍ଷାଳୁଭାବେ ଲୋକେ ରହିଆସିଛନ୍ତି । ଅନ୍ୟର ଅଯଥା ଗାଳିଗୁଲଜ ଓ ଗୋଇ ଖୋଳିବାରେ ସେମାନେ ତତ୍ପର ଓ ଆନନ୍ଦ ବିଭୋର ହୋଇଥାନ୍ତି । ଚନ୍ଦ୍ରାମଣିଙ୍କ ଶିକ୍ଷକ ଜୀବନର ଖ୍ୟାତି ତଥା ଲୋକପ୍ରିୟତାରେ

ସେମାନେ ଭୟଙ୍କର ଭାବେ ଈର୍ଷାନ୍ୱିତ ହୋଇ ପଡ଼ିଲେ । ଚନ୍ଦ୍ରମଣିଙ୍କର ସେତେବେଳେ କୁମାରପୁରରେ ଶିକ୍ଷକ ଜୀବନ । ଚନ୍ଦ୍ରମଣିଙ୍କୁ ଅଯଥା ବଦନାମ କରିବା ପାଇଁ ସେମାନେ ଶିକ୍ଷା ବିଭାଗର ପଦସ୍ଥ କର୍ମଚାରୀଙ୍କ ପାଖକୁ ବାରମ୍ବାର ବେନାମୀ ଦରଖାସ୍ତ ପକାଇ ସେଥିରେ ମିଥ୍ୟାରେ ଲେଖିଥିଲେ—"ଚନ୍ଦ୍ରମଣି ମାସରେ ପନ୍ଦର ଦିନ ଘରେ ରହନ୍ତି-ପିଲଙ୍କୁ ନପଢ଼ାଇ ସବୁବେଳେ କବିତା ଲେଖନ୍ତି… ଇତ୍ୟାଦି । ମିଥ୍ୟାର ବାକ୍‌ଜାଲ ସତ୍ୟକୁ କେତେଦିନ ଲୁଚାଇ ରଖିବ ? ସତ୍ୟର ସୂର୍ଯ୍ୟ ଆଗରେ ମିଥ୍ୟାର କୁହୁଡ଼ି ରହିବ କିପରି ?? ସେତେବେଳକୁ କବିବର ରାଧାନାଥ ରାୟ ସ୍କୁଲ୍ ବିଭାଗର ଇନ୍‌ସ୍‌ପେକ୍ଟର ଥାଆନ୍ତି । ତତ୍‌କାଳୀନ ସ୍କୁଲ ବିଭାଗର ସବ୍‌ଇନ୍‌ସ୍‌ପେକ୍ଟର ରମାନାଥବାବୁ ଏ ସନ୍ଧାନରେ ତଦନ୍ତ ଚଳାଇ ଚନ୍ଦ୍ରମଣିଙ୍କ ବିରୁଦ୍ଧରେ ଏ ପ୍ରକାର ମନ୍ତବ୍ୟ ପୁରାପୁରି କପୋଳକଳ୍ପିତ ଓ ମିଥ୍ୟା ବୋଲି ରାୟ ଦେଇଥାନ୍ତି । ରାଧାନାଥଙ୍କ କାନକୁ ମଧ୍ୟ ଏ କଥା ଆସିଥାଏ । ସେ ବାଲେଶ୍ୱର ଜିଲ୍ଲାର ତତ୍କାଳୀନ ଡେପୁଟି ଇନ୍‌ସ୍‌ପେକ୍ଟର ରଘୁନାଥ ଘୋଷଙ୍କୁ ସାଙ୍ଗରେ ଧରି କୁମାରପୁର ସ୍କୁଲକୁ ଗଲେ ଓ ଚନ୍ଦ୍ରମଣିଙ୍କ ପାଠପଢ଼ା ଶୈଳୀ ଓ ତାଙ୍କ ବିରୁଦ୍ଧରେ ହୋଇଥିବା ଅଭିଯୋଗ ସମ୍ପର୍କରେ ଖୁଣ୍ଟିଖାଣ୍ଟି ତଦନ୍ତ ଆରମ୍ଭ କଲେ । ତଦନ୍ତ ପରେ ରାଧାନାଥ ପରିଦର୍ଶକ ପୁସ୍ତକ (Visitors Book)ରେ ଏହିପରି ଭାବରେ ସ୍ପଷ୍ଟ ଭାବେ ଉଲ୍ଲେଖ କରିଥିଲେ—

"ଆଜି କୁମାରପୁର ଉଚ୍ଚ ପ୍ରାଇମେରୀ ସ୍କୁଲ ଦେଖିଲି । ପରୀକ୍ଷାର ଫଳ ଆଶାତୀତ ସନ୍ତୋଷ ଜନକ । ଏ ଭଳି ଆଦର୍ଶ ଉଚ୍ଚ ପ୍ରାଇମେରୀ ସ୍କୁଲ ମୁଁ ସମଗ୍ର ଉତ୍କଳରେ ଦେଖି ନାହିଁ । ବାଲେଶ୍ୱର ଜିଲ୍ଲାର ଅନେକ ଭର୍ଣ୍ଣାକୁଲର ସ୍କୁଲ ସୁଦ୍ଧା ଏହାର ସମକକ୍ଷ ନୁହେଁ । ଶିକ୍ଷକ ଜଣେ ବିଦ୍ୱାନ, ସଚ୍ଚରିତ୍ର ଏକ ବହୁଦର୍ଶୀ ବ୍ୟକ୍ତି । ଏ ଭଳି ଶ୍ରମ ପ୍ରାଣ ସୁଶିକ୍ଷକ ସର୍ବଦୌ ଉତ୍ସାହର ଯୋଗ୍ୟ ।"

ସେତେବେଳେ ବାଲେଶ୍ୱର ଜିଲ୍ଲାର କଲେକ୍ଟର ଥାଆନ୍ତି ଇଜାର୍ଟନ । ଏହି କୁମାରପୁର ସ୍କୁଲ ଇଜର୍ଟନ ସାହେବଙ୍କ ସମ୍ପୂର୍ଣ୍ଣ କର୍ତ୍ତୃତ୍ୱାଧୀନରେ ସ୍କୁଲଇନ୍‌ସ୍‌ପେକ୍ଟର ରାଧାନାଥ ଓ ଡେପୁଟି ଇନ୍‌ସ୍‌ପେକ୍ଟରଙ୍କ ସ୍କୁଲ ରିପୋର୍ଟ ପାଠକରି କଲେକ୍ଟର ସାହେବ ଅତ୍ୟନ୍ତ ପ୍ରୀତ ହେଲେ ଓ ଚନ୍ଦ୍ରମଣିଙ୍କ ମାସିକ ଦରମା ଆଉ ଗୋଟିଏ ଟଙ୍କା ବଢ଼ାଇ ଦେଲେ । ଚନ୍ଦ୍ରମଣିଙ୍କ ବିରୁଦ୍ଧରେ ଆଗତ ହୋଇଥିବା ମିଥ୍ୟା ଅଭିଯୋଗ ଆପେ ଆପେ ମଉଳିଗଲା ।

୧୭ ବର୍ଷ ବୟସରେ ଚନ୍ଦ୍ରମଣି 'ଭର୍ଣ୍ଣାକ୍ୟୁଲର' ପାସ୍ କରି ଯେଉଁ ଅଖଣ୍ଡ ଜ୍ଞାନର ଅଧିକାରୀ ହୋଇଥିଲେ, ତାହା ଅସାଧାରଣ ଓ ଅନନ୍ୟ ସାଧାରଣ । କୁମାରପୁର ସ୍କୁଲର ଶିକ୍ଷକତା ଛାଡ଼ି ୧୯୦୩ ମସିହାରେ ସେ ସେତେବେଳେ ଗଞ୍ଜାମରେ ପଢ଼ୁଥିଲେ;

ସେତେବେଳକୁ ଓଡ଼ିଆ ଜାଗରଣ ଯୁଗ ଚାଲିଥାଏ । ସେ ପୂର୍ବରୁ ଖ୍ରୀଷ୍ଟିକୃତ 'ଗଞ୍ଜାମ ଓଡ଼ିଆ ହିତବାହିନୀ' ପତ୍ରିକାର ସମ୍ପାଦନା ଦାୟିତ୍ୱ ବହନ କଲେ । ତା' ପରେ 'ଉତ୍କଳବାସୀ' ପତ୍ରିକାର ସମ୍ପାଦକ ହେଲେ । ପତ୍ରିକା ସମ୍ପାଦନାରେ ତାଙ୍କର ଖ୍ୟାତି କ୍ରମଶଃ ବ୍ୟାପ୍ତ ହେବାକୁ ଲାଗିଲା । ପରେ ପରେ ସେ 'ସ୍ୱଦେଶଲକ୍ଷ୍ମୀ', ମୟୂରଭଞ୍ଜରୁ ପ୍ରକାଶିତ 'ମନୋରମା', ଗଞ୍ଜାମରୁ ପ୍ରକାଶିତ 'ଜ୍ଞାନଦର୍ପଣ' ପ୍ରଭୃତି ମାସିକ ସାହିତ୍ୟିକ ପତ୍ରିକାର ସମ୍ପାଦକ ହେଲେ । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ଯେ, ସେ ଊନବିଂଶ ଶତାବ୍ଦୀର ଶେଷ ଭାଗରୁ ଓଡ଼ିଶାରେ ବିଶିଷ୍ଟ ସାହିତ୍ୟିକ ଭାବେ ନିଜକୁ ପ୍ରତିଷ୍ଠା କରି ପାରିଥିଲେ ।

ପୁଣି ସେତିକି ବେଳକୁ ଓଡ଼ିଆ ଭାଷା ଆନ୍ଦୋଳନ ତୀବ୍ରତର ହୋଇଉଠିଲାଣି । ଓଡ଼ିଆ ଭାଷାକୁ ମୂଳପୋଛ କରିବା ପାଇଁ ପଡ଼ୋଶୀମାନଙ୍କର ହୀନ ଚକ୍ରାନ୍ତ ଚାଲିଥାଏ । ଏହି ପରିପ୍ରେକ୍ଷୀରେ ଚନ୍ଦ୍ରାମଣିଙ୍କ ସାହିତ୍ୟିକ ଓ ସାଂବାଦିକ ଜୀବନର ଶ୍ରେଷ୍ଠତ୍ୱ ଓ ଶୀର୍ଷସ୍ଥାନ ଅଧିକାର । ଓଡ଼ିଆ ଆନ୍ଦୋଳନର କେନ୍ଦ୍ରପୀଠ ଗଞ୍ଜାମରେ ସେତିକିବେଳେ ଚନ୍ଦ୍ରାମଣିଙ୍କ ସାହିତ୍ୟିକ ଜୀବନର ପୂର୍ବକଥିତ ଅନୁଯାୟୀ ଶ୍ରେଷ୍ଠତ୍ୱ ପ୍ରତିପାଦିତ ହୋଇଥିବାରୁ ସେ ମଧ୍ୟ ଭାଷା ସାହିତ୍ୟ ଆନ୍ଦୋଳନରେ ଅତିମାତ୍ରାରେ ସମ୍ପୃକ୍ତ ଥିଲେ ।

ଭାଷାକୋଷକାର ଗୋପାଳ ଚନ୍ଦ୍ର ପ୍ରହରାଜ ଚନ୍ଦ୍ରାମଣିଙ୍କ ସାହିତ୍ୟିକ କୃତିଗୁଡ଼ିକୁ ଚାରିଭାଗରେ ବିଭକ୍ତ କରିଛନ୍ତି । ସେଗୁଡ଼ିକ ହେଲା —(କ ବର୍ଣ୍ଣନାତ୍ମକ (ଖ) ପୌରାଣିକ ଓ ଐତିହାସିକ (ଗ) ଖଣ୍ଡକବିତା ଏବଂ (ଘ) ବିବିଧ କବିତା । ଘୁମୁସର କାବ୍ୟ, ମହୋଦଧି, ମହେନ୍ଦ୍ର, ସିଂହରାଜ, ଉତ୍କଳ କମଳା, ମେଘାସନ, ସାଲନ୍ଦୀ ପ୍ରଭୃତି ହେଉଛି ବର୍ଣ୍ଣନାତ୍ମକ କାବ୍ୟ । ବିକ୍ରମାଦିତ୍ୟ, ମୁକୁନ୍ଦଦେବ, ସୁଭଦ୍ରା, ଶିଶୁପାଳ ବଧ, ସତ୍ୟରଥୀ, ଭାରତଲଳନା, ଆର୍ଯ୍ୟବାଳା, ପ୍ରଭୃତି ହେଉଛି ପୌରାଣିକ ଓ ଐତିହାସିକ କାବ୍ୟ । ସେହିପରି ପତ୍ର ପୁଷ୍ପ, ସାନ୍ଧ୍ୟତାରା, କଳ୍ପନାକୁଞ୍ଜ, ଫୁଲଡାଲି, ଶତଦଳ, ପୁଷ୍ପବାଟିକା, ଇତ୍ୟାଦି ଖଣ୍ଡକବିତା' + + ରୂପାଚୂଡ଼ି, ଝଙ୍କାଗଛ, ଯୁଗଳମଠ, ଶନିସପ୍ତା, ତ୍ରିବେଣୀ, ନନ୍ଦନବନ ପ୍ରଭୃତି ଉପନ୍ୟାସ ଓ ଜୟପୁର ଭ୍ରମଣ କାହାଣୀ ତାଙ୍କ ସାହିତ୍ୟ କୃତିର ଅନ୍ୟତମ ଶ୍ରେଷ୍ଠ ପରିଚୟ ମଧ୍ୟ । ଚନ୍ଦ୍ରାମଣି ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାବରେ ଲେଖନୀ ଚଳାଇ ଯେ ଶ୍ରେଷ୍ଠତ୍ୱ ଅର୍ଜନ କରିଛନ୍ତି, ଏହା ନିଃସନ୍ଦେହରେ କୁହାଯାଇପାରେ ।

ପୁଣି ଗୋପାଳଚନ୍ଦ୍ର ପ୍ରହରାଜ ଚନ୍ଦ୍ରାମଣିଙ୍କ ସମ୍ପର୍କରେ ମତ ବ୍ୟକ୍ତ କରି ପୁଣି କହିଛନ୍ତି ଯେ—"କବି ରୂପେ ଚନ୍ଦ୍ରାମଣିଙ୍କ ନାମ ରାଧାନାଥ, ମଧୁସୂଦନ, ଫକୀରମୋହନ ଓ ଗଙ୍ଗାଧରଙ୍କ ନାମ ଭଳି ଉତ୍କଳର ପୁରପଲ୍ଲୀରେ ଘରେ ଘରେ ପରିଚିତ । ତାଙ୍କ

ବିରାଟ ଗ୍ରନ୍ଥାବଳୀ ହିଁ ଉତ୍କଳର ଭବିଷ୍ୟତ ବଂଶଧରଙ୍କ ପକ୍ଷରେ ତାଙ୍କ ପ୍ରତିଭାର ପ୍ରକୃଷ୍ଟ ପରିଚାୟକ ହେବ ।"

ଉତ୍କଳର ସୁପରିଚିତ ଐତିହାସିକ ପ୍ରତ୍ନତତ୍ତ୍ୱଜ୍ଞ, ସାହିତ୍ୟିକ ଡାକ୍ତର ରାଧାଚରଣ ପଣ୍ଡା ଚନ୍ଦ୍ରାମଣିଙ୍କ ସମ୍ପର୍କରେ କହିବାକୁ ଯାଇ କହିଛନ୍ତି—"କବିଶେଖର ଚନ୍ଦ୍ରାମଣି ମହାନ୍ତି ଓଡ଼ିଆ ସାହିତ୍ୟ ରାଜ୍ୟର ଏକ ବିରାଟ 'ସାହିତ୍ୟିକ ହାତୀ' ଥିଲେ । ଭର୍ଣ୍ଣାକ୍ୟୁଲର ପାଶ୍ କରି ମୁଦ୍ଧା ସେ ଦୀର୍ଘ ୫୦।୬୦ ବର୍ଷ ଧାରାବାହିକ ଭାବରେ ସାହିତ୍ୟ ଚର୍ଚ୍ଚା କରି ଅତି ବିରାଟ ୪ ଖଣ୍ଡ 'ଗ୍ରନ୍ଥାବଳୀ' ଲେଖି ଉତ୍କଳ ସାହିତ୍ୟ ଭଣ୍ଡାରକୁ ପୁଷ୍ଟ କରିଥିଲେ । ସେ ଯେ ନିଷ୍ଟୟରେ ଏକ 'ସାହିତ୍ୟିକ ହାତୀ" ହେବେ ସନ୍ଦେହ ନାହିଁ ।

ତାହାଙ୍କ ପୂର୍ବରୁ ଓଡ଼ିଶାରେ ବହୁ ପ୍ରାଚୀନ କବି ବହୁସଂଖ୍ୟକ ଗ୍ରନ୍ଥ ଲେଖିଥିଲେ । କିଏ 'ନାଟକ' ଲେଖି ସାହିତ୍ୟ ସମ୍ରାଟ ହୋଇଥିଲେ—କିଏ କାବ୍ୟ ଲେଖି 'କବିବର' ଉପାଧି ପାଇଥିଲେ । ଅନ୍ୟ ଜଣେ କେବଳ ଉପନ୍ୟାସ ଓ ଗଦ୍ୟ ସାହିତ୍ୟ ଲେଖି 'ସରସ୍ୱତୀ' ଉପାଧି ପାଇଥିଲେ ; କିନ୍ତୁ ଚନ୍ଦ୍ରାମଣି 'ଅଦାଲୃଷ'ଠାରୁ 'ଟଙ୍କାଗଛ' ଉପନ୍ୟାସ ଲେଖି 'କବିଶେଖର' ଉପାଧି ଲାଭ କରି ପ୍ରକୃତରେ ଓଡ଼ିଶାର ଏକ 'ସାହିତ୍ୟିକ ହାତୀ' ହୋଇଥିଲେ ।

ଖଣ୍ଡିଏ 'ରାଧାନାଥ ଗ୍ରନ୍ଥାବଳୀ' ଖଣ୍ଡିଏ 'ମଧୁସୂଦନ ଗ୍ରନ୍ଥାବଳୀ' ଓ ଖଣ୍ଡିଏ 'ଫକୀରମୋହନ' ଓ ଖଣ୍ଡିଏ ମାତ୍ର ନନ୍ଦକିଶୋର ଗ୍ରନ୍ଥାବଳୀ ଦେଖି ଚମତ୍କୃତ ହେଉଥିଲୁ—କିନ୍ତୁ 'ସାହିତ୍ୟିକ ହାତୀ' ଚନ୍ଦ୍ରାମଣିଙ୍କ ଲେଖାଗୁଡ଼ିକ ଅତି ବଡ଼ ବଡ଼ ଚାରିଖଣ୍ଡ ଗ୍ରନ୍ଥାବଳୀରେ ପୂର୍ଣ୍ଣ ହୋଇଛି । ମୋ ପାଠାଗାର ଆଲମାରିର ଦୀର୍ଘ ୧୫।୧୬ ଇଞ୍ଚ ଜାଗା ଅଧିକାର କରିଅଛି । ଓଡ଼ିଆ ଭାଷାରେ ଛପା ଯାଇଥିବା ସମସ୍ତ ଗ୍ରନ୍ଥାବଳୀଠାରୁ ଚନ୍ଦ୍ରାମଣିଙ୍କ ଗ୍ରନ୍ଥାବଳୀ ହିଁ ଅତି ବଡ଼ ଗ୍ରନ୍ଥାବଳୀ ଅଟେ । ଏହି କାରଣରୁ କବିଶେଖର ଚନ୍ଦ୍ରାମଣିଙ୍କୁ ଓଡ଼ିଶାର ବିରାଟ 'ସାହିତ୍ୟିକ ହାତୀ' କୁହାଯାଉଛି । + + + ଆଜିକାଲି ଆମ ଦେଶରୁ ବହୁ ସଂଖ୍ୟକ ଉଚ୍ଚଶିକ୍ଷିତ ଓଡ଼ିଆ ବାହାରିଲେଣି । ବିଶ୍ୱବିଦ୍ୟାଳୟରୁ ଅତି ଉଚ୍ଚ ଡିଗ୍ରୀ ଲାଭ କରି ଏବଂ ବହୁ ସଂଖ୍ୟକ ଯୁବକ ୟୁରୋପ, ଆମେରିକା, ଜାପାନ ପ୍ରଭୃତି ଦେଶକୁ ଯାଇ ସେ ଦେଶରୁ ମଧ୍ୟ ଅତି ସମ୍ମାନ ସୂଚକ ଉପାଧିମାନ ଲଭ କରିଛନ୍ତି । କିନ୍ତୁ ଚନ୍ଦ୍ରାମଣି ଶିକ୍ଷା ବିଭାଗରେ ନିମ୍ନତମ ଶିକ୍ଷା ପାଇ ମୁଦ୍ଧା ନିଜ ଜୀବନରେ ଯେତିକି ଗ୍ରନ୍ଥ ଲେଖିଛନ୍ତି, ସେ ସବୁ ତୁଳନାରେ ତାହାଙ୍କୁ 'ଓଡ଼ିଆ ସାହିତ୍ୟର ଏକ ବିରାଟ ହାତୀ' ବୋଲି ନିଃସନ୍ଦେହରେ କୁହାଯିବ" । ଚନ୍ଦ୍ରାମଣି 'ରୂପାଚୂଡ଼ୀରେ ବର୍ଣ୍ଣନା କରି କହିଛନ୍ତି—

"ବର୍ତ୍ତମାନ ଯେଉଁ ଆଡ଼କୁ ଦୃଷ୍ଟି ଦେଖିବ—ନଇବଡ଼ି ପଣ ଉନ୍ନତର ସୁଅ ମାଡ଼ି ଯାଉଛି । ଧନରେ, ମାନରେ, ଶିକ୍ଷା ସଭ୍ୟତାରେ ଭାରତର ଅନ୍ୟାନ୍ୟ ଜାତି ଆମ ଓଡ଼ିଆ ଜାତିର ବହୁ ଉର୍ଦ୍ଧ୍ୱରେ ଅବସ୍ଥିତ । କେବଳ ଆମ୍ଭର ମାତୃଭୂମି ଉତ୍କଳ ସବୁ ବିଷୟରେ ପଶ୍ଚାତ୍‌ପଦ—ଏ ଦୋଷ କାହାର ନୁହେଁ ଆମ୍ଭମାନଙ୍କର" ।

\+ + +

ଏହାଛଡ଼ା କବିଶେଖର ଚନ୍ଦ୍ରମଣି କବିତାରେ ମଧ୍ୟ ମାତୃଭୂମି ପ୍ରତି ଗଭୀର ମମତ୍ୱ ବୋଧ ପ୍ରକାଶ କରି କହିଛନ୍ତି—

"ମାତୃଭୂମି, ମାତା କଷ୍ଟ ଫେଡ଼ିବାକୁ
ନ ବଳାଏ ଯେହୁ ମନ
ସେହି ମୂଢ଼ ସିନା କରେ ବିଶ୍ୱପିତା
ପବିତ୍ର ଆଜ୍ଞା ଲଙ୍ଘନ ।
ମାତୃ ଦୁଃଖ ଦେଖି ନ ଦେଖିଲା ପରି
ରହେ ଯେଉଁ ପାଷଣ୍ଡ
ଇହ ପୂର୍ବ ଜନ୍ମ ସୁକୃତ ତାହାର
ହୋଇଯାଏ ସବୁ ପଣ୍ଡ ।"

ପୁନଶ୍ଚ ଉତ୍କଳ ଭୂମିର ମହତ୍ତ୍ୱ ପ୍ରତିପାଦନ କରିବାକୁ କବିଙ୍କ ଲେଖନୀ ମୁଖର ହୋଇଉଠିଛି । ଯେଉଁଠି ଦିଗ୍‌ବିଜୟ ପଥରେ ବିକ୍ରମାଦିତ୍ୟ ଓ ମେଘାସନାସୀନ ଧର୍ମାନନ୍ଦ ଋଷିଙ୍କ କଥୋପକଥନ ଚାଲିଛି—

"ପୁଚ୍ଛିଲେ ବିକ୍ରମାଦିତ୍ୟ ବୃଦ୍ଧ ତପୋଧନେ
ଏ କେଉଁ ପ୍ରଦେଶ ଦେବ ? ବୋଲନ୍ତୁ ସ୍ୱଧ୍ୱସ୍ତେ ।
ଭାଷିଲେ ତାପସ 'ବୀର ଏ ଉତ୍କଳ ମହୀ ।
ଅଖିଳ ଦେବାଧ୍ୟୁଷିତା, ପୁରାଣ ପ୍ରଖ୍ୟାତ ।
ପୁଣ୍ୟତୀର୍ଥମୟୀ ସ୍ଥଳୀ, ଦେଉଳ ମାଳିନୀ
ପୂର୍ଣ୍ଣ ଶତଦଳ ପୁଷ୍ପ ଭାରତ ମାନସେ ।

\+ + +

ବହୁ ଯୁଗ ଯୁଗାନ୍ତରୁ ଏ ମର୍ତ୍ତ୍ୟ ଅମରା
ଦେଖାଉଛି ସମଭାବେ ଅଙ୍ଗୁଳି ନିର୍ଦ୍ଦେଶେ
ମୋକ୍ଷର ପରମ ପଥ ମାନବ ସମାଜେ

\+ + +

ସ୍ୱର୍ଣ୍ଣପ୍ରସୂ ଏ ଭୂଖଣ୍ଡ ଧନେ, ମାନେ, ଜ୍ଞାନେ,
ପୁଣ୍ୟେ, ଶିକ୍ଷା ସଭ୍ୟତାରେ ଭାରତ ଅତୁଳ
ଧରେ ବକ୍ଷେ ବହୁ ତୀର୍ଥ, ବହୁ ନଦନଦୀ
ତଡ଼ାଗ, କାନନ, ହ୍ରଦ, ଗିରିଉତ୍ସ ଦରୀ—
ଉପତ୍ୟକା, ଦେବାଳୟ—ଗୃହୁ ଚାରୁବନ୍ତ ।"

ଏ ସମସ୍ତ ଉପର ଲିଖିତ ଉଦ୍ଧୃତାଂଶରୁ ଚନ୍ଦ୍ରାମଣିଙ୍କ ଉଗ୍ର ଜାତୀୟବାଦ ତଥା ସ୍ୱଦେଶପ୍ରୀତି ବିଶେଷ ଭାବେ ପ୍ରତିଭାତ ହୋଇଉଠିଛି ।

ଚନ୍ଦ୍ରାମଣି ଏତିକରେ ସନ୍ତୁଷ୍ଟ ହୋଇ ନାହାନ୍ତି । ସେ ଆଉ ପାଦେ ଅଗ୍ରସର ହୋଇ ମେଘାସନ କାବ୍ୟରେ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି—

"ମୋର ମାତୃଭାଷା ସ୍ୱର୍ଗସୁଧା ଜଣା
ଲାଗଇ ମଧୁର ମୋ କାନକୁ ସିନା
ଆନ ଭାଷା ମୋତେ ଭଲ ଲାଗେ ନାହିଁ
ସୁଧା ସଙ୍ଗେ ଗୁଡ଼ ସରି ହେବ କାହିଁ ??

ଏହା ନିଃସାର ଆସ୍ଫାଳନ ନୁହେଁ । ଏ ଆସ୍ଫାଳନ ମୂଳରେ ରହିଛି ଗୋଟାଏ ଜାତିର ଐତିହ୍ୟ, ସଂସ୍କୃତି ଓ କଳାକୁଶଳତାର ବିଜୟଶ୍ରୀ । ତେଣୁ କବି ଲେଖନୀରେ ଯେଉଁ ଉନ୍ମାଦନା ଖେଳାଇଛନ୍ତି, ତାହା ଏ ଦେଶର ଭବିଷ୍ୟତ କଳାକାର ଓ ଦେଶପ୍ରେମୀଙ୍କ ପ୍ରତି ବିଶେଷ ପ୍ରେରଣାର ଆଧାର । ଚନ୍ଦ୍ରାମଣି ଏ ମାଟିର ମନମତାଣିଆ ଗନ୍ଧ, ତାର ସାହିତ୍ୟ ସୁଷମା, ଭାଷାର ଅନବଦ୍ୟ ପ୍ରକାଶ, ଭାବର ଅନନ୍ୟ ଅଭିବ୍ୟକ୍ତିକୁ ଭୁଲିପାରି ନାହାନ୍ତି । ସେ ସେଥିରେ ଆତ୍ମହରା ହୋଇଛନ୍ତି ଓ ନିଜକୁ ଜାତିପ୍ରାଣ ସଙ୍ଗେ ମିଶାଇ ଦେଇଛନ୍ତି । ତାଙ୍କର ଏ ଜାତୀୟ ବିପ୍ଳବର ଦାନ ଏ ଜାତିର ମାନ ସମ୍ମାନର ବିପୁଳ ଅଭିବ୍ୟକ୍ତି ଓ ଅଭିବ୍ୟଞ୍ଜନା । ତାଙ୍କର ଶିକ୍ଷାଦୀକ୍ଷା ତୁଳନାରେ ତାଙ୍କର ସାଧନା ହିଁ ତାଙ୍କୁ ଓଡ଼ିଆ ସାହିତ୍ୟରେ ଅମର କରିପାରିଛି । ଦୁଃଖ, ରୋଗ ଭୋଗ ତଥା ଦାରିଦ୍ର୍ୟର ନିପୀଡ଼ନରେ ନିଷ୍ପେଷିତ ହୋଇ ସେ ଘୋଷଣା କରି କହିଛନ୍ତି—

"ଜୀବନ ମରଣ ସନ୍ଧିସ୍ଥଳେ ମୋତେ
କରିଇଛି ଠିଆ ଭାଗ୍ୟ ଅବିରତେ
ନିରତେ ଆଶଙ୍କା ପ୍ରବଳ ମୋ ପ୍ରାଣ,
ଦୁଃଖ-ଧନେ ମୁହିଁ ମହା ଧନବାନ ।

ଚିର ବୈରୀ ମୋର ସ୍ୱାସ୍ଥ୍ୟ ଶାନ୍ତି ସୁଖ
ଦେଖିବାକୁ ମୋତେ ମନା ତାଙ୍କ ମୁଖ ।"

ସୁଖ-ଶାନ୍ତି ଭୋଗ ବିଳାସ କବି ପ୍ରାଣରେ ପ୍ରଚୁର ନ ହେଲେ ମଧ୍ୟ ତ୍ୟାଗର ମାଦକତା କବି ପ୍ରାଣକୁ ପବିତ୍ର ଓ ମହନୀୟ କରିବା ସଙ୍ଗେ ସଙ୍ଗେ ଶ୍ରେଷ୍ଠ ସାଧକ କରିପାରିଛି । ତେଣୁ କବିର ଆତ୍ମା ସେଇଠି କହି ଉଠିଛି—

"କି କରିବ କବି ହେଲା ଭିକାରୁଣୀ
କରୁଛି ସାହାଯ୍ୟ ପୀଡ଼ା ତାକୁ ପୁଣି
ଶୋଷୁଛନ୍ତି ମୋର ସେ ବେଦନା ରାକ୍ଷସୀ
ଶରୀରର ଆୟୁ ଅନୁକ୍ଷଣେ ବସି

+ + +

ସ୍ୱଭାବତଃ କବି ଧନର ବଇରୀ
ପାରେ ନାହିଁ ଧନ ଦେଖି ତାର ଶିରୀ,
ତହିଁକି ଶୋଚନା ନଥାଏ କବିର
ତ୍ୟାଗ ବଳେ କବି ଅଦ୍ୱିତୀୟ ବୀର ।"

ଏହାହିଁ କବି ଶେଖରଙ୍କ ନିର୍ଲୋଭତା ଓ ଭୋଗ ବଦଳରେ ତ୍ୟାଗର ବିପୁଳ ଅର୍ଘ୍ୟ ଅର୍ଚ୍ଚନା ।

ଅଭାବ ଅନାଟନ, ଦୁଃଖ ଦୈନ୍ୟରେ ଚିନ୍ତାମଣି ଅହରହ ଜଳୁଥିଲେ ମଧ୍ୟ ତାଙ୍କ ତ୍ୟାଗ, ଧୈର୍ଯ୍ୟର ଅସୀମ ସାହସିକତା ତାଙ୍କୁ ମଣିଷ ଭଳି ଗଢ଼ିବାର ବ୍ୟାପକ ପ୍ରେରଣା-ପୁଷ୍ଟ କରିଥିଲା । ତାଙ୍କ ସାହିତ୍ୟ ସାଧନାର ଅସୀମ ଓ ଅନାବିଳ ଉତ୍ସହିଁ ତାଙ୍କୁ ୧୯୧୩ ମସିହାରେ କବିବର ଓ ୧୯୩୫ରେ ଆନ୍ଧ୍ର ଗଭର୍ଣ୍ଣମେଣ୍ଟ ୟୁନିଭରସିଟି ତରଫରୁ କବିଶେଖର ଉପାଧିରେ ଶ୍ରେଷ୍ଠ ସମ୍ମାନର ଅଧିକାରୀ କରିଥିଲା ।

ତାଙ୍କ ରଚିତ ଗଳ୍ପ 'ଧର୍ମବଳ, ମାଷ୍ଟର ବାବୁ, ଭାଗ୍ୟ ବିପର୍ଯ୍ୟୟ, ଅଦ୍ଭୁତ ପରିବର୍ତ୍ତନ, ଦଇବର ଅନୁକୂଳ, ଉପଯୁକ୍ତ ଶିକ୍ଷା, ମାଧୁରୀ, ଶୁକଶାରୀ ବିବାହ, ପଣଭଙ୍ଗ, ବେଦୀବାହୁଡ଼ା' ପ୍ରଭୃତି ଓଡ଼ିଆ ସାହିତ୍ୟରେ ଗୋଟିଏ ଗୋଟିଏ ଅନବଦ୍ୟ ଓ ଅବିସ୍ମରଣୀୟ ସୃଷ୍ଟି ।

ଏଇପରି ଏକ ନିରଳସ, ନିରଭିମାନୀ, ସାହିତ୍ୟ ସାଧକ ଚନ୍ଦ୍ରମଣି ୧୯୮୩ ମସିହା ଡିସେମ୍ବର ୧୭ ତାରିଖରେ କଠିନ କାଶ ରୋଗରେ ପଡ଼ି ଆମଠାରୁ ଚିରଦିନ ପାଇଁ ବିଦାୟ ନେଲେ । ରାଧାନାଥ ଯୁଗର ଶେଷ ଓ ଶ୍ରେଷ୍ଠ କବିର ଦୀପଶିଖା ନିର୍ବାପିତ ହୋଇଗଲା ।

## * ମହାପାତ୍ର ନୀଳମଣି ସାହୁ

ବିଂଶ ଶତାବ୍ଦୀ

୧୯୨୭—

ଯେଉଁମାନେ ମହାପାତ୍ର ନୀଳମଣି ସାହୁଙ୍କୁ ମୋ ଭଳି ଖୁବ୍ ନିକଟରୁ ଦେଖିଥିବେ ବା ଦେଖିଥିବେ, ସେମାନେ ମୋ ସହିତ ନିଶ୍ଚୟ ଏକମତ ହେବେ ଯେ, ଓଡ଼ିଆ ସାହିତ୍ୟର ଏହି ପ୍ରତିଭାବାନ୍ ବ୍ୟକ୍ତିଙ୍କର ବ୍ୟକ୍ତିତ୍ୱ ଅତୀବ ବିଚିତ୍ର । ଠିକ୍ ତାଙ୍କର, ଅର୍ଥାତ୍ ନୀଳମଣି ବାବୁଙ୍କର ନିତିଦିନିଆ ପୋଷାକ ପରିଧାନ ପରି । ଏକଥା ଏପରି ଭାବେ କହିବାର କୈଫିୟତ ହେଉଛି ଯେ, ସକାଳେ ଯଦି ଧୋବ ଫରଫର ଧୋତି ପଞ୍ଜାବୀରେ ନୀଳମଣି ବାବୁ କେଉଁ ବନ୍ଧୁଘରେ ବନ୍ଧୁଙ୍କ ମେଳଣରେ ଗଳ୍ପରତ, ଅପରାହ୍ନରେ ନିଜ ଘରେ ବା ଭଡ଼ାଘର ବାରଣ୍ଡାରେ ଧୋତି ଗାମୁଛାରେ ଟହଲୁଛନ୍ତି । ପୁଣି ସଂଜବେଳକୁ ସାହେବ ପୋଷାକରେ ସାହିତ୍ୟସଭା ସମିତିରେ ଭାଷଣ ମୁଖର, ପୁଣି କେତେବେଳେ ସାଧୁ ସନ୍ନ୍ୟାସୀଙ୍କ ସାଙ୍ଗରେ ଗେରୁଆ ବସ୍ତ୍ର ପରିଧାନରେ ବେକରେ ରୁଦ୍ରାକ୍ଷ ମାଳା ଲମ୍ବାଇ ଖାଲି ପାଦରେ ବୁଲୁଛନ୍ତି । ସବୁ ପ୍ରକାର ବିଚିତ୍ର ରଙ୍ଗ ଢଙ୍ଗରେ ବିଭିନ୍ନ ସମୟରେ ପୋଷାକ ପିନ୍ଧିଲା ଭଳି ସେ ସମାଜର ସବୁ ଶ୍ରେଣୀର ଲୋକଙ୍କ ସହିତ ମିଶି ଆଆନ୍ତି ଓ ତାଙ୍କ ସୁଖ ଦୁଃଖରେ ମଧ୍ୟ ଭାଗୀ ହୋଇ ଆଆନ୍ତି— ଗାଁ ଗୋହିରୀର ସଭ୍ୟତାଠାରୁ ସହରୀ ସଭ୍ୟତାର ଅତି ଆଧୁନିକ ଓ ବୌଦ୍ଧିକ ସ୍ତର ପର୍ଯ୍ୟନ୍ତ ଲୋକଙ୍କ ସହିତ ମିଶିବାରେ, ତାଙ୍କର ଯେ ଅହେତୁକ ଓ ଅପାର ଆନନ୍ଦ, ତା ହୁଏତ ଭାଷାରେ ପ୍ରକାଶକରି ହେବନି । ତାଙ୍କ ର ଗୃହ ଚଳଣୀ, ଠାଣି, ମାଣି, ଲେଖା ଦେଖା ସବୁ ବିଚିତ୍ର ବିନ୍ୟାସର—ଠିକ୍ ତାଙ୍କର ଦୈନନ୍ଦିନ ନିର୍ଦ୍ଦିଷ୍ଟ ମୁହୂର୍ତ୍ତରେ ବେଶ ପରିପାଟୀ ପରିବର୍ତ୍ତନର ନିରାଟ ଓ ନିଛକ ବିପର୍ଯ୍ୟୀ ଜଞ୍ଜାଳରେ ଜର୍ଜରିତ ହେବା ପର୍ଯ୍ୟନ୍ତ । ଏଇ ହେଲା ବିଚିତ୍ରକର୍ମୀଙ୍କ ସୃଷ୍ଟି ସର୍ଜନାରେ ଏଇ ଭଳି ଏକ ବିଚିତ୍ର ମଣିଷର ବିଶେଷ ବିଚିତ୍ରତା । ପୁଣି ତାଙ୍କର ଓଡ଼ିଆ ସାହିତ୍ୟର ବିଭିନ୍ନ ସୃଷ୍ଟିରେ ମଧ୍ୟ ସେଇ ବର୍ତ୍ତୁଳ ଓ ବର୍ଣ୍ଣାଢ୍ୟ ବିଚିତ୍ରତା, ଯାହାକି ସେ ଓ ତାଙ୍କ ସାହିତ୍ୟ କାଳେ କାଳେ ବିସ୍ମରଣ ହେବାର ନୁହେଁ···ଧନ୍ୟ ନୀଳମଣି··· ଧନ୍ୟ ତୁମର ବିଚିତ୍ର ଭଙ୍ଗିମା ।

କଟକ ଜିଲ୍ଲାସ୍ଥ ନଆଲୀ ଗ୍ରାମରେ ଏଇ ବିଚିତ୍ର ବ୍ୟକ୍ତିତ୍ୱର ମଣିଷ ମହାପାତ୍ର ନୀଳମଣି ସାହୁ ୧୯୨୭ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଶ୍ରୀ ଗିରିବର ମହାପାତ୍ର ଓ ମାତାଙ୍କ ନାମ ରାଧିକା ଦେବୀ । ୧୯୫୦ ମସିହାରେ ରେଭେନ୍ସା କଲେଜରୁ ଓଡ଼ିଆରେ ଏମ: ଏ: ପାଶ୍ କଲା ପରଠାରୁ ୧୯୫୧ ମସିହାରେ ସମ୍ବଲପୁର କଲେଜରେ ଲାଇବ୍ରେରିଆନ ପଦରେ ନିଯୁକ୍ତି ପାଇଲେ । ୧୯୫୨ ମସିହାରେ ଓଡ଼ିଆ ସାହିତ୍ୟରେ ଗୌଡ଼ୀୟ ବୈଷ୍ଣବ ଦର୍ଶନର ପ୍ରଭାବ ଉପରେ ଗବେଷକ ରୂପେ ଭାବେ ରେଭେନ୍ସା କଲେଜରେ ଯୋଗଦେଲେ । ୧୯୫୩-୧୯୫୭ ଭଦ୍ରଖ କଲେଜର ଓଡ଼ିଆ ଅଧ୍ୟାପକ, ୧୯୫୮ରୁ ୧୯୬୧ ପାରଲା ଖେମୁଣ୍ଡି କଲେଜର ଓଡ଼ିଆ ଅଧ୍ୟାପକ, ୧୯୬୧ରୁ ୧୯୬୪ ବାରିପଦା କଲେଜର ଓଡ଼ିଆ ଅଧ୍ୟାପକ, ୧୯୬୪ରୁ ୧୯୭୦ ବକ୍ସି ଜଗବନ୍ଧୁ ବିଦ୍ୟା କଲେଜର ଓଡ଼ିଆ ଅଧ୍ୟାପକ, ୧୯୭୦ରୁ ୧୯୭୫ ରେଭେନ୍ସା କଲେଜର ଓଡ଼ିଆ ଅଧ୍ୟାପକ, ୧୯୭୫ରୁ ୧୯୭୮ ଓଡ଼ିଶା ସରକାରଙ୍କ ସ୍ୱରାଷ୍ଟ୍ର ଲୋକ ସମ୍ପର୍କ ବିଭାଗରୁ ପ୍ରକାଶିତ ଉତ୍କଳ ପ୍ରସଙ୍ଗ ଓ Orissa reviewର ସମ୍ପାଦକ ଓ ସଂପ୍ରତି ୧୯୭୯ରେ ବକ୍ସି ଜଗବନ୍ଧୁ ବିଦ୍ୟାଧର ସଂଘ କଲେଜର ଓଡ଼ିଆ ଅଧ୍ୟାପକ ପଦରେ ନିଯୁକ୍ତି ଲାଭ କରନ୍ତି ।

ମହାପାତ୍ର ନୀଳମଣି ପିଲାଦିନରୁ ଯେତିକି ସ୍ୱାଧୀନଚେତା, ସେତିକି ନିର୍ଭୀକ । ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇ ତାଙ୍କର ବଡଭାଇ କୁଳମଣି ମହାପାତ୍ର କାରାବରଣ କରିଥିଲେ । ତାଙ୍କ ପରିବାର ଓ ବିଶେଷ କରି ବଡ଼ ଭାଇଙ୍କ ପ୍ରଭାବ ତାଙ୍କୁ ସ୍ୱାଧୀନଚେତା ଓ ନିର୍ଭୀକ କରିବାରେ ଖୋରାକ ଯୋଗାଇଥିଲା ଓ ସେ ପିଲାଦିନରୁ ଜୀବନ ଶେଷ ପର୍ଯ୍ୟନ୍ତ ରୁହନ୍ତି କଂଗ୍ରେସର ସଭ୍ୟ ଥିଲେ ଓ ସେ ପର୍ଯ୍ୟନ୍ତ ଖଦଡ଼ ପିନ୍ଧି ଥିଲେ ।

ଭୁବନେଶ୍ୱର ନିକଟସ୍ଥ ବୋଧଖଣ୍ଡି ଶାସନର ୮ ବ୍ରଜମୋହନ ପ୍ରହରାଜଙ୍କ ମଧ୍ୟମା କନ୍ୟା ଶ୍ରୀମତୀ ପ୍ରସନ୍ନ କୁମାରୀଙ୍କ ସହ ୧୯୫୨ ମସିହାରେ ତାଙ୍କର ବିବାହ ସଂପନ୍ନ ହୋଇଥିଲା । ସେ ଦୁଇ ପୁତ୍ର ଓ ଦୁଇ କନ୍ୟାର ଜନକ ।

ତାଙ୍କର ନିର୍ଭୀକତା ପ୍ରକାଶ କରି ସରକାରଙ୍କୁ ତୀବ୍ର ଭାବେ ଶିକ୍ଷା ସମସ୍ୟା ସମ୍ପର୍କରେ ସମାଲୋଚନା କରିବାରୁ '୫୩ରୁ ୧୯୫୭ ପର୍ଯ୍ୟନ୍ତ ଯଦିଓ ସେ ସରକାରୀ ଚାକିରୀ ପାଇଁ ମନୋନୀତ ହୋଇଥିଲେ; ତଥାପି ତତ୍‌କାଳୀନ ସରକାର ତାଙ୍କୁ ସରକାରୀ ଚାକିରୀରେ ବାହାଲ କରି ନଥିଲେ ବୋଲି ଏହି ଦୁଃଖଦ ଘଟଣା ତାଙ୍କର ବନ୍ଧୁ ବାନ୍ଧବ ଓ ଶୁଭେଚ୍ଛୁଙ୍କ ପାଖରେ ବାରମ୍ବାର ବ୍ୟକ୍ତ କରି ଥାଆନ୍ତି ।

ତାଙ୍କ ରଚିତ ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ରମ୍ୟରଚନା, କବିତା, କାବ୍ୟରଚନା, ସମାଲୋଚନା ସାହିତ୍ୟ, ଧର୍ମ ସାହିତ୍ୟ,ଅନୁବାଦ ସାହିତ୍ୟ ବର୍ତ୍ତମାନର ଓଡ଼ିଆ ସାହିତ୍ୟକୁ

ସମ୍ଭବ କରିଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଏ ଯାବତ୍ ସେ ୨୫-୨୬ ଖଣ୍ଡ ଉପାଦେୟ ପୁସ୍ତକ ପ୍ରଣୟନ କରିଛନ୍ତି । ସେଗୁଡିକ ନିମ୍ନରେ ସୂଚିତ କରାଗଲା ।

(କ) ପ୍ରେମ ଓ ନିଭ୍ରିକ, ଶଂକେଇ ଓ ଗବେଷଣା, ସେ କାଳ ପଖାଳ (ହାସ୍ୟ ରସାତ୍ମକ ଗଳ୍ପ)

(ଖ) ମିଛ ବାଘ୍ୟ, ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ, ବିଷ୍ଣୁମାୟା, ଖାଲୁ ଅପାଠାରୁ ପୃଷ୍ଠି ପର୍ଯ୍ୟନ୍ତ, ଭୌତିକ ରଜନୀର ଟ୍ରାଜେଡ଼ି, ଅନ୍ଧକାରର ସୂର୍ଯ୍ୟ, ପିଙ୍ଗଳାରେ ଅନ୍ୟ ଜଣେ, ଅନ୍ୟରୂପ ରୂପାନ୍ତର, ଆକାଶପାତାଳ, ଯା ଦେବୀ ମମ ଗୃହେଷୁ, କପୋତ ପକ୍ଷୀ ଗୁରୁ ମୋର (ବୃହତ୍ ଗଳ୍ପ ପୁସ୍ତକ)

(ଗ) ଧରା ଓ ଧାରା, ତାମସୀ ରାଧା (ଉପନ୍ୟାସ)

(ଘ) ମନୁଷ୍ୟ ସ୍ୱାଧୀନ କି ? କଳ୍ପିତ ସ୍ୱର୍ଗ କଳ୍ପିତ ବ୍ୟାଖ୍ୟା, ସ୍ୱପ୍ନ ସ୍ୱପ୍ନ ଆହୁରି ସ୍ୱପ୍ନ, ଭିନ୍ନ ଦୃଷ୍ଟି ଭିନ୍ନ ସ୍ୱର, ଆମେ ଓଡ଼ିଆ—ଓଡ଼ିଆ କିଏ ? (ପ୍ରବନ୍ଧ ଓ ସମାଲୋଚନା)

(ଙ) ଧ୍ୱନି ଧ୍ୱନି ପ୍ରତିଧ୍ୱନି, କବିତା ଅକବିତା (କବିତା)

(ଚ) ଶ୍ରୀ ରାମକୃଷ୍ଣ ପରମ ହଂସ, ଶ୍ରୀ ଅରବିନ୍ଦଙ୍କ ଯୋଗ, ଦିବ୍ୟ ଜୀବନର ସନ୍ଧାନେ ଆଲୋକ ସଂଗ୍ରାମ (ଅନୁବାଦ)

ଏହା ଛଡ଼ା ବିଭିନ୍ନ ଛଦ୍ମ ନାମରେ ବିଭିନ୍ନ ସମୟରେ ବହୁ ପତ୍ର ପତ୍ରିକା ଓ ସମ୍ବାଦ ପତ୍ର ରେ ସାମ୍ବାଦିକୀ ସାହିତ୍ୟ ରଚନା କରିଛନ୍ତି ।

ସେ ସମ୍ପ୍ରତି 'ଅରୋଭିଲଆନ୍' ତ୍ରୈମାସିକ ଧର୍ମପତ୍ରିକାର ସହ ସମ୍ପାଦକ । ୧୦ ଖଣ୍ଡ ସ୍ୱାମୀ ବିବେକାନନ୍ଦଙ୍କ ବାଣୀ ଓ ରଚନା ପୁସ୍ତକ ୨ୟ ସଂସ୍କରଣରେ ମୁଖ୍ୟ ସମ୍ପାଦକ ।

୧୯୫୧ ମସିହାଠାରୁ ଏ ଅବଧି ସାରା ଓଡ଼ିଶାରେ ସାହିତ୍ୟ, ସଂସ୍କୃତି ଓ ଧର୍ମ ଉପରେ ସହସ୍ରାଧିକ ବକ୍ତୃତାମାନ ପ୍ରଦାନ କରି ଉଚ୍ଚ ପ୍ରଶଂସିତ ହୋଇଛନ୍ତି । ସେ ଏ ଅବଧି ମଧ୍ୟ ବହୁ ସାଂସ୍କୃତିକ, ଧାର୍ମିକ ଓ ସାହିତ୍ୟିକ ଅନୁଷ୍ଠାନମାନଙ୍କରେ କର୍ମକର୍ତ୍ତା ଓ କର୍ମୀ ହିସାବରେ ସମ୍ପୃକ୍ତ ହୋଇ ଆସିଛନ୍ତି ।

ତାଙ୍କ ରଚିତ 'ଅନ୍ଧକାରର ସୂର୍ଯ୍ୟ' ବୃହତ୍ ଗଳ୍ପ Voice of Asia ନାମକ ଆମେରିକା ପ୍ରକାଶିତ ଗ୍ରନ୍ଥରେ ସମଗ୍ର ଭାରତର ୭ଟି ଗଳ୍ପ ମଧ୍ୟରେ ସ୍ଥାନ ପାଇଛି । ଏହାଛଡ଼ା ତାଙ୍କର ଅନ୍ୟାନ୍ୟ ବହୁଗଳ୍ପ ହିନ୍ଦୀ ଓ ଇଂରାଜୀରେ ଅନୁବାଦ ହୋଇଛି ।

ତାଙ୍କ ସାହିତ୍ୟିକ ଜୀବନର ସର୍ବଶ୍ରେଷ୍ଠ କୃତିତ୍ୱ ହେଲା—"ନବରସ ରୁଚିରା" ଅର୍ଥାତ୍ ନବରସରେ ତାଙ୍କ ଲେଖା ବିଶ୍ୱସ୍ତ ଭାବେ ଆଦୃତ ଓ ସମ୍ମାନିତ ହୋଇଛି । ବିଶେଷ କରି ସ୍ୱାଧୀନତା ପରବର୍ତ୍ତୀ ଗଦ୍ୟ ସାହିତ୍ୟ ସୃଷ୍ଟିରେ ବିଭିନ୍ନ ପ୍ରକାର ବିଚିତ୍ର ଭାଷା ଶୈଳୀ ଆଉ କାହାର ଗଦ୍ୟ ସାହିତ୍ୟ ସୃଷ୍ଟିରେ ପରିଦୃଶ୍ୟ ହୁଏ ନାହିଁ । ତାଙ୍କର ସବୁଠାରୁ ବଳିଷ୍ଠ ଓ ବୈଶିଷ୍ଟ୍ୟ ବିଶେଷତ୍ୱ ହେଲା ଯେ, ତାଙ୍କର କୌଣସି ଗଳ୍ପର ଭାଷା ଶୈଳୀ ତାଙ୍କର ଅନ୍ୟ ଗଳ୍ପର ଭାଷା ଶୈଳୀ ଠାରୁ ସମ୍ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ଦାବୀ କରେ । କେବଳ ଗଳ୍ପରେ ନୁହେଁ, ସେ ତାଙ୍କ ରଚିତ ପ୍ରବନ୍ଧ ମାନଙ୍କରେ ମଧ୍ୟ ବିଭିନ୍ନ ଭାଷା ଶୈଳୀ ବ୍ୟବହାର କରିଛନ୍ତି ।

ତାଙ୍କର ଛାତ୍ର ଜୀବନରୁ ହିଁ ସେ ସ୍ୱାମୀ ବିବେକାନନ୍ଦ ଓ ଶ୍ରୀ ରାମକୃଷ୍ଣ ପରମହଂସଙ୍କ ଆଦର୍ଶରେ ନିଜକୁ ଅନୁପ୍ରାଣିତ କରାଇ ଆସିଛନ୍ତି । ବର୍ତ୍ତମାନ ସେ ତାଙ୍କ ଜୀବନର ଉତ୍ତରାର୍ଦ୍ଧରେ ଶ୍ରୀମା ଓ ଶ୍ରୀ ଅରବିନ୍ଦଙ୍କ ଶିଷ୍ୟତ୍ୱ ଗ୍ରହଣ କରି ତାଙ୍କ ପ୍ରଦର୍ଶିତ ମାର୍ଗର ପଥିକ ହୋଇଛନ୍ତି ।

ତାଙ୍କ ଜୀବନର ଲକ୍ଷ୍ୟ, ଉଦ୍ଦେଶ୍ୟ ଓ ପ୍ରେରଣାର ପ୍ରଶ୍ନ ବାଟ ସମ୍ପର୍କରେ ଉତ୍ତର ଦେବାକୁ ଯାଇ ସେ କହନ୍ତି—"ଏ ଜୀବନକୁ ମୁଁ ପ୍ରଚୁର ଭଲ ପାଏ ଓ ଜୀବନର ଉତ୍ତରାୟଣ ଓ ରୂପାନ୍ତର ଚାହେଁ । ମନୁଷ୍ୟର ଉଜ୍ଜ୍ୱଳ ଭବିଷ୍ୟତ ଉପରେ ମୋର ଗଭୀର ବିଶ୍ୱାସ । ସାହିତ୍ୟ ମାଧ୍ୟମରେ ସାମାଜିକତାର ଅନ୍ତର ଭିତରେ ଗଭୀର ମାନବୀୟ ଅନୁଭୂତି ସଂଗ୍ରହ ମୋର ଲକ୍ଷ୍ୟ । ସାହିତ୍ୟ ହିଁ ମନୁଷ୍ୟ, ମନୁଷ୍ୟ ମଧ୍ୟରେ ଓ ମନୁଷ୍ୟ ଏବଂ ଇଶ୍ୱରଙ୍କ ଭିତରେ ସମ୍ପର୍କ ପ୍ରତିଷ୍ଠାରେ ଯେ ସାହାଯ୍ୟ କରି ପାରିବ, ଏହାହିଁ ମୋର ଦୃଢ଼ ବିଶ୍ୱାସ । ମୋର ସମାଜ ଚେତନା ଓ ଇଶ୍ୱର ଚେତନା ଏକୀଭୂତ । ମୁଁ ମଧ୍ୟ ରାଜନୀତି ସହିତ ପରୋକ୍ଷ ଭାବେ ସଂପୃକ୍ତ । ମାତ୍ର ସାହିତ୍ୟ ମୋର ଧର୍ମ, ମୋର କର୍ମ ଓ ମୋର ଜୀବନର ସର୍ବଶ୍ରେଷ୍ଠ ଅବଲମ୍ବନ ।

## * ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ

ବିଂଶ ଶତାବ୍ଦୀ

୧୯୧୩—

ଐତିହାସିକ ବୀରଭୂମି ଖୋର୍ଦ୍ଧାର ଅଳ୍ପ ଦୂରରେ ଗୁରୁଜଙ୍ଗ ଗ୍ରାମ । ଏହି ଗୁରୁଜଙ୍ଗ ଗ୍ରାମରେ ଏକ କ୍ଷତ୍ରିୟ ବଂଶରେ କବି ସଚ୍ଚିଦାନନ୍ଦ ରାଉତରାୟ ୧୯୧୩ ମସିହା ମଇମାସ ୧୩ ତାରିଖ ଦିନ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ଜନ୍ମିତ ପିତାଙ୍କ ନାମ ପ୍ରସନ୍ନ କୁମାର ରାଉତରାୟ ଓ ମାତାଙ୍କ ନାମ ମୁକ୍ତାଦେବୀ । ପିତା ପ୍ରସନ୍ନ କୁମାର ରାଉତରାୟ ଖୋର୍ଦ୍ଧାର ଜଣେ ସ୍ୱନାମଧନ୍ୟ ମୁକ୍ତାର ଥିଲେ ଓ କଂଗ୍ରେସ ନେତା ଥିଲେ । ତାଙ୍କ ବଡ଼ ମା' ହେମବତୀ ଓ ବଡ଼ବାପା ସଦାନନ୍ଦ ରାଉତରାୟ, ସଚ୍ଚିଦାନନ୍ଦଙ୍କୁ ହିଁ ଶିଶୁ ଅବସ୍ଥାରୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ ।

ସଚ୍ଚିଦାନନ୍ଦଙ୍କ ପିତାମହ ମଧୁସୂଦନ ରାଉତରାୟ ବୌଦ୍ଧ ରାଜ୍ୟର ଦେବାନ ଦାୟିତ୍ୱ ଗ୍ରହଣ କରିଥିଲେ । ତେଣୁ ସେହିକାଳରୁ ଲୋକେ ଏ ଅବଧି ରାଉତରାୟଙ୍କ ଘରକୁ "ଦିଆନ ଘର" ବୋଲି କହିଥାନ୍ତି । ଏହି ରାଉତରାୟଙ୍କ ପୂର୍ବ ପୁରୁଷମାନେ ପୁରୀ ଗଜପତି ମହାରାଜାଙ୍କର ଯୁଦ୍ଧଗୁରୁ ବା ଅସ୍ତ୍ରଗୁରୁ ଥିଲେ । ପ୍ରତିବର୍ଷ ନୂଆଁ ତିଥିରେ ଏହି ରାଉତରାୟ ବଂଶରୁ ଦଣ୍ଡ ପଇତା ପୁରୀ ଗଜପତିଙ୍କ ନିକଟକୁ ପଠାଯାଏ ଏବଂ ଗଜପତି ମଧ୍ୟ ସେହିଦିନ ରାଉତରାୟ ବଂଶକୁ ପାଟଯୋଡ଼ ପଠାଇଥାନ୍ତି । ଏ ଅବଧି ମଧ୍ୟ ଏହି ପ୍ରଥା ପ୍ରଚଳିତ ।

ସଚ୍ଚି ରାଉତରାୟଙ୍କ କବି ପ୍ରତିଭା ତାଙ୍କ ବାଲ୍ୟାବସ୍ଥାରୁ ହିଁ ଫୁଟି ଉଠିଥିଲା । ସେ ଯେତେବେଳେ ଖୋର୍ଦ୍ଧା ହାଇସ୍କୁଲର ନବମ ଶ୍ରେଣୀ ଛାତ୍ର ଓ ମାତ୍ର ତାଙ୍କୁ ୧୧ ବର୍ଷ ବୟସ, ସେ ତାଙ୍କର କବିତା ଲେଖା ଆରମ୍ଭ କରନ୍ତି । ୧୯୨୮ ମସିହା—ତାଙ୍କୁ ଯେତେବେଳେ ୧୫ ବର୍ଷ, ତାଙ୍କର କେତେକ କବିତା ଶିଶୁ ପତ୍ରିକା "ପଞ୍ଚାମୃତ"ରେ ପ୍ରକାଶ ପାଏ । କେବଳ କବିତା ଲେଖା ନୁହେଁ; ଏହି ଛାତ୍ରାବସ୍ଥାରୁ ହିଁ ସେ ଜଣେ ଭଲ ଫୁଟବଲ ଖେଳାଳୀ ଭାବେ ବିଶେଷ ପରିଚିତ ଥିଲେ । ପୁରୀ ଜିଲ୍ଲାର ଶ୍ରେଷ୍ଠ ଏକାଦଶଙ୍କ ମଧ୍ୟରେ ସେ ଖେଳାଳୀ ଭାବରେ ମଧ୍ୟ ବଛା ଯାଇଥିଲେ । ଏହି ସମୟରେ ଜାତିର ପିତା ମହାତ୍ମାଗାନ୍ଧୀଙ୍କ ପ୍ରବର୍ତ୍ତିତ ଜାତୀୟ ମୁକ୍ତି ଆନ୍ଦୋଳନ ସମଗ୍ର ଦେଶରେ ଘନେଇ ଉଠୁଥାଏ । ଏହି ଜାତୀୟ ମୁକ୍ତି ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାବରେ ଛାତ୍ର ସଚ୍ଚିଦାନନ୍ଦ ଯୋଗ ଦିଅନ୍ତି ଓ ସ୍କୁଲ କର୍ତ୍ତୃପକ୍ଷଙ୍କ କୋପ ଦୃଷ୍ଟିରେ ପଡ଼ି ସ୍କୁଲରୁ ବହିଷ୍କୃତ ହୁଅନ୍ତି ।

ସ୍କୁଲରୁ ବହିଷ୍କୃତ ହେବା ପରେ ପରେ ଖୋର୍ଦ୍ଧା ଜାତୀୟ ଆନ୍ଦୋଳନର ଭାବଧାରା ସହିତ ନିଜକୁ ପୂରାପୂରି ସାମିଲ କରି ଦିଅନ୍ତି ।

ସେତେବେଳେ ଏପରି ପରିସ୍ଥିତି ଉପୁଜିଲା ଯେ ସେ ଖୋର୍ଦ୍ଧାରେ ଆଉ ମାଟ୍ରିକ୍ୟୁ-ଲେସନ ପରୀକ୍ଷା ଦେଇ ପାରିଲେ ନାହିଁ । ପରେ ସେ କନ୍ଥି କଲିକତାରୁ ମାଟ୍ରିକ୍ୟୁଲେସନ ଓ ଆଇ. ଏ. ଏବଂ ତା'ପରେ ୧୯୩୯ ମସିହାରେ କଟକ ରେଭେନ୍ସା କଲେଜରୁ ବି.ଏ. ପାଶ୍ କଲେ । ତାଙ୍କର ଉଚ୍ଚଶିକ୍ଷା ଲାଭ ପାଇଁ ବଳବତ୍ତର ଇଚ୍ଛା ଥିଲେ ମଧ୍ୟ ତାଙ୍କୁ ଏମ. ଏ. କିମ୍ବା ଆଇନ ପଢ଼ିବା ପାଇଁ ରେଭେନ୍ସା କଲେଜରେ ଅନୁମତି ମିଳିଲା ନାହିଁ । ଫଳରେ ସେ ପରବର୍ତ୍ତୀ କାଳରେ କଲିକତା ଗଲେ ଓ ତାଙ୍କର କର୍ମ ଜୀବନ ଆରମ୍ଭ କଲେ ।

ଯୁବାବସ୍ଥାରୁହିଁ ସଚ୍ଚିଦାନନ୍ଦ ଖୋର୍ଦ୍ଧାର କଂଗ୍ରେସ ଓ କୃଷକ ଆନ୍ଦୋଳନର ଜଣେ ନେତା ଥିଲେ । ସେ ତତ୍କାଳୀନ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଦସ୍ୟ ଓ ନିଖିଳ ଭାରତ କୃଷକ ମହାସଭାର ଯୁଗ୍ମ ସମ୍ପାଦକ ଥିଲେ । ପୁଣି ସେତେବେଳକୁ ଗଡ଼଼ଜାତ ପ୍ରଜା ଆନ୍ଦୋଳନ ଖୁବ୍ ଜୋରରେ ମୁଣ୍ଡ ଟେକିଲାଣି । ଏହି ପ୍ରଜା ଆନ୍ଦୋଳନରେ ସଚ୍ଚିଦାନନ୍ଦ ନିଜକୁ ଝାସ ଦେଲେ ଓ ତା'ର ନେତୃତ୍ୱ ଗ୍ରହଣ କଲେ । ଏହି ପ୍ରଜା ଆନ୍ଦୋଳନ ନେତୃତ୍ୱ ଯୋଗୁଁ କଲିକତା ଏବଂ କଟକରେ ତାଙ୍କୁ ଜେଲଦଣ୍ଡ ଭୋଗିବାକୁ ପଡ଼ିଥିଲା । ୧୯୩୯ ମସିହାରେ 'ଗ୍ରାମ' ପତ୍ରିକାର ସମ୍ପାଦନା ଦାୟିତ୍ୱ ବହନ କରି ଉଗ୍ର ଜାତୀୟବାଦୀ ଲେଖା ଲେଖିବାରୁ ସେ ୨୫୦ ଟଙ୍କା ଜୋରିମାନା ଦଣ୍ଡରେ ଦଣ୍ଡିତ ହୋଇଥିଲେ । ସଚ୍ଚି ରାଉତରାୟଙ୍କୁ ଏହି ଜୋରିମାନା ଦଣ୍ଡରେ ଦଣ୍ଡିତ କରିବା ଯୋଗୁଁ ତାହାର ପ୍ରତିବାଦ ସ୍ୱରୂପ ତତ୍କାଳୀନ ଉତ୍କଳ ପ୍ରଦେଶ କଂଗ୍ରେସ କମିଟିର ସଭାପତି ପଣ୍ଡିତ ନୀଳକଣ୍ଠ ଦାଶ ଓ ସାଧାରଣ ସମ୍ପାଦକ ପଣ୍ଡିତ ଗୋଦାବରୀଶ ମିଶ୍ର ପୁରୁଣାଠାରେ ବସିଥିବା ପ୍ରଦେଶ କଂଗ୍ରେସ କମିଟି ମିଟିଙ୍ଗରେ ନିଜ ନିଜର ଇସ୍ତଫା ଦାଖଲ କରିଥିଲେ ଓ କଂଗ୍ରେସ ସରକାରଙ୍କ ଏ ପ୍ରକାର କାର୍ଯ୍ୟ କଳାପକୁ ତୀବ୍ର ବିରୋଧ କରିଥିଲେ ।

କୃଷକ ଆନ୍ଦୋଳନରେ ସକ୍ରିୟ ଭାଗ ନେଇଥିବାରୁ ଶ୍ରୀ ରାଉତରାୟଙ୍କ ଉପରେ କେତେକ ମାସ ଧରି ୧୪୪ ଧାରା ଅନୁଯାୟୀ ମୁଖବନ୍ଦ ଆଦେଶ ଜାରି ହୋଇଥିଲା । ୧୯୩୯ –୧୯୪୨ ମଧ୍ୟରେ ପ୍ରକାଶିତ ତାଙ୍କର କେତେକ ବିପ୍ଳବାତ୍ମକ କବିତା ବିଶେଷ କରି ତାଙ୍କର "ରକ୍ତଶିଖା" କବିତା ସଂଗ୍ରହ ସରକାରଙ୍କ ଦ୍ୱାରା ବାଜ୍ୟାପ୍ତ ହୋଇଥିଲା । ପୁନଶ୍ଚ ଗଣ ସଂଗ୍ରାମରେ ସକ୍ରିୟ ନେତୃତ୍ୱ ଗ୍ରହଣ କରିଥିବାରୁ ଦୀର୍ଘ ତିନିବର୍ଷ ଧରି କଡ଼ା ସି. ଆଇ. ଡ଼ି. ଜଗୁଆଳି ଭିତରେ ଏକ ପ୍ରକାର ନଜରବନ୍ଦୀ ହୋଇ ରହିଥିଲେ । ଏ ସତ୍ତ୍ୱେ ମଧ୍ୟ ସେ ତାଙ୍କର ବିପ୍ଳବାତ୍ମକ ଭୂମିକାରୁ ସେ ଓହରି ଯାଇ ନଥିଲେ ।

ତାଙ୍କର ବିପ୍ଳବାତ୍ମକ ପ୍ରଗତିବାଦୀ ଚିନ୍ତାଧାରା ପ୍ରସୂତ ଲେଖାମାନ ତାଙ୍କୁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଜଣେ ଶ୍ରେଷ୍ଠ କବି ଓ ଲେଖକ ଭାବେ ପରିଚିତ କରାଇ ପାରିଥିଲା । ତାଙ୍କ ରଚିତ ପୁସ୍ତକମାନଙ୍କ ମଧ୍ୟରେ "ପାଥେୟ" (୧୯୩୨), ପୂର୍ଣ୍ଣିମା (୧୯୩୩), ପଲ୍ଲୀଶ୍ରୀ (୧୯୪୦), ରକ୍ତଶିଖା (୧୯୩୯), (ଯାହାକି ସରକାରଙ୍କ ଦ୍ୱାରା ବାଜ୍ୟାପ୍ତ ହୋଇଥିଲା) ବାଜିରାଉତ (୧୯୩୮-୪୨), ଅଭିଯାନ (୧୯୩୮), ପାଣ୍ଡୁଲିପି (୧୯୪୭), ଅଭିଜ୍ଞାନ (୧୯୪୮), ହସନ୍ତ (୧୯୪୮), ଭାନୁମତୀର ଦେଶ (୧୯୪୯), ସ୍ୱଗତ (୧୯୫୮), କବିତା (୧୯୬୨), (କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପୁରସ୍କୃତ), କବିତା (୧୯୬୯, ଏସ୍ରାଆର ସ୍ୱପ୍ନ (୧୯୬୯), କବିତା (୧୯୭୧), କବିତା (୧୯୭୪), ମାୟାକୋଭସ୍କି କବିତା ସଂଗ୍ରହ (୧୯୬୫, (ଯାହାକି ସୋଭିଏତ୍ ଲ୍ୟାଣ୍ଡ ନେହେରୁ ପୁରସ୍କାରପ୍ରାପ୍ତ), ତାଙ୍କର କ୍ଷୁଦ୍ରଗଳ୍ପ ଓ ଉପନ୍ୟାସମାନଙ୍କ ମଧ୍ୟରେ ମଶାଣିର ଫୁଲ (୧୯୪୭, ମାଟିର ତାଜ୍ (୧୯୪୭), ଚୁରି (୧୯୪୮), ଚିତ୍ରଗ୍ରୀବ (୧୯୩୫ ପ୍ରଭୃତି ପ୍ରଧାନ । ୧୯୭୨ରେ ପ୍ରକାଶିତ ତାଙ୍କର ଗବେଷଣାତ୍ମକ ସମାଲୋଚନା ପୁସ୍ତକ ସାହିତ୍ୟର ସ୍ୱରୂପ ଓ ମୂଲ୍ୟବୋଧ ଓ ୧୯୭୪ରେ ପ୍ରକାଶିତ ସାହିତ୍ୟରେ ମୂଲ୍ୟବୋଧ, ଓଡ଼ିଆ ସମାଲୋଚନା ସାହିତ୍ୟ ଇତିହାସରେ ଏକ ଅନବଦ୍ୟ ଓ ଅବିସ୍ମରଣୀୟ ପ୍ରକାଶନ । ୧୯୬୫ ଓ ୧୯୭୫ ମସିହାରେ ଯଥାକ୍ରମେ ପ୍ରକାଶିତ "ସଚ୍ଚି ରାଉତରାୟ ଗ୍ରନ୍ଥାବଳୀ" ପ୍ରଥମଖଣ୍ଡ ଓ ଦ୍ୱିତୀୟଖଣ୍ଡ କବି ରାଉତରାୟଙ୍କର କୃତି ଓ କୃତିତ୍ୱର ସାର୍ବଭୌମ୍ୟ ପରିଚୟ ପ୍ରଦାନ କରିଛି ।

କଲିକତାର ପ୍ରବାସୀ ଓ ମଡର୍ଣ୍ଣ ରିଭ୍ୟୁ ପ୍ରେସ୍ 'ଗଣକବି ସଚ୍ଚି ରାଉତରାୟ' ନାମକ ଏକ ପ୍ରବନ୍ଧ ପୁସ୍ତକ ୧୯୫୫ ମସିହାରେ ପ୍ରକାଶ କରି କବି ରାଉତରାୟଙ୍କର ସାହିତ୍ୟିକ ଜୀବନର ମୂଲ୍ୟାଙ୍କନ କରିଥିଲେ । ଏହି ପୁସ୍ତକରେ ଭାରତର ୨୨ ଜଣ ବିଶିଷ୍ଟ ବିଦ୍ୱାନ୍ ଏବଂ ଭାରତରେ ପ୍ରତିଷ୍ଠିତ ବ୍ୟକ୍ତି ସଚ୍ଚି ରାଉତରାୟଙ୍କ ସମ୍ପର୍କରେ ନିବନ୍ଧମାନ ଲେଖିଛନ୍ତି । ସେମାନଙ୍କ ମଧ୍ୟରେ ଡକ୍ଟର କାଳିଦାସ ନାଗ, ଶ୍ରୀ ହାରିନ୍ଦ୍ରନାଥ ଚଟ୍ଟୋପାଧ୍ୟାୟ, ଆନ୍ଧ୍ର ବିଶ୍ୱବିଦ୍ୟାଳୟର କୁଳପତି ଡକ୍ଟର କେ. ଆର. ଶ୍ରୀନିବାସ ଆଏଙ୍ଗାର, ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ କୁଳପତି ଡକ୍ଟର ପ୍ରାଣକୃଷ୍ଣ ପରିଜା, ଶ୍ରୀ ହୁମାୟୁନ କବିର, ଅଧ୍ୟାପକ ବିଶ୍ୱନାଥ ସତ୍ୟନାରାୟଣ ଓ ଅଧ୍ୟାପକ ପ୍ରିୟରଞ୍ଜନ ସେନ୍‌ଙ୍କ ନାମ ବିଶେଷ ଉଲ୍ଲେଖଯୋଗ୍ୟ ।

ତାଙ୍କ ପ୍ରଣୀତ "ବାଜିରାଉତ" (ଢେଙ୍କାନାଳ ପ୍ରଜା ଆନ୍ଦୋଳନରେ ଗୁଳିମାଡ଼ରେ ଯେଉଁ ୧୨ ବର୍ଷର ବାଜିରାଉତ ସହିଦ ହୋଇଥିଲେ) ପୁସ୍ତକ ସେତେବେଳେ ସାରା ଓଡ଼ିଶାରେ ଚହଳ ପକାଇଥିଲା ଏବଂ ଯାହା ଫଳରେ କି ସଚ୍ଚିଦାନନ୍ଦଙ୍କ ବିପ୍ଳବାତ୍ମକ ପ୍ରଗତିବାଦୀ ପ୍ରତିଭା ଏ ଦେଶରେ ସର୍ବବାଦୀ ସମ୍ମତ ରୂପେ ସ୍ୱୀକୃତି ଲାଭ କରିଥିଲା ।

'ବାଜିରାଉତ" କବିତା ଗ୍ରନ୍ଥର କେତୋଟି ପଂକ୍ତି ବେବି ପ୍ରତ୍ୟେକ ପାଠକର ପ୍ରାଣକୁ ଆତ୍ମ ବିସ୍ମୃତ କରିଥାଏ ।

ସେଗୁଡ଼ିକ ହେଲା—

"ନୁହେଁ ବନ୍ଧୁ ନୁହେଁ ଏହା ଚିତା
ଏ ଦେଶ ତିମିର ତଳେ ଏ ଅଲିଭା
ମୁକତି ସଳିତା
ନୁହେଁ ଏହା ଜାଳ ଯିବା ପାଇଁ
ଏହାର ଜନମ ଏଠି ଜାଳି ପୋଡ଼ି
ଦେବାକୁ ଧରାଇ ।

\+ \+ \+

ଏଡ଼ିକ ସେ 'ଅମାନିଆ ପିଲା'
ଫିରିଙ୍ଗିର ଗୁଳି, ଗୁଳା, ରଜାଙ୍କ ଝଡ଼
କିଛି ନ ମାନିଲା,
ଧୂଳି ଖେଳ ଛାଡ଼ି
ଗୁଳି ଆଗେ ଜୀବନକୁ ହସି ହସି
ଦେଲା ସିନା ବାଢ଼ି
ଝଡ଼ଠାରୁ ସେ ଯେ ବଡ଼
ମେଘଠାରୁ ଆହୁରି ସେ କଳା
ସାନ ଦେହେ ଖେଳେ ତାର
ଜୀବନର ଅଲିଭା ଚପଳା
ରାତି ପରି ହୁଏ ବାଟ ବଣା
ପଥ ଭୁଲି ଏଣେ ତେଣେ ବୋହି ଯାଏ
ସେ ପଗ୍ର ଝରଣା ॥

\+ \+ \+

ପ୍ରତି ଜନ୍ମ ପରଜନ୍ମ ବେଳେ
ତାହାରି ଅଲିଭା ସ୍ମୃତି ଏ ଦେଶର
ପ୍ରତି ମନେ ଖେଳେ ।

ଜନ୍ମେ ଯେହ୍ନ ଢଏ ଦମ୍ଭ,
ପରୁଜନ୍ମେ ଦେଇଆଏ ଆଶା
ସେ ନୁହେଁ ରୁମର ଖାଲ,
ସେ ଯେ ମାତା ବିଶ୍ୱର ପିପାସା ।।
ନୁହେଁ ସେ ତ କେବଳ ସନ୍ତାନ ।
ସେ ଯେ ଚର ମୁକ୍ତ—ବୀଜ
ଜନତାର ଶୁଭ ଅନୁଷ୍ଠାନ ।

ତାଙ୍କର ଏଇ ବାଜିରାଉତ ଓ ଅନ୍ୟାନ୍ୟ ଗୁଳିଶ୍‌ କବିତା ପ୍ରଖ୍ୟାତନାମା ସାହିତ୍ୟିକ ହିରେନ୍ଦ୍ରନାଥ ଚଟ୍ଟୋପାଧ୍ୟାୟଙ୍କ ଦ୍ୱାରା "The Boat man boy and Forty Poem" ଶିରୋନାମାରେ ଅନୁବାଦିତ ହୋଇ ସମଗ୍ର ଭାରତ ବର୍ଷ ଓ ବିଶ୍ୱର ଅନ୍ୟାନ୍ୟ ଦେଶମାନଙ୍କ ଦ୍ୱାରା ବିଶେଷ ଭାବେ ସମାଦୃତ ଓ ସମ୍ମାନିତ ହୋଇଛି । ଏହା ବ୍ୟତୀତ ତାଙ୍କ ପ୍ରଣୀତ କେତେଗୁଡ଼ିଏ ଗଳ୍ପ ମଧ୍ୟ ଇଂରାଜୀ ଭାଷାରେ ଅନୁବାଦିତ ହୋଇ ତାଙ୍କୁ ଦେଶ ବିଦେଶରେ ଜଣେ ସର୍ବଶ୍ରେଷ୍ଠ ଗାଳ୍ପିକ ଭାବେ ପ୍ରତିଷ୍ଠିତ କରାଇଛି । ୧୯୪୨ ମସିହାରୁ ୧୯୭୧ ମସିହା ପର୍ଯ୍ୟନ୍ତ ସେ କଲିକତାର ସର୍ବବୃହତ୍‌ ସୂତା କଳ ଓ ଲୁଗାକଳ କେଶୋରାମ କଟନ୍‌ ମିଲ୍‌ସରେ ଶ୍ରମମଙ୍ଗଳ ଅଫିସର, ମୁଖ୍ୟ ଶ୍ରମମଙ୍ଗଳ ଅଫିସର, ପରେ ପରେ ଏକ୍‌ଜିକ୍ୟୁଟିଭ ଅଫିସର ଓ ଫ୍ୟାକ୍‌ଟ୍ରି ମ୍ୟାନେଜର ରୂପେ ପ୍ରାୟ କୋଡ଼ିଏ ବର୍ଷ କାଳ ଅବସ୍ଥାପିତ ହୋଇଥିଲେ । ତାଙ୍କର ଉଗ୍ର ଜାତୀୟତାବାଦ ଓ ବୈପ୍ଲବୀକ ଚିନ୍ତାଧାରା ଯୋଗୁଁ ଓଡ଼ିଶାରେ ଆଇନ ପଢ଼ିବାକୁ ତାଙ୍କୁ ମନା ହେବାରୁ ବା ଅନୁମତି ନ ମିଳିବାରୁ ତାଙ୍କର କର୍ମମୟ ଜୀବନ ହିଁ ସେ କଲିକତାରେ ଆରମ୍ଭ କରିବାକୁ ବାଧ୍ୟ ହୋଇଥିଲେ । ତାଙ୍କର ଏହି କଲିକତା ରହଣି କାଳରେ ସେ ପ୍ରବାସୀ ଓଡ଼ିଆ ଆନ୍ଦୋଳନର ତୁଙ୍ଗ ନେତୃତ୍ୱ ଗ୍ରହଣ କରିଥିଲେ ଓ କଲିକତାର ବିଭିନ୍ନ ଅଞ୍ଚଳରେ ରହୁଥିବା ପ୍ରାୟ ପାଞ୍ଚ ଲକ୍ଷ ଓଡ଼ିଆଙ୍କର ସାଂସ୍କୃତିକ ଓ ସର୍ବବିଧ ଉନ୍ନୟନମୂଳକ କାର୍ଯ୍ୟରେ ନିଜକୁ ସମ୍ପୂର୍ଣ୍ଣରୂପେ ସମର୍ପି ଦେଇଥିଲେ । ୧୯୫୦ମସିହାରେ ପ୍ରବାସୀ ଉତ୍କଳ ସମ୍ମିଳନୀ ଏବଂ ୧୯୫୧ ମସିହାରେ ନିଖିଳ ଭାରତ ଉତ୍କଳ ସମ୍ମିଳନୀର ସେ ମୁଖ୍ୟ ବ୍ୟବସ୍ଥାପକ ଥିଲେ । ଏହି ସମ୍ମିଳନୀରେ ଲାଲବାହାଦୂର ଶାସ୍ତ୍ରୀ, ହୁମାୟୁନ, କବୀର, ଅଶୋକ ସେନ, ପ୍ରଫୁଲ୍ଲ ସେନ ଏବଂ ହରେକୃଷ୍ଣ ମହତାବ ପ୍ରମୁଖ ଆମନ୍ତ୍ରିତ ହୋଇ ତାଙ୍କର ଭାଷଣମାନ ପ୍ରଦାନ କରି ସଚ୍ଚି ରାଉତରାୟଙ୍କ ସାଙ୍ଗଠନିକ ଦକ୍ଷତାକୁ ଉଚ୍ଚପ୍ରଶଂସା କରିଥିଲେ । ସେହି ସମୟରେ ସଚ୍ଚିବାବୁ ମଧ୍ୟ ନିଖିଳ ଭାରତ ଉତ୍କଳ ମହାସଭାର ସଭାପତି ନିର୍ବାଚିତ ହୋଇଥିଲେ । ଏହାଛଡ଼ା ଗାର୍ଡ଼େନରିଚ ଶାନ୍ତି କମିଟିର ସଭାପତି ରୂପେ ସେ ଦକ୍ଷିଣ କଲିକତାରେ ତୀବ୍ର ସାମ୍ପ୍ରଦାୟିକ ଚଣ୍ଡଗୋଳ ବେଳେ ଶାନ୍ତିସ୍ଥାପନ ପ୍ରଚେଷ୍ଟାରେ ସକ୍ରିୟ ଅଂଶ ଗ୍ରହଣ କରି ସମର୍ଥ ହୋଇଥିଲେ ।

ସମାଜ ସେବା ବିଷୟକ ଜ୍ଞାନ ଓ ଅଭିଜ୍ଞତା ଯୋଗୁଁ ୧୯୫୬ ମସିହାରେ ଅଷ୍ଟ୍ରେଲିଆ ଓ ନ୍ୟୁଜିଲ୍ୟାଣ୍ଡ ଠାରେ ଅନୁଷ୍ଠିତ "ଆନ୍ତର୍ଜାତିକ ସମାଜ ସେବା ସେମିନାର"ରେ ଭାରତ ସରକାରଙ୍କ ମନୋନୀତ ପ୍ରତିନିଧି ରୂପେ ଶ୍ରୀ ରାଉତରାୟ ଯୋଗ ଦେଇଥିଲେ । ତାଙ୍କର ଅଷ୍ଟ୍ରେଲିଆ ଓ ନ୍ୟୁଜିଲାଣ୍ଡଠାରେ ଅବସ୍ଥାନ କାଳରେ ସେ ବହୁ ସମାଜ କଲ୍ୟାଣ ଓ ସାହିତ୍ୟ ସଂସ୍ଥାମାନଙ୍କରେ ଭାଷଣ ପ୍ରଦାନ କରି ସମ୍ବର୍ଦ୍ଧିତ ହୋଇଥିଲେ । ସେହି ବର୍ଷ ମଧ୍ୟ ସେ ଶ୍ୟାମ, ଇଣ୍ଡୋନେସିଆ, ଜାପାନ, ସିଂହଳ, ଫିଲିପାଇନ୍ ପ୍ରଭୃତି ସୁଦୂରପ୍ରାଚ୍ୟ ଦେଶମାନ ମଧ୍ୟ ଭ୍ରମଣ କରି ସମାଜକଲ୍ୟାଣ ଓ ସାହିତ୍ୟ ସମ୍ପର୍କରେ ଗବେଷଣାପୂର୍ଣ୍ଣ ଭାଷଣମାନ ପ୍ରଦାନ କରି ଉଚ୍ଚ ପ୍ରଶଂସିତ ହୋଇଥିଲେ ।

୧୯୫୫ ମସିହାରେ ମଧ୍ୟ ସେ ଆମେରିକାର ସର୍ବଶ୍ରେଷ୍ଠ ବିଶ୍ୱବିଦ୍ୟାଳୟ ହାର୍ଭାର୍ଡ୍ କର୍ତ୍ତୃପକ୍ଷଙ୍କ ନିମନ୍ତ୍ରଣ କ୍ରମେ "ବିଶ୍ୱ କଳା ଓ ବିଜ୍ଞାନ" ସେମିନାରରେ ଭାରତର ପ୍ରତିନିଧିତ୍ୱ କରି ଭାଷଣ ଦେଇଥିଲେ । ପୁନଶ୍ଚ ଆମେରିକାର ନ୍ୟୁୟର୍କ, ବଷ୍ଟନ ଓ ଓ୍ୱାସିଙ୍ଗଟନରେ ସାହିତ୍ୟ ସମ୍ପର୍କରେ ଇଂରାଜୀଭାଷାରେ ଭାଷଣମାନ ପ୍ରଦାନ କରିଥିଲେ ।

ସେହି ୧୯୫୫ ମସିହାରେ ଶ୍ରୀ ରାଉତରାୟ ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ, ଇଟାଲି ସୁଇଜରଲାଣ୍ଡ ଓ ଇଜିପ୍ଟ ପ୍ରଭୃତି ଦେଶମାନଙ୍କର ନିମନ୍ତ୍ରଣ ରକ୍ଷା କରି ସେହି ସେହି ଦେଶମାନଙ୍କୁ ପରିଭ୍ରମଣରେ ଯାଇ ବହୁ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନମାନଙ୍କରେ ତାଙ୍କର ସୁଚିନ୍ତିତ ବକ୍ତୃତାମାନ ପ୍ରଦାନ କରିଥିଲେ ।

୧୯୬୨ ମସିହା—ଯେତେବେଳେ ଚୀନ ଭାରତ ଯୁଦ୍ଧ ଘମାଘୋଟ ଲାଗିଥାଏ, ସେତିକିବେଳେ ଶ୍ରୀ ରାଉତ୍ରାୟ ଇଂଲଣ୍ଡ ଓ ଆମେରିକା ସରକାରଙ୍କ ନିମନ୍ତ୍ରଣ କ୍ରମେ ସେଠାରେ ଭାଷଣମାନ ପ୍ରଦାନ କରି ଭାରତ ସପକ୍ଷରେ ଜନମତ ସୃଷ୍ଟି କରିବାରେ ଜଣେ ଭାରତର ନାଗରିକ ହିସାବରେ ନିଜର ଗୁରୁଦାୟିତ୍ୱ ସମ୍ପୂର୍ଣ୍ଣ କରିଥିଲେ ଓ ସେହି ସମୟରେ ମଧ୍ୟ ବହୁ ସାମ୍ବାଦିକ ଓ ସାହିତ୍ୟ ସଂସ୍ଥାମାନଙ୍କ ଦ୍ୱାରା ଆୟୋଜିତ ସଭାମାନଙ୍କରେ ସେ ଭାରତର ସ୍ଥିତି ଓ ବୈଦେଶିକ ନୀତି ସମ୍ପର୍କରେ ବକ୍ତୃତାମାନ ପ୍ରଦାନ କରିଥିଲେ ।

କଲିକତାସ୍ଥ କେଶରାମ୍ କଟନ୍‌ମିଲ୍ କର୍ତ୍ତୃପକ୍ଷଙ୍କ ସହିତ ମନାନ୍ତର ଘଟିବାରୁ ୧୯୬୮ ମସିହାରେ ସେଠାକାର ଚାକିରିରୁ ଇସ୍ତଫା ଦେଇ ସେ କଟକ ଫେରି ଆସିଲେ ଓ କଟକରେ ସ୍ଥାୟୀ ଭାବେ ବସବାସ କଲେ । ତାଙ୍କର ଏହି କଟକ ରହଣୀ କାଳରେ ସେ ମହାନଦୀ କୂଳସ୍ଥ ଜଗତପୁର ଠାରେ 'ଓଡ଼ିଶା ବୋର୍ଡ଼ ମିଲ୍' ନାମକ ଏକ କାରଖାନା

ସ୍ଥାପନ କରିଥିଲେ । ଏହି କାରଖାନା ହିଁ ଓଡ଼ିଶାରେ ପ୍ରଥମ ବଡ଼ା ବୋର୍ଡ଼ ତିଆରି କାରଖାନା । ତାଙ୍କର ପ୍ରତିଷ୍ଠିତ ଓ ପରିଚାଳିତ କାରଖାନାରେ ପ୍ରାୟ ଦେଢ଼ଶହ କର୍ମଚାରୀ ନିଯୁକ୍ତ ହୋଇଥିଲେ ।

୧୯୪୫ ମସିହାରେ ଶ୍ରୀ ରାଉତ୍‌ରାୟ ଆନ୍ଧ୍ରର ବିଖ୍ୟାତ ନୁଜ୍‌ଭିଡ୍ ରାଜବଂଶୀୟ ଗୋଲପଲ୍ଲୀ ରାଜାଙ୍କର କନିଷ୍ଠାକନ୍ୟା ଭୂଦେବୀଙ୍କୁ ବିବାହ କରିଥିଲେ । ତାଙ୍କର ଏହି ବିବାହ ଉତ୍ସବରେ ଆନ୍ଧ୍ରର ବହୁ କବି ଓ ସାହିତ୍ୟିକ ଯୋଗ ଦେଇଥିଲେ । ଗୋଲପଲ୍ଲୀର ରାଜାସାହେବ ପିଠାପୁରମ ମହାରାଜାଙ୍କର ଶାଳକ । ତାଙ୍କର ଅନ୍ୟତମ ଶାଳକ ଭୁସୁର କୁମାର ରାଜା ଆନ୍ଧ୍ର ବିଶ୍ୱବିଦ୍ୟାଳୟର କୁଳପତି ଓ ଆନ୍ଧ୍ର ସରକାରଙ୍କ ସମାଜ କଲ୍ୟାଣ ମନ୍ତ୍ରୀ ଥିଲେ । ତାଙ୍କର ଏଇ ବିବାହ ଦ୍ୱାରା ଆନ୍ଧ୍ର ଓ ଓଡ଼ିଶାର ସାମାଜିକ ତଥା ସାଂସ୍କୃତିକ ସମ୍ପର୍କ ବିଶେଷଭାବେ ଦୃଢ଼ୀଭୂତ ହୋଇଥିଲା । ଶ୍ରୀ ରାଉତରାୟଙ୍କ ଦୁଇ ପୁତ୍ର ଓ ଦୁଇ କନ୍ୟା ।

ଏଠାରେ ଉଲ୍ଲେଖ କଲେ ଏହା ଅପ୍ରାସଙ୍ଗିକ ହେବ ନାହିଁ ଯେ ଏହି ନୁଜ୍‌ଭିଡ୍ ରାଜବଂଶର ଆଉ ଜଣେ କନ୍ୟା ମଧ୍ୟ ଓଡ଼ିଶାରେ ବିବାହ କରିଛନ୍ତି । ସେ ହେଉଛନ୍ତି ଖଲ୍ଲିକୋଟର ରାଣୀ ଶ୍ରୀମତୀ ସୁଜ୍ଞାନ କୁମାରୀ ଦେବୀ ।

ଭାରତର ରାଷ୍ଟ୍ରପତି ଶ୍ରୀ ରାଉତ୍‌ରାୟଙ୍କୁ ତାଙ୍କର ସାହିତ୍ୟ ଓ ସମାଜସେବା କୃତି ଯୋଗୁଁ ୧୯୬୨ ମସିହାରେ "ପଦ୍ମଶ୍ରୀ" ଉପାଧିରେ ଭୂଷିତ କରିଥିଲେ । ୧୯୬୮ ମସିହାରେ ପ୍ରଥମ ସର୍ବଭାରତୀୟ କବି ସମ୍ମେଳନ କଲିକତା ଅଧିବେଶନରେ ଶ୍ରୀ ରାଉତ୍‌ରାୟ ସଭାପତିତ୍ୱ କରିଥିଲେ । ୧୯୭୭ ଓ ୧୯୭୮ ମସିହାରେ ଆନ୍ଧ୍ର ୟୁନିଭରସିଟି ଓ ବ୍ରହ୍ମପୁର ୟୁନିଭରସିଟି ତାଙ୍କ ସାହିତ୍ୟ କୃତି ଯୋଗୁଁ ତାଙ୍କୁ ଡି. ଲିଟ୍. ଉପାଧିରେ ଭୂଷିତ କରିଥିଲେ ।

ଶ୍ରୀ ରାଉତ୍‌ରାୟ ଓଡ଼ିଆ ଭାଷା ଛଡ଼ା ବଙ୍ଗଳା ଓ ଇଂରାଜୀ ଭାଷାରେ ମଧ୍ୟ ବହୁ କବିତା ଓ ପ୍ରବନ୍ଧ ମାନ ରଚନା କରିଛନ୍ତି ଓ ସେ ସବୁ ଲେଖା ବଙ୍ଗଳା ଓ ଇଂରାଜୀ ପତ୍ର ପତ୍ରିକାମାନଙ୍କରେ ପ୍ରକାଶ ପାଇ ତାଙ୍କୁ ଅଶେଷ ଖ୍ୟାତି ପ୍ରଦାନ କରିଛି । ଶ୍ରୀ ରାଉତରାୟ ଅଧୁନା ପ୍ରଗତିଶୀଳ "ଦିଗନ୍ତ" ସାହିତ୍ୟ ପତ୍ରିକାର ସମ୍ପାଦକ ଓ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ।

ଶ୍ରୀ ରାଉତରାୟ ଜଣେ ବିପ୍ଳବୀ ଓ ପ୍ରଗତିଶୀଳ କବି ରୂପେ ଓଡ଼ିଶାରେ ସ୍ୱୀକୃତ ଓ ସମ୍ମାନିତ । ଓଡ଼ିଆ କବିତା ରାଜ୍ୟକୁ ନୂତନ ଆଙ୍ଗିକ ଓ ଆତ୍ମିକ

ଦୃଷ୍ଟିକୋଣ ପ୍ରଦାନ କରିବାରେ ସେ ମଧ୍ୟ ଅନ୍ୟତମ ଅଗ୍ରଣୀ ଭୂମିକାରେ ଅବସ୍ଥାପିତ । ଏବେ ବି ତାଙ୍କର ସେହି ବଜ୍ର ନିର୍ଘୋଷ କବିତା ପ୍ରତ୍ୟେକ ପ୍ରାଣକୁ ନୂତନ ଚେତନାରେ ଅଭିମନ୍ତ୍ରିତ କରିଥାଏ ।

"ଆରେ ଆରେ ପଳାୟନ୍ମା ପନ୍ଥୀ
ଛିନ୍ନ କରି କାହିଁ ଯିବୁ ଧରଣୀର ଗ୍ରନ୍ଥି
କାହିଁ ଖୋଜୁ ନେବୁରେ ଆଶ୍ରୟ
ତୋର ସେହି କୁଞ୍ଜବନ ଦେଉଳରେ
ପାଇବ ଆଶ୍ରୟ

କମ୍ପା

ଦେଖିନେବୁ ତାକୁ ଗୁଡ଼ିଦେ' ବାଟ
କପିଳାସ ବଣ ଅସ୍ରାଇ ଅସ୍ରାଇ
ଶୁଭେ ଆଜି ତାର ରକ୍ତ କୁହାଟ
ଆମ ଗାଁ ଗଣ୍ଡା କଲା ଯେ ମଶାଣି
ପଥ୍‌ର ପସ୍ତ୍ରର ତାକୁ ଧରି ଆଣି
କୋଉ ବୋପା ତା'ର ପିଠିରେ ପଡ଼ିବ
ଦେଖି ନେବୁ ତାକୁ ଗୁଡ଼ି ଦେ' ବାଟ ୧

କମ୍ପା

କହୁଚି ଷ୍ଟାଲିନ୍
ଏପ୍ରିଲ ପଚିଶ୍ ଆଗୁଁ ଲାଲ୍‌ସେନା ଘେରିବେ ବର୍ଲିନ
ଷ୍ଟାଲିନ୍‌ର କଥା କେବେ ହୁଏ ନାହିଁ ମିଛ
ଦୁନିଆର ପଂକ୍ତିକାର ଏ କଥାତ ଅଂଗେ ନିଭାଇଚ
ନୁହେଁ ଏହା ତମ ଆମ କଥା
ଷ୍ଟାଲିନ୍‌ର କଣ୍ଠେ ଏହା କହୁଅଛୁ ବିଶ୍ୱର ଜନତା
ହୋଇପାରେ ଡେରି ବା ଘଡ଼ିଏ
ଦିନେ ବା ଓଳିଏ
ଏ ପାଖ ସେ ପାଖ
କିନ୍ତୁ ଯାହା ଥରେ କହେ ଜନତାର କଂଠ ଗୁଡ଼ି ଡାକ

ମିଥ୍ୟା ତାହା କେବେ ହୁଏ ନାହିଁ
ଇତିହାସ ଏଇ କଥା ବାରେ ବାରେ ଦେଇଚି ଚେତାଇ
ଶୁଣ ଶୁଣ ବିଶ୍ୱବାସୀ ଶୁଣ ଶୁଣ ଝଡ଼ର ଆଓ୍ୱାଜ
ଆଜ ଯଦି ନୁହେଁ କାଲି, ହବ ହବ ଜନତାର ରାଜ
ଶୁଣାଯାଏ ସ୍ତାଲିନ୍‌ର ବାଣୀ
ପ୍ରଗତିର ଇସ୍ତାହାର ଲେଖେ ଆଜ ନାଜୀ ରାଜଧାନୀ

କମ୍ପା

ଶୁଣ ମୋର କନ୍ୟା
ମଣିଷର ମନ ପ୍ରାଣେ ଆସୁଛି ଯେ ପ୍ରାଣ ବାନ ବନ୍ୟା
ଝଟିକାର ଉତ୍‌ପ୍ଲବୀ ତୋଫାନ
ତା' ମଧ୍ୟରୁ ଜନ୍ମ ତୋର
ତା' ମଧ୍ୟେ ତୋ' ଅନ୍ତିମ ନିର୍ବାଣ

\+ \+ \+

ବହୁ ମତ, ବହୁ ପଥ, ଏକାଧିକ ବିଭିନ୍ନ ନିଶାଣ
ପ୍ରଢଷ୍ଟିରେ ନବୁ ଚିହ୍ନି
ବାଛିନେବୁ ହୋଇ ସାବଧାନ
ଯେ କେତନ ଶତଛିଦ୍ର, ଧୂଳିମୟ ଆପଣା ବକ୍ଷରେ
ବୋହିଥିବ ଜ୍ୱଳନ୍ତ ଅକ୍ଷରେ
ସର୍ବହରା ମଣିଷର ନାମ
ତାକୁଇ ତୁ କରିବୁ ପ୍ରଣାମ
ସେ ପତକାଧାରୀ ମାନେ ଗଲା
ଦବୁ ଦବୁ ଲେ ସ୍ପୃଷ୍ଟି ତା ! ପୋଛି ମନୁ
ସନ୍ଦେହର ଦୋଳା"—

କମ୍ପା

ତୁମେ ଦେଖିଅଛ ଶିଳାରେ ତା'ର ଚ
ରମ୍ୟ କଳାର ରୂପ
ମୁଁ ଦେଖିଚି ତହିଁ କୋଟି କଂକାଳ
ଭଗ୍ନ ବୁକୁର ସ୍ତୂପ

\+ \+ \+

ମୁଁ ଫେରିଚି ହାତୁ ଦୀନ ବେଦେଶିକ
ତାହାର ସିଂହଦ୍ୱାରୁ
ପୁଂଜିତ ବ୍ୟଥା ଅବସାଦ ଗୁରୁ
ବଳିଅଛି ହୃଦ ଗୁରୁ
ମୂଳିଆର ଆଖି ନେଇ
ମୁଁ ଦେଖିଚି ସେଇ ମଂଦିର ରୂପ
ବ୍ୟଥାର ଆରତି ଦେଇ
ମୁଁ ଦେଖିଚି ସେଇ ଶିଳାର କବରେ
କେତେ କାରିଗର ଗ୍ରୀବ
ତଳେ ତଳେ ହାତୁ ନଭିଲ ସମାଧି
ସହିଲ କଷଣ ତାବ
କେତେ ମଜଦୁର ଗର୍ଦ୍ଦଭ ପରି
ବହି ବହି ଶିଳା ଭାର
ବଙ୍କା କଲେଟି ନିଜ ମେରୁ ହାଡ଼
ହିସାବ କି ଅଛି ତା'ର ? ?

ଏ ସମସ୍ତ ସତ୍ତ୍ୱେ ସଚ୍ଚିରାୟଙ୍କ କବିତାର ଥିମ୍ (Theme) ବା ଲିଜେଣ୍ଡ (Leglend) କଣ ବା କଣ ହେବାର କଥା ସେ ତାହା ଅତି ଉଦାତ୍ତ କଣ୍ଠରେ ଘୋଷଣା କରି କହିଛନ୍ତି—

"ମୁଁ ସଚ୍ଚି ରାଉତରାୟ
(ନୁହେଁ ଟାଗୋର ବା ସେଲୀ)
ମୁଁ ଏଇ ମାଟିର ଧରା
ଆଉ ଆକାଶର କବି
କାମ ନୁହଁ ମୋ ଖାଲି ଆଙ୍କିବା କାଗଜରେ ଛବି ॥

ପେଶାଦାର ଗାୟକ ମୁଁ ନୁହଁ,
ତୁମେ ମୋର ଛପା ବହି ଯେତେବେଳେ ଛୁଅଁ
ଛୁଅଁ ନୂଆ ମଣିଷର ଗ୍ରୀବ,
ଏଇ ପୃଥିବୀର ସବୁ ମଣିଷ ଜୀବ,
ତାର ପ୍ରତିଟି ଖବର
ରୂପ ପାଏ କବିତାରେ ମୋର ॥

ଖାଲି ମୋ ସମାଜ ବା ଦେଶର ନୁହେଁ,
ଆଗାମୀ ସମାଜର ହାସ୍ୟ-ଉଜ୍ଜ୍ୱଳ ମୁହେଁ,
ତାର ନୂତନ ଖସଡ଼ା
ମଣିଷର ପ୍ରେମ, ଅଶ୍ରୁ, ସୁଖ ଦୁଃଖ
ଖାପ ଛଡ଼ା,
ରୂପ ପାଏ ଇସ୍ତାହାରେ ମୋର
ଷୋଳ ଅଣା,
ସେ ଏକ ସମ୍ବୋଧନ
ନୁହେଁ ତା ତ ତଂତ୍ର, ମଂତ୍ର,
ଦ୍ୱାର କଳି ଯୋଗର ସାଧନ ॥
ମଣିଷର ଲହୁ ଲୁହେ କବିତା ମୋ ନାଲି ।
ଜୀବନର
ସୁବର୍ଣ୍ଣ ଦଲିଲ ॥

ତେଣୁ ତାଙ୍କର ଏ ଘୋଷଣାରୁ ସ୍ପଷ୍ଟ ପ୍ରତୀୟମାନ ଯେ ସେ କେଉଁ ଧରଣର କବି ଓ ତାଙ୍କ କବିତା କାହା ପାଇଁ ଉଦ୍ଦିଷ୍ଟ । ତେଣୁ ଆଗାମୀ ମଣିଷ ସମାଜର ମୁହଁରେ ହସ ଫୁଟାଇବା ପାଇଁ ତାଙ୍କ କବିତାର ପ୍ରତି ପଂକ୍ତି ଅଭିମନ୍ତ୍ରିତ ହୋଇଛି । ପ୍ରତ୍ୟେକ ମଣିଷର ହସ କାନ୍ଦ, ସୁଖ ଦୁଃଖ, ଲହୁ ଲୁହ ଯେଉଁଠି, କବି ସଚ୍ଚିଦାନନ୍ଦଙ୍କ କବିତା ସେଇଠି ରୂପ ନେଇଛି । ଏ ଦୃଷ୍ଟିରୁ କବି ରାଉତରାୟ ଜନଗଣର କବି ।

ପୁନଶ୍ଚ କବି ରାଉତରାୟ ତାଙ୍କ କବିତାର ସଂଜ୍ଞା କ'ଣ ହେବ ଏବଂ ତାଙ୍କ କବିତା କି ଭାବମୂର୍ତ୍ତି ପ୍ରକାଶ କରିବ, ସେ ସମ୍ବନ୍ଧରେ ସେ ଅଧିକ ସଚେତନ ଏବଂ ସେହି ସଚେତନାରେ ସେ ସମାଜକୁ ଓ ତାଙ୍କର ପାଠକ ଓ ପାଠିକାମାନଙ୍କୁ କବିତାର ନୂତନ ବାର୍ତ୍ତା ଦେବାକୁ ଯାଇ କହିଛନ୍ତି—

କବିତା ନ ହେଉ ମୋର ଏକ ଗଜଦନ୍ତ କୋଠପରି
ଖାଲି ମୋର ତାଙ୍କୁଣି,
ଉଡ଼ିଯାଉ ଏଣେ ତେଣେ ପବନେ ତା ଯଥା ଏକ
ସଫେଦ୍ ଉଢ଼ଣି,
ଏକ ସ୍ୱାଧୀନ ନିଶାଣ ପରି ହାଓ୍ୱାର ଲହରେ ।
ଖାଲି ମୋ ଗଳାରେ ଝିଙ୍କେ ଥାଉ ଜଡ଼ି ତାର ଏକ ପ୍ରାନ୍ତ
ବାକୀ ତା ସବୁଟା ଖେଳି ବୁଲୁଥାଉ ଆକାଶରେ ଦୋଳି,

ଅଥବା ଏକ ସ୍ତର ପରେ ଛୁଟି ଯାଉ ତାହା ଖାଲି କରି
ମୋ ମନର ଭୂଣୀ ॥
ମୁଁ କବି ଧରଣୀର, ମାଟିର ଓ ମଣିଷର ତଥା ।
ଗାଇବା ମୋ ଧର୍ମ ମଣେ ଏ ପୃଥିବୀ, ଏ ଆକାଶ କଥା ।
ତଥାପି ମୁଁ ମୁକ୍ତ ପକ୍ଷୀ, ଅବା ମୁଁ କି ଯୁଧିଷ୍ଠିରଙ୍କ ରଥ
ଭୂଇଁରୁ ଆଙ୍ଗୁଳେ ଉର୍ଦ୍ଧ୍ୱ ଭ୍ରମି ଗୃହେ ସମସ୍ତର ପଥ ।
ଅପୂର୍ବ ଏ ଧରଣୀର, ଜୀବନର ମଣିଷର ଗାଥା
ମୋତେଇ ଆଶ୍ଚର୍ଯ୍ୟ କରେ, ମୋତେ ମାଗେ ନବ ପ୍ରକାଶ ତା' ।'
ଏ ଧରାର ନାନା ରଙ୍ଗ, ନାନା ଧ୍ୱନି, ସୁରଭିତ ବିଚିତ୍ର ମୁହୂର୍ତ୍ତି
ମୋତେ ଯେ ଆକୁଳ କରେ, କରେ ମୋତେ ବାକ୍‌ମୟ, ମୂର୍ତ୍ତି
ନାନା ପ୍ରସ୍ତାବର ବନ୍ଧେ, ନାନା ଛନ୍ଦେ, କେତେ ନା ସଙ୍କେତେ
ପୃଥିବୀକୁ ଖୋଜେ ମୁଁ ଯେ ପାଏ ପୁଣି ହରାଏ ମୁହୂର୍ତ୍ତେ ।
ତଥାପି ଏ ଖୋଜିବାଟା ଧର୍ମ ପରି ମୋତେ ଧରି ରଖେ
କବିତା ମୋ ତେଣୁ ଖାଲି କାବ୍ୟ ନୁହେଁ, ଏ ଯେ ଏକ
ଆବିଷ୍କାର ସଖେ !
ନିଜରଇ ଆକୁଳ ସନ୍ଧାନ ।
(ଅଥବା) ସେ ନିଜକୁ ନମିଉ କରି ଏ ସୃଷ୍ଟିର ଶୁଭ ସମ୍ବୋଧନ ॥

ତେଣୁ ତାଙ୍କର କବିତା ଖାଲି କଥାର କାବ୍ୟ ନୁହେଁ, ସେ ଏକ ନୂତନ ଆବିଷ୍କାର ଏବଂ ସୃଷ୍ଟିର ଶୁଭ ସମ୍ବୋଧନ ।

ଡକ୍ଟର କେ. ଏସ୍. ଶ୍ରୀନିବାସ ଆୟାଙ୍ଗାର ଏକ ପ୍ରବନ୍ଧ ଯାହାକି ନୂଆ ଦିଲ୍ଲୀରୁ ପ୍ରକାଶିତ ହିନ୍ଦୁସ୍ଥାନ ଟାଇମସ୍‌ର ୨୭।୨।୧୯୫୫ ସଂଖ୍ୟାରେ ଶ୍ରୀ ରାଉତରାୟଙ୍କ ସମ୍ପର୍କରେ ଯାହା ଲେଖିଥିଲେ, ତାହା ସାମ୍ପ୍ରତିକ କାଳରେ ମଧ୍ୟ ବିଶେଷ ପ୍ରଣିଧାନ ଯୋଗ୍ୟ ।

"Rout Roy's Poems are most welcome, for they facilitate an exploration of the mind and heart of this people's poet, undoubtedly amoung the authentic poets of our time who have given memorable articulation to the body—aches, heart-beats and soul-leaps of renascent India; From matter to spirit

is one gamut and Sri Sochi Rout Roy's is an all inclusive muse. His is an integral vision and it is his particular merit as a poet that beyond all strife and ugliness and hard dealing he sees the finality of peace and beauty and goodness.

Sri Sochi Rout Roy is thus the poet not of revolution alone, but also of reconciliation, a dear and dogged man addressing his verses to fellow human beings".

## ✳ ଶ୍ରୀ ଦୁର୍ଗାଚରଣ କୁଅଁର

( ବିଂଶ ଶତାବ୍ଦୀ )
୧୯୨୫—

କଟକ ଜିଲ୍ଲା ଯାଜପୁର ସବ୍‌ଡିଭିଜନ ଅନ୍ତର୍ଗତ କୁଅଁର ସାହି ଗ୍ରାମରେ ଦୁର୍ଗାଚରଣ କୁଅଁର ୧୯୨୫ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ରାଧାମୋହନ କୁଅଁର ଓ ମାତାଙ୍କ ନାମ ଗୁପ୍ତା ଦେବୀ । ୧୯୪୯ ମସିହାରେ ଏଲାହାବାଦ ବିଶ୍ୱ-ବିଦ୍ୟାଳୟରୁ ଇଂରେଜୀ ସାହିତ୍ୟରେ କୃତିତ୍ୱର ସହିତ ଏମ୍.ଏ ପାଶ୍ କଲା ପରେ ଓଡ଼ିଆର ବିଭିନ୍ନ ସରକାରୀ କଲେଜରେ ଅଧ୍ୟାପକ ଭାବେ ଯୋଗଦେଇଥିଲେ । ବର୍ତ୍ତମାନ ସେ ଷ୍ଟେଟ ଗେଜେଟିଅରର ସଂପାଦକ ଭାବେ ଅବସ୍ଥାପିତ । ଅନେକ ବର୍ଷ ହେଲା ସେ ଓଡ଼ିଆ ସାହିତ୍ୟ ଚର୍ଚ୍ଚାଠାରୁ ଦୂରେଇ ଯାଇଥିଲେ । ଏବେ ପୁଣି ଲେଖା ଲେଖି ଆରମ୍ଭ କରିଛନ୍ତି । କବି ଏବଂ ଲେଖକ ହିସାବରେ ସେ ଏକ ନୂତନ ଦୃଷ୍ଟିଭଙ୍ଗୀ ଓ ବଳିଷ୍ଠ ଶୈଳୀର ଅଧିକାରୀ ।

## ✳ ଶ୍ରୀ ନୃପାଳଜୀ

( ବିଂଶ ଶତାବ୍ଦୀ )
୧୯୧୪—

ଶ୍ରୀ ନୃପାଳଜୀ ୧୯୧୪ ମସିହା ନଭେମ୍ବର ୨୬ ତାରିଖରେ ଢେଙ୍କାନାଳ ଜିଲ୍ଲାର କାମାକ୍ଷା ନଗରରେ ଜନ୍ମ ଗ୍ରହଣ କରିଥିଲେ ଓ ପରବର୍ତ୍ତୀ କାଳରେ ତାଙ୍କ ପରିବାର କାମାକ୍ଷା ନଗରରୁ ଆସି ପୁରୀ ପଥୁରିଆ ସାହିରେ ସ୍ଥାୟୀ ଭାବେ ବସବାସ କରି ରହିଲେ ।

ତାଙ୍କ ପିତାଙ୍କ ନାମ ଗୋପାଳ ଝା ଓ ମାତାଙ୍କ ନାମ ସରସ୍ୱତୀ ଦେବୀ । ପିତା ଗୋପାଳ ଝା ପୂର୍ବରୁ ଜଣେ ଜଣାଶୁଣା ମୁକ୍ତିଆର ଥିଲେ । ନୃପାଳ ଝାଙ୍କର ପ୍ରପିତାମହ ଥିଲେ ଭରତ ଝା ଏବଂ ଏହି ଭରତ ଝାଙ୍କର ଝିଅଙ୍କ ପୁଅ ହେଲେ ଓଡ଼ିଶାର ବିଖ୍ୟାତ ଭକ୍ତକବି ମଧୁସୂଦନ ରାଓ । ଏମାନେ ସମସ୍ତେ ମହାରାଷ୍ଟ୍ର କ୍ଷତ୍ରିୟ । ନୃପାଳଝାଙ୍କ ପ୍ରପିତାମହ ଭରତଝାଙ୍କ ସାନଭାଇ ଲଛମନଝା ଅତ୍ୟନ୍ତ ଯୋଦ୍ଧା ଥିଲେ ଓ ପୁରୀର ଚନ୍ଦନ ହଜୁରୀ ଓରଫ ବୁଖି ଖୁଣ୍ଟିଆଙ୍କ ସହ ଝାନସୀ ଯୁଦ୍ଧକୁ ଯାଇ, ସେହି ଯୁଦ୍ଧରେ ନିଜ ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଥିଲେ । ଏଣୁ ଏହି ବଂଶ ପରମ୍ପରା ସୂତ୍ରରେ ଭକ୍ତକବି ମଧୁସୂଦନ ରାଓ ନୃପାଳଝାଙ୍କର ବଡ଼ବାପା ।

ନୃପାଳଝାଙ୍କର ଶିକ୍ଷାଗତ ଯୋଗ୍ୟତା ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ । ତଥାପି ତାଙ୍କର ଧର୍ମ ଧାରଣା ଓ ସାହିତ୍ୟ ସାଧନା ତାଙ୍କୁ ଜଣେ ଭକ୍ତ କବି ରୂପେ ଆଜି ଆମ ଆଗରେ ପରିଚିତ କରାଇ ପାରିଛି । ସେ ଠାକୁର ନିଗମାନନ୍ଦ ସରସ୍ୱତୀଙ୍କ ମନ୍ତ୍ରଶିଷ୍ୟ ଓ ନିଗମାନନ୍ଦଙ୍କ ଧର୍ମରେ ଦୀକ୍ଷିତ ।

ଦୀର୍ଘ ୫ ବର୍ଷଧରି ପୁରୀଠାରେ ସେ ଠାକୁର ନିଗମାନନ୍ଦଙ୍କ ସାନିଧ୍ୟ ଲାଭ କରି ପାରିଥିଲେ । ତାଙ୍କର ପ୍ରକାଶିତ ପୁସ୍ତକଗୁଡ଼ିକ ହେଲା —(୧) ପରମ ପୁରୁଷ ଆସ ହେ ଫେରି (୨) ବରଣ ଯେନ ବନ୍ଦନୀୟ (୩) କୁଣ୍ଡଳିନୀ ଆବାହନ (୪) କୁମାର ଉତ୍ସବ (୫) ସଦ୍‌ଗୁରୁ ନିଗମାନନ୍ଦଙ୍କୁ ଉପଲବ୍ଧି କରିବାର ସହଜ ସୁଗମ ପନ୍ଥା (୬) ବାଣୀ ଆବାହନ ।

## * ଶ୍ରୀ ଲକ୍ଷ୍ମୀଧର ମହାପାତ୍ର

(ବିଂଶ ଶତାବ୍ଦୀ)

୧୯୧୫—

୧୯୧୫ ମସିହା ନଭେମ୍ବର ୪ ତାରିଖ ଦିନ ପୁରୀ ଜିଲ୍ଲା ନିମାପଡ଼ାସ୍ଥ ଛଣିଜଙ୍ଗ ଗ୍ରାମରେ ଲକ୍ଷ୍ମୀଧର ମହାପାତ୍ରଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ଦୋଳଗୋବିନ୍ଦ ମହାପାତ୍ର ଓ ମାତାଙ୍କ ନାମ ରକ୍ମମଣି ଦେବୀ । ପରବର୍ତ୍ତୀ କାଳରେ ଶ୍ରୀ ମହାପାତ୍ର ନିମାପଡ଼ାରୁ ପୁରୀ ତଳମାଳ ସାହିରେ ସ୍ଥାୟୀ ଭାବେ ବସବାସ କରି ରହିଲେ । ପାଟଣା ବିଶ୍ୱ ବିଦ୍ୟାଳୟରୁ ବି.ଏ. ପାଶ କଲାପରେ ରାଜ୍ୟ ସରକାରଙ୍କ ବିଭିନ୍ନ ବିଭାଗରେ ଅଣ ଗେଜେଟେଡ୍ କର୍ମଚାରୀ ରୂପେ କାର୍ଯ୍ୟ କରିଥିଲେ । ୧୯୬୨ ମସିହାରେ ଗେଜେଟେଡ୍ ପାହିଆ ଡେପୁଟୀ କଲେକ୍ଟର ପଦରେ ଥାଇ ଚାକିରୀରୁ ଅବସର ଗ୍ରହଣ କରିଥିଲେ । ସେ ବହୁ ଜଣାଣ/

ଭଜନ ତଥା ଶିଶୁ କବିତାମାନ ଲେଖିଛନ୍ତି । ତାଙ୍କର ପ୍ରକାଶିତ ପୁସ୍ତକମାନଙ୍କ ମଧ୍ୟରେ କାଉକୋଇଲି କଳି, ବାଘମାମୁଁ ବାଦ୍ୟାଘର (ଶିଶୁ କବିତା), ଧଳା ଦେହେ କାଳିଆ ମୁହଁ (ଜଗନ୍ନାଥ ଜଣାଣ) ପ୍ରଭୃତି ପ୍ରଧାନ ।

## * ଶ୍ରୀ ପରମାନନ୍ଦ ଅଧିକାରୀ

(ବିଂଶ ଶତାବ୍ଦୀ)

୧୯୩୩—

କଟକ ଜିଲ୍ଲାର କ୍ରଜଙ୍ଗସ୍ଥ ଅଧିକାରୀ ସାହିରେ ପରମାନନ୍ଦ ଅଧିକାରୀ ୧୯୩୩ ମସିହାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଅଧିକାରୀ ଉଚ୍ଛବାନନ୍ଦ ଦାସ ଓ ମାତାଙ୍କ ନାମ ସୁରେଖା ଦେବୀ । ସେ ମୁଖ୍ୟତଃ ଜଣେ ଗାଳ୍ପିକ ଓ ଔପନ୍ୟାସିକ । କଳାବିନୋଦ, ମଣିମାଣିକ, ସୃଷ୍ଟି ଓ ସ୍ରଷ୍ଟା ପ୍ରଭୃତି ସାହିତ୍ୟ, ସାଂସ୍କୃତିକ ଓ ଶିଶୁ ଅନୁଷ୍ଠାନ ମାନଙ୍କର ପ୍ରତିଷ୍ଠାତା ସମ୍ପାଦକ । ଜଣେ ସାହିତ୍ୟ ସଂଗଠକ ଭାବେ ସେ ସୁପରିଚିତ । ସମ୍ପ୍ରତି ସେ ଉତ୍କଳ ସାହିତ୍ୟ ସମାଜର କାର୍ଯ୍ୟକାରୀ ସମିତି ସଦସ୍ୟ । ତାଙ୍କର ପ୍ରକାଶିତ ଗ୍ରନ୍ଥଗୁଡିକ ହେଲା—ପାରାଦ୍ୱୀପ କଣ୍ଟ୍ରାକ୍ଟର (ଉପନ୍ୟାସ), ଖାଲଢ଼ିପ (ଉପନ୍ୟାସ), ଉଦୟ ଅସ୍ତ (ଉପନ୍ୟାସ), ନନ୍ଦୀଘୋଷ (ଉପନ୍ୟାସ), ଆହତ ଅପରାହ୍ଣ (ଉପନ୍ୟାସ), ବ୍ୟାକୁଳ ବସନ୍ତ (ଉପନ୍ୟାସ), ମାଂସ କଣ୍ଢେଇ (ଉପନ୍ୟାସ), ମନର ଜୁଆଁ (ଉପନ୍ୟାସ) ଗୋବର ଗଣେଶ (ପିଲାଙ୍କ ଗଳ୍ପ), ମଣିମାଣିକ ଗଳ୍ପମାଳା, ଟୁଆଁଟୁଇଙ୍କ ଗଳ୍ପ, କୋଡ଼ିଏ ଫୁଲ ଗୋଟିଏ ଭ୍ରମର (ଗଳ୍ପ), ଓଡ଼ିଆ ସାହିତ୍ୟର ବାଇଶିପାହାଚ (ସମାଲୋଚନା), ଆମ ଜଗନ୍ନାଥ ଆମ ସାହିତ୍ୟ (ସଂକଳନ) ପ୍ରଭୃତି ପ୍ରଧାନ । ସେ ସମ୍ପ୍ରତି କଟକ ଏସ୍. ଡି. ଓ. ଅଫିସର ଜଣେ କର୍ମଚାରୀ ।

## * ଶ୍ରୀ ବ୍ରଜମୋହନ ମହାନ୍ତି

( ବିଂଶ ଶତାବ୍ଦୀ )

୧୯୩୯ —

୧୯୩୯ ମସିହା ଫେବୃୟାରୀ ୨ ତାରିଖ ଦିନ କଟକ ଜିଲ୍ଲା ଯାଜପୁର ସବଡ଼ିଭିଜନସ୍ଥ ଅପ୍ସର ପୁର ଗ୍ରାମରେ ଶ୍ରୀ ବ୍ରଜମୋହନ ମହାନ୍ତି ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଭଗବାନ ମହାନ୍ତି ଓ ମାତାଙ୍କ ନାମ ସୁବର୍ଣ୍ଣ ଦେବୀ ।

ବ୍ରଜମୋହନଙ୍କୁ ଯେତେବେଳେ ମାତ୍ର ପାଞ୍ଚବର୍ଷ, ସେତେବେଳେ ତାଙ୍କ ପିତାଙ୍କର ଦେହାନ୍ତ ହୁଏ, ତାଙ୍କୁ ଛଅ ବର୍ଷ ବେଳେ ବଡ଼ଭାଇ ସୁକୁମାର ମହାନ୍ତି ସ୍ୱାଧୀନତା

ଆନ୍ଦୋଳନରେ ଝାସ ଦେଇ ଘର ଛାଡ଼ି ୨୨ ବର୍ଷ ପର୍ଯ୍ୟନ୍ତ ନିଖୋଜ ହୁଅନ୍ତି । ଏହିପରି ଏକ ପରିବାରର ଦାରୁଣ ଓ କରୁଣ ପରିସ୍ଥିତିରେ ବ୍ରଜମୋହନଙ୍କ ଜୀବନ ଗଠିତ କରି ଚାଲେ । ତଥାପି ଶିକ୍ଷାଲାଭ ପ୍ରତି ତାଙ୍କର ପ୍ରବଳ ଆଗ୍ରହ ଥିବାରୁ ୭ମ ଶ୍ରେଣୀରୁ ଏମ୍. ଏ. ପାଶ୍ କଲା ପର୍ଯ୍ୟନ୍ତ ଟିଉସନ କରି, ସେହି ଟିଉସନ ଅର୍ଥରୁ ନିଜର ପାଠପଢ଼ାର ସମସ୍ତ ଖର୍ଚ୍ଚ ତୁଲାଇଥିଲେ ଓ ନିଜ ଗୋଡ଼ରେ ନିଜେ ଠିଆ ହେବାର ଆଦର୍ଶ ପ୍ରତିଷ୍ଠା କରିଥିଲେ ।

ପୁରୁଷୋତ୍ତମପୁର ସ୍କୁଲ, ଗଡ଼ମଧୁପୁର ସ୍କୁଲ, ଯାଜପୁର ହାଇସ୍କୁଲ ମାନଙ୍କରେ ସ୍କୁଲ ପାଠପଢ଼ା ଶେଷ କରି ଉଚ୍ଚ ଶିକ୍ଷା ପାଇଁ ସେ ଯାଜପୁର କଲେଜ, ଭଦ୍ରକ କଲେଜ ଓ ରେଭେନ୍ସା କଲେଜରେ ଅଧ୍ୟୟନ କରିଥିଲେ । ତାଙ୍କର ଏହି କଲେଜ ଅଧ୍ୟୟନ କାଳରେ ତାଙ୍କର ବଳିଷ୍ଠ ସଂଗଠନ ଶକ୍ତି ଯୋଗୁଁ ଯାଜପୁର ସବ୍‌ଡ଼ିଭିଜନ ଛାତ୍ରସଂଘର ସଭାପତି, ଯାଜପୁର କଲେଜ ୟୁନିୟନର ସଭାପତି, ଭଦ୍ରକ କଲେଜ ୟୁନିୟନର ସଂପାଦକ, ନିଖିଳ ଉତ୍କଳ ଛାତ୍ର ସଂଘର ସଂପାଦକ ଥିଲେ । ଓଡ଼ିଆରେ ଏମ୍. ଏ ପାଶ୍ ପରେ ତାଙ୍କର ଚାକିରି ଜୀବନ ଆରମ୍ଭ ହୋଇଥିଲା । କମ୍ପୋଷ୍ଟ ଇନସ୍ପେକ୍ଟର, ଏଗ୍ରିକଲ୍‌ଚର ଇନ୍‌ସ୍ପେକ୍ଟର, ଗ୍ରାମପଞ୍ଚାୟତ ବିଭାଗର କିରାଣୀ, ନ୍ୟାସନାଲ କେବୁଲ କମ୍ପାନୀର ବ୍ରାଞ୍ଚ ମ୍ୟାନେଜର, ଟାଟା ଓ୍ୱାର୍କର୍ସ କଲେଜର ଅଧ୍ୟାପକଭାବେ ଚାକିରି କରିବା ପରେ ୧୯୬୪ ମସିହାରେ କଟକ ବେତାର କେନ୍ଦ୍ରରେ ଚାକିରି ଜୀବନ ଆରମ୍ଭ କଲେ । ସେ ସଂପ୍ରତି ରୁରାଲ ପ୍ରୋଗ୍ରାମର ସହକାରୀ ସଂପାଦକ ଅଛନ୍ତି ।

ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ତାଙ୍କର ବଳିଷ୍ଠ ସ୍ୱାକ୍ଷର ରହିଛି । ସେ ମୁଖ୍ୟତଃ ଜଣେ କବି, ଔପନ୍ୟାସିକ, ଗାଳ୍ପିକ, ନାଟ୍ୟକାର, ସମାଲୋଚକ, ସଂଗ୍ରାହକ, ସଂଗଠକ ଓ ସର୍ବୋପରି ଜଣେ ଚିତ୍ର ଶିଳ୍ପୀ ମଧ୍ୟ । ବହୁ ନୈଶ ବିଦ୍ୟାଳୟ, ପାଠାଗାର, ବହୁ ସାହିତ୍ୟ ଅନୁଷ୍ଠାନର ପ୍ରତିଷ୍ଠାତା ଓ ମୁଖ୍ୟ ବ୍ୟବସ୍ଥାପକ । ଜନତା ଓ ଜାଗରଣ ସାହିତ୍ୟ ପତ୍ରିକାର ସଂପାଦକ ଓ ଉତ୍କଳ ପାଠକ ସଂସଦର ସର୍ବମୟ କର୍ତ୍ତା ଓ ମୁଖ୍ୟ ବ୍ୟବସ୍ଥାପକ ମଧ୍ୟ ।

୧୯୫୫ ମସିହାରେ ତାଙ୍କର ପ୍ରଥମ ଗଳ୍ପ ପୁସ୍ତକ "ଦୁରଚନ୍ଦ୍ର" ଓ ୧୯୫୯ ମସିହାରେ ପ୍ରଥମ କବିତା ପୁସ୍ତକ "ତୋତେ ମୁଁ ଚାହେଁ ବାବୁ" ପ୍ରକାଶିତ ହୁଏ । ୧୯୬୫ ମସିହାରେ ନବସାକ୍ଷର ପାଇଁ ଲେଖିଥିବା 'ଭାଇ...ଭାଇ' ପୁସ୍ତକ ପାଇଁ ସେ କେନ୍ଦ୍ର ସରକାରଙ୍କଠାରୁ ପୁରସ୍କାର ଲାଭ କରନ୍ତି । ତାଙ୍କର ପ୍ରକାଶିତ ପୁସ୍ତକାବଳୀ-ମାନଙ୍କ ମଧ୍ୟରେ ନଶୀଅପୂର୍ଣ୍ଣ, ରକ୍ତଗଡ଼ର ସ୍ୱପ୍ନ, ସାଗର କୁମାର, ଚଞ୍ଚଳ ମୁଁ କ୍ରୁଦ୍ଧ, କାହାଣୀ ଛନବନର, ଅଗଣିତ କ୍ଷୁଧା ସମ୍ପର୍କରେ ନିଷ୍ଫଳ ଆକାଶ, ଅନ୍ଧ ପୃଥିବୀ ପ୍ରଭୃତି

ଉପନ୍ୟାସ, ଜଗନ୍ନାଥ ପରିକ୍ରମା, ନାଥ ଜଗନ୍ନାଥ, ଦୀପ ଜଗନ୍ନାଥ, ଉତ୍କଳର ମଧୁସୂଦନ, ଆଧୁନିକତା ର ଦର୍ଶନ, କ୍ଷୁଦ୍ର ଗଳ୍ପର ସୃଷ୍ଟି ଓ ସମୀକ୍ଷା, ଓଡ଼ିଆ ସାହିତ୍ୟର ଆଧୁନିକ ଯୁଗ, ଓଡ଼ିଆ ଭାଷା ବିଜ୍ଞାନ ପ୍ରଭୃତି ସମାଲୋଚନା, ଏବଂ ଛିଣ୍ଡା ହାତ, ଅନ୍ୟାନ୍ୟ ଓ ପରଧର ରଙ୍ଗ, ପ୍ରଗଳଭା ନଦୀର ଉପକଥା ପ୍ରଭୃତି ଗଳ୍ପ, ଅମାପଣ୍ଟି, ମୂନକୁମାର, ଚନ୍ଦ୍ରବୃତଙ୍କ, ଶ୍ରୀରାମ ବାଲ୍ୟଲୀଳା, ସୀତାନାଥଙ୍କ ସଂସାର, ପ୍ରଭୃତି ନାଟକ ଓ ଗୀତିନାଟ୍ୟ, ଚେନାଚୁର (ମଜାକବିତା), ଗ୍ରୀଷ୍ମାପଥ, ରକ୍ତପଲାଶ, କୁଆଁ ତାରର କାବ୍ୟ ପ୍ରଭୃତି କବିତା, ଓଡ଼ିଆ ସାହିତ୍ୟକୁ ତାଙ୍କର ଅନବଦ୍ୟ ଅବଦାନ ।

*** ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ**

(ବିଂଶ ଶତାବ୍ଦୀ)
୧୯୦୧—

ଏବେବି କାଳିନ୍ଦୀଚରଣଙ୍କର ନିମ୍ନୋକ୍ତ କବିତା ପଂକ୍ତି ପ୍ରତ୍ୟେକ ପାଠକ ପାଠିକାର ପ୍ରାଣରେ କି ଅପୂର୍ବ ଓ ଅନବଦ୍ୟ ଛନ୍ଦ, ଗନ୍ଧ ଓ ସ୍ପର୍ଶ ସୃଷ୍ଟି କରେ; ଯିଏ ପଢ଼ିଛି, ସେ ବୁଝିବ । ତାକୁ ବୁଝାଇ କହିବାର ଆଦୌ ପ୍ରୟୋଜନ ନାହିଁ । ସେ ଗୁଡ଼ିକ ହେଲା—

ଆଜି ବି ରକତ ପାଣି ଫାଟି ହୁଏ ଝାଳ
ଦୁର୍ବଳ ଦେଖି କେତେ ଜିଭ୍ ବଢ଼େ ଲାଳ
ଆଜି ବି ମଣିଷ ମଣିଷ ଉପରେ ରଜା
ସତ କହିଲେତ ଆଜିବ ମିଳୁଛି ସଜା ।
ସଜାଡିବା ଲାଗି ଆପଣା ଫଉଜ ଦଳ
ସହରେ ସହରେ କେତେ ଦଳପତି ଦଳ ।
ମଫସଲୀ ଆଜି ସେଇ ମଫସଲୀ ବେଶେ
ଜଗାଇ ଆନକୁ ଅଜଣା ରହିଛି ଶେଷେ
( ଆଗାମୀ କାଲି )

କମ୍ମା

" ଜନ୍ମ ଆମର ମଣିଷ କୁଳରେ
ନାହିଁ ଇଜ୍ଜତ ମାନ
ଆମ ଝିଅ ବୋହୂ ସବୁଶ ଗାଳୀ ଦେ
ଆମେ ଶଳା ସଇତାନ ।

ବର୍ଷା ଖରାରେ ସଢ଼ୁ ଶୁଖୁ ଆମେ
ଯାହାପାଇଁ ଟେକି ଛତା
ନିଜ ଘରେ ଢାକି ଆଣୁ ଅନ୍ଧାର
ଯାହାପାଇଁ ଜାଳି ବତୀ ।
ଯାହା ପିଲା ପାଇଁ ଭୋଜନ ସଜାଉଁ
ନିଜ ପିଲା ମାରି ଭୋକେ
ହଜୁର ମହିମା ସା'ନ୍ତ ସେମାନେ
ଆମେ ବଣ୍ଟାଭ ଲୋକେ ।

+ + +

ଆମ ଘରେ ଖାଲି ଲୁହ କାନ୍ଦଣା
ତୁମ ଘରେ ହସ ଗାନ
ଅଛ ତୁମେ ଯେଣୁ ମହିମା ହଜୁରେ
ଆମେ ଶଳା ସଇତାନ
(କ୍ଷଣିକ ସତ୍ୟ)

କମ୍ବା

କବିତା ଗଢ଼େ ଏକ ବିରାଟ ସମାଜର
ସବୁରି ଅଛୁ ଯହିଁ ବକ୍ଷରେ ହେଲେ ଘର
ସକଳେ ଲଭିବାକୁ ମୁଠାଏ ଦୁଧ ଭାତ
ଯୋଗ୍ୟ ଯେତେ ଯହିଁ ବାଳକ ବାଳିକାତ
ଦୁଇଟା ଜାମା ଲୁଗା ପିନ୍ଧିବା ପାଇଁ ମିଳେ
ପଢ଼ିବା ପାଇଁ ବାଧା କାହାରି ନାହିଁ ଥିଲେ

+ + +

କହିବା ପାଇଁ କଥା ସବୁରି ଦାବୀ ଅଛି
ମୁଁ ସେହି ସମାଜର କବିତା ବସେ ରଚି ।"
(ଆଗାମୀ)

କମ୍ବା

ଯେ ବାଣୀ ଛୁଇନି ଗୋଟିଏ ଜାତିର କୋଟିଏ ବୁକେ
ସେ ବାଣୀ ମୋହର ନହେଉ ଗୋଚର ନ ଆସୁ ମୁଖେ

ଯେ ବାଣୀ ନ କହେ ମଣିଷ ଜାତିର ଶୋଣିତ ବ୍ୟଥା
ସେ ନୋହୁ ମୋ ଭାଷା, ସେ ବାଣୀ ମୋହର ନ ହେଉ କଥା ।

ତତ୍‌କାଳୀନ ନବଯୁଗ ସାହିତ୍ୟ ସଂସଦର ଅନ୍ୟତମ ପ୍ରଧାନ ପୁରୋଧା କାଳନ୍ଦୀ ଚରଣଙ୍କର ଏହି ଥିଲା ଜୀବନର ଜିଜ୍ଞାସା ଓ ମାନବ ଧର୍ମର ପ୍ରାଣ-ପ୍ରତିଷ୍ଠାରେ ତାଙ୍କ ପ୍ରାଣର ଆକୁଳ ଆବେଦନ ମାତ୍ର ।

ଯଦିଓ ଜୀବନର ପ୍ରଥମ ଯୌବନର ଆହ୍ୱାନରେ ସେ ଓଡ଼ିଆ ସାହିତ୍ୟରେ ସବୁଜ ଯୁଗର ଅନ୍ୟତମ ପ୍ରାଣ ପ୍ରତିଷ୍ଠାତା ଥିଲେ, ତଥାପି ଜୀବନର କ୍ରମାନ୍ୱୟ ଗତିଶୀଳ ଉତ୍ତରକାଳରେ ସବୁଜ ପ୍ରାଣର ମଧୁ ମାଦକତା, ସ୍ୱପ୍ନ ପ୍ରବଣତା, ପଳାୟନ ପ୍ରିୟତା, କଳ୍ପନା ବିଳାସିତା ତାଙ୍କ ପ୍ରାଣକୁ ଆଉ ଆଲୋଡ଼ିତ ବା ଆନ୍ଦୋଳିତ କରି ପାରିଲା ନାହିଁ । ତାଙ୍କ 'ସବୁଜ କବିତା' ସଞ୍ଚୟନର କବିତା ଗୁଡ଼ିକର ଧ୍ୟାନ ଧାରଣାରେ ସେ ଆଉ ପୂର୍ବ ଭଳି ଧ୍ୟାନସ୍ଥ ହୋଇ ପାରିଲେ ନାହିଁ । ତାଙ୍କର ସେ ବେଳର ସେ ତନ୍ଦ୍ରିଳ ଚକ୍ଷୁ ଉନ୍ମୀଳିତ ହେଲା···ସେ ନୟନ ନେଲେ ଖୋଜି ଚାହିଁଲେ ମଣିଷର ସମସ୍ତ ଜୀବନକୁ । ମଣିଷର ଜଳନ୍ତା ସମସ୍ୟାକୁ···ସମାଜରେ ମଣିଷବାଦ ବା ସମାଜବାଦର ଜୟଗାନ କରିବାକୁ··· ଉଚ୍ଚ ନୀଚ ଭେଦ ଭାବର ପ୍ରାଚୀରକୁ ଧୂଳିସାତ୍ କରିବାକୁ । ତେଣୁ ୧୯୩୫ ମସିହାରେ ଗଠିତ ନବଯୁଗ ସାହିତ୍ୟ ସଂସଦ କି ଉଦ୍ଦେଶ୍ୟ, କି ଔଚିତ୍ୟ ଓ କି ପରମ୍ପରା ନେଇ ଏହି ସଂସଦର ଉଦ୍‌ଘୋଷକ ଓ ବ୍ୟବସ୍ଥାପକ ମାନେ ତାଙ୍କର କ୍ରିୟା କଳାପ ଆରମ୍ଭ କରିଛନ୍ତି, ସେ ସମ୍ପର୍କରେ ପଣ୍ଡିତ ନୀଳକଣ୍ଠ ଦାସ ତାଙ୍କ ପ୍ରତିଷ୍ଠିତ ସାହିତ୍ୟ ପତ୍ରିକା "ନବଭାରତ"ର ସମ୍ପାଦକୀୟ ଟିପ୍ପଣୀରେ ସେତେବେଳେ ଉଲ୍ଲେଖ କରି କହିଥିଲେ—

ଏହି ନାମରେ (ନବଯୁଗ ସାହିତ୍ୟ ସଂସଦ) ଗୋଟିଏ ସଂସଦ ଗଢ଼ା ହୋଇ ତାର ଉତ୍ସବ ହୋଇ ଯାଇଛି । + + ଏହାର କଳ୍ପନା ବିଶାଳତର । ଜାତୀୟ ଜୀବନର ପୁରୁଣା ପ୍ରଥା ଉପରେ ନୂତନସ୍ତର ପକାଇବା ଏହାର ଉଦ୍ଦେଶ୍ୟ । ଜୀବନର ଚିନ୍ତା ସାହିତ୍ୟରେ ପ୍ରକାଶ ପାଏ ଓ ଚିନ୍ତାହିଁ କ୍ରିୟାର ମୂଳ । ତେଣୁ ସାହିତ୍ୟରେ ବିପ୍ଳବ ପ୍ରଚାର କରି ଜାତୀୟ ଜୀବନରେ ଚଞ୍ଚଳତାର ସୂଚନା ଦେବା ନିମନ୍ତେ ଏହା କରାଯାଇଥିଲା । ପ୍ରଥମେ ବକ୍ତୃତାରେ ଉଦ୍ୟୋକ୍ତା ମାନେ କହିଥିଲେ—"ଜଗତରେ ସବୁଠାରେ ଚିନ୍ତାଶୀଳ ମନସ୍ୱୀ ଓ ମନୀଷୀ, ସାହିତ୍ୟିକ, ଲେଖକ ମାନେ ମାନବର ଚିରାଚରିତ ନୀତି, ବଦ୍ଧମୂଳ ଧାରଣା, ପୁଞ୍ଜିଭୂତ କୁସଂସ୍କାର ଓ ଚିନ୍ତା ଶୂନ୍ୟତା ବିରୁଦ୍ଧରେ ପ୍ରବଳ ଅଭିଯାନ ଆରମ୍ଭ କରିଛନ୍ତି । ଆଇନଷ୍ଟାଇନ୍, ଫ୍ରଏଡ୍, ମାର୍କସ, ରସେଲ, ବର୍ଣ୍ଣାଡଶ, ରମାରୋଲା, ମାକ୍‌ସିମ୍ ଗର୍କି, ଅପ୍‌ଟନ୍ ସିଙ୍କ୍ଲେୟାର, ସିନ୍‌କ୍ଲେୟାର, ଲୁଇ ପ୍ରଭୃତି ସଚେତନ ଓ

ମୌଳିକ ବିପ୍ଳବାତ୍ମକ ଭାବଗଣିର ପଥ ପ୍ରବୋଧା ରୂପେ ସାଧାରଣରେ ପରିଚିତ । ଆମେ କେବଳ ଆମର ଅତୀତ ପ୍ରୀତି ଯେନ ମାନବ ସଭ୍ୟତାର ଗତିଶୀଳତା ପ୍ରତି ଲକ୍ଷ୍ୟ ନ ରଖି ନିଜକୁ କ୍ଷୁଦ୍ର ପରିସରରେ ଆବଦ୍ଧ କରି ରଖିଛୁ । ସ୍ୱାଧୀନ ଚିନ୍ତା ଓ ଉଦାର ମନୋଭାବ ହେଉଛି ଆମର ପ୍ରଧାନ ଅଭାବ । 'ତେଣୁ ଦେଶରେ ନବ ସଂସ୍କୃତି ଓ ନବ ସଭ୍ୟତାର ସ୍ରୋତ ଖେଳାଇ ଦେବା ହେଉଚି ଏହି ସଂସଦର ଉଦ୍ଦେଶ୍ୟ ।

ପାଞ୍ଚଟି ସବୁଜ ସାଥୀ ମାନଙ୍କ ଗହଣରେ ସେଦିନ ରେଭେନ୍ସା କଲେଜର ପ୍ରକୋଷ୍ଠ ଓ ପ୍ରାଙ୍ଗଣରେ ନନ୍‌ସେନ୍ସ କ୍ଲବର ଯେଉଁ ମଞ୍ଜିଟି ପୋତା ଯାଇଥିଲା, ତାହା ପରବର୍ତ୍ତୀ କାଳରେ ସବୁଜ ସାହିତ୍ୟ ସମିତି ଗଛରେ ପରିଣତ ହେଲା । ସତ୍ୟବାଦୀ ଯୁଗର ପଞ୍ଚସଖା ଭଳି, ସବୁଜ ଯୁଗର ଏହି ପଞ୍ଚସଖା ବୈକୁଣ୍ଠନାଥ ପଟ୍ଟନାୟକ, ହରିହର ମହାପାତ୍ର, କାଳନ୍ଦୀ ଚରଣ ପାଣିଗ୍ରାହୀ, ଅନ୍ନଦା ଶଙ୍କର ରାୟ ଓ ଶରତ ଚନ୍ଦ୍ର ମୁଖାର୍ଜି ଓଡ଼ିଆ ସାହିତ୍ୟର ଆଖଡ଼ାରେ ସବୁଜ ସ୍ୱପ୍ନରେ ମସଗୁଲ ହୋଇ ବହୁ ଆଦବ କାଇଦା ଦେଖାଇଲେ । ବିଶ୍ୱନାଥ କରଙ୍କ ପ୍ରତିଷ୍ଠିତ 'ଉତ୍କଳ ସାହିତ୍ୟ' ପତ୍ରିକାରେ ଏହି ସବୁଜ ଗୋଷ୍ଠୀଙ୍କର ଲେଖା ବାରମ୍ବାର ପ୍ରକାଶ ପାଇବା ଫଳରେ ସେମାନେ ଓଡ଼ିଆ ସାହିତ୍ୟରେ ବିଶେଷ ପରିଚିତ ଓ ପ୍ରତିଷ୍ଠିତ ହେଲେ କହିଲେ ଚଳେ । ସେତେବେଳେ ଏମାନଙ୍କ ଲେଖାମାନ ପ୍ରକାଶନ ଫଳରେ ଓଡ଼ିଆ ସାହିତ୍ୟର ଅଳାପ ଆଲୋଚନାରେ ଏକ ଶୃଙ୍ଖଳା ଦେଖାଦେଲା । ୧୯୫୫ର ଉତ୍କଳ ସାହିତ୍ୟ-ନୂଆଗ୍ରନ୍ଥ ୨ ବର୍ଷ ୨୬୪ ପୃଷ୍ଠାରେ ସବୁଜ ସ୍ୱପ୍ନ ପ୍ରବନ୍ଧରେ କାଳନ୍ଦୀ ଚରଣ ସବୁଜ ଯୁଗ ସମ୍ପର୍କରେ ନିଜର ଯେଉଁ ମନ କଥା ଖୋଲି କହିଛନ୍ତି, ତାହା ଏଠାରେ ଉଦ୍ଧାର କଲେ ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ । ତାହା ହେଲା—"ମାତ୍ର ସବୁଜ ଯୁଗଟା ଯେ ସବୁଜ ସ୍ୱପ୍ନରେ ପରିଣତ ହେବ, ଏ କଥାତ ଆମେ କେହି ବିଶ୍ୱାସ ନ ଥିଲେଁ, ସବୁଜ ଯୁଗ ! ତୁମ ମନରେ ସେ କୁଆଡ଼େ ଗୋଟାଏ ଐତିହାସିକ ଘଟଣା । ଅଥଚ ମୁଁ ତାହାକୁ ଏତେ ହାଲୁକା କରି ଦେଇଛି ବୋଲି ସବୁ ଦୋଷ ତୃଟି ନିଜେ ମୁଣ୍ଡାଇ ନେବାକୁ ପ୍ରସ୍ତୁତ । ୧୯୧୯ ଖ୍ରୀଷ୍ଟାବ୍ଦରୁ ୧୯୩୫ ପର୍ଯ୍ୟନ୍ତ ଏହି ଯୁଗଟା ଓଡ଼ିଆ ସାହିତ୍ୟର ଇତିହାସରେ କୁଆଡ଼େ ଗୋଟାଏ ଟାଣୁଆ ଦାଗ କାଟି ଦେଇଛି ।

୧୯୧୯ ଅର୍ଥାତ୍ ପୃଥିବୀର ପ୍ରଥମ ଧ୍ୱଂସଲୀଳା ୧୯୧୮ରେ ଶେଷ ହୁଏ ଏବଂ ତାହାପରେ ଓଡ଼ିଆ ସାହିତ୍ୟରେ ଆରମ୍ଭ ହୁଏ ସବୁଜର ସୃଷ୍ଟି ଲୀଳା । ପୁଣି ପନ୍ଦରଟି ବର୍ଷ ପରେ ପୃଥିବୀକୁ ଦ୍ୱିତୀୟ ମହାସମର ମୁହଁକୁ ପଠାଇ ଦେଇ ସବୁଜ ସ୍ୱପ୍ନ ବିରାଟ କାଳଗର୍ଭରେ କାହିଁ ଲୀନ ହୋଇଗଲା । ବ୍ରହ୍ମାଙ୍କର ଗୋଟାଏ ଲେଖା ଆଖି ପିଛୁଳାରେ ଏମିତି କୁଆଡ଼େ କେତେ ପନ୍ଦର ବର୍ଷ ବିତି ଯାଏ ।

ସବୁଜ କଳ୍ପନାର ପ୍ରାରମ୍ଭ କାଳ-ବିଂଶ ଶତକର ରକ୍ତ ସ୍ନାତ ପ୍ରଥମ ଯୌବନ ଯୁଦ୍ଧୋତ୍ତର ପୁର୍ନଗଠନର ଯୁଗ—ପୃଥିବୀ ବ୍ୟାପୀ ନବଚେତନାର ଜାଗରଣ। ବିଦୀର୍ଣ୍ଣ ଧରାପୃଷ୍ଠରେ ମିଳନର ବ୍ୟାକୁଳତା ଦେଖା ଦେଇଥାଏ । ୟୁରୋପ, ଏସିଆ ଏବଂ ଆମେରିକାର ସବୁ ଅଞ୍ଚଳ ମାତି ଉଠିଥାଏ ଏକ ନୂତନ ମୁକ୍ତି ନିଶାରେ ।

ରାଜନୀତି, ଅର୍ଥନୀତି, ଧର୍ମ ସାହିତ୍ୟ ଆଦି ସମାଜର ବିଭିନ୍ନ ବିକାଶ କ୍ଷେତ୍ରରେ ଏକ ନୂତନ ମୂଲ୍ୟ ଓ ନୂତନ ଅର୍ଥ ନିରୂପଣର ସମସ୍ୟା ଆସିଥାଏ। ତୁର୍କି ମିଶରଠାରୁ ଆରମ୍ଭ କରି ଚୀନ ଜାପାନ ପର୍ଯ୍ୟନ୍ତ ଆଫ୍ରିକା ଏସିଆର ସାନ ବଡ଼ ସବୁ ପ୍ରାନ୍ତରେ ନୂଆ ନୂଆ ନେତୃତ୍ୱ ଓ ଅଧିକାର କଥା। ଭୂପୃଷ୍ଠର ଲୌହ ପାଶାଣ ସୁଦ୍ଧା ତରଳ ଲାଭାରେ ଯେପରି ପରିଣତ । ମାନବୀୟ ଚିନ୍ତା ଓ ସାହସର ଅପୂର୍ବ ଦୀପ୍ତି ଆଗରେ ଜଗତର ଦୃଷ୍ଟି ଝଲସି ଉଠୁଥାଏ। ବିଶ୍ୱ ମସ୍ତିଷ୍କରେ ବହି ଗ୍ଲୁଥାଏ ଏକ ପ୍ରଳୟଙ୍କର ଆଶା ଆକାଙ୍କ୍ଷାର ତୋଫାନ। ସେହି ତୋଫାନ ବେଗରେ କେଉଁ ଅଲକ୍ଷିତ ଅଜ୍ଞାତ ଆକାଶର ଅଦୃଶ୍ୟ ଦିଗ୍‌ବଳୟ ତଳେ ଭାସି ଯାଉଥାଏ ନିରୁଦ୍ଦେଶୀ ନିଷ୍ଟିହ୍ନ ଏକ ସବୁଜ ପକ୍ଷୀ, ଶୁଣାଇ ଦେଇ ତାର କ୍ଷଣିକ କାକଳି ଶୁକୋବାଚ ।

ଭାରତୀୟ ଆତ୍ମାର ଛନ୍ଦ ବାଜି ଉଠିଥାଏ ରବୀନ୍ଦ୍ର, ଇକ୍‌ବାଲ, ପ୍ରେମଚନ୍ଦଙ୍କ କଣ୍ଠରେ ଏବଂ ଗାନ୍ଧୀ ଚିତ୍ତରଞ୍ଜନ ଓ ମୋତିଲାଲଙ୍କ କର୍ମରେ ତାର ପ୍ରତିଧ୍ୱନି । ଭାରତୀୟ ତରୁଣ ଚକ୍ଷୁରେ ଫୁଟିଯାଏ ନବ ସୂର୍ଯ୍ୟୋଦୟର ଅରୁଣ ଆଭା, ସତ୍ୟବାଦୀ ଶୁଭ୍ରଧନା କୁଞ୍ଜେ ଉତ୍କଳୀୟ ପ୍ରତିଭାର ନୂତନ ଆଲୋକ ଉଦ୍‌ଭାସିତ ହୋଇଥାଏ। ମଧୁସୂଦନ, ଗୋପବନ୍ଧୁ, ବିଶ୍ୱନାଥ, ବ୍ରଜସୁନ୍ଦର, ଗଙ୍ଗାଧର, ନନ୍ଦକିଶୋର, ଚିନ୍ତାମଣି ପ୍ରମୁଖ ବରପୁତ୍ରମାନଙ୍କ ଉନ୍ନତ ଜୀବନାଦର୍ଶ ତରୁଣ ପ୍ରାଣକୁ ଉଦ୍‌ବୁଦ୍ଧ କରୁଥାଏ ।

"ଏଇଭଳି ଏକ ପରିବେଶ ମଧ୍ୟରେ ସବୁଜର ଶୁଭଶଙ୍ଖ ବାଜି ଉଠିଲା।"

ପୁଣି ଏଇ ସବୁଜ ଦଳ ସମ୍ପର୍କରେ ସବୁଜ ଯୁଗର ଅନ୍ୟତମ ସାରଥୀ ଅନ୍ନଦା ଶଙ୍କର ରାୟ ତାଙ୍କ "ସାହିତ୍ୟ ସ୍ମୃତି"ରେ ଲେଖିଛନ୍ତି—

"ଏଥିରୁ ବୁଝାଯିବ, ଆମର ପ୍ରଧାନ ପ୍ରତିପକ୍ଷ ଥିଲେ ପୁରୁଣା କାଳିଆ ପୁରାଣ ପଢ଼ୁଆ ଫସ୍ଥାର ବିମୁଖ ରକ୍ଷଣଶୀଳ ଧର୍ମାନ୍ଧ ଓ ଦେଶାନ୍ଧ ପୁନର୍ଜ୍ଜୀବନବାଦୀ ପ୍ରବୀଣବୃନ୍ଦ । ଏମାନଙ୍କର ପ୍ରଭାବ ଓ ପ୍ରତିପତ୍ତି ତୁଳନାରେ ଆମର ସାମର୍ଥ୍ୟ ଥିଲା ଅତି ସାମାନ୍ୟ ଅକିଞ୍ଚିତକର । କେଉଁ ସାହସରେ ଆମେ ଏମାନଙ୍କ ବିରୁଦ୍ଧରେ ଠିଆ ହୋଇଥିଲୁ, ତାହା ଆଜିକାଲିର ତରୁଣମାନେ ଉପଲବ୍‌ଧି କରିପାରିବେ ନାହିଁ । କିନ୍ତୁ ଆମର ଦୃଢ଼

ବିଶ୍ୱାସ ଥିଲ, ଆମେ ଯେଉଁ ରାସ୍ତାରେ ଚାଲିଛୁ, ସେହି ରାସ୍ତାହିଁ ଠିକ୍ ରାସ୍ତା । ପରିବର୍ତ୍ତନଶୀଳ ଜଗତରେ ପ୍ରାଚୀନକୁ ସନାତନ ବୋଲି ଭାବିବା କଦାପି ସତ୍ୟ ହୋଇ ନ ପାରେ । ସନାତନ ବୋଲି ଯଦି କିଛି ଥାଏ, ତେବେ ତାହା ପ୍ରାଚୀନ ବୋଲି ନୁହେଁ । ନିତ୍ୟ ବୋଲି ବରଣୀୟ । କେବେ ତାହା ସ୍ୱଦେଶୀୟ ନୁହେଁ, ବିଶ୍ୱଜନୀନ । (ସବୁଜ ଅକ୍ଷର-ଅ. ରାୟ ୧୯୭୭ ପୃ ୭୫୧)

ଏଥି ସାଙ୍ଗକୁ ଅନ୍ନଦା ଶଙ୍କରଙ୍କ "ପ୍ରଳୟ ପ୍ରେରଣା" କବିତାର କିଛି ଅଂଶର ଏଠାରେ ଉଦ୍ଧାର କଲେ ସବୁଜଯୁଗର ତତ୍କାଳୀନ ଆଭିମୁଖ୍ୟ କ'ଣ ଥିଲା ଓ ସବୁଜ ଗୋଷ୍ଠୀର କବିମାନେ ଅଣନିଶ୍ୱାସୀ ହୋଇ କେଉଁ ଲକ୍ଷ୍ୟ ଓ ଉଦ୍ଦେଶ୍ୟରେ କେଉଁ ଆଡ଼କୁ ଧାଇଁଥିଲେ, ତାହା ସ୍ପଷ୍ଟରୁ ସ୍ପଷ୍ଟତର ହୋଇ ଉଠିବ । ଅନ୍ନଦା ଶଙ୍କରଙ୍କର ଭାଷାରେ ତାହା ହେଲା—

ଅନନ୍ତ ଜୀବନ ମୋହେ ଅବହେଳେ ସ୍ପର୍ଶିବି ମରଣେ
ସମାଜେ ମାନିବି ନାହିଁ, ଲୋକମତ ଦଳିବି ଚରଣେ'

\+ + +

ଯେତେ ପାପ, ଯେତେ ମିଥ୍ୟା ଯେତେ ମୋହ ଯେତେ ପ୍ରବଞ୍ଚନା
ଧର୍ମ ନାମେ, නୀତି ନାମେ, ଜାତି ନାମେ, ଯେତେ ଆବର୍ଜନା
ବୈଷମ୍ୟର ଭେଦରେଖା ଭଣ୍ଡତାର ଯେତେ ଆଚ୍ଛାଦନ
ଦୁର୍ବଳର ହାହାକାର ପୀଡ଼ିତର ମରମ ବେଦନ

\+ + +

ଏହି ଭସ୍ମ ଅବଶେଷ ଉପରେ ମୁଁ ରଚିବି ନନ୍ଦନ
ମର୍ତ୍ତ୍ୟରେ ଅମରାବତୀ, ଜଡ଼ ଦେହେ ଜୀବନ ସ୍ପନ୍ଦନ

\+ + +

ଜଗତର ନରନାରୀ ; ଶୁଣ ମୋର ଅଗ୍ନି ଗର୍ଭ ଧ୍ୱନି
ମୁକ୍ତ ହୁଅ, ମୁକ୍ତ ହୁଅ ଗର୍ଜେ ଆଜି ପ୍ରଳୟ-ଅଶନି

ଏଠାରେ ମଧ୍ୟ ସବୁଜ ସାହିତ୍ୟର ଅନ୍ୟତମ ସାରଥୀ କବି ବୈକୁଣ୍ଠ ନାଥ ପଟ୍ଟନାୟକ "ସବୁଜ ସାହିତ୍ୟ" ଶୀର୍ଷକ ପ୍ରବନ୍ଧରେ ମତ ପ୍ରଦାନ କରି କହିଛନ୍ତି—

"ଉତ୍କଳ ଯେତେ କ୍ଷୁଦ୍ର, ନଗଣ୍ୟ ହେଉ ପଛକେ ଏହି ସାର୍ବଜନୀନ ମହାଭାବକୁ ରୁଦ୍ଧ କରି ସେଥିପ୍ରତି କର୍ଣ୍ଣରୁଦ୍ଧ କରିବା ଅସ୍ୱାଭାବିକ ବିକୃତି ନୁହେଁ କି ? ଜୀବତତ୍ତ୍ୱବିଦ୍‌ମାନେ (Biologists) ସଙ୍କୀର୍ଣ୍ଣତା ଓ ଭୟକୁ ସମର୍ଥନ କରିବା ସଙ୍ଗେ ସଙ୍ଗେ ଏହା ଅର୍ଦ୍ଧସଭ୍ୟ ଅସଭ୍ୟ ବା ସ୍ୱଳ୍ପଜୀବୀ ଜାତିର ସ୍ୱଭାବ ବୋଲି ନିର୍ଦ୍ଦେଶ କରି ଅଛନ୍ତି । ତେଣୁ ଆମ୍ଭେମାନେ ଯେତେବେଳେ କୌଣସି ଉତ୍କଳୀୟର ମୁଖରୁ ବଙ୍ଗ ପ୍ରଭାବ ଭୟରେ ସେ ଗୀତାଞ୍ଜଳି ପଢ଼ି ନାହାନ୍ତି ବୋଲି ଶୁଣୁ, ସେତେବେଳେ ମସ୍ତିଷ୍କ ବିକୃତିର ପ୍ରମାଣ ଲାଗି ତାଙ୍କୁ ଫ୍ରଏଡ୍ ବା ଜଙ୍ଗ (Jung) ଙ୍କ ପରୀକ୍ଷାଗାର (Laboratory)କୁ ପଠାଇବାର ଆବଶ୍ୟକତା ଅନୁଭବ କରୁନାହୁଁ । ଉପଯୁକ୍ତ ଜୀବତତ୍ତ୍ୱ ନୀତିଟିକୁ ସ୍ମରଣ କରି ନୀରବ ରହୁଁ । ମାତ୍ର ଭାବଧାରା ପ୍ରତିରୋଧ କରିବାର ଏକାନ୍ତ ଚେଷ୍ଟା କୌଣସି ଜାତି ପକ୍ଷରେ ସମ୍ଭବ ହୋଇନାହିଁ—ଆଜି ମଧ୍ୟ ହେବ ନାହିଁ । ପରିବର୍ତ୍ତନ ସୃଷ୍ଟିର ସତ୍ୟ । କୌଣସି କ୍ଷୁଦ୍ର ଜାତି ତହିଁରୁ ବହିର୍ଭୂତ ହେବା ଅସମ୍ଭବ । ଉତ୍କଳରେ ଭକ୍ତରୁଚି ଯେ ଚିରକାଳ ଥିବ ବା ଉତ୍କଳର ତରୁଣ ଯେ ଚିରଦିନ କୌଣସି ଏକ ଗର୍ବିତ ଚର୍ବଣ ବା ପୁରାତନ ରସସ୍ୱାଦନରେ ଆପଣାକୁ ଭାଗ୍ୟବାନ ମନେ କରୁଥିବେ । ଏପରି କଳ୍ପନାରେ ଯେଉଁମାନେ ଅନ୍ଧୀଭୂତ ହୋଇଅଛନ୍ତି, ସେମାନଙ୍କୁ ଟିକିଏ ଦୂରଦର୍ଶୀ ହେବାକୁ ଆମ୍ଭେମାନେ ଅନୁରୋଧ କରୁ । ଦେଶ ମାତୃକାର ପୂଜା ଯେ କେବଳ ପୁରାତନ ମ୍ଳାନ ପୁଷ୍ପରେ କରାଯାଏ, ସଦ୍ୟ ପ୍ରସ୍ଫୁଟିତ ପୁଷ୍ପ ସେଥିପାଇଁ ଅନୁପଯୁକ୍ତ ବା ମହାପାପଜନକ ଏହି ମାରାତ୍ମକ ଭାବ ଯେଉଁମାନଙ୍କୁ ବିକୃତ କରିଅଛି, ସେମାନଙ୍କୁ ଆମ୍ଭମାନଙ୍କର କିଛି କହିବାର ନାହିଁ + + ତେଣୁ ଯେତେବେଳେ ସେହି ବିଶ୍ୱବ୍ୟାପୀ ମହାଭାବ ଉତ୍କଳର ସୀମା ସ୍ପର୍ଶ କରିଥିଲା, ଉତ୍କଳର 'ତରୁଣ ବା ନବୀନ' ତାହାକୁ ନମସ୍କାର କରି ବରଣ କରିଅଛନ୍ତି ।

(ଯୁଗବାଣୀ-ମାର୍ଚ୍ଚ ୧୯୩୩-ପୃଷ୍ଠା ୭୧-୭୦)

ଏହି ସବୁଜ ସାହିତ୍ୟ ସମିତିର ଉତ୍ପତ୍ତି ଓ ତାଙ୍କ ନିଜ ସମ୍ପର୍କରେ ନିଜେ କାଳିନ୍ଦୀ ଚରଣ ଯାହା କହିଛନ୍ତି, ତାହା ବିଶେଷ ଭାବେ ମଧ୍ୟ ଏ ପ୍ରସଙ୍ଗରେ ଯେ ଉଲ୍ଲେଖ ଯୋଗ୍ୟ, ତାହା ମଧ୍ୟ ଭୁଲିବାର ନୁହେଁ—

"ରେଭେନ୍‌ସା କଲେଜରୁ ରାଣୀହାଟ ଯିବାକୁ କେନାଲ୍ ପୋଲ ପାର ହୋଇ ଗଲେ ଡାହାଣ ହାତ ପଡ଼େ ପଶୁ ଡାକ୍ତରଖାନା, ବୈକୁଣ୍ଠନାଥ ରହନ୍ତି ସେଇଠି ତାଙ୍କର ବନ୍ଧୁ ପଶୁ ଡାକ୍ତରଙ୍କ ଘରେ । ସେଇ ଘରେ ଆମେ ସହାଧ୍ୟାୟୀ ବନ୍ଧୁମାନେ ଯାଉଁ ପ୍ରତ୍ୟହ କଲେଜ ଛୁଟି ପରେ । ତହୁଁ ଚାଲେ ଭବିଷ୍ୟତ ସାହିତ୍ୟିକ ଜୀବନର ବହୁ କଳ୍ପନାଜଳ୍ପନା ବିଚିତ୍ର ଆଲୋଚନା । ଅନ୍ନଦାଶଙ୍କର ରହସ୍ୟରେ କହନ୍ତି— ଯୀଶୁଖ୍ରୀଷ୍ଟଙ୍କର ଯେପରି ଜନ୍ମ ହୋଇଥିଲା ଗୋଟିଏ ଘୋଡ଼ାଶାଳରେ, ସବୁଜ ସାହିତ୍ୟର ଜନ୍ମ ସେଇଭଳି ଏକ ପଶୁ ଡାକ୍ତର ଖାନାରେ ।

ପ୍ରଥମେ ସ୍ଥିର କଲୁ ଆମର ଗୋଟିଏ ସାହିତ୍ୟିକ ଗୋଷ୍ଠୀ ରହିବ, ଯାହାର ନାମ "ନନ୍‌ସେନ୍‌ସ କ୍ଲବ" (Nonsense Club) ଅର୍ଥାତ୍ ଅନର୍ଥ ଆଖଡ଼ା "ନନ୍‌ସେନସ୍ ଅବଶ୍ୟ ଗୋଟାଏ ଗାଳିକୁ ବୁଝାଏ । ଆମେ ଏଇ ନାମଟିକୁ ପାଇଥାଉ ଇଂରେଜ କବି କୁପର (William Cowper)ଙ୍କର ପତ୍ରାବଳୀରୁ । ଏହି ଖଣ୍ଡ ଆମର ପାଠ୍ୟ ଥାଏ ବୋଧ ହୁଏ । ଲେଖକମାନେ ଯେ ସଂସାର କ୍ଷେତ୍ରରେ ନିରର୍ଥକ ବା ସବୁ ଅନର୍ଥର ମୂଳ ଅର୍ଥାତ୍ ଦୋଷଯୁକ୍ତ ସଂସାର ଯାହାକୁ ବୁଝାଏ, ତାହା ହେବା ପାଇଁ ଅସମର୍ଥ । ପୁଣି ବଂଧୁତା ପାଳିବା ଯେ ଚତୁର ବୁଦ୍ଧିମାନର କାମ ନୁହେଁ, ଆଉ ଶଠତା-ଶଠତା ହେଲା ବୁଦ୍ଧିମାନର ବସ୍ତୁ । କବି କୁପରଙ୍କ ଏଇ ନାମକରଣରୁ ତାହାହିଁ ବୋଧ ହୁଏ ସୂଚିତ ହୁଏ । ଏହି ଗୋଷ୍ଠୀ ପକ୍ଷରୁ ଆମେ ଗୋଟିଏ ହାତ ଲେଖା ପତ୍ରିକା ମଧ୍ୟ ବାହାରକରୁ । ତାହାର ନାମ—(Nonsense Club Magazine) ନନସେନ୍‌ସ କ୍ଲବ ମେଗାଜିନ୍ । ପତ୍ରିକାର ସଂପାଦନା ଦାୟିତ୍ୱ ପଡେ ମୋ ଉପରେ । ହରିହର ଇଂରେଜୀ ନାମଟିକୁ ବଦଳାଇ ଓଡ଼ିଆ ନାମଟିଏ ରଖିଲେ "ଅବକାଶ"—ଏହି ନାମରେ ଚାରିଟି ଅକ୍ଷରରେ ଅନ୍ନଦା, ବୈକୁଣ୍ଠ, କାଳିନ୍ଦୀ ଓ ଶରତ ନାମ ଚାରିଟିର ପ୍ରଥମ ଅକ୍ଷର ରହିଥିଲା ସିନା ହରିହରଙ୍କ ନାମ ନ ରହିବାରୁ ପରେ ତାହାକୁ ବଦଳାଇ ଆମେ ରଖୁ "ଶକ୍ତି ସାଧନା ।" ପତ୍ରିକାଟି ଲେଖା ହେଉଥିଲା ତିନୋଟି ଭାଷାରେ—ଓଡ଼ିଆ, ବଙ୍ଗଳା ଓ ଇଂରାଜୀ । ଏହି ପତ୍ରିକାର ଲେଖକ ମାନେ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁଙ୍କ ସଂପାଦିତ 'ସହକାର' ମାସିକ ପତ୍ରରେ ପୁଣି ଶେଷରେ ସ୍ୱର୍ଗତ ବିଶ୍ୱନାଥ କରଙ୍କ "ଉତ୍କଳ ସାହିତ୍ୟ" ମାସିକରେ ଲେଖନ୍ତି ନିୟମିତ ଭାବରେ । ବନ୍ଧୁତା ପ୍ରତିଷ୍ଠାରେ ଧୁରନ୍ଧର ବୟୋଜ୍ୟେଷ୍ଠ ଲକ୍ଷ୍ମୀ ନାରାୟଣ ମଧ୍ୟ ସ୍ୱଭାବ ସୁଲଭ ଗୁଣରେ ଆମ ସମସ୍ତଙ୍କର ନିକଟତର ହୋଇ ପଡ଼ନ୍ତି । ଏହି

ସବୁଜ ବଂଧୁ ମାନଙ୍କ ଉଦ୍ୟମରେ ହିଁ ଉତ୍କଳ ସାହିତ୍ୟ ପତ୍ରିକାରେ ଧାରାବାହିକ ପ୍ରକାଶ ପାଏ ନଅ ଜଣ ଲେଖକ ଲେଖିକାଙ୍କ ଦ୍ୱାରା ଲିଖିତ "ବାସନ୍ତୀ" ଉପନ୍ୟାସ । କଲେଜ ଛାଡ଼ି ବିଭିନ୍ନ କାର୍ଯ୍ୟ କ୍ଷେତ୍ରରେ ସେମାନେ ପ୍ରବେଶ କରିବା ପରେ 'ସବୁଜ ସାହିତ୍ୟ' ସମିତି ପ୍ରକାଶ ସଂସ୍ଥାର ପ୍ରତିଷ୍ଠା କରାଯାଏ । ପୁଣି ତାହାର ମୁଖପତ୍ର ହୁଏ ମାସିକ 'ଯୁଗବାଣୀ', ଯାହା ଯୁବକ ମହଲରେ କେବଳ ନୁହେଁ, ଓଡ଼ିଆ ସାହିତ୍ୟରେ ସୃଷ୍ଟି କରେ ଏକ ସ୍ମରଣୀୟ ଆନ୍ଦୋଳନ ।

୧୯୩୧ ଖ୍ରୀଷ୍ଟାବ୍ଦରେ ସବୁଜ ସାହିତ୍ୟ ସମିତିର ପ୍ରତିଷ୍ଠାତା ପାଞ୍ଚଜଣ ସଭ୍ୟଙ୍କ ରଚିତ କବିତା ସଂକଳନ ପ୍ରକାଶିତ ହୁଏ ସବୁଜ କବିତା ନାମ ଦେଇ । ତାହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ କରନ୍ତି ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର । ସେଇ ଭଳି ସମ୍ମିଳିତ ପ୍ରଚେଷ୍ଟାରେ ନଅଜଣ ଲେଖକ ଲେଖିକାଙ୍କ ଦ୍ୱାରା ଲିଖିତ "ବାସନ୍ତୀ" ଉପନ୍ୟାସର ମଧ୍ୟ ପ୍ରକାଶ ।

ସେଥି ସହିତ ଓଡ଼ିଶାର ପ୍ରଖ୍ୟାତ କବି ସ୍ୱର୍ଗତ ଚନ୍ଦ୍ରମଣି ମହାନ୍ତିଙ୍କ 'ଶର୍ବସପ୍ତା' ଉପନ୍ୟାସ, ସ୍ୱର୍ଗତ ଦିବ୍ୟସିଂହ ପାଣିଗ୍ରାହିଙ୍କ 'ତୁ ମୋ ମା' ଉପନ୍ୟାସ,କବି ଶ୍ରୀ ମାୟାଧର ମାନସିଂହଙ୍କ "ପୂଜାରିଣୀ", କବି ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟଙ୍କ 'ପାଥେୟ', ଶ୍ରୀ ହରିଶ୍ଚନ୍ଦ୍ର ବଡ଼ାଲଙ୍କ ନାଟକ 'ଦେଶର ଡାକ', ଶ୍ରୀ ଅନନ୍ତ ପ୍ରସାଦ ପଣ୍ଡାଙ୍କ ଗଳ୍ପ ସଂଗ୍ରହ 'ତୃଣ ଗୁଚ୍ଛ', ଶ୍ରୀ କମଳାକାନ୍ତ ଦାଶଙ୍କ ଉପନ୍ୟାସ "ବୋଉ", ଶ୍ରୀମତୀ ଶାନ୍ତି ମୁଖାର୍ଜିଙ୍କ 'ଚିରନ୍ତନୀ' ହରିହର ମିଶ୍ରଙ୍କ "ଆଶୀର୍ବାଦ", ଶ୍ରୀ ବୈକୁଣ୍ଠନାଥ ପଟ୍ଟନାୟକଙ୍କ ନାଟକ "ମୁକ୍ତିପଥେ" ଆଦି ବିଭିନ୍ନ ଲେଖକଙ୍କର ଗ୍ରନ୍ଥ ସହିତ ଶ୍ରୀ ନଗେନ୍ଦ୍ରନାଥ ଦତ୍ତଙ୍କ "ରୂପର ଅଭିଶାପ" ଓ ଶ୍ରୀମତୀ ବିନୋଦିନୀ ଷଡ଼ଙ୍ଗୀଙ୍କ ସମେତ ବର୍ତ୍ତମାନ ଲେଖକଙ୍କର କେତେକ ଉପନ୍ୟାସ ଗଳ୍ପ, କବିତା ଆଦି ପ୍ରକାଶିତ ହୁଏ ।

"ଯୁଗବାଣୀ" ମାସିକ ପତ୍ରିକା ସ୍ୱର୍ଗତ ପଣ୍ଡିତ ଗୋପବନ୍ଧୁ ଦାଶଙ୍କର ଅପ୍ରକାଶିତ କବିତା ସହିତ ସର୍ବଶ୍ରୀ ଲକ୍ଷ୍ମୀନାରାୟଣ ସାହୁ, ଭଗବତୀ ଚରଣ ପାଣିଗ୍ରାହୀ, କୁମାରୀ ନିର୍ମଳ ନନ୍ଦିନୀ ସାମନ୍ତରାୟ, ଶ୍ରୀ ଉପେନ୍ଦ୍ର ପ୍ରସାଦ ମହାନ୍ତି । ଶ୍ରୀମତୀ ସୁପ୍ରଭାଦେବୀ, ଡାକ୍ତର ରାଧା ଚରଣ ପଣ୍ଡା, ସ୍ୱର୍ଗତ କବି ପଦ୍ମଚରଣ ପଟ୍ଟନାୟକ ସ୍ୱର୍ଗତ କାଳିପ୍ରସନ୍ନ କବି, ସ୍ୱର୍ଗତ ଗୋବିନ୍ଦ ତ୍ରିପାଠୀ, ଶ୍ରୀମତୀ ସରଳା ଦେବୀ, ଓ ଶ୍ରୀମତୀ ଦେବହୂତି ଦେଇ ପ୍ରମୁଖ କବି ଲେଖକ ଓ ଲେଖିକା ମାନଙ୍କ ରଚନାବଳୀରେ ମଣ୍ଡିତ ହୁଏ "ଯୁଗବାଣୀ" ମାସିକ ପତ୍ରର ପ୍ରତ୍ୟେକ ସଂଖ୍ୟା ନବ ନବ ସାହିତ୍ୟ ସମ୍ଭାର ବହନ କରି ।

(ଅଙ୍ଗେ ଯାହା ନିଭାଇଛି —ପୃ ୩୬୬।୩୬୭।୩୬୮)

ଏହିପରି ଭାବରେ ସବୁଜ ରଥୀମାନଙ୍କର କାର୍ଯ୍ୟକଳାପ ୧୯୨୧ରୁ ୧୯୩୫ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟର ଆଳାପ ଆଲୋଚନାରେ ବଳବତ୍ତର ରହିଲା ।

ସବୁଜଯୁଗର ଅନ୍ୟତମ ସାରଥୀ ଆଲୋଚ୍ୟ କବି କାଳିନ୍ଦୀଚରଣ ପାଣିଗ୍ରାହୀ ୧୯୦୧ ମସିହା ଜୁଲାଇ ୨ତାରିଖ ଶ୍ରାବଣ ଶୁକ୍ଳ ପ୍ରତିପଦ ଦିନ ପୁରୀ ଜିଲ୍ଲାର ଭୁବନେଶ୍ୱରର ଧୂଳିକୁ ଆଠମାଇଲ ଦୂର ବିଶ୍ୱନାଥପୁରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ସ୍ୱପ୍ନେଶ୍ୱର ପାଣିଗ୍ରାହୀ ଓ ମାତାଙ୍କ ନାମ ସରସ୍ୱତୀ ଦେବୀ । କାଳିନ୍ଦୀଙ୍କ ପିତା ସ୍ୱପ୍ନେଶ୍ୱର ୧୮୮୦ ମସିହାରେ ମୁକ୍ତାରୀ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପୁରୀ କଚେରୀରେ ଆଇନ୍ ବ୍ୟବସାୟ କରୁଥିଲେ ଓ ସେ ଥିଲେ ବିଶ୍ୱନାଥପୁର ଗ୍ରାମର ପ୍ରଥମ ଇଂରାଜୀ ଶିକ୍ଷିତବ୍ୟକ୍ତି । ଆଇନ୍ ବ୍ୟବସାୟ ଯୋଗୁଁ ସ୍ୱପ୍ନେଶ୍ୱର ପାଣିଗ୍ରାହୀଙ୍କୁ ପୁରୀରେ ଅବସ୍ଥାନ କରିବାକୁ ପଡ଼ୁଥିବାରୁ କାଳିନ୍ଦୀ ଚରଣ ପିତାଙ୍କ ନିକଟରେ ରହୁଥିଲେ । ଭକ୍ତକବି ମଧୁସୂଦନ ଓ ଉତ୍କଳ ମଣି ଗୋପବନ୍ଧୁ ସ୍ୱପ୍ନେଶ୍ୱରଙ୍କର ଘନିଷ୍ଠ ବନ୍ଧୁ ଥିବାରୁ ସ୍ୱପ୍ନେଶ୍ୱରଙ୍କ ଘରକୁ ନିୟମିତ ଯାତାୟତ କରୁଥିଲେ ଓ ଖିଆପିଆ ମଧ୍ୟ କରୁଥିଲେ । ତରୁଣ ଜୀବନରେ କାଳିନ୍ଦୀ ଚରଣ

ଓଡ଼ିଶାର ଏଇ ଦୁଇ ବରପୁତ୍ରଙ୍କ ପ୍ରତ୍ୟକ୍ଷ ସମ୍ପର୍କରେ ଆସିଥିଲେ ଓ ତଦନୁଯାୟୀ ତାଙ୍କର ଆଦର୍ଶରେ ନିଜର ଭବିଷ୍ୟ ଜୀବନକୁ ଉଜ୍ଜ୍ୱଳ କରି ଗଢ଼ିବାର ସ୍ୱପ୍ନ ସେହି ବେଳରୁ ହିଁ ଦେଖିବାକୁ ସମର୍ଥ ହୋଇଥିଲେ । ସ୍ୱପ୍ନେଶ୍ୱରଙ୍କ ରଚିତ "ଆତ୍ମ ଦର୍ଶନରେ ବିଶ୍ୱଚିତ୍ର କଳ୍ପନା" ମଧ୍ୟ କାଳନ୍ଦୀଙ୍କ ଜୀବନକୁ ବିଶେଷଭାବେ ପ୍ରଭାବିତ କରିଥିଲା । କାଳନ୍ଦୀ ଚରଣଙ୍କ ବଡ଼ ଭାଇ ଦିବ୍ୟସିଂହ ପାଣିଗ୍ରାହୀ ଓ ସାନଭାଇ ଭଗବତୀ ଚରଣ ପାଣିଗ୍ରାହୀ ମଧ୍ୟ ଓଡ଼ିଶାର ବିଶିଷ୍ଟ ଲେଖକ । ଏଇପରି ଏକ ଲେଖକ ପରିବାରର ପରିବେଷ୍ଟନୀରେ କାଳନ୍ଦୀଙ୍କର ଜୀବନ ଓତଃପ୍ରୋତ ଭାବେ ଜଡ଼ିତ ଓ ଅତିବାହିତ ହୋଇଥିଲା ।

ଅତି ଅଳ୍ପ ବୟସରୁ ହିଁ କାଳନ୍ଦୀଙ୍କର ସାହିତ୍ୟିକ ପ୍ରତିଭା ବିକଶିତ ହୋଇଥିଲା । ୧୯୧୯ ମସିହାରେ "ଗ୍ରାମ ଦର୍ପଣ" ପତ୍ରିକାର ସମ୍ପାଦନା ଦାୟିତ୍ୱ ସେ ବହନ କରିଥିଲେ । ୧୯୨୮ ମସିହାରେ ତାଙ୍କର ପ୍ରଥମ ପ୍ରକାଶିତ ଗ୍ରନ୍ଥ ହେଲା "ଭକ୍ତକବି ମଧୁସୂଦନ" । ସେହି ସମୟରୁ ଧାରାବାହିକ ଭାବେ ସେ ଉତ୍କଳ ସାହିତ୍ୟ ଓ ମୁକୁର ମାସିକ ସାହିତ୍ୟ ପତ୍ରିକାରେ ଲେଖାଲେଖି କରି ସୁନାମ ଅର୍ଜନ କରନ୍ତି । ରାଜ୍ୟ ସମବାୟ ବିଭାଗରେ ସରକାରୀ ଚାକିରିରେ ନିଯୁକ୍ତି ଲଭି ପରେ ୧୯୨୯ ମସିହାରେ କାଳନ୍ଦୀ ଚରଣ ସମବାୟ ପତ୍ରିକା "କଲ୍ୟାଣୀ"ର ସମ୍ପାଦନା ଦାୟିତ୍ୱ ବହନ କରନ୍ତି । ୧୯୨୧ ମସିହାର Nons-nse clubର ନୂତନ ନାମାନ୍ତର କରନ୍ତି ୧୯୩୦ ମସିହାରେ ସବୁଜ ସାହିତ୍ୟ ସମିତି ନାମ କରଣରେ । ଏହି ସବୁଜ ସାହିତ୍ୟ ସମିତି ଜରିଆରେ ମିଳିତ ପ୍ରକାଶନ ସବୁଜ କବିତା ଓ ବାସନ୍ତୀ ଉପନ୍ୟାସ ପ୍ରକାଶିତ ହୁଏ ।

ଏବ

ତାଙ୍କ ରଚିତ ମାଟିର ମଣିଷ ଉପନ୍ୟାସ (୧୯୩୧), ମୁକ୍ତାଗଡ଼ର କ୍ଷୁଧା ଓ ଅମର ଚିତା ଉପନ୍ୟାସ ଓ ଦ୍ୱାଦଶୀ କ୍ଷୁଦ୍ର ଗଳ୍ପ ସଂକଳନ ପ୍ରକାଶ ପାଏ (୧୯୩୨) । ପୁଣି ଏହି ସମୟକୁ କାଳନ୍ଦୀ ଚରଣ ମୟୂରଭଞ୍ଜ ରାଜ୍ୟ ସରକାର ପ୍ରକାଶିତ "ଭଞ୍ଜ ପ୍ରଦୀପ" ଓ ମୟୂରଭଞ୍ଜ କ୍ରନିକଲ (ଇଂରାଜୀ) ପତ୍ରିକାର ସମ୍ପାଦନା ଦାୟିତ୍ୱ ବହନ କରନ୍ତି । ଏହି ସମୟକୁ ସେ 'ଷ୍ଟେଟସ୍‌ମ୍ୟାନ ଓ ଏସୋସିଏଟେଡ଼ ପ୍ରେସ'ର ସାମ୍ବାଦିକ ପ୍ରତିନିଧି ଭାବେ ନିଜକୁ ମଧ୍ୟ ପରିଚିତ କରାନ୍ତି ଓ ବାରିପଦାରେ ବଳିଷ୍ଠ ସାହିତ୍ୟ ସଂଗଠନ ଗଢ଼ି ତୋଳନ୍ତି ୧୯୩୩ ଠାରୁ ୧୯୩୮ ମଧ୍ୟରେ ତାଙ୍କର ପ୍ରସ୍ତୁଦର୍ଶୀ ନାଟକ, ମନେ ନାହିଁ, ଛୁରିଟିଏ ଲୋଡ଼ା, କ୍ଷଣିକ ସତ୍ୟ ଓ ମହାଦୀପ କବିତା ସଂକଳନ ପ୍ରକାଶିତ ହୁଏ । ୧୯୩୮-୩୯ ମସିହାରେ ସେ ଓଡ଼ିଆ ସରକାରୀ ଛାପାଖାନାର ହେଡ଼ ରିଡ଼ର ରୂପେ ନିଯୁକ୍ତି ଲଭ କରନ୍ତି । କିନ୍ତୁ ତାଙ୍କ ଅନୁଜ ଭଗବତୀ ଚରଣ ପାଣିଗ୍ରାହୀଙ୍କ ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର ପରିଚାଳନା ଓ ନେତୃତ୍ୱ ଯୋଗୁଁ ତାଙ୍କୁ ସରକାରୀ ଚାକିରିରୁ ବରଖାସ୍ତ ହେବାକୁ ପଡେ । ତଥାପି କାଳନ୍ଦୀଙ୍କର ଧୈର୍ଯ୍ୟ ଅସୀମ । ନିଜର ନିତିଦିନିଆ ସଂସାରର ଗୁଜୁରାଣ ମେଣ୍ଟାଇବା

ପାଇଁ ସେ ପାଠ୍ୟ ପୁସ୍ତକ ଓ ଶିଶୁ ସାହିତ୍ୟ ଲେଖାରେ ମନୋନିବେଶ କଲେ । ୧୯୪୭ ମସିହାରେ "ଲୁହାର ମଣିଷ" ଉପନ୍ୟାସ ପ୍ରକାଶ ପାଇଲା । ୧୯୪୯ ମସିହା ବେଳକୁ ତାଙ୍କର ବହୁଗଳ୍ପ, କବିତା ସଂକଳନ ମାନ ପ୍ରକାଶିତ ହେଲା । ୧୯୫୭ ମସିହାରେ ସେ କଟକ ଆକାଶ ବାଣୀରେ ସାହିତ୍ୟ ବିଭାଗର ପ୍ରଡ୍ୟୁସର ରୂପେ ନିଯୁକ୍ତି ପାଇଲେ । ଏହାର ବହୁ ପୂର୍ବରୁ ସେ ଭାରତୀୟ P. E. N ର ବହୁ ବର୍ଷ ଧରି ସଦସ୍ୟ ଥିଲେ । ୧୯୭୧ ମସିହାରେ ଭାରତ ସରକାରଙ୍କ ଦ୍ୱାରା 'ପଦ୍ମଭୂଷଣ' ଉପାଧି ଓ କେନ୍ଦ୍ର ସାହିତ୍ୟ ଏକାଡେମୀର ଫେଲୋ ରୂପେ ସମ୍ମାନିତ ହୋଇଥିଲେ । ୧୯୭୭ ମସିହାରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ତାଙ୍କୁ ଡ଼. ଲିଟ୍ ଉପାଧିରେ ଭୂଷିତ କରିଥିଲେ ।

ତାଙ୍କର ଏ ଅବଧି 'କାଳନ୍ଦୀ ରଚନାବଳୀ' (୧ମ ଓ ୨ୟ) ଭାଗରେ ପ୍ରକାଶ ପାଇଛି । ତାଙ୍କର ଉପନ୍ୟାସ ମଧ୍ୟରେ 'ଆକର ମଣିଷ', କ୍ଷୁଦ୍ରଗଳ୍ପ, ମଧ୍ୟରେ 'ସାଗରିକା', ଶେଷ ରଶ୍ମି, ଭାଗିଫଳ, ମୋ କଥାଟି ସରିନାହିଁ । ଆଲୋଚନା ପୁସ୍ତକମାନଙ୍କ ମଧ୍ୟରେ ନେତୃତ୍ୱ ଓ ନେତୃତ୍ୱ, ସାହିତ୍ୟିକା ପ୍ରବନ୍ଧ ସାହିତ୍ୟ, ସାହିତ୍ୟ ସନ୍ଦର୍ଶନ, ସାମୟିକ ସାହିତ୍ୟ ସମୀକ୍ଷା ଓ ନାଟିକା ମଧ୍ୟରେ ପଦ୍ମିନୀ ଓ ସୌମ୍ୟା ପ୍ରଭୃତି ଓଡ଼ିଆ ସାହିତ୍ୟର ଏକ ଏକ ଅବିସ୍ମରଣୀୟ କୃତି ।

୧୯୭୩ ମସିହାରେ ପ୍ରକାଶିତ ତାଙ୍କର ଆତ୍ମ ଜୀବନୀ "ଅଙ୍ଗେ ଯାହା ନିଭାଇଛି" ଓଡ଼ିଆ ସାହିତ୍ୟରେ ଏକ ଅମୂଲ୍ୟ କୀର୍ତ୍ତି । ତାଙ୍କର ସର୍ବଶ୍ରେଷ୍ଠ କୃତି 'ମାଟିର ମଣିଷ' ଉପନ୍ୟାସ ଭାରତୀୟ ସବୁ ଭାଷାରେ ସାହିତ୍ୟ ଏକାଡେମୀ ଦ୍ୱାରା ଅନୁବାଦିତ ହୋଇଛି । ଓଡ଼ିଶାରେ ମଧ୍ୟ ମାଟିର ମଣିଷର ନାଟ୍ୟରୂପ ଓ ଚିତ୍ରରୂପ କରାଯାଇ ସର୍ବଜନାଦୃତ ହୋଇଛି । ତାଙ୍କର ସର୍ବଶ୍ରେଷ୍ଠ ଗଳ୍ପ 'ମାଂସର ବିଳାପ' ମଧ୍ୟ ନାଟ୍ୟରୂପ ମାଧ୍ୟମରେ ସବୁ ଭାରତୀୟ ଭାଷାରେ ଆକାଶ ବାଣୀ ଦ୍ୱାରା ପ୍ରସାରିତ ହୋଇଛି । ଶ୍ରୀମତୀ ଲୀଲା ରାୟ ମାଟିର ମଣିଷ ଉପନ୍ୟାସଟିକୁ ୧୯୭୩ମସିହାରେ ଅନୁବାଦ କରି "A house undevided" ଶିରୋନାମାରେ ଇଂରାଜୀ ଅନୁବାଦ ପୁସ୍ତକ ପ୍ରକାଶ କରିଛନ୍ତି । ୧୯୭୭ ମସିହାରେ କାଳନ୍ଦୀ ଚରଣଙ୍କ ଲିଖିତ ଓ ସଂଗୃହୀତ "Glimpses on Art and Literature of Orissa" ଇଂରାଜୀ ପୁସ୍ତକ ଓଡ଼ିଆ ସାହିତ୍ୟରେ ମଧ୍ୟ ଏକ ଅମୂଲ୍ୟ ପ୍ରକାଶନ ।

କବି କାଳନ୍ଦୀଙ୍କୁ ଯେତେବେଳେ ୧୮ ବର୍ଷ, ସେ ସେତେବେଳେ ପୁରୀର ଜଣେ ପ୍ରସିଦ୍ଧ ବ୍ୟବସାୟୀ ସ୍ୱର୍ଗତ ବନମାଳୀ କରଙ୍କର ୯ବର୍ଷ ବୟସ୍କା କନ୍ୟା ରତ୍ନମଣିଙ୍କୁ ବାହା ବିବାହ କରିଥିଲେ । ଉଭୟେ ଦୁଇଟି ସନ୍ତତି ଓ ସନ୍ତାନର ଜନକ ଜନନୀ । ତାଙ୍କର

ଜ୍ୟେଷ୍ଠା କନ୍ୟା ଶ୍ରୀମତୀ ନନ୍ଦିନୀ ଶତପଥୀ ଓଡ଼ିଶାର ଜଣେ ବିଶିଷ୍ଟ ଗାଳ୍ପିକା ଓ ସାହିତ୍ୟିକା । ସେ କେନ୍ଦ୍ର ମନ୍ତ୍ରୀ ଓ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ ।

କାଳିନ୍ଦୀ ପାଣିଗ୍ରାହୀଙ୍କ ସଂପର୍କରେ ବିଖ୍ୟାତ କମ୍ୟୁନିଷ୍ଟ ନେତା ଶ୍ରୀ ରାମକୃଷ୍ଣ ପତି ମତ ପ୍ରଦାନ କରି କହିଛନ୍ତି "କାଳିନ୍ଦୀ କେବଳ ସମସାମୟିକ ସର୍ବଶ୍ରେଷ୍ଠ କବିରୂପେ ପରିଚିତ ନୁହନ୍ତି; ମାତ୍ର ଏ ଯୁଗର ସର୍ବଶ୍ରେଷ୍ଠ ଔପନ୍ୟାସିକ ସେ । ପ୍ରାଚୀନ ଓ ନବୀନ— ଉଭୟ ଶ୍ରେଣୀର ସ୍ନେହ ସମ୍ମାନ ସେ ଆକର୍ଷଣ କରିଛନ୍ତି । ତାଙ୍କର ପ୍ରଶାନ୍ତ ରୂପ ଭିତରେ ଯୌବନର ଅଧୀରତା ନାହିଁ, କିନ୍ତୁ ନିପୀଡ଼ିତର ପ୍ରଜ୍ଜ୍ୱଳିତ ଅଗ୍ନି ସହିତ ଦେଶ ଭକ୍ତିର ଉତ୍ସାହ ନିହିତ ଅଛି । କାଳିନ୍ଦୀ ଅନୁଭବ କରିଛନ୍ତି ଜନତା ଭିତରେ ହିଁ ମୁକ୍ତିର ଦାବୀ, ପୁଣି ଶୁଣିଛନ୍ତି—ନିମ୍ନତମ ଶ୍ରେଣୀରେ ରହିଥିବା ମଣିଷର ବିଦ୍ରୁପ ଚିତ୍କାର ।"

କାଳିନ୍ଦୀ ଚରଣ ଉତ୍କଳ ସାହିତ୍ୟ ସମାଜର ବହୁବର୍ଷ ଧରି ସଭାପତି ଥାଇ ତାଙ୍କ ସଙ୍ଗଠନ ଶକ୍ତିର ଉତ୍କୃଷ୍ଟ ପରିଚୟ ପ୍ରଦାନ କରିଛନ୍ତି ।

ଏବେବି ତାଙ୍କର ଏ ବୃଦ୍ଧ ବୟସରେ ସାହିତ୍ୟିକର ସହନଶୀଳତା ଓ ସାହିତ୍ୟ ପ୍ରତି ତାଙ୍କର ଆନ୍ତରିକତା ଦେଖିଲେ, ତାଙ୍କ ପ୍ରତି ମୁଣ୍ଡ ଆପେ ଆପେ ନଇଁ ଯାଇଥାଏ ।

## * ଶ୍ରୀ ସାରଦାପ୍ରସନ୍ନ ନାୟକ

(ବିଂଶ ଶତାବ୍ଦୀ) ପ୍ର୭

୧୯୨୭—

୧୯୨୭ ମସିହା ଡିସେମ୍ବର ୧ ତାରିଖରେ ଶ୍ରୀ ସାରଦା ପ୍ରସନ୍ନ ନାୟକଙ୍କର ଜନ୍ମ । ତାଙ୍କ ପିତାଙ୍କ ନାମ ବାସୁଦେବ ନାୟକ ଓ ମାତାଙ୍କ ନାମ ଶ୍ରୀମତୀ ରେବତୀ ଦେବୀ । ତତ୍କାଳୀନ ଟାଉନ୍ ଭିକ୍ଟୋରିଆ ହାଇସ୍କୁଲରୁ ମାଟ୍ରିକ୍ୟୁଲେଶନ ପାଠ ଶେଷ କରି ରେଭେନ୍‌ସା କଲେଜରେ ଆଇ: ଏ:, ବି: ଏ:, ଏମ: ଏ (ଓଡ଼ିଆ) ଉଚ୍ଚ ଶିକ୍ଷା ଲାଭ କରିଥିଲେ । ତା'ପରେ ରାଧାନାଥ ଟ୍ରେନିଂ କଲେଜରୁ ବି. ଇ. ଡି. ଶିକ୍ଷା ଶେଷ କରି ଦୀର୍ଘ ଏଗାରବର୍ଷ କାଳ ରାଜାବଗିଚା ହାଇସ୍କୁଲ ଓ ସେକେଣ୍ଡାରୀ ବୋର୍ଡ ହାଇସ୍କୁଲର ଶିକ୍ଷକ ରୂପରେ ତାଙ୍କ ଜୀବନ ଅତିବାହିତ ହୋଇଥିଲା । ତା'ପରେ ସେ ୧୯୬୩ ମସିହାରୁ ୧୯୭୩ ମସିହା ଦୀର୍ଘ ୧୦ ବର୍ଷ ପର୍ଯ୍ୟନ୍ତ କଟକ ବେତାର କେନ୍ଦ୍ର ଏଡ଼ୁକେସନାଲ ବ୍ରଡ଼୍‌କାଷ୍ଟର ପ୍ରଡ୍ୟୁସର ଥିଲେ ଓ ୧୯୭୪ ମସିହାଠାରୁ ଏ ଯାବତ୍

ଟେଲିଭିଜନର ପ୍ରଡ୍ୟୁସର ରହିଛନ୍ତି । ଏହି ସମସ୍ତ ମଧ୍ୟରେ ସେ ପୁନାରୁ ଚଳଚ୍ଚିତ୍ର ବିଷୟରେ ଶିକ୍ଷାଲାଭ, ଦିଲ୍ଲୀ ଟେଲିଭିଜନ ସଂସ୍ଥାରୁ ଶିକ୍ଷାଲାଭ ଓ ଶେଷରେ ବିଲାତରୁ ଟେଲିଭିଜନ ସଂକ୍ରାନ୍ତରେ ଉଚ୍ଚ ଟ୍ରେନିଂ ପ୍ରାପ୍ତ ହୋଇଛନ୍ତି ।

ଶ୍ରୀ ନାୟକ ମୁଖ୍ୟତଃ କବି, ଗୀତିକାର, ସଂଗୀତଜ୍ଞ, ନାଟ୍ୟକାର, ଗୀତିନାଟ୍ୟ ଲେଖକ ଓ ସର୍ବୋପରି ନାଟ୍ୟ ନିର୍ଦ୍ଦେଶକ, ଚଳଚ୍ଚିତ୍ର ନିର୍ଦ୍ଦେଶକ ଓ ନିର୍ମାତା । କଟକ ବେତାର କେନ୍ଦ୍ର ଓ ବିଭିନ୍ନ ଓଡ଼ିଆ ଚଳଚ୍ଚିତ୍ରର ସୁପ୍ରତିଷ୍ଠିତ ଗୀତିକାର । ବୈଷ୍ଣବ ପାଣିଙ୍କ ଗୀତିନାଟ୍ୟ ଗୁଡ଼ିକୁ ଉତ୍ସବ ମୁଖର ଓ ପ୍ରଚ୍ଛର ମୁଖର କରାଇବାରେ ସେ ଅନ୍ୟତମ ବ୍ୟବସ୍ଥାପକ । ୧୯୭୩ ମସିହାରେ ବିଲାତରେ ଟେଲିଭିଜନ ଟ୍ରେନିଂ ନେଇଥିଲା ବେଳେ "EDO Times" ନାମକ ଏକ ଇଂରାଜୀ ପତ୍ରିକା ସମ୍ପାଦନା କରୁଥିଲେ ।

ତାଙ୍କ ପ୍ରକାଶିତ ରଚନାମାନଙ୍କ ମଧ୍ୟରେ ସୁନାମାଟି, ପରିଶୋଧ, ସଙ୍ଗୀଳ, ପଲ୍ଲୀ ଏବଂ ଲକ୍ଷ୍ମୀ ପ୍ରଭୃତି ଚଳଚ୍ଚିତ୍ର ନାଟକ ଏକାଙ୍କିକା, ନ'ଟି ଏକାଙ୍କିକା, ଶ୍ରୀଗୁଣ୍ଡିଚା ଗୀତିନାଟ୍ୟ ପ୍ରଭୃତି ପ୍ରଧାନ । ଏ ଅବଧି ସେ ପ୍ରାୟ ଦୁଇଶହରୁ ଊର୍ଦ୍ଧ୍ୱ ହେବ ମଞ୍ଚରେ ଅଭିନୀତ ନାଟକ ଗୁଡ଼ିକର ନିର୍ଦ୍ଦେଶକ । ତାଙ୍କ ନିର୍ଦ୍ଦେଶିତ ଲକ୍ଷ୍ମୀ, କା, ଓ ସ୍ତ୍ରୀ ଓଡ଼ିଆ ଚଳଚ୍ଚିତ୍ର ଯଥାକ୍ରମେ ୧୯୬୨,୧୯୬୭ ଓ ୧୯୬୭ରେ ରାଷ୍ଟ୍ରପତି ପୁରସ୍କାର ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଥିଲା ।

## * ଶ୍ରୀ କୁଳମଣି ମହାରଣା

(ବିଂଶ ଶତାବ୍ଦୀ)

୧୯୨୩—

୧୯୨୩ ମସିହା ଅପ୍ରେଲ ୨ ତାରିଖ ଦିନ କଟକ ସହରର ବାସୁଲୀ ସାହିରେ କୁଳମଣି ମହାରଣାଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ମଦନ ମୋହନ ମହାରଣା ଓ ମାତାଙ୍କ ନାମ ଅନ୍ନପୂର୍ଣ୍ଣା ମହାରଣା । ତାଙ୍କର ଶିକ୍ଷାଗତ ଯୋଗ୍ୟତା ଦଶମ ଶ୍ରେଣୀ ଯାଏଁ ହେଲେହେଁ ସେ ନିଜକୁ ଜଣେ ସଂଗୀତଜ୍ଞ ଓ କବି ଭାବରେ ପରିଚିତ କରାଇ ପାରିଛନ୍ତି । ୧୯୪୭ ମସିହାରେ କଲିକତା ବେତାର କେନ୍ଦ୍ର ଓ ୧୯୪୮ ମସିହାରୁ ୧୯୬୦ ମସିହା ପର୍ଯ୍ୟନ୍ତ କଟକ ବେତାର କେନ୍ଦ୍ରରୁ ଜଣେ ସଙ୍ଗୀତ ଶିଳ୍ପୀ ଭାବେ ସେ ଗ୍ରନ୍ଥ/ଜଣାଣ ପରିବେଷଣ କରିଥିଲେ । ସେ ସମ୍ପ୍ରତି ଉତ୍କଳ ସ୍ୱର୍ଣ୍ଣ ରୌପ୍ୟ ଶିଳ୍ପୀ ସଂଘର ସଭାପତି, ରାମକୃଷ୍ଣ ପ୍ରଚ୍ଛର ପରିଷଦ ଓ କଟକ ରାମଲୀଳା ପ୍ରଚ୍ଛର ସମିତିର ଉପ-ସଭାପତି, ଉତ୍କଳ

ସାହିତ୍ୟ ସମାଜ, ଉତ୍କଳ ନାଟ୍ୟ ସଙ୍ଘ, ଓ ଦିବ୍ୟ ଜୀବନ ସଙ୍ଘର ଆଜୀବନ ସଭ୍ୟ । ତାଙ୍କ ପ୍ରକାଶିତ କବିତା ପୁସ୍ତକମାନଙ୍କ ମଧ୍ୟରେ ରାମରାଜୀବ ଲୋଚନ, ମାନସ ସରବତ, ଅଶୋକାଭିଷେକ, ରାମାୟଣ ଏକ୍ସପ୍ରେସ ଓ କନକପୃଷ୍ଠ ପ୍ରଭୃତି ପ୍ରଧାନ । ତାଙ୍କ ରଚିତ ବୈଦେହୀଶ ଚମ୍ପୂ ବର୍ତ୍ତମାନ ପ୍ରକାଶନ ଅପେକ୍ଷାରେ ।

## * ଶ୍ରୀ ମୁରଲୀଧର ପାଇଟାଳ

(ବିଂଶ ଶତାବ୍ଦୀ)
୧୯୩୭—

ଶ୍ରୀ ମୁରଲୀଧର ପାଇଟାଳ ୧୯୩୭ ମସିହା ଅଗଷ୍ଟ ୨୧ ତାରିଖରେ କଟକ ସଦର ପୀଠାପୁର ବସ୍ତିରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଶ୍ରୀ ରାଧାନାଥ ପାଇଟାଳ ଓ ମାତାଙ୍କ ନାମ ରାଧାମଣି ଦେବୀ । ଶ୍ରୀ ପାଇଟାଳ ଭୂମିଷ୍ଠ ହେବାର ୧୩ ଦିନ ପୂର୍ବରୁ ତାଙ୍କ ପିତାଙ୍କର ପରଲୋକ ହୋଇ ଯାଇଥିଲା । କେବଳ ମା ଓ ବଡ଼ଭାଇ ମାନଙ୍କର ତତ୍ତ୍ୱାବଧାନରେ ସେ ଲାଳିତ ପାଳିତ ହୋଇଥିଲେ । ସେ ବିଶେଷ ଭାବେ ବିଦ୍ୟାଧ୍ୟୟନ କରି ନ ପାରି କାଠ ଶିଳ୍ପ ବିଦ୍ୟା ଶିକ୍ଷା ଲାଭ କରିଥିଲେ ଓ ତା’ ସାଙ୍ଗକୁ କୁସ୍ତିକସରତ ଓ ବ୍ୟାୟାମ ଶିକ୍ଷାରେ ମନୋନିବେଶ କରି ଉତ୍କଳ ଭୀମ ପଦ୍ମଚରଣଙ୍କ ପ୍ରତିଷ୍ଠିତ କଳିଙ୍ଗ ବ୍ୟାୟାମ ବିଦ୍ୟାଳୟରେ ଶିକ୍ଷା ଲାଭ ଶେଷ କରି ସେହି ବ୍ୟାୟାମ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ରୂପେ ପ୍ରାୟ ୧୮ ବର୍ଷ ପର୍ଯ୍ୟନ୍ତ ଦାୟିତ୍ୱ ତୁଲାଇ ଥିଲେ । ଇତି ମଧ୍ୟରେ ଓଡ଼ିଶା ତଥା ଭାରତର ବିଭିନ୍ନ ପ୍ରାନ୍ତରେ କୁସ୍ତିକସରତରେ ପାରଦର୍ଶିତା ଦେଖାଇ ବହୁ ଭାବରେ ପୁରସ୍କୃତ ହୋଇଥିଲେ । ଏ ସମସ୍ତ କାଠ ଶିଳ୍ପ ବିଦ୍ୟା ଓ କୁସ୍ତି କସରତ୍ ବିଦ୍ୟା ଛଡ଼ା ଶ୍ରୀ ପାଇଟାଳ ମଧ୍ୟ ଜଣେ ସଙ୍ଗୀତଜ୍ଞ । ବାଲ୍ୟକାଳରୁ ଓଡ଼ିଆ ନଦିଆ କୀର୍ତ୍ତନ କରିବାରେ ତାଙ୍କର କୃତିତ୍ୱ ରହିଛି । ସେ ଯେପରି ସଂକୀର୍ତ୍ତନର ଗାୟକ ସେହିପରି ମୃଦଙ୍ଗ ଓ ବେହେଲା ବାଦକ ମଧ୍ୟ । ପରବର୍ତ୍ତୀ କାଳରେ ସେ ମଧ୍ୟ ବିଭିନ୍ନ ଜଣାଣ ଭଜନ ଓ କୀର୍ତ୍ତନ ପ୍ରଭୃତି ସଙ୍ଗୀତ ଲେଖି ଜଣେ ଲେଖକ ରୂପେ ପରିଚିତ ହେଲେ ଏବଂ ସେ ଏ ପର୍ଯ୍ୟନ୍ତ ଛୋଟବଡ଼ ପ୍ରାୟ ୩୦ ଖଣ୍ଡି ପୁସ୍ତକ ଲେଖିଛନ୍ତି । ଓଡ଼ିଶାର ପ୍ରାୟ ସମସ୍ତ ଦେବ ଦେବୀ ମନ୍ଦିରରେ ଶ୍ରୀ ପାଇଟାଳ ନିଜ ରଚିତ ସଙ୍ଗୀତ ପରିବେଷଣ କରିଛନ୍ତି ଓ ନିଜର ସଙ୍ଗୀତ ପୁସ୍ତକ/ପୁସ୍ତିକା ମଧ୍ୟ ବିକ୍ରୀ କରିଛନ୍ତି । ତାଙ୍କର କେତୋଟି ପୁସ୍ତକ ମଧ୍ୟ ଶିକ୍ଷା ବିଭାଗ ଦ୍ୱାରା ଶିକ୍ଷାନୁଷ୍ଠାନମାନଙ୍କରେ ପ୍ରଚଳନ ପାଇଁ ସ୍ୱୀକୃତି ଲାଭ କରିଅଛି ଓ ତାଙ୍କର କେତେଖଣ୍ଡି ଏହି ସଙ୍ଗୀତ ପୁସ୍ତକ ଆମେରିକା ଓ ଅନ୍ୟାନ୍ୟ ବିଦେଶ ପାଠାଗାରରେ ସୁରକ୍ଷିତ ହୋଇଅଛି । ତାଙ୍କ ପୁସ୍ତକ ମାନଙ୍କ ମଧ୍ୟରେ ଶକ୍ତି ଓ ସଂଯମ, ଆମେ କାହିଁକି ରୁଗ୍‌ଣ ହେଉ, କୁସ୍ତିଶିକ୍ଷା, ଓ ସ୍ୱାସ୍ଥ୍ୟରକ୍ଷା ବିଡ଼

ଠାକୁର ଓ ବଡ଼ ଦେଉଳ, ଗ୍ରନ୍ଥ ରାମାୟଣ, ଶିବ ଭଜନମାଳା, ଦେବୀ ଜଣାଣମାଳା ଶ୍ରୀରାମ ଭଜନମାଳା ପ୍ରଭୃତି ପ୍ରଧାନ ।

ସେ ବର୍ତ୍ତମାନ କଟକ ସଦରସ୍ଥ ଖାନନଗର ଗ୍ରାମରେ ଭାରତ ବ୍ୟାୟାମ ବିଦ୍ୟାଳୟ ପ୍ରତିଷ୍ଠା କରି ସେଠାରେ କୁସ୍ତି କସରତ ଶିକ୍ଷା ଦେଉଛନ୍ତି ଏବଂ ଏହି ବିଦ୍ୟାଳୟରେ ବହୁ ଛାତ୍ର ଯୋଗ ଦେଇ ଶ୍ରୀ ପାଇଟାଲଙ୍କ ଠାରୁ ଶିକ୍ଷାଲାଭ କରୁଛନ୍ତି ।

କଟକ ଯୋବ୍ରାସ୍ଥିତ ଇଞ୍ଜିନିୟରିଂ ସ୍କୁଲରେ କାଷ୍ଠଶିଳ୍ପ ଶିକ୍ଷକ ରୂପେ ସମ୍ପ୍ରତି ଶ୍ରୀ ପାଇଟାଲ ଶିକ୍ଷାଦାନ କରୁଛନ୍ତି ।

ସେ ପ୍ରାଣାୟାମ ମାଧ୍ୟମରେ ୧୯୭୮ ମସିହାରେ ଭୁବନେଶ୍ୱରସ୍ଥ ରବୀନ୍ଦ୍ର ମଣ୍ଡପ ଠାରେ ସମ୍ପୂର୍ଣ୍ଣ ପ୍ରାଣବାୟୁକୁ ଅବରୋଧ କରି ୫ ମିନିଟ ପର୍ଯ୍ୟନ୍ତ ଚଳତ୍ ଶକ୍ତିହୀନ ହୋଇ ଡାକ୍ତରମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲେ ।

✳ ଶ୍ରଦ୍ଧାମଣି ଜେନା ଓରଫ୍ ସଂଘମିତ୍ରା ଜେନା

(ବିଂଶ ଶତାବ୍ଦୀ)
୧୯୪୪—

କଟକ ସହର ଓଏଆ ସାହି ବସ୍ତିରେ ୧୯୪୪ ମସିହା ଡିସେମ୍ବର ୫ ତାରିଖରେ ଶ୍ରଦ୍ଧାମଣି ଓରଫ ସଂଘମିତ୍ରା ଜେନାଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ଶ୍ରୀ ଭବଗ୍ରାହୀ ସିଂହ ଓ ମାତାଙ୍କ ନାମ ଜାନକୀ ଦେବୀ । ଛାତ୍ରାବସ୍ଥାରୁ ସେ ସାହିତ୍ୟ ସଙ୍ଗୀତପ୍ରତି ବିଶେଷ ଆକୃଷ୍ଟ । ଏପରିକି ସେ ଛାତ୍ରାବସ୍ଥାରୁ ସ୍କୁଲରେ ଆୟୋଜିତ ବହୁ ଭଜନ ଓ ସଙ୍ଗୀତ ଆସରରେ ସଙ୍ଗୀତ ଗାଇ ଜଣେ ସଙ୍ଗୀତ ଶିଳ୍ପୀ ଭାବେ ସୁନାମ ଅର୍ଜନ କରିଥିଲେ । ୧୯୬୧ ମସିହା ମାର୍ଚ୍ଚ ୧୨ ତାରିଖରେ ସେ କବି, ସମାଲୋଚକ ମୁରାରିମୋହନ ଜେନାଙ୍କୁ ବିବାହ କରିଥିଲେ । ଏହି ବିବାହ ପରେ ତାଙ୍କ ସାହିତ୍ୟିକ ଜୀବନର ମଣିକାଞ୍ଚନର ସଂଯୋଗ ହେଲା । ସେ ମୁଖ୍ୟତଃ ଜଣେ ଶିଶୁ ଲେଖିକା । ତାଙ୍କ ପ୍ରକାଶିତ ରଚନାମାନଙ୍କ ମଧ୍ୟରେ "ଦୂରଦେଶର ସାହସୀ ପିଲା" ଓ ପିଲାଙ୍କ କବିତା ପ୍ରଭୃତି ପ୍ରଧାନ । ଏହି ପୁସ୍ତକ ଗୁଡ଼ିକର ୨।୩ଟି ସଂସ୍କରଣ ହୋଇ ସାରିଲାଣି । ଏହାଛଡ଼ା ସେ ବହୁ ଜଣାଣ ଭଜନର ରଚୟିତ୍ରୀ । ସେ 'ଉତ୍କଳ ସାହିତ୍ୟ ସମାଜ'ର ଆଜୀବନ ସଭ୍ୟ ।

## * ଶ୍ରୀ ଉପେନ୍ଦ୍ରନାଥ ବେହୁରା

(ବିଂଶ ଶତାବ୍ଦୀ)
୧୯୪୬—

ଶ୍ରୀ ଉପେନ୍ଦ୍ରନାଥ ବେହୁରା ପୁରୀଜିଲ୍ଲା ରଣପୁର ନିକଟସ୍ଥ କଙ୍କଣିଆ ଗ୍ରାମରେ ୧୯୪୬ ମସିହା ଫେବୃଆରୀ ୧୦ ତାରିଖ ଦିନ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ନିଧି ବେହୁରା ଓ ମାତାଙ୍କ ନାମ କୋକିଳ ଦେଈ । ସେ ସମ୍ପ୍ରତି ଓଡ଼ିଶା ସରକାରଙ୍କ ଅଧୀନରେ ଉଠା ଜଳସେଚନ ବିଭାଗରେ କାର୍ଯ୍ୟ କରୁଛନ୍ତି । ସେ ମୁଖ୍ୟତଃ କବି ଓ ନାଟ୍ୟକାର । ତାଙ୍କ ରଚିତ ବହୁ ଭଜନ ଜଣାଣ ଓ ନାଟକ ଅପ୍ରକାଶିତ ଅବସ୍ଥାରେ ରହିଛି । ସେ ସମସ୍ତ ଲୋକଲୋଚନକୁ ଆସି ପାରିଲେ ତାଙ୍କ ସାହିତ୍ୟିକ ଜୀବନର ପ୍ରକୃତ ପରିଚୟ ମିଳିପାରିବ । ତାଙ୍କ ପ୍ରକାଶିତ ପୁସ୍ତକଗୁଡ଼ିକ ହେଲା—କପଟିଆ ଜଗନ୍ନାଥ (ଜଣାଣ), ବେଇମାନ ରାଜା (ନାଟକ)

## * ଶ୍ରୀ ସୁରେଶଚନ୍ଦ୍ର ମହାରଣା

(ବିଂଶ ଶତାବ୍ଦୀ)
୧୯୪୧—

ଶ୍ରୀ ସୁରେଶଚନ୍ଦ୍ର ମହାରଣା କଟକ ସହର ଭଗତପୁର ବସ୍ତିରେ ୧୯୪୧ ମସିହା ଜୁନ୍ ୪ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଶ୍ରୀ ନୀଳମଣି ମହାରଣା ଓ ମାତାଙ୍କ ନାମ ଶ୍ରୀମତୀ ଶ୍ରୀୟା ଦେବୀ । ଛାତ୍ରାବସ୍ଥାରୁହିଁ ସାହିତ୍ୟ ଓ ସଙ୍ଗୀତ ପ୍ରତି ତାଙ୍କର ବିଶେଷ ଆଗ୍ରହ ପ୍ରକାଶ ପାଇଥିଲା । ସେ ଦିନବର୍ଷ ପାଇଁ ରାଜାବଗିଚା ପ୍ରିଣ୍ଟି ହାଇସ୍କୁଲରେ ଶିକ୍ଷକତା କରିଥିଲେ । ତାଙ୍କର ଏହି ଶିକ୍ଷକତା କାଳରେ ହିଁ ତାଙ୍କର ବଳିଷ୍ଠ ନେତୃତ୍ୱରେ ସେ ରାଜାବଗିଚା ସ୍କୁଲର ଉତ୍ତରୋତ୍ତର ଉନ୍ନତି କରି ଏହାକୁ ଏକ କଲେଜ କରିବାର ପରିକଳ୍ପନା ମଧ୍ୟ କରିଥିଲେ ଓ ଜଣେ ଉତ୍ତମ ଶିକ୍ଷକ ଭାବେ ନିଜକୁ ମଧ୍ୟ ପ୍ରତିଷ୍ଠିତ କରାଇ ପାରିଥିଲେ । ତା'ପରେ ଓକିଲାତି ପାଶ୍ କଲାପରେ ଶିକ୍ଷକତାରୁ ଅବ୍ୟାହତି ନେଇ କଟକରେ ଆଇନ ବ୍ୟବସାୟରେ ନିଜକୁ ନିୟୋଜିତ କଲେ । ଜଣେ ଆଡ୍‌ଭୋକେଟ ଭାବେ ସେ ମଧ୍ୟ ତାଙ୍କର ସୁନାମ ପ୍ରତିଷ୍ଠା କରିପାରିଛନ୍ତି ।

ଶ୍ରୀ ମହାରଣା ମୁଖ୍ୟତଃ ଜଣେ କବି, ନାଟ୍ୟକାର, ବକ୍ତା, ଗୀତିକାର ସଙ୍ଗୀତଜ୍ଞ ଓ ଅଭିନେତା । ତାଙ୍କ ପ୍ରକାଶିତ ପୁସ୍ତକମାନଙ୍କ ମଧ୍ୟରେ "ଝାଞ୍ଜିରୀ ଚଉତିଶା", 'ନଈବଢ଼ି', 'ଅଜା ନାତୁଣୀଙ୍କ ଦେବୀ ଦେଖା' ପ୍ରଧାନ । ତାଙ୍କ ରଚିତ 'ବାଲାର-ମୁକ୍ତି'

ରାମଲୀଲା ନାଟକ ତାଙ୍କ ନାଟ୍ୟକାର ପ୍ରତିଭାର ପୂର୍ଣ୍ଣ ପରିଚୟ ପ୍ରଦାନ କରେ । ମୁରାରି ଜେନାଙ୍କ ରଚିତ ଓ ଭଗତପୁର ରାମଲୀଳା ସମିତି ଦ୍ୱାରା ଅଭିନୀତ ଅହଲ୍ୟା ପରିଣୟ ଓ ହନୁମାନ ଜନ୍ମ "ରାମଲୀଲା ନାଟକ" ମାନଙ୍କରେ ସୁରେଶଚନ୍ଦ୍ର ମୁଖ୍ୟ ଭୂମିକାରେ ଅଭିନୟ କରି ଅତୀବ କୃତିତ୍ୱ ପ୍ରଦର୍ଶନ କରିଛନ୍ତି । ସମ୍ପ୍ରତି ସେ ଜଗନ୍ନାଥ ନାଟ୍ୟ ସଙ୍ଘର ସଭାପତି, କଟକ ରାମଲୀଳା ପ୍ରଚାର ସମିତି ଓ ରାମକୃଷ୍ଣ ପ୍ରଚାର ପରିଷଦର ସାଧାରଣ ସମ୍ପାଦକ ଓ କେତେକ ଶ୍ରମିକ ୟୁନିୟନର ପରାମର୍ଶ ଦାତା ଅଛନ୍ତି ଓ ଫୋରମ ଅଫ୍ ଫି ଥିଙ୍କର୍ସ୍‌ର ସାଧାରଣ ସମ୍ପାଦକ ଓ ଓଡ଼ିଶା ରେଡ୍‌କ୍ରସ ସଂସ୍ଥାର ଜଏଣ୍ଟ ସେକ୍ରେଟାରୀ । କଟକ ବେତାର କେନ୍ଦ୍ରରେ ଧାରାବାହିକ ଭାବେ ସେ ଆଇନ ସମ୍ବନ୍ଧୀୟ ଆଲୋଚନାମାନ କରିଥାଆନ୍ତି । ଅଧୁନା କଟକରୁ ପ୍ରକାଶ ପାଉଥିବା 'ସରପଞ୍ଚ' ଆଇନ୍ ପତ୍ରିକାର ସେ ଧାରାବାହିକ ହିସ୍ତ ଆଇନ ବିଭାଗର ଲେଖକ । ଏହାଛଡ଼ା ତାଙ୍କର ସାମାଜିକ ଚେତନା ସମ୍ବଳିତ ବହୁ ଲେଖାମାନ ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ହୋଇ ଆସୁଛି ।

## * ଅଧ୍ୟାପକ ଶ୍ୟାମସୁନ୍ଦର ମିଶ୍ର

(ବିଂଶ ଶତାବ୍ଦୀ)

୧୯୩୨—

ଶ୍ରୀ ଶ୍ୟାମସୁନ୍ଦର ମିଶ୍ର ୧୯୩୨ ମସିହାରେ କଟକ ସହରର ଝାଞ୍ଜିରି ମଙ୍ଗଳା ବସ୍ତିରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ନବରାଜ ପଦ୍ମଲାଭ ମିଶ୍ର ଓ ମାତାଙ୍କ ନାମ ଶ୍ରୀମତୀ ମାଣିକ୍ୟ ଦେବୀ ।

ରାଣୀହାଟ ଉଚ୍ଚ ବିଦ୍ୟାଳୟରୁ ମାଟ୍ରିକ୍ୟୁଲେସନ ପାଠ ଶେଷ କରି ସେ ରେଭେନ୍ସା ମହାବିଦ୍ୟାଳୟରେ ଯଥାକ୍ରମେ ଆଇ. ଏ., ବି. ଏ. ଓ ଏମ୍. ଏ. ପଢ଼ିଲେ । ୧୯୫୫ ମସିହାରେ ଏମ· ଏ. ପାଶ୍ କଲେ । ବି.ଏ. ପଢୁଥିଲାବେଳେ ସେ ଓ କବି ମୁରାରି ଜେନା ଦୁହିଁଙ୍କ ସମ୍ପାଦନାରେ ଚେଲୁଲଏଡ଼ ନାମକ ଏକ ସାହିତ୍ୟ ସମାଲୋଚନା ପତ୍ରିକା ପ୍ରକାଶ ପାଇଥିଲା ଓ ତାହା ଓଡ଼ିଆ ସାହିତ୍ୟରେ ଏକ ଚମକପ୍ରଦ ପରିବେଶ ସୃଷ୍ଟି କରିଥିଲା ।

ଏମ୍. ଏ. ପାଶ୍ ପରେ ପରେ ଶ୍ରୀ ମିଶ୍ର ସମବାୟ ବିଭାଗରେ ତିନିବର୍ଷ ଚାକିରୀ କରିଥିଲେ କିନ୍ତୁ ସେ ଚାକିରୀରେ ତାଙ୍କର ମନ ନ ମାନିବାରୁ ଚାକିରୀରୁ ଇସ୍ତଫା ଦେଇ "କଟକ ବୁକ୍ ଷ୍ଟଲ" ନାମରେ ଏକ ପୁସ୍ତକ ସଂସ୍ଥା ଖୋଲିଲେ । ତା'ପରେ '୧୬୨-୬୩ ରେ ଦୈନିକ "ମାତୃଭୂମି" ପତ୍ରିକାର ସହ-ସମ୍ପାଦକ ରୂପେ ନିଯୁକ୍ତ ହେଲେ ।

୧୯୬୩ଠାରୁ ୧୯୬୫ ମସିହା ପର୍ଯ୍ୟନ୍ତ ବାଣପୁରର ଗୋଦାବରୀଶ ମହାବିଦ୍ୟାଳୟର ଅଧ୍ୟକ୍ଷ ଦାୟିତ୍ୱରେ ଅବସ୍ଥାପିତ ହେଲେ । ଜୀବନର ବହୁ ଝଡ଼ଝଞ୍ଜା ଅତିକ୍ରମକରି ୧୯୬୭ ଜାନୁଆରୀ ପହିଲାରୁ ଏ ଯାବତ୍ ଓଡ଼ିଶାର ବିଭିନ୍ନ ସରକାରୀ କଲେଜରେ ଓଡ଼ିଆ ଅଧ୍ୟାପକ ଦାୟିତ୍ୱରେ ରହି ଆସିଛନ୍ତି । ସେ ସମ୍ପ୍ରତି ରେଭେନସା ମହାବିଦ୍ୟାଳୟର ଓଡ଼ିଆ ଅଧ୍ୟାପକ ।

କିଶୋର ଅବସ୍ଥାରୁ ସେ ମୁଖ୍ୟତଃ କବିତା ଲେଖୁଥିଲେ ମଧ୍ୟ ଏ ଯାବତ୍ ତାଙ୍କର କୌଣସି କବିତା ଗ୍ରନ୍ଥ ପ୍ରକାଶିତ ହୋଇନାହିଁ । ତାଙ୍କର ପ୍ରକାଶିତ ଗ୍ରନ୍ଥମାନଙ୍କ ମଧ୍ୟରେ ଚକୋରୀ (ଉପନ୍ୟାସ), ଯୋଗଜନ୍ମା (ଉପନ୍ୟାସ), ରାଧାନାଥ ଦର୍ଶନ (ସମାଲୋଚନା) କଥା ସରିତ ସାଗର (ଅନୁବାଦ) ପ୍ରଭୃତି ପ୍ରଧାନ । ଶାସକର ସ୍ମୃତି ଓ ଅନ୍ୟାନ୍ୟ ଗଳ୍ପ ସଂକଳନ ପ୍ରକାଶନ ଅପେକ୍ଷାରେ ରହିଛି ।

**✳ ଶ୍ରୀମତୀ ସାରଦାମଣି ମହାପାତ୍ର**

(ବିଂଶ ଶତାବ୍ଦୀ)
୧୯୧୯—

ପୁରୀ ଜିଲ୍ଲା ଅନ୍ତର୍ଗତ ସତ୍ୟବାଦୀ ଥାନାର ଶ୍ରୀ ରାମଚନ୍ଦ୍ର ପୁର ଶାସନରେ ୧୯୧୯ ମସିହାରେ ଶାରଦା ମଣି ମହାପାତ୍ରଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ଗୋପାଳଚନ୍ଦ୍ର ଦାଶ ଓ ମାତାଙ୍କ ନାମ ସୁଭଦ୍ରା ଦେବୀ । ସେ କଟକ ଜିଲ୍ଲା ଗୋବିନ୍ଦପୁର ଥାନାର କଣ୍ଡରବା ଗ୍ରାମ ନିବାସୀ ୰ଡାକ୍ତର ନଟବର ମହାପାତ୍ରଙ୍କ ଧର୍ମପତ୍ନୀ । ସାଧାରଣ ଶିକ୍ଷିତା ହେଲେ ମଧ୍ୟ ସେ ଅସଂଖ୍ୟ ଜଣାଣ, ଭଜନ, ସଙ୍ଗୀତର ଲେଖିକା ।

**✳ ସଂତୁଷ ନନ୍ଦ**

(ବିଂଶ ଶତାବ୍ଦୀ)
୧୯୧୫—

କଟକ ସହର ଝାଞ୍ଜିରୀ ମଙ୍ଗଳାରେ ୧ । ୭ । ୧୯୧୫ ମସିହାରେ ସଂତୁଷନନ୍ଦ ଓରଫ ରାମଚନ୍ଦ୍ର ମିଶ୍ର ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ବିଦ୍ୟାଧର ମିଶ୍ର ଓ ମାତାଙ୍କ ନାମ ସୁଭଦ୍ରା ଦେବୀ । ଓଡ଼ିଶା ମେଡିକାଲ ସ୍କୁଲରୁ ୧୯୩୮ ମସିହାରେ ଏଲ: ଏମ: ପି: ପାଶ୍ ଓ ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୬୦ ମସିହାରେ ବି. ଏ. ପାଶ୍ । ସେ ନିଜେ ଜଣେ ଡ଼ାକ୍ତର ହେଲେ ମଧ୍ୟ ସାହିତ୍ୟ ସୃଷ୍ଟି ବିଶେଷ କରି ବ୍ୟଙ୍ଗ ସାହିତ୍ୟ

ସୃଷ୍ଟିରେ ତାଙ୍କର ନିଷ୍ଠା ଓ ଆନ୍ତରିକତା ଗଭୀର ଭାବେ ସ୍ମରଣୀୟ । କିଏ ଜାଣିଥିଲା ଜଣେ ଓ କୃର ଶ୍ରେଷ୍ଠ ବ୍ୟଙ୍ଗକାର ଭାବେ ଏ ମାଟିରେ ପରିଚିତ ହେବ ? ଏ ମାଟି ମଣିଷକୁ ହସେଇ ରସେଇ ମତେଇବ ??

କୈଶୋରାବସ୍ଥାରୁ ହିଁ ଫତୁରାନନ୍ଦଙ୍କ ମନ ପ୍ରାଣ ସାହିତ୍ୟ ପ୍ରତି ବିଶେଷ ଭାବେ ଆକୃଷ୍ଟ ହୋଇଥିଲା । ସେ ରେଭେନ୍‌ସା କଲେଜିଏଟ ସ୍କୁଲରେ ପଢୁଥିବା ବେଳେ ୧୯୩୦ ମସିହାରେ ପ୍ରଥମେ ତାଙ୍କର ଲେଖା ରେଭେନ୍‌ସା କଲେଜିଏଟ ସ୍କୁଲ ମେଗାଜିନରେ ପ୍ରକାଶ ପାଇଥିଲା । ତାଙ୍କ ରଚିତ ବହୁ ହାସ୍ୟରସାତ୍ମକ କବିତା, ଗଳ୍ପ, ରମ୍ୟରଚନା ଓଡ଼ିଶାର ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇଛି । ତାଙ୍କର ଅନ୍ୟାନ୍ୟ ପ୍ରକାଶିତ ହାସ୍ୟ ରସାତ୍ମକ ଓ ବ୍ୟଙ୍ଗାତ୍ମକ କୃତିମାନଙ୍କ ମଧ୍ୟରେ ନାକଟା ଚଉକିର (ଉପନ୍ୟାସ), ନଲିଠା କବି (କବିତା) ହେରେପା, ସାହିତ୍ୟ ଗୃଷ୍ଟ, ମଙ୍ଗଳ ବାରିଆ ସାହିତ୍ୟ ସଂସଦ, ବିଦୂଷକ, ହସକୁରା, ବୃହତ୍ ଭଣ୍ଡ, ଅମୃତ ବେହିଆ ପ୍ରଭୃତି ପୁସ୍ତକ ବିଶେଷ ଭାବେ ଉଲ୍ଲେଖ ଯୋଗ୍ୟ । ଓଡ଼ିଶାର ବିଶିଷ୍ଟ ହାସ୍ୟ ରସାତ୍ମକ ପତ୍ରିକା 'ଡଗର' ମାସିକ ପତ୍ରିକା ପ୍ରକାଶନର ସେ ମୁଖ୍ୟ-ବ୍ୟବସ୍ଥାପକ । କେବଳ ଲେଖାରେ ନୁହେଁ ସାଧାରଣ କଥା ବାର୍ତ୍ତାରେ ମଧ୍ୟ ତାଙ୍କର ବ୍ୟଙ୍ଗାତ୍ମକ ଶୈଳୀ ଫୁଟି ଉଠୁଛି ଉଠିଥାଏ ।

## * ଶ୍ରୀ ଗୁରୁକୃଷ୍ଣ ଗୋସ୍ୱାମୀ

(ବ୍ୟଂଗ ଶିଳ୍ପୀ)

୧୯୩୪—

ମୟୂରଭଞ୍ଜ ଜିଲ୍ଲାର ନୂଆ ଗାଁ ଗ୍ରାମରେ ୧୯୩୪ ମସିହା ନଭେମ୍ବର ୭ ତାରିଖରେ ଏକ ଓଡ଼ିଆ ବୈଷ୍ଣବ ପରିବାରରେ ଶ୍ରୀ ଗୁରୁକୃଷ୍ଣ ଗୋସ୍ୱାମୀଙ୍କର ଜନ୍ମ । ତାଙ୍କ ପିତାଙ୍କ ନାମ ଶ୍ରୀ ଗୋକୁଳ ଚନ୍ଦ୍ର ଗୋସ୍ୱାମୀ ଓ ମାତାଙ୍କ ନାମ ଶ୍ରଦ୍ଧାଦେବୀ ଗୋସ୍ୱାମୀ । ପରବର୍ତ୍ତୀ କାଳରେ ଶ୍ରୀ ଗୋସ୍ୱାମୀଙ୍କ ପରିବାର ତାଙ୍କ ଜୋଡ଼ିବା ଘର ନୂଆଗାଁରୁ ବାରି-ପଦାକୁ ଆସି ସ୍ଥାୟୀ ଭାବେ ସେଇଠାରେ ବସବାସ କରି ରହିଥିଲେ ।

ବାରିପଦାର ଶିକ୍ଷକ ଶ୍ରୀ ଯୁଗଳକିଶୋର ଦାସଙ୍କ ତତ୍ତ୍ୱାବଧାନରେ ଗୁରୁକୃଷ୍ଣଙ୍କ ଶୈଶବ ଓ କୈଶୋରାବସ୍ଥାର ଶିକ୍ଷା ଲାଭ ଶେଷ ହୋଇଥିଲା । ବାରିପଦା ସ୍କୁଲରୁ ମାଟ୍ରିକ୍ୟୁଲେସନ ପାଶ ପରେ ବାରିପଦା କଲେଜରେ ବି: ଏ: ଶ୍ରେଣୀ ଯାଏ ଅଧ୍ୟୟନ କରିଥିଲେ ।

ଯୁବାବସ୍ଥାରୁ ହିଁ ତାଙ୍କର ସାହିତ୍ୟ ଓ ସଂଗୀତ ପ୍ରତି ବିଶେଷ ଅନୁରାଗ ଜନ୍ମିଥିଲା । ତେଣୁ ସେ ୧୯୫୫ ମସିହାରେ ଗୁରୁ ଶ୍ରୀ କ୍ଷିତିଶଚନ୍ଦ୍ର ମୈତ୍ରଙ୍କଠାରୁ ଶାସ୍ତ୍ରୀୟ ସଂଗୀତ

ଶିକ୍ଷା ଲାଭ କରିବା ପାଇଁ କଟକରେ ଅବସ୍ଥାନ କଲେ । ଏହି ସମୟକୁ ସେ ସଙ୍ଗୀତ ରଚନା କ୍ଷେତ୍ରରେ ମଧ୍ୟ ବିଶେଷ ପାରଦର୍ଶିତା ଲାଭ କରି ନାଣିଲେଣି । ୧୯୫୭ ମସିହାରେ ସେ କଟକ ବେତାର କେନ୍ଦ୍ରର ଜଣେ ଗୀତିକାର ରୂପେ ସ୍ୱୀକୃତି ଲାଭ କଲେ । ସେହି ସମୟରୁ ତାଙ୍କ ରଚିତ ଜଣାଣ/ଭଜନ/କୀର୍ତ୍ତନ/ଆଧୁନିକ ସଙ୍ଗୀତମାନ ଅଧିକାଂଶ ସମୟରେ ଓଡ଼ିଶାର ବିଶିଷ୍ଟ ସଙ୍ଗୀତଜ୍ଞ ମାନଙ୍କ ଦ୍ୱାରା ବେତାର କେନ୍ଦ୍ରରୁ ପ୍ରସାରିତ ହୋଇଥାଏ । ୧୯୫୭ ମସିହାରୁ ମଧ୍ୟ ସେ ବହୁ ଓଡ଼ିଆ ଚଳଚ୍ଚିତ୍ରରେ ଧାରାବାହିକ ଭାବେ ଗୀତିକାର ରୂପେ ସଙ୍ଗୀତ ରଚନା କରି ଆସୁଛନ୍ତି । ପୁନଶ୍ଚ ସଙ୍ଗୀତ ନିର୍ଦ୍ଦେଶକ ଭାବେ ୧୯୬୮ ମସିହାରେ ସେ ଦୁଇଟି ଓଡ଼ିଆ ଚଳଚ୍ଚିତ୍ରର ସଙ୍ଗୀତ ନିର୍ଦ୍ଦେଶନା ଦେଇଛନ୍ତି । ୧୯୬୫ ମସିହାରେ ସେ ସଙ୍ଗୀତଜ୍ଞା ଆରତୀଙ୍କୁ ବିବାହ କରିଥିଲେ ।

ସଙ୍ଗୀତ ଓ ସାହିତ୍ୟ ହିଁ ଗୁରୁକୃଷ୍ଣଙ୍କର ବଂଶ ପରମ୍ପରାଗତ । ତାଙ୍କର ଜେଜେ, ଅଜା, ବାପା, ମାମୁଁ, ଶ୍ୱଶୁର, ଶାଶୁ ଓ ସ୍ତ୍ରୀ ସମସ୍ତେ ସଙ୍ଗୀତଜ୍ଞ ହୋଇଥିବାରୁ ସେ ସଙ୍ଗୀତ ବିଦ୍ୟା ତଥା ସଙ୍ଗୀତ ରଚନା କରିବାରେ ଉପଯୁକ୍ତ ବାତାବରଣ ଲାଭ କରି ପାରିଥିଲେ । 'ଏ ମନ ସ୍ୱେଚ୍ଛାପଥେ' ଓ 'ସମୁଦ୍ରୁଣୀ ମୋର ଜହ୍ନର ଜାଣିବ' ତାଙ୍କର ଦୁଇଟି ସଙ୍ଗୀତ ପୁସ୍ତକ ଏ ଯାବତ୍ ପ୍ରକାଶିତ ହୋଇଛି । ଓଡ଼ିଶା ରାଜ୍ୟ ବାଣିଜ୍ୟ ପ୍ରତିଷ୍ଠାନରେ ସେ ମୁଖ୍ୟ ସହାୟକ ଭାବେ କାର୍ଯ୍ୟ କରୁଛନ୍ତି ।

## * ଶ୍ରୀ ଶ୍ରୀବତ୍ସ ନାୟକ

(ବିଂଶ ଶତାବ୍ଦୀ)
୧୯୨୪---

ଓଡ଼ିଆ ସାହିତ୍ୟରେ ଶ୍ରୀ ନାୟକ ଜଣେ ସାର୍ଥକ କବି ଓ କଥାଶିଳ୍ପୀ ଭାବରେ ସୁପରିଚିତ । ଢେଙ୍କାନାଳ ଜିଲ୍ଲାର ବିଦ୍ୟାଧର ପୁର ଗ୍ରାମରେ ୧୯୨୪ ଖ୍ରୀଷ୍ଟାବ୍ଦରେ ତାଙ୍କର ଜନ୍ମ । ତାଙ୍କ ପିତାଙ୍କ ନାମ ସତ୍ୟବାଦୀ ନାୟକ ଓ ମାତାଙ୍କ ନାମ ଜେମାମଣି ଦେବୀ । ଶ୍ରୀବତ୍ସ ପିତାମାତାଙ୍କର ତୃତୀୟ ସନ୍ତାନ ।

ସେ ଗ୍ରାମ୍ୟ ସ୍କୁଲରୁ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇ ତଥା ଢେଙ୍କାନାଳ ହାଇସ୍କୁଲରୁ ମାଟ୍ରିକ୍ୟୁଲେଶନ ପାଶ୍ କରି କଟକର ରେଭେନ୍ସା କଲେଜରେ ୧୯୪୩ ଠାରୁ ୧୯୪୭ ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲେ । ପଢ଼ୁଥିବା ବେଳେ ସେ ଗ୍ରନ୍ଥ ଆନ୍ଦୋଳନରେ ସକ୍ରିୟ ଭାଗ ନେଇ ଡିଗ୍ରୀ ପରୀକ୍ଷାରେ କୃତକାର୍ଯ୍ୟ ହୋଇ ପାରି ନଥିଲେ ।

ଶ୍ରୀ ନାୟକ ଅତ୍ୟନ୍ତ ସ୍ୱାଧୀନଚେତା । ନିଖିଳ ଉତ୍କଳ ଯୁବକ ସଂଘର କାର୍ଯ୍ୟକାରୀ କମିଟି ସଦସ୍ୟ, ଓଡ଼ିଶା ଗଡ଼ଜାତ ଯୁବକ ସମ୍ମିଳନୀର ପ୍ରଥମ ସାଧାରଣ ସମ୍ପାଦକ ଥିଲେ । ବିଶେଷ କରି ଗଡ଼ଜାତ ପ୍ରଜା ଆନ୍ଦୋଳନ ତଥା ଦେଶର ସ୍ୱାଧୀନତା ଆନ୍ଦୋଳନରେ ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରିଥିଲେ ।

ସେ ଅଖିଳ ଭାରତ ସର୍ବ ସେବା ସଂଘ, ଅଖିଳ ଭାରତ ଖଦୀ ଓ ଗ୍ରାମୋଦ୍ୟୋଗ କମିଶନ, ଗାନ୍ଧୀ ସ୍ମାରକ ନିଧି, ଗାନ୍ଧୀ ଶାନ୍ତି ପ୍ରତିଷ୍ଠାନ, ଉତ୍କଳ ସର୍ବୋଦୟ ମଣ୍ଡଳ ପ୍ରଭୃତି ବିଭିନ୍ନ ରଚନାତ୍ମକ ସଂସ୍ଥାରେ ୧୯୫୭ ଠାରୁ ୧୯୭୪ ପର୍ଯ୍ୟନ୍ତ ଦୀର୍ଘ ଅଠର ବର୍ଷ କାଳ ବିଭିନ୍ନ ଦାୟିତ୍ୱରେ ରହି ସୁନାମର ସହିତ ଗଠନମୂଳକ କାର୍ଯ୍ୟ କରିଥିଲେ ।

୧୯୭୪ ମସିହାଠାରୁ ୧୯୭୭ ପର୍ଯ୍ୟନ୍ତ ସେ ଢେଙ୍କାନାଳ ଜିଲ୍ଲାରୁ ଓଡ଼ିଶା ବିଧାନ ସଭାର ସଦସ୍ୟ ଥିଲେ ।

ବାଲ୍ୟକାଳରୁ ତାଙ୍କ ଠାରେ ପ୍ରତିଭାର ସ୍ଫୁରଣ ଦେଖା ଦେଇଥିଲା ଓ ସେ ବହୁ କବିତା ଓ ବହୁ ଗଳ୍ପ ଲେଖିବାରେ ମନୋନିବେଶ କରିଥିଲେ । ସେତେବେଳେ ତାଙ୍କର ଲେଖାମାନ ଓଡ଼ିଶାର ମୁଖ୍ୟ ପତ୍ରପତ୍ରିକା ମାନଙ୍କରେ ସ୍ଥାନ ପାଉଥିଲା ।

ତାଙ୍କର କବିତା ସଂକଳନ "ଜଳମର୍ମର" ଓ ଗଳ୍ପ ସଂକଳନ "ମୃଗନାଭି" ଓଡ଼ିଆ ସାହିତ୍ୟରେ ଯଶ ଓ ସୁନାମ ଅର୍ଜନ କରିଅଛି । ବର୍ତ୍ତମାନ ମଧ୍ୟ ତାଙ୍କର ଲେଖନୀ ସକ୍ରିୟ ଓ ସୃଜନଶୀଳ । ବହୁ ପାଣ୍ଡୁଲିପି ବର୍ତ୍ତମାନ ତାଙ୍କ ନିକଟରେ ଗଚ୍ଛିତ ଅଛି । ଅଧୁନା ଢେଙ୍କାନାଳରୁ ପ୍ରକାଶିତ ପାକ୍ଷିକ "ଲୋକଶକ୍ତି" ପତ୍ରିକାର ସେ ସମ୍ପାଦକ ।

*** ଶ୍ରୀ ପ୍ରଫୁଲ୍ଲ କର**

(ବିଂଶ ଶତାବ୍ଦୀ)
୧୯୩୯—

ପୁରୀ ଟାଉନର ଏକ ସଙ୍ଗୀତଜ୍ଞ ପରିବାରରେ ୧୯୩୯ ମସିହାରେ ପ୍ରଫୁଲ୍ଲ କରଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ବୈଦ୍ୟନାଥ କର ଓ ମାତାଙ୍କ ନାମ ସୁଶୀଳା କର । ତାଙ୍କ ପିତା ମଧ୍ୟ ଜଣେ ବିଶିଷ୍ଟ ସଙ୍ଗୀତଜ୍ଞ ଓ ତାଙ୍କ ମାମୁଁ ହେମମୋହନ କର ମଧ୍ୟ ଭାରତ ବିଦିତ ବିଶିଷ୍ଟ ତାବଲ୍ଲା ବାଦକ । ଏହି ପାରିବାରିକ ସଙ୍ଗୀତ ଚର୍ଚ୍ଚାର ବାୟୁମଣ୍ଡଳରେ ପ୍ରଫୁଲ୍ଲ କର ଶୈଶବାବସ୍ଥାରୁହିଁ ସଙ୍ଗୀତ ଶିକ୍ଷା ପ୍ରତି ବିଶେଷ ଭାବେ ଆକୃଷ୍ଟ ହୁଅନ୍ତି ଓ ଗୁରୁ ମାର୍କଣ୍ଡେୟ ମହାପାତ୍ରଙ୍କ ନିକଟରେ ସଙ୍ଗୀତ ଶିକ୍ଷା ଆରମ୍ଭ କରନ୍ତି ।

ସ୍କୁଲ ଓ କଲେଜ ଜୀବନରେ ସେ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରି ବିଶେଷ ସୁନାମ ଅର୍ଜନ କରନ୍ତି । ପରେ ପରେ ସାରା ଭାରତ ବର୍ଷର ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମରେ ଓଡ଼ିଶା ରାଜ୍ୟରୁ ପ୍ରତିନିଧିତ୍ୱ କରନ୍ତି । ୧୯୭୨ ମସିହାରେ ସେ ସୋଭିଏତ୍ ରୁଷିଆର ସାଂସ୍କୃତିକ କାର୍ଯ୍ୟକ୍ରମରେ ଭାରତ ପକ୍ଷରୁ ସାଂସ୍କୃତିକ ଦଳରେ ପ୍ରତିନିଧିତ୍ୱ କରି ବିଶେଷ ସୁନାମ ଅର୍ଜନ କରିଥିଲେ ।

ତାଙ୍କର ସଙ୍ଗୀତ ଚର୍ଚ୍ଚାର ନିଷ୍ଠା ବ୍ୟତୀତ ସେ ଉତ୍କଳ ବିଶ୍ୱବିଦ୍ୟାଳୟର ବିଏ. ଓ ଏଲ. ଏଲ. ବି ଉପାଧିଧାରୀ । କିନ୍ତୁ ଏହି ବିଶ୍ୱବିଦ୍ୟାଳୟ ଶିକ୍ଷାରେ ସେ ନିଜକୁ ସୀମିତ ନ ରଖି, ଉଚ୍ଚାଭିଳାଷୀ ଭାବରେ ସଙ୍ଗୀତଜ୍ଞ ଜୀବନ ଯାପନରେ ନିଜକୁ ପୁରାପୁରି ଉତ୍ସର୍ଗ କରିଦେଲେ ଓ ପରବର୍ତ୍ତୀ ଜୀବନରେ ଗୁରୁ କୁଣ୍ଡଳା ଆଦିନାରାୟଣଙ୍କ ତତ୍ତ୍ୱାବଧାନରେ ସଙ୍ଗୀତ ଶିକ୍ଷା କରି ବମ୍ବେ ସଙ୍ଗୀତ ମହାବିଦ୍ୟାଳୟରୁ 'ସଙ୍ଗୀତ ବିଶାରଦ' ସ୍ନାତକ ଉପାଧି ଲାଭ କଲେ ।

ତା'ପରେ ସଙ୍ଗୀତ ଚର୍ଚ୍ଚାରେ ନିଜକୁ ମଜେଇ ଓ ହଜେଇ ଦେଲେ—ଓଡ଼ିଶାର ଜଣେ ଉଚ୍ଚକୋଟୀର ସଙ୍ଗୀତଜ୍ଞ ଭାବେ ପ୍ରତିଷ୍ଠିତ ହୋଇ ଉଠିଲେ । ଏହାଛଡ଼ା ମଧ୍ୟ ଶ୍ରୀ ପ୍ରଫୁଲ୍ଲ କର ଜଣେ ପ୍ରଚ୍ଛନ୍ଦପଟ ଗାୟକ, ଗୀତିକାର ଓ ପ୍ରାୟ ୧୬ଟି ଓଡ଼ିଆ ଚଳଚ୍ଚିତ୍ରର ସଙ୍ଗୀତ ନିର୍ଦ୍ଦେଶକ ଭାବେ ଏ ମଧ୍ୟରେ ନିଜକୁ ମଧ୍ୟ ବିଶେଷ ଭାବେ ପ୍ରତିଷ୍ଠିତ କରି ପାରିଛନ୍ତି । ଓଡ଼ିଶା ଇତିହାସରେ ପ୍ରଥମଥର ପାଇଁ ୧୯୭୫ ମସିହାରେ ଓଡ଼ିଶା ସରକାରଙ୍କ ତରଫରୁ ଓଡ଼ିଆ ଚଳଚ୍ଚିତ୍ରର ସର୍ବୋତ୍କୃଷ୍ଟ ସଙ୍ଗୀତ ନିର୍ଦ୍ଦେଶକ ଭାବେ ପୁରସ୍କୃତ ହୋଇଥିଲେ ।

ଓଡ଼ିଆ ସଙ୍ଗୀତ ଛଡ଼ା ହିନ୍ଦୀ, ଉର୍ଦ୍ଦୁ, ବଙ୍ଗଳା ସଙ୍ଗୀତ ଗୁଡ଼ିକ ମଧ୍ୟ ଚମତ୍କାର ଭାବେ ପରିବେଷଣ କରିବାରେ ତାଙ୍କ କୃତିତ୍ୱ ସର୍ବବାଦୀ ସ୍ୱୀକୃତ । ଚିତ୍ରକଳା ଅଙ୍କନ କରିବାରେ ଶ୍ରୀ କରଙ୍କର ମଧ୍ୟ ବିଶେଷ ପାରଦର୍ଶିତା ରହିଛି । ମଣିଷ ହିସାବରେ ସେ ଯେତିକ ସ୍ନେହୀ, ସେତିକ ବନ୍ଧୁବତ୍ସଳ ।

**✱ ଶ୍ରୀମତୀ ପ୍ରତିଭା ମିଶ୍ର**

(ବିଂଶ ଶତାବ୍ଦୀ)
୧୯୪୭—

ଶ୍ରୀମତୀ ପ୍ରତିଭା ମିଶ୍ର ୧୯୪୭ ମସିହାରେ ପୁରୀ ଜିଲ୍ଲା ସାକ୍ଷୀଗୋପାଳସ୍ଥ ଶ୍ରୀରାମଚନ୍ଦ୍ରପୁରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ବାଞ୍ଛାନିଧି ମିଶ୍ର ଓ ମାତାଙ୍କ ନାମ ଶ୍ରୀମତୀ ହାରାମଣି ଦେବୀ ।

ଗୃହିଣୀ ଅବସ୍ଥାରୁ ହିଁ ତାଙ୍କର ସାହିତ୍ୟ ଓ ସଙ୍ଗୀତ ପ୍ରତି ବିଶେଷ ଝୁଙ୍କ ଥିଲା । ସେ ଯେତେବେଳେ ସ୍କୁଲ ପାଠ ଶେଷ କରି କଲେଜକୁ ପଢ଼ିବାକୁ ଆସିଲେ, ସେହି ସମୟରେ ସେ ବିଶେଷ କରି ଭକ୍ତି ସଂଗୀତ/ଭଜନ/ଜଣାଣ ଓ ସ୍ତୁତି ପ୍ରଭୃତି ଲେଖିବାରେ ମନୋନିବେଶ କଲେ । ଭକ୍ତି ସଙ୍ଗୀତ ଲେଖିବାରେ ସେ ଯେପରି ସୁଲେଖିକା, ସେହିପରି ଭକ୍ତିସଙ୍ଗୀତ ଗାଇବାରେ ସୁଗାୟିକା ମଧ୍ୟ । ସେ ଓଡ଼ିଆ ଭାଷା ସାହିତ୍ୟରେ ଏମ୍. ଏ. ପାଶ୍ କରିଛନ୍ତି । ତାଙ୍କର ପ୍ରକାଶିତ କବିତା ପୁସ୍ତକ ହେଲା—ଆରାଧନା । ତାଙ୍କର ସ୍ୱାମୀ ଶ୍ରୀ ସୁଧାଂଶୁ ମହାପାତ୍ର, ଶ୍ରୀମତୀ ମିଶ୍ରଙ୍କ ସାହିତ୍ୟ ସଙ୍ଗୀତ ସାଧନାର ବିଶେଷ ଉତ୍ସାହ ଦାତା ।

## * ଅଧ୍ୟାପକ ରଘୁନାଥ ପଣ୍ଡା

(ବିଂଶ ଶତାବ୍ଦୀ)

୧୯୫୧—

କଟକ ଜିଲ୍ଲାର ଗଡ଼ଗଡ଼ା ନରସିଂହପୁର ଗ୍ରାମରେ ୧୯୫୧ ମସିହାରେ ରଘୁନାଥ ପଣ୍ଡା ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ବେଣୁଧର ପଣ୍ଡା ଓ ମାତାଙ୍କ ନାମ ତନୟା ଦେବୀ ।

ଶ୍ରୀ ପଣ୍ଡା ୧୯୭୩ ମସିହାରେ ସଂସ୍କୃତ ଏମ୍. ଏ. ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମସ୍ଥାନ ଅଧିକାର କରି ରେବେନ୍ସା ଗଦାଧର ସ୍ୱର୍ଣ୍ଣପଦକ ଓ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ୱର୍ଣ୍ଣପଦକ ପ୍ରାପ୍ତ ହୋଇଥିଲେ । ୧୯୭୪ ମସିହାରେ ସଂସ୍କୃତ ଅଧ୍ୟାପକ ଭାବେ ପୁରୀ ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟରେ ନିଯୁକ୍ତ ହେଲେ । ସେ ସଂପ୍ରତି ରେଭେନ୍ସା ସାନ୍ଧ୍ୟ ମହାବିଦ୍ୟାଳୟର ସଂସ୍କୃତଭାଷା ଓ ସାହିତ୍ୟ ବିଭାଗର ମୁଖ୍ୟ ଅଧ୍ୟାପକ ଦାୟିତ୍ୱରେ ଅଛନ୍ତି । ସେ ମୁଖ୍ୟତଃ ଜଣେ ପ୍ରାବନ୍ଧିକ, ଅନୁବାଦକ ଓ କବି । ତାଙ୍କ ଅନୁବାଦିତ ହାସ୍ୟାର୍ଣ୍ଣବ ପ୍ରହସନର ଉତ୍କଳାନୁବାଦ ବର୍ତ୍ତମାନ ପ୍ରକାଶୋନ୍ମୁଖୀ ।

## * ଶ୍ରୀ ବଂଶୀଧର ଉପାଧ୍ୟାୟ

(ବିଂଶ ଶତାବ୍ଦୀ)
୧୯୧୫—

କଟକ ଜିଲ୍ଲା ଆଲି ଥାନା ଅନ୍ତର୍ଗତ ଜାଗୁଲାଇପଡ଼ା ଗ୍ରାମରେ ୧୯୧୫ ମସିହାରେ ଶ୍ରୀ ବଂଶୀଧର ଉପାଧ୍ୟାୟଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ଭିକାରୀ ଉପାଧ୍ୟାୟ ଓ ମାତାଙ୍କ ନାମ କ୍ଷେତ୍ରମଣି ଦେବୀ । ସେ ଅସଂଖ୍ୟ ଜଣାଣ, ଭଜନ ଓ ପୌରାଣିକ ଗୀତିନାଟ୍ୟର ଲେଖକ ।

## * ଧ୍ରୁବ ଚରଣ ପଣ୍ଡା

(ବିଂଶ ଶତାବ୍ଦୀ)
୧୯୩୧—

ଢେଙ୍କାନାଳ ଜିଲ୍ଲାସ୍ଥ ଜଗିଲ ଗ୍ରାମରେ ଧ୍ରୁବ ଚରଣ ପଣ୍ଡା ୧୯୩୧ ମସିହା ଫେବୃଆରୀ ୨୧ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ବିକ୍ରମ ପଣ୍ଡା ଓ ମାତାଙ୍କ ନାମ ଉତ୍କଳ ପଣ୍ଡା । ସେ ମୁଖ୍ୟତଃ ଜଣେ ଶିଶୁ ସାହିତ୍ୟ ଲେଖକ । ଏହାଛଡ଼ା ସେ କେତେଗୁଡ଼ିଏ ଭଜନ, ଜଣାଣ, ଉପନ୍ୟାସ ଓ କାବ୍ୟ ରଚନା କରିଛନ୍ତି, ଯାହାକି ଏବେବି ଅପ୍ରକାଶିତ । ସମ୍ପ୍ରତି ସେ କଟକ ମାଛୁଆ ବଜାର ଉ: ପ୍ରା: ବିଦ୍ୟାଳୟର ପ୍ରଧାନ ଶିକ୍ଷକ ।

## * ଶ୍ରୀ ହରେକୃଷ୍ଣ ଜେନା

(ବିଂଶ ଶତାବ୍ଦୀ)
୧୮୯୮—

୧୮୯୮ ମସିହାରେ କଟକ ସହର ଭଗତପୁର ବସ୍ତିରେ ଶ୍ରୀ ହରେକୃଷ୍ଣ ଜେନାଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ଗୁରୁବାସୀ ବାଘସିଂହ ଓ ମାତାଙ୍କ ନାମ ଚନ୍ଦ୍ରମଣି ଦେବୀ । ହରେକୃଷ୍ଣଙ୍କ ଆଦିବାସ ସ୍ଥାନ ଖୋର୍ଦ୍ଧା । ତାଙ୍କ ପିତା ଗୁରୁବାସୀ ବାଘସିଂହ ତତ୍କାଳୀନ ଖୋର୍ଦ୍ଧା ମାଟିର ଜଣେ ଆଗୁଆ ଲଢ଼ୁଆ (Front Fighter) ପାଇକ ସେନାପତି ଥିଲେ । ଖୋର୍ଦ୍ଧା ପାଇକ ପନ୍ତିଆରେ ଯେଉଁ ଭୟାବହ ଯୁଦ୍ଧ ହୋଇଥିଲା, ସେ ତାର ସେନାପତିତ୍ୱ ଗ୍ରହଣ କରି ଅସୀମ ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କରିଥିଲେ । କାଳକ୍ରମେ

ପିତା ଗୁରୁବାରି ଭୀଷଣ ଅସୁସ୍ଥ ହେବାରୁ ସେ ତାଙ୍କର ଶ୍ୱଶୁରାଳୟ ଏହି ଭଗତପୁରକୁ ସ୍ଥାନାନ୍ତରିତ ହୋଇଥିଲେ ଓ ପରବର୍ତ୍ତୀ ଜୀବନରେ ଏଇଠାରେ ବସ ବାସ କରି ତାଙ୍କ ଶେଷ ନିଶ୍ୱାସ ତ୍ୟାଗ କରିଥିଲେ । ପିତାଙ୍କ ମୃତ୍ୟୁ ପରେ ହରେକୃଷ୍ଣଙ୍କ ଲାଳନ ପାଳନ ଭାର ସମ୍ପୂର୍ଣ୍ଣ ଭାବେ ତାଙ୍କ ମାତୁଳମାନଙ୍କ ଉପରେ ନ୍ୟସ୍ତ ଥିଲା ଓ ମାତୁଳମାନଙ୍କର ସଂଜ୍ଞା ଅନୁସାରେ ହରେକୃଷ୍ଣଙ୍କ ସଂଜ୍ଞା ବାଗସିଂହ ପରିବର୍ତ୍ତେ ଜେନା ହୋଇଗଲା ଓ ସେହି ଦିନ ଠାରୁ ସେ ହରେକୃଷ୍ଣ ଜେନା ନାମରେ ପରିଚିତ ହେଲେ । ମାତୁଳମାନଙ୍କ ଅବସ୍ଥା ସ୍ୱଚ୍ଛଳ ନ ଥିବାରୁ ଓ ଦୁଇ ମାତୁଳଙ୍କର ପଛକୁ ପଛ ଦେହାନ୍ତ ହୋଇ ଯିବାରୁ ହରେକୃଷ୍ଣ ଉଚ୍ଚ ଶିକ୍ଷାରୁ ବଞ୍ଚିତ ହୋଇଥିଲେ । ମାତ୍ର ଗୁରୁଶାଳୀ ପାଠ ଶେଷ କରିବା ପରେ ତାଙ୍କ ପାଠପଢ଼ାରେ ଡୋରି ବନ୍ଧା ହୋଇଥିଲା । ତଥାପି ହରେକୃଷ୍ଣ ନିଜ ଗୋଡ଼ରେ ଛିଡ଼ା ହୋଇ ନିଜର ଭରଣ ପୋଷଣ ପାଇଁ ଦିନ ମଜୁରିଆ ଭାବେ ଜୀବନ ନିର୍ବାହ କଲେ··· ତା' ପରେ ରାଜମିସ୍ତ୍ରୀ ଓ ପେଟି କଣ୍ଟ୍ରାକ୍ଟର ଭାବରେ ବୃତ୍ତି ଆଦରି ନେଲେ ।

ହରେକୃଷ୍ଣ କୈଶୋରାବସ୍ଥାରୁ ଛାନ୍ଦ, ସଙ୍ଗୀତ ଓ ରାମାୟଣ ପ୍ରିୟ । ପ୍ରାଚୀନ କବି ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, ଭକ୍ତଚରଣଙ୍କ ବହୁ ସଙ୍ଗୀତ ତାଙ୍କର ଏବେବି କଣ୍ଠସ୍ଥ । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ସେ ନିଜକୁ ଏହି ସଙ୍ଗୀତ ଓ ସାହିତ୍ୟର ଗାନ, ପଠନ ଓ ଆଲୋଚନାରେ ଉତ୍ସୃଷ୍ଟ କରିଥିଲେ । ସେ ଯାତ୍ରାଦଳ ମାନ ନିଜ ତତ୍ତ୍ୱାବଧାନରେ ଆଣି ତାଙ୍କ ବସ୍ତିରେ ବହୁ ଦିନ ଧରି ଯାତ୍ରା ପରିବେଷଣ କରାଉଥିଲେ ଓ ନିଜେ ରାମନାମୀ ଯାତ୍ରାରେ ବିଭୀଷଣ ଭୂମିକାରେ ବେଶ ବାନ୍ଧି ଅଭିନୟ କରୁଥିଲେ । ସେ ଜଣେ ଠାକୁରାଣୀ ଭକ୍ତ । ବିଶେଷ କରି ଝଙ୍କଡର ଅଧିଷ୍ଠାତ୍ରୀ ଦେବୀ ସାରଳା ଠାକୁରାଣୀ ତାଙ୍କର ସର୍ବାରାଧ୍ୟା ଠାକୁରାଣୀ । ତାଙ୍କ ରଚିତ "ଶ୍ମଶାନ ଶ୍ୟାମା ଚଉତିଶା" ତାଙ୍କ କବି ଜୀବନର ପରିଚୟ ପ୍ରଦାନ କରିଥାଏ । ସେ ବହୁ ଜଣାଣ, ଭଜନର ଲେଖକ । ସେ ସମସ୍ତ ଲୋକ ଲୋଚନକୁ ଆସି ପାରିଲେ ତାଙ୍କ କବି ପ୍ରତିଭାର ଆମେ ବିଶେଷ ପରିଚୟ ପାଇପାରନ୍ତୁ । ତାଙ୍କର ଏ ଜୀବନର ସଂଧ୍ୟାରେ ମଧ୍ୟ ସେ ରାତି ଗୁରିଟାରୁ ଉଠି ଦେବୀ ସ୍ତୁତି, ଜଣାଣମାନ ନିଜେ ବାରମ୍ବାର ଉଚ୍ଚାରଣ ଓ ଗାନ କରିଥାନ୍ତି ।

## * ଶ୍ରୀମତୀ ଶାନ୍ତମଞ୍ଜରୀ ପଟ୍ଟନାୟକ

(ବିଂଶ ଶତାବ୍ଦୀ)

୧୯୨୮—

ଶ୍ରୀମତୀ ଶାନ୍ତମଞ୍ଜରୀ ପଟ୍ଟନାୟକ ୧୯୨୮ ମସିହା ଜାନୁଆରୀ ୨୪ ତାରିଖରେ ପୁରୀ ଜିଲ୍ଲାର ଚଣାହଣ୍ଡା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ

କୃଷ୍ଣମୋହନ ପଟ୍ଟନାୟକ ଓ ମାତାଙ୍କ ନାମ ସାଧବୀ ଦେବୀ । କୃଷ୍ଣମୋହନ ପଟ୍ଟନାୟକ ଚଣାହଟ୍ଟାର ଜମିଦାର ଓ ବିଖ୍ୟାତ କବି ।

୧୧ ବର୍ଷ ବୟସରୁ ଶାନ୍ତିମଞ୍ଜରୀଙ୍କର କବିତା, ଗଳ୍ପ, ପ୍ରବନ୍ଧ ଓ ଛୋଟ ଛୋଟ ନାଟକ ଲେଖା ଆରମ୍ଭ ଏବଂ ସେହି ସମୟରୁ କେବଳ ସାହିତ୍ୟ ନୁହେଁ, ସଙ୍ଗୀତ ପ୍ରତି ମଧ୍ୟ ବିଶେଷ ଆକୃଷ୍ଟ ହୁଅନ୍ତି ଏବଂ ଏ ଅବଧି ସେ ତାଙ୍କର ସାହିତ୍ୟ ସେବା ଓ ସାଧନାରୁ ବିରତ ହୋଇନାହାନ୍ତି ।

ସମ୍ବଲପୁର ପଟ୍ଟନାୟକ ପଡ଼ାର ସ୍ୱାଧୀନତା ଆନ୍ଦୋଳନ ପ୍ରେମୀ ବିଖ୍ୟାତ ଗୌନ୍ତିଆ ଶ୍ରୀ ବ୍ରଜମୋହନ ପଟ୍ଟନାୟକଙ୍କ ପୌତ୍ର କଳିଙ୍ଗ ଏଆର ଲାଇନ୍‌ସ କ୍ୟାପଟେନ୍ ସୁଶୀଲ୍ ଚନ୍ଦ୍ର ପଟ୍ଟନାୟକଙ୍କୁ ୧୬ ବର୍ଷ ବୟସରେ ଶାନ୍ତିମଞ୍ଜରୀ ବିବାହ କରିଥିଲେ । କିନ୍ତୁ ବିଧିର ବିଧାନ ବିଚିତ୍ର । ୧୯୫୨ ମସିହାରେ ସ୍ୱାମୀ କ୍ୟାପଟେନ ପଟ୍ଟନାୟକ ଜାହାଜ ଦୁର୍ଘଟଣାରେ ପ୍ରାଣତ୍ୟାଗ କଲେ । ତଥାପି ଏ ଦାରୁଣ ଦୁଃଖରେ ମୁହ୍ୟମାନ ହୋଇ ସୁଦ୍ଧା ତିନୋଟି କନ୍ୟା ଓ ଗୋଟିଏ ପୁତ୍ରର ଭବିଷ୍ୟତ ଜୀବନ ଗଢ଼ିବାରେ ଉଭୟ ପିତା ମାତାର କର୍ତ୍ତବ୍ୟ ଶାନ୍ତିମଞ୍ଜରୀ ତୁଲାଇ ଲାଗିଲେ; ଯାହା ଫଳରେ କି ସମସ୍ତ ସନ୍ତାନ ସନ୍ତତି ବର୍ତ୍ତମାନ ସମାଜରେ ପ୍ରତିଷ୍ଠିତ ହୋଇ ପାରିଛନ୍ତି ।

ବିଶେଷ କରି ଗ୍ରାମାଞ୍ଚଳରେ ନିରକ୍ଷରତା ଦୂରୀକରଣ ଓ ନିରବଚ୍ଛିନ୍ନ ସମାଜ ସେବା ପାଇଁ ୧୯୬୮ ମସିହାଠାରୁ ସେ ନିଜକୁ ସମ୍ପୂର୍ଣ୍ଣ ରୂପେ ଉତ୍ସର୍ଗ କରିଛନ୍ତି । ଉତ୍କଳ ମହିଳା ସମିତିର ସେ ମୂଳ ସଂଗଠିକା ଓ ସଂପାଦିକା । ତାଙ୍କର ବଳିଷ୍ଠ ନେତୃତ୍ୱରେ ଉତ୍କଳ ମହିଳା ସମିତିର ଉତ୍ତରୋତ୍ତର ଉନ୍ନତି ହୋଇପାରିଛି ।

ତାଙ୍କର ଗଳ୍ପ, କବିତା ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ଓ ଆକାଶବାଣୀ ମାଧ୍ୟମରେ ମଧ୍ୟ ପ୍ରସାରିତ । ତାଙ୍କର ପ୍ରକାଶିତ ପୁସ୍ତକମାନଙ୍କ ମଧ୍ୟରେ ଅଲୋଡ଼ା ପାରିଜାତ (ଉପନ୍ୟାସ), ଅନୁକଂପା (କବିତା ସଂକଳନ) । ପ୍ରୌଢ଼ ଶିକ୍ଷାର ପ୍ରାଥମିକ ପୁସ୍ତକ 'ଅକ୍ଷର ପରିଚୟ' ଓ ଅପ୍ରକାଶିତ ପୁସ୍ତକମାନଙ୍କ ମଧ୍ୟରେ 'ସମାଜ ଓ ନାରୀ', ଧୂପଶିଖା, ନାରୀ ଶିକ୍ଷାର ସମୋନ୍ନତି ପ୍ରଭୃତି ପ୍ରଧାନ ।

*** ଶ୍ରୀ ଅଗଣି ଚରଣ ମହାପାତ୍ର**

**(ବିଂଶ ଶତାବ୍ଦୀ)**

**୧୯୧୪—**

ଶ୍ରୀ ଅଗଣି ଚରଣ ମହାପାତ୍ର ୧୯୧୪ ମସିହାରେ କଟକ ଜିଲ୍ଲାସ୍ଥ ବଡ଼ଖୀରରେ ଜ୍ୟେଷ୍ଠ ପୂର୍ଣ୍ଣିମା ଦିନ ଏକ ଙ୍କଣ୍ଡାଏତ୍ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ

ନାମ ଶ୍ରୀ ବାମନ ମହାପାତ୍ର ଓ ମାତାଙ୍କ ନାମ ଶ୍ରୀମତୀ ସୁନା ଦେଈ । ତାଙ୍କର ଦୁଇ ପୁତ୍ର ଓ ଦୁଇ କନ୍ୟା । ପୁତ୍ର ଓ କନ୍ୟାମାନେ ସମସ୍ତେ ବିବାହିତ ଓ ନିଜ ନିଜର ଘରସଂସାର ଆଦର ନେଲେଣି ।

କବି ଅଗଣି ଚରଣ ମହାପାତ୍ର ୫ମ ଶ୍ରେଣୀରେ ପାଠ ପଢ଼ୁଥିଲା ବେଳେ ତାଙ୍କର କବି ପ୍ରତିଭା ବିକଶି ଉଠିଥିଲା । କଥିତ ଅଛି, ଦିନେ ଶିକ୍ଷକ ଆସି ପଞ୍ଚମ ଓ ଷଷ୍ଠ ଶ୍ରେଣୀ ପିଲାମାନଙ୍କୁ ବଟବୃକ୍ଷ ସମ୍ବନ୍ଧରେ ଗୋଟିଏ କବିତା ଲେଖିବାକୁ ଆଦେଶ ଦେଲେ । ସେତେବେଳକୁ ପଞ୍ଚମ ଶ୍ରେଣୀରେ ସାତ ଜଣ ଓ ଷଷ୍ଠ ଶ୍ରେଣୀରେ ତିନିଜଣ ଛାତ୍ର ଥିଲେ । କେହି କବିତା ଲେଖି ପାରିଲେ ନାହିଁ । ମାତ୍ର ଅଗଣିଚରଣ କବିତାଟିଏ ଲେଖି, ଭରି ଘର ଶିକ୍ଷକଙ୍କୁ ଦେଖାଇଲେ । ଶିକ୍ଷକ ଅଗଣିଚରଣଙ୍କ କବିତା ପଢ଼ି ବଡ଼ ଖୁସି ହେଲେ ଓ ବଡ଼ ହେଲେ ବଡ଼ କବି ହେବୁ ବୋଲି କହି ଆଶୀଷ ପ୍ରଦାନ କଲେ । ଷଷ୍ଠ ଶ୍ରେଣୀ ପାଶ୍ କଲା ପରେ ସେ କିଛି ଦିନ ସପ୍ତମ ଶ୍ରେଣୀରେ ପଢ଼ିଲା ପରେ ତାଙ୍କ ବାପାଙ୍କର ଦେହାନ୍ତ ହେବା ଯୋଗୁଁ ତାଙ୍କ ପାଠର ଡୋର ବନ୍ଦ ହେଲା । ପାଠରେ ଡୋର ବନ୍ଦହେଲା ସତ, କିନ୍ତୁ ଗୋଟିଏ ପରେ ଗୋଟିଏ ବିପତ୍ତି ମାଡ଼ି ଆସିଲା । ଘର ବାରମ୍ବାର ପୋଡ଼ିଗଲା ଓ ବାପା କରିଥିବା ଋଣ ଯୋଗୁଁ ଜମିବାଡ଼ିଗୁଡ଼ିକ ଅନ୍ୟ ହସ୍ତକୁ ହସ୍ତାନ୍ତରିତ ହେଲା । ବିପଦ ବେଳକୁବେଳ ଘନେଇ ଉଠିଲା, ପରିବାର ଚଳିବ କପରି ? ପରିବାରର ସମସ୍ତ ଭାର ଅଗଣିଚରଣଙ୍କ ଉପରେ ପଡ଼ିଲା । ସେ ପାଠଶାଳାରେ ଅବଧାନ ବୃତ୍ତିକରି କରି ନିଜର ଗୁଜୁରାଣ ମେଣ୍ଟାଇବାକୁ ଲାଗିଲେ ।

ଦିନେ ଗୋଟିଏ ଘଟଣା ଘଟିଲା । ପଟ୍ଟାମୁଣ୍ଡାଇ ନିକଟସ୍ଥ ନରେନ୍ଦ୍ରପୁର ଗ୍ରାମରେ ସେ ଶିକ୍ଷକତା କରୁଥାନ୍ତି । ସେଠାକାର ଗହିରା କୂଅରୁ ପାଣି କାଢ଼ୁ କାଢ଼ୁ ଅଗଣିଚରଣଙ୍କ ହାତରୁ ଡାଲଟି କୂଅରେ ପଡ଼ିଗଲା । ଗହିରା କୂଅରୁ ଡାଲ ବାହାରିବ କପରି ଅଗଣି ଚରଣଙ୍କ ଭାବିଲେଣି ପଡିଲା । ଏହି ସମୟରେ ସେହି ନରେନ୍ଦ୍ରପୁରର ଜଣେ ସଙ୍ଗୀତଜ୍ଞ, ଅଗଣି ମାଷ୍ଟ୍ରଙ୍କୁ କହିଲେ, ଯଦି ମୋତେ ନୋଟା ବିଷୟରେ ଗୋଟିଏ କବିତା ଲେଖିଦେବ, ତାହାହେଲେ ମୁଁ ତୁମ ଡାଲ କାଢ଼ାଇ ଦେବି । ସତକୁ ସତ ସେଇଆ ହେଲା । ସଙ୍ଗୀତଜ୍ଞ ଲୋକ ଲଗାଇ ବହୁ କଷ୍ଟରେ ଡାଲ କାଢ଼ାଇ ଦେଲେ ଏବଂ ଅଗଣିଚରଣ ତାଙ୍କ ପ୍ରତିଜ୍ଞା ଅନୁଯାୟୀ ଯେଉଁ କବିତା ଲେଖିଥିଲେ, ତାହା ହେଲା—

"ଧନ୍ୟରେ ନୋଟା
କରିଲୁ ଯେତେ ହଟହଟା ॥ ଘୋଷା ॥
ରବିବାର ଦିନରେ, କେଉଁ ଅଭିମାନରେ
ବାରି କୂଅକୁ ମାରିଲୁ ଡିଆଁ ଟା ॥ ୧ ॥

ନୋଟା ତୋ ଗୁଣ ଜାଣି, ଏ ଯେତେ ଭୁଆଶୁଣୀ
ଛଡ଼ାନ୍ତି ଦେହ ଘଷି ଘଟା ॥ ୨ ॥

ନୋଟା ତୋ ରୂପ କାନ୍ତି ସୁବର୍ଣ୍ଣ ପରି ଜ୍ୟୋତି
ଗୋପ ନାରୀଙ୍କୁ କରେ ଅଟା ॥ ୩ ॥

ନୋଟା ତୋ ବିଚ୍ଛେଦରେ ପଡ଼ିଛୁ ହାହାକାରେ
ତର୍ଣ୍ଣି ଶୁଖି ହେଉଛୁ ଅଠା ॥ ୪ ॥

ଏମନ୍ତ ଆର୍ତ୍ତି ଶୁଣି ସଦୟ ନୋଟା ମଣି
ଡାକଲା ମୋତେ ଉଠା ଉଠା ॥୫ ॥

କବି ଅଗଣି ମହାପାତ୍ରଙ୍କ ଏହି ଗୀତଟି ସେ ଦିନର ଗାୟକ ରାଧାଶ୍ୟାମ ସ୍ୱାଇଁ, ପ୍ରାୟ ଆଖପାଖ ଯେଉଁ ଗ୍ରାମମାନଙ୍କରେ ମେଳା ମହୋତ୍ସବ ହୁଏ ସେଠାରେ ଏହି ନୋଟା ସଙ୍ଗୀତଟି ଅତି ସୁଲଳିତ କଣ୍ଠରେ ଗାନ କରି ଦର୍ଶକମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥାନ୍ତି । ଆହୁ ମଧ୍ୟ ତତ୍କାଳୀନ ସେହି ଅଞ୍ଚଳର ତହସିଲ୍‌ଦାର ଶ୍ରୀ ହରେକୃଷ୍ଣ ସ୍ୱାଇଁ କବିଙ୍କର ଏହି ସଙ୍ଗୀତରେ ଅତ୍ୟନ୍ତ ମୁଗ୍ଧ ହୋଇ କବିଙ୍କୁ ଧର୍ମପୁତ୍ର ରୂପେ ଗ୍ରହଣ କରିଥିଲେ । ସେତେବେଳକୁ କବିଙ୍କ ବୟସ ମାତ୍ର ଅଠର ବର୍ଷ ।

କବିଙ୍କୁ ଯେତେବେଳେ ୨୧ ବର୍ଷ ସେ ସେତେବେଳେ ଜୟଦ୍ରଥ ବଧ, ଯୌବନାସ ପରାଜୟ, ଦୁଇଟି ନାଟକ, ନାରୀ ସ୍ୱାଧୀନତା, ଯୌବନର ଝୁଙ୍କ, ଅଘଟ-ଭଞ୍ଜନ, ସଙ୍ଗୀତ ସୌଦାମିନୀ ଓ ଗୃହ ଗୃହ ପଦଆ କେତେକ ଜଣାଣ, ସଙ୍କୀର୍ତ୍ତନ ଗୀତ ଆଦି ଲେଖିଥିଲେ । ତାଙ୍କର ସମସ୍ତ ଲେଖା ସେ ଅଞ୍ଚଳର ଜନଗଣରେ ବହୁଳଭାବେ ଆଦୃତ ହୋଇଥିଲା ।

ମାଷ୍ଟର ଗୃକରା ସାଙ୍ଗକୁ ତାଙ୍କର ଯେଉଁ ଅଢ଼େଇ ଏକର ଗୃଷ ଜମି ଅଛୁ ସେହି ଗୃଷ ଜମିରେ କବି ଏ ବୟସରେ ମଧ୍ୟ ବ୍ୟକ୍ତିଗତ ଭାବରେ ଖଟିଆନ୍ତି । ଗୁରୁତର ଅଭାବ ଅନାଟନରେ ପଡିଥିଲେ ହେଁ ତାଙ୍କର କବି ପ୍ରତିଭା ଏ ଯାବତ୍ ମଳିନ ହୋଇନାହିଁ । ତାଙ୍କ ରଚିତ ମହାତ୍ମାଗାନ୍ଧୀ କାବ୍ୟ ଏକ ଅମଳିନ ସୃଷ୍ଟି । ଏ ଯାବତ୍ ସେ ମହାତ୍ମା ଗାନ୍ଧୀଙ୍କ ସମ୍ପର୍କରେ ପ୍ରାୟ ହଜାର ପୃଷ୍ଠାର ପୁସ୍ତକ ଲେଖି ସାରିଲେଣି । ଆହୁ ଦୁଇଶହ/ତିନିଶହ ପୃଷ୍ଠା ଲେଖା ସରିଲେ ଏ କାବ୍ୟର ପରିସମାପ୍ତି ଘଟିବ ଓ ଓଡ଼ିଆ ସାହିତ୍ୟକୁ ଏକ ଅମଳିନ ଅବଦାନ ହେବ । ଜୀବନର ବୃଦ୍ଧ ବୟସରେ ମଧ୍ୟ କବି ଲେଖିବାରୁ ବିରତ ହୋଇନାହାନ୍ତି, ସେ ତାଙ୍କ ରଚନାରେ ଏବେବି ଲିପ୍ତ ।

* ଶ୍ରୀ ହୃଷୀକେଶ ପଟ୍ଟନାୟକ

(ବିଂଶ ଶତାବ୍ଦୀ)
୧୯୩୪—

କଟକ ଜିଲ୍ଲା ବୈଦେଶ୍ୱର ଥାନା ଅନ୍ତର୍ଗତ କଳାପଥର ଗ୍ରାମରେ ଶ୍ରୀ ହୃଷୀକେଶଙ୍କ ପଟ୍ଟନାୟକଙ୍କର ଜନ୍ମ ଡିସେମ୍ବର ୨୫, ୧୯୩୪ ମସିହାରେ । ତାଙ୍କ ପିତାଙ୍କ ନାମ ପଦ୍ମଚରଣ ପଟ୍ଟନାୟକ । ସେ ମାଟ୍ରିକ୍ୟୁଲେସନ ପରେ ଶିକ୍ଷକ ଜୀବନ ଆରମ୍ଭ କରିଥିଲେ । ବର୍ତ୍ତମାନ ଏକ ବିଦେଶୀ କମ୍ପାନୀର ପ୍ରତିନିଧି । ସେ ବହୁ ଜଣାଣ, ଭଜନର ଲେଖକ ।

* ଜେନା ଅମରେନ୍ଦ୍ର ପ୍ରତାପ ବାଘସିଂହ

(ବିଂଶ ଶତାବ୍ଦୀ)
୧୯୬୪—

ଜେନା ଅମରେନ୍ଦ୍ର ପ୍ରତାପ ବାଘସିଂହ ୧୯୬୪ ମସିହା ସେପ୍ଟେମ୍ବର ୨୨ ତାରିଖ ଦିନ ଅନୁଗୁଳ ଟାଉନ୍‌ରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ମୁରଲୀମୋହନ ଜେନା ଓ ମାତାଙ୍କ ନାମ ଚିନ୍ତାମଣି ଜେନା । ସେ ତାଙ୍କ ପିତାମାତାଙ୍କର ତୃତୀୟ ସନ୍ତାନ । ସେତେବେଳକୁ ତାଙ୍କ ପିତା ଢେଙ୍କାନାଳ ଜିଲ୍ଲାର ଶ୍ରମ ଅଫିସର ।

ଛାତ୍ରାବସ୍ଥାରୁ ହିଁ ଅମରେନ୍ଦ୍ରଙ୍କର ସାହିତ୍ୟ ସଙ୍ଗୀତ ପ୍ରତି ବିଶେଷ ଆଗ୍ରହ ଜନ୍ମିଥିଲା । ବିଶେଷ କରି ତାଙ୍କ ପିତା ମାତାଙ୍କ ସାହିତ୍ୟ ଜୀବନ ତାଙ୍କ ଉପରେ ବିଶେଷ ପ୍ରଭାବ ପକାଇଥିଲା । ସଂପ୍ରତି ସେ ଷ୍ଟୁଆର୍ଟ ବିଜ୍ଞାନ କଲେଜର ଛାତ୍ର । ସେ ବହୁ ଜଣାଣ, ଗଳ୍ପ, ଭଜନ ଓ କବିତାର ଲେଖକ ।

* ଶ୍ରୀ ବିଚିତ୍ରାନନ୍ଦ କର

(ବିଂଶ ଶତାବ୍ଦୀ)
୧୯୨୯—

କଟକ ଜିଲ୍ଲାର ଜଗତ୍‌ସିଂହପୁର ନିକଟସ୍ଥ ଖାରବନ୍ଧା ଗ୍ରାମରେ ୧୯୨୯ ମସିହା ଆଶ୍ୱିନ ମହାସପ୍ତମୀ ଦିନ ବିଚିତ୍ରାନନ୍ଦ କର ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ

ଶ୍ରୀ ବାଳକୃଷ୍ଣ କର ଓ ମାତାଙ୍କ ନାମ ସୀତା ଦେବୀ । ଓଡ଼ିଆରେ ଏମ୍‌. ଏ. ପାଶ୍ କଲାପରେ ତାଙ୍କ ପିତାଙ୍କ ପ୍ରତିଷ୍ଠିତ ଦୈନିକ 'ମାତୃଭୂମି' ଓ ମାସିକ ପ୍ରସିଦ୍ଧ ସାହିତ୍ୟ ପତ୍ରିକା 'ସହକାର'ର ସମ୍ପାଦନା ଦାୟିତ୍ୱ ଗ୍ରହଣ କରନ୍ତି ଓ ପିତାଙ୍କ ତୁଲ୍ୟ ଜଣେ ନିର୍ଭୀକ ସମ୍ପାଦକ ଭାବେ ଜୀବନଯାପନ କରନ୍ତି ।

ଓଡ଼ିଶା ର ସର୍ବବୃହତ୍ତ ଓ ସର୍ବପ୍ରାଚୀନ ଉତ୍କଳ ସାହିତ୍ୟ ସମାଜର ସେ ବହୁବର୍ଷ ଧରି ସମ୍ପାଦକ ଥିଲେ । ବମ୍ବେରେ ଅନୁଷ୍ଠିତ ହୋଇଥିବା ଲେଖକ ସମ୍ମିଳନୀରେ ସେ ଉତ୍କଳ ସାହିତ୍ୟ ସମାଜରୁ ପ୍ରତିନିଧିତ୍ୱ କରିଥିଲେ ଓ ଓଡ଼ିଆ ସାହିତ୍ୟ ଏକାଡେମୀକୁ ସଭ୍ୟ ମନୋନୀତ ହୋଇଥିଲେ । ସାହିତ୍ୟ ସମାଜର ସମ୍ପାଦକ ଥିବା ବେଳେ ତାଙ୍କରି ସମ୍ପାଦନାରେ ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ କେତୋଟି ସଂଖ୍ୟା 'ସାହିତ୍ୟପତ୍ର' ପ୍ରକାଶ ପାଇଥିଲା । ସାହିତ୍ୟ ସମାଜ ପକ୍ଷରୁ ପ୍ରକାଶ ପାଇଥିବା ବ୍ରଜସୁନ୍ଦର ସ୍ମରଣିକା, ଜବାହରଲାଲ ସ୍ମରଣିକାର ସମ୍ପାଦକ ଓ ସଂକଳକ ଦାୟିତ୍ୱ ମଧ୍ୟ ବହନ କରିଥିଲେ । ସାହିତ୍ୟ ସମାଜ ପକ୍ଷରୁ ସେ ଉତ୍କଳ ବିଶ୍ୱବିଦ୍ୟାଳୟକୁ ସିନେଟ ସଭ୍ୟଭାବେ ନିର୍ବାଚିତ ହୋଇଥିଲେ । ଜଣେ ସାମ୍ବାଦିକ ହିସାବରେ ସେ କିଛିଦିନ ଧରି ପ୍ରେସ୍ କ୍ଲବ କଟକର ସମ୍ପାଦକ ଥିଲେ । ୧୯୭୧ ମସିହାରେ ସାମ୍ବାଦିକ ହିସାବରେ ସେ ସୋଭିଏଟ୍ ଋଷିଆ ପରିଭ୍ରମଣରେ ଯାଇଥିଲେ । ନମୁନା ସୁପର ମାର୍କେଟର ସେ କିଛିଦିନ ଧରି ସଭାପତି ଦାୟିତ୍ୱ ତୁଲାଇଥିଲେ । ୧୯୭୭ ମସିହାରେ ମାତୃଭୂମି ସମ୍ପାଦନା ଦାୟିତ୍ୱରୁ ଅବ୍ୟାହତି ନେଲାପରେ ସେ ବିଶେଷ ଭାବେ ବହୁ ସାଂସ୍କୃତିକ ଓ ସାମାଜିକ ସଂସ୍ଥା ସହିତ ନିଜକୁ ସଂପୃକ୍ତ କରାଇଛନ୍ତି । ସେ ସମ୍ପ୍ରତି ରାମକୃଷ୍ଣ ପ୍ରଗ୍ରେସ ପରିଷଦର ସଭାପତି, କଳା ବିନୋଦର ଉପ-ସଭାପତି, ବାଳକୃଷ୍ଣ ବିଦ୍ୟା ନିକେତନର ସଭାପତି, ଭକ୍ତ ମଧୁ ବିଦ୍ୟାପୀଠର ପରିଚାଳନା ସଭ୍ୟ । ସାଲେପୁର କଲେଜ ଓ ଜାତୀୟ କବି ବିରକିଶୋର କଲେଜ ଗଭର୍ଣ୍ଣିଂ ବଡିର ସଦସ୍ୟ ରୂପେ ରହିଛନ୍ତି । ସେ କିଛି ଦିନ ଧରି ତାଙ୍କ ଗ୍ରାମାଞ୍ଚଳର ସରପଞ୍ଚ ମଧ୍ୟ ଥିଲେ ।

ଶ୍ରୀ କର ମୁଖ୍ୟତଃ ଜଣେ ସାମ୍ବାଦିକ ଓ ସାହିତ୍ୟିକ । ଚଳନ୍ତି ସମସ୍ୟା ସମ୍ପର୍କରେ "ଭିନ୍ନଦୃଷ୍ଟି" ଶିରୋନାମାରେ ତାଙ୍କର ଏକ ଆଲୋଚନା ମୂଳକ ପୁସ୍ତକ ପ୍ରକାଶ ପାଇଛି । ବ୍ୟଙ୍ଗାତ୍ମକ ରମ୍ୟରଚନା କରିବାରେ ତାଙ୍କର ସ୍ୱକୀୟ ସ୍ୱାତନ୍ତ୍ର୍ୟ ରହିଛି । ତାଙ୍କର ପତ୍ନୀ ଶ୍ରୀମତୀ ରମା କର ଜଣେ ଜଣାଶୁଣା ସମାଜ ସେବିକା ।

## * ଶ୍ରୀ ସଂଗ୍ରାମ କେଶରୀ ମହାପାତ୍ର
(ବିଂଶ ଶତାବ୍ଦୀ)

୧୯୪୪—

କଟକ ଜିଲ୍ଲା ବଡ଼ମ୍ବା ମୌଜା ଅନ୍ତର୍ଗତ କୁଳସରଚୁଆଁ ଗ୍ରାମରେ ୧୯୪୪ ମସିହା ଫେବୃୟାରୀ ୨ ତାରିଖରେ ସଂଗ୍ରାମ କେଶରୀ ମହାପାତ୍ରଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ଗଗନ ବିହାରୀ ମହାପାତ୍ର ଓ ମାତାଙ୍କ ନାମ ସାବିତ୍ରୀ ଦେବୀ । ଛାତ୍ରାବସ୍ଥାରୁ ହିଁ ସାହିତ୍ୟ, ସଂସ୍କୃତି ଓ ଧର୍ମପ୍ରତି ତାଙ୍କ ମନ ବିଶେଷଭାବେ ଆକୃଷ୍ଟ ହୋଇଥିଲା । ପରବର୍ତ୍ତୀ ଜୀବନରେ ସେ ଗ୍ରାମାଞ୍ଚଳରୁ ଆରମ୍ଭକରି ସହର ପର୍ଯ୍ୟନ୍ତ ସାହିତ୍ୟ, ସଂସ୍କୃତି ଓ ଧର୍ମାନୁଷ୍ଠାନମାନଙ୍କର ସଙ୍ଗଠକ ଓ ପୃଷ୍ଠପୋଷକ । ଏହାଛଡ଼ା ସେ ଜଣେ ସମାଜସେବୀ । ସେ ସଂପ୍ରତି ଉତ୍କଳ ସାହିତ୍ୟ ସମାଜର ଆଜୀବନ ସଭ୍ୟ, କଟକ ରାମଲୀଳା ପ୍ରଚାର ସମିତିର କାର୍ଯ୍ୟକାରୀ ସଭାପତି, ନୃସିଂହନାଥ ସାଂସ୍କୃତିକ ପରିଷଦର ଉପ-ସଭାପତି ଓ ରାମକୃଷ୍ଣ ପ୍ରଚାର ପରିଷଦର ଅନ୍ୟତମ ସଂପାଦକ । ବିଭିନ୍ନ ଶ୍ରମ ସଙ୍ଗଠନର ସଭାପତି ତଥା କଟକ ସଦର ନିର୍ବାଚନମଣ୍ଡଳୀର ବିଧାନ ସଭା ସଦସ୍ୟ । ତାଙ୍କ ନିର୍ବାଚନ ମଣ୍ଡଳୀର ବିଭିନ୍ନ ଉନ୍ନତି ମୂଳକ କାର୍ଯ୍ୟରେ ନିଜକୁ ନିୟୋଜିତ କରିବା ସଙ୍ଗେ ସଙ୍ଗେ କଟକ ସହରର ସର୍ବାଙ୍ଗୀନ ଉନ୍ନତି ପାଇଁ ସେ ମଧ୍ୟ ନିୟମିତ ଭାବେ କାର୍ଯ୍ୟ କରି ଆସୁଛନ୍ତି । ଆଞ୍ଚଳିକ ସମବାୟ ବାଣିଜ୍ୟ ସମିତି କଟକର ସଭାପତି । ଏହି ଅନୁଷ୍ଠାନ ତରଫରୁ ସେ ଚଳିତ ବର୍ଷ ଜାପାନ, ଥାଇଲାଣ୍ଡ ପ୍ରଭୃତି ପୃଥିବୀର ବିଭିନ୍ନ ଆଠଗୋଟି ଦେଶକୁ ସମବାୟ ଆନ୍ଦୋଳନ ସମ୍ପର୍କରେ ପ୍ରତ୍ୟକ୍ଷ ଜ୍ଞାନ ଆହରଣ କରିବା ନିମନ୍ତେ ଯାଇଥିଲେ । କଟକ ହଳଦିଆଗଳିର ସେ ସ୍ଥାୟୀ ଅଧିବାସୀ ଓ କଟକ ମ୍ୟୁନିସିପାଲିଟି ୧୨ ନମ୍ବର ଓ୍ୱାର୍ଡ଼ର ସେ ବହୁଦିନ ଧରି କାଉନସିଲର ଥିଲେ । ଛାତ୍ର ଅବସ୍ଥାରୁ ଜଣେ ଚମତ୍କାର ଖେଳାଳୀ ଓ ଏନ୍.ସି.ସି: ଅଣ୍ଡର ଅଫିସର ଭାବରେ ସେ ମଧ୍ୟ ସୁନାମ ଅର୍ଜନ କରିଥିଲେ । ତାଙ୍କରି ବଳିଷ୍ଠ ଉଦ୍ୟମରେ କଟକ ବାରବାଟୀ କିଲ୍ଲା ଭିତରେ ଯୁବକମାନଙ୍କର ଶାରୀରିକ ଉନ୍ନତି ଲାଗି ଏକ କୁସ୍ତିଶିକ୍ଷା ଅନୁଷ୍ଠାନ ଗଢ଼ି ଉଠିଛି । ସେ କଟକ ବେତାର କେନ୍ଦ୍ରର ଜଣେ ଧାରାବାହିକ ଶିଳ୍ପୀ । ବିଭିନ୍ନ ସମୟରେ ସେ ଜନବିରୋଧୀ କାର୍ଯ୍ୟକଳାପର ପ୍ରତିବାଦ କରି କାରାବରଣ କରିଛନ୍ତି ।

## * ଶ୍ରୀ ବଂଶୀଧର ମିଶ୍ର (କ)
(ବିଂଶ ଶତାବ୍ଦୀ)

୧୯୨୨—

କଟକ ସହର ଝାଞ୍ଜିରିମଙ୍ଗଳା ବସ୍ତିରେ ୧୩.୬.୧୯୨୨ରେ ବଂଶୀଧର ମିଶ୍ର(କ) ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଯଦୁମଣି ମିଶ୍ର ଓ ମାତାଙ୍କ ନାମ ଶ୍ରୀମତୀ ଦେବୀ । ସେ ଅସଂଖ୍ୟ ଜଣାଣ ଓ ଭଜନର ଲେଖକ ।

## * ଶ୍ରୀମତୀ ପ୍ରମିଳା ନାୟକ

(ବିଂଶ ଶତାବ୍ଦୀ)
୧୯୩୯—

ଶ୍ରୀମତୀ ପ୍ରମିଳା ନାୟକ ୧୯୩୯ ମସିହା ଜାନୁଆରୀ ୨୭ ତାରିଖରେ ପୁରୀଜିଲ୍ଲା ଅନ୍ତର୍ଗତ ନିମାପଡ଼ାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଅନାଦି ଚରଣ ନାୟକ ଓ ମାତାଙ୍କ ନାମ ଲାବଣ୍ୟବତୀ ଦେବୀ । ୧୯୫୮ ମସିହାରେ କାକଟପୁର ନିବାସୀ ସାହିତ୍ୟ ଓ ସଂସ୍କୃତପ୍ରେମୀ ସୁରେନ୍ଦ୍ରନାଥ ନାୟକଙ୍କୁ ସେ ବିବାହ କରିଥିଲେ । ଶ୍ରୀମତୀ ନାୟକ ଘରୋଇଭାବେ ବି.ଏ. ପରୀକ୍ଷା ଦେଇ, ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲାପରେ ସିଟି ଟ୍ରେନିଂ ନେଇଥିଲେ । ସିଟି ଟ୍ରେନିଂରେ କୃତିତ୍ୱ ଲାଭ ପରେ ସେ ସମ୍ପ୍ରତି ଖୋର୍ଦ୍ଧାରୋଡ଼ ରେଲୱେ ସ୍କୁଲର ଶିକ୍ଷୟିତ୍ରୀ ।

ଶ୍ରୀମତୀ ନାୟକ ନିମାପଡ଼ା ସ୍କୁଲରେ ପଢ଼ୁଥିଲାବେଳେ ପ୍ରବନ୍ଧ ଲେଖି ପ୍ରଥମ ପୁରସ୍କାର ପାଇଥିଲେ ଓ ବକ୍ତୃତା ପ୍ରତିଯୋଗିତାରେ ମଧ୍ୟ ଯୋଗ ଦେଉଥିଲେ । ତାଙ୍କର ମହିଳା ମହଲରେ ଆମ ରନ୍ଧାବଢ଼ା ଓ ଓଡ଼ିଶାର ବିଭିନ୍ନ ଶିଶୁ ପତ୍ରିକାରେ ତାଙ୍କର ବହୁ ଶିଶୁ କବିତା ଓ ଗଳ୍ପ ପ୍ରକାଶ ପାଇଛି ଓ କଟକ ବେତାର କେନ୍ଦ୍ରର ସ୍କୁଲ ବ୍ରଡ଼କାଷ୍ଟିଂ ପ୍ରୋଗ୍ରାମର ସେ ଜଣେ ନିୟମିତ ଶିଳ୍ପୀ । ତାଙ୍କ ରଚିତ "ନାଲିସୁରୁଜ ବୁଣେ ମୁରୁଜ" ଶିଶୁକବିତା ପୁସ୍ତକ ପ୍ରକାଶ ପାଇଛି ।

## * ଶ୍ରୀ ଚନ୍ଦ୍ରଶେଖର ମିଶ୍ର

(ବିଂଶ ଶତାବ୍ଦୀ)
୧୮୮୪-୧୯୭୩

ପୁରୀ ଜିଲ୍ଲା ଅନ୍ତର୍ଗତ ଖଣ୍ଡପଡ଼ା ଗଡ଼ରେ ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର ୧୮୮୪ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ନାରାୟଣ ମିଶ୍ର ଓ ମାତାଙ୍କ ନାମ ମୁକ୍ତା ଦେବୀ ।

୧୯୦୩ ମସିହାରେ କଟକ ନର୍ମାଲ ସ୍କୁଲରୁ ଟ୍ରେନିଂ ପାସ କରି ଉତ୍କଳ ସମ୍ମିଳନୀ ପ୍ରଚାର କାର୍ଯ୍ୟରେ ଉତ୍କଳ ଗୌରବ ମଧୁସୂଦନଙ୍କ ଦ୍ୱାରା ଆଦିଷ୍ଟ ହୋଇ କେତେକ ମାସ ନିଯୁକ୍ତ ହୋଇଥିଲେ । ୧୯୦୫ ମସିହାଠାରୁ ସରକାରୀ ଚାକିରୀରେ ଗୁରୁ ଟ୍ରେନିଂ ସ୍କୁଲ

ମାନଙ୍କରେ ହେଡ୍ ପଣ୍ଡିତ ଭାବେ ନିଯୁକ୍ତ ହୋଇଥିଲେ । ୧୯୧୭ ମସିହାରେ ସେହି ଓଡ଼ିଶା ସଂସ୍କୃତ ଆସୋସିଏସନ୍ ଦ୍ୱାରା ପରିଚାଳିତ କାବ୍ୟତୀର୍ଥ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

୧୯୨୫ ମସିହାରେ "ବ୍ରିଟିଶ ରାଜ ବଂଶମ୍" ନାମକ ଯେଉଁ ସଂସ୍କୃତ ଖଣ୍ଡ କାବ୍ୟ ରଚନା କରିଥିଲେ, ତାହା ୧୯୨୭ ମସିହାରେ ପ୍ରକାଶିତ ହୋଇଥିଲା । ସେତେବେଳକୁ ପଣ୍ଡିତ ମିଶ୍ର କଟକ କଲେଜିଏଟ୍ ସ୍କୁଲର ଦ୍ୱିତୀୟ ସଂସ୍କୃତ ଶିକ୍ଷକ ଥା'ନ୍ତି । "ବାଳିକା ବଧୂ" ନାମକ ଖଣ୍ଡିଏ କ୍ଷୁଦ୍ର କବିତା ପୁସ୍ତିକା ମଧ୍ୟ ସେ ଏହି ସମୟରେ ରଚନା କରିଥିଲେ ।

'ସିଦ୍ଧାନ୍ତ ଦର୍ପଣ' ପ୍ରଣେତା ଉତ୍କଳର ଯୋଗ୍ୟତମ ସୁତ ଓ ଭାରତର ଦ୍ୱିତୀୟ ଭାସ୍କର ସାମନ୍ତ ଚନ୍ଦ୍ରଶେଖରଙ୍କୁ ପୃଥିବୀରେ ପରିଚିତ କରାଇବାରେ ପଣ୍ଡିତ ମିଶ୍ରଙ୍କ ଲିଖିତ "ସାମନ୍ତ ଚନ୍ଦ୍ରଶେଖରଙ୍କ ଜୀବନୀ" ଓଡ଼ିଆ ଜାତି ଓ ସାହିତ୍ୟକୁ ତାଙ୍କର ଅନବଦ୍ୟ ଓ ଅମର ଅବଦାନ । ଏହି ପୁସ୍ତକ ତାଙ୍କର ୧୯୩୨ ମସିହାରେ ପ୍ରକାଶିତ ହୋଇଥିଲା ।

ସ୍ୱର୍ଗତ ପଣ୍ଡିତ ମିଶ୍ର ୧୯୨୩ରୁ ୧୯୨୯ ପର୍ଯ୍ୟନ୍ତ କଟକ କଲେଜିଏଟ୍ ସ୍କୁଲରେ ସଂସ୍କୃତ ପଣ୍ଡିତ ଥିଲେ ଓ ତାହାପରେ ସମ୍ବଲପୁର ଜିଲ୍ଲା ସ୍କୁଲରେ ହେଡ୍ ପଣ୍ଡିତ ଭାବରେ ୧୯୨୯ରୁ ୧୯୪୦ ପର୍ଯ୍ୟନ୍ତ କାର୍ଯ୍ୟ କରିଥିଲେ ଓ ସେହି ବର୍ଷ ଚାକିରୀରୁ ଅବସର ଗ୍ରହଣ କରିଥିଲେ । ଚାକିରୀରୁ ଅବସର ନେଲା ପରେ ସେ ନିଜ ଜନ୍ମପୀଠ ଖଣ୍ଡପଡ଼ା ଗଡ଼ରେ ଅବସ୍ଥାନ କରୁଥିଲେ ଓ ସେଠାରେ ସଂସ୍କୃତ ସାହିତ୍ୟ ଅଧ୍ୟୟନ, ଚର୍ଚ୍ଚା ଓ ଲେଖାଲେଖିରେ ତାଙ୍କର ସମଗ୍ର ସମୟ ଅତିବାହିତ ହୋଇଥିଲା । ସେ ଓଡ଼ିଆରେ ବହୁ ଜଣାଣ, ଭଜନ ଓ ସଙ୍ଗୀତ ରଚନା କରିଥିଲେ । ତାଙ୍କର କେତୋଟି ଜଣାଣ/ଭଜନ ସମାବେଶରେ ଏକ ପୁସ୍ତକ ଓଡ଼ିଆ ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ ହୋଇଛି । ଜଣେ ପ୍ରତିଷ୍ଠିତ ସଂସ୍କୃତ ପଣ୍ଡିତ ତଥା ସଂସ୍କୃତ ଓ ଓଡ଼ିଆ ସାହିତ୍ୟର ପ୍ରବୀଣ ଲେଖକ ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର କାବ୍ୟତୀର୍ଥ ୧୯୭୩ ମସିହା ଡିସେମ୍ବର ୫ ତାରିଖରେ ପରଲୋକ ଗମନ କଲେ ।

*** ଶ୍ରୀ ଶୁଭନାରାୟଣ ସ୍ୱାଇଁ**
(ବିଂଶ ଶତାବ୍ଦୀ)
୧୯୩୦—

କଟକ ଜିଲ୍ଲାର ଏରସମା ଥାନା ଅନ୍ତର୍ଗତ ସିହା ଗ୍ରାମରେ ଶ୍ରୀ ଶୁଭନାରାୟଣ ସ୍ୱାଇଁ ୧୯୩୦ ମସିହା କାର୍ତ୍ତିକ ପୂର୍ଣ୍ଣିମା ଗୁରୁବାର ଦିନ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଶ୍ରୀ ଅର୍ତ୍ତବନ୍ଧୁ ସ୍ୱାଇଁ ଓ ମାତାଙ୍କ ନାମ ଚନ୍ଦ୍ରମା ଦେବୀ ।

ଆଇ: ଏ: ଓ ସି: ଟି: ଶିକ୍ଷାଗତ ଯୋଗ୍ୟତା ହାସଲ କଲାପରେ ୧୯୫୨ରୁ ଶିକ୍ଷକ ଜୀବନ ଆରମ୍ଭ କରନ୍ତି । ୧୯୫୨ରୁ ୧୯୬୨ ପର୍ଯ୍ୟନ୍ତ ଏରସମା ମାଇନର ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ଓ ସମ୍ପ୍ରତି ସେ କଟକ ଖ୍ରୀଷ୍ଟ କଲେଜିଏଟ୍ ସ୍କୁଲର ସହକାରୀ ଶିକ୍ଷକ । ୧୯୫୫ ମାର୍ଚ୍ଚ ୧୦ତାରିଖରେ କଟକ ଜିଲ୍ଲା ମଣିଜଙ୍ଗା ମୌଜାର ସାହୁଟି ଚରଣ ସାହୁଙ୍କ କନ୍ୟା କବିତା ମଞ୍ଜରୀଙ୍କୁ ବିବାହ କରିଥିଲେ, ଯେକି କବି ସ୍ୱାଇଁଙ୍କ ପରବର୍ତ୍ତୀ କବି ଜୀବନର ବିଶେଷ ପ୍ରେରଣା ଦାୟିନୀ ଓ ନିଜେ ମଧ୍ୟ ଜଣେ କବି । ଶ୍ରୀ ସ୍ୱାଇଁ ମୁଖ୍ୟତଃ ଜଣେ କବି, ଗାଳ୍ପିକ ଓ ଗୀତିକାର । ଛାତ୍ର ଜୀବନରୁ ହିଁ ସେ କବିତା କ୍ଷୁଦ୍ରଗଳ୍ପ ଓ ସଙ୍ଗୀତ ମାନ ରଚନା କରି ଚାଲିଛନ୍ତି । ଦର୍ପଣ ନାମକ ଏକ ସାହିତ୍ୟ ପତ୍ରିକାର ସେ ଦୀର୍ଘ ୪ ବର୍ଷ ଧରି ସମ୍ପାଦକ ଥିଲେ । ୧୯୫୮ ମସିହାଠାରୁ ଏ ପର୍ଯ୍ୟନ୍ତ ଏରସମା 'ସ୍ୱପ୍ନବ ସାହିତ୍ୟ ସମିତି'ର ସେ ସମ୍ପାଦକ । ସେ କଟକ ବେତାର କେନ୍ଦ୍ରର ଜଣେ ପ୍ରତିଷ୍ଠିତ ଗୀତିକାର । "ଆମ ପରୀକ୍ଷା ବ୍ୟାକରଣ" ନାମରେ ତାଙ୍କର ଖଣ୍ଡିଏ ପୁସ୍ତକ ପ୍ରକାଶ ପାଇଛି । ଶ୍ରୀ ଶୁଭ ନାରାୟଣ ସ୍ୱାଇଁଙ୍କୁ ଏହି ସାହିତ୍ୟ ସାଧନାରେ ବ୍ରତୀ ହେବାପାଇଁ ତାଙ୍କର ଦାଦା ଶ୍ରୀ ଶ୍ରୀଧର ସ୍ୱାଇଁ (ଯେକି ତାଙ୍କୁ ଜ୍ୟେଷ୍ଠପୁତ୍ର ଗ୍ରହଣକରିଥିଲେ) ପଦେ ପଦେ ପ୍ରେରଣା ଦେଇ ଆସିଛନ୍ତି ଓ ଆସୁଛନ୍ତି ମଧ୍ୟ । ଶ୍ରୀ ଶ୍ରୀଧର ସ୍ୱାଇଁ ମଧ୍ୟ ଓଡ଼ିଆ ପ୍ରାଚୀନ ସାହିତ୍ୟ ଓ ସଙ୍ଗୀତର ଜଣେ ବିଶିଷ୍ଟ ବାଖ୍ୟାକାର ଓ ଗବେଷକ ମଧ୍ୟ ।

## * ଶ୍ରୀ କୁଞ୍ଜ ବିହାରୀ ଦାଶ

(ବିଂଶ ଶତାବ୍ଦୀ)

୧୯୧୪—

ଶ୍ରୀ କୁଞ୍ଜ ବିହାରୀ ଦାଶ ୧୯୧୪ ମସିହା ନଭେମ୍ବର ୩୧ ତାରିଖରେ ପୁରୀ ଜିଲ୍ଲାର ଏକ ପଲ୍ଲୀଗ୍ରାମ ରେଣ୍ଟ ଶାସନରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଚନ୍ଦ୍ରାମଣି ଦାଶ ଓ ମାତାଙ୍କ ନାମ ତାରାମଣି ଦେବୀ । ଭୁବନେଶ୍ୱର ମାଇନର ସ୍କୁଲରୁ ପାଠ ଶେଷ କଲା ପରେ ଜନମାପଡ଼ା ହାଇସ୍କୁଲରେ ମାଟ୍ରିକ ଶ୍ରେଣୀରେ ଯୋଗଦେଇ ୧୯୩୧ରେ ମାଟ୍ରିକ ପାଶ୍ କଲେ । ରେଭେନ୍‌ସା କଲେଜରୁ ବି: ଏ: ପାଶ୍ କଲା ଉତ୍ତାରୁ ସେ ଓଡ଼ିଆ ଏମ: ଏ: ପଢ଼ିବା ଲାଗି କଲିକତା ବିଶ୍ୱବିଦ୍ୟାଳୟରେ ଯୋଗ ଦେଲେ ଓ ସେଠାରୁ ୧୯୪୧ରେ ସମସ୍ତ ଆଧୁନିକ ଭାରତୀୟ ଭାଷା ବିଭାଗରେ ପ୍ରଥମ ସ୍ଥାନ ଅଧିକାର ପୂର୍ବକ ଏମ: ଏ: ପାଶ କରିଥିଲେ ଏବଂ ୧୯୪୫ରେ ମଧ୍ୟ ସଂସ୍କୃତରେ କଲିକତା ବିଶ୍ୱବିଦ୍ୟାଳୟରୁ ଏମ: ଏ: ପାଶ କରିଥିଲେ । ସେ ଓଡ଼ିଆ ଏମ: ଏରେ ପ୍ରଥମ ସ୍ଥାନ ଅଧିକାର କରିବା ଯୋଗୁଁ ୩ ଗୋଟି ସ୍ୱର୍ଣ୍ଣ ମୁଦ୍ରା ଓ ୨ ଶତ ଟଙ୍କା (ଦୁଇ ଶତଟଙ୍କା) ପୁରସ୍କାର ପାଇଥିଲେ ।

୧୯୪୪ ମସିହାରେ ସେ ବ୍ରହ୍ମପୁର ଖଲ୍ଲିକୋଟ କଲେଜରେ ଓଡ଼ିଆ ଅଧ୍ୟାପକ ଭାବେ ଅବସ୍ଥାପିତ ହୁଅନ୍ତି । ୧୯୪୬ରେ ଓଡ଼ିଆ ସଂସ୍କୃତି ବିଭାଗରେ ସୁପରିଣ୍ଟେଣ୍ଡେଣ୍ଟ, ୧୯୪୭ରେ ବାଲେଶ୍ୱର ଫକୀର ମୋହନ କଲେଜର ଅଧ୍ୟାପକ ଓ ୧୯୫୦-୬୧ ମଧ୍ୟରେ ବିଶ୍ୱ ଭାରତୀ ଶାନ୍ତି ନିକେତନର ଅଧ୍ୟାପକ ଭାବେ ନିଯୁକ୍ତି ପ୍ରାପ୍ତ ହୁଅନ୍ତି ।

୧୯୫୮ରେ ସେ ଲୋକ ସାହିତ୍ୟରେ ପି: ଏଚ: ଡି: ଡିଗ୍ରୀ ଲାଭ କରି ୧୯୬୧ରୁ ୧୯୬୯ ପର୍ଯ୍ୟନ୍ତ ରେଭେନ୍‌ସା କଲେଜ ଓଡ଼ିଆ ବିଭାଗର ରିଡ଼ର ଓ ତା' ପରେ ପ୍ରଫେସର ରୂପେ ଅବସ୍ଥାପିତ ହୁଅନ୍ତି । ୧୯୬୯ରେ ଅବସର ଗ୍ରହଣ ପରେ ୧୯୭୦ରୁ ୟୁ: ଜି: ସି ଅଧ୍ୟାପକ ଭାବେ ୩ ବର୍ଷ ଉତ୍କଳ ବିଶ୍ୱ ବିଦ୍ୟାଳୟରେ ଓ ୨ ବର୍ଷ ରେଭେନ୍‌ସା କଲେଜରେ ନିଯୁକ୍ତି ଲାଭ କରନ୍ତି । ୧୯୭୭ରୁ ୧୯୭୮ ପର୍ଯ୍ୟନ୍ତ ଶାନ୍ତି ନିକେତନରେ ପରିଦର୍ଶକ ଅଧ୍ୟାପକ ଭାବେ ଅବସ୍ଥାପିତ ହୁଅନ୍ତି । ୧୯୭୮ ରେ କଲିକତାର "Academy of Folklore" ତରଫରୁ "ଲୋକ ରତ୍ନ" ଉପାଧି ଲାଭ କରନ୍ତି ।

ଭାରତର ଜଣେ ପ୍ରତିନିଧି ହିସାବରେ ୧୯୬୭ ମସିହାରେ ଆମେରିକାରେ ଅନୁଷ୍ଠିତ ଏସୀୟ ଲୋକ ସଂସ୍କୃତି ସମ୍ମେଳନରେ ଯୋଗଦେଇ ଲୋକ ସଂସ୍କୃତି ସମ୍ପର୍କରେ ପ୍ରବନ୍ଧ ପାଠ କରିଥିଲେ ।

୧୯୭୨ରୁ ୧୯୭୭ ପର୍ଯ୍ୟନ୍ତ ଓଡ଼ିଶାର ସର୍ବବୃହତ୍ତ ସାହିତ୍ୟ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜର ସଭାପତି ରୂପେ ଦାୟିତ୍ୱ ତୁଲାଇ ଥିଲେ । ୧୯୬୭ରୁ ୧୯୭୭ ପର୍ଯ୍ୟନ୍ତ ଦୀର୍ଘ ଦଶବର୍ଷ ଧରି କେନ୍ଦ୍ର ସାହିତ୍ୟ ଏକାଡେମୀ ସାଧାରଣ ପରିଷଦର ସଭ୍ୟ ଥିଲେ ।

କଲିକତାର ପ୍ରବାସ ଜୀବନରେ କବି କୁଞ୍ଜବିହାରୀ ଗୋଟିଏ ଓଡ଼ିଆ ଶ୍ରମିକ ନୈଶ୍ୟ ବିଦ୍ୟାଳୟର ଶିକ୍ଷକ ଥିଲେ ଓ କଲିକତାର ଓଡ଼ିଆଙ୍କ ଭିତରେ ସାଂସ୍କୃତିକ ଚେତନା ଓ ଜାତୀୟ ଜାଗୃତି ଆଣିବା ଲାଗି ପ୍ରବାସୀ ଓଡ଼ିଆ ଆନ୍ଦୋଳନର ନେତୃତ୍ୱ ଗ୍ରହଣ କରି ଥିଲେ ।

କବିଙ୍କ ଯେତେବେଳେ ୧୨ ବର୍ଷ ସେତେବେଳେ ତାଙ୍କର ପିତୃବିୟୋଗ ଘଟିଥିଲା । ତାଙ୍କର ପିତା ଚିନ୍ତାମଣି ଦାଶ ଜଣେ ସ୍ୱଭାବସିଦ୍ଧ ପଲ୍ଲୀ କବି ଥିଲେ । ତାଙ୍କ ପିତାଙ୍କ ସାହିତ୍ୟିକ ଜୀବନର ପ୍ରଭାବ ଓ ଅଧ୍ୟବସାୟ କୁଞ୍ଜ ବିହାରୀଙ୍କ ସାହିତ୍ୟିକ ଜୀବନକୁ ବିଶେଷ ଭାବେ ପ୍ରେରଣାପୁଷ୍ଟ କରିଥିଲା ।

୧୯୪୧ ମସିହାରେ କ୍ଷେତ୍ରମୋହନ ଶତପଥିଙ୍କ କନ୍ୟା ପ୍ରେମଲତାଙ୍କ ସହିତ କୁଞ୍ଜ
ବିହାରୀଙ୍କ ବିବାହ ସମ୍ପନ୍ନ ହୋଇଥିଲା । ସେମାନଙ୍କ ତିନି ପୁତ୍ର ସନ୍ତାନ ଓ

ଜନନୀ । ଶ୍ରୀମତୀ ପ୍ରେମଲତା ଦାସ ମଧ୍ୟ ଜଣେ ସାହିତ୍ୟିକା ଓ ଗାଳ୍ପିକା । ତାଙ୍କ ରଚିତ କେତୋଟି ଗଳ୍ପ ଓଡ଼ିଆ ସାହିତ୍ୟରେ ସୁନିର୍ଦ୍ଦିଷ୍ଟ ଆସନ ଅଧିକାର କରିଛି ଓ କୁଞ୍ଜ ବିହାରୀଙ୍କ ସାହିତ୍ୟିକ ଜୀବନରେ ଉତ୍ତୋରତ୍ତର ସାଫଲ୍ୟ ଆଣିବାରେ ଶ୍ରୀମତୀ ପ୍ରେମଲତାଙ୍କ ଦାନ ମଧ୍ୟ ବିଶେଷ ଭାବେ ସ୍ମରଣୀୟ ।

କୁଞ୍ଜ ବିହାରୀଙ୍କ ସାହିତ୍ୟିକ କୃତି ଓ କୃତିତ୍ୱ ଗୁଡ଼ିକ ହେଲା—
ଆଲୋଚନା—A study of Ossian Fork lore.
କବିତା—କୁଞ୍ଜ ବିହାରୀ ସଞ୍ଚୟନ (ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଭାଗ) ।
ଭ୍ରମଣ କାହାଣୀ—ଲଙ୍କାଯାତ୍ରୀ । ମୋ ସ୍ୱପ୍ନର କାଶ୍ମୀର, ପଥ ଓ ପଥିକ, ଦୂର ଦିଗନ୍ତର ଆକାଶ, ଆମେରିକାରୁ ୟୁରୋପ ଓ ଆଫ୍ରିକା ।
ଜୀବନୀ ଗ୍ରନ୍ଥ—ଜୀବନୀ ଓ ଜୀବନ/ଜୀବନାୟନ
ପ୍ରବନ୍ଧ ସଂକଳନ— ସମାଲୋଚନା/ସାହିତ୍ୟିକ
ରମ୍ୟରଚନା—ଶ୍ରୀମନ୍ତ
ଆତ୍ମଜୀବନୀ ଚରିତ—ମୋ କାହାଣୀ
ଗଳ୍ପ—ଲୋକଗଳ୍ପ ସଞ୍ଚୟନ/ହସ କାନ୍ଦର ଗଳ୍ପ
ପଲ୍ଲୀଗୀତ—ପଲ୍ଲିଗୀତ ସଞ୍ଚୟନ (୧ମ/୨ୟ/୩ୟ ଭାଗ) ।
ଢଗ ଢମାଳି—ଲୋକବାଣୀ ସଞ୍ଚୟନ (୧ମ/୨ୟ/୩ୟ/୪ର୍ଥ ଓ ୫ମ ଭାଗ) ।

କୁଞ୍ଜବିହାରୀ ମୁଖ୍ୟତଃ ଜଣେ କବି ଓ ସମାଲୋଚକ । ତାଙ୍କ ରଚିତ କବିତା "ସତ୍ତାର ମଣିଷ"କୁ ବିଶ୍ୱଭାରତୀର ଅଧ୍ୟାପକ ଶ୍ରୀ ଶିବନାଥ ହିନ୍ଦ ଅନୁବାଦ କରିଥିଲେ । ଏହା ପ୍ରଥମେ ବିଷ୍ଣୁଭାରତୀ ଓ ପରେ ଆଜ୍‌କାଲ ପତ୍ରିକାରେ ପ୍ରକାଶିତ ହୋଇଥିଲା ।

କବି କୁଞ୍ଜବିହାରୀଙ୍କ ଆଉ ଗୋଟିଏ କବିତା "ଶ୍ରମିକର ଭଗବାନ" ଶ୍ରୀ ନରେନ୍ଦ୍ର ନାଥ ମିଶ୍ର ଓ ଶ୍ରୀମତୀ ଲୀଲା ରାୟଙ୍କ ମିଳିତ ଚେଷ୍ଟାରେ ଇଂରାଜୀରେ ଅନୁବାଦିତ ହୋଇ P. E. N. ପତ୍ରିକାରେ ୧୯୫୭ ଫେବୃୟାରୀ ସଂଖ୍ୟାରେ ପ୍ରକାଶିତ ହୋଇଥିଲା ଓ ପରେ ପରେ Denys Thomson ସମ୍ପାଦନାରେ ପ୍ରକାଶିତ—"The poet speak—an anthology of verse from East and west'ରେ 'A workers God' ଶିରୋନାମାରେ ୧୯୫୮ରେ ପ୍ରକାଶ ପାଇଛି ।

ଉତ୍କଳର ପ୍ରଥିତଯଶା କବି ଡକ୍ଟର ମାୟାଧର ମାନସିଂହ କବି କୁଞ୍ଜବିହାରୀଙ୍କ ୧୫।୧।୫୪ରେ ଝଙ୍କାରରେ ପ୍ରକାଶିତ "ମାଟି ଓ ଲଠି" କବିତାର କିୟଦଂଶ ପାଠ କରି

ମତପ୍ରଦାନ କରି କୁଞ୍ଜବିହାରୀଙ୍କ ପାଖକୁ ଯାହା ଲେଖିଥିଲେ, ତାହା ଏଠାରେ ପ୍ରଣିଧାନଯୋଗ୍ୟ । ମାନସିଂହ ଲେଖିଥିଲେ—ତୁମର 'ମାଟି ଓ ଲଠି' ପାଠ କରି ବିଶେଷ ତୃପ୍ତି ବୋଧ କଲି । ଲୌହ ନଗରୀର ସମାକୀର୍ଣ୍ଣ ଜନତା ଭିତରେ ଗାଁର ମଣିଷ ତା'ର ଅନ୍ତରର ଅନ୍ତରେ ଗାଁର ପରିଚିତ ମାଟିକୁ ଯେପରି ଖୋଜୁଛି, ତା'ର କାରୁଣ୍ୟ ପ୍ରତ୍ୟେକ ରସଗ୍ରାହୀ ହୃଦୟରେ ବାଜିବାର ଆଶା କରାଯାଏ—"ମଣିଷ ହୋଇଛି ଧୂଆଁ ଗୁଇ" କବିତାଂଶରେ ତୁମେ ଗ୍ରାମ୍ୟ ଜୀବନର ଯେଉଁ ଉପଭୋଗ୍ୟ ଚିତ୍ର ଦେଇଛ ତାହା ପଲ୍ଲୀ ବିତାଡ଼ିତ ପ୍ରତ୍ୟେକ ପ୍ରାଣରେ ଅତୀତର ପ୍ରାଚୀନ ସ୍ମୃତି ଜାଗ୍ରତ କରାଇବ ।

## * ଡକ୍ଟର କୃଷ୍ଣଚରଣ ବେହେରା

(ବିଂଶ ଶତାବ୍ଦୀ)

୧୯୩୨—

୧୯୩୨ ମସିହା ଜୁନ୍ ୨ ତାରିଖରେ ବାଲେଶ୍ୱର ଜିଲ୍ଲା ତିହିଡ଼ି ଥାନା ଅନ୍ତର୍ଗତ ଅର୍ଜୁନବନ୍ଧା ଗ୍ରାମରେ କୃଷ୍ଣ ଚରଣ ବେହେରାଙ୍କର ଜନ୍ମ । ତାଙ୍କ ପିତାଙ୍କ ନାମ ପିତାମ୍ବର ବେହେରା ଓ ମାତାଙ୍କ ନାମ ପବିତ୍ର ଦେବୀ । ସେ ଓଡ଼ିଆ ସାହିତ୍ୟରେ ଏମ୍. ଏ., ପି. ଏଚ୍. ଡି. ଡିଗ୍ରୀଧାରୀ । ଓଡ଼ିଶାର ବିଭିନ୍ନ ବେସରକାରୀ ଓ ସରକାରୀ କଲେଜରେ ଅଧ୍ୟାପନା କରି ଉତ୍ତାରୁ ବର୍ତ୍ତମାନ ରେଭେନ୍ସା କଲେଜରେ ଓଡ଼ିଆ ବିଭାଗର ଅଧ୍ୟାପକ । ସେ ମୁଖ୍ୟତଃ କବି, ସମାଲୋଚକ ଓ ଗାଳ୍ପିକ ଭାବେ ଖ୍ୟାତି ଲାଭ କରିଛନ୍ତି । ତାଙ୍କ ପ୍ରକାଶିତ ଗ୍ରନ୍ଥମାନଙ୍କ ମଧ୍ୟରେ ୧୯୫୩ରେ ଟି କପ୍‌ରେ ଝଡ଼ (କବିତା), ୧୯୫୫ ରେ ପ୍ରଗତି ସାହିତ୍ୟ (ସମାଲୋଚନା), ୧୯୫୮ରେ ସୃଷ୍ଟିର ସ୍ୱପ୍ନ (ଗଳ୍ପ), ୧୯୫୯ରେ ଯଥା ନଳସ୍ୟ ଦମୟନ୍ତୀ (ଏକାଙ୍କିକା), ୧୯୫୯ରେ ଭାନୁବାଇଲେନ (କବିତା), ୧୯୬୦ରେ କଥା ସାହିତ୍ୟ (ଆଲୋଚନା), ୧୯୬୧ରେ ଗୋପନ ପତ୍ର (ଗଳ୍ପ), ୧୯୬୬ରେ ଅଶ୍ଳୀଳତା ସପକ୍ଷରେ (ଆଲୋଚନା), ୧୯୬୭ରେ ଉଷ ଓ ପୋତା (ଗଳ୍ପ), ୧୯୬୮ରେ ଓଡ଼ିଆ ଉପନ୍ୟାସ (ପି. ଏଚ୍. ଡି ଗବେଷଣା ପୁସ୍ତକ), ୧୯୭୦ରେ କେତେକ ସାହିତ୍ୟିକ ଅଭିଭାଷଣ, '୯୭୧ରେ ବେଦୀ ଓ ଅନ୍ୟାନ୍ୟ ଗଳ୍ପ, ୧୯୭୨ରେ ଅଧ୍ୟାପକର ବେଦନା (ପ୍ରବନ୍ଧ), ୧୯୭୭ରେ ନାରୀ ଏକ ନଦୀର ନାମ (ଗଳ୍ପ), ୧୯୭୮ରେ ଜଗନ୍ନାଥ ଓ ଓଡ଼ିଆ ସାହିତ୍ୟ (ସମାଲୋଚନା), ନାଟ୍ୟ ସାହିତ୍ୟ ପରିଚୟ (ସମାଲୋଚନା) ପ୍ରଭୃତି ପ୍ରଧାନ । ଏହାଛଡ଼ା କବିଶେଖର ଚିନ୍ତାମଣି, ମୋଚଲ ତାମସା, କିଶୋର ଚନ୍ଦ୍ରାନନ ଚମ୍ପୂ ଓ ଏ ଯୁଗର ଗଦ୍ୟ ଚୟନ ପ୍ରଭୃତି ପୁସ୍ତକମାନଙ୍କରେ ସଂପାଦନା କରିଛନ୍ତି ।

## * ଶ୍ରୀ ଗୋପାଳ ଚନ୍ଦ୍ର ମିଶ୍ର

(ବିଂଶ ଶତାବ୍ଦୀ)
୧୯୨୫—

ପୁରୀ ଜିଲ୍ଲା ଅନ୍ତର୍ଗତ ପୂର୍ବତନ ଗଡ଼ଜାତ ରଣପୁର ଗଡ଼ରେ ୧୯୨୫ ମସିହା ଜୁଲାଇ ମାସ ୧୨ ତାରିଖରେ ଗୋପାଳ ଚନ୍ଦ୍ର ମିଶ୍ରଙ୍କ ଜନ୍ମ । ତାଙ୍କ ପିତାଙ୍କ ନାମ ଜନାର୍ଦ୍ଦନ ମିଶ୍ର ଓ ମାତାଙ୍କ ନାମ ରମା ଦେବୀ । ରଣପୁର ଗଡ଼ ମାଇନର ସ୍କୁଲରୁ ବୃତ୍ତି ସହ ମି: ଇ: ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ବାଣପୁର ହାଇସ୍କୁଲରୁ ମାଟ୍ରିକ ଏବଂ ରେଭେନ୍‌ସା କଲେଜରୁ ଆଇ: ଏ: ବି: ଏ: ଏବଂ ଏମ୍: ଏ: ପାଶ୍ । ଛାତ୍ର ଅବସ୍ଥାରୁ ଗଡ଼ଜାତ ପ୍ରଜାମଣ୍ଡଳ ଆନ୍ଦୋଳନରେ ଯୋଗ ଦେଇଥିଲେ ଏବଂ ସେତେବେଳେ ଅତ୍ୟାଚାରୀ ରାଜାରାଜୁଡ଼ାଙ୍କର ବକ୍ର ଦୃଷ୍ଟିରେ ପଡ଼ି ଜେଲ୍ ଜୋରିମାନା ଭୋଗିଥିଲେ । ଗଡ଼ଜାତ ମିଶ୍ରଣ ପରେ ଓଡ଼ିଶା ସରକାର ତାଙ୍କୁ ଷଢ଼େଇକଳାଠାରେ ଆଡ଼ମିନିଷ୍ଟ୍ରେଟିଭ୍ ଅଫିସରରୂପେ ନିଯୁକ୍ତ ଦେଇଥିଲେ, କିନ୍ତୁ ତଦାନୀନ୍ତନ ଷଢ଼େଇକଳାର ବିଶୃଙ୍ଖଳା ଯୋଗୁଁ ସେ ଉକ୍ତ ଚାକିରୀରେ ଯୋଗ ଦେଇ ନ ଥିଲେ । ତାଙ୍କର ପ୍ରଥମ କବିତା ପୁସ୍ତକ "ବିଦ୍ରୋହୀ ଦିବାକର" ।

ଓଡ଼ିଆ ଅଧ୍ୟାପକ ଭାବେ ସେ ୧୯୪୯ ଅକ୍ଟୋବର ୧୮ ତାରିଖରେ ଯୋଗ ଦେଲେ । ୧୯୬୫ ମସିହାରେ "ଓଡ଼ିଆ ଗଦ୍ୟ ସାହିତ୍ୟର ବିକାଶ ଧାରା" ସମ୍ପର୍କରେ ଗବେଷଣାତ୍ମକ ନିବନ୍ଧ ଲେଖି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡି. ଲିଟ୍ ଡିଗ୍ରୀ ଲାଭ କରିଥିଲେ ।

ଗୋପାଳ ଚନ୍ଦ୍ର ମିଶ୍ର ତାଙ୍କର କାବ୍ୟ ସାଧନା କ୍ଷେତ୍ରରେ ତାଙ୍କ ହାଇସ୍କୁଲ ଶିକ୍ଷକ ଶ୍ରୀଯୁକ୍ତ ଜଗନ୍ନାଥ ମହାପାତ୍ରଙ୍କ ଦ୍ୱାରା ବିଶେଷ ଅନୁପ୍ରାଣିତ । ୧୯୫୧ ମସିହାରେ ନିଖିଳ ଭାରତ ୫ମ ପି: ଇ: ଏନ୍: ଲେଖକ ସମ୍ମେଳନ ଭୁବନେଶ୍ୱର ଠାରେ ଆୟୋଜନ କରାଇବାରେ ସେ ହେଉଛନ୍ତି ଅନ୍ୟତମ ସଂଗଠନ ସଂପାଦକ । ତାଙ୍କର କେତୋଟି ଗଳ୍ପ କବିତା ଇଂରାଜୀ ଭାଷାରେ ଅନୂଦିତ । ବିଶେଷତଃ ଏସିଆ ମହାଦେଶର କବିତା ସଂକଳନରେ ତାଙ୍କର ଏକ କବିତାର ଇଂରାଜୀ ଅନୁବାଦ ପ୍ରକାଶ ପାଇଛି ।

ତାଙ୍କ ସାହିତ୍ୟ କୃତି ମାନଙ୍କ ମଧ୍ୟରେ ପାଟରାଣୀ, ଖାରୁଯୂଥିକା, ସେପାରି ପ୍ରିୟାର ଗାଁ ପ୍ରଭୃତି କବିତା ପୁସ୍ତକ, "କୁଆ କୋଇଲି" ବସନ୍ତ ଦୂରେ ଗଳ୍ପ ପୁସ୍ତକ ପ୍ରଭୃତି ବିଶେଷ ଉଲ୍ଲେଖଯୋଗ୍ୟ । ତାଙ୍କ ଲିଖିତ ଭୂମିକା ବିପ୍ଳବୀ କବି ପୂର୍ବଜନଙ୍କ ସମ୍ବନ୍ଧୀୟ

ପୁସ୍ତକ ୧୯୬୮ ମସିହାରେ ସୋଭିଏଟ୍ ଲ୍ୟାଣ୍ଡ ନେହେରୁ ପୁରସ୍କାର ଲାଭ କରିଛି । ସମଗ୍ର ଭାରତୀୟ ସାହିତ୍ୟର ତୁଳନାତ୍ମକ ଅଧ୍ୟୟନ କରି ଲେଖକ "ଚଳିତ ଶତାବ୍ଦୀର ଭାରତୀୟ ସାହିତ୍ୟ" ଶୀର୍ଷକ ଏକ ପ୍ରାମାଣିକ ଗ୍ରନ୍ଥ ରଚନା କରିଛନ୍ତି । ଟଲଷ୍ଟୟ ଓ ଗାନ୍ଧୀ ତାଙ୍କର ଏକ ଉଲ୍ଲେଖଯୋଗ୍ୟ ରଚନା । ତାଂକ ରଚିତ ଓଡ଼ିଆ ସାହିତ୍ୟର ଗତିପଥ, ଭାଷା ବିଜ୍ଞାନ ପରିଚୟ, ସମ୍ବାଦ ପତ୍ରେ, ଓଡ଼ିଶାର କଥା, ଏ କ୍ଷେତ୍ରରେ ମଧ୍ୟ ସ୍ମରଣୀୟ । ପ୍ରଜାତନ୍ତ୍ର ପ୍ରଚାର ସମିତି ପକ୍ଷରୁ କବି ଭାବରେ ସେ ପୁରସ୍କୃତ । ସେ ଉତ୍କଳ ସାହିତ୍ୟ ସମାଜର ଆଜୀବନ ସଭ୍ୟ । ଏହାଛଡ଼ା ସେ ଓଡ଼ିଶା ସାହିତ୍ୟ ଏକାଡେମୀ ପି. ଇ. ଏନ୍ ଏବଂ କେନ୍ଦ୍ର ସାହିତ୍ୟ ଏକାଡେମୀର ସଭ୍ୟ ଅଛନ୍ତି । ୧୯୫୫ ମସିହାରେ ସେ ଓଡ଼ିଶାର ପ୍ରଖ୍ୟାତନାମା ସାହିତ୍ୟିକ ଡକ୍ଟର କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ଦ୍ୱିତୀୟା କନ୍ୟା ଯଶୋଧାରାଙ୍କୁ ବିବାହ କରିଥିଲେ । ଡକ୍ଟର ମିଶ୍ର ବର୍ତ୍ତମାନ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗରେ ରେଭେନ୍ସା କଲେଜର ମୁଖ୍ୟ ଓଡ଼ିଆ ଅଧ୍ୟାପକ ଭାବେ ନିଯୁକ୍ତ ମାତ୍ର ୧୯୭୧ ମସିହାରୁ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ବର୍ତ୍ତମାନ ମୁଖ୍ୟ ଓଡ଼ିଆ ଅଧ୍ୟାପକ ଭାବରେ ଡେପୁଟେସନରେ ଅବସ୍ଥାପିତ ।

## * ମୁରାରି ମୋହନ ଜେନା

(ବିଂଶ ଶତାବ୍ଦୀ)

୧୯୩୪—

ମୁରାରି ଜେନାଙ୍କ ସମ୍ପର୍କରେ କହିବାକୁ ଯାଇ ଓଡ଼ିଶାର ବିଶିଷ୍ଟ ହାସ୍ୟରସିକ ଓ ବ୍ୟଙ୍ଗକାର ଫତୁରାନନ୍ଦ କହନ୍ତି—

ଜେନାକବି ମୁରାରିମୋହନ ଜେନା ପୁରା ହାମସାହିଆ ବସ୍ତି କବି । ଯେଉଁମାନେ କଟକର ଆଦିମ ଅଧିବାସୀ ବସ୍ତିବାଲାଙ୍କ ସଙ୍ଗେ ଘନିଷ୍ଠ ସମ୍ପର୍କ ରଖିନାହାନ୍ତି, ସେମାନେ ଜେନା କବିଙ୍କ କବି କୃତିର ଦର କଷାକଷି ନିର୍ଭୁଲ ଭାବରେ କରି ପାରିବେ ନାହିଁ । ପାରିପାର୍ଶ୍ୱିକ ଅବସ୍ଥା ଜଣଙ୍କ ଉପରେ ଯେ ଗଭୀର ପ୍ରଭାବ ପକାଇ ଥାଏ, ତାହା ସମସ୍ତେ ସ୍ୱୀକାର କରିବେ । ଜେନା କବି ଓଡ଼ିଆ ରେ ଦ୍ୱିତୀୟ ଶ୍ରେଣୀରେ ଏମ୍. ଏ. ପାଶ୍ କରିଥିଲେ ହେଁ ପାରିପାର୍ଶ୍ୱର ପ୍ରଭାବକୁ ନିଜ ଦେହରୁ ଝାଡ଼ି ଦେଇ ପାରି ନାହାନ୍ତି ।

ଯେତେବେଳେ ମୁରାରି ଛୁଆଟିଏ ହୋଇ କଅଁଳିଆ ବାଛୁରୀ ପରି ସାହି ଭିତରେ ଫୁର୍‌ଫୁରୁ ହୋଇ ଡେଉଁଥିଲା, ସେତିକି ବେଳୁ ମୁଁ ତା'ର ସ୍ୱଧର୍ମ୍ମୀ ପଣ ଭଲ ଭାବରେ ଜାଣି ପାରିଥିଲି । ମୋ ସାହି ଆଉ ତା ସାହି ଲାଗି ରହିଛି । ଏଣୁ ନିତି ଦେଖିବା ସମ୍ଭବ ହେଉଥିଲା ।

ଦିନେ ଜଣକ ପିଣ୍ଡାରେ ତାଆସ ଖେଳ ହେଉଥିଲା । ମୁଁ ସେଠାରେ ଦର୍ଶକ ଭାବରେ ବସିଥାଏ । ମୁରାରି ବାପା ତାଆସ ଖେଳୁଥାନ୍ତି । କେଉଁଠି ଡେଉଁଥିଲା କେଜାଣି, ଛୁଆ ମୁରାରି ଆସି ସେଠି ପହଞ୍ଚିଗଲା । ସଙ୍ଗେ ସଙ୍ଗେ ବାପାକୁ ଖେଳ ବତେଇବାରେ ଲାଗିଗଲା । ବାପା ଉପରେ ଚଢ଼ିଯାଇ ନାହିଁ ନାହିଁ ଏଇଟା ପକା, ନାହିଁ ନାହିଁ ସେଇଟା ପକା କହି ବ୍ୟତିବ୍ୟସ୍ତ କରି ପକାଇଲା । ବେଳେବେଳେ ବାପା ହାତକୁ ମାଡ଼ି ବସି ତାଆସ ଭିତରୁ ଖଣ୍ଡେ ଖଣ୍ଡେ ଟାଣିନେଇ ପକାଇ ଦେଉଥାଏ । କାନ ମୋଡ଼ି ଦେବାକୁ, ଖୁନ୍ଦାଟାଏ ଦେବାକୁ ଯିଏ ଯେତେ ଧମକେଇଲେ ବି ମୁରାରି ଟିକିଏ ଶୁଣିବ କାହିଁକି ? ବରଂ ତା' ବାପାକୁ ଭଲ ଖେଳଆସେ ନାହିଁ ବୋଲି ଆରପଟ ଭ୍ରୁକ୍ଟେଇ ଦେଉଛନ୍ତି କହି ବେଖାତିର ଭାବରେ ସମସ୍ତଙ୍କର ମୁକାବିଲା କଲା । ଫଳରେ ଉଦଣ୍ଡିଆ ଛୁଆଟା ଆଉ ଖେଳାଇ ଦେବନି କହି, ତା' ବାପା ଖେଳ ଭାଙ୍ଗିଦେଲେ ଓ ଛୁଆକୁ ତିରସ୍କାର କରି କହିଲେ—କି ଅଖାଡ଼ୁଆ ଛୁଆଟାରେ ! ମଣିଷକୁ କେଉଁଠି ଟିକିଏ ନିଶ୍ଚିନ୍ତରେ ବସେଇ ଦେବନି କି ଖେଳେଇ ଦେବନି । ମୁରାରି ନ ଶୁଣିଲା ପରି ସେଠାରୁ ଡିଆଁଟାଏ ମାରି ଦେଇ ଅନ୍ୟ କେଉଁଆଡ଼େ ପଳେଇ ଗଲା । ମୁଁ ତା' ବାପାକୁ କହିଲି—ତା'ର ହିହିତ ଏଇଥିରେ ଗଢ଼ା, ସେ ସେମିତି ସବୁଦିନେ ଉଦଣ୍ଡିଆ ରହିବ । ଯେଉଁଟାକୁ ସେ ଠିକ୍ ବୋଲି ଭାବିବ, ସମସ୍ତଙ୍କୁ ଠେଲି ପେଲି ସେଇଟା କରିଯିବ । ସେ ବୟସ୍କରେ ସେ ନରଭ୍ରେଡବନ୍ଧା ।

ସେଇ ଛୁଆ ମୁରାରି କ୍ରମେ ବଡ଼ ହେଲା, କଲେଜରେ ପଢ଼ିଲାବେଳେ ତେଜୁଆଳ ଗ୍ରୁଟ ଓ ଓଲୁଅ ତାଙ୍ଗ କାଗଜ କାଢ଼ି ବେପରୁଆ ଭାବରେ ସମାଜର ଗଣ୍ୟମାନ ଲୋକଙ୍କୁ ଗ୍ରୁଟେ ଗ୍ରୁଟେ ପକେଇଲା । ଶେଷରେ ସରକାରୀ ସ୍ୱୀକାରୀ କଲା । ତେବେ ବି ତାର ପୂର୍ବ ସ୍ୱଭାବ ଗଲାନି । ଗୋଟିଏ କିଛି ନୂଆ କାମ ଦେଖାଇବ, ସେଥିଲାଗି ଶ୍ରୀରାମଚନ୍ଦ୍ର ଭବନରେ ଦିନେ ଆଉ କେତେଜଣଙ୍କ ସହି ଆତ୍ମ ସମ୍ବର୍ଦ୍ଧନା କରି ବେଶ୍ ହୈ ଚୈ ସୃଷ୍ଟି କରାଇ ଦେଲା ।

ଏବେବି ସେମିତିଆ ଢଙ୍ଗ ଯାଇନି । କେତେବେଳେ ଭଗବାନଙ୍କୁ ଠିଆ ଫାଡ଼ି ଦେଲାଣି ତ, କାହାକୁ କହିଲାଣି କୋଉ ଶଳା ତୁମ ପିଠିରେ ପଡ଼ିବ । କେତେବେଳେ ବାଜି ପକେଇ କହୁଛି "ମୋ ନାଁରେ କୁକୁର ପାଳିବ ?" ବେଳେ ବେଳେ ଡାକ୍ତରଙ୍କୁ ଆକଟ କରି କହୁଛି—"ହେ ଡାକ୍ତର କୋରାମିନ୍ ବନ୍ଦ କର" ।

କଟକର ବିଭିନ୍ନ ସାହିରେ ବହୁ ପୁରାତନ କାଳରୁ ରାମଲୀଳା ହୋଇ ଆସୁଥିଲା । ସାହିମାନଙ୍କରେ କ୍ରମେ ତଥାକଥିତ ଶିକ୍ଷା ପେଲି ପଶିବାରୁ ରାମଲୀଳା ବିଚରା ଦରମରା ହୋଇ ଯାଇଥିଲା । ମଲା ଉପରେ ପହଞ୍ଚିଲା ବେଳକୁ ମୁରାରି ଦେଖି ପକେଇଲା । ହନୁମନ୍ତର ବିକ୍ରମ ନେଇ ସେ ତାକୁ ଉଦ୍ଧାର କଲା । ୩ ବର୍ଷ ଲାଗି ତାକୁ ଟାଣି କଲା । ଏବେ ରାମଲୀଳା ଆଗଠୁଁ ଅଧିକ ସୁଶୃଙ୍ଖଳିତ, ଅଧିକ ଚିତ୍ତାକର୍ଷକ, ତାହାରି ଯୋଗୁଁ ହୋଇ ଉଠିଛି ।

ମୁରାରିର ସବୁଠାରୁ ଭଲ ଗୁଣଟାଏ ପଛକୁ ବିକଶି ଉଠିଛି । ଏବେ ଯେ କୌଣସି କବି ମଲାବେଳେ ଏତିକି ହେଲେ ସାନ୍ତ୍ୱନା ପାଇବ ଯେ, ତା ପାଇଁ ଦି ଧାଡ଼ି ଲେଖିବାକୁ ଓ ତାର ଶବ ସତ୍କାର କରେଇବାକୁ ଜଣେ ହେଲେ ଯୁବକ ଅଛି । ସେ ହେଉଛି ଜେନାକବି ମୁରାରି ମୋହନ ଜେନା । ଭଗବାନ ଠିଆ ଫଡ଼ା କଥା ଭୁଲିଯାଇ ତାକୁ ଦୀର୍ଘାୟୁ କରନ୍ତୁ ।"

ବ୍ୟଙ୍ଗକାର ଫତୁରାନନ୍ଦ ମୁରାରି ମୋହନ ଜେନାଙ୍କ ଜୀବନ ଚରିତ ଓ ଚରିତ୍ରକୁ ଯେଉଁ ପ୍ରକାର ଭାବରେ ଟିକି ନଖି ଉଖାରି ଦେଖିଛନ୍ତି, ତାହା ସତ୍ୟାଶ୍ରୟୀ ଓ ଅବି-ସମ୍ବାଦିତ । ଫତୁରାନନ୍ଦ ଶ୍ରୀ ଜେନାଙ୍କର ପାଖ ପଡ଼ୋଶୀ ଓ ଶ୍ରୀ ଜେନାଙ୍କ ଜନ୍ମଠାରୁ ଏ ଯାବତ୍ ଫତୁରାନନ୍ଦ ତାଙ୍କୁ ଓ ତାଙ୍କ ପରିବାରକୁ ହାଡ଼େ ହାଡ଼େ ଚିହ୍ନିଥିବାରୁ ତାଙ୍କ ସମ୍ପର୍କରେ ଏ ପ୍ରକାର ମନ୍ତବ୍ୟ ପ୍ରକାଶ କରିବାକୁ ସେ କେବଳ ସଫଳ ହୋଇ ପାରିଛନ୍ତି ।

କଟକ ସହରର ଭଗତପୁର ବସ୍ତିରେ ୧୯୩୪ ମସିହା ଅକ୍ଟୋବର ୧୬ ତାରିଖ ଆଶ୍ୱିନ ଶୁକ୍ଳପକ୍ଷ ଷଷ୍ଠୀ ତିଥିରେ ଏକ ନିମ୍ନ ମଧ୍ୟବିତ୍ତ ପରିବାରରେ ମୁରାରିମୋହନ ଜେନାଙ୍କ ଜନ୍ମ, ଯଦିଓ ତାଙ୍କ ପୂର୍ବପୁରୁଷ ସଂଗ୍ରାମୀ ମାଟି ଖୋଳିଆର । ତାଙ୍କ ପିତାଙ୍କ ନାମ ଶ୍ରୀଯୁକ୍ତ ହରେକୃଷ୍ଣ ଜେନା ଓ ଜନ୍ମିତ ମାତାଙ୍କ ନାମ କାମିନୀ ଦେବୀ । ଶ୍ରୀ ଜେନାଙ୍କୁ ଯେତେବେଳେ ମାତ୍ର ଦୁଇବର୍ଷ, ସେତେବେଳେ ତାଙ୍କର ମାତା କାମିନୀ ଦେବୀଙ୍କର ମୃତ୍ୟୁ ହୋଇଥିଲା । ତାଙ୍କର ଦ୍ୱିତୀୟ ମା' ଅଛନ୍ତି । ତାଙ୍କ ନାଁ ସୁନ୍ଦରମଣି ଦେବୀ । ତାଙ୍କର ବୁଢ଼ୀ ମାଆ ଚନ୍ଦ୍ରମଣି ଦେବୀଙ୍କର ଲାଳନ ପାଳନରେ ଶ୍ରୀ ଜେନାଙ୍କର ଶୈଶବ ଅତିବାହିତ ହୋଇଥିଲା । ବୁଢ଼ୀ ମାଆଙ୍କର ଦେହାନ୍ତ ପରେ ପରେ ଦ୍ୱିତୀୟ ମାଆଙ୍କ ଗହଣରେ ଏ ପର୍ଯ୍ୟନ୍ତ ତାଙ୍କର ଘର ସଂସାର ଚଳାଇ ଆସିଛନ୍ତି । ଏହି ଦ୍ୱିତୀୟ ମା'ଙ୍କର ଗର୍ଭ ସମ୍ଭୂତ ଦୁଇଗୋଟି କନ୍ୟାଙ୍କୁ ଶ୍ରୀ ଜେନା ବିବାହ ଦେଇ ତାଙ୍କର ସୁଖ ଦୁଃଖ ସହିତ ଲାଗି ହୋଇ ଆସିଛନ୍ତି ଓ ଆସୁଛନ୍ତି ମଧ୍ୟ ।

ଗ୍ରାମ୍ୟ ପାଠଶାଳାରୁ ସୁଦକ୍ଷ ଶିକ୍ଷକ ମଥୁରାନନ୍ଦ ଦାସଙ୍କ ତତ୍ତ୍ୱାବଧାନରେ ପ୍ରାଥମିକ ଶିକ୍ଷା ଶେଷ କରି ତତ୍କାଳୀନ୍ ମୁସ୍‌ଲିମ ସେମିନାରୀ ଓ ବର୍ତ୍ତମାନର ସଫେକ୍ସ୍ ସେମିନାରୀ ସ୍କୁଲରେ ମାଧ୍ୟମିକ ଶିକ୍ଷା ଶେଷ କରି ଅଧୁନାତନ ଖ୍ରୀଷ୍ଟ କଲେଜ ଓ ତତ୍କାଳୀନ ଖ୍ରୀଷ୍ଟିୟାନ୍ କଲେଜ୍‌ରେ ଶ୍ରୀ ଜେନା ଆଇ. ଏ. ଶିକ୍ଷା ଲାଭ କରନ୍ତି ଓ ପରେ ପରେ ରେଭେନ୍‌ସା କଲେଜରୁ ଯଥାକ୍ରମେ ବି. ଏ. ଓ ଓଡ଼ିଆ ସାହିତ୍ୟରେ ଏମ୍ ଏ. ପାଶ୍ କରନ୍ତି । ତାଙ୍କର ପିତାଙ୍କର ଅବସ୍ଥା ସ୍ୱଚ୍ଛଳ ନ ଥିବାରୁ ଶ୍ରୀ ଜେନାଙ୍କୁ ଏମ୍.ଏ. ଶିକ୍ଷାଲାଭ ପର୍ଯ୍ୟନ୍ତ ଅତି ଅଭାବ ଅନାଟନ ମଧ୍ୟ ଦେଇ ଗତି କରିବାକୁ ପଡ଼ିଥିଲା । ଶ୍ରୀ ଜେନା ନିଜ ଗୋଡ଼ରେ ଛିଡ଼ା ହୋଇ ନିଜର ଦୃଢ଼ମନ ବଳ ଯୋଗୁଁ ଏମ୍. ଏ. ପାଶ୍ କରିବା ପର୍ଯ୍ୟନ୍ତ ସେ ଟିଉସନ କରି ଉଚ୍ଚ ଶିକ୍ଷା ଲାଭ କରି ପାରିଥିଲେ ।

ସେତେବେଳକାର ତାଙ୍କର ପରିବାରର ପରିସ୍ଥିତି ଏପରି ଦୁଷ୍ଟ ଓ ଦୈନ୍ୟ ଥିଲା ଯେ ଏମ୍.ଏ. ଶ୍ରେଣୀର ଶେଷ ପର୍ବର ପରୀକ୍ଷା ଦେଇ ଦ୍ୱିପ୍ରହର ବେଳେ,ଯେତେବେଳେ ଜେନା ଘରକୁ ଫେରନ୍ତି,ସେତେବେଳେ ଗରମ ଭାତ ଓ ତେନ୍ତୁଳି ଚକଟା ତାଙ୍କୁ ଖାଇବାକୁ ମିଳିଥିଲା । ତଥାପି ଦୃଢ଼ମନା ଶ୍ରୀ ଜେନାଙ୍କର ତିଳେ ଦୁଃଖ ବା ଶୋଚନା ନଥିଲା । ସେ ନିଜର ପ୍ରତିଜ୍ଞାରେ ଅଟଳ ରହି ଅତ୍ୟନ୍ତ ଧୈର୍ଯ୍ୟର ସହିତ ଦୁଃଖ କଷ୍ଟ ସହି ବାରମ୍ବାର ମୁକାବିଲା କରି ଚାଲିଥିଲେ ।

ସପ୍ତମ ଶ୍ରେଣୀରେ ପାଠ ପଢ଼ୁଥିବା ସମୟରେ ସେ କବିତା ଲେଖାଲେଖି ଆରମ୍ଭ କରିଥିଲେ ଏବଂ ମାଧ୍ୟମିକ ଶିକ୍ଷା ଶେଷ କଲା ଭିତରେ ବ୍ରହ୍ମପୁରରୁ ପ୍ରକାଶ ପାଉଥିବା ତାଙ୍କର ବହୁ କବିତା "ସେବକ" ପତ୍ରିକାରେ ପ୍ରକାଶ ପାଇଥିଲା ଓ ସେହି ସମୟରେ ମଧ୍ୟ ବହୁ ସାହିତ୍ୟ ସଭାମାନଙ୍କରେ ସେ ସ୍ୱରଚିତ କବିତାମାନ ପାଠ କରି ବିଶେଷ ପ୍ରଶଂଶିତ ହୋଇଥିଲେ । ଶ୍ରୀ ଜେନାଙ୍କ ସ୍କୁଲ ଜୀବନରେ ଯେଉଁ ସବୁ କ୍ଲବ ସଭା ଓ ମହାସଭାମାନ ଅନୁଷ୍ଠିତ ହେଉଥିଲା, ତଥା ତାପାଇଁ ସ୍କୁଲର ପୁରସ୍କାର ବିତରଣ ଉତ୍ସବ ମାନଙ୍କରେ ଯେଉଁ ଉଦ୍‌ବୋଧନୀ ସଙ୍ଗୀତମାନ ରଚନା କରିଥିଲେ, ଏବେର ପ୍ରତିଷ୍ଠିତ ସଙ୍ଗୀତ ଶିଳ୍ପୀ ତାଙ୍କର ସହାଧ୍ୟାୟୀ ଓ ବନ୍ଧୁବାସୀ ଶ୍ରୀ ଅଗଣୀ ପୃଷ୍ଟି ସେ ସମସ୍ତ ଗାନ କରୁଥିଲେ । ଶ୍ରୀ ଜେନା ଆଇ. ଏ. ଶ୍ରେଣୀରେ ପାଠ ପଢ଼ୁଥିଲା ବେଳେ "ବିଦ୍ୟୁତ୍" ନାମକ ଏକ ମାସିକ ସାହିତ୍ୟ ପତ୍ରିକାର ସମ୍ପାଦନା ଦାୟିତ୍ୱ ବହନ କରିଥିଲେ । ସେତେବେଳେ ତାଙ୍କର ଏହି ପତ୍ରିକା ପ୍ରକାଶନର ସହଯୋଗୀ ବନ୍ଧୁ ଥିଲେ କବି ସୁଧାଂଶୁ ରାଉତରାୟ ଓ ଗାଳ୍ପିକ ନଗେନ୍ ବେହେରା । ଯଦିଓ ଏହି ପତ୍ରିକାର ଅକାଳ ମୃତ୍ୟୁ ହୋଇଥିଲା, ତଥାପି ତତ୍କାଳୀନ ପରିବେଶରେ ଏ ପ୍ରକାର ପତ୍ରିକା ପ୍ରକାଶନର ସାହସିକ ପଦକ୍ଷେପ ଶ୍ରୀ ଜେନାଙ୍କୁ ଜଣେ ନିର୍ଭୀକ ସାହିତ୍ୟିକ ଓ ସଂଗଠକ ରୂପେ ପରବର୍ତ୍ତୀ କାଳରେ ପ୍ରତିଷ୍ଠିତ କରାଇଥିଲା । ପୁନଶ୍ଚ ଏହି ଆଇ. ଏ ଶ୍ରେଣୀରେ

ପଢ଼ୁଥିଲାବେଳେ ଶ୍ରୀ ଜେନା ବିଭିନ୍ନ ଚଳନ୍ତି ସମସ୍ୟା ଉପରେ ପ୍ରାୟ ପଚିଶ ଖଣ୍ଡି ଗୁଲ ପଇସିକିଆ ପୁସ୍ତିକାମାନ ବିଭିନ୍ନ ରାଗ ରାଗିଣୀରେ ଲେଖି ଜନପଦର କବି ଭାବେ ପ୍ରତିଷ୍ଠା ଲାଭ କରିଥିଲେ । ସବୁଠାରୁ ସେତେବେଳେର ଆଶ୍ଚର୍ଯ୍ୟ କଥା ହେଲା ଯେ, ଏହି ଗୁଲ ପଇସିକିଆ ବହିମାନ ଲେଖି ଓ ତାକୁ ହଜାରେ ହଜାରେ ସଙ୍ଖ୍ୟାରେ ଛାପି ଶ୍ରୀ ଜେନା ମଧ୍ୟ ସେଥିରୁ କିଛି ପଇସା ଉପାର୍ଜନ କରୁଥିଲେ,ଯାହାକି ତାଙ୍କ ଉତ୍ତରୋତ୍ତର ଶିକ୍ଷାଲାଭ ଓ ଦୁସ୍ଥ ପରିବାରର ଗୁଜୁରାଣ ମେଣ୍ଟାଇବାରେ ବିଶେଷ ସାହାଯ୍ୟ କରିଥିଲା । ସେତେବେଳକାର ସେହି ଗୁଲ ପଇସିକିଆ ପୁସ୍ତିକାମାନଙ୍କର ପ୍ରକାଶନ ମଧ୍ୟରେ ବାରୁଆଣୀ, ଶାଶୁ ଘର, ମାତାଙ୍କ ଉପଦେଶ, କଳା ଭ୍ରମର, ରଜ ଚଟାଉ, ଧାକୁଲେଇ କାହାଣୀ, ଦଶହରା ମଉଜ, କାଳିଆ ବୋଦା ରହସ୍ୟ, ହନୁମାନ ଜନ୍ମ, ମୁରାରି ଜଣାଣ, ମୁରାରି ସଙ୍ଗୀତ, ଝର ନାଲି ବଟିଆ, ଜୟ ମା' ଦକ୍ଷିଣେଶ୍ୱରୀ, ମାଢ ଚଉତିଶା, ରାମାୟଣ ଚରିତ, ବେଙ୍ଗବତୀ ଜନ୍ମ ଓ ଶ୍ରବଣ ଜନ୍ମ ପ୍ରଭୃତି ପ୍ରଧାନ । ବି. ଏ. ଶ୍ରେଣୀରେ ପାଠ ପଢ଼ୁଥିଲାବେଳେ ରେଭେନ୍‌ସା କଲେଜ ବିଦ୍ୟାର୍ଥୀ ସଂଘ ଦ୍ୱାରା ଆୟୋଜିତ କବିତା ରଚନା ପ୍ରତିଯୋଗିତାରେ ଶ୍ରୀ ଜେନା ପ୍ରଥମ ପୁରସ୍କାର ଲାଭ କରି ବିଶେଷ ପ୍ରଶଂସିତ ହୋଇଥିଲେ ଓ ସେହି ସମୟରେ ତାଙ୍କର ବହୁ କବିତା ଓଡ଼ିଶାର ବିଭିନ୍ନ ଦୈନିକ ତଥା ମାସିକ ସାହିତ୍ୟ ପତ୍ରିକାମାନଙ୍କରେ ପ୍ରକାଶିତ ହୋଇଥିଲା । ଏହି ବି. ଏ. ଶ୍ରେଣୀର ଛାତ୍ର ଥିବାବେଳେ ଶ୍ରୀ ଜେନାଙ୍କ ବଳିଷ୍ଠ ସଂପାଦନାରେ ସାହିତ୍ୟ ସମାଲୋଚନା ମୂଳକ ପତ୍ରିକା "ତେଜୁଲି ଗଛ" ପ୍ରକାଶ ପାଇ ଓଡ଼ିଆ ସାହିତ୍ୟର ସମାଲୋଚନା କ୍ଷେତ୍ରରେ ଏକ ନବଦିଗନ୍ତ ସୃଷ୍ଟି କରିଥିଲା । ପରେ ପରେ ଶ୍ରୀ ଜେନା ଏମ୍. ଏ. ପଢ଼ିବା ସମୟରେ "ଓଲୁଅ ଡାଙ୍ଗ ଓ ଯାଉଁଳି ବେତ" ଶିରୋନାମାରେ ସାହିତ୍ୟ ସମାଲୋଚନା ପତ୍ରିକାମାନ ମଧ୍ୟ ତାଙ୍କର ସମ୍ପାଦନାରେ ପ୍ରକାଶ ପାଇ ଓଡ଼ିଆ ସାହିତ୍ୟରେ ଏକ ଚମକପ୍ରଦ ଆଲୋଡ଼ନ ସୃଷ୍ଟି କରିଥିଲା ।

୧୯୫୭ ମସିହାରେ ଶ୍ରୀ ଜେନା ଓଡ଼ିଆରେ ଏମ୍. ଏ. ପାଶ୍ କଲା ପରେ ଆଇନ୍ ପାଠ ପଢ଼ି ସ୍ୱାଧୀନ ଜୀବନ ବିତାଇବାକୁ ତାଙ୍କର ପ୍ରବଳ ଇଚ୍ଛା ଥିଲେ ମଧ୍ୟ, ପରିବାରର ଅଭାବ ଅନାଟନ ତାଙ୍କୁ ଶତତ ବ୍ୟସ୍ତ, ବ୍ୟାକୁଳ ଓ ଚିନ୍ତାଗ୍ରସ୍ତ କରୁଥିବାରୁ ସେ ଆଉ ଆଇନ୍ ପାଠ ପଢ଼ି ପାରିଲେ ନାହିଁ ଓ ଚାକିରୀ ଅନ୍ୱେଷଣରେ ବିଭିନ୍ନ ଦପ୍ତରକୁ ଚାକିରୀ ପ୍ରାର୍ଥୀ ଭାବେ ଦରଖାସ୍ତମାନ ପ୍ରେରଣ କରିବାକୁ ଲାଗିଲେ । କିଛିଦିନ ଅନ୍ତରେ କଟକର ଅବସ୍ଥିତ ଥିବା କୃଷି ବିଭାଗରେ ଓ ଶ୍ରମ କମିଶନର ଅଫିସରେ ଚାକିରୀ ପାଇଁ ପରୀକ୍ଷା ଦେଇ ଆସିଲେ । କୃଷି ବିଭାଗରୁ କିରାଣୀ ଚାକିରୀ ପାଇଁ ତାଙ୍କୁ ନିଯୁକ୍ତି ପତ୍ର ମିଳିଗଲା । ଯେଉଁଦିନ ସେ କୃଷି ବିଭାଗରେ କିରାଣୀ ଚାକିରୀରେ ଯୋଗ ଦେବା ପାଇଁ ଯାଆନ୍ତି, ସେହିଦିନ ଶ୍ରମ କମିଶନରଙ୍କ ଅଫିସରୁ ଲେବର ଅଫିସର ଭାବେ ତାଙ୍କୁ ନିଯୁକ୍ତି

ପକ୍ଷ ମଧ୍ୟ ମିଳିଗଲା । ତେଣୁ ସେ ଆଉ କୃଷି ବିଭାଗରେ କିରାଣୀ ଚାକିରିରେ ଯୋଗ ନ ଦେଇ ଶ୍ରମ କମିଶନର ଅଫିସରେ ଶ୍ରମ ଅଫିସର ଭାବେ ୧୯୫୭ ମସିହା ଅକ୍ଟୋବର ପହିଲା ତାରିଖରେ ଯୋଗ ଦେଲେ । ବିଧିର ବିଧାନକୁ ଆନ କରିବ ବା କିଏ ? କିରାଣୀ ଚାକିରିରେ ଯୋଗ ଦେବାକୁ ଯାଉ ଯାଉ ତାଙ୍କୁ ଅଫିସର ଚାକିରି ମିଳିଗଲା । ଏହି ଶ୍ରମ ଅଫିସର ରୂପେ ଚାକିରିରେ ବାହାଲ ହେବା ପରେ ପରେ ତାଙ୍କୁ ଶ୍ରମ ବିଭାଗରୁ ପ୍ରକାଶ ପାଉଥିବା "ଶ୍ରମିକ" ମାସିକ ପତ୍ରିକାର ସମ୍ପାଦନା ଦାୟିତ୍ୱ ବହନ କରିବାକୁ ପଡ଼ିଲା । ସେ ଦୀର୍ଘ ୫ ବର୍ଷ ଧରି ଏହି ଶ୍ରମିକ ପତ୍ରିକାର ସମ୍ପାଦନା ଦାୟିତ୍ୱ ବହନ କରି ଶ୍ରମ ସମ୍ପର୍କିତ ବହୁ କବିତା, ଗଳ୍ପ ଆଲୋଚନାମାନ ଏହି ପତ୍ରିକା ମାଧ୍ୟମରେ ପ୍ରକାଶ କରିଥିଲେ ।

୧୯୬୮ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ଶ୍ରମ ସମ୍ପର୍କିତ ସାମାଜିକ ମଙ୍ଗଳ ବିଦ୍ୟାର ସ୍ନାତକୋତ୍ତର ଉପାଧି ଲାଭ କରିଥିଲେ । ଶ୍ରୀ ଜେନା ତାଙ୍କର କଲେଜ ଅଧ୍ୟୟନ କାଳରେ ତାଙ୍କର ଭଗତପୁର ବସ୍ତିରେ ନୈଶ ବିଦ୍ୟାଳୟ ପ୍ରତିଷ୍ଠା କରି ବସ୍ତିର କେତେକ ପିଲା ଓ ବୁଢ଼ାଙ୍କୁ ପାଠ ପଢ଼ାଇବାର ଅବୈତନିକ ଦାୟିତ୍ୱ ବହନ କରି ବହୁ ନିରକ୍ଷରଙ୍କୁ ସାକ୍ଷର କରାଇ ପାରିଥିଲେ । ପାଠପଢ଼ାରେ ହେଳା ନ କରିବା ପାଇଁ ସେତେବେଳେ ସେ ଗୀତ ଲେଖି, ସମସ୍ତଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ—

ବଡ଼ ଦୁରନ୍ତ କାଳ ବିଷମ
ଦେଶେ ଦେଖା ଦେଲା ଆସି
ଶିକ୍ଷକ ରହିଲେ ଲୋକ ଉପାସରେ
ପାଠ କୂଳ ଯିବ ଭାସିରେ
ଶୁଣ ଶୁଣ ମୋ ଭାଇ
ପାଠ ପଢ଼ା ହେଳା କର ନାହିଁ ।

ପୁଣି କଟକ ସହରରେ ଗୁଣ୍ଡାଉଡ଼ା ଜନିତ ପ୍ରତିବର୍ଷ ଘଟୁଥିବା ଦୁର୍ଘଟଣାରୁ ନିସ୍ତାର ପାଇବା ପାଇଁ ବନ୍ଧୁ ଗୁରୁଙ୍କ ଏକ ଶୋଭାଯାତ୍ରା ବାହାର କରାଇ ଗୁଣ୍ଡାଉଡ଼ା ସମ୍ପର୍କରେ ଯେଉଁ ଗୀତ ରଚନା କରି, ସହର ପରିକ୍ରମା କରି ସ୍ଥାନେ ସ୍ଥାନେ ସଭା କରୁଥିଲେ, ସେ ଗୀତର କିଛି ଅଂଶ ହେଲା—

"ସେ ପଟ ଗାଁର ବାରବାବୁ ପୁଅ
ଉଡ଼ାଇଲା ବନେ ଗୁଣ୍ଡ
ପଛେଇ ପଛେଇ ଚାଲୁ ଚାଲୁ ଦାଣ୍ଡେ

ଭଙ୍ଗା କୂପେ ଗଲ୍ସ ସେହ୍ନ ପଡ଼ିରେ
ଶୁଣ ଶୁଣ ମୋ ଭାଇ
ଘୁଡ଼ି ଉଡ଼ା ଖେଳେ ମାତ ନାହିଁ ।

ଯୁବାବସ୍ଥାରୁ ହିଁ ଶ୍ରୀ ଜେନା ଜପର ସାମାଜିକ ସେବା ମୂଳକ କାର୍ଯ୍ୟରେ ନିଜକୁ ନିୟୋଜିତ କରି ପାରିଥିଲେ, ଉପରଲିଖିତ ଏ ସମସ୍ତ ଘଟଣା ତାହାର ପ୍ରକୃଷ୍ଟ ପରିଚୟ ପ୍ରଦାନ କରିଥାଏ ।

ଶ୍ରୀ ଜେନାଙ୍କ ବଳିଷ୍ଠ ଉଦ୍ୟମରେ ତାଙ୍କର ଭଗତପୁର ବସ୍ତିରେ ପଲ୍ଲୀମଙ୍ଗଳ ପାଠାଗାର ଓ ମାତୃମଙ୍ଗଳ ଯୁବକ ସଂଘ ପ୍ରତିଷ୍ଠା ହୋଇଥିଲା । ଶ୍ରୀ ଜେନା ଏହି ପାଠାଗାର ଓ ଯୁବକସଂଘର ପ୍ରାଣ ପ୍ରତିଷ୍ଠାତା । ଏହି ପାଠାଗାର ଓ ଯୁବକସଂଘ ପ୍ରତିଷ୍ଠା କରି ଗ୍ରାମର ଜପର ସମସ୍ତଙ୍କ ସହଯୋଗୀତାରେ ସର୍ବାଙ୍ଗୀନ ଉନ୍ନତି ହୋଇପାରିବ, ସେ ତାର ବାର୍ତ୍ତାମାନ ମଧ୍ୟ ପ୍ରଚାର କରିଥିଲେ । ଏହି ଭଗତପୁର ବସ୍ତିରେ ରାମଲୀଳା ସମିତିକୁ ଜୀବନ୍ୟାସ ଦେବାରେ ଶ୍ରୀ ଜେନାଙ୍କ ଉଦ୍ୟମ ମଧ୍ୟ ସର୍ବାଗ୍ରେ ସ୍ମରଣୀୟ । ତାଙ୍କର ରଚିତ "ବାଲୀ ସୁଗ୍ରୀବ ଜନ୍ମ ଓ ହନୁମାନ ଜନ୍ମ" ରାମଲୀଳା ଗୀତିନାଟ୍ୟ ଭଗତପୁର ବସ୍ତିର ଯୁବକମାନଙ୍କ ଦ୍ୱାରା ବହୁବାର ଅଭିନୀତ ହୋଇଛି । ଏଠାରେ ସ୍ମରଣ କରାଯାଇପାରେ ଯେ, ବାଲୀ ସୁଗ୍ରୀବ ଜନ୍ମ ରାମଲୀଳା ନାଟକ ଚୌଦ୍ୱାରରେ ଅନୁଷ୍ଠିତ ହୋଇଥିବା ବିରାଟ ଶ୍ରମ ମେଳାରେ ଭଗତପୁର ରାମଲୀଳା ସମିତି ଦ୍ୱାରା ଅଭିନୀତ ହୋଇ ଉଚ୍ଚ ପ୍ରଶଂସିତ ହୋଇଛି ଏବଂ ତାଙ୍କ ଲିଖିତ "ଅଙ୍ଗଦ ଜନ୍ମ ରାମଲୀଳା ଗୀତିନାଟ୍ୟ ଏବେବି ଅଭିନୀତ ପ୍ରତୀକ୍ଷାରେ ରହିଛି ।

ସମାଜ ମଙ୍ଗଳ ଡିଗ୍ରୀ ଲାଭ କରିବା ପାଇଁ ତାଙ୍କର କଲିକତାରେ ରହଣୀ ସମୟରେ ସେ ନିଜକୁ ସେଠାକାର ବହୁ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନରେ ସାମିଲ କରିଥିଲେ ଓ ପ୍ରବାସୀ ଓଡ଼ିଆ ଗହଣରେ ଗୀତିନାଟ୍ୟ ଓ ନାଟକମାନ ମଞ୍ଚସ୍ଥ କରାଇ ସେମାନଙ୍କ ମନପ୍ରାଣରେ ଏକ ସାଂସ୍କୃତିକ ଅବବୋଧ ଓ ଚେତନା ଅଣାଇବାରେ ବିଶେଷ ସଫଳକାମ ହୋଇଥିଲେ । କଲିକତାରେ ପ୍ରତିଷ୍ଠିତ କେତେକ ଓଡ଼ିଆ ନୈଶ୍ୟ ବିଦ୍ୟାଳୟରେ ମଧ୍ୟ ମାସକୁ ଚାରି ପାଞ୍ଚଦିନ ଅବୈତନିକ ଭାବେ ସେ ଶିକ୍ଷାଦାନ କରୁଥିଲେ ଓ କଲିକତାର ବିଭିନ୍ନ ଅଞ୍ଚଳରେ ଅନୁଷ୍ଠିତ ଓଡ଼ିଆ ସାହିତ୍ୟ ସଭାମାନଙ୍କରେ ଭାଷଣମାନ ପ୍ରଦାନ କରି ନିଜକୁ ଜଣେ ବଶିଷ୍ଟ ବକ୍ତାଭାବେ ପରିଚିତ କରାଇ ପାରିଥିଲେ ।

ଉତ୍କଳ ସାହିତ୍ୟ ସମାଜ ପକ୍ଷରୁ ଅନୁଷ୍ଠିତ ବାଲକୃଷ୍ଣ କରଙ୍କ ସମ୍ପର୍କରେ ପ୍ରବନ୍ଧ ଲେଖି ପ୍ରଥମ ପୁରସ୍କାର ଲାଭ କରିଥିଲେ ।

ସଂପ୍ରତି ଶ୍ରୀ ଜେନା ଓଡ଼ିଶାର ସର୍ବ ବୃହତ୍ତ ଓ ସର୍ବ ପ୍ରାଚୀନ ସାହିତ୍ୟ ଅନୁଷ୍ଠାନ ଉତ୍କଳ ସାହିତ୍ୟ ସମାଜର ଦୀର୍ଘ ୭ ବର୍ଷ ଧରି ସମ୍ପାଦକ ଦାୟିତ୍ୱରେ ଅଛନ୍ତି । ଏହି ଛଡ଼ା କଟକ ରାମଲୀଳା ପ୍ରଚାର ସମିତିର ସଭାପତି, ରାମକୃଷ୍ଣ ପ୍ରଚାର ପରିଷଦ, ପ୍ରତିଭା ପୂଜା ପରିଷଦ, କାଲି କଲମ ଓ ସାମନ୍ତ ସିଂହାର ସାହିତ୍ୟ ସଂସଦର ପ୍ରାଣ ପ୍ରତିଷ୍ଠାତା ଓ ମୁଖ୍ୟ ବ୍ୟବସ୍ଥାପକ ଓ ନୃସିଂହନାଥ ସାଂସ୍କୃତିକ ପରିଷଦର କାର୍ଯ୍ୟକାରୀ ସଭାପତି ।

ଏ ପର୍ଯ୍ୟନ୍ତ ତାଙ୍କ ଲିଖିତ ପୁସ୍ତକମାନଙ୍କ ମଧ୍ୟରେ- କବିତା ପୁସ୍ତକମାନ ହେଲ ଖରା ଓ ଗ୍ରୀଷ୍ମ, ହେ ଡାକ୍ତର ଦୋରମିନ୍ ବନ୍ଦ କର, ମୋ ନାଁରେ କୁକୁର ପାଳିବ, ଡାକ ମୁଁ କହୁଛି ମୁରାରି ଜେନା, ଶୈଶବର ସ୍ୱପ୍ନ, ଭଗବାନ ମୁଁ ତୁମକୁ ଠିଆ ଫାଡ଼ି ଦେବି, ଉଣେଇଶଟି ଶ୍ରମ କବିତା, ବସନ୍ତର ନୂତନ ସଙ୍ଗୀ, ଆଜି ମୋର ଅଷ୍ଟମରେ ଶନି, ଚୁପକର, ମୁରାରି ଜେନାଙ୍କ ଶ୍ରେଷ୍ଠ କବିତା, ମୁରାରି ଜେନାଙ୍କ ଭକ୍ତି ସଙ୍ଗୀତ ଓ ଇଂରାଜୀ କବିତା Ode on Labour ଓ ସମାଲୋଚନା ପୁସ୍ତକମାନ ହେଲ— କବିଗୁରୁ ଉପେନ୍ଦ୍ର ଭଞ୍ଜ, ଓଡ଼ିଆ ସାହିତ୍ୟରୁ କିଛି, ଶ୍ରୀ ରାଧାକୃଷ୍ଣ, ସାହିତ୍ୟିକ ବାଲକୃଷ୍ଣ, ଓଡ଼ିଆ ସାହିତ୍ୟରେ ସବୁଜ ଯୁଗ, ନନ୍ଦକିଶୋର ସନ୍ଦେଶ । ସଙ୍କଳନ ଓ ସଂପାଦିତ ପୁସ୍ତକମାନ ହେଲ—ବିଚ୍ଛନ୍ଦ ସ୍ମରଣିକା, ପ୍ରାଣକୃଷ୍ଣ ସ୍ମରଣିକା, ଶାସ୍ତ୍ରୀ ସ୍ମରଣିକା, ଗୋଦାବରୀଶ ସ୍ମରଣିକା, ସାହିତ୍ୟିକ ଗୋଦାବରୀଶ ମହାପାତ୍ର, କବି ବାଲକୃଷ୍ଣ ପଟ୍ଟନାୟକ,ରାମାୟଣ ସମ୍ପର୍କରେ,ମାନସିଂହଙ୍କ ସମ୍ପର୍କରେ,ସାମନ୍ତ ସିଂହାରଙ୍କ ସମ୍ପର୍କରେ ସଭା ଓ ସାହିତ୍ୟ, ଗଡ଼ନାୟକଙ୍କ ସମ୍ପର୍କରେ, ହେ ଦୀନବନ୍ଧୁ, ହେ ଗୋପବନ୍ଧୁ, ପ୍ରଣୟ ପତର, ଝାଞ୍ଜରୀ ଦେବୀ ଜଣାଣ ମାଳା ମହାତ୍ମାଗାନ୍ଧୀ ଙ୍କ ଜୟ । ଶ୍ରମ ସଂପର୍କିତ ପୁସ୍ତକମାନ ହେଲ—ଶ୍ରମିକ ଓ ମାଲିକଙ୍କର ଜାଣିବା କଥା, ଶ୍ରମ ସମସ୍ୟା ସମ୍ପର୍କରେ, ଶ୍ରମ ଓ ଶ୍ରମିକ, ଶ୍ରମିକଙ୍କ ଏକାଙ୍କିକା, ଶ୍ରମିକର କାହାଣୀ, ଶ୍ରମିକର ସଙ୍ଗୀତ, ଶ୍ରମିକର କବିତା । ଜୀବନୀ ଗ୍ରନ୍ଥ ହେଲ—ଶ୍ରୀ ଶଙ୍କରାଚାର୍ଯ୍ୟ ।

ଏହାଛଡ଼ା ପ୍ରଜାତନ୍ତ୍ର ପ୍ରଚାର ସମିତି ଆୟୋଜିତ ବିଷୁବ ମିଳନ ପକ୍ଷରୁ ସେ ତାଙ୍କର କବିତା ରଚନା ପାଇଁ ପ୍ରମାଣ ପତ୍ର ପାଇଛନ୍ତି ।

୧୯୭୩ ମସିହାରେ ଶ୍ରୀ ଜେନାଙ୍କ ସାହିତ୍ୟିକ କୃତି ଓ କୀର୍ତ୍ତି ସଂପର୍କରେ ପ୍ରାୟ ପାଞ୍ଚ ଶହ ପୃଷ୍ଠାର ଏକ ପୁସ୍ତକ ପ୍ରକାଶ ପାଇଛି; ଯାହାର ଶିରୋନାମା ହେଲ "ମୁରାରି ଜେନାଙ୍କ ସଂପର୍କରେ"—ଯେଉଁଥିରେ ଓଡ଼ିଶାର ପ୍ରାୟ ୯୦ ଜଣ ପ୍ରବୀଣ ଓ ତରୁଣ ସାହିତ୍ୟିକ ତାଙ୍କର ନିବନ୍ଧମାନ ରଚନା କରିଛନ୍ତି । ଏହାଛଡ଼ା ଶ୍ରୀ ବିକ୍ରମ କେଶରୀ ବର୍ମା ଶ୍ରୀ ଜେନାଙ୍କ ସଂପର୍କରେ "ତୁମେ ବନ୍ଧୁ ଏକ ଅଗ୍ନି ଶିଖା" ଶିରୋନାମା ଏକ କବିତା ପୁସ୍ତକ ରଚନା କରି ସେହି ପୁସ୍ତକ ସନ୍ନିବେଶିତ ଏକ କବିତାରେ କହିଛନ୍ତି—

ତୁମେ ଏକ ରତ୍ନା ଅଛ ଭାଇ
ତୁମ ପରେ ଆଶ୍ରା ନେଇ
ଆଜି ଆମେ ଓଙ୍କଲୁ ମେଲଇ ॥୧॥

ନବାଗତେ ତୁମେ ଏକ ବଗ୍ରଛ ଭରସା
ନବୀନଙ୍କ ଚକ୍ଷେ ତୁମେ ତୋଳ ମଧୁ ଆଶା
ତୁମ ଦ୍ୱାର ସଦାବେଳେ ଖୋଲା
ଯେହୁ ଆସେ ଶୁଣେ ତବ କଥା ସ୍ନେହ ବୋଲା ॥୨॥

ଗୋଷ୍ଠି ଆମେ ହଣା ହଣି ହେଉ ଯେତେବେଳେ
ଉଭା ହୋଇ ବନ୍ଦ କର କେଡ଼େ ସାହସରେ
ତୁମେ ଅଛ ସଭିଙ୍କର ସଖା
ଧାଇଁ ଯାଅ କେହୁ ଜଣେ ବସିଥିଲେ ଏକା ॥୩॥

ସମସ୍ତଙ୍କ ଭାର ସହ ତୁମ ମନେ ଦୁଃଖ ନାହିଁ
ସଦା ଅଟେ ହସ ହସ ମୁଖ
ତମ ଚରଣରେ ତେଣୁ ନଇଁଯାଏ ମଥା ମୋର
ଯେଣୁ ତୁମେ ମସ୍ତ ରଞ୍ଜା ଏକ ॥୪॥

ତାହାପରେ ହରେକୃଷ୍ଣ ମହାପାତ୍ର ଶ୍ରୀ ଜେନାଙ୍କ ସମ୍ପର୍କରେ ଏକ ପୁସ୍ତକ "ଲାଲ ଗୋଲାପ ଓ ଧଳା ରୁମାଲ" ରଚନା କରି କହିଛନ୍ତି—

ଗର୍ଜି ଉଠେ ମଞ୍ଚପରେ ମୁଗର ମାରୁତ
ସ୍ନେହବାଏ ସ୍ନେହବାଏ ବୀର ମୁର୍ଦ୍ଧାର ଶ୍ୱାରତ
ଅପୂର୍ବ ଏ ବୁଲ୍ ବୁଲ୍ କବିତା ମଞ୍ଚରେ
ସାହିତ୍ୟ ଫୁଲ୍‌କାରେ ନାଚେ ଓଡ଼ଶୀ ଛାଞ୍ଚରେ
ଉଡା ପାଲ ଗଦା ପରେ ନାଗ ବଚା ଖେଳେ
ଝଙ୍କର କି ଫୁଲ କଣ ଝଲକେ ଗରଳେ
ଚମତ୍କାର କଥା କହେ ନାହିଁ ବାଡ଼ ବଚା
ସରସ୍ୱତୀ କୋଳେ ଡିଆଁ ମାରେ କି କବିତା
ଘନ ଘନ ତାଳି ବାଜେ ଢ଼ଇଁ ଜେନାକବି
ହୁଙ୍କାରେ ସେ କଟକୀ-ସଗେ କବିତା ଭୈରବୀ

କାଗଜର ଗଦା ଧରି ଜେନାକବି ନାଚେ
କଲମ ବର୍ଚ୍ଛାରେ ଆଗୁ—କବିତା ସେ ଖେଞ୍ଚେ
ପଦ ଯୋଖି ଜେନାକବି ବମ୍ ବମ୍ ହାଙ୍କେ
ଉଚ୍ଛନ୍ନ ରସିକ ଟୋକା ଯାଏ ଦୂର କାଙ୍କେ
ନୂଆ କବିତା ଛୁଁ କରେ ଜେନାକବି ସ୍ୱରେ ।

\+ + +

ପୁନଶ୍ଚ ହରେକୃଷ୍ଣ ମହାପାତ୍ରଙ୍କ ରଚିତ ଜେନାଙ୍କ ସମ୍ପର୍କରେ ଆଉ ଏକ ଇଂରାଜୀ କବିତା ପୁସ୍ତକ ହେଲା—

"Blood & Beauty", ଯେଉଁଥିରେ କି, ଶ୍ରୀ ଜେନାଙ୍କ ସମ୍ପର୍କରେ ସେ କହିଛନ୍ତି—

You are the popular poet amoung the mass
Oh young poet Murari,
How pleasant is your dazzling pen
That muses the smile and sorrow of
Suffering men,
You are known, of course as
'The Jena-Kabi'
Writing of poem's your
Wonderful hobby.

\+ + +

Dawn of a new era for the nation sake
Your poems are a challenge
And ever awake.
At this present moment
You are the moving monument
of modern Orissa Culture,
Your thoughts are above

Your fame you do claim
That inspires us all with a radiant Flame

\+ +

You have given us a clarion call
At the advent of a tragic social fall
To raise the standard of life
    and living of teeming millions
Lo ! poor and pauper
    who live amidst gloom and suffer ;
You are eminent poet of first class repute
How charming is your pen,
Oh my comrade !
Your courageous challenge is a burning spark
The beauty of your poems bears
'Murari—Trade mark'

\+ + +

Oh my young friend dear,
I file my jealousy against you here,
My words may be baloons of vapour
I put it in my pen and paper,
You look into man's Social woe
May he be your friend or foe
You have the dignity and quality
May I not borrow
You stand by every poet and artist
At the time of death and sorrow.

ଓଡ଼ିଶାର ଜଣେ ଆଧୁନିକ ତରୁଣ କବି କେନାମଣି ଲକ୍ଷ୍ମୀକାନ୍ତ, ମୁରାରି କେନାଙ୍କ ସମ୍ପର୍କରେ ତାଙ୍କର ଏକ କବିତା ପୁସ୍ତିକା "ନିର୍ମାଣର ମୋର ପ୍ରିୟ ସଂଗ୍ରାମୀ ଶିଳ୍ପୀଙ୍କୁ" ପ୍ରକାଶ କରି ସେଥିରେ କହିଛନ୍ତି—

"ଯାହାଙ୍କ ସ୍ୱପ୍ନର ନିହାଣରୁ
ସୃଷ୍ଟିର କୋଟି ସୂର୍ଯ୍ୟ ଜନ୍ମ ନିଏ
ପ୍ରଚଳିତ ଭ୍ରଷ୍ଟାଚାର୍ ଓ ଦୁର୍ନୀତିର
ତମସାକୁ ଆମ ଜନ୍ମ ଜୀବନରୁ
ଧ୍ୱଂସ କରିବା ପାଇଁ
ଆଲୋକର ବାର୍ତ୍ତା ଯିଏ ବାଢ଼େ
ଭୁଲି ଯାଅନା ବନ୍ଧୁ, ନିର୍ମାଣର ସେଇ ପ୍ରିୟ
ପ୍ରିୟତର, ପ୍ରିୟତମ ଶିଳ୍ପୀଙ୍କୁ
ମୋ ଦେଶର ଖ୍ୟାତାନାମା କବି, ମୁରାରି ଜେନାଙ୍କୁ
ଯା'ର ଉଦାତ୍ତ ଉଚ୍ଚାରଣରେ
ଜୀବନ ବିଶ୍ୱାସ ଭରା ଗୀତ ଗାଏ
ହସ ଯାହାର ବଳିଷ୍ଠ
ଦୁଃଖର ବୋଝ ନେଇ ଯେ ହସିପାରେ
ଅନ୍ୟର ଲୁହରେ ଯେ ନିଜକୁ
ଅଶ୍ରୁସିକ୍ତ କରିପାରେ
ନିଜର ବଳିଷ୍ଠ ମାନବ ପ୍ରୀତିରେ
ଭୁଲି ଯାଅନା ବନ୍ଧୁ
ନିର୍ମାଣର ସେଇ ପ୍ରିୟ ସଂଗ୍ରାମୀ ଶିଳ୍ପୀଙ୍କୁ
ମୋ ଦେଶର ଖ୍ୟାତାନାମା କବି, ମୁରାରି ଜେନାଙ୍କୁ
କାଠ ହୁଣା ଚଢ଼େଇଟି ପରି
ସୃଜନୀର ଆହ୍ୱାନରେ ଯେ
ତିଳ ତିଳ ନିଜକୁ ଉତ୍ସର୍ଗ କରି
କିଛି ପାଇନି ଏ ଜାତିଠାରୁ
ପ୍ରବଳ ପ୍ରାଣମୟତାକୁ ଭ୍ରଷ୍ଟ ବା
ନଷ୍ଟ କରନା ତୁମେ ?
ମୁଁ ଦୃଢ଼ କଣ୍ଠରେ ସ୍ୱୀକାର କରେ
ସେ ହେଉଛନ୍ତି···
ଚିର ଯୌବନର ପ୍ରତୀକ
ଉନ୍ନତତର ଜୀବନ ପାଇଁ
ସେ ଯେ ଏକ ସଂଗ୍ରାମର ଅନିର୍ବାଣ ଦୀପ ଶିଖା
ସେ ଏମିତି ଜଳୁ, ଚିର ଆଲୋକିତ କରୁ ।

ସମାଜରେ ପୂଜ୍ୟପୂଜାର ଯେଉଁଠି ଅବହେଳା ଓ ଅଭାବ ଦେଖା ଦେଇଛି, ଶ୍ରୀ ଜେନା ସେହିମାନଙ୍କ ବିରୁଦ୍ଧରେ ନିଜର ଶାଣିତ ବାକ୍ୟବାଣ ପ୍ରୟୋଗ କରିଛନ୍ତି, ମୂଳରୁ ଚୂଲ ଯାଏ ସୁଧାରିବା ପାଇଁ । ସେଥିପାଇଁ କବି ମୁରାରି ଜେନା ନାମକ ଏକ କବିତା ପୁସ୍ତିକାରେ ଆଡ଼୍‌ଭୋକେଟ୍ ସୁରେଶ ଚନ୍ଦ୍ର ମହାରଣା ତାଙ୍କ ସମ୍ପର୍କରେ କହିବାକୁ ଯାଇ କହିଛନ୍ତି—

"ପୂଜ୍ୟ ପୂଜାର ଅବହେଳା ଯୋଗୁଁ
ଏଇ ଦେଶେ ଭାଇ ଯେପରି ଚାଲିଛି
ମନ ମନ୍ଥନ ପାଲି..........
ଜେନା କବି ହାତେ ହାମର ଧରିଛି
ଭାଙ୍ଗିବା ପାଇଁ ଜବରଦସ୍ତ
ପୂଜ୍ୟ ପୂଜାର ପଡ଼ିଅଛି ଯେଉଁ ତାଲି ।"

ସାଧାରଣତଃ ବାସ୍ତବବାଦୀ ଘଟଣାଗୁଡ଼ିକ ନେଇ ମୁରାରି ଜେନାଙ୍କ କବି ପ୍ରାଣ ଉଚ୍ଛ୍ୱଳ ଓ ଉନ୍ମନ ହୋଇ ଉଠିଥିଲେ ମଧ୍ୟ ଜ୍ୟୋତିଷ ସମ୍ପର୍କୀୟ ଗାଥା ଗୀତିକୁ ନେଇ ତାଙ୍କର କବିତା ରଚନା ଓଡ଼ିଆ ଜ୍ୟୋତିଷୀ କବିତା ରାଜ୍ୟରେ ଏକ ନୂତନ ଯୁଗାନ୍ତର ସୃଷ୍ଟି କରିଛି । ତାଙ୍କର ଜ୍ୟୋତିଷୀ ଘଟଣା ସମାବେଶରେ ପ୍ରକାଶିତ କବିତା "ଆଜି ମୋର ଅଷ୍ଟମରେ ଶନି" ଓଡ଼ିଆ ସାହିତ୍ୟରେ ଏକ ଚମକ୍‌ପ୍ରଦ ସୃଷ୍ଟି । ଜ୍ୟୋତିଷ ଶାସ୍ତ୍ରର ଜଟିଳ ବିଷୟବସ୍ତୁକୁ କବିତା ମାଧ୍ୟମରେ ସହଜ ସରଳ ଓ ସାବଲୀଳ ଭାଷାରେ ପ୍ରକାଶ କରିବାରେ ଶ୍ରୀ ଜେନା ଏ କ୍ଷେତ୍ରରେ ଅଗ୍ରଗାମୀ ଓ ଅପ୍ରତିଦ୍ୱନ୍ଦ୍ୱୀ ମଧ୍ୟ । ମାସିକ ଜ୍ୟୋତିଷୀ ପତ୍ରିକା 'ଭାଗ୍ୟଲିପି' ପୃଷ୍ଠାରେ ତାଙ୍କର ଧାରାବାହିକ ଭାବେ ଜ୍ୟୋତିଷୀ କବିତାମାନ ପ୍ରକାଶ ପାଇ ପତ୍ରିକା ଭାଗ୍ୟଲିପିକୁ କି ପ୍ରକାର ଲୋକପ୍ରିୟ କରିଥିଲା, ସେ ସମ୍ପର୍କରେ ଭାଗ୍ୟଲିପିର ସମ୍ପାଦକ ଶ୍ରୀ ନିମାଇଁ ବାନାର୍ଜୀ "ଜ୍ୟୋତିଷୀ କବି ମୁରାରି ଜେନା" ଶିରୋନାମାରେ ଏକ ପୁସ୍ତକ ରଚନା କରି ତାଙ୍କ ସମ୍ପର୍କରେ କହିଛନ୍ତି—

"ସେ ଦିନର ଏକ ଘୂମନ୍ତ ସନ୍ଧ୍ୟା । ଏଥି ଭିତରେ ଜ୍ୟୋତିଷ ପ୍ରେମୀ ଅଗ୍ରଜ କବି ମୁରାରି ଜେନାଙ୍କ ସହ ପୂର୍ବରୁ ଜ୍ୟୋତିଷ କବିତାର ଚର୍ଚ୍ଚା ସମ୍ପର୍କରେ ଯେଉଁ ଆଲୋଚନା ହୋଇଥିଲା, ତାହା ରୂପ ନେଲା ଏକ ଆକସ୍ମିକ ଦୁର୍ଘଟଣା ଭିତରେ । କବିଙ୍କ ଧର୍ମପତ୍ନୀ ଶ୍ରୀମତୀ ଶ୍ରୀକାମଣି ଜେନା ଏଥି ଭିତରେ ଅସୁସ୍ଥ ହୋଇ ପଡ଼ିଲେ, ଭୟାନକ ଅସୁସ୍ଥ । ଜ୍ୟୋତିଷୀ ପ୍ରେମୀ କବି ନିଜର ବିଛା ରାଶି ଓ ଅଷ୍ଟମରେ ଗୋଚରରେ ଶନି ଚାଲୁଥିବାର ଶୁଣିଲେ । ତେଣୁ ନିଜ ସ୍ତ୍ରୀଙ୍କର ସାଂଘାତିକ ଅସୁସ୍ଥତା ଭିତରେ କବି ଖିଅ

ଖୋଜି ଖୋଜି ଯେଉଁ ପଦ ପାଇଥିଲେ ତାହାହିଁ ହେଲ ଭାଗ୍ୟଲିପି ଅଗଷ୍ଟ '୧୭୩ ସଂଖ୍ୟାରେ ଜ୍ୟୋତିଷ କବିତାର ପ୍ରଥମ ଅର୍ଘ୍ୟ ମୁରାରି ଜେନାଙ୍କର "ଆଜ ମୋର ଅଷ୍ଟମରେ ଶନି" । ମୋର ମନେ ହୁଏ ଶ୍ରୀମନ୍ତ ଜେନା ଯଦି ଏ ଭଳି ଏକ ସାଂଘାତିକ ପରିସ୍ଥିତିରେ ଶଯ୍ୟାଶାୟୀ ହୋଇ ସାଲାଇନ୍ ବୋତଲ ବାହ୍ୟମୀ ହୋଇ ନ ଥାନ୍ତେ, ତେବେ ମୋର ଜ୍ୟୋତିଷରେ କବିତାର ଚିନ୍ତା ଦୋଧହୁଏ ଆଜି ଯାଏ ଚିନ୍ତ ପାଇ-ଥାନ୍ତାକି ନାହିଁ ସନ୍ଦେହ । ତେଣୁ ମୋର ଚିନ୍ତା ସେହି ସନ୍ଧ୍ୟାର ଅନ୍ଧକାର ଅପସରି ଯିବା ପୂର୍ବରୁ ଚିନ୍ତ ପାଇଲା ମୁରାରିବାବୁ ଭୂଲୀରେ । ଜ୍ୟେଷ୍ଠା ବରିଷ୍ଠ ରାଶିରେ ଦୁର୍ଯୋଗ ତା'ପରେ ମାଡ଼ି ଆସିଲା କବିତାର ବନ୍ୟା ।

ପ୍ରଥମେ ପ୍ରଥମେ ଯେତେବେଳେ ଜ୍ୟୋତିଷ କବିତାମାନ ମୁଁ ଭାଗ୍ୟଲିପିରେ ପ୍ରକାଶ କଲି, ସେତେବେଳେ ବହୁ ପାଠକ ସେମାନଙ୍କ ଅନ୍ତର ଉକ୍ତ ଭାଗ୍ୟଲିପି ପ୍ରତି ଶ୍ରଦ୍ଧା ନିବେଦନ କରିବା ସଙ୍ଗେ ସଙ୍ଗେ ମୋତେ ସମ୍ପାଦକ ଭାବରେ ଓ ମୁରାରି ଜେନାଙ୍କୁ କବି ଭାବରେ ବହୁ ଅଭିନନ୍ଦନ ଜଣାଇଲେ । ମାତ୍ର କେତେକ ନ୍ୟସ୍ତ ସ୍ୱାର୍ଥ ବ୍ୟକ୍ତି ଯେଉଁମାନଙ୍କର ବ୍ୟକ୍ତିଗତ ଚରିତ୍ର ହେଲା ଯୁଗେ ଯୁଗେ ଭଲକୁ ଖଣ୍ଡିଆ କରିବା ଓ ପରେ ଚିନ୍ତା ପଡ଼ିବା, ସେମାନେ ଏହାର ସମାଲୋଚନା କଲେ । କେତେକ ଜ୍ୟୋତିଷୀ ବନ୍ଧୁ ଆତଙ୍କିତ ହୋଇ ମତ ଦେଲେ ଯେ କବିତା ଛାପିବା ଦ୍ୱାରା ଭାଗ୍ୟଲିପି ପୃଷ୍ଠାର ଯଥୋଚିତ ସଦୁପଯୋଗ ହୋଇ ପାରୁନାହିଁ । ଅବଶ୍ୟ ସମ୍ପାଦକ ହିସାବରେ ମୁଁ ବେଳେ ବେଳେ ଭାଙ୍ଗି ପଡ଼ିବାର କଥା, ମାତ୍ର ସ୍ୱର୍ଗି ପଛେ ପଛେ ଦିନ ଭଲ ସମାଲୋଚନା ପରେ ବହୁ ପାଠକଙ୍କ କବିତା ପ୍ରକାଶ ଯୋଗୁଁ ଅତ୍ୟନ୍ତ ଉତ୍ସାହ ବାଣୀ ମୋତେ ଆହୁରି ଦୃଢ଼ ମନବଳ ଦେଉଥାଏ । ମୁରାରିବାବୁ ଏ ସବୁ ଶୁଣି ଶୁଣି ଭାଙ୍ଗି ନ ପଡ଼ି ମୋତେ ଆହୁରି ସାହସ ଦେଇ କହୁଥାଆନ୍ତି—"ଏଥର ଯଦି କବିତା ସମସ୍ତଙ୍କ ମନକୁ ନ ପାଇବ, ତେବେ ମୁଁ କଲମ ଛାଡ଼ି ଦେବି ।" ଯା' ହେଉ କିଛି ଦିନ ପରେ ଦେଖିଲି ଯେ ସମସ୍ତେ ଏକ ମନରେ ଭାଗ୍ୟଲିପିର ଏ ବିଭାଗ ପ୍ରତି ଆକୃଷ୍ଟ ହେଲେ । ବିଶେଷ କରି ବରିଷ୍ଠ ଲେଖକମାନଙ୍କ ଠାରୁ ଏ ମର୍ମରେ ବ୍ୟକ୍ତିଗତ ହୃଦୟସ୍ପର୍ଶୀ ମନ୍ତବ୍ୟମାନ ମୋତେ ଆହୁରି ଉତ୍ସାହିତ କଲା ।

ପୁନଶ୍ଚ ୧୯୭୪ ମସିହା ଜୁଲାଇ ସଂଖ୍ୟାରେ ମୁଁ ଭାଗ୍ୟଲିପିରେ କବିତା ପ୍ରକାଶନ ବନ୍ଦ କରି ପାଠକ ମାନଙ୍କର ମନୋଭାବ ପରୀକ୍ଷା କରିବାକୁ ଯେତେବେଳେ ଚାହିଁଲି, ସେତେବେଳେ ବହୁ ସଂଖ୍ୟାରେ ପ୍ରତିବାଦ ଚିଠି ପାଇଲି "କବିତା କାହିଁ ? ଏଥର ସଂଖ୍ୟାରେ ମୁରାରି ଜେନାଙ୍କ କବିତା ଗଲା କୁଆଡ଼େ ? ଏଥିରୁ ପରିଷ୍କାର କବିତାର ଉପାଦେୟତା ବୁଝା ପଡ଼ିଲା । ଶନି ପରାସ୍ତ ହେଲେ । ଆଶ୍ଚର୍ଯ୍ୟର କଥା ନାସିକା କୁଞ୍ଚନ କରୁଥିବା ବ୍ୟକ୍ତିଙ୍କର ଏଇ କବିତା ପୁଣି ହେଲା ଅତି ଆଦରଣୀୟ ।"

ଏହାଛଡ଼ା ନାଟ୍ୟକାର ଶ୍ରୀ ଗୋଲକ ଚନ୍ଦ୍ର ମହାନ୍ତ ଶ୍ରୀ ଜେନାଙ୍କ ସମ୍ପର୍କରେ ଯେଉଁ "ଜେନା କବି ରୂପକ" ଲେଖି ପୁସ୍ତକ ପ୍ରକାଶ କରିଛନ୍ତି, ତାହା ଏ କ୍ଷେତ୍ରରେ ବିଶେଷ ଉଲ୍ଲେଖଯୋଗ୍ୟ ।

ରାମକୃଷ୍ଣ ପ୍ରିଣ୍ଟର ପରିଷଦର ମୁଖ୍ୟ ବ୍ୟବସ୍ଥାପକ ରୂପେ ରାମକୃଷ୍ଣ ପ୍ରଗ୍ରର ପରିଷଦ' ପ୍ରକାଶିତ ଶ୍ରୀରାମ ଓ ଶ୍ରୀକୃଷ୍ଣ ସମ୍ପର୍କରେ ଯେଉଁ ବାର ଖଣ୍ଡି ପୁସ୍ତକ ଓଡ଼ିଶାର ଧାର୍ମିକ ଓ କୃତବିଦ୍ୟ ଲେଖକମାନଙ୍କ ଦ୍ୱାରା ଲିଖିତ ହୋଇଛି, ଶ୍ରୀ ଜେନା ତାହାର ସମ୍ପାଦନା ଓ ସଙ୍କଳନ କରି ଓଡ଼ିଆ ଭକ୍ତି ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିବାରେ ଯେ ଏକ ଅଗ୍ରଗାମୀ ଭୂମିକା ଗ୍ରହଣ କରିଛନ୍ତି, ଏହା ନିଃସନ୍ଦେହ ।

କବି, ଗୀତିକାର, ସମାଲୋଚକ, ସୁବକ୍ତା ଓ ପ୍ରାବନ୍ଧିକ ଶ୍ରୀ ଜେନା ୧୯୫୯ ମସିହା ମାର୍ଚ୍ଚ ୧୨ ତାରିଖରେ କଟକ ଓଇସାହିସ୍ଥ ବିଶିଷ୍ଟ ଜଙ୍ଗଲ କଣ୍ଟ୍ରାକ୍ଟର ଶ୍ରୀ ଭବଗ୍ରାହୀ ସିଂହଙ୍କ ଜ୍ୟେଷ୍ଠା କନ୍ୟା ସଙ୍ଗୀତଜ୍ଞା ଓ ଲେଖିକା ଶ୍ରୀମତୀ ଶ୍ରଦ୍ଧାମଣି ଓରଫ୍ ସଧବିନ୍ଦାଙ୍କୁ ବିବାହ କରିଥିଲେ । ଉଭୟେ ସମ୍ପ୍ରତି ଦୁଇଟି ସନ୍ତାନ ଓ ତିନୋଟି ସନ୍ତତିର ଜନକ ଓ ଜନନୀ । ଏହି ବିବାହ ପରେ ପରେ ନିଜ ଦୁଃସ୍ଥ ଜୀବନର ପରିଚର୍ଯ୍ୟା କରି ତାଙ୍କ ସହଧର୍ମିଣୀଙ୍କୁ ଲକ୍ଷ୍ୟ କରି ଯେଉଁ ଜୀବନ ସଙ୍ଗୀତ କବିତା ଶ୍ରୀ ଜେନା ରଚନା କରିଥିଲେ, ତାହା ମଧ୍ୟ ଏ କ୍ଷେତ୍ରରେ ବିଶେଷ ପ୍ରଣିଧାନ ଯୋଗ୍ୟ । ସେ 'ଜୀବନ ସଙ୍ଗୀତ' କବିତା ହେଲା—

"ଯାହାର ଗୃହରୁ ନଡ଼ା ଉଡ଼ିଯାଏ ପବନରେ
ଯାହାର ଗୃହରୁ ପୋଷେ ପୋଷେ ପୁଣି ଗଳେ ପାଣି
ତମେ କିଆଁ କହ ଶ୍ରଦ୍ଧାମଣି ଗୋ
ତାହାରେ ବରିଲ ଜାଣି ଜାଣି ? ?
ପରାଣପତିର ଆସନେ ତାହାକୁ ବସାଇଲ
ଜୀବନର ଯାହା ସଞ୍ଚିତ ଧନ
ତନୁ ଅପଘନ
ତାହାର ଧିଆନେ ଆପଣାରେ ଆପେ ଖସାଇଲ
ଦୁର୍ଗତ ପୁଣି ଦୁଃସ୍ଥ ଭ୍ରମର ପରାଣ ପ୍ରିୟକୁ
ଭୁଲାଇ ଭୁଲାଇ ଜୀବନରେ ଖାଲି ହସାଇଲ
କେଉଁ ଧନୀମାନୀ ବିଦେଶ ବାହୁଡ଼ା ଶିକ୍ଷିତ ଯୁବାକରେ
ପତିର ଆସନେ ବରିଥିଲେ
ସୁଖରେ ସୁଖରେ ବିତାଇ ଥାଆନ୍ତ ଜୀବନଟା ।

ଦୁଃଖ ଦୁଅନ୍ତା ସ୍ୱପ୍ନ ତୁମର ଜୀବନରେ
ବଡ଼ ଭୁଲ୍ କଲ, ବଡ଼ ଭୁଲ୍ କଲ
ମୋ ଭଲ ନରେଖ ବରଣରେ
ମୋତେ ପୁଣି ପଢ ଆସନରେ
ଏଠି ପାଇବନି ସରପୁଲି ଗଜା
ମାଛ ମାଉଁସର ନାଇଢ ଦାଲମା ନାଇଢ ଝୋଲ
ଏଇଠି ପାଇବ ଶାଗ ଖରଡ଼ାରେ
ମୋଟା ବଗଡ଼ାର ପଖାଳ ବୋର
ଆମ ପଖାଳର ସକାଳ ଖିଆ
ତମକୁ ତ ଭଲ ଲାଗିବ ନାହିଁ
ଗୋଟି ଗୋଟି ଏହି କଥାକୁ ଜାଣି
କପର ମୋହରେ ବରଣ କର ?
ମୋହର ପାଖକୁ ଆସିଲ ଧାଇଁ ??
ଭଲ କର ଜ.ଣ ବାଣୀଦେବୀର ମୁଁ
ପୂଜକ ପାଠକ, ଆଜ୍ଞାବହ
ମୋହଠାରେ ନାହିଁ ଲକ୍ଷ୍ମୀ କରୁଣା
ସେତେବେଳେ ସଖି କହ ଗୋ କହ ? ?
ତମ ଫରମାସ ତମର ମାଗୁଣି
ପାରିବ ନାହିଁ ମୁଁ ତୁଲାଇ ତାହା
ସେତେବେଳେ କହ······? ?
ତମର ଜୀବନେ ଫୁଟି ଫୁଟିବନି
ଜୀବନ ସନ୍ଧ୍ୟା ?
କେବଳ ଆନ୍ଧା ! !
ଦେଇ ପାରିବନି କିଛି ମୁଁ ତୁମକୁ
ଏଇ ଜୀବନରେ, ତମର ମୁହଁ ଯେ ଦୁଷ୍ଟ ନାହିଁ
ତେଣୁ ଗୋଟେ କଥା
ମାନସ ମୁକୁରେ ନାଚୁଛି ଆଜି
ଜୀବନର ଯେତେ କରୁଣା ଗୀତରେ
ତୁମେ ଯଦି ସଖୀ ନଯିବ ଭିଜି
ତେବେ ତୁମେ ଯାଇଁ ବୁଝିବ ସଜନୀ
ଏଇ ଜୀବନର ମୂଲ୍ୟ ସାର

ସେତେବେଳେ ଯାହିଁ ହେଲେ ହୋଇପାରେ
ତମ ଜୀବନର କଣ୍ଣଧାର ।"

ଧର୍ମପତ୍ନୀ ଶ୍ରୀମତୀ ଶ୍ରଦ୍ଧାମଣି ଏଇ କବିତାର ମର୍ମକୁ ଅଙ୍ଗେ ଅଙ୍ଗେ ଅନୁଭବ କରି ସାଂସାରିକ ଜୀବନକୁ ସୁରୁଖୁରୁରେ ଏ ଯାବତ୍ ଚଳାଇ ଆସିଛନ୍ତି । ଯେଉଁମାନେ ମୁରଳି ଜେନାଙ୍କ ପାରିବାରିକ ଜୀବନ ଜାଣିଛନ୍ତି, ସେମାନେ ଏ କଥାକୁ ନିଶ୍ଚୟ ଉପଲବ୍ଧି କରିବେ ।

ଶ୍ରୀ ଜେନା କାଳେ କାଳେ ସମାଜ ସଚେତନ ଓ ସତ୍ୟର ପୂଜାରୀ । ଅସତ୍ୟ ଓ ଅନ୍ୟାୟ ବିରୁଦ୍ଧରେ ସେ ଚିରକାଳ ସଂଗ୍ରାମ କରି ଆସିଛନ୍ତି । ସେଥିପାଇଁ ସେ ଜୀବନରେ ସମସ୍ତ ଦୁଶ୍ଚିନ୍ତା ଓ ଦୁର୍ଗନ୍ଧ ଭୋଗ କରିଛନ୍ତି । ଏ ସମସ୍ତ ସତ୍ତ୍ୱେ ବି ତାଙ୍କର ଦୁଃଖ ନାହିଁ, କି କ୍ଷୋଭ ନାହିଁ । ଏଇଥିପାଇଁ ସେ ତାଙ୍କ କବିତାରେ ବଳିଷ୍ଠ ଘୋଷଣା କରି କହିଛନ୍ତି—

"ହେ ପ୍ରିୟ ବନ୍ଧୁ, ପରମ ବନ୍ଧୁ,
ଅନୁଭବ ଏଇ ଜୀବନ କାହାଣୀ
ନ ଥିବ ତୁମେ ଯା' ଜାଣି
ତମରି ଆଗରେ ଖୋଲି କହୁଅଛି
ବେଦନାବିଦ୍ଧ ପ୍ରାଣର ଆକୁଳ ବାଣୀ
ସତ୍ୟ କହିଲେ ଶାସ୍ତି ମିଳୁଛି
ଯେତେ ଦୁର୍ଗନ୍ଧ ପୁଣି
ଏଇ କଥା ତୁମେ କାହିଁ କେବେଥିଲ ଶୁଣି ??
ସତ୍ୟ କହିଲେ ବଦ୍‌ମାସ ତୁମେ
ସତ୍ୟ କହିଲେ ପାଜି
ଆମରି ସମାଜେ ଏଇଆ ବିଗୃର ଆଜି
ଆଜିର ସମାଜେ
ସତ୍ୟର ସୀତା ବଳପି ବାହୁନେ
ମିଥ୍ୟା ରାବଣ ଶତ ଲାଞ୍ଛନା ପାଇ
ବାରବାର ଖାଲି, ଏଇ ଅନୁଭବେ
ଅତି ଦୁଃଖରେ ମାରେ ମୁଁ ଶୁଷ୍କ ହାଇ
ଏହାଛଡ଼ା ଆଉ କରିବାକୁ ଅଛି କିସ
ସତ୍ୟରେ ଆପି ଦୃଢ଼ ବିଶ୍ୱାସ ଅମୃତ ସ୍ୱାଦ ଲଭି

ଯାହା ମୁଁ କହୁଛି କେବଳ ତୀବ୍ର ବିଷ
(କବିତା—ହେ ପ୍ରିୟ ବନ୍ଧୁ)
କିମ୍ବା
ଚିରଦିନ ସତ୍ୟର ଉପାସକ
ନିଜେ ହୋଇ ଆସିଲି
ସତ୍ୟର ଜୟକାର
ଯୁଗେ ଯୁଗେ ଅନ୍ୟରେ ଖୋସିଲି
ସତ୍ୟରେ ସୁଖ ଅଛି
ସତ୍ୟ ସାଧନା ରଚି
ଜୀବନର କର୍ତ୍ତବ୍ୟ ପଥରେ
ଦୁନିଆର ଭିନ୍ନତା ମତରେ
ସତ୍ୟରେ ବରିନେଲି ଜୀବନର ସ୍ବୋଳକ
ଏ ଜୀବନ ଥିବାଯାଏ କାଳକ !!!

\+ \+ \+

କିନ୍ତୁ ଗୋଟିଏ କଥା ସ୍ପଷ୍ଟ ମୁଁ କହୁଛି
ସତ୍ୟ ସାଧନା ମୋର
ଆଜିର ଏ ଚଳଣୀରେ
ଏ ଜୀବନ ବାରବାର ଦହୁଛି
ଆଜିର ଏ ଚଳଣୀରେ
ଜୀବନର କରଣୀରେ
ମିଥ୍ୟାର ଯେଉଁଠାରେ ରାଜୁତି
ସତ୍ୟର ପିରାମିଡ଼୍
ଢଳ ଢଳ ହୋଇ ତହିଁ ଖଜୁଛି
(କବିତା—'ସତ୍ୟର ପରାଜୟ')
କିମ୍ବା
ଆଜିର ସମାଜେ ଯିଏ ବଦମାସ୍
ଯିଏ ସଇତାନ୍ ଖ୍ୱେଠ୍ଠା, ଧପ୍‌ପାବାଜ୍
ଲୁହ ଭଗବାନ ଏପରି ମଣିଷ
କପରି ଗଢ଼ୁଛି ସୁଖ ଶାନ୍ତିରେ ରାଜ୍
ତମ ସୃଷ୍ଟିରେ—

ତୁମର ଦୃଷ୍ଟି ତାହାର ଉପରେ କାହିଁ ?
ଇଆଡ଼କୁ କଆଁ ଦୃଷ୍ଟି ଫେରାଅ ନାହିଁ ?
ମିଥ୍ୟାର ମିଠା ଗୁଖି ଗୁଖି ଯିଏ
ମିଥ୍ୟା ଗ୍ରଜୂତ କରେ,
ଏତେ ସଇତାନ ଭଗବାନ ତୁମେ
ଢାଳୁଛ ଆଶୀଷ କରୁଣା ତାହାର ପରେ ?
ପର ଛିଅ ବୋହୁ ଫାନ୍ଦ ଫିକରେ
ଯେ କରୁଛି ଆଜି ନଜର ଅଙ୍କ ସତ୍ତା
ଭଗବାନ ତୁମେ ତାହାର ଜୀବନେ
ସାଇତ ଥୋଇଛ ପଦୋନ୍ନତର ଗନ୍ଧ
ଏହାଠାରୁ ଆଉ ଅସମ୍ଭବ କ ସମ୍ଭବ ପାରେ
ତୁମର ସୃଷ୍ଟି ତଳେ ?
ଦେଖ ଭଗବାନ ଆଖି ମେଲି ଥରେ
ତୁମର ସୃଷ୍ଟି ଏଇମିତି ଆଜ ଚଳେ ।
ଦମ୍ଭରେ ଆଜ ଡାକ ମୁଁ କହୁଛି
ଲୁହ ଭଗବାନ ଲୁହ,
ତମ ଗ୍ରଇକରେ ସତ୍ୟ ପୂଜାରୀ
ଢାଳୁଥିବ ସଦା ଲୁହ
ଏହି ଯଦ ହୁଏ, ଏଇ ତମ ବୁଦ୍ଧିମଣା
ଏହାଠାରୁ ଆଉ ଲଜ୍ଜା କ ଅଛି କହ ?
ଏଇ ପ୍ରଶ୍ନର ଉତ୍ତର ତୁମେ
ଦଅ ଭଗବାନ ଦଅ
ତୁମ ଅବଗ୍ଣର, ଗୁରୁ ଅଭିଯୋଗେ
କେବଳ ଢାଳୁଛି ଲୁହ
(କବିତା—ଲୁହ ଭଗବାନ)

କମ୍ପା
ମୁଁ ଘୋଷଣା କରେ
ମୁଁ ସାଜିବ ଦସ୍ୟୁ ରତ୍ନାକର
ଜନ ଦ' ପନ୍ଥରେ

ଅବା ଗୃହ ଅଧଷ୍ଟାରେ
ଏ ସମାଜେ ଯେଉଁମାନେ
କଳା ବଜାରିଆ
ଯେଉଁମାନେ ଦୁର୍ନୀତିର
ଏଠି ମହାବାହୁ
ଯେଉଁମାନେ ସୁନୀତିର ସୂର୍ଯ୍ୟଟାକୁ
ଗିଳିବାରେ ପାଲଟନ୍ତି ରାହୁ
ମୋର ଏହି ଅଭିଯାନ ଦସ୍ୟୁ ବୃତ୍ତି
ତାଙ୍କ ବିରୁଦ୍ଧରେ
ସେମାନଙ୍କୁ ଝିଙ୍କି ଆଣି
ତାଙ୍କର ଗ୍ରୀବରେ ଚଢ଼ି
କଲିଜାଟା ତାଙ୍କର ବିଦାରି
ମୁହିଁ ଆଜି ହେବି ପରିଚୟ
ଏ ସମାଜେ ମଣିଷର ବଞ୍ଚିବାର ଦାବୀ
ସଭିଁଙ୍କର ଅଛି
ଦଳେ ଏଠି ଦୁର୍ନୀତିର ବାନା ଧରି
ଭାସୁଥିବେ ଘିଅ ଓ ମହୁରେ
ଆଉ ଦଳେ ସୁନୀତିର ସେତୁ ଧରି
ମରୁଥିବେ ଦୁଃଖ ଦୁର୍ବିପାକେ
ଲୁହ ଓ ଲହୁରେ
ଏ ସବୁଟା ହେବ ନାହିଁ
ଦୁର୍ନୀତିର ଟୋଟି ଚପି
ମୁଁ ମାରିବି ତାକୁ ଆଜି ଦିନ ଦି' ପହରେ
ବିଚ୍ ବଜାରରେ
ସୁନୀତିର ଯଶବାନା ଉଡ଼ାଇବି ଏଠି ଫର ଫର
ସାର୍ଥକ ହୋଇବ ଆଜି
ଏଠି ମୋର ସାଜିବାଟା
ଦସ୍ୟୁ ରତ୍ନାକର

(କବିତା—'ମୁହିଁ ହେବି ଦସ୍ୟୁ ରତ୍ନାକର)

କିମ୍ବା
ମିଥ୍ୟାର ରୁମ ଜାଲ୍ କୁଆସ୍ନେଷ

ପଦାରେ ପଡିବ ଫୁଟି,
ସତ୍ୟ ସିଂହ ନର୍ଘାତ ମାଡ଼େ
ତୁମେଇ ମିଥ୍ୟା ଶୃଗାଲର ଦଳ
ଆଉ ନ ପାରିବ ଉଠି
ଉହାଇ ଉହାଇ ତୁମରି ପିଠିରେ
ବସିବରେ ଆଜ ତୁମରି ମରଣ ମାଡ଼
ଚୂନ୍ ଚୂନା ହେବ ତୁମରି ଯେତେକ ହାଡ
ସେତେବେଳେ ଭାଇ ଆଉ କସ ଥିବ
ନେଞ୍ଜ ଗୁଡ଼ ସବୁ କହୁଣୀକୁ ଯିବ ବୋହି
ଆହା କରିବାକୁ ତୁମରି ପାଇଁକି
ନ ଥିବରେ ଜଣେ କେହି
ତେଣୁ ମୁଁ କହୁଛି ଅତି ଦମ୍ଭରେ
ଆରେ ରେ ମିଥ୍ୟା ଶୃଗାଲର ଦଳ
ସତ୍ୟ ସିଂହ ଲଞ୍ଚରେ ଆଜ
ମାର ନାହିଁ ଥଲେ ହାତ
ମନେ ରଖ ଅରେ ସତ୍ୟସିଂହ ନାତ
ତମରି ପଛରେ ଗୁଡ଼େଇ ତୁଡ଼େଇ
୯ ବାଜିବରେ ନର୍ଘାତ ।
(କବିତା—ସତ୍ୟ ସିଂହ ଲଞ୍ଚରେ ଆଜ)

କମ୍ପା
ସତ୍ୟ କହିଲେ ଶତ୍ରୁ ହେବ
ଯେତକ କୁତ୍ସା ଯେତକ ନିନ୍ଦା
ଯେତେ ଅପମାନ
ସାରା ଜୀବନରେ ନେବରେ ନେବ
ସତ୍ୟ କହିଲେ ଶତ୍ରୁ ହେବ ।
ଏଇକଥା କହି ଦେଖିଛ କାହିଁ
ସତ୍ୟ କହିଲେ ନିସ୍ତାର ତୁମ ନାହିଁ ରେ ନାହିଁ
ରାଜସଭାରେ ଅତି ଶଭାରେ
ତୁମ ପଛପଟେ ବାଜିବ ଲଠି

ମିଥ୍ୟା ସାକ୍ଷୀରେ, ମିଥ୍ୟା ଆଖିରେ
ତୁମର କପାଳେ ଜେଲ କୋଶମାନ
ବେଗାଣ୍ଡି ବେଠି
ତୁମ ପଛପଟେ ବାଜବ ଲଠି
ସେଥିପାଇଁ ଭାଇ
କହୁଛି ସାଇ
ସତ୍ୟର ପଥ ଅତି ଦୁର୍ଗମ
କଣ୍ଟକମୟ କଠିନଠାରୁ ବି
କଠିନ ତମ
ସତ୍ୟ ପଥରେ ଦୃଢ଼ ରହିବାକୁ
କରିବାକୁ ହେବ ପରିଶ୍ରମ
ଯେତେ ଯେତେ ଆସୁ ବାଧା ବନ୍ଧନ
ଘାତ ପ୍ରତିଘାତ, ଏପରିକି ଭାଇ ଛୁରୀକା ଘାତ
ଦରକାର ହେଲେ ପ୍ରାଣ ବି ପାତ
ସହିବାକୁ ହେବ ସେ ସବୁ ତାହା
ପଡ଼ିଏ ମାନ ତୁମକୁ କେହି ବା
କହିଲେ କହୁ ବା ନ କହୁ ଆହା
ସତ୍ୟର ପଥ
ଏଇପରି ଭାଇ ଦୁର୍ଗତ ଯେସି
ଦୁଷ୍କୃତି ବୋଲା, ଦୁର୍ନାମର ସେ
ଦୁର୍ନିବାର……
ଯଦ୍ୟପି ହୁଏ ସହିବାକୁ ତାକୁ ବାରମ୍ବାର
ତଥାପି, ତଥାପି
ସତ୍ୟର ପଥ ଆଣିଦେରେ ଭାଇ
ସେହି ଅମୃତ ଅସଲି ସ୍ୱାଦ
ଚଞ୍ଚଳ ନୁହେଁ ବିଳମ୍ବରେ ସେ
ଲଗାଇ ଦେବରେ ମିଥ୍ୟାର ଯେତେ
ନକଲି ପୁଟର ମାନ ଅଭିମାନ
ବାଦ ପ୍ରତିବାଦ ଦୁଃସମ୍ବାଦ
ସତ୍ୟ ଜିତିଛି, ସତ୍ୟ ଜିତୁଛି, ସତ୍ୟ ଜିତିବ
ଇତିହାସ ଏହା ପ୍ରମାଣ କରେ

ତେଣୁ ଏ ସତ୍ୟ ମହାମନ୍ତ୍ରକୁ ମରଣ ଡରେ
ସତ୍ୟରେ ଫୁଟେ ଜୀବନ ଫୁଲ
ସାରା ସଂସାରେ ସତ୍ୟଟାଇ ହିଁ ଜୀବନ ମୂଳ
ଯଦିବା ସତ୍ୟ ବଞ୍ଚଇ ଏଠି
ଦୁର୍ବିନୀତରେ କି କଳିବଳେ
ସତ୍ୟଟାଇ ତ ଅମର ଅକ୍ଷୟ
ସତ୍ୟର ନାହିଁ ବିନାଶ ହେଲେ
(କବିତା—ସତ୍ୟ କହିଲେ)

ଏହାଛଡ଼ା ଗୁଳଣଟି ଭକ୍ତି ସଙ୍ଗୀତର ସଫଳ ସମାବେଶରେ ମୁରାରି ଜେନାଙ୍କ ଭକ୍ତି ସଙ୍ଗୀତ ଶିରୋନାମାରେ ଯେଉଁ ଭକ୍ତି-ସଙ୍ଗୀତ ପୁସ୍ତକ ପ୍ରକାଶ ପାଇଛି, ତାହାହିଁ ଶ୍ରୀ ଜେନାଙ୍କ ଓଡ଼ିଆ ଭକ୍ତି ସାହିତ୍ୟକୁ ଅମଳିନ ଅବଦାନ । ଏ ସଂପର୍କରେ ସ୍ୱର୍ଗତ ଡକ୍ଟର କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ତାଙ୍କ ମତ ପ୍ରଦାନ କରି କହିଛନ୍ତି—

"ମୁରାରି ଜେନାଙ୍କ 'ଭକ୍ତି ସଙ୍ଗୀତ' ବହିଟି ମନ ଦେଇ ପଢ଼ିଲି । ମନେ ହେଲା ଏ ଗୁଡ଼ିକ ମୁରାରି ଜେନାଙ୍କ ଭକ୍ତି ସଙ୍ଗୀତ ନୁହେଁ—ଏଗୁଡ଼ିକ ସଭିଙ୍କ ଭକ୍ତି ସଙ୍ଗୀତ । ଏହାର ବହୁଗୀତ ଜଣାଣ—ଗୁହାରି । ମୁରାରିର ଏ ବୟସରେ ମନ-ଉଛୁଳା ଭକ୍ତିର ଅପୂର୍ବ ସମାବେଶ । ଭାରି ସରଳ ଓ ମନ ମତାଣିଆ ଭାଷାରେ ଲେଖିଛି । ତା' ହାତରୁ ଏପରି ଲେଖା ମୁଁ ଆଶା କରି ନ ଥିଲି । ସେ ହରିହର ଦୁର୍ଗାଙ୍କ ପାଦରେ ମଥା ନୁଆଁ ଇଛି । ମାତ୍ର "ସର୍ବଦେବ ନମସ୍କାରଂ କେଶବ ପ୍ରତି ଗଚ୍ଛତି" ଏ କଥାଟି ସତ । ସବୁତ ସେଇ ଜଣକ— ସେ ଏକା ଜଗତ କରତା—ଜଗନ୍ନାଥ—ଏକା ଜଣକର ସବୁ ଲୀଳା । ମୁରାରିର ସଙ୍ଗୀତ ଗୁଡ଼ିକ ଭାରି ଭଲ ଲାଗିଲା । ସେଥିରେ ତାଙ୍କ ମନର କଥା ଉଚ୍ଛୁଳି ପଡ଼ୁଛି ।"

ଏ ହିସାବରେ ଶ୍ରୀ ଜେନା ସାହିତ୍ୟିକ ଭାବରେ ଯେପରି ପ୍ରତିଷ୍ଠିତ, ଜଣେ ସାହିତ୍ୟ ସଂଗଠକ ହିସାବରେ ସେତିକି ପ୍ରତିଷ୍ଠିତ । ସେଥିପାଇଁ ଶ୍ରୀ ଜେନାଙ୍କ ଗୁରୁଦେବ ଓ ଆଇନଜୀବୀ ଡକ୍ଟର ଶ୍ରୀରାମଚନ୍ଦ୍ର ଦାସ ସେଦିନ ମୁକ୍ତ କଣ୍ଠରେ ଘୋଷଣା କରିଥିଲେ—

"ଓଡ଼ିଆ ସଂଗଠନ କ୍ଷେତ୍ରରେ "ମୁକ୍ତିଶ୍ରେଷ୍ଠ ପଣ୍ଡିତ" ଆଜି ବିଶେଷ ଭାବେ ସ୍ୱୀକୃତ ।" ଓଡ଼ିଶାର ଯେଉଁ ସୁପ୍ରତିଷ୍ଠିତ ବ୍ୟକ୍ତିମାନେ ମୁରାରି ଜେନାଙ୍କ କବି, ସାହିତ୍ୟିକ

ଓ ବ୍ୟକ୍ତିତ୍ୱ ସମ୍ପର୍କରେ ତାଙ୍କର ସୁଚିନ୍ତିତ ମତ ପ୍ରଦାନ କରିଛନ୍ତି, ସେଥିରୁ କେତୋଟି ଏଠାରେ ଉଦ୍ଧାର କଲେ ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ ।

କବିଗୁରୁ ରାଧାମୋହନ ଗଡ଼ନାୟକ ତାଙ୍କ ସମ୍ପର୍କରେ କହିଛନ୍ତି—

"ଓଡ଼ିଆ କବିତା ରାଜ୍ୟରେ ମୁରାରି ଜେନା ଏକ ନିପାତନ—ତାଙ୍କର ପ୍ରତିଶ୍ରୁତି ସ୍ୱତନ୍ତ୍ର । ସଭା ସମିତିରେ ବକ୍ତା ଭାବରେ ତାଙ୍କ ଭାଷଣରେ ସେ ଯେପରି ଅନିରୁଦ୍ଧ ଓ ନିର୍ଭୀକ, ତାଙ୍କ କବିତାର ଭାବରେ ଓ ଭାଷାରେ ସେ ସେପରି ବେପରୁଆ ଓ ବିପ୍ଳବ ମୁଖର ।"

ଓଡ଼ିଆ ସାହିତ୍ୟ ଏକାଡେମୀର ସଭାପତି କବି ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟଙ୍କ ମତରେ—

"କବି ମୁରାରି ଜେନା ଜେନା, କବି ନାମରେ ଓଡ଼ିଆ କାବ୍ୟ ଜଗତରେ ବିଶେଷ ଜନପ୍ରିୟତା ହାସଲ କରିଛନ୍ତି । ସେ ଜଣେ ଆଶୁ କବି ଏବଂ ସମସାମୟିକ ଜୀବନର ନାନା ସମସ୍ୟା ଉପରେ ବହୁ ଶ୍ଳେଷପୂର୍ଣ୍ଣ କବିତାମାନ ରଚନା କରିଛନ୍ତି । ସେ ନିଜେହିଁ ତାଙ୍କ କବିତାର ଭୂମିକା ଓ ଉପସଂହାର । ପରର ଅନିଷ୍ଟ କରିବା ଜେନା କବିଙ୍କର ଧାତୁରେ ନାହିଁ । ସେ ସମ୍ପୂର୍ଣ୍ଣ ହାର୍ମଲେସ । ଏହା ତାଙ୍କର ବୈଶିଷ୍ଟ୍ୟ । ସେ ଏକ ନୈର୍ବ୍ୟକ୍ତିକ ଅଦୃଶ୍ୟ ଶତ୍ରୁ ବିରୁଦ୍ଧରେ କଲମ ଚଲାଇ ଯାଇଛନ୍ତି । ତାଙ୍କର ଶତ୍ରୁତା କୌଣସି ବ୍ୟକ୍ତି ବିରୋଧରେ ନୁହେଁ । ଗୋଷ୍ଠୀ ସମାଜର ଅତ୍ୟାଚାର, ଅନାଚାର ଅନ୍ଧପ୍ରଥା ବିରୋଧରେ, କୁତ୍ସିତ ଅନୁଷ୍ଠାନ ବିରୋଧରେ । ସେ ବ୍ୟକ୍ତି ବିବାଦର ପଙ୍କିଳ ସ୍ତରର ବହୁ ଊର୍ଦ୍ଧ୍ୱରେ ରହି ନିଜର ସାହିତ୍ୟ-ସତ୍ତ୍ୱର ପ୍ରତିଷ୍ଠା କରି ପାରିଛନ୍ତି, ଏହା କମ୍ ପ୍ରଶଂସାର କଥା ନୁହେଁ ! ବ୍ୟକ୍ତି ସତ୍ୟ ଓ ସାହିତ୍ୟ ସତ୍ତ୍ୱର ସୁନ୍ଦର ସମନ୍ୱୟ ଆମେ ତାଙ୍କ କବିତାରେ ପାଉ । ସମବ୍ୟଥା ତାଙ୍କ କବିତାର ମୁଖ୍ୟ ସ୍ୱର । ତାଙ୍କର ଅନ୍ତର୍ନିହିତ ସମବ୍ୟଥାକୁ ସେ ଅଧିକାଂଶ ସମୟରେ ବିଦ୍ରୋହ ମାଧ୍ୟମରେ ପ୍ରକାଶ କରିଥିଲେ ମଧ୍ୟ ତହିଁର ମାର୍ମିକତା ହଜିଯିବାର ଜିନିଷ ନୁହେଁ ।"

ଓଡ଼ିଶାର ବିଶିଷ୍ଟ କବି ଓ ଔପନ୍ୟାସିକ ଶ୍ରୀ ଲକ୍ଷ୍ମୀକାନ୍ତ ନାୟକଙ୍କ ମତରେ—

"କବି ମୁରାରିଙ୍କୁ ପଢ଼ିଲେ ବୁଝାଯିବ, ସେ ଏଇ ରୁଗ୍ଣ ସମାଜର ବ୍ୟାଖ୍ୟାତା । ଯେତେ ଅନୀତି ଆଉ ଦୁର୍ନୀତିର ଭାଷ୍ୟକାର । ତାଙ୍କ କବିତା ମାର୍ଜିତ ଆଉ ମର୍ମିଳ । ଦେଶ ଓ ଜାତିର ବୁକ ଯନ୍ତ୍ରଣାକୁ ଉଦ୍‌ଘାଟିତ କରି ଦେଖାଇ ଦେବାରେ ତାହା ବହ୍ନିମାନ, ଗର୍ଜ୍ଜମାନ !!! ଆଜିର କବିତା ଆନ୍ଦୋଳନରେ ମୁରାରି ଜେନା ଏକ ଦୁର୍ଦ୍ଧର୍ଷ ନାୟକ । ଓଡ଼ିଆ କବିତା ଯେତେବେଳେ ରକ୍ତହୀନତା ଭୋଗୁଛି, କବି ଜେନା

ତା' ଶିରାରେ ଶିରାରେ ଢାଳିଛନ୍ତି ନୂତନ ରକ୍ତ । ଯେଉଁଠି ଅନ୍ୟାୟ ଆଉ ଅତ୍ୟାଚାର, ସେଠି କବି ମୁରାରି ମୁହାଁ ମୁହିଁ ଛିଡ଼ାହୋଇ ମୁକାବିଲା କରିବାରେ ଦୁର୍ଦ୍ଧାନ୍ତ, ପ୍ରଗଲ୍‌ଭ । ଏକା ସାଙ୍ଗରେ ସେ ପ୍ରତିଭାର ପୂଜାରୀ ଓ ଲୁଣ୍ଠନକାରୀ । ଦୁନିଆର ସବୁ ଝାଭିରତା ଉପରକୁ ଉପହାସର ତୀକ୍ଷ୍ଣ ତୀର ନିକ୍ଷେପ କରିବାରେ ସେ ସିଦ୍ଧହସ୍ତ । ଯେ କୌଣସି ଦୁଃସାହସୀ ଅଭିଯାନର ପୁରୋଭାଗରେ କବି ମୁରାରି ଝାରଥ୍ୱ ସହକାରେ ଛିଡ଼ା ହେବାକୁ ଆଗେଇ ଯା'ନ୍ତି, ଅର୍ଜ୍ଜୁନଙ୍କ ରଥରେ ଶ୍ରୀକୃଷ୍ଣଙ୍କ ପରି ।

ମୁରାରି ଜେନା ଜଣେ ଲୁବ୍‌ଧ କବି । କିନ୍ତୁ କାହାର ? ସତ୍ୟ ଆଉ ନ୍ୟାୟର । ସେ ଜଣେ ମୁଗ୍‌ଧ ସ୍ତାବକ । କିନ୍ତୁ କାହାର ? "ଗୁଣୀ ଆଉ ପ୍ରତିଭାବାନର ।

ସେଇଥିପାଇଁ ତାଙ୍କ କବିତାରେ ଉଚ୍ଛୃଙ୍ଖଳ ମମତା, ଅମାର୍ଜିତ ଆଭିଜାତ୍ୟ ଅନୁଭବର ଏକ ଭିନ୍ନତର ନିଶାରେ ଆମକୁ ଉନ୍ମାଦ କରି ତୋଳେ ଏବଂ ସେଇ ଉନ୍ମାଦନାର ଉତ୍ତାପ ତଳେ ଆମେ ଦେଖୁ, କବି ମୁରାରିଙ୍କ କବିତାର କଥାବସ୍ତୁ ଭାବ, ଶବ୍ଦ ଓ ଛନ୍ଦର ସମାହାରରେ କେତେବେଳେ ବୈଶାଖୀ ଦିନର ଖରା ଝାଞ୍ଜି ପରି ଅଗ୍ନି ବର୍ଷୀତ, କେତେବେଳେ ସନ୍ଧ୍ୟାର ମଳୟ ପ୍ରବାହ ପରି ଶ୍ଳଶ ମଧୁର, ପୁଣି କେତେବେଳେ ରାତିର ଶେଷ ପ୍ରହରର ଶିଶିର ବିନ୍ଦୁ ପରି ସ୍ନିଗ୍‌ଧ କୋମଳ, ରସସିକ୍ତ ।"

ଗାଳ୍ପିକ ଓ କବି ଦୁର୍ଗାମାଧବ ମିଶ୍ର ଶ୍ରୀ ଜେନାଙ୍କ ସମ୍ପର୍କରେ କହିଛନ୍ତି —

"ଏ ଯୁଗର କଳାପାହାଡ଼ ମୁରାରି ଜେନା ସମସ୍ତ ପୋକଖିଆ ସାମାଜିକ ଅନୁଶାସନ ଭାଙ୍ଗିବାପାଇଁ ବଦ୍ଧ ପରିକର । ତାଙ୍କର ଅସ୍ତ୍ର କଲମ ଯାହାକି କଲମଠାରୁ ଆହୁରି ତୀକ୍ଷ୍ଣ ।"

ଅଧ୍ୟାପକ ହୃଦାନନ୍ଦ ରାୟ ଶ୍ରୀ ଜେନାଙ୍କ ବ୍ୟକ୍ତିତ୍ୱ ଓ ମୂଲ୍ୟବୋଧ ସମ୍ପର୍କରେ କହିବାକୁ ଯାଇ କହିଛନ୍ତି—

"ମୁରାରି ବାବୁ ସହିତ ପ୍ରଥମ ଭେଟ ଏ ଭଳି ଏକ ନାଟକୀୟ ଭାବରେ ସେ ଘଟାଇଲେ, ତାହା ଏବେ ବି ସ୍ମୃତି ସୁନ୍ଦର ହୋଇ ରହିଛି । କଳିଙ୍ଗ ଭାରତୀ ଆଦର୍ଶର ପ୍ରତିଷ୍ଠା ପାଇଁ କଟିବଦ୍ଧ ଉଗ୍ରତାକୁ ଅଙ୍ଗ ଭୂଷଣ କରି ଆଦ୍ୟ ଯୌବନର ଯେଉଁ କେତୋଟି ବର୍ଷ ମୋର କଟିଗଲା, ଏହା ସେଇ କାଳର କଥା । ଏକ ମାଛି ଅନ୍ଧାରିଆ ସନ୍ଧ୍ୟାରେ କଟକର 'ଆମ ସାଇ' ରାସ୍ତାରେ ମୋତେ ଶୁଭିଲା "ରହନ୍ତୁ ।" ମୁଁ ବିସ୍ମିତ ହୋଇ ଅଟକି ଗଲି । ଦୃଢ଼ ଓ ଝଙ୍କୃତ ସ୍ୱରରେ ଜଣେ ଆଗନ୍ତୁକ କହିଲେ—

ଆପଣଙ୍କ ପାଇଁ ରାଜନୀତି ଛାଡ଼ି ମୁଁ ସାହିତ୍ୟ ସଂସାରକୁ ଓହ୍ଲାଇଛି, କେବଳ ଆପଣଙ୍କୁ ମୁକାବିଲା କରିବା ପାଇଁ ।" ସେ ହେଉଛନ୍ତି ଏହି ମୁରାରି ବାବୁ । ମୁରାରିବାବୁଙ୍କ ପ୍ରତିବାଦ ସ୍ୱର, ପ୍ରତିରୋଧ କୌଶଳ ଖୁବ୍ ତୀବ୍ର ଭାବରେ କଳିଙ୍ଗ ଭାରତୀ ଗୋଷ୍ଠୀରେ ଅନୁଭୂତ ହେଲା । ଅନେକବାର ମୁକ୍ତ ରଣାଙ୍ଗନରେ ମୁରାରିବାବୁଙ୍କ ମୁକାବିଲା କରି କଳିଙ୍ଗ ଭାରତୀର ସେନାଧ୍ୟକ୍ଷମାନେ ବିବ୍ରତ ହୋଇ ପଡ଼ିଥିଲେ । ତେଣୁ ଆନୁଷ୍ଠାନିକ ଭାବରେ ମୁରାରି ବାବୁଙ୍କ ନାଁଟା, ପ୍ରତିପକ୍ଷ 'ତାଲିକାଭୁକ୍ତ' ହୋଇ ଯାଇଥାଏ । କିନ୍ତୁ କଳିଙ୍ଗ ଭାରତୀର ପ୍ରତିଷ୍ଠାତା ସ୍ୱଚ୍ଛନ୍ଦଚରଣଙ୍କ ଅସୀମ ଶ୍ରଦ୍ଧା ଓ କଲ୍ୟାଣର ପାତ୍ର ହୋଇଥାନ୍ତି ମୁରାରିବାବୁ । ଗୁରୁଦେବ ସ୍ୱଚ୍ଛନ୍ଦଚରଣ କହୁଥିଲେ—ଯେତେହେଲେ ସେ ଖଣ୍ଡେ ଇସ୍ପାତ । ତାକୁ ମନାଇ ପାରିଲେ ସେ ଆମର ହୋଇଯିବ । ମୁରାରି ବାବୁଙ୍କ ନିର୍ଭୀକତା, ସ୍ପଷ୍ଟୋକ୍ତି, ଓଡ଼ିଆ-ପ୍ରୀତି, ପ୍ରବଳ ଉଦ୍ଦୀପନା ଗୁରୁଦେବ ସ୍ୱଚ୍ଛନ୍ଦଚରଣଙ୍କୁ ଖୁବ୍ ସୁହାଉଥାଏ । ସେ କହନ୍ତି ଶତ୍ରୁ ହେଉ ବା ମିତ୍ର ହେଉ ଏ ଗୁଣ ନ ଥିଲେ ସବୁ ଅସାର ଓ ବେକାର ।"

କବି ସଦାଶିବ ଦାସଙ୍କ ମତରେ—"ମୁରାରି ଜେନାଙ୍କ କବିତା ସହକାର ବୌଦ୍ଧିକ ଧପ୍ପାବାଜି ନୁହେଁ । ଯେତେଗୁଡ଼ିଏ କବିତା ପଢ଼ିଲି, କୌଣସି ଠାରେ ଦେଖିଲି ନାହିଁ ମାଟିଆ ବୁରୁଜୁଆ ଜନ୍ମର ଇସ୍ତାହାରି ଗୁଳ, ବା ଇଲିୟଟ ଧାରା ପରିପୁଷ୍ଟ ଫର୍ମା ମଣିଷର ଏକ ଓଡ଼ିଶୀ ସଂସ୍କରଣ । ଆଃ ବିଗୃହି କବି କେଉଁଠାରେ ବିଦେଶୀ ସାହିତ୍ୟ କରି ନାହିଁ ବା ଓଡ଼ିଆ ସାହିତ୍ୟରେ ଅଫିସରଆଙ୍କ ବୈଠକୀ କବିତା ସୃଷ୍ଟି କରି ବନ୍ଦ ଫ୍ଲାଟର [illegible]ହବାରେ ଅଣନିଶ୍ୱାସୀ ହୋଇ ଯାଇନି । ଆମ୍ବାକୁ ତାର ସପୁରି ପଣସ ଭଳି ଆକାଶକୁ ଫିଙ୍ଗି ଓଡ଼ିଆ ସାହିତ୍ୟକୁ ଧୋକ୍କା ଦେଇ ନାହିଁ ।"

ମହାପାତ୍ର ଭାସ୍କର ଗନ୍ତାଏତ୍‌ଙ୍କ ମତରେ—

"ଜେନାକବି ମୁରାରି ମୋହନ ଏକ ଅବିନାଶୀ ବ୍ୟକ୍ତିତ୍ୱ ଓ ମୁକ୍ତିକାମୀ ଜାତୀୟବାଦୀ ପୁରୁଷ । ଅତଏବ ତାଙ୍କ ସୃଷ୍ଟି ଦେଶାତ୍ମବୋଧରେ ପ୍ରାଣବନ୍ତ, ପ୍ରତିଭା ପୂଜା ପାଇଁ ଉତ୍ସର୍ଗୀକୃତ ତଥା ଶୋଷଣ ବିରୁଦ୍ଧରେ ପ୍ରକାଶିତ ନଚେତ୍ ବିଦ୍ରୋହ ଓ ନିଷ୍ଠୁର ସତ୍ୟର ପ୍ରକାଶରେ ବହ୍ନିମସ୍ତ ।"

ଡକ୍ଟର କାଳନ୍ଦୀ ଚରଣ ପାଣିଗ୍ରାହୀ ମତ ପ୍ରକାଶ କରି କହିଛନ୍ତି—

"ଦୁନିଆରେ ଅନ୍ୟାୟ, ଅତ୍ୟାଚାର ବିରୁଦ୍ଧରେ ସେ ସ୍ୱର ଉତ୍ତୋଳନ କରନ୍ତି, ଯେପରି ଅବା ଶୈଶବରୁ ସମାଜରେ ଅସାମ୍ୟ, ଅନ୍ୟାୟ, ଅତ୍ୟାଚାର କବି ପ୍ରାଣକୁ ଯେଭଳି ପୀଡ଼ିତ ଓ ଉଦ୍‌ବେଳିତ କରେ, କବି ମୁରାରିମୋହନଙ୍କ ରଚନାରେ ହିଁ ତାହା

ମୁଁ ସ୍ପଷ୍ଟ ଭାବରେ ଲକ୍ଷ୍ୟ କରିଛି । କବି ମୁରାରି ମୋହନଙ୍କ ପ୍ରଥମ ପ୍ରକୃଷ୍ଟ ପରିଚୟ ମୁଁ ପାଏ, ଗଣକବି ବୈଷ୍ଣବ ପାଣିଙ୍କ ମୃତ୍ୟୁ ଶଯ୍ୟାରେ, କଟକ ମେଡ଼ିକାଲ ହସ୍ପିଟାଲରେ । ଏହି ମହାନ୍ କବିଙ୍କ ଅନ୍ତିମ ଶଯ୍ୟାରେ ଯୁବକ ମୁରାରି ମୋହନଙ୍କ ପ୍ରଥମ ଉପସ୍ଥିତି, ଆଉ ମୋତେ ଏଇ ଦୁଃସମ୍ବାଦ ଜଣାଇବାରେ ଡଗର ଥିଲେ ସେ । ସେହିପରି କବି ପ୍ରାଣକୃଷ୍ଣ ସାମଲ ପୁଣି କବି ବାଳକୃଷ୍ଣ ପଟ୍ଟନାୟକଙ୍କ ମୃତ୍ୟୁ ଶଯ୍ୟାରେ ମୁରାରି ମୋହନଙ୍କ ଉପସ୍ଥିତି ଓ ସହିଷ୍ଣୁ ସମବେଦନା, ମୋତେ ଏଇ ଯୁବ କବିଙ୍କ ପ୍ରତି ଏକାନ୍ତ ଭାବରେ ଓଟାରି ନେଇଛି, ଯାହାର ସ୍ମୃତି ଏ ପର୍ଯ୍ୟନ୍ତ ଜୀବନ୍ତ ହୋଇ ରହିଛି ।"

ଡକ୍ଟର ମାୟାଧର ମାନସିଂହ ତାଙ୍କ ମତରେ କହିଛନ୍ତି—

"କଟକ ନଗରରେ ସ୍ୱର୍ଗତ ଲକ୍ଷ୍ମୀ ନାରାୟଣ ସାହୁଙ୍କ ପରେ ମୁଁ ଶ୍ରୀ ଜେନାଙ୍କୁ* ଏକା ମନେ କରେ ପ୍ରକୃତରେ 'ଉତ୍ସାହୀ ବୁଦ୍ଧିଜୀବୀ ।' ଜେନାଙ୍କ ବିଦ୍ରୋହ ଆସୁଛି; ନିଜର ମାନ-ଅଭିମାନ-ସଚେତନତା ନୁହେଁ, ଆସୁଛି ତାଙ୍କର ଦେଶ, ଜାତି, ମାତୃଭାଷା ଓ ସାହିତ୍ୟକୁ ସେବା କରିବାରେ ଅଦମ୍ୟ ଉତ୍ସାହରୁ । ସେ ଦେଖିଛନ୍ତି ଯେ, ଜାତୀୟତାବାଦୀ ସ୍ଲୋଗାନରେ କାନ ଫାଟି ପଡ଼ୁଛି ଅଥଚ ବର୍ମା, ବିଚ୍ଛନ୍ଦ, ପ୍ରାଣକୃଷ୍ଣ ମରୁଛନ୍ତି ସମସ୍ତଙ୍କ ଆଖି ଆଗରେ ନିରାହାର ଓ ନିଃଚିକିତ୍ସାରେ, କେହି କନିଷ୍ଠାଙ୍ଗୁଳିଟି ମଧ୍ୟ ଟେକିବାକୁ ନାହିଁ । ଏହି ପରିବ୍ୟାପ୍ତ ବିରୋଧାଭାସ ତାଙ୍କର ତରୁଣ ପ୍ରାଣକୁ ବାରମ୍ବାର ବ୍ୟସ୍ତ, ବ୍ୟାକୁଳ କରିଛି ।"

* ଶ୍ରୀ ଜେନା ସମ୍ପ୍ରତି ଓଡ଼ିଶା ସରକାରଙ୍କ ଶ୍ରମ ବିଭାଗର ସହକାରୀ ଶ୍ରମ କମିଶନର ।